# ମୋ ଜୀବନ ସଂଗ୍ରାମ

ଅର୍ଦ୍ଧଶତାବ୍ଦୀର ସମାଜବାଦୀ
ଆନ୍ଦୋଳନର କାହାଣୀ

ସୁରେନ୍ଦ୍ରନାଥ ଦ୍ୱିବେଦୀ

ଗ୍ରନ୍ଥ ମନ୍ଦିର, କଟକ-୨ ଓ ବ୍ରହ୍ମପୁର-୧

# ମୋ ଜୀବନ ସଂଗ୍ରାମ

[ ୧୯୩୪ ରୁ ୧୯୮୪ :
ଅର୍ଦ୍ଧ ଶତାବ୍ଦୀର ସମାଜବାଦୀ ଆନ୍ଦୋଳନର କାହାଣୀ ]

ସୁରେନ୍ଦ୍ରନାଥ ଦ୍ୱିବେଦୀ

ଗ୍ରନ୍ଥମନ୍ଦିର

MO JEEBAN SANGRAM

By : **Surendranath Dwivedy**

Published by . **Grantha Mandir**, Cuttack-2 & Berhampur-1

First Edition : April, 1984

Price : Rs. 66.00

ପ୍ରକାଶକ : ଅଭିରାମ ମହାପାତ୍ର

**ଗ୍ରନ୍ଥ ମନ୍ଦିର**, ବିନୋଦବିହାରୀ, କଟକ-୨

**ଗ୍ରନ୍ଥ ମନ୍ଦିର**, ମେନ୍‌ରୋଡ଼, ବ୍ରହ୍ମପୁର-୧

ମୁଦ୍ରକ :

**ଗ୍ରାମସେବକ ସମବାୟ ପ୍ରେସ୍** ( ପୃ. ୧ ରୁ ୧୭୮ )

**ଗ୍ରନ୍ଥପ୍ରକାଶିନୀ** ( ପୃ. ୧୭୯ ରୁ ଶେଷ )

କଟକ

ପ୍ରଥମ ସଂସ୍କରଣ : ଏପ୍ରିଲ୍ ୧୯୮୪

ମୂଲ୍ୟ : ଟ ୬୬.୦୦

ସାଦା ବନ୍ଧେଇ : ଟ ୬୦.୦୦

# ଅର୍ପଣ

ମୋର ବନ୍ଧୁ, ସମର୍ଥକ ଓ ସହାୟକ
ଏବଂ
ସବୁ ସୋସଲିଷ୍ଟ ସାଥୀଙ୍କ ହାତରେ
ଏହି ପୁସ୍ତକଟି ଅର୍ପଣ କରାଗଲା ।

ସୁରେନ୍ଦ୍ରନାଥ ଦ୍ୱିବେଦୀ



[ କର୍ତ୍ତିଆ ସ୍ମୃତି ସଦନ—ରାଉରକେଲା ]

ବାମରୁ ଦକ୍ଷିଣ—ନିତ୍ୟାନନ୍ଦ ସାହୁ, ରାଜକିଶୋର ସାମନ୍ତରାୟ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଜଗଦୀଶ ନାଗ ଏବଂ ବିଦ୍ୟାଧର ବାରିକ

# କୃତଜ୍ଞତା

ଏହି ପୁସ୍ତକଟିର ପରିକଳ୍ପନା, ପାଣ୍ଡୁଲିପି ସଂଶୋଧନ ଏବଂ ପ୍ରକାଶନରେ ମୋତେ ବହୁ ବନ୍ଧୁଙ୍କର ଉତ୍ସାହ, ସାହାଯ୍ୟ ଓ ସହଯୋଗ ମିଳିଛି । ଦିଲ୍ଲୀ ବିଶ୍ୱବିଦ୍ୟାଳୟର ରାଜନୀତିବିଜ୍ଞାନ ବିଭାଗର ପ୍ରଫେସର୍ ମନୋରଞ୍ଜନ ମହାନ୍ତି, ନେହରୁ ଲାଇବ୍ରେରୀ ଓ ମିଉଜିୟମ୍‌ର ଡକ୍ଟର ହରିଦେବ ଶର୍ମା ଓ ଓଡ଼ିଶାର କେତେକ ବନ୍ଧୁ ଓ ସାହିତ୍ୟିକ ଯଥୋଚିତ ସାହାଯ୍ୟ କରିଥିବାରୁ କୃତଜ୍ଞତା ଜଣାଉଛି ।

ଗ୍ରନ୍ଥମନ୍ଦିର ମୋର ପୂର୍ବ ପୁସ୍ତକଗୁଡ଼ିକ ପରି ଏହାର ପ୍ରକାଶନ ଭାର ନେଇଛନ୍ତି ।

ଏହି ସକଳ ବନ୍ଧୁଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଉଛି ଏବଂ କୃତଜ୍ଞତା ଜ୍ଞାପନ କରୁଛି ।

ଗାୟତ୍ରୀ ନିବାସ
୩୫୭, ଶହୀଦ୍‌ନଗର
ଭୁବନେଶ୍ୱର—୭୫୧୦୦୭

ସୁରେନ୍ଦ୍ରନାଥ ଦ୍ୱିବେଦୀ
ତା ୨୮ । ୧୧ । ୮୩

# ମୁଖବନ୍ଧ

ମୋ ନାମକୁ ଲେଖକ ତାଲିକାଭୁକ୍ତ କରିବା ନିମନ୍ତେ କେନ୍ଦ୍ର ସାହିତ୍ୟ ଏକାଡେମୀ, ନୂଆଦିଲ୍ଲୀରୁ, ମୋ ପାଖକୁ ଯେଉଁ ଫର୍ମ ପୂରଣ କରିବା ପାଇଁ ଆସିଥିଲା, ତହିଁରେ ମୁଁ ଲେଖିଥିଲି—ମୁଁ ଜଣେ ରାଜନୀତିକ ଲେଖକ ।

ରାଜନୀତିରେ ପ୍ରବେଶ ଦିନଠାରୁ ମୋର ବାସ୍ତବ ଜୀବନ ଆରମ୍ଭ ହୋଇଛି କହିଲେ ଚଳେ । ୧୯୩୦ରୁ ଆଜି ପର୍ଯ୍ୟନ୍ତ ମୁଁ ନିରବଚ୍ଛିନ୍ନ ଭାବରେ ରାଜନୀତିକ ଜୀବନ ଯାପନ କରିଆସିଛି ଏବଂ ସେଥି ଭିତରେ ସାମ୍ବାଦିକ, ଲେଖକ, ସ୍ୱାଧୀନତା ସଂଗ୍ରାମୀ, ସମାଜବାଦୀ ଓ ବ୍ୟବସ୍ଥାପକ ହୋଇପାରିଛି । ଏତେ ଦୀର୍ଘକାଳ ଭିତରେ ନାନା କ୍ଷେତ୍ରରେ ପ୍ରତ୍ୟକ୍ଷ ଅଭିଜ୍ଞତା ଓ ଜ୍ଞାନ ଲାଭ କରିଛି । ତେଣୁ ଏହି ପୁସ୍ତକଟିରେ ଜୀବନୀ ଅପେକ୍ଷା ରାଜନୀତିକ ଘଟଣାବଳୀର ବିବରଣୀ ଅଧିକ ସ୍ଥାନ ପାଇବାଟା ନିତାନ୍ତ ସ୍ୱାଭାବିକ । ନିଜର ବ୍ୟକ୍ତିଗତ ଜୀବନ ସମ୍ବନ୍ଧରେ କିଛି ଉଲ୍ଲେଖ ନରହିଲେ ପାଠକଙ୍କ ମନରେ ମୋ ସମ୍ପର୍କରେ ପୂର୍ଣ୍ଣ ଧାରଣା ହେବ ନାହିଁ ବୋଲି ବନ୍ଧୁମାନେ କହିବାରୁ ଏହି ରାଜନୀତିକ ଜୀବନୀ ସହିତ ବ୍ୟକ୍ତିଗତ ଜୀବନର କିଛି ଉଲ୍ଲେଖ ରହିଛି ।

ମୁଁ ଲେଖୁଥିଲାବେଳେ ଅନୁଭବ କରିଛି, ଗୋଟିଏ ପୁସ୍ତକରେ ସବୁ ବିଷୟ ନ ଲେଖି ମୋର ଜୀବନୀକୁ କେତୋଟି ବିଭାଗରେ ବାଣ୍ଟି ଦେଇ ସବୁ ବିଭାଗ ଲାଗି ସ୍ୱତନ୍ତ୍ର ପୁସ୍ତକ ଲେଖିପାରିଥିଲେ ମୁଁ ବୋଧହୁଏ ବିଷୟଗୁଡ଼ିକ ଆହୁରି ବିସ୍ତୃତ ଭାବରେ ବର୍ଣ୍ଣନା କରିପାରିଥାଆନ୍ତି ଏବଂ ବହୁ ଉଲ୍ଲେଖଯୋଗ୍ୟ ଘଟଣା ଲିପିବଦ୍ଧ ହୋଇ ପାରିଥାଆନ୍ତା । ବିଶେଷଭାବରେ ସ୍ୱାଧୀନତା ସଂଗ୍ରାମରେ ମୋର ଯୋଗଦାନ, ସମାଜବାଦୀ ଆନ୍ଦୋଳନର କାର୍ଯ୍ୟ, ୧୮ ବର୍ଷର ପାର୍ଲିମେଣ୍ଟାରୀ ଜୀବନର ଅଭିଜ୍ଞତା ଓ ବିଦେଶ ଭ୍ରମଣ ସମ୍ବନ୍ଧରେ ସ୍ୱତନ୍ତ୍ର ପୁସ୍ତକ ହୋଇପାରିବ । ଦୀର୍ଘ ୫୨ ବର୍ଷର ରାଜନୀତିକ ଜୀବନରେ ବିଦେଶ ଓ ଆମ ଦେଶର ଯେତେ ପ୍ରତିଷ୍ଠାବାନ୍ ବ୍ୟକ୍ତିଙ୍କ ସଂସ୍ପର୍ଶରେ ମୁଁ ଆସିପାରିଛି ଏବଂ ସେମାନଙ୍କ ସହି କାର୍ଯ୍ୟ କରିବାର ସୁଯୋଗ ଲାଭକରିଛି, ସେଗୁଡ଼ିକ ବର୍ଣ୍ଣନା କରିପାରିଲେ ଓଡ଼ିଆ ଭାଷାରେ ଏକ ମୂଲ୍ୟବାନ୍ ଗ୍ରନ୍ଥ ହୋଇପାରନ୍ତା । ମାତ୍ର ଦୁଃଖର କଥା ଏହା କରିପାରିଲି ଭଳି ଧୈର୍ଯ୍ୟ ମୋର ନାହିଁ ଏବଂ ଆବଶ୍ୟକୀୟ ପୁସ୍ତକ ଓ କାଗଜପତ୍ର ମଧ୍ୟ ମୁଁ ରଖିପାରିନାହିଁ ।

କେବଳ ନିଜର ପୁରୁଣା ସ୍ମୃତି ଉପରେ ଭରସା ରଖି ଯେଉଁସବୁ କଥା ମନେପଡ଼ିଛି ଓ ମନେରହିଥିଲା, ତାହା ଯେତେ ସଂକ୍ଷିପ୍ତ ଆକାରରେ ସମ୍ଭବ ଲେଖାଯାଇଛି । ଅବଶ୍ୟ ଲେଖା ଆରମ୍ଭ କଲାବେଳେ କାମଟି ଯେତେ କଷ୍ଟକର ମନେହେଉଥିଲା, ଥରେ ନିର୍ଦ୍ଦିଷ୍ଟ

ଘଟଣା ବିଷୟରେ ପଢ଼ୁଥିଲାବେଳକୁ ବହୁ ଘଟଣା ସ୍ମରଣକୁ ଆସିଗଲା—କେତେକ ବିଷୟରେ କିଛି କାଗଜପତ୍ର ମଧ୍ୟ ସଂଗ୍ରହ କରିଥାଇଲି । ସେଗୁଡ଼ିକର ଯଥାସମ୍ଭବ ଉପଯୋଗ ପୁସ୍ତକରେ କରାଯାଇଛି ।

ଯେତେ ସଂକ୍ଷିପ୍ତ ବିବରଣ ହେଲେ ସୁଦ୍ଧା ମୋ ଜାଣିଥିବା ଜମ୍ବା ମୁଁ ପ୍ରତ୍ୟକ୍ଷଭାବରେ ସଂପୃକ୍ତ ଥିବା ଘଟଣାବଳୀ ସମ୍ବନ୍ଧରେ ଲେଖି ନଥିଲେ ସେଗୁଡ଼ିକ ଲୋକଲୋଚନ ଅଗୋଚରରେ ରହିଯାଇଥାନ୍ତା । ବନ୍ଧୁମାନେ ଏହି ଦିଗପ୍ରତି ଅଧିକ ଜୋର୍ ଦେବାରୁ ଏବଂ ଏକପ୍ରକାର ବାଧ୍ୟତାମୂଳକ ପରିସ୍ଥିତି ସୃଷ୍ଟି କରିବାରୁ, ମୁଁ କିଛି ଘଟଣା ଏଥିରେ ଲିପିବଦ୍ଧ କରିଛି; ମାତ୍ର ଏହି ପୁସ୍ତକ ସେମାନଙ୍କର ଇଚ୍ଛା ପୂରଣ କରିପାରିଛି କି ନା ତାହା ପାଠକମାନେ ସ୍ଥିରକରିବେ ।

ମୁଖ୍ୟତଃ ସ୍ମୃତି ଉପରେ ନିର୍ଭର କରି ଲେଖିଥିବାରୁ ବହୁ ଘଟଣା ଏକାଡ଼ସେକାଡ଼ ହୋଇଯାଇଥିବ ଏବଂ କେତେକ ବିଷୟ ଅସଂପୂର୍ଣ୍ଣ ଥିବ । କେତେକ ସାଥି, ବନ୍ଧୁ ଓ ସ୍ନେହୀଙ୍କ ନାମ ହୁଏତ ସଂପୃକ୍ତସ୍ଥାନରେ ଉଲ୍ଲେଖ ନହୋଇଥାଇପାରେ । ଏହା ମୋର ନିଜର ତ୍ରୁଟି ଏବଂ ତା'ର ସଂଶୋଧନ ସଂପୃକ୍ତ ବନ୍ଧୁମାନଙ୍କର ସହାନୁଭୂତି ପ୍ରାପ୍ତହେଲେ କରାଯାଇପାରିବ । ରାଜନୀତିକ ଘଟଣାବଳୀ ଓ ରାଜନୀତିକ ବ୍ୟକ୍ତିମାନଙ୍କ ସମ୍ପର୍କରେ ଯାହା ଲେଖାଯାଇଛି ବା ମନ୍ତବ୍ୟ ଦିଆଯାଇଛି, ତାହା ବ୍ୟକ୍ତିଗତ ଦୃଷ୍ଟିକୋଣରୁ ନୁହେଁ; ରାଜନୀତିକ ଦୃଷ୍ଟିରେ ଯାହା ଉଚିତ ବିଚାରିଛି, ଅପ୍ରିୟ ବୋଧହେଉଥିଲେ ସୁଦ୍ଧା ସତ୍ୟ ହୋଇଥିବାରୁ ନିର୍ଭୀକ ଭାବରେ ଖୋଲାମନରେ ଲେଖିଯାଇଛି । ମୋର ଜୀବନୀ ପୁସ୍ତକରେ ଯଦି ମୋ ମନକଥା ଖୋଲାଭାବରେ ଲେଖି ନ ପାରନ୍ତି, ଆଉ ଲେଖନ୍ତି କେବେ ଓ କେଉଁଠି ? ଅବଶ୍ୟ ଅନେକ କ୍ଷେତ୍ରରେ ଯଥାସମ୍ଭବ ସଂଯମ ରକ୍ଷାକରି ଘଟଣାକୁ ଭିନ୍ନ ଢଙ୍ଗରେ, କାହାରି ମନ ଊଣା ନହେବାଭଳି ବର୍ଣ୍ଣନା କରିବାଲାଗି ଚେଷ୍ଟା କରିଛି; ମାତ୍ର କୌଣସି ସତ୍ୟ ଘଟଣାକୁ ବାଦ୍ ଦେଇନାହିଁ ।

ମୋ ମତରେ ଆମେମାନେ ୧୯୩୪ ମସିହାରୁ ଦେଶରେ ଯେଉଁ ସୋସଲିଷ୍ଟ ଆନ୍ଦୋଳନ ଆରମ୍ଭ କରିଥିଲୁ ତାର ଅବସାନ ଘଟିଗଲା—ନୀତି, କାର୍ଯ୍ୟକ୍ରମ ଓ ଆଦର୍ଶଦୃଷ୍ଟିରୁ ୧୯୭୧ ମସିହାରେ । ବୁଲନ୍ଦସହରରେ ଯେଉଁ ମିଶ୍ରଣ ଘଟିଲା ଏବଂ ଯେଉଁସବୁ ନୀତି ଗୃହୀତ ହେଲା, ତଦ୍ୱାରେ ସୋସଲିଷ୍ଟ ପାର୍ଟିର ସମାଜବାଦୀ ଚରିତ୍ରର ପରିବର୍ତ୍ତନ ଘଟିଲା । ଯାହା ବା କେବଳ ନାମଧାରୀ ପାର୍ଟି ଭାବରେ ରହିଥିଲା, ଜନତା ପାର୍ଟିରେ ମିଶିଗଲା ପରେ ସଙ୍ଗଠିତ ସୋସଲିଷ୍ଟ ଆନ୍ଦୋଳନର ବିଲୟ ଘଟିଲା ।

ମୋ ସହିତ ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରିଥିବା ସାଥି, ବନ୍ଧୁ, ସହଯୋଗୀ ଓ ସ୍ନେହୀଙ୍କ ସମ୍ବନ୍ଧରେ ଆଉ ଟିକିଏ ଅଧିକ ବିବରଣ ଦେଇପାରିଥିଲେ ମୁଁ ଆନନ୍ଦ ପାଇଥାଆନ୍ତି ।

ପରିସ୍ଥିତିର ତାଡ଼ନାରେ ମତେ ସେଥିରୁ କ୍ଷାନ୍ତ ହେବାକୁ ପଡ଼ୁଛି । ସେଭଳି ସାଥିଙ୍କଠାରୁ କ୍ଷମାମାଗିନେଉଛି ।

ରାଜନୀତିକ ଜୀବନ ଲାଗି ମୁଁ ଦୁଃଖିତ ନୁହେଁ କିମ୍ବା ମୋ ମନରେ ନିରାଶା ବା ବିଷାଦ ଆସିନାହିଁ । ମୃତ୍ୟୁ ପର୍ଯ୍ୟନ୍ତ ନିଜର ସମସ୍ତ ସମୟ ସାଧାରଣ ସେବା କ୍ଷେତ୍ରରେ ଦେବାଭଳି ଶକ୍ତି ମୁଁ ଅର୍ଜନ କରିଛି ଏବଂ ଏବେ ମଧ୍ୟ ପ୍ରସ୍ତୁତ । ପାଠକମାନେ ସେହି ଦୃଷ୍ଟିରୁ ପୁସ୍ତକଟିର ବିଚାର କଲେ ଏବଂ ମୋର ଜୀବନୀ ଜଣେ ମାତ୍ର ବ୍ୟକ୍ତିକୁ ରାଜନୀତିରେ ଆଗ୍ରହୀ ହେବା ନିମନ୍ତେ ପ୍ରଭାବିତ କରିପାରିଲେ, ମୋର ଶ୍ରମ ସାର୍ଥକ ହେଲା ବୋଲି ବିଚାରିବି ।

ସୁରେନ୍ଦ୍ରନାଥ ଦ୍ୱିବେଦୀ
୧ । ୧ । ୧୯୮୬

ପୁନଶ୍ଚ : ଏହି ବହିର ପୃଷ୍ଠା ୬୯ରେ ଉଲ୍ଲିଖିତ ସୁଭାସ ମିଶ୍ର ପରିବର୍ତ୍ତେ ସୁଭଦ୍ର ମିଶ୍ର, ପୃଷ୍ଠା ୮୯ ଓ ୧୩୫ରେ ଉଲ୍ଲିଖିତ ନବଘନ ଜେନା ପରିବର୍ତ୍ତେ ନବଘନ ବେହେରା ଓ ପୃଷ୍ଠା ୧୫୧ରେ ଆସ୍ତ୍ରୀୟ ନରେନ୍ଦ୍ରଦେବ ପରିବର୍ତ୍ତେ 'ଡକ୍ଟର ରାମମନୋହର ଲୋହିଆ ଏହାର ସଭାପତି ହୋଇଥାନ୍ତି'—ପଢ଼ିବାକୁ ଅନୁରୋଧ ।

# ସୂଚୀପତ୍ର

□□□

# ମୋ ଜୀବନ ସଂଗ୍ରାମ

## ୧ । ଜନ୍ମ ଇତିବୃତ୍ତ

ଏକ ଅତି ନିପଟ ମଫସଲ ଗ୍ରାମର ଦରିଦ୍ର ପରିବାରରେ ଜାତ ବ୍ୟକ୍ତି ପକ୍ଷରେ ଆଧୁନିକ ଉନ୍ନତ ଜୀବନର ଗତି ସହ ପାଦ ମିଳାଇ ଚାଲିବା ମୁସ୍କିଲ୍ ହୋଇପାରେ—ମାତ୍ର ଅସାଧ୍ୟ ନୁହେଁ । ସଂସାରର ଗତି, ସ୍ଥିତି ଓ ପ୍ରଗତି, ତାର ନିର୍ମଳ ନିଷ୍କପଟ ମନକୁ ଯେପରି ଆହ୍ଲାଦିତ ଓ ଆଲୋଡ଼ିତ କରେ ଓ ନାନା ପ୍ରତିକ୍ରିୟା ସୃଷ୍ଟି କରେ, ତାହା ପ୍ରକାଶ କରିବା କିମ୍ବା ଲେଖିବା ଏତେ ସହଜ ନୁହେଁ । ମୋ ଜୀବନଟି ପ୍ରଧାନତଃ ଅର୍ଦ୍ଧଶତାବ୍ଦୀରୁ ବେଶୀକାଳ ଭାରତର ରାଜନୀତିକ ଜୀବନ ସହ ଓତଃପ୍ରୋତ ଭାବରେ ଜଡ଼ିତ । ତାହା ଯେପରି ଉତ୍ସାହଜନକ, ସେହିପରି ବିବାଦ ଓ ସଂଘର୍ଷମୂଳକ । କ୍ଷୁଦ୍ର ବୀଜ ଫଟାଇ ବିରାଟ ଦ୍ରୁମ ଛିଡ଼ାହୁଏ । କୀଟକାୟ ସ୍ୱଳ୍ପାକୃତି ପଦାର୍ଥ ଭିତରୁ ଅପାର ଶକ୍ତିସଂପନ୍ନ ବୃକ୍ଷ ଥରେ ମଥା ଟେକି ଉପରକୁ ଉଠିଲେ, ତାର ଶାଖାପ୍ରଶାଖା ବହୁଳପ୍ରସାରୀ ହୁଏ । ପ୍ରବଳ ବାତ୍ୟା ଓ ଝଡ଼ବତାସର ପ୍ରକୋପରେ ତାହା ଟିକିଏ ହୁଏତ ଦୋହଲିପାରେ—ମାତ୍ର ସଂଗ୍ରାମରୁ ଓହରି ଯାଇ ପାରେନା । ସଂଗ୍ରାମ ଏବଂ ସଂଘର୍ଷ ଭିତରେ ପ୍ରକୃତ ଆନନ୍ଦ ମିଳେ । ମୋର ଜନ୍ମ ହୋଇଥିଲା ଏକ କ୍ଷୁଦ୍ର ପରିସର ଭିତରେ ।

ମୋ ବୋଉ କହୁଥିଲା—ଆମ ଗାଁ ଘର ମାଟି ଦାଣ୍ଡପିଣ୍ଡାରେ ନାହାକ ଆସି ମୋର ଜନ୍ମଜାତକ ତିଆରି କରିବା ନିମନ୍ତେ ତଳେ ଖଡ଼ିରେ ଘର କାଟିଲା । ଗୋଟିଏ ଦୁଇଟି ଘରେ କିଛି ସାଧି ସଂଖ୍ୟା ଲେଖିସାରିଥିଲା । ଏହି ସମୟରେ ଏକ ତେନ୍ତୁଳିଆ ବିଛା ତା' ଉପର ଦେଇ ଚାଲିଗଲା । ନାହାକ ବୁଢ଼ା ଆନନ୍ଦରେ ଚିତ୍କାର କରି କହିଲା—"ଏ ପୁଅ ବିଶ୍ୱବିଜୟୀ ହେବ ।"

ଜାତକରେ ମୋର ବିଶ୍ୱାସ ନାହିଁ; କିନ୍ତୁ ମୁଁ ବିଶ୍ୱବିଜୟ କରେ ନ କରେ, ସାରା ବିଶ୍ୱରେ ପର୍ଯ୍ୟଟନ କରିସାରିଛି । ଉତ୍ତର ଓ ଦକ୍ଷିଣ ଆମେରିକା, ଜାପାନ, ଇଣ୍ଡୋନେସିଆ, ବ୍ରହ୍ମଦେଶ, ସିଂଗାପୁର, ହଙ୍ଗକଙ୍ଗ୍, ଇଉରୋପ ମହାଦେଶର ପ୍ରାୟ ସବୁ ଦେଶ, କମ୍ୟୁନିଷ୍ଟ ରାଷ୍ଟ୍ରଗୁଡ଼ିକ ଭିତରୁ କେବଳ ଯୁଗୋସ୍ଲାଭିଆ ଏବଂ ଇଂଲଣ୍ଡ, ଆରବ ଦେଶଗୁଡ଼ିକ ଓ ଇସ୍ରାଇଲ ଆଦିକୁ କୌଣସି ନା କୌଣସି କାର୍ଯ୍ୟ ସନ୍ଧାନରେ ଯିବାର ସୁଯୋଗ ଲାଭ କରିଛି ।

ଜାତକ କଥା ଏକପ୍ରକାର ସତ୍ୟ ହୋଇଛି । ମୋର ରାଶି କୁଆଡ଼େ ବୃଶ୍ଚିକ । ସେ ଜାତକ ନାହିଁ । ଆମ ଚାଳଘର ୧୯୪୫ ରେ ମୁଁ ଜେଲରେ ଥିବାବେଳେ ପୋଡ଼ିଯାଇଥିଲା, ତାହା ସହିତ ଜାତକ ବି ଯାଇଛି । ଜନ୍ମତାରିଖ ଠିକ୍ କି ଭୁଲ କହିବା ମୁସ୍କିଲ । ତେବେ ଜାଗର ପାଖାପାଖି ହୋଇଥିବାରୁ ୧୯୧୩ ମସିହା ଫେବୃୟାରୀ ୧୧ରେ ମୋର ଜନ୍ମ ବୋଲି ଧରିନିଆଯାଏ । ଯେତେବେଳେ ୧୯୫୨ ମସିହାରେ ମୁଁ ପ୍ରଥମେ ପାର୍ଲିମେଣ୍ଟକୁ ଗଲି, ସେଠାରେ ପାର୍ଲିମେଣ୍ଟ ତରଫରୁ ମେମ୍ବରମାନଙ୍କ ବିବରଣୀ ଦେଇ ପ୍ରକାଶ ପାଉଥିବା ବହିଲାଗି ଯେଉଁ ପ୍ରଶ୍ନାବଳୀ ମୋ ପାଖକୁ ଆସିଲା, ସେଥିରେ ଜନ୍ମ ତାରିଖ ଭରଣା କରିବାକୁ ପଡ଼ିଲା । ଦିଲ୍ଲୀରେ ପୁଣି ଆଉ କାହାକୁ ପଚାରନ୍ତି ? ମୁଁ ଏହି ତାରିଖଟି ଚଢ଼ାଇଦେଲି । ଶିକ୍ଷାଘରେ ବୋଧହୁଏ 'ସାକ୍ଷର' ବୋଲି ଲେଖିଲି—କାରଣ ମୁଁ ହାଇସ୍କୁଲ ପଢ଼ା ବି ଶେଷ ନକରି ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇଥିଲି ।

ମୋର ଜନ୍ମସ୍ଥାନ କଟକ ଜିଲ୍ଲାର ସାଲେପୁର ଥାନା ଖଣ୍ଡସାହି ଗ୍ରାମରେ । ଗ୍ରାମ୍ୟ ପରିବେଶରେ ମୁଁ ଲାଳିତ ପାଳିତ । ଅବଶ୍ୟ ବ୍ରାହ୍ମଣ-ପ୍ରଧାନ ଗ୍ରାମ; ମାତ୍ର ଅନ୍ୟ ସବୁ ଜାତି ଏପରିକି ମୁସଲମାନ ମଧ୍ୟ ସେହି ଗ୍ରାମରେ ରହିଛନ୍ତି । ବ୍ରାହ୍ମଣଙ୍କ ଭିତରେ ପୁଣି ଉଚ୍ଚ ନୀଚ ଭେଦ ରହିଛି । ସେବକାଳରେ କେତେକ ବ୍ରାହ୍ମଣଙ୍କ ଘରେ ନିଜକୁ ଅପେକ୍ଷାକୃତ ଉଚ୍ଚ ବୋଲି ବିଚାରୁଥିବା ବାହ୍ମଣେ ଅନ୍ନଭୋଜନ କରୁ ନଥିଲେ । ମୁଖ୍ୟତଃ ସମସ୍ତେ ଥିଲେ ଚାଷୀ । କେତେକ ଜମିଦାରବଂଶିଆ ଥିଲେ । କଟକ ଜିଲ୍ଲାର ଏକ ବଡ଼ ଜମିଦାର ଜଗନ୍ନାଥ ମିଶ୍ରଙ୍କର ଘର ସେଇଠି ଏବଂ ସେ ଥିଲେ ପ୍ରଚଣ୍ଡ ପ୍ରତିପତ୍ତିଶାଳୀ । ଗାଁ ଭିତରେ ଚାଲିଗଲାବେଳକୁ ସମସ୍ତେ ଠିଆହୋଇଯାଉଥିଲେ, ବାବୁଙ୍କୁ ମୁଣ୍ଡିଆ ମାରୁଥିଲେ । ତାଙ୍କ ଘରକୁ କୁହା ହେଉଥିଲା 'ବାବୁଘର' । ତାଙ୍କୁ ଗ୍ରାମବାସୀ ଭୟ କରୁଥିଲେ । ଆମେ ପିଲାମାନେ ବି ଖେଳୁଥିଲାବେଳେ ତାଙ୍କୁ ଦେଖି କେଉଁଆଡ଼େ ପଳାଉଥିଲୁ । ଦିନେ ଶୀତଦିନେ ଅତି ସକାଳୁ ଆମେ କେତେଜଣ ପିଲା ଗାଁ ଓସ୍ତଗଛ ମୂଳେ ବସି ଖରା ପୋଉଁଥିଲୁ । ଆମ ଅଜାଣତରେ ବାବୁ ଆସି ପହଞ୍ଚିଗଲେ । ଆମର ଯିବାକୁ ଠା' ନାହିଁ । ମୋ ଆଖିରେ ଅନ୍ଧପୁଟୁଳି ବାନ୍ଧି କହିଲେ ଖେଳ । ମୁଁ କୁଆଡ଼େ ଅନ୍ୟଙ୍କୁ ଖୋଜିଲାବେଳେ ବିଭିନ୍ନ ଅଙ୍ଗଭଙ୍ଗୀ, କୁଦାକୁଦି କରେ—ତାହା ଦେଖିବା ଲାଗି ସେ ଏପରି କଲେ ଏବଂ ଖୁସି ହୋଇଗଲେ । ମୋର ଭାରି ତାରିଫ୍ କଲେ । ସେଦିନ ଦେଖିବି କି ଚାଞ୍ଚଲ୍ୟ—ବାବୁ 'ସୁରିଆ'କୁ ସ୍ନେହକରୁଛନ୍ତି । ମୋର ବାପ ମାଆ, ବନ୍ଧୁବାନ୍ଧବ ଓ ଗ୍ରାମବାସୀ ମତେ ଏହି ନାମରେ ଡାକନ୍ତି । ଆଜି ବି । ମୋର ଏବେ ଗ୍ରାମ ସହିତ ସମ୍ପର୍କ ବହୁତ କମ୍ ।

ବାବୁବଂଶିଆଙ୍କ କଥା ଦୋସରା । ତାଙ୍କର ପ୍ରଜା ଥାଆନ୍ତି ଏବଂ ତାଙ୍କର ଏକ ଆଭିଜାତ୍ୟ ରହିଥାଏ । ମାତ୍ର ଅନ୍ୟ ବ୍ରାହ୍ମଣମାନେ ଅତି ଦରିଦ୍ର—ଗ୍ରାମର ଅନ୍ୟମାନଙ୍କ ପରି ଚାଷ ଭାଗବକରା କରି ଓ ମୂଲଲାଗି ପେଟ ପୋଷନ୍ତି । ଆମ ପରିବାରଟି ତହିଁ ଭିତରୁ

ଗୋଟିଏ । ସାମାନ୍ୟ କିଛି ଜମି—ମୋର ବାପା ଦ୍ୱାରିକାନାଥ ଦ୍ୱିବେଦୀ ଅନ୍ୟଗ୍ରାମରୁ ପୋଷ୍ୟପୁତ୍ର ହୋଇ ଆସିଥିବାରୁ ମୋ ଜେଜେବାପା ଶଙ୍କର ଦ୍ୱିବେଦୀ ଜମି ବାଣ୍ଟିଦେଇ ବାପାଙ୍କୁ ଦେଲେ ଛ'ପଣ ଏବଂ କକେଇଙ୍କୁ ଦେଲେ ଦଶପଣ । ବାପା ପୁଅ ହୋଇ ଆସିଲା ପରେ କକେଇଙ୍କର ଜନ୍ମ ହୋଇଥିଲା ଏବଂ ପାଳିତ ପୁତ୍ର ଓ ନିଜ ପୁତ୍ର ଭିତରେ ଏ ପାର୍ଥକ୍ୟ ରଖି ଜେଜେ ଜମି ବାଣ୍ଟିଗଲେ ଏବଂ ଆମ ଲାଗି ଅନ୍ୟ ସ୍ଥାନରେ ଗୋଟିଏ ଚାରି ବଖରା ମାଟି ଘରଘର କରିଦେଲେ । ତାହା ହିଁ ଥିଲା ଆମର ବାସସ୍ଥଳୀ । ସେ ଘର ପୁଣି ଆମ ଫଟାକପାଳକୁ ୧୯୪୫ରେ ପୋଡିଗଲା—ବାପା ଆଉ ଘର ତୋଳିବା ଲାଗି ସମର୍ଥ ନ ଥିଲେ—ଭାଇନା (ବଡଭାଇ) ସେତେବେଳକୁ ଡାକ୍ତର ହୋଇସାରିଥାଆନ୍ତି; ସେ କୌଣସି ପ୍ରକାରେ ମୁଣ୍ଡ ଗୁଞ୍ଜି ରହିବା ଲାଗି ଏଣୁତେଣୁ ଘର ତୋଳିଦେଲେ, ତାହା ଏବେ ସୁଦ୍ଧା ସେମିତି ଅବସ୍ଥାରେ ରହିଛି ।

ଆମର ଦାରିଦ୍ର୍ୟ ଯୋଗୁଁ ହେଉ ବା କାର୍ଯ୍ୟ ସଂକ୍ରାନ୍ତରେ ସମସ୍ତଙ୍କ ସହିତ ମିଳାମିଶା କରିବା ଓ ସଦ୍‌ଭାବ ରଖିବା ଲାଗି ହେଉ, ଆମ ପରିବାରର ଧୋବା, କଣ୍ଡରା, ଭଣ୍ଡାରୀ, ଗଉଡ, ପାଣ, କେଉଟ, ଗୁଡିଆ ଓ କେତେକ ଚଷା ଓ ମୁସଲମାନ ପରିବାର ସହ ଘନିଷ୍ଠତା ରହିଥିଲା । ସେମାନେ ବାପାଙ୍କୁ ସ୍ନେହ ଭକ୍ତି ଆଦର କରୁଥିଲେ—ଆମ ଭିତରେ ସେମାନଙ୍କ ସହ କାରବାର ହେଲାବେଳେ କୌଣସି ତଫାତ୍ ରହୁ ନଥିଲା । ଆମ ମନରେ ଉଚ୍ଚନୀଚ କିମ୍ବା ଜାତିଆଣିଭାବ ପ୍ରବେଶ କରି ନ ଥିଲା । ଆମେ ତାଙ୍କୁ ସବୁ ଅମୁକ ଭାଇ ବୋଲି ସମ୍ବୋଧନ କରୁଥିଲୁ । ସେମାନେ ଶ୍ରଦ୍ଧା କରି ଆମକୁ କାଖେଇ ନେଇଯାଉଥିଲେ ତାଙ୍କ ଘରକୁ । କାହାରି ଆପତ୍ତି ନ ଥିଲା । ଛୁଆଁ ଅଛୁଆଁ ଭାବ ରହିଥିଲେ ସୁଦ୍ଧା ଏପରି ସମ୍ପର୍କ ଯୋଗୁଁ ପିଲାଦିନୁ ଆମ ମନରେ ସେମାନଙ୍କ ପ୍ରତି ଘୃଣାଭାବ ରହିଲା ନାହିଁ ।

ଧନ ସମ୍ପତ୍ତି ସିନା ନ ଥିଲା ମାତ୍ର ଆମ ପରିବାରଟି ବଡ଼ । ଆମ ଭାଇଭଉଣୀ-ମାନଙ୍କ ମଧ୍ୟରେ ମୁଁ ହେଉଛି ଦ୍ୱିତୀୟ । ଆମେ ପାଞ୍ଚଭାଇ ଦୁଇ ଭଉଣୀ—ଡାକ୍ତର ଅଭିରାମ ଦ୍ୱିବେଦୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ ଧ୍ରୁବାନନ୍ଦ ଦ୍ୱିବେଦୀ, ଧୀରେନ୍ଦ୍ର ନାଥ ଦ୍ୱିବେଦୀ ଓ ନିରଞ୍ଜନ ଦ୍ୱିବେଦୀ—ଶ୍ରୀମତୀ ଶଶୀ ଦେବୀ ଓ ସୁଲୋଚନା ଦେବୀ । ମୋର ବୋଉର ନାମ ଲକ୍ଷ୍ମୀ ଦେବୀ—ସେ ହେଉଛି କଟକ ଟ୍ରେଡିଂ କମ୍ପାନୀର ପ୍ରତିଷ୍ଠାତା ପଣ୍ଡିତ ଆକୁଳ ମିଶ୍ର ଓ ଡାକ୍ତର କୁଳମଣି ମିଶ୍ରଙ୍କର ଭଉଣୀ । ମୋର ଏ ଦୁଇ ମାମୁଁ ମରିଗଲେଣି; ସେ ବି ଥିଲେ ତିନି ଭାଇ, ତିନି ଭଉଣୀ । ବୋଉ ୯୩ ଓ ବାପା ୯୭ ବର୍ଷ ବୟସରେ ଦେହତ୍ୟାଗ କଲେ । ୧୯୮୩ ଫେବୃୟାରୀକୁ ମୋର ୭୦ ପୂରିଗଲା । ମୋ ଭାଇନା ମୋ ଠାରୁ ଚାରି ବର୍ଷ ବଡ । ମୋର ସବା ସାନଭାଇ ନିରଞ୍ଜନ ଏବେ ପୁରୀ କଲେଜରେ ଅଛି । ସେ ମୋ ଅପେକ୍ଷା କୋଡ଼ିଏ ବର୍ଷରୁ ଅଧିକ ସାନ । ଆମେ ସବୁ ଅଣନାତି ଓ ଆମ ବାପାବୋଉ

ପଣନାତି ଦେଖିଛନ୍ତି । ବାପା ଯେଉଁ ପରିବାର ସୃଷ୍ଟି କରିଥିଲେ ତାଙ୍କ ଔରସରୁ ଯେତେକ ଜାତ ଏବଂ ସେମାନଙ୍କ ପିଲାପିଲି ଏବେ ଖାଉନ୍ତେ ହେଲେଣି । ସମସ୍ତେ ବି ଜୀବିତ ଅଛନ୍ତି । ଲୋକେ କହୁଛନ୍ତି ଏହା ବାପାବୋଉଙ୍କର ପୂର୍ବ ଅର୍ଜିତ ଧର୍ମର ଫଳ ।

ବାପା ଗୁହାଳୀରେ ସାମାନ୍ୟ ପାଠ ପଢ଼ିଥିଲେ; ବୋଉ କିନ୍ତୁ ନିରକ୍ଷର । ସେତେବେଳରେ ଝିଅ ପିଲାଙ୍କୁ ପାଠ ପଢ଼ିବା ବାରଣ ଥିଲା । ବୋଉର ଯେବେ ବିବାହ ହୁଏ ତାର ବୟସ ୭ ବର୍ଷ ଏବଂ ବାପାଙ୍କର ୧୦।୧୧ ବର୍ଷ । ହସ ଲାଗିବ ପଢ଼ି; କଣ୍ଢେଇ ବାହାଘର ପରି ମନେ ହେବ; ମାତ୍ର ସେତେବେଳେ ବାଲ୍ୟ ବିବାହପ୍ରଥା ଚାଲୁଥିଲା । ୧୯୨୭ ମସିହାରେ ସାରଦା ଆଇନ ପ୍ରଚଳନ ହୋଇ ବାଲ୍ୟବିବାହ ନିଷେଧ ହୋଇଛି; ବୟସ କଟକଣା ଆଜି ଟିକିଏ ବଢ଼ାଇ ଦିଆଯାଇଛି । ସାଧାରଣ ମଧ୍ୟବିତ୍ତ ଶିକ୍ଷିତ ଶ୍ରେଣୀ ଭିତରେ ୧୭।୧୮ ବର୍ଷରୁ କମ୍‌ରେ ଏଣିକି ଝିଅ ବିବାହ ହେଉନାହିଁ । ସେତେବେଳେ ତ ଝିଅ ଘରଯୋଗ୍ୟା ହୋଇ ଶାଶୁ ଘରକୁ ଗଲେ ଓଢ଼ଣା ତଳେ ଛପିରହୁଥିଲା ।

## ଖଣ୍ଡେ ଗେଞ୍ଜି ପିନ୍ଧିଲି :

ଆମ ବିଲରୁ ଯାହା ଧାନ ମୁଗ ଅମଳ ହୁଏ, ସେଥିରେ ଆମର ଏଡ଼େ ବଡ଼ ପରିବାରକୁ ଅଣ୍ଟେନାହିଁ । ଧାନ ମୁଗ ଛଡ଼ା କିଛି ନଳିତା ବି ହେଉଥିଲା । ଖଣ୍ଡେ ବିଲରେ କପା ହେଲା ପରି ମୋର ମନେପଡ଼ୁଛି । ସେହି ତୁଳାରେ ଏକ ମାଠ ତିଆରି ହୋଇ ଆମ ଘରକୁ ଯେଉଁଦିନ ଆସିଥିଲା ସେଦିନ କେତେ ଆନନ୍ଦ ! ଆୟ କିପରି ବଢ଼ାଇବେ ବାପାଙ୍କର ପ୍ରଧାନ ଚିନ୍ତା ହେଲା । ଗାଁରେ ବସା ପୂଜା ପାଳି ଗାଇ କମ୍ବା ଯଜ୍ଞାଳ ଓ ବିବାହ ବ୍ରତରେ କାହା ଘରେ ବୋଷେଇ କରି କିଛି କିଛି ପାଉଥିଲେ । ଶେଷକୁ ବାଧ୍ୟ ହୋଇ ଜମିତକ ଭାଗଲଗାଇଦେଇ ବାପା ରଙ୍ଗପୁର ଓ ମୁର୍ଶିଦାବାଦ ଆଡ଼କୁ ଗଲେ ରୋଜଗାର ପାଇଁ । ସେଠାରେ ମେସ୍‌ରେ ଓ ଅନ୍ୟାନ୍ୟ କାମ କରନ୍ତି । ଥରେ ଗୋଟିଏ ମେସ୍‌ରୁ ଛୁଟିରେ ଆସିଲାବେଳେ ପିଲାମାନଙ୍କ ପାଖରୁ ପୁରୁଣା କୁର୍ତ୍ତା ଓ ଲୁଗା ଆଦି ଆଣିଥିଲେ । ମୁଁ ସେତେବେଳକୁ ବୋଧହୁଏ ଜାମା ଆଦି ପିନ୍ଧିବାକୁ ପାଇନଥିଲି । ଏବେ ମନେପଡ଼ୁଛି, ବୋଉ ମତେ ଖଣ୍ଡେ ଗେଞ୍ଜି ସେଥିରୁ ପିନ୍ଧାଇ କହୁଥିଲା—ମୋ ପୁଅକୁ ଏଇଟି ଭାରି ଭଲ ମାନୁଛି ।

ଭାଇନାଙ୍କର ପଢ଼ାପଢ଼ିର ଦାୟିତ୍ୱ ବଡ଼ମାମୁଁ ପଣ୍ଡିତ ଆକୁଳ ମିଶ୍ର ନେଲେ । ସେ କଟକ ଆସିଲେ । କଟକ ଆସିବା ଗୋଟିଏ ବଡ଼ ଭାଗ୍ୟ ବୋଲି ଧରାଯାଉଥିଲା । ଆମ ଗାଁ କେନ୍ଦ୍ରାପଡ଼ା କେନାଲରେ ଷ୍ଟିମର ଗୁଲଥାଏ—ବସ୍ କମ୍ବା ଅନ୍ୟ କିଛି ପରିବହନ ନ ଥାଏ । କଟକ ରାମକୃଷ୍ଣ କଟେଜର ମାମୁଁ ଥିଲେ ତତ୍ତ୍ୱାବଧାରକ । ସେଇଠି ଭାଇନାଙ୍କୁ ରଖାଇ ପାଠ ପଢ଼ାଇଲେ । ରାମକୃଷ୍ଣ କୁଟୀରରେ ପ୍ରଥବର୍ଷ କଲିଭରୁ

ଉତ୍ସବ ହୁଏ । ସେଠିକି ଆସିବା ଲାଗି ଆମମାନଙ୍କର ଭାରି ମନ । କଟକ ଦେଖା ହେବ, କଲିକତାରୁ ଉତ୍ସବରେ ଯୋଗ ଦେବୁ । ଥରେ ଭାଇନା ଆସିଲେ, ଅଥଚ ମୋତେ ନେଲେ ନାହିଁ । ଏଥିଲାଗି ମୁଁ କାନ୍ଦି ଅଲକୂଳ ରଖି ଦେଲି ନାହିଁ । ବଡ଼ କଷ୍ଟରେ ମୋତେ ବୁଝାସୁଝା କଲେ । ମାମୁଁ ରାମକୃଷ୍ଣ ପରମହଂସଙ୍କ ସ୍ତ୍ରୀ ସାରଦାମଣିଙ୍କ ପାଖରୁ ଦୀକ୍ଷା ନେଇଥିଲେ । ତେଣୁ ସମସ୍ତେ ରାମକୃଷ୍ଣ ପରମହଂସଙ୍କ ଭକ୍ତ ପାଲଟିଥିଲୁ । ସ୍ୱାମୀ ବିବେକାନନ୍ଦଙ୍କୁ ପୂଜା ଭକ୍ତି କରୁଥିଲୁ । ମୁଁ ଧର୍ମବିଶ୍ୱାସୀ ନହେଲେ ବି ରାମକୃଷ୍ଣ ପରମହଂସଙ୍କ ବାଣୀ ମୋ ଉପରେ ଅଭୂତ ପ୍ରଭାବ ପକାଇଲା । ଏବେ ତାଙ୍କର ଶାନ୍ତପ୍ରସନ୍ନ ମୁଖ ଦେଖିଲେ ମୁଁ ପରମ ସନ୍ତୋଷ ଲାଭକରେ । ମୋର ଭୁବନେଶ୍ୱର ଘରେ ପ୍ରବେଶ ଦ୍ୱାରରେ ମୁଁ ତାଙ୍କ ଛବି ରଖିଛି । ତାହା ଧାର୍ମିକ କି ଆଧ୍ୟାତ୍ମିକ ପ୍ରଭାବ ମୁଁ ଆଜି ବି କହିପାରୁ ନାହିଁ । ତେବେ ତାଙ୍କର ଓ ବଡ଼ମାମୁଁଙ୍କର ଉଦାରତା ଗୁଣ ମୋ ମନକୁ ପ୍ରଭାବିତ କରିଛି—ସାଧୁ, ସଚ୍ଚୋଟ ଓ ନିର୍ମଳ ଜୀବନ ଓ ଆଚରଣ ମଣିଷର ଧର୍ମ ବୋଲି ମୁଁ ତାଙ୍କଠୁଁ ଶିଖିଛି ଏବଂ ମହାତ୍ମା ଗାନ୍ଧୀଙ୍କ ପ୍ରଭାବ ତାକୁ ଆହୁରି ଶକ୍ତିଶାଳୀ କରିଛି ।

ବାଲ୍ୟ ଜୀବନ ଗାଁରେ ବଡ଼ ଦୁଃଖ କଷ୍ଟ ଭିତରେ କଟିଛି; ମାତ୍ର ଆଜି ତାହା ଭାବି ଲେଖିଲାବେଳକୁ ଦୁଃଖୀ ଜୀବନ ବୋଲି ବିଚାରୁଛି । ସେତେବେଳେ କିନ୍ତୁ ମୁଁ କେବେ ଏହା ଦୁଃଖ ବୋଲି ବିଚାରି ନାହିଁ । ବାପା ବିଦେଶରେ, ଭାଇନା କଟକରେ, ଆମେ ଏତେଗୁଡ଼ିଏ ଭାଇ ଭଉଣୀ ବୋଉ ବେକରେ ବନ୍ଧା—ପିଲାଙ୍କ ଭିତରେ ମୁଁ ଥାଏ ବଡ଼ । ଗାଁ ପ୍ରାଇମେରୀ ସ୍କୁଲରେ ପଢୁଥାଏ । ଏଣେ ବୋଉକୁ ସବୁ କାମରେ ସାହାଯ୍ୟ କରେ । ଆମର ଗୋଟିଏ ଗ୍ରେଟ ନାଲିଆ ଗାଈ ଥାଏ । ତାପାଇଁ ଘାସ ଗୁଞ୍ଜି ଆଣେ । ବାଡ଼ିରେ ଶାଗ ପରିବା ଲଗାଏ, ସେଥିରେ ପାଣି ଦିଏ, ଏପରିକି ରାତିରେ ଚଣା ବିଲରେ କୁଡ଼ିଆ ଘରେ ଯାଇ ଜଗି ଶୁଏ । ଯେକାଳେ ସେଠି ଶୀତ ଦିନେ ପତର ଜାଳି ବିଲରେ ନିଆଁ ପୋଉଁ ଏବଂ ଚଣା ଛୁଇଁ ପୋଡ଼ି ଖାଉ । ସେ ଯେ କିଭଳି ଆନନ୍ଦ ଆଜି ଭାବି ହେବ ନାହିଁ । ସେହିପରି ମୁଁ ଧାନ କିଆରୀରେ ଧାନ କାଟିଛି ଏବଂ ଧାନ ଛିଣ ମୁଣ୍ଡରେ ବୋହିଥାଇ ଖଳ ଘରକୁ ଆଣିଛି । ଏହି ଅଭ୍ୟାସ ପିଲାଦିନେ ଥିବାରୁ ମତେ ଆଉ ଶ୍ରମ ମର୍ଯ୍ୟାଦା ଶିକ୍ଷାର ଆବଶ୍ୟକତା ପଡ଼ିନାହିଁ । ୧୯୩୭ ମସିହାରେ କଟକ ଜିଲ୍ଲାରେ ଦେବୀ ନଈର ଖଣ୍ଡେଇତା ଠାରେ ଯେଉଁ ବିଘାଟ ଘାଇ ହେଲା, ସେଥିରେ ରିଲିଫ ଚାଉଳ ବାଣ୍ଟିଲାବେଳେ ମୁଣ୍ଡରେ ଚାଉଳ ବସ୍ତା ଓ କୁଣ୍ଡାବସ୍ତା ନେଇଯିବାକୁ ମୁଁ କେବେହେଲେ ସମ୍ମାନହାନିକର କାର୍ଯ୍ୟ ବୋଲି ବିଚାରି କୁଣ୍ଠା ବୋଧ କରିନାହିଁ ।

## ଟାଙ୍ଗିଆ ମାଡ଼ ଦାଗ :

ଆମ ଅଞ୍ଚଳରେ ବଣ ଜଙ୍ଗଲ ନାହିଁ । ଜାଳେଣି କାଠର ବି ଅଭାବ । କାଉଁରିଆ ଘସି ଇତ୍ୟାଦିରେ ବୋଉ ରୋଷେଇ କରେ । ମାତ୍ର ଧାନ ଉଷୁମେଇଲା ବେଳକୁ ବାଉଁଶ- ବାଡ଼ିରୁ ପତ୍ର ଏବଂ ଶୁଖିଲା ନଡ଼ିଆ ପତର ଆଦି ଗୋଟାଇବାକୁ ପଡ଼େ—ତେଣୁ ଜାଳି

କେମିତି ସୁବିଧାରେ ମିଳିବ ଏଥିପ୍ରତି ଆମର ନଜର ଥାଏ । ଆମ ଗାଁ ଘରେ ପଢ଼ୁଶା ନନ୍ଦଘର ଓ ଆମର ଦୋସମାଳରେ ଏକ ଧଳାଙ୍ଗ କାଠ ଶୁଖିଥିଲା । ଧୋବା ତାଙ୍କ କାଠ ଚିରାଇବାକୁ ପଇସା ନ ଥିଲା । ତେଣୁ ଦୁଇଟି ଟାଙ୍ଗିଆ ଧରି ମୁଁ ଓ ଗଣେଶ୍ୱର ନନ୍ଦ ସାଙ୍ଗ ହୋଇ ସେ କାଠ ହାଣିବାକୁ ଆରମ୍ଭ କଲୁ । ପିଲା ମନତ—ମୁଁ କହିଲି, ମୁଁ ହୁଁ କହିଲେ ତୁମେ ଟାଙ୍ଗିଆ ମାରିବ ଏବଂ ତୁମେ ହୁଁ କହିଲେ ମୁଁ ଟାଙ୍ଗିଆ ମାରିବି । ଧୋବାମାନେ ଆମ ଆଡ଼େ ସେ କାଳରେ କାଠ ହାଣୁଥିଲେ । ସେମାନେ ହାଣିଲାବେଳେ ହୁଁ ହୁଁ କହନ୍ତି । ଆମେ ସେହି ଅନୁକରଣରେ ଏହି ପନ୍ଥା ବାହାର କଲୁ । ମାତ୍ର ମୋର ଦୁର୍ଭାଗ୍ୟ ଯେ ମୁଁ ଟାଙ୍ଗିଆ ବାହାର କରି ଆଣିବା ଆଗରୁ ହୁଁ କହିଦେଲି । ଟାଙ୍ଗିଆ ବାହାର କରିବାରେ ମୋ ହାତ ବ୍ୟସ୍ତ ଅଛି ଏପରି ସମୟରେ ଅନ୍ୟ ଟାଙ୍ଗିଆ ଆସି ଧସ୍ କରି ମୋ ହାତରେ ପଡ଼ିଗଲା । ବାଁ ହାତ ବୁଢ଼ା ଓ ବଣି ଆଙ୍ଗୁଠି ଭିତରେ ମୋର ଆଜି ପର୍ଯ୍ୟନ୍ତ ସେ ଟାଙ୍ଗିଆ ମାଡ଼ ଦାଗ ରହିଛି । ଆମେ ଏଥିଲାଗି କେହି କାହାରିକୁ ଦୋଷ ଦେଲୁନାହିଁ—କେମିତି ହାତ ଭଲ ହେବ ସେଥିପାଇଁ ବଣଲାଙ୍କରଣୀ ଆଦି ଲଗାଇ ଚେଷ୍ଟା କଲୁ । ଡାକ୍ତରୀ ଔଷଧ ଆମ ପକ୍ଷରେ ସ୍ୱପ୍ନ ଥିଲା । ସେହି ଗଣେଶ୍ୱର ନନ୍ଦ ଏବେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର୍ ଭାବରେ ଅବସର ଗ୍ରହଣ କରି ଭୁବନେଶ୍ୱରରେ ଘରଦ୍ୱାର କରି ରହିଲେଣି ।

## ବେଗଚର୍ :

ଖେଳକୁଦରେ ମୁଁ ଥିଲି ପ୍ରବୀଣ—ବାଗୁଡ଼ି ଡୁ ଡୁ ଖେଳଠାରୁ ଆରମ୍ଭ କରି ତାସ ଖେଳ ପର୍ଯ୍ୟନ୍ତ ସବୁଥିରେ ତତ୍ପର । ଏସବୁଥିରେ ମସ୍ତ ହୋଇ ପୁଣି ପାଠ କେତେବେଳେ ପଢ଼େ ଓ କେମିତି ଭଲ କରେ, ଏହା ଦେଖି ସାଙ୍ଗସାଥୀ ଆଶ୍ଚର୍ଯ୍ୟ ହୁଅନ୍ତି । ଆମ ପିଲାମାନଙ୍କୁ ମାଷ୍ଟ୍ରେ ଚାରି ଶ୍ରେଣୀରେ ବିଭକ୍ତ କରିଥାଆନ୍ତି ।

(୧) ବେଗବେଗା—ଯେ ଅଳ୍ପ ସମୟ ପଢ଼େ ଏବଂ ଶୀଘ୍ର ସବୁ ଭୁଲିଯାଏ ।
(୨) ଚିରବେଗା—ଯେ ବରାବର ପଢ଼ିବାରେ ବ୍ୟସ୍ତ, ମାତ୍ର ଭୁଲିଯାଏ ଶୀଘ୍ର ।
(୩ ଚିରଚର୍ ଥରେ ପଢ଼ିଲେ ଯେ ସବୁଦିନ ଲାଗି ମନେରଖେ ।
(୪) ବେଗଚର୍—ଯେ ଅଳ୍ପ ସମୟ ପଢ଼େ ମାତ୍ର ସବୁ ମନେରଖିପାରେ ।

ମୋତେ ବେଗଚର୍ ଶ୍ରେଣୀଭୁକ୍ତ କରାଯାଇଥିଲା । ହାଟ ସଉଦା କରିବାକୁ ପଡ଼େ । ଆମ ଗାଁ ପାଖରୁ ଏକକିଲୋମିଟର ଦୂରରେ ନଣ୍ଟିଆକୋଇଲି ହାଟ । ଆମ ଗଛ ନଡ଼ିଆ ଛଡ଼ାଇ ଟୋକେଇରେ ନେଇ ହାଟରେ ବିକ୍ରୀ କରେ ଏବଂ ବୋଉ ଯାହା ସବୁ ହାଟ ସଉଦା ତେଲ ଲୁଣ ବରାଦ କରେ, ତାହା ହାଟରୁ କିଣା ହୋଇ ଆସେ । ହାଟ ଛଡ଼ା ଅନ୍ୟ କୌଣସି ମାର୍କେଟର ବ୍ୟବସ୍ଥା ସେଠି ନ ଥିଲା ।

ଏସବୁ କାର୍ଯ୍ୟ କରି ମୁଁ କିନ୍ତୁ ରାତିରେ ଘରେ ନ ଶୋଇ ଯାଏ ମାମୁଁ ଘରକୁ । ଏକା ଗାଁଆରେ ଆମର ଘର । ମାମୁଁଙ୍କର ପୁଅ ହୋଇ ନ ଥାଆନ୍ତି; ତେଣୁ ଅଜା ଆଈଙ୍କର

ମୁ ହୋଇଥାଏ ଗେହ୍ଲା ନାତି । ରାତିରେ ଅଜାଙ୍କ ପାଖରେ ବାଲ୍ମୀକି ରାମାୟଣ ଓ ମହାଭାରତ ପାରାୟଣ କରେ । ରାମାୟଣ ମହାଭାରତ କାହାଣୀ ବୋଲିଲା ବେଳେ ଅଜା ହୁଅନ୍ତି ଭୋଳ । ମଝିରେ ମଝିରେ ମୋର ବୋଲିବାରେ ବାଧା ଦେଇ "ରାମ ସେ ରାମ ରାମ, ଯେଉଁ ନାମ ଧରିଲେ ନ ଦଣ୍ଡେ କାଳଯମ" ବୋଲି କହିପକାନ୍ତି । ମୁଁ କେତେ ମନେ ରଖେ ନ ରଖେ କହି ପାରିବି ନାହିଁ, ମାତ୍ର ଦିନେ କୌଣସି କାରଣରୁ ନ ବୋଲି ପାରିଲେ ଅସ୍ୱସ୍ତି ବୋଧକରେ । ତେଣେ ସଞ୍ଜ ହେଲେ ଯଦି ମାମୁଁ ଘରକୁ ଆସିବାରେ ଟିକିଏ ବିଳମ୍ବ ଘଟେ, ବୋଉ ତାଗିଦା କରେ—ରାମାୟଣ ବୋଲି ହେବ ପରା !

ବାଲ୍ୟଜୀବନ ଏପରି ପରିବେଶରେ ବିତିଛି । ଶୀତଦିନେ ଘୋଡ଼େଇ ହେବାକୁ କିଛି ନ ଥାଏ, ଯେଉଁ ହେସ ( ମୁନ୍ଦୁରିରେ ) ଧାନ ଶୁଖାଯାଏ, ତାକୁ ଘୋଡ଼େଇହେଉ—ଆଖି କାନରେ ଧୂଳି ଭର୍ତ୍ତି ହୋଇଯାଏ । ଏହା ଉତ୍କଟ ଦାରିଦ୍ର୍ୟ ବୋଲି କେବେହେଲେ ମନରେ ଭାବ ପଶି ନାହିଁ କିମ୍ବା କିଏ ଏହା ଅପେକ୍ଷା ଭଲ ଅବସ୍ଥାରେ ଅଛନ୍ତି ତାହା ଜାଣିବା ଲାଗି ଇଚ୍ଛା ହୋଇନାହିଁ । ଭଲ କିଛି ପିନ୍ଧିଥିଲେ ଈର୍ଷା ବି ହୁଏନା—ଅବଶ୍ୟ ନିଜ ଭାଇଭଉଣୀଙ୍କ କିଛି ଦେବାନେବାରେ ଉଣେଇଶ ବିଶ୍ ପାତର ଅନ୍ତର ଦେଖିଲେ ନିଜ ଭିତରେ କଜିଆ ଲାଗେ । ବାପା ତ ନୁହନ୍ତି, ବୋଉ ସାଙ୍ଗରେ ଲାଗିଯାଉ । ସେ ବୁଝାଇ ସମ୍ଭାଳେ । ଆମର ସବୁ ଦାଉ ସେ ସହେ । ବାପାଙ୍କୁ ତ ଡର ଥାଏ । ଆଜି ଲେଖିଲା ବେଳକୁ ଭାବୁଛି—ମୁଁ କେଡ଼େ ବାହାଦୁର—ଏପରି କଷ୍ଟ ଭିତରେ ବଢ଼ି ସୁଦ୍ଧା କେବେ ଏହା ଦୁଃଖୀ ଜୀବନ ବୋଲି କେମିତି ଅନୁଭବ କରିପାରୁ ନଥିଲି । ଏଇଟା ବୋଧହୁଏ ଆମ ସମାଜ ଓ ସଂସ୍କୃତିର ଭ୍ରମ—ତୁମକୁ ଭଗବାନ ଯେଉଁ କୁଳରେ ଜନ୍ମ ଦେଇଛନ୍ତି ଏବଂ ତୁମପାଇଁ ଯାହା ତେଣୁ ପନ୍ଥା ବ୍ୟବସ୍ଥା ହୋଇଛି, ସେଇଥିରେ ସନ୍ତୁଷ୍ଟ ହୋଇ ରହିବାହିଁ ଧର୍ମ । ଏହି ଅନ୍ଧବିଶ୍ୱାସ ହିଁ ଆମ ସମାଜର ଲକ୍ଷ ଲକ୍ଷ ଲୋକଙ୍କୁ ପତିତ କରି ରଖିଛି ।

### ମୋ ବ୍ରତଘର :

ପ୍ରାଇମେରୀ ସ୍କୁଲରୁ ଉତ୍ତୀର୍ଣ୍ଣ ହେବା ଆଗରୁ କ ୯ରେ ମୋର ବ୍ରତଘର ହେଲା, ଠିକ୍ ମନେନାହିଁ । ବ୍ରାହ୍ମଣ ଘରେ ପଇତା ପକାଇବା ଗୋଟାଏ ବଡ଼ ପର୍ବ—ସେହି ହିସାବରେ ମୋର ଉପନୟନ କର୍ମ ହେଲା । କାନ୍ଧରେ ପଇତା ପଡ଼ିଗଲା ପରେ ମୋର ସ୍ଥାନ ଟିକିଏ ଉନ୍ନତ ହେଲା । ଖାଲି ଆମ ଘର ଠାକୁର ନୁହେଁ, ସାଇପଡ଼ିଶା ଯାହାଙ୍କ ଘରେ କଦବା କେମିତି ଠାକୁର ଗାଧୋଇବା ନିମନ୍ତେ କେହି ନ ଥିଲେ ମତେ ଡକରା ଆସେ । ବେଳେ ବେଳେ ଆଖପାଖ ଗୁଡ଼ିଆ, କେଉଟଙ୍କ ଘରେ ପଣା ସଂକ୍ରାନ୍ତିରେ ଚଉରା ପୂଜା କରିବାକୁ ମତେ ପଠାଯାଏ ଏବଂ ସେଥିରୁ ଦି ପଇସା ଦକ୍ଷିଣା ମିଳେ । ବୋଉ ସେ ପଇସା ମୋଠୋଉଁ ନିଏ ନାହିଁ—ଆମେ ପିଲାମାନେ ସେଥିରେ ମୁଢ଼ି କିଣି ସୋରିଷ ତେଲ ଲୁଣ ଲଙ୍କା ମିଶାଇ ଖାଉ, ଭାରି ମଉଜ କରୁ । ତାହାଛଡ଼ା ବ୍ରାହ୍ମଣେତର ଘରେ

ଚୂଡ଼ା ଦହି ଖାଇବାର ଯୋଗ୍ୟତା ହାସଲ ହୋଇଗଲା ପଇତା ଯୋଗୁଁ । ସେଥିରେ ବି ମଝିରେ ମଝିରେ କିଛି ଦକ୍ଷିଣା ମିଳେ । ମୋଟାମୋଟି ଦ୍ୱିଜ ହୋଇ ପଇତା ପକାଇବାରେ ମୁଁ ଆଉ କିଛି ମହତ୍ତ୍ୱ ବୁଝି ପାରିଲି ନାହିଁ । ଠାକୁର ପୂଜା ଗାତମତ କରୁଥିଲି; ମାତ୍ର ତାହା ବିଧି ରକ୍ଷା କରିବା ଭଳି; ବିଶେଷ କିଛି ଠାକୁର ଭକ୍ତ ବନିଲି ଏପରି ନୁହେଁ । ତେବେ ପୂଜା ଆଦି କରିବାକୁ ପଡ଼ୁଥିବାରୁ ଶୌଚ, ଶୁଦ୍ଧି, ନିର୍ମଳ ରହିବାର ଏକ ଅଭ୍ୟାସ ଜାତ ହେଲା । ପୂଜା ଭିତରେ ଗଣେଶ ଓ ସରସ୍ୱତୀ ପୂଜା ଛଡ଼ା ଦୁର୍ଗାପୂଜା ଓ ଦଶହରା ମୋ ମନରେ ଗଭୀର ରେଖାପାତ କରିଥିଲା । ଆମ ମାମୁଁ ଘରେ ଦୁର୍ଗାପୂଜା ପ୍ରତିବର୍ଷ ହୁଏ; ଏବେ ବି ହେଉଛି । ମୋର ବଡ଼ ମାମୁଁ ପଣ୍ଡିତ ଆକୁଳ ମିଶ୍ର କଟକରୁ ଯାଆନ୍ତି ଚଣ୍ଡୀପାଠ କରିବା ନିମନ୍ତେ—ସଂସ୍କୃତ ଚଣ୍ଡୀ । ମାତ୍ର ଏପରି ପାଠ କରାଯାଏ ଯେ ମନ ତନ୍ମୟ ହୋଇଯାଏ—ମୁଁ ବସି ସବୁ ଶୁଣେ; ମତେ ଭାରି ଭଲଲାଗେ । ବେଶି ମନକୁ ପାଏ ପଦଟି "ଯାଦେବୀ ସର୍ବ ଭୂତେଷୁ, ଶକ୍ତିରୂପେଣ ସଂସ୍ଥିତା ।" ଦେବୀଙ୍କର ଏହି ଶକ୍ତି ରୂପଟି ମତେ ଆକୃଷ୍ଟ କରିଥାଏ । ୧୯୪୨ର "କର ବା ମର" ସଂଗ୍ରାମରେ ମୁଁ ଆତ୍ମଗୋପନରେ ରହି ଯେଉଁ ସବୁ ବୁଲେଟିନ୍ ବାହାର କରୁଥିଲି, ସେଥିରୁ ଗୋଟିଏ ଥିଲା—"ଦେବୀ ଆରାଧନା" । ଦେବୀଙ୍କ ଏହି ଶକ୍ତିସ୍ୱରୂପିଣୀ ରୂପ ବର୍ଣ୍ଣନାକରି ମୁଁ ଦେଶବାସୀଙ୍କି ଡାକରା ଦେଇଥିଲି ଯେ ଦେଶମାତୃକା ଦେବୀରୂପରେ ଚାହୁଁଛି ରକ୍ତ—ଦେଶର ମୁକ୍ତି ଲାଗି ଲାଲ ଶୋଣିତ ଭସାଇଦିଅ । ଏହି ବୁଲେଟିନ୍ ଯୋଗୁଁ ମତେ କଠିନ କାରାଦଣ୍ଡ ଭୋଗ କରିବାକୁ ପଡ଼ିଥିଲା । ଧର୍ମ ଓ ଭଗବାନ ପ୍ରତି ମୋର ନିରପେକ୍ଷ ଭାବ ଥିଲେ ସୁଦ୍ଧା ପ୍ରତିବର୍ଷ ମୁଁ ଆମ ଘରକୁ ନଯାଇପାରିଲେ ରେଡ଼ିଓରୁ ଚଣ୍ଡୀପାଠ ବରାବର ଶୁଣେ—ଏତିକି ଯାହା ମୋର ଧର୍ମ ଚର୍ଚ୍ଚା ବା ଭଗବାନ୍ ଚିନ୍ତା । କିନ୍ତୁ ଘଟଣାଚକ୍ରରେ ଭାରତବର୍ଷର ସମସ୍ତ ବଡ଼ ଦେବ ଦେବୀ ମନ୍ଦିର—ସବୁ ଧର୍ମର—ମୁଁ ଦେଖିଛି । ନିଜ ଚେଷ୍ଟାରେ ନୁହେଁ—ପ୍ରାୟ ସବୁ ବଡ଼ ସ୍ଥାନକୁ ରାଜନୀତିକ କାର୍ଯ୍ୟରେ ଯାଇଛି ଏବଂ ସେଠା ଲୋକେ ଧର୍ମମନ୍ଦିର ଦର୍ଶନ ଅବଶ୍ୟ କରାନ୍ତି । ଏପରିକି କର୍ଣ୍ଣାଟକର ଗୋମତେଶ୍ୱର, ଶ୍ରବଣବେଲଗୋଲା ଜୈନ ମନ୍ଦିରକୁ ୪ ଶହରୁ ଉପର ପାହାଚ ଚଢ଼ି ଚଢ଼ି ଯାଇଛି । ପଣ୍ଡିଚେରୀରେ ତାମିଲନାଡ଼ୁ ପାଖ ଅଞ୍ଚଳକୁ ଲାଗି ଯେଉଁ ଶନି ମନ୍ଦିର ଅଛି, ସେଠି ମୋ ଲାଗି ଏକ ବିଶେଷ ପୂଜାର ଆୟୋଜନ କରାଯାଇ ଅଭ୍ୟର୍ଥନା କରାଯାଇଥିଲା । ବର୍ମାର **Peace Pagoda** (ଶାନ୍ତି ସ୍ତୂପ) ଏବଂ ଅମୃତସରର **Golden Temple** (ସ୍ୱର୍ଣ୍ଣମନ୍ଦିର)ରେ ବିଶେଷ ସମ୍ମାନ କରାହୋଇଥିଲା । ଏ ସବୁ ସତ୍ତ୍ୱେ ମୁଁ କୌଣସି ଧର୍ମ ବା ଧର୍ମାନୁଷ୍ଠାନ ପ୍ରତି ଆକୃଷ୍ଟ ନୁହେଁ; ଯେତେ ଭେକଧାରୀ ବାବା ସବୁ ଆଜିକାଲି ବାହାରୁଛନ୍ତି, ସେମାନଙ୍କ ପ୍ରତି ମୋର ଘୃଣା—ସେମାନେ ଐଶ୍ୱରିକ ଶକ୍ତି ସମ୍ପନ୍ନ ବୋଲି ମୁଁ ଆଦୌ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ । ଏ ବିଷୟରେ ଆମ ପରିବାର ଭିତରେ ମୁଁ ବୋଧହୁଏ ଏକୁଟିଆ । ବ୍ରାହ୍ମଣ ପରିବାରରେ ସାଧାରଣତଃ ଯାହା ଦେଖାଯାଏ, ନୈଷ୍ଠିକ ଧର୍ମବିଶ୍ୱାସ ରହିଥାଏ—ଆମ ପରିବାରରେ ସେମିତି ଅକ୍ଷୁଣ୍ଣ ରହିଛି । ଏପରିକି ମୋର ଝିଅ, ଗ୍ରେଟ ନାତି ନାତୁଣୀ ଏପରି ଏ ସଂସ୍କାରରେ ପଡ଼ି ଯାଇଛନ୍ତି ଯେ ଗାଧୋଇ ସାରି



ପିତା ସ୍ୱର୍ଗତ ମାଗୁଣି ଦ୍ୱିବେଦୀ



ମାତା ସ୍ୱର୍ଗତା ଲକ୍ଷ୍ମୀଦେବୀ



ମାମୁ ସ୍ୱର୍ଗତ ପଣ୍ଡିତ ଆକୁଳ ମିଶ୍ର



[ ଦ୍ୱିବେଦୀଙ୍କର ଭାଇ ଓ ଭଉଣୀ ]

ଠିଆହୋଇଛନ୍ତି—ନିରଞ୍ଜନ ଦ୍ୱିବେଦୀ, ସୁଲୋଚନା, ଧୀରେନ୍ଦ୍ରନାଥ ଦ୍ୱିବେଦୀ
ବସିଛନ୍ତି—ଧ୍ରୁବାନନ୍ଦ ଦ୍ୱିବେଦୀ, ଶଶୀ ଦେବୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଅଭିରାମ ଦ୍ୱିବେଦୀ

ଠାକୁରଙ୍କୁ ମୁଣ୍ଡିଆ ନ ମାରିଲେ କିମ୍ବା ଅନ୍ତତଃ ଉପରକୁ ଚାହିଁ ସୂର୍ଯ୍ୟଙ୍କୁ ନମସ୍କାର ନ କରି ଖାଇବାକୁ ବସନ୍ତି ନାହିଁ ।

ମୁଁ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଲି ପରେ ଜାତି ବାରଣ ମାନିବି ନାହିଁ ବୋଲି ଏବଂ ବ୍ରାହ୍ମଣ ବୋଲି ମୋତେ କେହି ଆଉ ମନେ କରନ୍ତୁ ନାହିଁ ବୋଲି ପଇତା ଫିଙ୍ଗିଦେଲି । ବହୁକାଳରୁ ୧୯୩୨।୩୩ ମସିହାରୁ ତଥାପି ବ୍ରାହ୍ମଣସମାଜ ମତେ ଫିଙ୍ଗି ଦେଇନାହିଁ କିମ୍ବା ମୁଁ ବ୍ରାହ୍ମଣ ନୁହେଁ ବୋଲି କେହି ଭୁଲରେ ସୁଦ୍ଧା ଭାବନ୍ତି ନାହିଁ । ପଇତା ନ ଥିବା ଯୋଗୁଁ ବିବାହ ବେଦୀରେ କିଛି ଅସୁବିଧା ହେଲାନାହିଁ ।

## ପଇତା ନଥାଇ ବିବାହ :

ମୁଁ ଶପଥ ନେଇଥିଲି ଦେଶ ସ୍ୱାଧୀନ ନ ହେବା ପର୍ଯ୍ୟନ୍ତ ବିବାହ କରିବି ନାହିଁ । ଦେଶ ସ୍ୱାଧୀନ ହୋଇ ମୋର ବିବାହ ହେଲାବେଳକୁ ମୁଁ ଏକ ସମାଜବାଦୀ ନେତା । ମୋ ସଂଜ୍ଞା ଅନୁସାରେ ସମାଜବାଦରେ ଧର୍ମ ବା ଜାତିର ସ୍ଥାନ ନାହିଁ; ତେଣୁ ହିନ୍ଦୁ ମତରେ ବିବାହ ନ କରି ରେଜିଷ୍ଟ୍ରୀ ବିବାହ ନିମନ୍ତେ ମୁଁ ଜିଦ୍ ଧରିଲି । ବିବାହ ପଛକେ ନ ହେବ ମୁଁ ଆଉଥରେ ପଇତା ପକାଇବି ନାହିଁ । ମୋ ସ୍ତ୍ରୀ ଗାୟତ୍ରୀ ଗୁରୁକୁଳ କାଙ୍ଗ୍ରୀ ଆର୍ଯ୍ୟକନ୍ୟା ମହାବିଦ୍ୟାଳୟରୁ ସଂସ୍କୃତରେ "ବିଦ୍ୟାଳଙ୍କୃତା" ଉପାଧି ଲାଭକରିଥାଏ । ସେ କହିଲି— ବେଦୀରେ ହୋମ ଇତ୍ୟାଦି ସେ କରିବ—ମାତ୍ର ବୈଦିକ ରୀତିରେ ବିବାହ କରାଯିବ । ମହା ସଙ୍କଟ ଉପୁଜିଲି । ମୋର ମାମୁଁ ଓ ବାପା ଆଦି ମୁଁ ଏତେଦିନେ ବିବାହ କରିବାକୁ ସମ୍ମତ ହୋଇଥିବାରୁ ବଡ଼ ଉତ୍କଣ୍ଠିତ ବିବାହ ଦେବା ନିମନ୍ତେ । ଏଣେ ଏପରି ଏକ ଜଞ୍ଜାଳ ଆସି ଉପୁଜିଲି । ଶେଷକୁ ବିଷୟଟି ମୁକ୍ତିମଣ୍ଡପ ପର୍ଯ୍ୟନ୍ତ ଗଲା ନିର୍ଦ୍ଦେଶ ପାଇବା ଲାଗି । ଏ ସମ୍ପର୍କରେ ମୋ ସ୍ତ୍ରୀ (ସେତେବେଳକୁ ଗାୟତ୍ରୀ ପଣ୍ଡା, ବିଦ୍ୟାଳଙ୍କୃତା) କଣ ସବୁ ଲେଖିଲା ଏବଂ ପଣ୍ଡିତ ଆକୁଳ ମିଶ୍ର ମଧ୍ୟ ଶାସ୍ତ୍ରୋଦ୍ଧାର କରି ଲେଖି ପଠାଇଲେ । ଏକ ସଂଶୋଧିତ ବିବାହ କର୍ମ ବେଦୀରେ କରାଯିବାର ନିର୍ଦ୍ଦେଶ ଆସିଲା । ମୁଁ ପଇତା ନ ଥାଇ ବ୍ରାହ୍ମଣ ରିତି ବିବାହ କଲି ଏବଂ ମୋ ସ୍ତ୍ରୀ ବେଦୀରେ ହୋମ ଇତ୍ୟାଦି କର୍ମ କଲା । ମୋର ପୁଣି ଆଉ ପଇତା ପକାଇବାର ଆବଶ୍ୟକତା ପଡ଼ିଲା ନାହିଁ । ଚିହ୍ନା ବ୍ରାହ୍ମଣରେ ପଇତା କି ଲୋଡ଼ା !

ଦ୍ୱିବେଦୀ ସାଙ୍ଗିଆ ଯୋଗୁଁ ମୁଁ ଗୃହଆଡ଼େ ବ୍ରାହ୍ମଣ ଭାବରେ ପରିଚିତ । ଏଥିରେ ଯେତିକି ସୁବିଧା, ତଦୁପରି ଅସୁବିଧା ମଧ୍ୟ ଭୋଗ କରିବାକୁ ପଡ଼େ । ଦକ୍ଷିଣ ଓ ଉତ୍ତର ଭାରତରେ ମୁଁ ଯେଉଁଠିକି ଯାଏ, ମତେ ନ ଜାଣିଥିବା ଲୋକେ କୌଣସି ନୈଷ୍ଠିକ ବ୍ରାହ୍ମଣ ଘରେ ଅତିଥି କରି ରଖନ୍ତି—ମୁଁ ଯେପରି ନିରାମିଷ ଖାଦ୍ୟ ପାଏ ସେଥିଲାଗି । ମୁଁ ଦୁଇଓଳା କୌଣସି ପ୍ରକାର ପାର ହେଲା ପରେ ଅସ୍ଥିର ହୁଏ—ମନର ଭାବ ପ୍ରକାଶ କରେ । ସେମାନେ ବିସ୍ମିତ ହୁଅନ୍ତି—କାରଣ ଦକ୍ଷିଣ ଓ ଉତ୍ତରଭାରତରେ ବ୍ରାହ୍ମଣ

ମାଛ ମାଂସ ଖାଇବା ଏକପ୍ରକାର ସ୍ୱପ୍ନ । କେବଳ ମହାରାଷ୍ଟ୍ରର ଏକ ଜାତି ବ୍ରାହ୍ମଣ—ଚିତ୍ପାବନ କି ସାରସ୍ୱତ ମୋର ଠିକ୍ ମନେ ନାହିଁ—ଆମିଷ ଖାଆନ୍ତି; ଅନ୍ୟମାନେ ଛୁଅନ୍ତି ନାହିଁ । ଆମ ଓଡ଼ିଶାରେ ଆଇଁଷ ହୋଇ ନାହିଁ ବୋଲି ଜାଣିଲେ ବ୍ରାହ୍ମଣେ ଯେ ବିବାହ ଆଦି ଉତ୍ସବରେ ଆସିବାଲାଗି ଆଗ୍ରହ ଦେଖାନ୍ତି ନାହିଁ ଜାଣି ସେମାନଙ୍କୁ ତାଟକା ଲାଗେ । ଦେଶକେ ଫାଙ୍କ୍, ନଈକେ ବାଙ୍କ୍ । ଆମର ବିଶ୍ୱନାଥ ଦାସ ଉତ୍ତରପ୍ରଦେଶର ଗଭର୍ଣ୍ଣର ଥାଆନ୍ତି । ମୁଁ ଲକ୍ଷ୍ନୌ ଯାଇଥାଏ । ସେ ମୋତେ ରାତ୍ରଭୋଜନ ଲାଗି ନିମନ୍ତ୍ରଣ କଲେ । ତାଙ୍କ ରାଜଭବନରେ ମୁଁ, ବିଶ୍ୱନାଥ ଦାସ ଓ ଭି. ଭି. ଗିରି ଏକତ୍ର ବସି ଆଳାପ କରୁଛୁ, ଏହି ସମୟରେ ଉତ୍ତରପ୍ରଦେଶର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଚନ୍ଦ୍ରଭାନୁ ଗୁପ୍ତାଙ୍କର ପ୍ରବେଶ ହେଲା । ଭି. ଭି. ଗିରି ତାଙ୍କୁ ସମ୍ବୋଧନ କରି ତାଙ୍କର ଚିରାଚରିତ ବଡ଼ପାଟିରେ କହିଲେ—ଗିରି-ଦ୍ୱିବେଦୀ-ବିଶ୍ୱନାଥ ଦାସ—ଆମେ ତିନିହେଁ ହେଲୁ ଓଡ଼ିଆ ବ୍ରାହ୍ମଣ । ଭାରି ଚହଳ ପଡ଼ିଗଲା ହଲ୍‌ରେ । ତା'ପରେ ଗୁପ୍ତା ମତେ ଏକାନ୍ତକୁ ଡାକିନେଇ କହିଲେ, "ହଇହେ ! ଏ ବିଶ୍ୱନାଥ ଦାସ କଣ ବ୍ରାହ୍ମଣ ? ଏଡ଼େ ବଡ଼ ମାଳା ଲଗାଇଛନ୍ତି; ଆଉ ଏଣେ ଦେଖ କେଡ଼େ କେଡ଼େ ବଡ଼ ମାଛ ଖାଉଛନ୍ତି !" ଗୁପ୍ତା କେମିତି ଜାଣିବେ ଯେ ଓଡ଼ିଆ ବ୍ରାହ୍ମଣେ ମାଛ ଖାଆନ୍ତି ! ବଙ୍ଗାଳୀ ମାଛ ଲାଗି ପ୍ରସିଦ୍ଧି ଲାଭ କରିଥିଲେ ସୁଦ୍ଧା ପୁରୀ ବ୍ରାହ୍ମଣ ଶାସନରେ ଯେତେ କିସମର ଯେମିତି ସୁଆଦ ମାଛ ରନ୍ଧାହୋଇପାରେ, ବଙ୍ଗାଳୀ ମୋଟେ ତା' ପାସଙ୍ଗରେ ସୁଦ୍ଧା ପଡ଼ିବେ ନାହିଁ ।

ଉତ୍ତର ଭାରତରେ ବ୍ରାହ୍ମଣଙ୍କର ଚାଲିଚଳଣି ସହିତ ଆମ ଓଡ଼ିଶାର ବ୍ରାହ୍ମଣମାନଙ୍କର କୌଣସି ସାମଞ୍ଜସ୍ୟ ଥିଲାପରି ମନେହୁଏନା । କୁହାଯାଏ, ପୁରୀରେ ଜଗନ୍ନାଥ ମନ୍ଦିର ସକାଶେ ଉତ୍ତର ଭାରତରୁ ବ୍ରାହ୍ମଣ ଅଣାଯାଇ ଶାସନ ସ୍ଥାପିତ ହୋଇଥିଲା; କିନ୍ତୁ ମାଛଖିଆ ମାଛରନ୍ଧା ତ ସେଠା ରୀତିନୀତି ନୁହେଁ ! ଆମ ଗାଁରେ ଦ୍ୱିବେଦୀ କୁଟୁମ୍ବ ମୋଟେ ୫।୭ ଘର । ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ମିଶାଇଲେ ସଂଖ୍ୟା ବେଶି ହେବ ନାହିଁ । ମୁଁ ଯେତେ ଚେଷ୍ଟା କରିଛି, ଏ ଦ୍ୱିବେଦୀ ଓଡ଼ିଶାକୁ କେଉଁଠୁ ଆମଦାନୀ ହୋଇଥିଲେ ଜାଣିବାଲାଗି କିଛି ସନ୍ଧାନ ପାଇପାରିନାହିଁ । ମୁଁ ଯେତେବେଳେ ଭାରତ ରାଜନୀତିରେ ଟିକିଏ ଖ୍ୟାତି ଲଭିଲି ଏବଂ ପାର୍ଲିଆମେଣ୍ଟ ବିବରଣୀରେ ମୋ ନାମ ଘନ ଘନ ପ୍ରକାଶ ପାଇଲା, କେହି ବିଶ୍ୱାସ କଲେନାହିଁ ଯେ ମୁଁ ଓଡ଼ିଶାର ଲୋକ ବୋଲି । ପରେ ଅବଶ୍ୟ ରାଜନୀତି ମହଲରେ ସେପରି ସନ୍ଦେହ ରହିଲା ନାହିଁ । ମାତ୍ର ଏବେ ବି ସାଧାରଣ ଭାବରେ ବହୁଲୋକ ମୁଁ ଉତ୍ତର ପ୍ରଦେଶ, ବିହାର ବା ମଧ୍ୟପ୍ରଦେଶର ହୋଇଥିବି ବୋଲି ଅନୁମାନ କରନ୍ତି । କିଏବା କେମିତି କେଉଁଠି ଭେଟ ହେଲେ କହନ୍ତି । ହେଇ, ସେଦିନ ଓଡ଼ିଶା ଗଭର୍ଣ୍ଣରଙ୍କ ନୂତନ ଏ.ଡି.ସି.ଙ୍କ ସହିତ ଦେଖାହେଲା । ସେ କହିଲେ-ସ୍କୁଲରେ ପଢ଼ିଲାବେଳୁ ମୋ ନାମ ଶୁଣିଛନ୍ତି ଭାରତର ଜଣେ ନେତୃସ୍ଥାନୀୟ ଲୋକରୂପେ, ମାତ୍ର ମୁଁ ଓଡ଼ିଶାର ଲୋକ ବୋଲି ଆଜି ଜାଣିଲେ !

୧୯୭୧ ମସିହାରେ ପ୍ରଜାସୋସଲିଷ୍ଟ ପାର୍ଟିର କାର୍ଯ୍ୟ ସମ୍ବନ୍ଧରେ ମୁଁ ଉତ୍ତର ପ୍ରଦେଶର ସୁଲତାନପୁର ଜିଲ୍ଲାକୁ ଯାଇଥାଏ । ଏକ ସଭା ହେଲା ଏକ ଗ୍ରାମରେ । ସଭା ଶେଷରେ ସଂଗଠକ ମତେ ପାଖରେ ଥିବା ଏକ ବଡ଼ ଗ୍ରାମକୁ ନେଇଗଲେ । ସେ ଗ୍ରାମଟିରେ ଥାଆନ୍ତି ଖାଲି ଧ୍ୱଜି ବେଶୀ । ଜଣେ ୮୫ ବର୍ଷ ବୟସ୍କ ବୃଦ୍ଧ ମୋତେ ଆଲିଙ୍ଗନ କରି ଫୁଲହାର ଦେଇ କହିଲେ—"ହାମାରି ବଚ୍ଚା, କହାଁ ଯାକେ ରହା ହୈ ।"

## ଆମ ଗାଁ ଖଣ୍ଡସାହି :

ଯେଉଁଠାକୁ ଯାହା କଥା ସୁନ୍ଦର—ସେହି ହିସାବରେ ଆମ ଗାଁ ଖଣ୍ଡସାହିର ଅବସ୍ଥିତି ବଡ଼ ସୁବିଧାଜନକ । କଟକରୁ ୨୩ ମାଇଲ ଏବଂ ସେଠୁ କେନ୍ଦ୍ରାପଡ଼ା ସହର ପ୍ରାୟ ୧୨ ମାଇଲ—କଟକ ସଦର ଓ କେନ୍ଦ୍ରାପଡ଼ା ସବ୍‌ଡିଭିଜନର ଆମ ଗାଁ ଦୋସମାଳ କହିଲେ ଚଳେ । କେନ୍ଦ୍ରାପଡ଼ା କେନାଲ କୂଳରେ ଆମର ଘର—ସାରି ଗ୍ରାମଟି ଦୀର୍ଘ ହୋଇ କେନାଲ କୂଳେ କୂଳେ ରହିଛି । ଓଡ଼ିଶାର କୌଣସି ପଲ୍ଲୀ କିଛି ସଂଗଠିତ ଯୋଜନା ଅନୁସାରେ ଗଢି ଉଠିନାହିଁ—ଯାହା ହୁଏ ସ୍ୱାଭାବିକ ଧାରାରେ । ସେମିତି ଏହି ଗାଁଟି—ତେବେ ଆଗର ସଂସ୍କାର ଯୋଗୁଁ ହେଉ ବା ଅନ୍ୟ କାରଣରୁ ହେଉ, ବ୍ରାହ୍ମଣଘରମାନ ପ୍ରାୟ ପାଖାପାଖି—ମଝିରେ ମଝିରେ ଅଟାଗ୍ରି, କେଉଟ, ଗଉଡ଼, ମାଳୀ, ଭଣ୍ଡାରି ଆଦି ରହିଛନ୍ତି । ମାତ୍ର ହରିଜନ ଓ ପଠାଣସାହି ଟିକିଏ ଦୂର—ଅଲଗା ଅଲଗା ବସ୍ତି । ଏବେ ଅବଶ୍ୟ ଗ୍ରାମର ଏପରି ପ୍ରସାର ହୋଇଗଲାଣି ଯେ ହରିଜନସାହି ଓ ବ୍ରାହ୍ମଣଘର ପାଖାପାଖି ଲାଗିଗଲାଣି । ଗାଁରେ ଶିକ୍ଷିତ ଏବଂ ବେକାରଙ୍କ ସଂଖ୍ୟା ଅନ୍ୟ ଗ୍ରାମଗୁଡିକ ତୁଳନାରେ ବେଶି ହେବ । କେନ୍ଦ୍ରାପଡ଼ା କେନାଲ ଯୋଗୁଁ ଜଳସେଚନ ସୁବିଧା ରହିଛି ଏବଂ ଚାଷୀ ୩/୪ ଫସଲ କରନ୍ତି । ଠିକ୍ କେନ୍ଦ୍ରାପଡ଼ା କେନାଲର ଦକ୍ଷିଣପଟକୁ ଲୁଣା ନଦୀ ବହିଯାଉଛି—କେନାଲର ଦକ୍ଷିଣ ବନ୍ଧଟି ନଦୀ ନାଳ ଉଭୟର ବନ୍ଧ । ବନ୍ୟାରେ ସେ ବନ୍ଧ ଭାଙ୍ଗିବାର ଆଶଙ୍କା ବରାବର ଥାଏ । ଏହି କେନାଲ ଗ୍ରାମର ସମୃଦ୍ଧି ବୃଦ୍ଧି କରିଛି । ଗମନାଗମନ ଓ ଜଳପଥ ଯାତ୍ରା ଲାଗି ଏଥିରେ ସୁବିଧା । ଏହି କେନାଲରେ ଆମେ ସବୁ ପିଲାଦିନୁ ପହଁରା ଶିଖୁ ଏବଂ କେନାଲକୂଳରେ ପଡିଥିବା ପଥର ସନ୍ଧିରେ ଆଙ୍ଗୁଠି ଭର୍ତ୍ତିକରି ମାଛ ଧରିବା ପିଲାଙ୍କର ଦୈନନ୍ଦିନ କାର୍ଯ୍ୟ—ଧଣ୍ଡସାପ କାମୁଡ଼ାକୁ ଡରନ୍ତି ନାହିଁ ।

## ବୋଉର ଶକତ ଚାପୁଡ଼ା :

ଏହି କେନାଲବନ୍ଧରେ ତଳଆଡକୁ ପ୍ରାୟ ୩ ମାଇଲ ଦୂରରେ ଅସୁରେଶ୍ୱର ଗ୍ରାମ । ସେଇଠାରେ ହିଁ ଏମ୍. ଇ. ସ୍କୁଲ ଥାଏ । ଆମ ଗାଁରେ କେବଳ ଗୋଟିଏ ଉଚ୍ଚ ପ୍ରାଇମେରୀ ସ୍କୁଲ ଥିଲା । ଏବେ ଅବଶ୍ୟ ହାଇସ୍କୁଲ ଆଦି ହୋଇଗଲାଣି । ମୁଁ ଅପରପ୍ରାଇମେରୀ ପରୀକ୍ଷାରେ କୃତକାର୍ଯ୍ୟ ହେବା ପରେ କେଉଁଠି ପଢିବି ଏବଂ କିପରି ପଢ଼ିବି ଏ ପ୍ରଶ୍ନ

ଉଠିଲା । ମାମୁଁ ମୋ ଦରମା ଏବଂ ବହିପତ୍ର ଦେବାକୁ ସମ୍ମତ ହୋଇଯିବାରୁ ଅସୁରେଶ୍ୱର ମାଇନର ସ୍କୁଲରେ ମୋର ନାମ ଲେଖାହେଲା । ହଷ୍ଟେଲରେ ହଠାତ୍ ରହିଲେ ଖର୍ଚ୍ଚ ତୁଲାଇବା କଷ୍ଟକର ବୋଲି ପ୍ରତିଦିନ ସକାଳୁ ପଖାଳ ଖାଇ ଚାଲି ଚାଲି ସ୍କୁଲକୁ ଯାଏ ଏବଂ ପ୍ରାୟ ମୁହଁସଞ୍ଜ ବେଳକୁ ଫେରେ । ରବିବାର ଦିନଟି ଅବଶ୍ୟ ଛୁଟି । ମଝିରେ ଜଳଖିଆ ଆଦି କରିବା ନିମନ୍ତେ ବୋଉ ଗୋଟିଏ ପଇସା ଦେଇଥାଏ । ତାହା ଆଜିକାଲିକା ପଇସା ନୁହେଁ, ବେଶ୍ ବଡ଼ ତମ୍ବା ପଇସା । ଅସୁରେଶ୍ୱରରୁ ଫେରନ୍ତା ଲୋକନାଥପୁର ପୋଲପାଖରେ ଦୋକାନମାନ ଥାଏ—ସେଠାରୁ ଗୋଟିଏ ଦୋକାନୀ ପାଖରୁ ପଇସାଟିକର ମୁଢ଼ି କିଣି ଚୋବାଇ ଚୋବାଇ ବାଟ ଚାଲେ । ଏତେ ହୁଏ ଯେ ଆସି ଘର ପାଖରେ ସରେ । ଥରେ ଏକ ମଜା ଘଟଣା ଘଟିଲା । ବୋଉ ମତେ ଯେଉଁ ପଇସାଟି ଦେଇଥିଲା, ତାହା ପଡ଼ିଲା ଅଚଳ । ମୁଁ କରେ କଣ ? ପ୍ରଚଣ୍ଡ ଭୋକ । ଗୁଡ଼ିଆ ତ ବାକି ଦେବ ନାହିଁ । ମୁଁ ଏକ ବୁଦ୍ଧି ଫିକର ବାହାର କରି ସେ ପଇସାଟି ଗୁଡ଼ିଆର ଯେଉଁ କଣା ବାକ୍ସ ରଖାହୋଇଥାଏ, ସେଥିରେ ଆଗତୁରା ଗଳାଇଦେଇ ତାକୁ କହି ମୁଢ଼ି ଅଣ୍ଟିଏ ନେଇ ଆସିଲି । ମହା ଖୁସ୍-ଗୁଡ଼ିଆକୁ ଠକି ପାରିଲି ବୋଲି । ସନ୍ଧ୍ୟାରେ ଘରେ ଆସି ବୋଉକୁ ବାହାଦୁରି ଦେଖାଇବି ବୋଲି ସବୁକଥା କହିଲି । ବୋଉ ଶୁଣି ମୋତେ ଏକ ଶକ୍ତ ଚାପୁଡ଼ା ମାରିଲା ଏବଂ ଗାଳିଦେଲା । କହିଲା ଦିନେ ମୁଢ଼ି ନ ଖାଇ ତୁ କଣ ମରିଯାଉଥିଲୁ ? ତହିଁ ଆରଦିନ ବୋଉ ଆଉ ଗୋଟିଏ ଅଧିକା ଭଲ ପଇସା ଦେଲା ଏବଂ ମୁଁ ନେଇ ଗୁଡ଼ିଆକୁ ଦେଇ ଆସିଲି । ପିଲାବେଳର ଏ ସାମାନ୍ୟ ଘଟଣାଟି ମୋ ଜୀବନଚରିତ୍ର ଉପରେ ଅଲୌକିକ ପ୍ରଭାବ ପକାଇଛି ଏବଂ ଆଜି ମଧ୍ୟ ମୋ ମନ ସେ ଦିଗରେ ସଚେତନ । ମୁଁ ମୋର ଏତେ ଦୀର୍ଘ ରାଜନୀତିକ ଜୀବନରେ ଏବଂ ବେଳେ ବେଳେ ଅତି ଜଟିଳ କଠିନ ରାଜନୀତିକ ସମସ୍ୟା ସହିତ ଜଡ଼ିତ ହୋଇଥିଲେ ସୁଦ୍ଧା କେବେ ଠକେଇ ବା ଭୁଲାଇକରି କଥା କହିପାରେନା । ସିଧା ଏବଂ ଖୋଲା କଥା ରାଜନୀତିରେ ଆଉ ଚଳୁନାହିଁ ଏବଂ ସେଥିଲାଗି ମୋତେ ଅନେକ ସମୟରେ ଦୁଃଖଭୋଗ ଓ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁଛି । "ନ ବ୍ରୁୟାତ୍ ସତ୍ୟମପ୍ରିୟଂ" କଥାଟି ମୁଁ ପାଳନ କରିପାରିନାହିଁ । ସ୍ପଷ୍ଟ'ବୋଲି ଉପରେ ପଡ଼ି କିଛି କଥା କହିପକାଇ ଅଯଥା ଶତ୍ରୁତା ସୃଷ୍ଟି କରେ ଏପରି ନୁହେଁ; ମାତ୍ର ସେ ସଂକ୍ରାନ୍ତରେ ମୁଁ ଯଦି ଆଲୋଚନା ବା ବିଚାର କରିବାକୁ ପଡ଼େ, ମନ କଥା ଲୁଚେଇ କହିବା ବା ଘୋଡ଼େଇ ରଖିବା ମୋ ପକ୍ଷରେ ସମ୍ଭବ ହୁଏନା । ମୋର ଏହି ପ୍ରକୃତି ଯୋଗୁଁ ମତେ ଅନେକେ ବଡ଼ ରାଗୀ ବୋଲି ବିଚାରନ୍ତି । ମୁଁ କଥା କହିଲାବେଳେ ଟିକିଏ ଜୋର୍‌ରେ କହିବା ମୋର ଅଭ୍ୟାସ; ମାତ୍ର ସେଥିରୁ ଲୋକେ ମତେ ଭୁଲବୁଝନ୍ତି ।

ରାଜନୀତିକ ଜୀବନ ତ ଏବେ ପଙ୍କିଳ ହୋଇଗଲାଣି । ଅସତ୍ ପନ୍ଥା ଗ୍ରହଣ କରି ଧନ କମାଇବା କିମ୍ବା ନିଜର ପ୍ରଭାବ ବିସ୍ତାର କରିବା ଏକ ସଫଳ କାର୍ଯ୍ୟରୂପେ ଗ୍ରହଣ କରାଯାଉଛି । କିନ୍ତୁ ମୁଁ ପିଲାଦିନୁ ବୋଉଠୁଁ ଏ ଯେଉଁ ଶିକ୍ଷାଟି ପାଇଛି, ତାହା ମୋର

ସର୍ବଦା ଜପାମାଳି ହୋଇ ରହିଛି; ସାଧାରଣ ରାଜନୀତିକ କ୍ଷେତ୍ରରେ ମତେ ବଡ଼ ହୁସିଆର ହୋଇ ଚଳିବାକୁ ଶିଖାଇଛି । ଗାନ୍ଧିଜୀ କହୁଥିଲେ ପ୍ରତିଦିନ ଡାଏରୀ ଲେଖିବ ଏବଂ ଦୈନନ୍ଦିନ ହିସାବପତ୍ର ଲେଖିବ—ସାଧାରଣ ଧନର କଡ଼ାକ୍ରାନ୍ତି ହିସାବ ଦେବ—ସାଧାରଣ ଧନକୁ ନିଜର ବ୍ୟକ୍ତିଗତ ବା ଅନ୍ୟ ଉଦ୍ଦେଶ୍ୟରେ ବ୍ୟୟ କରିବାକୁ ଅପରାଧ ବୋଲି ବିଚାର କରିବ । ଏହିସବୁ କଥା ମତେ ବହୁ ପ୍ରଲୋଭନରୁ ରକ୍ଷା କରିଛି ଓ ନିଜ ଜୀବନକୁ ସଂଯତ କରିବା ଶିଖାଇଛି ।

ମୋର ମନେପଡ଼ୁଛି—୧୯୩୩ ମସିହାରେ ମୁଁ ପାଟନା କ୍ୟାମ୍ପଜେଲରୁ ଖଲାସ ହୋଇ ଘରକୁ ନ ଯାଇ ମହତାବବାବୁଙ୍କ ପାଖରେ ଆସି ନିଜକୁ ରିପୋର୍ଟ କଲି ମତେ ଆଉ କିଛି କାମ ଦେବାଲାଗି । କାରଣ ସ୍ୱରାଜ ନହେବାଯାକେ ଘରକୁ ଫେରିବା କଥା ନୁହେଁ—ଏହି ଶପଥ ନିଆହୋଇଥିଲା । ମହତାବବାବୁ ଥାଆନ୍ତି ସତ୍ୟାଗ୍ରହୀମାନଙ୍କର ପରିଚାଳକ । ସାଙ୍ଗେ ସାଙ୍ଗେ ଜେଲକୁ ପଠାଇବା ଭଳି କାର୍ଯ୍ୟ ନ ଥିବାରୁ ସେ ମତେ ପାଞ୍ଚଟି ଟଙ୍କା ଦେଇ କହିଲେ—ଘରକୁ ଯାଅ—ମୁଁ ପଛରେ ଡକାଇବି । ମୁଁ ଏ ପାଞ୍ଚଟଙ୍କା ନିଜର ବ୍ୟକ୍ତିଗତ ଖର୍ଚ୍ଚରେ ଲଗାଇବି କି ନାହିଁ ବଡ଼ ଜଞ୍ଜାଳରେ ପଡ଼ିଲି । ମତେ ତ ଖାଇବାଗଣ୍ଡାକ ମାମୁଁ ଘରେ ମିଳୁଥାଏ ଖଦଡ଼ ଲୁଗା ଜାମା ବି ମାମୁଁ ଖରିଦ କରି ଦେଉଥାଆନ୍ତି—ମୋର ଆଉ ବ୍ୟକ୍ତିଗତ ଖରଚ କଅଣ ? ମୁଁ ସେହି ୫ଟି ଟଙ୍କାକୁ ନେଇ ଗୋଟିଏ ବାକ୍ସ ଚରଖା କିଣିଲି, ସୂତା କାଟିବା ନିମନ୍ତେ । ମୋର ଗୋଟାଏ ବଡ଼ ଚରଖା ଥାଏ ।

ସେହିପରି ପାର୍ଲିଆମେଣ୍ଟରେ ବିରୋଧରେ ରହି ସୁଦ୍ଧା ବହୁ ପ୍ରଲୋଭନ ମୋ ପାଖକୁ ଆସିଛି । ବାସ୍ତବିକ ଧନ କମାଇବାର ମନୋବୃତ୍ତି ମୁଣ୍ଡରେ ପଶିଥିଲେ ବହୁତ କିଛି କରିପାରିଥାଆନ୍ତି—ବିଶେଷରେ ମୋର ନିଜର ଯେତେବେଳେ ଏଡ଼େ ଗରିବଘରେ ଜନ୍ମ । ମାତ୍ର ତହିଁରୁ ମୁଁ ବହୁ ଦୂରରେ । ନିଜକୁ ମୁକ୍ତ କରି ରଖିପାରିଛି ବୋଲି ଆଜି ପ୍ରାଣରେ ଶାନ୍ତି ପାଉଛି । ଗୋଟିଏ ଦୃଷ୍ଟାନ୍ତ ଦିଏ । ନିଜ ବଡ଼େଇ ନିଜ ହାତରେ ଲେଖିବାଟା ହୁଏତ ସୁନ୍ଦର ନୁହେଁ; ମାତ୍ର ବ୍ୟକ୍ତିଗତ ପ୍ରତ୍ୟକ୍ଷ ଅନୁଭୂତି ତ—ସେଥିରୁ ଗୋଟିଏ ଏଠି ଲେଖୁଛି ।

ପାର୍ଲିମେଣ୍ଟରେ ମୁଁ ଟିକିଏ ନାମ କମାଇଲି । ବ୍ୟଭିଚାର, ଭ୍ରଷ୍ଟାଚାର ବିରୁଦ୍ଧରେ ମୋର ଅଭିଯାନରେ ମତେ ଯଶ ମିଳୁଥାଏ । ଶିଳ୍ପପତି ଏସ୍. ପି. ଜୈନଙ୍କର ରାଜନୀତିକ ନେତାମାନଙ୍କ ଉପରେ ବେଶ୍ ପ୍ରଭାବ । ଲାଲବାହାଦୁର ଶାସ୍ତ୍ରୀ ଥାଆନ୍ତି ପ୍ରଧାନମନ୍ତ୍ରୀ । କୌଣସି କାରଣରୁ ଲାଲବାହାଦୁର ମତେ ଖୁବ୍ ବିଶ୍ୱାସ କରୁଥିଲେ ଏବଂ ଖାତିର ବି କରୁଥିଲେ । ଅନେକ ଗୂଢ ଗୋପନୀୟ ରାଜନୀତି ସମ୍ବନ୍ଧରେ ମତେ ବିଶ୍ୱାସ କରି କଥାବାର୍ତ୍ତା କରୁଥିଲେ । ଏ ବିଷୟଟି ଅଲକ୍ଷିତ ଭାବରେ ଆଉ କେହି ଜାଣନ୍ତୁ ନ ଜାଣନ୍ତୁ ଶିଳ୍ପପତି-ମାନେ ହୁଏତ ଜାଣିଥିଲେ । ଭିଭିୟାନ୍ ବୋଷଙ୍କ ରିପୋର୍ଟରେ ସାହୁ ଜୈନ କମ୍ପାନୀ ବଡ଼

ମୁସ୍କିଲରେ ପଡ଼ିଥାଆନ୍ତି ଏବଂ ଶାସ୍ତି ପାଇଥାନ୍ତି ମଧ୍ୟ । ସେ ରିପୋର୍ଟ ପାର୍ଲିଆମେଣ୍ଟରେ ବିଚାରକୁ ଆସିଲା ଏବଂ ମୁଁ ତହିଁରେ ଏକ ସଂଶୋଧନ ଦେଇ ଶିଳ୍ପନିୟନ୍ତ୍ରଣ ଆଇନ ଅନୁସାରେ ଏହି କମ୍ପାନୀର ସମ୍ପୃକ୍ତ ଶିଳ୍ପୋଦ୍ୟୋଗକୁ ନିୟନ୍ତ୍ରଣରେ ନେବାଲାଗି ଦାବୀ କରିଥିଲି । ଶିଳ୍ପପତି ଜୈନ ତାଙ୍କ ନିଜ ବାଟରେ ତଦନ୍ତ କରି ବୁଝିଲେ ଯେ ମୋ ସଂଶୋଧନ ଶାସ୍ତ୍ରୀଜୀଙ୍କ ପକ୍ଷରେ ଅଡୁଆ ସୃଷ୍ଟି କରିଲାଣି । ମୋର ପ୍ରସ୍ତାବରେ ସେ ଆଖି ବୁଜି ଦେଇପାରିବେ ନାହିଁ । ଶ୍ରୀ ଜୈନ ଧାଇଁଲେ ମୋପରି ଏକ କ୍ଷୁଦ୍ର ଲୋକ ଘରକୁ । ବିଭିନ୍ନ ଉପାୟରେ ମତେ ସୁତରାଇବାକୁ ଉଦ୍ୟମ ଚାଲିଲା । ଶେଷକୁ ଏକ ସ୍ପେଶାଲ ଉଡ଼ାଜାହାଜରେ ବିହାର ପ୍ରଜା ସୋସିଆଲିଷ୍ଟ ପାର୍ଟିର ଜଣେ ମୁଖ୍ୟ ନେତାଙ୍କୁ ଧରି ଆସି ରାତିଅଧରେ ପହଞ୍ଚିଲେ । ମୋ ବନ୍ଧୁ ଅଫର କଲେ— ସେ ପାଞ୍ଚ ଲକ୍ଷ ଟଙ୍କା ନଗଦ ଦେବେ—କୌଣସି ବ୍ୟକ୍ତିଗତ ଖର୍ଚ୍ଚ ଲାଗି ନୁହେଁ—ପାର୍ଟି କାମରେ ଖର୍ଚ୍ଚ ହେବ—ଆପଣ ନିଜ ମର୍ଯ୍ୟାଦା ହାନି ହେଲାଭଳି କୌଣସି କାମ କରିବେ ନାହିଁ—କେବଳ ଦେଇଥିବା ସଂଶୋଧନଟିକୁ ଆଗତ କରିବେ ନାହିଁ—ଅନୁପସ୍ଥିତ ରହିଗଲେ ତାହା ଆପଣାଛାଏଁ ଉଡ଼ିଯିବ । ମୁଁ ଏକ ଧର୍ମ-ସଙ୍କଟରେ ପଡ଼ିଲି । ବନ୍ଧୁଙ୍କ ସହ ଏପରି ଭାବ ଯେ ତାଙ୍କୁ ମୁହଁରେ ମନା କରିବାଲାଗି ସମର୍ଥ ହେଉ ନ ଥାଏ । ଏଣେ ମୋର ସାଧାରଣ ଜୀବନର ନୈତିକତା । ରାଜନୀତିରେ ଯେଉଁ ମୂଲ୍ୟବୋଧ ପ୍ରତିଷ୍ଠା ଲାଗି ମୁଁ ପଣ୍ଡିତ ନେହେରୁଙ୍କ ଅମଳରୁ କିଛି ନା କିଛି ଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇଛି, ତାହାର ଏଠିକାରେ ଜଳାଞ୍ଜଳି ଦିଆଯିବ ବୋଲି ବିଚାରିଲି । ସେମାନଙ୍କୁ ବିଦାୟ କରିଦେଲି । ତତ୍ପରଦିନ ଲୋକସଭାରେ ଏ ବିଷୟ ନେଇ ଏପରି ଜୋର୍ ତର୍କ କଲି ଯେ କେତେକ ସଭ୍ୟ ଆଚମ୍ବିତ ହେଲେ । ମୋ ର ଅନ୍ତରର ଦ୍ୱନ୍ଦ୍ୱ ମତେ ଖାଲି ଠେଲୁଥାଏ— ମୁଁ କୋହଳ ହେଉଛି କି ? ଅବଶ୍ୟ ଜୈନଙ୍କର ବିଶେଷ କିଛି କ୍ଷତି ହୋଇ ନଥିଲା, କାରଣ ଯେ କେତେକ କଂଗ୍ରେସ ସଭ୍ୟଙ୍କୁ ଅତିରିକ୍ତ ଲାଳସାରେ ପକାଇ ତାଙ୍କ ସପକ୍ଷରେ ଯୁକ୍ତି ବାଢ଼ିଲେ ଏବଂ ମୋ ସଂଶୋଧନଟି ମଧ୍ୟ କଂଗ୍ରେସ ସଭ୍ୟମାନଙ୍କର ବହୁ ଅଧିକ ଭୋଟରେ ପରାସ୍ତ ହୋଇଗଲା । ଲାଲବାହାଦୁରଙ୍କ ପକ୍ଷରେ ବୋଧହୁଏ ଆଉ କଠିନ ବା କୋହଳ ହେବାର ଆବଶ୍ୟକତା ପଡ଼ିଲାନାହିଁ ।

## ରାଜନୀତି ପଥ ଖସଡ଼ା :

ରାଜନୀତି ପଥ ବାସ୍ତବିକ ଖସଡ଼ା—ଖଣ୍ଡା ଧାରରେ ଚାଲିବାକୁ ହେବ—ସାମାନ୍ୟ ତ୍ରୁଟିରେ ଆମର ଓ ଦେଶର ସାଧାରଣ ଜୀବନର କେତେ ବଡ଼ ଅଧୋଗତି ହୋଇଯିବ । ଆମେ କ୍ଷମତା ଓ ଧନଲୋଭରେ ଅନ୍ଧ ହୋଇ ଆଗ ପଛକୁ ଅନାଉନାହୁଁ । ତେଣୁ ରାଜନୀତିକ ଜୀବନ ଓ ରାଜନୀତିକମାନେ ଦୁର୍ଦ୍ଦଶାଗ୍ରସ୍ତ ହୋଇଛନ୍ତି । ରାଜନୀତିକମାନଙ୍କର ପ୍ରଭାବ ଥାଇପାରେ, ମାନ ସମ୍ମାନ ଓ ଶ୍ରଦ୍ଧା ସେମାନେ ହରାଇ ବସିଲେଣି । ମୁଁ ବୋଉକୁ ଶତ ପ୍ରଣାମ କରୁଛି ।

## ଫେଲ୍‌ଙ୍କ ଭିତରେ ଫାଷ୍ଟ୍ :

ମୁଡ଼ିଖିଆରୁ ମୁଁ କେଉଁଠି ଯାଇ ହାବୁଡ଼ିଗଲିଣି । ଅସୁରେଶ୍ୱର ମାଇନର ସ୍କୁଲରେ ଆମ ଗାଁ ଖଣ୍ଡସାହିରୁ ଚାଲି ଚାଲି ଆସି ପାଠ ପଢ଼ିବା ମୋର ଆରମ୍ଭ ହୋଇଗଲା। ସେଠି ମୁଁ ହେଲି ଜଣେ ମୁଖିଆ ପିଲା । ପଢ଼ାପଢ଼ି, ଖେଳକୁଦ, ଡେମନ୍‌ଷ୍ଟେସନ୍ ସବୁଥିରେ ଭଲ । ଏପରକି ଫେଲ୍‌ରେ ବି ଫାଷ୍ଟ । ଥରେ ଭୂଗୋଳରେ ୫୦ ନମ୍ବରରୁ ପାସ୍ କରିବା ନମ୍ବର ଆମ କ୍ଲାସରେ କେହି ରଖିପାରିଲେ ନାହିଁ । ମୁଁ ବି ଫେଲ୍ ହେଲି; ମାତ୍ର ୧୭ ନମ୍ବର ରଖି ଫେଲ୍‌ଙ୍କ ଭିତରେ ବି ଫାଷ୍ଟ ହୋଇପାରିଲି ।

ମୋର ବର୍ଷ ଏମ୍. ଇ. ପରୀକ୍ଷା ସେଣ୍ଟ୍ରାଲ ପରୀକ୍ଷା ହୋଇଗଲା; ଅର୍ଥାତ୍ ସ୍କୁଲରେ ପରୀକ୍ଷା ନ ହୋଇ କେନ୍ଦ୍ର ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହେବାକୁ ପଡ଼ିବ । ତେଣୁ ସ୍ଥିର ହେଲା ମୁଁ ହଷ୍ଟେଲରେ ରହିଲେ ଭଲ ହେବ । ମାଷ୍ଟରମାନେ ବି ଲଗାଇଲେ ମୁଁ ଭଲ କଲେ ତାଙ୍କ ସ୍କୁଲ ନାମ କରିବ ବୋଲି । ମାଷ୍ଟ୍ରଙ୍କର ଯାହା ଉଦ୍ଦେଶ୍ୟ ଥାଉ, ତାଙ୍କ ଆଜ୍ଞା ତ ଆମ ପକ୍ଷରେ ଆଇନ । ହଷ୍ଟେଲରେ ରହିବାକୁ ପଡ଼ିବ । ଖର୍ଚ୍ଚ ଆସିବ କେଉଁଠୁ ? ଦରମା ବନ୍ଧପଣ ସିନା ହୋଇଯାଉଛି, ମେସ ଖର୍ଚ୍ଚ ! ମୁଁ ପ୍ରତି ରବିବାରେ ଗ୍ରାମକୁ ଆସି ଚାଉଳ, ଚୂଡ଼ା ଓ ନଡ଼ିଆ ମୁଣ୍ଡେଇ ନେଇଯାଏ । ଟଙ୍କା ବାବଦକୁ ଅଧିକ ଚାଉଳ ଦେଇଦିଏ । ମୋର ମେସ୍ ଖରଚ ଚଳିଯାଏ । ଆମ ଘରେ ତ ବାକ୍ସ, ଟଙ୍କା ଆଦି କିଛି ନ ଥାଏ ! ଯେତେଦୂର ସମ୍ଭବ, ଏକ ବଡ଼ ସିନ୍ଦୁକ ଓ ଗୋଟାଏ ଖଣ୍ଡେ କାଠ ବାକ୍ସ ଓ ବେତ ପେଟରା ଥିଲା । ମୁଁ ସେହି ପେଟରାରୁ ଗୋଟିଏ ନେଇ ସେଥିରେ ଚିଜ ପକାଇ ରଖିଲି । ୧୯୬୭ରେ ମି. ଇ. ପାସ୍ କଲି ।

## 'ଦ୍ୱିବେଦୀ ଆମର ଲୋକ' :

ଏପରି ଗ୍ରାମ୍ୟ ପରିବେଶରେ ରହି ମୋର ଯଥେଷ୍ଟ ଲାଭ ହୋଇଛି । ମୋର ବଡ଼ ବଡ଼ ସହରର ବନ୍ଧୁମାନେ ମତେ ବେଳେ ବେଳେ ଥଟ୍ଟା ପରିହାସରେ ନପଟ ମଫସଲିଆ ବୋଲି କହନ୍ତି । ମାତ୍ର ମୋର ପରବର୍ତ୍ତୀ ଜୀବନରେ ଗ୍ରାମର ଅଭ୍ୟନ୍ତରୀଣ ମୌଳିକ ଓ ମାନବିକ ସମସ୍ୟା ବୁଝିବାରେ ମୁଁ କୌଣସି ଅସୁବିଧାର ସମ୍ମୁଖୀନ ହୋଇନାହିଁ । ମୁଁ ତ ଆଜିକାଲି ଯାହାକୁ କହୁଛନ୍ତି 'ଦାରିଦ୍ର୍ୟର ସୀମାରେଖା ତଳେ' ତାହାରି ଭିତରେ ବଢ଼ିଛି । ମୋର ସାଥିମାନେ ସମାଜବାଦ ବିଷୟରେ ଶାସ୍ତ୍ର ପାଠ କରି ବଡ଼ ଭାବପ୍ରବଣ ହୋଇ ଦେଶର ଦଳିତ ଓ ପତିତ ଶ୍ରେଣୀ ବିଷୟରେ ଯେତେବେଳେ ଭାଷଣ ଦିଅନ୍ତି—ମୁଁ ଶୁଣେ ଓ ମନେ ମନେ ହସେ । ଦାରିଦ୍ର୍ୟର କଷାଘାତରେ ମୁଁ ଶାଣିତ । ଦାରିଦ୍ର୍ୟ ଓ ଶୋଷଣ ନାଶ କରିବା ନିମନ୍ତେ କାର୍ଯ୍ୟ କରିବା ମୋଟ ଏକ ସ୍ୱାଭାବିକ ନିଷ୍ଠା । ଏ ଚେତନା ସ୍ୱତଃପ୍ରଣୋଦିତ—ଏହା କାହାରି ଶିକ୍ଷାଦାନଦ୍ୱାରା ଆସିନାହିଁ ।

ମୁଁ ଏବେ ଏକପ୍ରକାର ସ୍ୱଚ୍ଛନ୍ଦ ଭାବରେ ଜୀବନ ଯାପନ କରୁଥିଲେ ସୁଦ୍ଧା ଆମେ ବ୍ୟକ୍ତିଗତ ସମ୍ପତ୍ତିର ଅଧିକାଂଶ ହେବୁନାହିଁ ବୋଲି ଯେଉଁ ପଣ ନେଇଥିଲୁ ତାହା ଯଥାସମ୍ଭବ ପାଳନ କରିପାରିଛୁ ।

ଅସୁରେଶ୍ୱରକୁ ଯିବା ଆସିବା କରିବା ଫଳରେ ମୋର ଆଉ ଏକ ଲାଭ ହେଲା, ଯାହା ମତେ ରାଜନୀତିକ ଜୀବନରେ ଖୁବ୍ ସାହାଯ୍ୟ ହେଲା । ପାଖଆଖର ବିଭିନ୍ନ ଗ୍ରାମର ପିଲାଙ୍କ ସହ ଖାଲି ଘନିଷ୍ଠତା ହେଲା ନାହିଁ, ମୁଁ ତାଙ୍କ ଭିତରର ଜଣେ ବୋଲି ପରିଚିତ ହେଲି । କେନ୍ଦ୍ରାପଡ଼ା କଟକଠାରୁ ଆମ ଗାଁର ନିକଟବର୍ତ୍ତୀ ହୋଇଥିବାରୁ ଆମମାନଙ୍କର ସମ୍ପର୍କ ଓ ଚଳପ୍ରଚଳ କେନ୍ଦ୍ରାପଡ଼ା ସହ ଅଧିକ ଥିଲା । ମୁଁ ଯେତେବେଳେ କେନ୍ଦ୍ରାପଡ଼ା ନିର୍ବାଚନମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀଙ୍କୁ ହରାଇ ତିନି ତିନି ଥର ଲୋକସଭାକୁ ନିର୍ବାଚିତ ହେଲି, ସେତେବେଳେ ମୋତେ ଲୋକେ ତାଙ୍କରି ଭିତରୁ ଜଣେ ଭାବରେ ଗ୍ରହଣ କରିଗଲେ । ଏପରି ଅଯାଚିତ ସ୍ନେହ ମମତା ମୁଁ କମ୍ ପାଇଛି । ମୋର ଲୋକଙ୍କ ସହ ଏକ ଭାବଗତ ମିଳନ ହୋଇପାରିଥିଲା । ମୁଁ ଅଧିକ ଲୋକପ୍ରିୟ ଥିବାବେଳେ ଥରେ ନିର୍ବାଚନ ବେଳେ ଜଣେ ପ୍ରିଜାଇଡ଼ିଂ ଅଫିସର ମୋତେ ପଚାରିଲେ—"ସାର୍, ଆପଣଙ୍କ ଗ୍ରାମ ପ୍ରକୃତରେ କେଉଁଠି ଠିକଣା ତ ଦେଇଛନ୍ତି ତେଲେଙ୍ଗାବଜାର, କଟକ ? କିନ୍ତୁ ତିର୍ତ୍ତୋଲ ହେଉ କି ମାଟକୁରି ହେଉ କମ୍ବା ମାହାଙ୍ଗା ହେଉ, ସବୁଠି ଲୋକେ ଭୋଟ ଦେଲାବେଳେ ଆସି କହୁଛନ୍ତି—"ଦ୍ୱିବେଦୀ ଆମର ଲୋକ; ଅମରି ଆଉର ଲୋକ; ତାଙ୍କୁ ଭୋଟ ଦେବୁ ନାହିଁ !" ମୁଁ ସହରବାସୀ ହୋଇଗଲି ସିନା, ମାତ୍ର ଏ ଶ୍ରଦ୍ଧା ସ୍ନେହ ଭୁଲି ପାରିନାହିଁ କମ୍ବା ଏଭଳି ମମତା ପ୍ରୀତିଭାବ ସହରରେ ମିଳିବ ନାହିଁ ।

ମାଇନର ପାସ୍ କରିବା ପରେ ମୋର ଗ୍ରାମ୍ୟ ଜୀବନର ସୁଖ ଶେଷ ହେଲା । ପାସ୍ କରିଗଲା ପରେ ମଧ୍ୟ ଉପରକୁ ପଢ଼ିବା ଲାଗି ଆଉ ଚିନ୍ତା ନ ଥିଲା । ଭାଇନା ମ୍ୟାଟ୍ରିକ୍ ପାସ୍ କରିବା ଉପରେ ସେ ଯାଇ କଟକ ମେଡ଼ିକାଲ ସ୍କୁଲରେ ନାମ ଲେଖାଇଲେ । ମାମୁଁ ସେତେବେଳକୁ ତେଲେଙ୍ଗାବଜାରରେ ଘର ଖଣ୍ଡେ ତୋଳିସାରିଲେଣି । ସେ ଆଉ ରାମକୃଷ୍ଣ କଟେଜରେ ନ ରହି ନିଜ ଘରେ ରହୁଥାଆନ୍ତି । ମୁଁ ଆସି କଟକରେ ତାଙ୍କରି ପାଖରେ ରହିଲି । ସେ ଜଣେ ପଣ୍ଡିତ ଏବଂ କଟକ ଟ୍ରେଡ଼ିଂ କମ୍ପାନୀର ପ୍ରତିଷ୍ଠାତା ହିସାବରେ ତାଙ୍କର ଖୁବ୍ ସମ୍ମାନ ଓ ଖ୍ୟାତି ରହିଥାଏ । ମତେ ନେଇ ରେଭେନ୍ସା କଲେଜିଏଟ୍ ସ୍କୁଲରେ ନାମ ଲେଖାଇଦେଲେ । ଶ୍ରୀମ ରାଉତ ଥାଆନ୍ତି ହେଡ଼ମାଷ୍ଟର । ୧୯୨୮ ମସିହା—ଏକ ଗୁରୁବାର ଦିନ ମୋର ନାମ ଲେଖା ହୋଇଗଲା । ବିଦ୍ୟାରମ୍ଭେ ଗୁରୁ ଶ୍ରେଷ୍ଠ ।

## ବଙ୍ଗଳା ଓ ହିନ୍ଦୀ ଶିକ୍ଷା :

୧୯୨୮ରୁ ୧୯୩୦ ପର୍ଯ୍ୟନ୍ତ ଏକ ସାଧାରଣ ଭାବରେ ଅଧ୍ୟୟନ କରିବା ଛଡ଼ା ଆଉ କିଛି ଉଲ୍ଲେଖଯୋଗ୍ୟ ଘଟଣା ଘଟିନାହିଁ । ତେବେ ରାମକୃଷ୍ଣ କଟେଜ ଲାଗି ପ୍ରତି ସପ୍ତାହରେ

ଗୃହୀତ ବିଭିନ୍ନ ସାହିତ୍ୟରୁ ସଂଗ୍ରହ କରିବା ଏବଂ ରବିବାର ସନ୍ଧ୍ୟା କୀର୍ତ୍ତନରେ ଯୋଗଦେବା ଯେପରି ଏକ ବାଧ୍ୟବାଧକ କାର୍ଯ୍ୟକ୍ରମ ହୋଇଥିଲା । ରାମକୃଷ୍ଣ ଚରିତାମୃତ, ସ୍ୱାମୀ ବିବେକାନନ୍ଦଙ୍କ ସମ୍ବନ୍ଧରେ ଲିଖିତ ବଙ୍ଗଳା ପୁସ୍ତକ ଆଦି ଅଧ୍ୟୟନ କଲି । ତହିଁରେ ମୋର ଧାର୍ମିକ ଜୀବନ ଏବଂ ଦେଶପ୍ରୀତି ବିଷୟରେ କଞ୍ଚିତ୍ ଧାରଣା ଜାତ ହେଲା । ତେବେ ଏଇଠି କହିରଖେ, ମୁଁ ପିଲାବେଳୁ ଗାଁରେ ଥିଲାବେଳେ ବଙ୍ଗଳା ଶିଖିଥିଲି । କାହାଠୁଁ କେମିତି ଶିଖିଲି ମୋର ସ୍ମରଣ ନାହିଁ । ତେବେ ଆମ କାଳେ ଓଡ଼ିଆରେ ସବୁପ୍ରକାର ବହି ନ ଥିଲା ଏବଂ ଇଂରେଜୀ ପଢ଼ାବହିର କୌଣସି ଓଡ଼ିଆ ମାନେ ବହି ହୋଇ ନ ଥିଲା—ବଙ୍ଗଳାରେ ହିଁ ମିଳୁଥିଲା । ବୋଧହୁଏ ମୁଁ ଯେଉଁ ବର୍ଷ ମି. ଇ. ପାସ୍ କଲି, ସେହିବର୍ଷ ପ୍ରଥମ ଥର ଲାଗି ମଧ୍ୟଇଂରାଜୀରେ ପ୍ରଚଳିତ ଇଂରେଜୀ ପାଠ୍ୟପୁସ୍ତକର ଓଡ଼ିଆ ମାନେବହି କଟକ ଟ୍ରେଡ଼ିଂ କମ୍ପାନୀ ତରଫରୁ ଉମାଚରଣ ମହାନ୍ତି ପ୍ରକାଶ କରିଥିଲେ । ଆମର ପାଠ୍ୟଲାଗି ଆବଶ୍ୟକ ହେବାରୁ ବଙ୍ଗଳା ପଢ଼ିବାକୁ ହେଲା । ସେହିଦିନୁ ମୁଁ ବଙ୍ଗଳା ପଢ଼ା ଅବ୍ୟାହତ ରଖିଛି । ମାଳତୀ ଚୌଧୁରୀଙ୍କ ସହ ସମ୍ପର୍କରେ ଆସିବା ପରେ ରବୀନ୍ଦ୍ରନାଥ ଠାକୁରଙ୍କ ଲେଖା ଓ ବଙ୍ଗଳା ସଙ୍ଗୀତପ୍ରେମୀ ହୋଇଗଲି । ବଙ୍ଗଳା ସିନେମା ଦେଖିବାକୁ ଓ ବଙ୍ଗଳାଗୀତ ଶୁଣିବାକୁ ଭଲପାଏ । ରବୀନ୍ଦ୍ର ରଚନାବଳୀର ପୂର୍ଣ୍ଣ ସେଟ୍ କିଣି ରଖିଛି—ବେଳେ ବେଳେ ମନ ବଦଳାଇବା ନିମନ୍ତେ ତାର ପୃଷ୍ଠା ଲେଉଟାଏ । ପ୍ରତିଦିନ ରେଡ଼ିଓରେ ବଙ୍ଗଳାଗୀତ ଶୁଣିବାକୁ ସୁଖ ପାଏ । ୧୯୪୨ରେ ଅଣ୍ଡରଗ୍ରାଉଣ୍ଡରେ ରହିଥିବା ବେଳେ ବଙ୍ଗଳାରେ ଶରତ ଚନ୍ଦ୍ର ଚାଟାର୍ଜୀଙ୍କର ଏବଂ ହିନ୍ଦିର ପ୍ରେମଚାନ୍ଦଙ୍କର ପ୍ରାୟ ସବୁ ଉପନ୍ୟାସ ପଢ଼ିଛି । ବଙ୍ଗ ଭାଷାରେ ଭାଷଣ ଦେଇପାରୁଥିବା ହେତୁ ବଙ୍ଗଳା ରାଜ୍ୟରେ ରାଜନୀତିକ କାର୍ଯ୍ୟରେ ଗସ୍ତ କରିଛି । ବଙ୍ଗାଳୀ ବନ୍ଧୁସବୁ ଭାବନ୍ତି, ମୁଁ ବୋଧହୁଏ କଲିକତା ବିଶ୍ୱବିଦ୍ୟାଳୟରେ ପଢ଼ିଥିବାରୁ ଏପରି ଭାଷା କହିପାରୁଛି । ସେମାନେ କୁଆଡ଼ୁ ବୁଝିବେ ଯେ ବିଶ୍ୱବିଦ୍ୟାଳୟ ତ ଦୂରର କଥା, ମୁଁ କଲେଜ ମାଡ଼ିନାହିଁ କିମ୍ବା ସ୍କୁଲ ପଢ଼ା ବି ଶେଷ କରିପାରିନାହିଁ ! ମୁଁ ବଙ୍ଗଳା ଭଲ ପଢ଼ିପାରେ, କହିପାରେ, ମାତ୍ର ଲେଖାରେ ଦକ୍ଷତା ହାସଲ କରିନାହିଁ—ହାତଲେଖା ଅତି କଷ୍ଟରେ ପଢ଼େ । ଥରେ ବଙ୍ଗଳାର ପ୍ରସିଦ୍ଧ ଗାନ୍ଧୀବାଦୀ ନେତା ଡକ୍ଟର ପ୍ରଫୁଲ୍ଲ ଘୋଷ ମତେ ବଙ୍ଗଳାରେ ଏକ ପତ୍ର ଲେଖିଲେ । ମୁଁ ଇଂରେଜୀରେ ଉତ୍ତର ଦେଇ ବଡ଼ କଷ୍ଟରେ ତାଙ୍କ ହାତଲେଖା ଚିଠି ପଢ଼ିଲି ବୋଲି ଜଣାଇବାରୁ ତାଙ୍କର ଭ୍ରମ ତୁଟିଥିଲା ।

ସେହିପରି ହିନ୍ଦି ଶିକ୍ଷା ମଧ୍ୟ ଏମିତି ଆବଶ୍ୟକତା ଅନୁସାରେ କରାଯାଇଛି । ପାଟନା କ୍ୟାମ୍ପ ଜେଲରେ ବିହାରୀଙ୍କ ସହିତ ବହୁଦିନ ରହିବାରୁ ହିନ୍ଦି କହିବାଟା କୌଣସି ପ୍ରକାରେ ଆରମ୍ଭ ହୋଇଗଲା ଏବଂ ସେଇଠି ମୁଙ୍ଗେରର ଜଣେ ରାଜବନ୍ଦୀ କାନ୍ତିଲାଲ ଝାଙ୍କଠାରୁ ହିନ୍ଦି ଲେଖିବା ଓ ପଢ଼ିବା ଶିଖିଲି । ତା'ପରେ ୧୯୩୬ ମସିହା ବେଳକୁ ଓଡ଼ିଶାରେ ରାଷ୍ଟ୍ରଭାଷା ପ୍ରଚାର ସଭା ସ୍ଥାପିତ ହେଲା ଏବଂ ପଣ୍ଡିତ ଅନସୂୟା ପ୍ରସାଦ ପାଠକ ତାର ସଞ୍ଚାଳକ ହେଲେ । ସେ ପ୍ରଥମେ ରାଷ୍ଟ୍ରଭାଷା ପରୀକ୍ଷା ଏଠାରେ ଆରମ୍ଭ କରିବା ନିମନ୍ତେ ଲୋକ

ଖୋଜିଲେ ଏବଂ ମୁଁ ସେଥିରେ ଥିଲି ଅନ୍ୟମାନଙ୍କ ଭିତରେ ଜଣେ । ରାଷ୍ଟ୍ରଭାଷାର ପ୍ରବେଶିକା ପରୀକ୍ଷାରେ ଆମେ ପ୍ରଥମେ କେତେଜଣ ପାସ୍ କଲୁ ଏବଂ ୧୯୩୪ରେ ମହାତ୍ମା ଗାନ୍ଧୀ ହରିଜନ ପଦଯାତ୍ରାରେ ଆସିଥିଲାବେଳେ କଟକ କାଠଯୋଡ଼ି ନଈ ସଭାରେ ଆମମାନଙ୍କୁ ସାର୍ଟିଫିକେଟ ଦେଇଥିଲେ । ହିନ୍ଦି ଜ୍ଞାନ ମୋର ବଢ଼ିଛି; ହିନ୍ଦିରେ ଅନର୍ଗଳ ଭାଷଣ ଦେଇପାରେ—ଉତ୍ତର ଭାରତ ଓ ଭାରତର ଅନ୍ୟ ଅଞ୍ଚଳରେ ବ୍ୟାପକ ଗସ୍ତ କରିଛି—ଅକ୍ଲେଶରେ ପଢ଼ିପାରେ ଏବଂ କଷ୍ଟ କରି ଲେଖିପାରେ । କିନ୍ତୁ ହିନ୍ଦି ଭାଷା ଶିକ୍ଷାରେ ମୋର ଆଉ ଅଗ୍ରଗତି ହୋଇପାରିଲା ନାହିଁ । ବ୍ୟାକରଣକୁ ଆୟତ୍ତ କରିବା ମୋ ପକ୍ଷରେ କଷ୍ଟସାଧ୍ୟ ହେଲା । ମୁଁ କିନ୍ତୁ ସେଥିପ୍ରତି ଲକ୍ଷ୍ୟ ନ ରଖି ସ୍ୱଚ୍ଛନ୍ଦରେ କହିଚାଲେ । ଅନେକ ସମୟରେ ଠିକଣା ଶବ୍ଦ ବ୍ୟବହାର କରି ନ ପାରି ଟିକିଏ ଅପଦସ୍ଥ ହେବାକୁ ପଡ଼େ । ଥରେ ପଞ୍ଜାବର ଅକାଲୀନେତା ମାଷ୍ଟର ତାରା ସିଂହ ଶକ୍ତ ବେମାର ପଡ଼ିଥିବାରୁ ତାଙ୍କୁ ଦେଖିବାକୁ ଯାଇଥିଲି । ଫେରିଲାବେଳକୁ କହିଲି—"ଆପ୍ ଜଲ୍ଦି ସୁସ୍ଥ ହୋଯାଇଏ ।" ମୋ ସାଥିରେ ଥିବା ବନ୍ଧୁମାନେ ଜିଭ କାମୁଡ଼ିପକାଇଲେ । ଏହା ବଧିର ବନ୍ଧୁ ଉପାଖ୍ୟାନ ପରି ହେଲା । 'ସୁସ୍ଥ' ଶବ୍ଦର ଅର୍ଥ ପଞ୍ଜାବୀଙ୍କ ପାଖରେ ଠିକ୍ ବିପରୀତ । ମହାତ୍ମା ଗାନ୍ଧୀ, ଜୟପ୍ରକାଶ ନାରାୟଣ, ଆଚାର୍ଯ୍ୟ ନରେନ୍ଦ୍ର ଦେବ ଏବଂ ମୋର ଅତି ଘନିଷ୍ଠ ଓ ରାଜନୀତିକ କ୍ଷେତ୍ରରେ ସୁପରିଚିତ ଉତ୍ତରଭାରତୀୟ ବନ୍ଧୁମାନଙ୍କ ସହିତ ପ୍ରାୟ ହିନ୍ଦିରେ ଆଲୋଚନା ହୁଏ । ଥରେ ବୋଧହୁଏ ମହାତ୍ମା ଗାନ୍ଧୀଙ୍କଠାରୁ ହିନ୍ଦି ଲେଖା ଖଣ୍ଡେ ଚିଠି ପାଇଥିବି—ନଚେତ୍ ଜୟପ୍ରକାଶ ଓ ଅନ୍ୟମାନଙ୍କ ସହ ଯେତେ ଚିଠିପତ୍ର ଦିଆନିଆ ହୋଇଛି ସବୁ ଇଂରେଜୀରେ । ବ୍ୟାକରଣ ଅଶୁଦ୍ଧ ସକାଶେ ହିନ୍ଦିରେ ଲେଖିବାକୁ ମୁଁ ସାହସ କରେନା—କେବଳ ଲୋହିଆ ମତେ ବାଧ୍ୟ କରୁଥିଲେ ହିନ୍ଦିରେ ଲେଖିବା ଓ ଭାଷଣ ଦେବା ନିମନ୍ତେ । ସେ ଜଣେ ଏପରି ପ୍ରେମୀବନ୍ଧୁ ଥିଲେ ଯେ ତାଙ୍କ କଥା ଏଡ଼ିବା ସହଜ ହୁଏ ନାହିଁ । ଜଣେ ନେତା କିନ୍ତୁ ଥରେ ମତେ ବଡ଼ ଅପ୍ରସ୍ତୁତ କରିଦେଲେ । ନେତାଜୀ ସୁଭାଷ ବୋଷଙ୍କ ସହ ମୋର ଯେତେବେଳେ ପ୍ରଥମ ସାକ୍ଷାତ ହୁଏ, ମୁଁ କଥା ଆରମ୍ଭ କଲି ବଙ୍ଗଳାରେ । ସେ ଓଡ଼ିଆରେ କଥାଭାଷା କରି ମତେ ଲାଜରେ ବୁଡ଼ାଇଦେଲେ । ସେହିପରି କୋରାପୁଟ ଜେଲରେ ନିର୍ଜନ କାରାବାସରେ ରହିଥିବା ବେଳେ ତେଲୁଗୁ ଓ ଉର୍ଦ୍ଦୁ ଶିଖିବାକୁ ଚେଷ୍ଟା କରିଥିଲି । ପ୍ରାଇମରର ସାହାଯ୍ୟରେ ପଢ଼ିବା ଲେଖିବା ଆରମ୍ଭ କରିଥିଲି । ମାତ୍ର ବିନା ସେହି ଭାଷୀ କୌଣସି ବ୍ୟକ୍ତି ସାହାଯ୍ୟରେ ଜେଲଖାନାରେ ଏକାକୀ ତାହା ଆୟତ୍ତ କରିବା କଷ୍ଟସାଧ୍ୟ ହୋଇପଡ଼ିଲା ।

ସେମିତି ଇଂରେଜୀରେ ମୁଁ ବା କେଉଁ ପଣ୍ଡିତ ! ସ୍କୁଲ ପଢ଼ା ତ ଛୁଟିଲି ୧୯୩୦ ମସିହାରେ—ରେଭେନ୍‌ସା କଲେଜିଏଟ୍ ସ୍କୁଲର ୧୦ମ ଶ୍ରେଣୀର ଛାତ୍ର ଥିବାବେଳେ । ଇଂରେଜୀରେ ଦକ୍ଷତା ଓ ବ୍ୟାକରଣ ଶୁଦ୍ଧି କିମ୍ବା King's English ବା Basic English ଲେଖିବା ବା ଶିଖିବାର ସୁଯୋଗ କେବେ ହେଲା ! ସ୍କୁଲ ତ୍ୟାଗ କଲାବେଳେ

ମାମୁଁ ବାଧା ଦେଇ ନ ଥିଲେ—ନରେନ୍ଦ୍ର ଜୀବନର ଗତି ବୋଧହୁଏ ଭିନ୍ନ ହୋଇଥାଆନ୍ତା ! କିନ୍ତୁ ୧୯୩୧ରେ ଗାନ୍ଧୀ-ଇରୱିନ୍ ଚୁକ୍ତିରେ ଖଲାସ ହୋଇଗଲି ପରେ ଏକ ଉଦ୍ୟମ କରିଥିଲେ ମତେ ପୁଣି ସ୍କୁଲରେ ଭର୍ତ୍ତି କରିବା ନିମନ୍ତେ । ମୋର ସାଙ୍ଗରେ ପାଠ ପଢ଼ୁଥିବା ଆଉ କେତେକ ପୁଣି ଫେରିଗଲେ—ପାଠପଢ଼ି ବଡ଼ ବଡ଼ ହାକିମ ହେଲେ । ମୋର ତ ତାହା ସବୁଠାରୁ ବେଶୀ ଜୋଡ଼ା ଥିଲା । ବାପା ଆଶା କରୁଥିଲେ ମୁଁ ଭଲ ପାଠପଢ଼ି ଭଲ ରୋଜଗାର କରି ରୋଜଗାର କଲେ ଅନ୍ୟ ପିଲାମାନଙ୍କୁ ସେ ଉଠାଇପାରିବେ । ଯେଉଁଦିନ ମୋର ପ୍ରଥମ କାରାଦଣ୍ଡରେ କଟକ କଚେରୀରୁ ପୁଲିସ ଗାଡ଼ିରେ ଆମକୁ ଜେଲ ଭିତରକୁ ନିଆଯାଉଥିଲା, ସେଦିନ ଚୌଧୁରୀ ବଜାର ମୋଡ଼ ଉପରେ ବାପାଙ୍କର ବିଷଣ୍ଣ ମୁଖ ଓ ଛଳ ଛଳ ଆଖି ଦେଖି ମୋ ଭିତରେ କୋହ ଉଠିଥିଲା । ମନରେ ଦୁର୍ବଳତା ପଶିଥିଲା । କିନ୍ତୁ ନିଜକୁ ସମ୍ଭାଳି ନେଲି । ମୁଁ ଯେ ବାପାଙ୍କର ଇଚ୍ଛା ପୂରଣ କରି ପାରିବି ନାହିଁ, ଏହା ନିଶ୍ଚିତ । ତେବେ ମାମୁଁଙ୍କୁ ପ୍ରତିଶ୍ରୁତି ଦେଇଥିଲି ଯେ ମୁଁ ସିନା ସ୍କୁଲକୁ ଫେରୁନାହିଁ, ମୁଁ ପଢ଼ାରେ ଲାଗିବି ଏବଂ ଆପଣଙ୍କୁ ସେଥିରେ ସନ୍ତୁଷ୍ଟ କରିପାରିବି । ଏହି କଥା ଦେଇଥିବା ହେତୁ ମୁଁ ଛଅବର୍ଷରୁ ଅଧିକ ସମୟ ଯେ କାରାବାସରେ କଟାଇଲି, ସେଥିରେ ଇତିହାସ, ଅର୍ଥନୀତି, ରାଜନୀତି ଓ ସମାଜ ବିଜ୍ଞାନ ସମ୍ବନ୍ଧରେ ଧାରାବାହିକ ଭାବରେ ପଢ଼ିବାକୁ ଆରମ୍ଭ କଲି । ବିଭିନ୍ନ ଦେଶର ବିପ୍ଳବ-ଇତିହାସ ଅଧ୍ୟୟନ କରିବାରେ ମୋର ବିଶେଷ ଆଗ୍ରହ ରହିଲା । । ସମାଜବାଦୀ ହେବାରୁ ସମାଜର ଆର୍ଥିକ ପରିସ୍ଥିତି ଓ ଶ୍ରେଣୀ ଗଠନ ସମ୍ବନ୍ଧରେ ବେଶି ଜାଣିବାକୁ ପଡ଼ିଲା । ଏହା ଅର୍ଥନୀତି ବୁଝିବାରେ ମତେ ସାହାଯ୍ୟ କରିଥିଲା । କିନ୍ତୁ ଏହି ସବୁ ପୁସ୍ତକ ଥିଲା ଇଂରେଜୀରେ । ସବୁ ଶବ୍ଦର ଅର୍ଥ ଜାଣିବାକୁ ପରୁଆ ନ କରି ବାଧ୍ୟବାଧ୍ୟ ପଢ଼ିଯିବା ଯୋଗୁଁ ଇଂରେଜୀରେ ମୋର ଗୋଟାଏ ସାଧାରଣ ଜ୍ଞାନ ହୋଇଗଲା । ପରବର୍ତ୍ତୀ କାଳରେ ଇଂରେଜୀ ସମ୍ବାଦପତ୍ର ଓ ସମ୍ବାଦ ଏଜେନ୍‌ସିର ପ୍ରତିନିଧିରୂପେ କାର୍ଯ୍ୟ କରିବାରୁ ଇଂରେଜୀରେ ଲେଖିବା ଓ କହିବା ଅଭ୍ୟାସରେ ପରିଣତ ହୋଇଗଲା । ସୋସଲିଷ୍ଟ ପାର୍ଟି ଓ କଂଗ୍ରେସ କମିଟିର କର୍ମକର୍ତ୍ତା ହେବାରୁ ଇଂରେଜୀ ବ୍ୟବହାର କରିବାର ଆବଶ୍ୟକତା ପଡ଼ିଲା ଏବଂ ଦକ୍ଷିଣାଞ୍ଚଳରେ ସୋସଲିଷ୍ଟ ପାର୍ଟି ସଙ୍ଗଠନ୍ରରେ ଗସ୍ତ କଲାବେଳେ ଇଂରେଜୀରେ ହିଁ ଭାଷଣ ଦେବାକୁ ପଡ଼ିଲା । ଶେଷକୁ ୧୯୫୨ରେ ଯେତେବେଳେ ମୁଁ ପାର୍ଲିମେଣ୍ଟକୁ ଗଲି, ସେଥିରେ ଇଂରେଜୀରେ କହିବା ଲାଗି ସ୍ଥିର କଲି; କାରଣ ମୁଁ ଦେଖିଲି ଯେ ଦକ୍ଷିଣ ପୂର୍ବାଞ୍ଚଳର ବହୁ ସଭ୍ୟ ହିନ୍ଦି ବୁଝନ୍ତି ନାହିଁ—ମୋ କଥା ବୁଝିବେ ନାହିଁ । ସମ୍ବାଦପତ୍ରବାଲା ବି ଇଂରେଜୀ ଭାଷଣକୁ ଯେପରି ସହଜରେ ରିପୋର୍ଟ କରନ୍ତି, ଅନ୍ୟ ଭାଷାରେ ହେଲେ ସେପରି ଦୃଷ୍ଟି ଦିଅନ୍ତି ନାହିଁ । ୧୮ ବର୍ଷର ପାର୍ଲିମେଣ୍ଟାରୀ ଜୀବନରେ ବହୁଥର ଭାଷଣ ଦେବାକୁ ପଡ଼ିଛି—କାରଣ ମୁଁ ତ କିଛି ମାମୁଲି ସଭ୍ୟ ନ ଥିଲି —କମିଟି ଇତ୍ୟାଦିରେ ଯୋଗ ଦେଇଛି ଏବଂ ଆନ୍ତର୍ଜାତିକ ସମ୍ମିଳନୀମାନଙ୍କରେ ଯୋଗ ଦେଇଛି । ପ୍ରଜା ସୋସଲିଷ୍ଟ ପାର୍ଟିର କର୍ମକର୍ତ୍ତା ଭାବରେ ବହୁ ସମ୍ମିଳନୀ ଇତ୍ୟାଦିରେ ସେହି ଇଂରେଜୀରେ ହିଁ ମୋତେ କହିବାକୁ ପଡ଼େ । ସମ୍ବାଦପତ୍ରମାନଙ୍କରେ ପ୍ରବନ୍ଧ ଲେଖେ,

ବିବରଣୀ ବିବୃତ ହଏ ଏବଂ ଶେଷକୁ 'Political Corruption in India' ବୋଲି ଏକ ପୁସ୍ତକ ମଧ୍ୟ ଲେଖିଲି । ଏହିସବୁ କାରଣରୁ ଇଂରେଜୀ ଜ୍ଞାନ ଟିକିଏ ବୃଦ୍ଧିପାଇଲା ।

୧୯୬୮ ନଭେମ୍ବରରେ ବ୍ରିଟିଶ ହାଉସ୍ ଅଫ କମନ୍ସରେ ବ୍ରିଟିଶ ଓଭରସିଜ୍ ଫେଲୋସିପ୍ ଆସୋସିଏସନ୍ ତରଫରୁ ମତେ ଏକ ଅଭ୍ୟର୍ଥନା ଦିଆଯାଇଥିଲା । ବ୍ରିଟିଶ ପାର୍ଲିମେଣ୍ଟର ବିରୋଧୀ ଦଳ ନେତା ଶ୍ରମିକ ଦଳର ଗଏଟ୍ସ୍କେଲ ସଭାପତିତ୍ୱ କରୁଥାଆନ୍ତି । ଭାଷଣ ଓ ପ୍ରଶ୍ନୋତ୍ତର ହେଲା । ଶେଷରେ କେତେକ ବ୍ରିଟିଶ ଏମ୍. ପି. ମତେ ଘେରିଯାଇ ପଚାରିଲେ—ଆପଣ କେଉଁ ଇଂଲଣ୍ଡ୍ ଇଉନିଭର୍ସିଟିରେ ପଢ଼ିଥିଲେ ? ମତେ ପରିହାସ କରିବା ଲାଗି କି ତାରିଫ୍ କରି ଏହା କହିଲେ ସେମାନେ ଜାଣନ୍ତି; ମାତ୍ର ମୋ କଥା ଶୁଣିଲାବେଳେ ଯେମିତି ତାଳି, ହର୍ଷଧ୍ୱନି ଆଦି ହେଉଥାଏ, ସେଥିରୁ ପରିହାସର ସମ୍ଭାବନା କମ୍ ବୋଲି ଅନୁମିତ ହେବ । ଇଂରେଜୀ ଜ୍ଞାନ ସମ୍ବନ୍ଧରେ ମତେ ଆଉ ଏକ ସାର୍ଟିଫିକେଟ ମିଳିଲା ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପାଖରୁ । ସେ ଓଡ଼ିଶାରେ ସର୍ବୋତ୍କୃଷ୍ଟ ଇଂରେଜୀ ପଣ୍ଡିତ ବୋଲି ପରିଚିତ ଥିଲେ । ୧୯୫୨ ସାଧାରଣ ନିର୍ବାଚନ ପରେ ମୁଁ ସୋସଲିଷ୍ଟ ପାର୍ଟିର ପ୍ରସ୍ତାବ ଇଂରେଜୀରେ ପ୍ରସ୍ତୁତ କରିଥିଲି । ଆମର ସହସାଥୀ ଗୋବିନ୍ଦ ମିଶ୍ରଙ୍କର ଗୋଦାବରୀଶବାବୁଙ୍କ ସହ ସମ୍ପର୍କ ଥାଏ । ସେ ଉକ୍ତ ପ୍ରସ୍ତାବ ନେଇ ତାଙ୍କୁ ଦେଖାଇଲେ । ସେ ପଢ଼ି ବିସ୍ମିତ ହେଲେ । କହିଲେ—ସୁରେନ୍ଦ୍ର ଏମିତି ଇଂରେଜୀ ଲେଖିପାରନ୍ତି ? ମୋର ଧାରଣା ଥିଲା ସାରଙ୍ଗଧର ଦାସ ଏହା ଲେଖିଥାଇ ପାରନ୍ତି ବୋଲି ! ତେବେ ମୋର ଇଂରେଜୀଜ୍ଞାନ ସେପରି କିଛି ଉଚ୍ଚକୋଟିର ନୁହେଁ—ଇଂରେଜୀ ପଢ଼ୁଆ ଲୋକଙ୍କ ଭାଷଣ ଶୁଣିଲେ ମୁଁ ଯେ କିଭଳି ନଗଣ୍ୟ ଏବଂ ମୋର କେତେ ଭୁଲ ରହିଯାଏ, ମୁଁ ତାହା ଜାଣି ନିଜକୁ ଭାରି ଶ୍ରେଷ୍ଠ ବିଚାରେ । ମୋର ଇଂରେଜୀ ଜ୍ଞାନକୁ 'ଚଳନ୍ତି ଇଂରେଜୀ' ବୋଲି କୁହାଯାଇପାରେ । ହିନ୍ଦି, ଇଂରେଜୀ, ବଙ୍ଗଳା ଓ ଓଡ଼ିଆ ଭାଷାରେ ମୁଁ କୌଣସି ଅସୁବିଧା ଅନୁଭବ କରେ ନାହିଁ । ଜବାହାରଲାଲଙ୍କ ରଚିତ An Autobiography (ମୋ ନିଜ କାହାଣୀ) ଏବଂ Glimpses of World History (ବିଶ୍ୱ ଇତିହାସ) ପରି ବିରାଟ ଇଂରେଜୀ ଗ୍ରନ୍ଥକୁ ମୁଁ ଜେଲଖାନାରେ ଥିବାବେଳେ ଓଡ଼ିଆରେ ଅନୁବାଦ କରିପାରିଥିଲି ।

### ଖଦଡ଼ ପିନ୍ଧା ଆରମ୍ଭ :

ମୋର ମାମୁଁ ପଣ୍ଡିତ ଆକୁଳ ମିଶ୍ର ପୁସ୍ତକ ପ୍ରକାଶକ ହୋଇଥିଲେ ସୁଦ୍ଧା ଥିଲେ ଜଣେ ଜାତୀୟତାବାଦୀ— ନିଜେ ଖଦଡ଼ ପିନ୍ଧୁଥିଲେ ଏବଂ ଖଦୀ ସଙ୍ଗଠନ ସହ ସମ୍ପୃକ୍ତ ଥିଲେ । ତେଣୁ ଓଡ଼ିଶାର ସେ ସମୟର ପ୍ରାୟ ସବୁ ନାମଜାଦା କଂଗ୍ରେସ ନେତା ତାଙ୍କ ପାଖକୁ ଯିବା

ଆସିବା କରନ୍ତି । ସେମାନଙ୍କୁ ଭୋଜି ଲାଗି ନିମନ୍ତ୍ରଣ ଦେବାରେ ମାମୁଁ ବଡ଼ ଆନନ୍ଦ ପାଆନ୍ତି । ତେଣୁ ସେମାନଙ୍କ ଭିତରେ ଯେଉଁସବୁ ରାଜନୀତିକ ଆଲୋଚନା ହୁଏ ମୁଁ ଶୁଣେ ଓ ସେ ସମ୍ପର୍କରେ ଅଧିକ ଜାଣିବା ନିମନ୍ତେ ମୋ ମନରେ ଆଗ୍ରହ ସୃଷ୍ଟି ହୁଏ । ଏହି ପ୍ରଭାବରେ ପଡ଼ି, ମୁଁ ୧୯୨୮ ମସିହାରେ କେବଳ ଖଦିବସ୍ତ୍ର ଏଣିକି ପିନ୍ଧିବି ବୋଲି ଏକ ଶପଥ ପତ୍ରରେ ସ୍ୱାକ୍ଷର କରିଥିଲି । ମୋ ଭଳି ଏମିତି ଆମର କ୍ଲାସର ନଅଜଣ ଛାତ୍ର ଶପଥନେଲେ । ଆମେ ସବୁ ଭଲ ଛାତ୍ର ହୋଇଥିବାରୁ ଆଗ ବେଞ୍ଚରେ ବସୁଥାଉ । ଦିନେ ୯ ଜଣ ଯାକ ଏକାଭଳି ଖଦଡ଼ କୁର୍ତ୍ତା ପିନ୍ଧି କ୍ଲାସରେ ପହଞ୍ଚିଲୁ । ମୋହିନୀ ମୋହନ ନନ୍ଦୀ ଥାଆନ୍ତି ଆମର କ୍ଲାସ ଶିକ୍ଷକ । ସେ ଦେଖି ପ୍ରଥମେ ବିସ୍ମିତ ହେଲେ । ପରେ ବୋଧହୁଏ ଭାବିଲେ ଯେ କିଛି ଦଣ୍ଡ ବିଧାନ ନ କଲେ ଇଂରେଜ ସରକାର ତାଙ୍କ ଉପରେ କୋପ କରିପାରନ୍ତି । ସେ ଆମ ସମସ୍ତଙ୍କୁ ବେଞ୍ଚରେ ଛିଡ଼ା ହେବା ନିମନ୍ତେ କହିଲେ ଏବଂ ୧୯୨୧ରେ ସେ ନିଜେ ଖଦଡ଼ ପିନ୍ଧି କିଭଳି ତାର ରଙ୍ଗ ଛାଡ଼ି ଛିଉଛିଉକା ବାଘ ପରି ହୋଇଗଲେ ତାହା ବର୍ଣ୍ଣନା କରି ଆଉ ଖଦଡ଼ ନ ପିନ୍ଧିବାଲାଗି ଆମମାନଙ୍କୁ କହିଲେ । ଖଦଡ଼ ପିନ୍ଧିବା ଇଂରେଜ ଦ୍ରୋହ କାର୍ଯ୍ୟରୂପେ ଗ୍ରହଣ କରାଯାଉଥିଲା । ମୁଁ ଖଦଡ଼ ପିନ୍ଧା ଆରମ୍ଭ କରିବାରୁ ମାମୁଁ ଭାରି ଖୁସି ହୋଇଥାଆନ୍ତି । ମାଷ୍ଟ୍ରେ କ୍ଲାସରେ ଯାହା କଲେ, ମୁଁ ଘରେ ପହଞ୍ଚି ମାମୁଁଙ୍କ ଆଗରେ ବର୍ଣ୍ଣନା କଲି । ମାମୁଁଙ୍କଠୁଁ ଶୁଣି 'ସମାଜ'ରେ ଗୋଟିଏ ପ୍ରହସନ ନାଟକ ହିସାବରେ କାହାରି ନାମ ନ ଦେଇ ସବୁ ସତ୍ୟ ଘଟଣାଟି ପ୍ରକାଶ ପାଇଗଲା । ସେତେବେଳକୁ 'ସମାଜ' କେବଳ ସାପ୍ତାହିକ ରୂପେ ପ୍ରକାଶ ପାଉଥାଏ । 'ସମାଜ'ର ସତ୍ୟବାଦୀ ପ୍ରେସ ଟ୍ରେଡ଼ଲ ମେସିନ୍‌ଟିରେ ଚାଲୁଥିଲା । ଦୈନିକ କଥା ଚନ୍ତି ହେଲା ବେଳକୁ ଅର୍ଥର ଅଭାବ । କେହି ବ୍ୟାଙ୍କ ସେତେବେଳେ 'ସମାଜ'କୁ ଋଣ ଦେବାକୁ ସମ୍ମତ ହେଲେ ନାହିଁ । ମାମୁଁ ଆକୁଳ ମିଶ୍ର ନିଜର ତେଲଙ୍ଗାବଜାର ଘରକୁ କଟକ ବ୍ୟାଙ୍କରେ ବନ୍ଧାପକାଇ ଋଣ ଆଣିଲେ ଏବଂ ସେଇ ଟଙ୍କାରେ 'ସମାଜ' ଲାଗି ମେସିନ୍ କଣା ହେଲା; ଦୈନିକ ବାହାରିପାରିଲା । ଏକ ପ୍ରକାର ସେ ହେଲେ "ସମାଜ"ର ପ୍ରତିଷ୍ଠାତା । କିଏ ଏ ସମ୍ବାଦ ଦେଲା ବୋଲି ନାନା ଅନୁସନ୍ଧାନ ଚାଲିଲା—ମାତ୍ର କିଛି ପତ୍ତା ମିଳିଲା ନାହିଁ । କିନ୍ତୁ ଖଦଡ଼ ପିନ୍ଧି ଆସିଲେ ଆଉ କେହି ନାସିକା କୁଞ୍ଚନ କଲା ନାହିଁ । ସେହିକାଳୁ ମୁଁ ବରାବର ଅଭ୍ୟସ୍ତ ଭାବରେ ଖଦୀବସ୍ତ୍ର ପରିଧାନ କରୁଛି ।

## ବୈବାହିକ ଜୀବନ :

ଏହି ବ୍ୟକ୍ତିଗତ କାହାଣୀରେ ଆଉ ଗୋଟିଏ ଦୁଇଟି ବିଷୟ ଲେଖି ଶେଷ କରିବା ଉଚିତ ହେବ । ଗୋଟିଏ ହେଉଛି ମୋର ବୈବାହିକ ବା ସାଂସାରିକ ଜୀବନ । ମୁଁ ରାଜନୀତିରେ ପ୍ରବେଶ କରି ଘନ ଘନ ଜେଲ୍ ବରଣ କଲି ସତ, ମାତ୍ର ମୋର ବିବାହ ପ୍ରଶ୍ନ ମଝିରେ ମଝିରେ ବରାବର ଉଠୁଥାଏ । ଆମ ସମାଜରେ ଯାହା ପ୍ରଚଳନ, ବାପମାଙ୍କର

ବିବାହ ଦେବାର ଦାୟିତ୍ୱ—ବଡ଼ ପୁଅ ପରେ ତା' ତଳପୁଅ ହୋଇଗଲେ ପୁଣି ଅନ୍ୟମାନଙ୍କ ପାଳି ପଡ଼ିବ—ଗୋଟିକ ପରେ ଗୋଟିଏ ବୋଝ ମୁକ୍ତ ହେବେ । ପୁଅ ବାହା ହୋଇ ନିଜର ସଂସାର ଚଳାଇବାର କ୍ଷମତା ତାର ବା ପରିବାରର ଅଛି କି ନା ସେଇଟା ଆଦୌ ବିଚାରକୁ ନଆସାଏ ନାହିଁ । "ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି"—ଏହି ଧାରାରେ ଏସବୁ କାର୍ଯ୍ୟ ସମ୍ପାଦିତ ହୁଏ ।

ରାଜନୀତିକ କାର୍ଯ୍ୟରେ ଲିପ୍ତ ହେବାରୁ ମୋର ବିବାହ ସମ୍ବନ୍ଧରେ ଭିନ୍ନ ଧାରଣା ହୋଇଥାଏ । ମୁଁ କେତେକ ଆତଙ୍କବାଦୀଙ୍କ ସମ୍ପର୍କରେ ଆସିଥିଲି—ସେମାନେ ଚରମ ତ୍ୟାଗ ପ୍ରାଣବଳି ଦେବା ନିମନ୍ତେ ନିଜକୁ ସର୍ବଦା ପ୍ରସ୍ତୁତ ରଖନ୍ତି ଏବଂ ଯୌନ ସମ୍ପର୍କ ତାଙ୍କ ଜୀବନରେ ଗୌଣ ହୋଇଥାଏ; ପ୍ରତ୍ୟେକ ମଣିଷ ପରି ଯୌନକ୍ଷୁଧା ଥାଏ, ମାତ୍ର ସେଥିରେ ବାନ୍ଧି ହୋଇ ଅସଲ ଲକ୍ଷ୍ୟରେ ବାଧା ଯେପରି ନ ପଡ଼ୁଛି । ତେଣୁ ସେମାନେ ବଡ଼ କଠୋର ଶୃଙ୍ଖଳିତ ଜୀବନ ଯାପନ କରନ୍ତି । ମୁଁ ସେଥିରେ ଯୋଗ ଦେଇ ନ ଥିଲେ ସୁଦ୍ଧା ବୈପ୍ଳବିକ କାର୍ଯ୍ୟ କରିବି ଏବଂ ଦେଶରୁ ବିଦେଶୀ ଶକ୍ତି ନ ହଟିବା ପର୍ଯ୍ୟନ୍ତ ବିରାମ ନାହିଁ ବୋଲି ପଣ କଲି । ତେଣୁ ମନରେ ସ୍ଥିର କରିନେଲି ଯେ, ଦେଶ ସ୍ୱାଧୀନ ନ ହେବା ପର୍ଯ୍ୟନ୍ତ ବିବାହ କରିବି ନାହିଁ । ଦ୍ୱିତୀୟରେ ମୋର ଆର୍ଥିକ ସ୍ଥିତି ଓ ଜୀବନ ଅନିଶ୍ଚିତ—ସଂସାର କିପରି ଚଳାଇବି ? ତେଣୁ ଘରେ ଆତ୍ମୀୟସ୍ୱଜନମାନଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ କଲି । ପରିସ୍ଥିତି ପଥର ସମ୍ମୁଖୀନ ହୋଇନାହିଁ ବୋଲି କହିବାଟା ଭୁଲ ହେବ । । ଆମର ସମାଜକୁ ମୁଁ ଗ୍ରାମ ଓ ସହରରେ ବାସ କରି ଯାହା ଦେଖିଛି, ଅଙ୍ଗେ ନିଭେଇଛି, ସେଥିରେ ଆମର ସାମାଜିକ ପରିବେଶରେ ସବୁ ପ୍ରଲୋଭନ ଏଡ଼ି ଚଳିବା ବଡ଼ କଷ୍ଟକର । ତାହା ଛଡ଼ା ମୁଁ ତ ଜଣେ ସାଧାରଣ ମଣିଷ—ପ୍ରତ୍ୟେକ ଲୋକର ସ୍ୱାଭାବିକ ପ୍ରତିକ୍ରିୟା ରହିଛି । ମୁଁ କିନ୍ତୁ ମୋର ପଣ ରକ୍ଷା କରି ପାରିଛି । ବିବାହ କଲି ୧୯୪୮ ମସିହା ଜାନୁୟାରୀ ୨୯ ତାରିଖରେ । ଟିକିଏ ଡେରି ହୋଇଗଲା—ମାତ୍ର ତାହା ତ ଜାଣିଶୁଣି । ମୋ ସାଙ୍ଗସାଥୀ ଏପରିକି ସାନଭାଇ ବି ସେତେବେଳକୁ ବାହା ହୋଇ ସାରିଥାଆନ୍ତି । ଏ ବିବାହ ବି ହୋଇ ନ ଥାନ୍ତା ଯଦି ମୁଁ କେତେକ ବ୍ୟକ୍ତିଗତ ସମସ୍ୟାର ସମ୍ମୁଖୀନ ହୋଇ ନ ଥାଆନ୍ତି । ମୁଁ ରାଜନୀତି କ୍ଷେତ୍ରରେ ଟିକିଏ ନାମ ପାଇଲାପରେ ୧୯୪୬ ମସିହାରେ ଯେତେବେଳେ ପୂର୍ଣ୍ଣପ୍ରାଣରେ ସୋସାଲିଷ୍ଟ ଦଳର ପୁନର୍ଗଠନ କାର୍ଯ୍ୟରେ ଲିପ୍ତ ରହିଲି, ସେତେବେଳେ ମତେ ଅଧିକ ସତର୍କ ରହିବାକୁ ପଡ଼ିଲା । ବହୁ ସଂଖ୍ୟାରେ ଯୁବକ ଯୁବତୀ ଆନ୍ଦୋଳନ ଭିତରକୁ ଆସିଲେ । ସେତେବେଳେ ମୁଁ ବିଚାର କଲି ମୁଁ ଅବିବାହିତ ରହିଲେ ନାନା ଅପବାଦ ରଟନା ହୋଇପାରେ । ରାଜନୀତି କ୍ଷେତ୍ରରେ ଆମର ତ ଶତ୍ରୁ କିଛି କମ୍ ନାହାନ୍ତି ! ତେଣୁ ବିବାହ କରିବା ଲାଗି ସ୍ଥିର କଲି । ବିବାହଟି ବଡ଼ ସାଦାସିଧା—ବିନା ଆଡ଼ମ୍ବରରେ କରାଗଲା । ଆଗରୁ ବୋଧହୁଏ ଉଲ୍ଲେଖ କରିଛି ସୋସାଲିଷ୍ଟ ହିସାବରେ ଜାତି ବା ଧର୍ମପ୍ରଥା

ପାଳନ ନ କରି କେମିତି ବିନା ପଇସାରେ ରେଜିଷ୍ଟ୍ରେସନ ବିବାହର ଉଦ୍ୟମ ହୋଇଥିଲା । ସେଇଟାର ଗୋଟାଏ ସମାଧାନ ହୋଇଗଲା । ମୋର ଆତ୍ମୀୟସ୍ୱଜନ, ରାଜନୀତିକ ଓ ବ୍ୟକ୍ତିଗତ ସାଥିଙ୍କ ଉପସ୍ଥିତିରେ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ମୋର ସ୍ତ୍ରୀ ଶ୍ରୀମତୀ ଗାୟତ୍ରୀ ପଣ୍ଡାଙ୍କ ଘର ହେଲା ଗଞ୍ଜାମ ଜିଲ୍ଲାର ଚିକିଟି ଅଞ୍ଚଳର ଖଜୁରିଆ ଶାସନରେ । ଶ୍ୱଶୁରଙ୍କ ନାମ ଅନ୍ତର୍ଯ୍ୟାମୀ ପଣ୍ଡା ଏବଂ ଶାଶୁଙ୍କ ନାମ ଶୋଭା ଦେବୀ । ଦୁହେଁ ଏବେ ସୁଦ୍ଧା ଜୀବିତ ଅଛନ୍ତି । ସେମାନେ ସ୍ୱାଧୀନତା ସଂଗ୍ରାମୀ ଏବଂ ସ୍ୱାଧୀନତା ସଂଗ୍ରାମ ବେଳେ ମୋ ସହିତ ପରିଚୟ ଥିଲା । ମୋ ସ୍ତ୍ରୀ କାଙ୍ଗଡ଼ି ଗୁରୁକୁଳ କନ୍ୟା ମହାବିଦ୍ୟାଳୟରୁ 'ବିଦ୍ୟାଳଙ୍କୃତା' ଉପାଧି ଲାଭ କରିଥିଲା । ମୋର ଇଚ୍ଛା ଥିଲା ବିବାହ ଏପରି ହେଉ ଯେପରି ମୋର ରାଜନୀତି କାର୍ଯ୍ୟରେ ବାଧା ହେବ ନାହିଁ—ସହାୟକ ହେବ । ମୋ ସ୍ତ୍ରୀ ଓ ତାଙ୍କ ପରିବାର ମଧ୍ୟ ସେହିଭଳି ଚିନ୍ତା କରୁଥିଲେ । ତେଣୁ ଆମେ ପରସ୍ପରକୁ ସୁହାଇଲା ବୋଲି ସ୍ଥିର କଲୁ ।

କିନ୍ତୁ ଏ ଦାମ୍ପତ୍ୟ ଜୀବନ ବେଶିକାଳ ମୋ କପାଳରେ ନ ଥିଲା । ଅତି କରୁଣ ପରିସ୍ଥିତିରେ ମୋର ସ୍ତ୍ରୀର ମୃତ୍ୟୁ ଘଟିଲା ୧୯୫୦ ମସିହା ସେପ୍ଟେମ୍ବର ପହିଲା ତାରିଖରେ, ମୋର ଅନୁପସ୍ଥିତିରେ । ସେତେବେଳର ଏକ ଦୁଃଖ ମୋ ମନକୁ ବରାବର ଘାଣ୍ଟୁଛି ।

ସେତେବେଳକୁ ମୋର ଝିଅ ଜନ୍ମ ହୋଇ ସାରିଲାଣି । ୧୯୫୦ ଅଗଷ୍ଟ ମାସରେ ମୁଁ ଘରୁ ୧୫ ଦିନ ଅନୁପସ୍ଥିତ ଥିଲି—ରାଜସ୍ଥାନର ଜୟପୁରଠାରେ ଏକ ସୋସିଆଲିଷ୍ଟ ଶିବିରରେ ଯୋଗଦାନ କରିବା ନିମନ୍ତେ ଯାଇଥିଲି । ସେଠୁ ଫେରିଲି ଅଗଷ୍ଟ ୨୯ ସକାଳେ । ମୋ ଅନୁପସ୍ଥିତିରେ ଝିଅଟି ଭୀଷଣ ଜ୍ୱର ଭୋଗିଲା ଏବଂ ସେଥିରେ ମୋ ସ୍ତ୍ରୀ ଟିକିଏ ବିଚଳିତ ଓ କ୍ଲାନ୍ତ ହୋଇପଡ଼ିଥିଲା । ମୋ ପହଞ୍ଚିବା ପରେ ଝିଅର ଜ୍ୱର କମିଲା; ତାର ମାଆ ବି ଟିକିଏ ଆଶ୍ୱସ୍ତ ହେଲା । ମାତ୍ର ମୋର ସୋସିଆଲିଷ୍ଟ ସାଥିମାନେ ଏକ ଭୋକିଲା ପଟୁଆରର ମୁଁ ନେତୃତ୍ୱ ନେବା ନିମନ୍ତେ ଆଗରୁ ସ୍ଥିର କରି ଘୋଷଣା କରିଦେଇଥିଲେ । ମୟୂରଭଞ୍ଜର ପଞ୍ଚପୀଢ଼ଠାରେ ମତେ ପହିଲା ତାରିଖରେ ପହଞ୍ଚିବାକୁ ହିଁ ପଡ଼ିବ । ତେଣୁ ଅଗଷ୍ଟ ୩୦ ରାତିରେ ବାହାରିଲା ବେଳକୁ ମୋ ସ୍ତ୍ରୀ ଗୀତୁ ମତେ ନ ଯିବାଲାଗି ଅନୁନୟ କଲା— "ତୁମେ ଆସିବାରୁ ପିଲାଟା ଭଲ ହେଉଛି—ମୁଁ ବଡ଼ କ୍ଳାନ୍ତ—ତୁମେ ଯାଅ ନା" । କେବେ ଏଭଳି ସେ ମତେ କହି ନ ଥିଲା । ବାସ୍ତବିକ ମୋର ବିବାହ ପରେ ମୁଁ ସୋସିଆଲିଷ୍ଟ ପାର୍ଟି କାର୍ଯ୍ୟରେ ଏପରି ବ୍ୟସ୍ତ ରହୁଥିଲି ଯେ ଦୁଇ ଅଢ଼େଇବର୍ଷ ଭିତରେ କେବେ ଆମେ ୫ଦିନ ଏକସାଙ୍ଗରେ ରହିପାରି ନ ଥିଲୁ । ମୋର ମାଉଁ ଏଥିଲାଗି ମତେ ଗାଳି ବି ଦିଏ । କିନ୍ତୁ ମୁଁ କୌଣସି କଥାକୁ ଖାତିର ନ କରି ତାକୁ ଏକ ରୁକ୍ଷ ଜବାବ ଦେଲି । କହିଲି 'ଏଠି ତ ଘରେ ଡାକ୍ତର, ଅନ୍ୟ ସୁବିଧା ରହିଛି । ସେଠି ଯେ ଶହ ଶହ ଲୋକ ଅନାହାରରେ—ତାଙ୍କ କଥା ଆଗ ନା ଆମର ଏ ଦୁଃଖ ବେଶି ?" ଏହା କହି ମୁଁ ବାହାରିଗଲି; ଗୀତୁ ମୁହଁ ଶୁଖାଇ ରହିଲା । ସେପ୍ଟେମ୍ବର ପହିଲା ଦିନ ପ୍ରାୟ ସାଢ଼େ ଗୋଟାଏ ବେଳେ ହୃତ୍ପିଣ୍ଡ କ୍ରିୟା ବନ୍ଦ ହୋଇ ତାର ପ୍ରାଣବାୟୁ ଉଡ଼ିଗଲା । ମୁଁ ସେତିକିବେଳେ ଏକ ଭୋକିଲା ପଟୁଆର ନେଇ

ପଞ୍ଚପୀଢ଼ରେ ପରିକ୍ରମା କରୁଥାଏ । କି ନିଦାରୁଣ ଦୁଃଖ—ସହିବାକୁ ହେଲା—ସହୁଛି । ମା ଛେଉଣ୍ଡ ମୋର ପିଲାଟି ମୋର ରାଜନୀତିକ ଅସ୍ଥିର ଜୀବନ ଭିତରେ ବଢ଼ିଛି । ଏମ୍. ଏ., ବି. ଇଡ଼ି. ଓ ଏଲ୍. ଏଲ୍. ବି. ପାସ କରିଛି, ତାର ନାମ ନୀହାରବାଳା—ଡାକ ନାମ ନୀନା । ସେ ବିବାହ କରିଛି । ଜୋଇଁ ଶ୍ରୀ ହେମନ୍ତ କୁମାର ମିଶ୍ର—ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟରେ ଇଞ୍ଜିନିୟର । ଏହା ଏ ସଂସାରରେ ମୋର ଶେଷ ସମ୍ପର୍କ । ବନ୍ଧୁ ବନ୍ଧୁଙ୍କ ଅନୁରୋଧ ସତ୍ତ୍ୱେ ମୁଁ ଆଉ ଦ୍ୱିତୀୟ ବିବାହ ନ କରି ଏକ କଠିନ ଏବଂ ନିଃସଙ୍ଗ ଜୀବନ କଟାଉଛି । ରାଜନୀତିକ ଜୀବନ—ପୁଣି ମୋ ପରି ଅସ୍ଥିର ରାଜନୀତିଜ୍ଞଙ୍କ ପକ୍ଷରେ ପାରିବାରିକ ଜୀବନ ଖାପ ଖାଇ ପାରିଲା ନାହିଁ ।

ଏହି ଆକସ୍ମିକ ମୃତ୍ୟୁ ସମ୍ବାଦ ପାଇ ଭାରତର ବିଭିନ୍ନ ସ୍ଥାନରୁ ବନ୍ଧୁମାନେ ସାନ୍ତ୍ୱନା ବାଣୀ ଶୁଣାଇଲେ । ଏବେ ପୁରୁଣା ଚିଠିପତ୍ର ଦେଖୁ ଦେଖୁ ସେଥିରୁ କେତେକ ଦେଖିବାକୁ ପାଇଲି । ଜୟପ୍ରକାଶ ନାରାୟଣ ଲେଖିଥିଲେ "I am sure a man of your capacity for self-discipline needs no words of encouragement from me. All that I can do is to assure you that my heart is entirely with you in your tragic loss."

ତାଙ୍କ ସ୍ତ୍ରୀ ପ୍ରଭାବତୀ ଦେବୀ ହିନ୍ଦିରେ ଏକ ଦୀର୍ଘ ପତ୍ରରେ ଲେଖିଲେ—"ପ୍ରିୟ ସୁରେନ୍‌ବାବୁ, ଈଶ୍ୱର କୀ ୟହ ବିଚିତ୍ର ଲୀଲା ହୈ, ଜୋ ସଜ୍ଜନ ଅଚ୍ଛେ ହୋତେ ହୈଁ ଔର୍ ଜିନ୍‌କୀ ଜରୁରତ୍ ହୋତୀ ହୈ, ଉସୀ କୋ ଈଶ୍ୱର ହମାରେ ପାଶ୍‌ସେ ଉଠାଲେ-ଜାତେ ହୈ । ଜବ୍ ମାଦ୍ରାସ୍‌ମେ ଉନ୍‌ସେ ବାତେଁ ହୁଇ ଥୀ, ତବ୍ କୋନ୍ ଜାନ୍‌ତା ଥା ଫୀର ଦୁବାର୍ ମୁଲାକାତ୍ ନହୀଁ ହୋଗୀ । ମୁଝେ ତୋ ବେଟୀ କେ ଲିଏ ଚିନ୍ତା ହୈ । ଜବ୍ ଆପ୍ ପତ୍ର ଲିଖ୍‌ସକେଁ ତୋ ହାଲ୍ ଲିଖ୍‌ନେକୀ କୃପା କରେଁ ।"

ଦୁଃଖରେ ଅଭିଭୂତ ହୋ'ଇ ଦଶପଲ୍ଲାରୁ ସ୍ୱର୍ଗତ ଗୋବିନ୍ଦଚନ୍ଦ୍ର ମିଶ୍ର ଲେଖିଲେ— "ତୋ ପ୍ରତି ମୋ ହୃଦୟ ସ୍ନେହ ଓ ଶ୍ରଦ୍ଧାରେ ପରିପୂର୍ଣ୍ଣ । ଦେଶରେ ତୁ ଜଣେ ପ୍ରତିଭାଶାଳୀ ବ୍ୟକ୍ତି ରୂପେ ବିକାଶ ଲଭ କର ।"

ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାରପତି ଓ ସୁପ୍ରିମ କୋର୍ଟର ଜଜ୍ ସ୍ୱର୍ଗତଃ ବି. ଜଗନ୍ନାଥ ଦାସ ଲେଖିଲେ—"Her loss must mean a rude and unforgettable shake-up and dislocation for you. Both in your domestic and public life you must have been sharing your responsibilities and could have been expected to share more fully as she advanced in age."



[ ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ଧର୍ମପତ୍ନୀ ଗାୟତ୍ରୀ ଦେବୀ ]
( ବିବାହ ବେଳର )



[ ଦ୍ୱିବେଦୀଙ୍କ ପରବାର ]

ଠିଆ—ଜୋଇଁ ହେମନ୍ତକୁମାର ମିଶ୍ର, ସାନନାତି ଲୁଟୁ ଓ କନ୍ୟା ନନ୍ଦାରବାଲା
ବସିଛନ୍ତି—ନାତୁଣୀ ମିଟୁ ଓ ନାତି ପୁଟୁ, ମଝିରେ ଦ୍ୱିବେଦୀ

ସ୍ୱର୍ଗତ ସାରଙ୍ଗଧର ଦାସ ଦିଲ୍ଲୀରୁ ଲେଖିଲେ—"ମୋର ସରଳ ଜୀବନରେ ବଡ ଏକ ଧକ୍‌କା ଲଗିଛି । ମୁଁ ମଧ୍ୟ ନାରୁଣୀ ସମ୍ବନ୍ଧ କରି ସ୍ନେହ କରୁଥିଲି । ସଂପର୍କ ଅତି ଘନିଷ୍ଠ ହୋଇଗଲା ଏବଂ ଯେତେବେଳେ ସେକଥା ଭାବୁଛି କାନ୍ଦିଆସୁଛି । ତୁମେ ପୁଣି କାମରେ ଲାଗ । ବିଶ୍ୱପ୍ରେମହିଁ ଏକମାତ୍ର ସ୍ଥାୟୀପ୍ରେମ । ତୁମର ସେ ପ୍ରେମ ଅଛି, ତାକୁ ଆହୁରି ଦୃଢ଼କର ।"

ଜଣେ ସାଧାରଣ କର୍ମୀ ପକ୍ଷରେ କଣ କରଣୀୟ, ମହାତ୍ମା ଗାନ୍ଧୀ ସେ ସମ୍ବନ୍ଧରେ ବହୁ କଥା ଲେଖିଛନ୍ତି । ମୁଁ ଯଥାସମ୍ଭବ ବ୍ୟକ୍ତିଗତ ଜୀବନକୁ ସେହିପରି ସରଳ, ସହଜ ଓ ନିରାଡ଼ମ୍ବର କରିବାକୁ ଚେଷ୍ଟା କରିଛି । ମାତ୍ର ଗୋଟିଏ ବିଷୟରେ ମୋର ଶତଚେଷ୍ଟା ସତ୍ତ୍ୱେ ସଫଳ ହୋଇନାହିଁ । ଗାନ୍ଧିଜୀ କହୁଥିଲେ, ଜଣେ ସତ୍ୟାଗ୍ରହୀ ପକ୍ଷରେ ସୁସ୍ଥ ଓ ସକ୍ଷମ ରହିବା ଏକ ଅତି ଆବଶ୍ୟକ ଗୁଣ । ମୁଁ ବହୁକାଳ ସେହି କର୍ତ୍ତବ୍ୟବୋଧରେ ନାନା କସରତ୍ ଆସନ ନମସ୍କାର ଆଦି କରି ଦେହକୁ ଖୁବ୍ ଯତ୍ନରେ ରଖିଥିଲି । ଏବେ ବିପତ୍ନୀକ ଏବଂ ମୁଁ କୌଣସି ନିଶା ଦ୍ରବ୍ୟ ଏପରିକି ଚୂନ ପତର ଖଇନୀ ପର୍ଯ୍ୟନ୍ତ ସ୍ପର୍ଶ କରିନାହିଁ । ମୋର ଦେହ ସୁସ୍ଥ ରହିବାର କଥା । ଏଥିରେ ପ୍ରଥମ ଧକ୍‌କା ଲାଗିଲା ମୁଁ ବନ୍ୟାଞ୍ଚଳରେ ରିଲିଫ କାମ କରିବାବେଳେ । ଥଣ୍ଡା କାକରରେ ବହୁକାଳ ପଡ଼ି ରହିବାକୁ ପଡ଼ିବାରୁ ମତେ ସାଇଟିକା ଧରିପକାଇଲା । ଯାବତୀୟ ଚିକିତ୍ସା ସତ୍ତ୍ୱେ ଏଥିରୁ ଆରାମ୍ ଲଭିଲି ନାହିଁ । ଏବେ ତ ବୟସ୍କ ହୋଇଯିବାରୁ ବେଳେବେଳେ ମାସ ମାସ ଧରି ଅଚଳ ହୋଇ ପଡ଼ୁଛି । କିନ୍ତୁ ତା'ଠାରୁ ଆହୁରି ଗୁରୁତର ରୋଗର ମୁଁ ଶିକାର ହୋଇଗଲି ୧୯୪୨ରେ ଅଣ୍ଡରଗ୍ରାଉଣ୍ଡ ଓ କୋରାପୁଟ ଜେଲରେ ନିର୍ଜନ କାରାବାସ ଯୋଗୁଁ । ଜେଲରେ ବ୍ରିଟିଶ ସରକାର ମତେ ଯନ୍ତ୍ରଣା ଦେଲା ଏବଂ ଚିକିତ୍ସା ତ ଦୂରର କଥା, ରୋଗର କାରଣ ବାହାର କରିବା ପାଇଁ ବି ସୁବିଧା ମିଳିଲା ନାହିଁ । ଭଗ୍ନ ସ୍ୱାସ୍ଥ୍ୟ ଘେନି ଜେଲରୁ ମୁକ୍ତିଲଭିଲି । ଭାରତରେ ଓ ବାହାର ଦେଶରେ ଯାଇ ଚିକିତ୍ସା କରାଇଲି—ବହୁ ଅପରେସନ କରିବାକୁ ପଡ଼ିଲା । କିଛି ପରୁଆ ନ କରି ମୁଁ ମାଡ଼ିଗୁଲୁଥିଲି । ମାତ୍ର ଏବେ ମୁଁ ଈଶ୍ୱରଙ୍କ କୃପାଶୀର୍ଣତା ଅନୁଭବ କରୁଛି । ସକ୍ରିୟ ରାଜନୀତିରୁ ଅପସରି ଯିବାଲାଗି ମନ ନ ଥିଲେ ବି ଦେହ କ୍ରମେ ଟାଣିଲାଣି । ଏହି ଅସୁସ୍ଥତା ଭିତରେ ମୋର କିନ୍ତୁ ସାହିତ୍ୟ ଓ ସାମ୍ବାଦିକତା ଆଡ଼କୁ ଯେ ଗତି ହେଲା ତାହା ଏମିତି ବନ୍ଧନରେ ନପଡ଼ିଥିଲେ ବୋଧହୁଏ ହୋଇପାରି ନଥାନ୍ତା ।

## ପୁସ୍ତକ ପ୍ରକାଶନ ଓ ଜବାହାରଲାଲ ନେହରୁ

୧୯୩୬ ରେ ମୁଁ ଯେତେବେଳେ ସାଇଟିକାଷ୍ଟିରୋଗରେ ଆକ୍ରାନ୍ତ ହୋଇ ଶଯ୍ୟାଶାୟୀ ହେଲି ଏବଂ ବହୁକାଳ ମତେ ଏମିତି ପଡ଼ିରହିବାକୁ ପଡ଼ିଲା, ସେହି ସମୟରେ ମୁଁ ପଢ଼ାପଢ଼ି ଓ ଲେଖାଲେଖିରେ ବେଶୀ ସମୟ କଟାଇଲି । ମାମୁଁ ମତେ ଉତ୍ସାହିତ କରିବାରୁ ଓଡ଼ିଆରେ ଯୁକ୍ତାକ୍ଷର ନ ଥିବା ଖଣ୍ଡେ ବହି "ଶିଶୁକଥା" ବୋଲି ଲେଖିଲି । ପ୍ରାଇମେଷ୍ଟ

ସ୍କୁଲ ଲାଗି "ବିଚିତ୍ର ପାଠ" ନାମକ ଦୁଇଟି ପାଠ୍ୟପୁସ୍ତକ ଏବଂ 'ଗଳ୍ପସାଗର' ବୋଲି ଗଳ୍ପଆକାରରେ ଇତିହାସ ଲେଖିଲି । ଏସବୁ ପିଲାମାନଙ୍କ ପାଇଁ । ଏତିକିବେଳେ ମୁଁ ବିଭିନ୍ନ ଓଡ଼ିଆ ପତ୍ରିକାମାନଙ୍କରେ ରାଜନୀତିକ ସମସ୍ୟା ସମ୍ବନ୍ଧରେ ପ୍ରବନ୍ଧମାନ ଲେଖିଲି । ମୋର ଲେଖାଗୁଡ଼ିକ ଆଦୃତ ହେଲା ଏବଂ ମାମୁଁ ସେଥିରେ ଖୁବ୍ ସନ୍ତୋଷ ଲାଭ କଲେ । ସେହିଦିନଠାରୁ ମୁଁ ଓଡ଼ିଆରେ ବିଶେଷଭାବରେ ରାଜନୀତିକ ପୁସ୍ତକ ଓ ପ୍ରବନ୍ଧମାନ ଲେଖିବାରେ ଲାଗିଲି । ସେହି ଅଭ୍ୟାସ ଧାରାବାହିକ ଭାବରେ ରଖିଥିବାରୁ ମୁଁ ଜେଲ ଭିତରେ ଜବାହାରଲାଲଙ୍କ ରଚିତ ବହି ଅନୁବାଦ କରିପାରିଥିଲି ଏବଂ ଆମ ଜାତୀୟ ଆନ୍ଦୋଳନ ସମ୍ବନ୍ଧରେ ଏକ ଶ୍ରେଷ୍ଠ ପୁସ୍ତକ ଲେଖିଥିଲି । ଜବାହାରଲାଲଙ୍କ "ମୋ ନିଜ କାହାଣୀ" ଏବଂ ମୋର ଲିଖିତ କ୍ଷୁଦ୍ର ପୁସ୍ତିକା "କଂଗ୍ରେସ"କୁ ମାମୁଁ କଟକ ଟ୍ରେଡ଼ିଂ କମ୍ପାନୀ ତରଫରୁ ଅତି ଆନନ୍ଦରେ ଛପାଇଥିଲେ । ଜବାହାରଲାଲଙ୍କ "ମୋ ନିଜ କାହାଣୀ"ର ଦାମ୍ ଥିଲା ସେତେବେଳେ ୧୦ ଟଙ୍କା ଏବଂ ବିଶ୍ୱଇତିହାସ ୪ ଖଣ୍ଡର ଦାମ୍ ମୋଟେ ୨୦ ଟଙ୍କା । ଯାହା ରୟେଲଟି ମିଳେ ସେଥିରୁ ମୋର ଓ ଜବାହାରଲାଲଙ୍କର ଅଧାଅଧା । ଏବେ ବି ସେ ବହି କିଛି ବିକ୍ରୀ ହେଲେ ରୟେଲଟି ମୁଁ ଓ ଇନ୍ଦିରା ଗାନ୍ଧୀ ଅଧା ଅଧା ନେଉଛୁ । ମତେ କେହି କେହି ପ୍ରକାଶକ କହିଲେ—ଓଡ଼ିଆ ପାଠକଙ୍କ ଲାଗି ପୁସ୍ତକର ଦାମ୍ ବେଶି ହୋଇଯାଉଛି—ଜବାହାରଲାଲ ନେହେରୁ ଯଦି ତାଙ୍କ ରୟେଲଟି ଊଣା କରିଦିଅନ୍ତି, ବହିର ଦାମ୍ କମ୍ ହୋଇପାରନ୍ତା । ମୁଁ ଏ ବିଷୟ ଜବାହାରଲାଲଙ୍କୁ କହିବାରେ ସେ ଯେଉଁ ଉତ୍ତର ଦେଇଥିଲେ, ତାହା ପୁସ୍ତକ ପ୍ରଣେତା ଓ ପ୍ରକାଶକଙ୍କର ଜାଣିବା କଥା । ଚିଠିଟି ପୂରା ଏଠି ଦେଉଛି—ଏହା ୧୯୫୪ ସେପ୍ଟେମ୍ବର ୯ ତାରିଖର ଲେଖା ।

Dear Dwivedyji,

Thank you for your letter of the 2nd September and for the cheque for Rs 912/-

I do not understand how my royalty affects either the price of the book or the sale of the book. Suppose my royalty instead of Re 1/- was As. 12. the book then presumably be priced as Rs 9-12.0. which makes little difference. Indeed, if there was no royalty at all, according to this calculation the book would be priced as Rs 9/- which is not very different from Rs 10/-.

I think Indian publishers have not yet learnt the art of publishing. I am speaking for myself, but I have been connected with many authors in India and elsewhere, whom publishers have treated very badly. Certain rules have to be followed in

such matters and they must be business like rules. I have often given my royalties for some public institution, but it is completely wrong for the publisher not to give the normal royalty. That is unbusinesslike and book publishing will not succeed in this way.''

ମୋଟାମୋଟି ତାଙ୍କର କହିବାର କଥା ଯେ, ଲେଖକ ତାର ରୟେଲ୍‌ଟି ଛାଡ଼ିଦେଲେ ଦାମ୍‌ରେ ବିଶେଷ କିଛି ଫରକ୍‌ ପଡ଼ୁନାହିଁ । ଦ୍ୱିତୀୟରେ ତାଙ୍କ ମତରେ ଭାରତୀୟ ପୁସ୍ତକ ପ୍ରକାଶକମାନେ ଲେଖକମାନଙ୍କୁ ତାଙ୍କର ନ୍ୟାଯ୍ୟ ରୟେଲ୍‌ଟି ଦେବା ଉଚିତ; ନ ଦେବାଟା ବ୍ୟବସାୟ ପକ୍ଷରେ ଭଲ ନୁହେଁ ଏବଂ ସେଭଳି କଲେ ସେ ପୁସ୍ତକ ପ୍ରକାଶନ ସଫଳ ହୋଇପାରିବ ନାହିଁ ।

## ସ୍କୁଲ ତ୍ୟାଗର ବିବରଣୀ

ଆଗରୁ ଲେଖିଛି ରେଭେନ୍‌ସା କଲେଜିଏଟ ସ୍କୁଲରେ ଦଶମ ଶ୍ରେଣୀରେ ପାଠ ପଢ଼ୁଥିଲିବେଳେ ମୁଁ ୧୯୩୦ ରେ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇଥିଲି । ପୂର୍ବରୁ ମାମୁଁଙ୍କର ଜାତୀୟବାଦୀ ଆନ୍ଦୋଳନ ପ୍ରତି ପ୍ରୀତି ଏବଂ ଆମ ଓଡ଼ିଶାର ତତ୍କାଳୀନ ଜଣାଶୁଣା ନେତୃବର୍ଗଙ୍କ ସହିତ ସମ୍ପର୍କ ଯୋଗୁ ମୋ ଭିତରେ ଜାତୀୟ ଭାବର ଉଦ୍ରେକ ହୋଇଥିଲା । ଏହା ଆତ୍ମପ୍ରକାଶ କଲା ୧୯୩୦ ରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେବାରୁ । ପ୍ରଥମ ସତ୍ୟାଗ୍ରହୀ ବାହିନୀର ସେନାପତି ରୂପେ ଗୋପବନ୍ଧୁ ଚୌଧୁରୀଙ୍କୁ ଗିରଫ କରାଯିବାରୁ ପ୍ରତିବାଦ ସ୍ୱରୂପ ହରତାଳ, ଶୋଭାଯାତ୍ରା ଓ ସଭାର ଆୟୋଜନ ହୋଇଥିଲା । ଗୋପବନ୍ଧୁ ଚୌଧୁରୀ ସତ୍ୟାଗ୍ରହୀ ବାହିନୀର ନେତୃତ୍ୱ ନେଇ ଚାଲି ଚାଲି ଯାଉଥିବାବେଳେ ବାଟରେ ତାଙ୍କ ଉପରେ ୧୪୪ ଧାରା ଜାରିହେଲା । ସେ ତାହା ଅମାନ୍ୟ କରିବାରୁ ତାଙ୍କୁ ଗିରଫ କରାଗଲା । ତାଙ୍କ ପରେ ଆଚାର୍ଯ୍ୟ ହରିହର ଦାସ ଉକ୍ତ ବାହିନୀର ନେତୃତ୍ୱ ନେଇ ବାଲେଶ୍ୱର ସମୁଦ୍ର ତଟ ଇଞ୍ଚୁଡ଼ିରେ ଲୁଣ ମାରି ଆଇନ ଅମାନ୍ୟ କରିଥିଲେ ।

କଟକରେ ଯେଉଁ ହରତାଳ ହେଲା ସେଥିରେ ମୁଁ ଯୋଗ ଦେଲି ଏବଂ ରେଭେନ୍‌ସା କଲେଜିଏଟ୍‌ ସ୍କୁଲ ଫାଟକରେ ପିକେଟିଂ କରି ପିଲାଙ୍କୁ ରୋକିଲି । ସେତେବେଳକୁ ଧରପଗଡ଼ ସେତେ ବେଶି ଆରମ୍ଭ ହୋଇନଥିଲା । ନୂଆ ଢଙ୍ଗର ଆନ୍ଦୋଳନ କେମିତି ଗତି କରିବ କିମ୍ବା କେତେ ଲୋକସମର୍ଥନ ପାଇବ ତାହା ବ୍ରିଟିଶ ସରକାର କିଛି କଳ୍ପନା କରିପାରି ନଥିଲା । ସେଇଥି ଲାଗି ଆସ୍ତେ ଆସ୍ତେ ସବୁ ଅର୍ଡ଼ିନାନ୍‌ସ ଇତ୍ୟାଦି ଜାରି ହେଲା । ଯାହାହେଉ, ସେଦିନ ପିକେଟିଂ ସତ୍ତ୍ୱେ ଆମେ କେହି ଗିରଫ ହୋଇନଥିଲୁ । ମୁଁ ଯେ ସ୍କୁଲରେ ପାଠ ନ ପଢ଼ି ପିକେଟିଂ କରି ଫେରିଥିଲି,

ଏକଥା ଘରେ କାହାରିକୁ ଜଣାନଥିଲି । ମୁଁ ଭାତପରଦିନ ସକାଳୁ ପୂର୍ବପରି ବହିପତ୍ର ଧରି ସ୍କୁଲକୁ ଆସିଥିଲି । ମାତ୍ର ସ୍କୁଲରେ ପହଞ୍ଚିବାବେଳକୁ ଅଦ୍ଭୁତ ଉତ୍ତେଜନା—ପିଲାଯାକ ହେଡ୍‌ମାଷ୍ଟରଙ୍କ ଅଫିସ ଆଗ ବ୍ଲାକବୋର୍ଡ଼ ଆଗରେ ଠୁଳ । ହେଡ୍‌ମାଷ୍ଟର ଥିଲେ ସଚ୍ଚି ରାୟ—ବଳାତଫେରନ୍ତା; ସେ ଅଗ୍ନିଶର୍ମା ପାଲଟିଥିଲେ ଏବଂ ଅଫିସ ଭିତରେ ଗର୍ଜନ କରୁଥିଲେ । ମୋର ଯେତେଦୂର ସ୍ମରଣ ହେଉଛି ସେଦିନ ୧୦ ଜଣ ଛାତ୍ରଙ୍କୁ ରଷ୍ଟିକେଟ କରାଯାଇ ତାଙ୍କ ନାମ ତାଲିକା ଟଙ୍ଗା ହୋଇଥିଲା । ହେଡ୍‌ମାଷ୍ଟରଙ୍କ ପାଖରେ ପିଲାଏ ପହଞ୍ଚନ୍ତେ ସେ ଚିତ୍କାର କରି କହିଲେ—ତୁମେ ସବୁ ତୁମର ରାଜକୃଷ୍ଣ ବୋଷଙ୍କ ପାଖକୁ ଯାଅ—ତୁମର ଅଭିଭାବକମାନେ ମୋ ପାଖକୁ ଆସନ୍ତୁ । ମୋ ମାମୁଁଙ୍କ ସହିତ ତାଙ୍କର ହୁଏତ ସଦ୍‌ଭାବ ଥିଲା । ମତେ ସେ ବାରଣ୍ଡାରୁ ଭିତରକୁ ଡାକନେଇ କହିଲେ—'ପଣ୍ଡିତଙ୍କ ଭଣଜା ବୋଲି ଏଥରକ ଛାଡ଼ିଦେଲି । ଆଉ ଏମିତି କାମରେ ପଶିବ ନାହିଁ ।'

ଯେଉଁ ଦଶଜଣଙ୍କୁ ବହିଷ୍କାର କରାଗଲା, ସମସ୍ତଙ୍କ ନାମ ମୋର ସ୍ମରଣ ହେଉନାହିଁ; ତେଣୁ ସେମାନଙ୍କଠାରୁ କ୍ଷମା ମାଗିନେଉଛି । ଏଥିରେ ଥିଲେ ମୋର ବାଲ୍ୟସାଥୀ ବିନୋଦ କାନୁନଗୋ, ବିପିନ ବିହାରୀ ମହାନ୍ତି ଏବଂ ପ୍ରଦ୍ୟୋତ ଗୁପ୍ତ । ବିପିନ ବିହାରୀ ମହାନ୍ତି ବହୁବର୍ଷ ଦେଶସେବା କଲା ପରେ ବର୍ତ୍ତମାନ ଅବସର ନେଇପରି ନିଜ ପୁତ୍ର ପାଖରେ କାଳାତିପାତ କରୁଅଛନ୍ତି । ବିନୋଦ କାନୁନ୍‌ଗୋ ତାଙ୍କ ନିଜ ସାଧନାରେ 'ଜ୍ଞାନମଣ୍ଡଳ' ଜ୍ଞାନକୋଷ ପ୍ରଣେତା ଭାବରେ ପ୍ରସିଦ୍ଧି ଲାଭ କରିଛନ୍ତି । ତାଙ୍କର ଏପରି ଅଲୌକିକ କୃତିତ୍ୱ ନିମନ୍ତେ ମୁଁ ଗର୍ବ ଅନୁଭବ କରୁଛି । ସେ ସବୁ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଛନ୍ତି ଏବଂ ୧୯୫୨ ନିର୍ବାଚନରେ ମଧ୍ୟ ଓଡ଼ିଶା ଆସେମ୍ବ୍ଲିକୁ ଆମ ସୋସଲିଷ୍ଟ ପାର୍ଟି ତରଫରୁ ପ୍ରାର୍ଥୀ ହୋଇଥିଲେ । କିଛିକାଳ "କୃଷକ" ସାପ୍ତାହିକର ସମ୍ପାଦନା ଦାୟିତ୍ୱ ମଧ୍ୟ ତୁଲାଇଥିଲେ । ପରେ ଏସବୁ ଛାଡ଼ିଦେଇ ଯେପରି ଏହି ବିରାଟ ସାଧନାରେ ବ୍ରତୀ ହୋଇଥିଲେ ଏବଂ ଜ୍ଞାନମଣ୍ଡଳ ପ୍ରକାଶ କରିପାରିଲେ, ତାହା ବାସ୍ତବିକ "କିବା ଅସାଧ୍ୟ ମହୀତଳେ" କଥାଟିର ତାତ୍ପର୍ଯ୍ୟ ବୁଝାଉଛି ବୋଲି କହିହେବ । ଏହିପରି ସେତେବେଳେ ଯେଉଁମାନେ ସ୍କୁଲ ଛାଡ଼ି ସତ୍ୟାଗ୍ରହ ଓ କଂଗ୍ରେସ ଆନ୍ଦୋଳନରେ ଯୋଗଦେଲେ—ସେମାନଙ୍କ ଭିତରେ ଥିଲେ—ସୁରେନ୍ଦ୍ରନାଥ ପଟ୍ଟନାୟକ, ଆକୁଳାନନ୍ଦ ବେହେରା, ସଦାଶିବ ଷଡ଼ଙ୍ଗୀ, ବଳରାମ ପଣ୍ଡା, ଚକ୍ରଧର ଶତପଥୀ, ବାଇଧର ଶତପଥୀ, ସଚ୍ଚିଦାନନ୍ଦ ମହାନ୍ତି, ପିଆରୀଶଙ୍କର ରାୟ, କୃପାସିନ୍ଧୁ ଖୁଣ୍ଟିଆ, ଗଜେନ୍ଦ୍ରନାଥ ଦାସ, ଶତ୍ରୁଘ୍ନ ସାହୁ, ବେଣୁଧର କାନୁନ୍‌ଗୋ, ବୈଦ୍ୟନାଥ ରଥ, ଅଦ୍ୱୈତ୍ୟ ବଲ୍ଲଭ ରାୟ, ଦେବେନ୍ଦ୍ର ବାନାର୍ଜି, ସୁଧାଂଶୁ ମୈତ୍ର, ନରସିଂହ ସାହୁ, ହେମନ୍ତ କିଶୋର ବଳ, ରବୀନ୍ଦ୍ର ମୋହନ ଦାସ, ଗୌରଚନ୍ଦ୍ର ଦାସ, କ୍ଷେତ୍ରମୋହନ ରାହୁଳ, ନୃସିଂହ ଚରଣ ସାମନ୍ତସିଂହାର, ରାଜକିଶୋର ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ଅଶୋକ ଦାସ ଇତ୍ୟାଦି ।

ମୁଁ ସିନା ହେଡ଼ମାଷ୍ଟର ସଚ୍ଚିବାବୁଙ୍କଠାରୁ ଆଶ୍ୱାସନା ବାଣୀ ଶୁଣି ଆସିଲି, କିନ୍ତୁ ଆଉ ସ୍କୁଲକୁ ଗଲି ନାହିଁ । କଟକ ଜିଲ୍ଲା ବନ୍ତଗ୍ରାମର କଂଗ୍ରେସପ୍ରେମୀ କୃଷ୍ଣବଲ୍ଲଭ ଘୋଷଙ୍କ ପୁତ୍ର ଏବଂ ନରଞ୍ଜନ ଘୋଷ ଓ ଅମଳ କୁମାର ଘୋଷଙ୍କ ଭାଇ ସୁଶୀଲ କୁମାର ଘୋଷ ଥିଲେ ମୋର ସହପାଠୀ । ଆମେ ଦୁହେଁ ସ୍ଥିର କଲୁ ଆଉ ସ୍କୁଲକୁ ଆସିବା ନାହିଁ । ସାଙ୍ଗ ହୋଇ ସ୍କୁଲରୁ ପଳାଇ ଆସି ଭଗବଦ୍‌ଗୀତା ଖଣ୍ଡେ ଲେଖାଏଁ କିଣିଲୁ ଏବଂ କଟକ ମାରୁଆଡ଼ି ପଟିରେ ଥିବା ଖଦୀ ଦୋକାନରୁ ଗୋଟିଏ ଲେଖାଏଁ ଖଦଡ଼ ବ୍ୟାଗ ଖରିଦ କଲୁ । ସୁଶୀଲର କଣ ହେଲା କେଜାଣି, ସେ ପୁଣି ସ୍କୁଲକୁ ଯାଇ ପଢ଼ାପଢ଼ି ଆରମ୍ଭ କରିଦେଲା । ଏବେ ଜଣେ କୁଶଳୀ ଗୃହସ୍ଥ । ମୁଁ ଆସି ମୋର ବଡ଼ମାମୁଁ ପଣ୍ଡିତ ଆକୁଳ ମିଶ୍ରଙ୍କ ପାଖରେ ବଙ୍ଗାଳୀ ସାହିସ୍ଥ ରାମକୃଷ୍ଣ କଟେଜରେ ପହଞ୍ଚିଲି । ସେତେବେଳକୁ ରାମକୃଷ୍ଣ କୁଟୀରର କୋଠାଘର ତିଆରି ହେଉଥିଲା ଏବଂ ମାମୁଁ ତାହା କରାଉଥିଲେ । ମୁଁ ମୋର ସିଦ୍ଧାନ୍ତ ତାଙ୍କୁ ଶୁଣାଇ ଦେଲି । ସେ ବାଧା ଦେଲେ ନାହିଁ; କେବଳ କହିଲେ "ଭାବ, ଚନ୍ଦ୍ରାକର, ପଢ଼ାପଢ଼ି ନଷ୍ଟ ହେଲେ ଭବିଷ୍ୟତ ଜୀବନ କଣ ହେବ ।" ମୁଁ ଘରକୁ ଫେରିଲି । ବାଟରେ ଘରେ ମାମୁଁ ବା ଅନ୍ୟ କେହି ମତେ କିଛି କହି ନ ଥିଲେ । ତତ୍ପର ଦିନଠାରୁ ସ୍କୁଲ ପରିବର୍ତ୍ତେ ଗୋପବନ୍ଧୁ ଚୌଧୁରୀଙ୍କର ବାଖରାବାଦ ବାସଭବନରେ ଖୋଲାଯାଇଥିବା ସତ୍ୟାଗ୍ରହ ଆଶ୍ରମକୁ ବାରିମତ ଗଲି । ସେଠି ତିଆରି ହେଉଥିଲେ "ସ୍ୱରାଜ ସୈନିକ" । ସେଠାରେ କିନ୍ତୁ ରହିବାର ସୁଯୋଗ ପାଇ ପାରି ନ ଥିଲି । ମାମୁଁ ମତେ ଘରୁ ଛାଡ଼ିବାକୁ ପ୍ରସ୍ତୁତ ନ ଥିଲେ । ସେ ଆଶ୍ରମ କର୍ତ୍ତାମାନଙ୍କୁ ଡାକି କହିଲେ, "ମୁଁ ଆଶ୍ରମକୁ ମାସିକ ୨୫ ଟଙ୍କା ଚାନ୍ଦା ଦେଉଛି । ସୁରେନ୍ଦ୍ର ଆଶ୍ରମରେ ନ ରହି ଆମ ଘରେ ରହିବ । ତାର ଖର୍ଚ୍ଚ ଆଉ ଏକ ଚାନ୍ଦା ବୋଲି ଧରିନିଆଯାଉ । ସେ ଆଶ୍ରମରେ ରହିଲେ ସ୍ୱାସ୍ଥ୍ୟ ଇତ୍ୟାଦି ଠିକ୍ ରହି ନ ପାରେ ।" ଆଶ୍ରମ କର୍ତ୍ତାମାନେ ଏଥିରେ ଅରାଜି ହେବାର କୌଣସି କାରଣ ନ ଥିଲା । ମୁଁ ସମସ୍ତ ସମୟ କଂଗ୍ରେସ କାର୍ଯ୍ୟରେ ଦେଲି ଏବଂ ଆମ ଘରେ ମାମୁଁ ମାଉସୀ ଆଦିଙ୍କ ସୂତାକଟା ଇତ୍ୟାଦି ଶିଖାଇଲି । ଗାନ୍ଧିଜୀ କହିଥିଲେ ପ୍ରତିଦିନ ଗୀତା ପାଠ କରିବ ଏବଂ ଘଣ୍ଟାକୁ ଅନ୍ତତଃ ୩୦୦ ଗଜ ସୂତା କାଟିବ । ମାମୁଁ ସେହି କଥା ମତେ ସ୍ମରଣ କରାଇଦେଇ ଆଗ ନିଜ ଘରେ ଏତିକି କରିବା ନିମନ୍ତେ କହିଲେ ଏବଂ ଅନ୍ୟମାନେ ପ୍ରସ୍ତୁତ ହୋଇଗଲେ । ତେଣୁ ଘରେ ଓ ବାହାରେ ପକ୍କା ସତ୍ୟାଗ୍ରହୀ ହୋଇ କାର୍ଯ୍ୟକଲି ଏବଂ ସେହିକାଳରୁ ଆଜଯାଏ ଦେଶ ଓ ସମାଜସେବା କାର୍ଯ୍ୟରେ ରହିଛି ।

ଆଇନ ଅମାନ୍ୟ ଓ କଂଗ୍ରେସ ଆନ୍ଦୋଳନରେ ମୋ ନିଜ ଗ୍ରାମ ଖଣ୍ଡସାହିରୁ ମଧ୍ୟ ବହୁ ଲୋକ ଯୋଗଦେଇଥିଲେ । ସେମାନଙ୍କର ନାମ ହେଲା—ବଂଶୀଧର ମିଶ୍ର, ଡକ୍ଟର ବ୍ରଜନାଥ ମିଶ୍ର, କିଶୋର ଚନ୍ଦ୍ର ମିଶ୍ର, ଜୟକୃଷ୍ଣ ମହାପାତ୍ର, ସୁଭାସ ମିଶ୍ର, କଣ୍ଠେଶ୍ୱର ଚରଣ ଦ୍ୱିବେଦୀ, ଅଲେଖ ଚରଣ ଦାସ ଇତ୍ୟାଦି । ବଂଶୀଧର ମିଶ୍ର ୧୯୨୮ ମସିହାରେ ପ୍ରାଦେଶିକ କଂଗ୍ରେସ କମିଟିର ସମ୍ପାଦକ ହୋଇଥିଲେ ଏବଂ ସେହି

ସମୟରେ ଭାରତରୁ ଇଉରୋପକୁ ଏକ ଜାହାଜର ଖଲାସୀ ରୂପେ ପଳାୟନ କରିଥିଲେ । ଲଣ୍ଡନରେ ସୁରତ୍ ଆଲ୍ଲୀ ନାମରେ ସେ ଖ୍ୟାତ ଥିଲେ ଏବଂ ହିନ୍ଦୁସ୍ଥାନ ମଜଲିସ୍ ଓ ଅନ୍ୟାନ୍ୟ ଶ୍ରମିକ ଓ ବାମପନ୍ଥୀ ସଂଗଠନ ସହିତ ସଂପୃକ୍ତ ହୋଇଥିଲେ । ପ୍ରାୟ ୨୯ ବର୍ଷ ପରେ ସେ ନିଜ ଗ୍ରାମକୁ ଫେରିଥିଲେ - ଏବେ ଜୀବିତ । ଡାକ୍ତର ବ୍ରଜନାଥ ମିଶ୍ର ୧୯୩୦ରେ ଜେଲ ବରଣ କରିଥିଲେ ଏବଂ ବହୁ ଉଚ୍ଚସ୍ଥାନ ଅଧିକାର କରିଥିଲେ । କଟକ ସଦର ଲୋକାଲବୋର୍ଡ଼ର ଚେୟାରମାନ୍ ଏବଂ ଏମ୍. ଏଲ୍. ଏ. ମଧ୍ୟ ହୋଇଥିଲେ । ଅନ୍ୟମାନେ ନିଜ ନିଜ ଦୁଃଖ ଧନ୍ଦାରେ ଅଛନ୍ତି । ସେଥିଭିତରୁ ଜୟକୃଷ୍ଣ ମହାପାତ୍ର ଓ ଅଲେଖଙ୍କର ମୃତ୍ୟୁ ଘଟିଯାଇଛି । ଡାକ୍ତର ବ୍ରଜନାଥ ମିଶ୍ରଙ୍କର ମଧ୍ୟ ବହୁ ବର୍ଷ ହେଲା ପରଲୋକ ହୋଇଯାଇଛି । ମୋ ସହିତ ୧୯୪୨ ଅଗଷ୍ଟ ଆନ୍ଦୋଳନ ବେଳେ ଆତ୍ମଗୋପନ କାର୍ଯ୍ୟ ସହ ସଂପୃକ୍ତ ହୋଇଥିବା ହେତୁ ପ୍ରାଣନାଥ ମିଶ୍ର, ଉଦୟନାଥ ରଥ ଓ ସଚ୍ଚିଦାନନ୍ଦ ମିଶ୍ର ମଧ୍ୟ କାରାଦଣ୍ଡ ଭୋଗିଥିଲେ । କଟକର ଆଡ଼ଭୋକେଟ ଶ୍ରୀନିବାସ ମିଶ୍ର (କ) ମୋର ସମବୟସୀ, ଆମ ଗାଁର । ସେ ୧୯୬୭ ମସିହାରେ ପ୍ରଜା ସୋସିଆଲିଷ୍ଟ ପାର୍ଟି ଟିକେଟରେ କଟକ ନିର୍ବାଚନ ମଣ୍ଡଳୀରୁ ଲୋକସଭାକୁ ନିର୍ବାଚିତ ହୋଇଥିଲେ ।

## ରାଜନୀତିକ ସାମାଜିକ କର୍ମୀ

ଏତେ ପିଲାବେଳୁ ରାଜନୀତିରେ ପ୍ରବେଶ କଲାପରେ ଆଉ ବ୍ୟକ୍ତିଗତ କାହାଣୀ ରହିଲା ବା କଅଣ ? ତଥାପି କେତେକ ବନ୍ଧୁ, ଏକ ପ୍ରକାର ବାଧ୍ୟ କରିବାରୁ ଯେତିକି ମନେ ପଡ଼ିଲା, ତାହା ଲେଖିପକାଇଲି । ରାଜନୀତି ଛଡ଼ା ମୋର ଅନ୍ୟ ଧନ୍ଦା ନାହିଁ । କେତେକ ବର୍ଷ ସାମ୍ବାଦିକତା କରିଥିଲି ଏବଂ କିଛି ପୁସ୍ତକ ଲେଖାଲେଖି ବି କରିଛି । ତାକୁ ଯଦି ଏକ ଧନ୍ଦା ବା ବୃତ୍ତି ବୋଲି ଧରାଯାଏ, ତେବେ ଅଲଗା କଥା । ମାତ୍ର ମତେ ଯେତେବେଳେ କେଉଁଠି ବୃତ୍ତି କ'ଣ ବୋଲି ଲେଖିବାକୁ ପଡ଼େ, ମୁଁ ତହିଁରେ ଲେଖେ "ଏକ ରାଜନୀତିକ ଓ ସାମାଜିକ କର୍ମୀ" । ମୁଁ ତାହାହିଁ ହୋଇ ରହିଛି ଏବଂ ଜୀବନର ଶେଷ ପର୍ଯ୍ୟନ୍ତ ତାହା ରହିପାରିଲେ ଆନନ୍ଦିତ ହେବି । ମୋର ବ୍ୟକ୍ତିଗତ ଜୀବନ ଦୁଃଖ ବିଷାଦମୟ ଏବଂ ଘୋର ଦାରିଦ୍ର୍ୟ ଭିତର ଦେଇ ମତେ ଗତି କରିବାକୁ ପଡ଼ିଛି ବୋଲି ମୋ ମନରେ ଖେଦ ନାହିଁ । ମୁଁ ଏହାକୁ ବରଣ କରି ନେଇଛି । ନିଜେ ବଞ୍ଚି ଥାଉ ଥାଉ ଦେଶ ସ୍ୱାଧୀନ ହୋଇପାରିଲା ଏବଂ ମୁଁ ସ୍ୱାଧୀନ ଭାରତରେ ଜଣେ ସଫଳ ଦେଶସେବକ ଭାବରେ ଖ୍ୟାତି ଲଭିଲି, ଏହା ମୋ ପ୍ରାଣରେ ଉତ୍ସାହ ଦେଇଛି । ଦେଶସେବା ଲାଗି ଦୁଃଖ କଷ୍ଟ ବିନା ଦ୍ୱିଧାରେ ସହିପାରିଛି । ମୋ ମନରେ ନିରାଶ ବା ହତାଶ ଭାବ ନାହିଁ । ବରଂ ମୋର ଶାରୀରିକ ଅକ୍ଷମତା ଯୋଗୁ ଶେଷକୁ ମତେ ଅବସ୍ଥାଚକ୍ରରେ ସେଥିରୁ କ୍ଷାନ୍ତ ହେବାକୁ ପଡ଼ୁଛି । ଏହା ବେଳେବେଳେ ମନକୁ ଅଥୟ କରିପକାଏ । ମାତ୍ର କବିଗୁରୁଙ୍କ ଭାଷାରେ "ଦୁଃଖେ ଯାଦେର ଜୀବନ ଗଢ଼ା, ତାଦେର ଆବାର ଦୁଃଖ କରେ ?"

## ୨। ସମାଜବାଦର ବୀଜ ବପନ

### ମାକ୍‌ସିମ୍ ଗର୍କିଙ୍କ 'ମଦର୍'

ମାକ୍‌ସିମ ଗର୍କିଙ୍କର "ମଦର" ମୋଠାରେ ସୋସିଆଲିଜମ୍ ବୀଜ ବପନ କଲା । ଏହା ଅନେକଙ୍କୁ ବିସ୍ମିତ କରିପାରେ—ମାତ୍ର ଏହା ନଗ୍ନ ସତ୍ୟ । ମୋର ତରୁଣ ବୈପ୍ଳବିକ ପ୍ରାଣ । ଗାନ୍ଧିଜୀଙ୍କ ମହାନ୍ ବିପ୍ଳବରେ ନିଜକୁ ଝାସ ଦେବାପରେ ବନ୍ଦୀଶାଳାର ଅନ୍ତରାଳରେ ମନ ଉଚ୍ଛନ୍ନ ହେଉଥାଏ ଅନ୍ୟ ଦେଶମାନଙ୍କର ସ୍ୱାଧୀନତା ଆନ୍ଦୋଳନ ସମ୍ବନ୍ଧରେ ତଥ୍ୟ ଜାଣିବା ଲାଗି । ଜେଲ୍ ଭିତରେ ବହି କେଉଁଠୁ ମିଳିବ ! ୧୯୩୦–୩୩ରେ ବିହାରର ପାଟନା କ୍ୟାମ୍ପ୍ ଜେଲରେ ଆମେ ପ୍ରାପ୍ତ ଗ୍ରହଣକାରରୁ ଅଧିକ ବନ୍ଦୀ ରହୁଥାଉ । ଶିକ୍ଷକ, ସାମ୍ବାଦିକ, ଆଇନଜ୍ଞ ଓ ରାଜନୀତିଜ୍ଞ ବହୁ ସଂଖ୍ୟାରେ ଥାଆନ୍ତି । ଏକ ବାଧ୍ୟବାଧ ଉଦ୍ୟମ ହେଉଥାଏ ନାନା କାର୍ଯ୍ୟରେ ରାଜବନ୍ଦୀମାନଙ୍କୁ ନିଯୁକ୍ତ କରିବାଲାଗି । ରାଜନୀତିକ ଶିକ୍ଷା ସେଥିରେ ଥାଏ ମୁଖ୍ୟ । ଜେଲଖାନାର କଟକଣା ସତ୍ତ୍ୱେ ନାନା ପ୍ରକାର ପୁସ୍ତକ ବିଭିନ୍ନ ଉପାୟରେ ଭିତରକୁ ନେବାରେ କିଛି ଅସୁବିଧା ନ ଥାଏ । ସେହି ଉପାୟରେ ଅନ୍ୟାନ୍ୟ ପୁସ୍ତକ ଭିତରେ "ମଦର୍"ଟି ମୋର ହସ୍ତଗତ ହୋଇଥିଲା । ଏବେ ମୁଁ କପର ଉତ୍କଣ୍ଠାରେ ଏହା ପଢ଼ିବାକୁ ଲାଗିଲି—ଆଜି ୧୯୭୯ ମସିହାରେ ଏହା ଲେଖିଲାବେଳେ ମୋର କାଳିପରି ମନେପଡ଼ୁଛି—ଇଂରେଜୀ ଜ୍ଞାନ ପୋଖତ ହୋଇନଥାଏ, ପାଖରେ 'ଡିକ୍‌ସନାରୀ' ବି ନ ଥାଏ; ତଥାପି ପୁସ୍ତକର ବର୍ଣ୍ଣିତ ବିଷୟବସ୍ତୁ ମୋ ପ୍ରାଣରେ ଯେ ଆଲୋଡ଼ନ ସୃଷ୍ଟି କଲା ତାହା ଏବେ ମୁଁ ଅନୁଭବ କରିପାରୁଛି ସିନା ବର୍ଣ୍ଣନା କରିପାରୁ ନାହିଁ । 'ମଦର୍' ପୁସ୍ତକ ଏକ ଅମୂଲ୍ୟ ଧନ—ଲୁଚାଇ ଭିତରକୁ ଅଣାଯାଇଥାଏ । ଲୁଚାଇ ପଢ଼ିବାର କଥା ଜେଲ୍ କର୍ତ୍ତୃପକ୍ଷଙ୍କର ଅଗୋଚରରେ; ପୁଣି ବେଶିଦିନ ଜଣକ ପାଖରେ ରହିବା ସମ୍ଭବ ନୁହେଁ । ରାତିଦିନ ଲାଗି ୨।୩ ଥର ଶେଷ କରିଦେଲି ।

ଏହି ପୁସ୍ତକଟି ୧୯୦୫–୧୯୦୭ରେ ପ୍ରଥମ ରୁଷବିପ୍ଳବ ବେଳର ଲେଖା । ସେହି କାଳର ରୁଷୀୟ ସମ୍ରାଟ ଜାରର ଦମନ, ଅତ୍ୟାଚାର, ଲୁଣ୍ଠନ ଓ ନିପୀଡ଼ନର ଏକ ଜୀବନ୍ତ ଚିତ୍ର ଏଥିରେ ଦିଆଯାଇଛି । ସେଥିରୁ ମୁକ୍ତ ପାଇବାଲାଗି ତହିଁରେ ଶ୍ରମିକସମାଜ ଗୁପ୍ତ ସଂଗଠନ ଓ ଅଦମ୍ୟ ସଂଗ୍ରାମ ଚଲାଇଥିବାର ଯେଉଁଭଳି ବର୍ଣ୍ଣନା ରହିଛି, ତାହା ମୋ ପ୍ରାଣରେ

ଏକ ସ୍ପନ୍ଦନ ଜାତ କରାଇଲା । ଆମର ସାମାଜିକ ପରିସ୍ଥିତି ସହ ତତ୍କାଳୀନ ରୁଷୀୟ ଘଟଣାବଳୀର ବିଶେଷ କିଛି ସାମଞ୍ଜସ୍ୟ ନ ଥିଲେ ସୁଦ୍ଧା ଏହା ପଢ଼ିଲାପରେ ଭାରତୀୟ ସାମାଜିକ ଜୀବନର ଏକ ନୂତନ ଦିଗ ମନରେ ଉଦ୍‌ଭାସିତ ହେଲା । ଚିନ୍ତା ଓ ଭାବନାର ନୂତନ ଦିଗନ୍ତ ଖୋଲିଗଲା ।

ଏକ ସ୍ଥାନରେ ଲେଖାଯାଇଛି—"ଆମେ ସମସ୍ତେ ଏକ ଜନନୀର ସନ୍ତାନ, ସାରା ବିଶ୍ୱର ଶ୍ରମିକ ଶ୍ରେଣୀର ଭ୍ରାତୃଭାବନାରେ ଆମ ଭିତରେ ଅଟଳ ବିଶ୍ୱାସ ରହିଛି । ଏହି ଭାବନା ଆମ ହୃଦୟରେ ଆଲୋଡ଼ନ ସୃଷ୍ଟି କରୁଛି । ଶ୍ରମିକର ହୃଦୟ ହିଁ ଏକ ଆକାଶ ସଦୃଶ ଏବଂ ସେହି ବାସ୍ତବ ଗଗନରେ ସୂର୍ଯ୍ୟ ଉଭା ହେଲେଣି—ଆଲୋକ ବିକିରଣ ହେଉଛି । ସେ ଯେ ହୋଇଥାଉ ପଛକେ ଯେ ଯେଉଁ ନାମକରଣ କରିଥାଉ, ସେଥିରେ କିଛି ଯାଏଆସେନା ! ସବୁକାଳ ପାଇଁ—ଆଜି, କାଲି ଏବଂ ଚିରଦିନ ନିମନ୍ତେ ସବୁ ସୋସିଆଲିଷ୍ଟ ହେଉଛନ୍ତି ଆମର ଭାଇ, ସହୋଦର ।"

ଲେନିନ୍ ଯଥାର୍ଥରେ ଲେଖିଛନ୍ତି—"ମାକ୍‌ସିମ୍ ଗର୍କିଙ୍କ ଲିଖିତ 'ମଦର୍' ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପୁସ୍ତକ । ବହୁ ଶ୍ରମିକ ବୈପ୍ଳବିକ ଆନ୍ଦୋଳନରେ ଭାବପ୍ରବଣ ହୋଇ ଝାସ ଦେଇଛନ୍ତି । କାହିଁକି ଆନ୍ଦୋଳନ ହେଉଛି, ତାହା ଠିକ୍‌ରୂପେ ଜାଣିବା ନିମନ୍ତେ ଚେଷ୍ଟା କରିନାହାନ୍ତି; 'ମଦର୍' ପୁସ୍ତକ ପାଠ କରି ସେମାନେ କିଛିଟା ପରିମାଣରେ ବିପ୍ଳବ ସମ୍ବନ୍ଧରେ ଜ୍ଞାନ ଅର୍ଜନ କରିପାରିବେ ।"

## ପ୍ରଥମ ଶପଥ

ଏହି ଉକ୍ତିର ଯଥାର୍ଥତା ସହଜରେ ଅନୁମେୟ । ଭାରତର ସ୍ୱାଧୀନତା ସଂଗ୍ରାମ ଭିତରୁ ହିଁ ସୋସିଆଲିଷ୍ଟ ଆନ୍ଦୋଳନର ଉଦ୍ଭବ ହେଲା । ଜେଲଖାନାରେ ମୋ ଜୀବନରେ ସୋସିଆଲିଷ୍ଟ ବୀଜ ଅଙ୍କୁରିତ ହେଲା । ୧୯୩୩ ମସିହାରେ ନାସିକ କେନ୍ଦ୍ର ଜେଲରେ ବନ୍ଦୀ ଥିବାବେଳେ ଜୟପ୍ରକାଶ ନାରାୟଣଙ୍କ ପରି କେତେକ ଯୁବକ ସ୍ୱାଧୀନତା ସଂଗ୍ରାମକୁ ଅଧିକ ଶକ୍ତିଶାଳୀ କରିବା ନିମନ୍ତେ ଏବଂ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଏକ ଗଣବିପ୍ଳବ ଓ ଗଣଚେତନା ସୃଷ୍ଟି କରିବା ଲାଗି ସମାଜବାଦୀ ଭାବନା ପ୍ରଚାରର ପରିକଳ୍ପନା କରିଥିଲେ ।

ଓଡ଼ିଶାରେ ଆମେ ସବୁ ଏକ ସ୍ଥାନରେ ନଥିଲୁ କିମ୍ବା ବାହାରର ବନ୍ଦୀଙ୍କ ସହ ଆଲାପ ଆଲୋଚନା ଲାଗି କିଛି ସଂଯୋଗ ନଥିଲା । ମୋ ନିଜ କଥା ମୁଁ କହିପାରେ । ଗାନ୍ଧିଜୀ ଆମମାନଙ୍କୁ ଯେ ସତ୍ୟାଗ୍ରହର ଶପଥ ଦେଇଥିଲେ ସେଥିରେ ରହିଥିଲା 'ପୂର୍ଣ୍ଣ ସ୍ୱରାଜ ହାସଲ ନ ହେବା ପର୍ଯ୍ୟନ୍ତ ନିଜ ଧନ୍ଦାକୁ ଫେରିବି ନାହିଁ, ଜେଲ ଓ ଅନ୍ୟ ନିର୍ଯ୍ୟାତନା

ଆନନ୍ଦରେ ବରଣ କରିବ; ସେଥିଲାଗି ଯାହା କ୍ଷତି ଘଟିବ ତାହାର କ୍ଷତିପୂରଣ ଦାବୀ କରିବ ନାହିଁ । ମନରେ ଏହି ଶପଥର ଏକ ଅଦ୍ଭୁତ ପ୍ରଭାବ ପଡ଼ିଥିଲା ଏବଂ ଆଜି ସାଧାରଣ ସେବାରେ ଯେ ମୁଁ ନିଜର ସମସ୍ତ ସମୟ ଦେବାକୁ ପ୍ରସ୍ତୁତ ହୋଇ ପାରିଛି, ତାହା ଏହି ପ୍ରଥମ ଶପଥଯୋଗୁଁ । ତେଣୁ ଆମେମାନେ ଆନ୍ଦୋଳନରେ ଖାଲି କାର୍ଯ୍ୟ କଲୁନାହିଁ, ଆନ୍ଦୋଳନ କିଭଳି ସଫଳ ହେବ, ତାହାର ଚିନ୍ତା କରିବାକୁ ଲାଗିଲୁ ।

୧୯୩୨-୩୩ ବେଳକୁ ସତ୍ୟାଗ୍ରହ ଆନ୍ଦୋଳନ ଶିଥିଳ ହୋଇଯାଇ ଥିଲା । ବହୁଲୋକ ଜେଲରୁ ଖଲାସ ହେବା ପରେ ନିଜ ନିଜ ଘରକୁ ଗଲେ । ମନରେ ଏକମାତ୍ର ଭାବନା ଥିଲା, ଆମେ ଘରକୁ କେମିତି ଫେରିବୁ—ପୂର୍ଣ୍ଣ ସ୍ୱରାଜ ଯେ ହାସଲ ହୋଇନାହିଁ ? ଗାନ୍ଧିଜୀଙ୍କ ପରାମର୍ଶରେ ବହୁ କର୍ମୀ ରଚନାତ୍ମକ କାର୍ଯ୍ୟରେ ଲାଗିପଡ଼ିଲେ । ନିକଟ ଭବିଷ୍ୟତରେ ଆଉ ସଂଗ୍ରାମ ବା ସତ୍ୟାଗ୍ରହର ସୂଚନା ଦେଖାଯାଉନଥିଲା । ମୋ ପରି ବହୁ ଯୁବକ ସେଭଳି କାର୍ଯ୍ୟରେ ଆଗ୍ରହୀ ହେଲେନାହିଁ । ସଂଗ୍ରାମ ବା ସଂଘର୍ଷମୂଳକ କାର୍ଯ୍ୟ ହିଁ କରିବାକୁ ପଡ଼ିବ । ଗାନ୍ଧୀ ପନ୍ଥାରେ ବୋଧହୁଏ କିଛି ତ୍ରୁଟି ରହିଯାଉଛି, ଲୋକପ୍ରାଣକୁ ସେତେ ଆକୃଷ୍ଟ କରିପାରୁ ନାହିଁ । ବିପ୍ଳବ ଚାଲୁ ରଖିବାକୁ ହେଲେ ବିପ୍ଳବୀଙ୍କ ପ୍ରତିଜ୍ଞାବଦ୍ଧ ହେବାକୁ ପଡ଼ିବ । କଣ ତ୍ରୁଟି ରହୁଛି, ତାହା ବାହାର କରି ନୂତନ ତଥ୍ୟର ଅନୁସନ୍ଧାନ ଓ ଜନମନ ଆକୃଷ୍ଟ କଲାଭଳି କାର୍ଯ୍ୟପନ୍ଥା ଗ୍ରହଣ କରିବାକୁ ପଡ଼ିବ, ଏହା ଥିଲା ମୋଟାମୋଟି ଚିନ୍ତା ।

## ଗାନ୍ଧିଜୀ ଓ ନେହରୁଙ୍କ ଚିନ୍ତା

ଗାନ୍ଧିଜୀ ୟେରଓ୍ୱାଦା ଜେଲରୁ ଖଲାସ ହୋଇ ହରିଜନ ପଦଯାତ୍ରା କରୁଥାଆନ୍ତି । ଓଡ଼ିଶାରେ ଯାତ୍ରା କରୁଥିବାବେଳେ ଭଦ୍ରକର ଜୀବନରାମ୍‌ଜୀ କଲ୍ୟାଣଜୀଙ୍କ ଆଶ୍ରମରେ କଂଗ୍ରେସ କର୍ମୀଙ୍କୁ ଭେଟିଲେ । ସେଥିରେ ଆମ ଭିତରୁ ତାଙ୍କୁ ପ୍ରଶ୍ନ କରାଗଲା—"ଆପଣ ସତ୍ୟାଗ୍ରହ ଆନ୍ଦୋଳନ ବନ୍ଦ କରିଦେଲେ କାହିଁକି ?" ଗାନ୍ଧୀଜୀ ତତ୍‌କ୍ଷଣାତ୍ ଜବାବ ଦେଲେ, "ବନ୍ଦ ହୋଇଛି ବୋଲି କହିବା ଭୁଲ ହେବ । ଆମର ଲକ୍ଷ୍ୟ ସ୍ଥିର ରହିଛି । ଯାତ୍ରା ଚାଲିଛି । ଧର, ହିମାଳୟରେ ପହଞ୍ଚିବାକୁ ପଡ଼ିବ; ବାଟରେ ଯାଉଁ ଯାଉଁ ନଦୀ ପଡ଼ିଲା । ନଦୀ ପହଁରି ଯାଇ ହବ ନାହିଁ । ପାରି ହେବା ନିମନ୍ତେ ନୌକା ଦରକାର । ନୌକାଟିଏ ତିଆରି କରିବାକୁ ହେବ । ସେଥିଲାଗି ସମୟ ଲାଗିବ ଏବଂ ତିଆରି ହେବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁହିଁ ପଡ଼ିବ । କାର୍ଯ୍ୟର ଢଙ୍ଗ ବଦଳିଗଲା । ଯାତ୍ରା ବନ୍ଦ ହୋଇନାହିଁ, ଚାଲୁ ରହିଛି; କେବଳ ଅଧିକ ଶକ୍ତି ସରଞ୍ଜାମ ସଂଗ୍ରହ କରିବାର ଆବଶ୍ୟକତା ପଡ଼ିଛି । ସ୍ୱରାଜ୍ୟ ଲାଗି ରଚନାତ୍ମକ କାର୍ଯ୍ୟ କରିବା ଏହି ଯାତ୍ରାର ଏକ ଅଙ୍ଗ; ଯାତ୍ରା ଛାଡ଼ି ଦିଆଯାଇ ନାହିଁ ।"

ସେତେବେଳେ ଗାନ୍ଧିଜୀଙ୍କ ମୁହଁରୁ ଏକଥା ଶୁଣି ଅନେକଙ୍କ ମନ ସନ୍ତୁଷ୍ଟ ହେଲା । କେତେକ ସାଙ୍ଗସାଥୀ ଏକନୂଆ ଦିଗ୍‌ଦର୍ଶନ ମିଳିଲାପରି ଅନୁଭବ କଲେ । ମାତ୍ର ମୋ ମନ

ମାନଲି ନାହିଁ । ଆହୁରି କିଛି ଗାନ୍ଧିଜୀଙ୍କୁ ପଚାରିବାକୁ ମନ ହେଉଥିଲା, ସାହସ ହେଲା ନାହିଁ । ବନ୍ଧୁ ଲୋକ ହୋଇଥିଲେ । ନାନା ପ୍ରଶ୍ନ ପଚାରିଗଲା । ଯୁକ୍ତି ବା ପ୍ରତିବାଦ କରିବାଭଳି ବାୟୁମଣ୍ଡଳ ନଥିଲା । ତାହାଛଡ଼ା ମୋପରି ଏକ ଅଳ୍ପବୟସ୍କ ଯୁବକ ଗାନ୍ଧିଜୀଙ୍କ ଉକ୍ତି ଉପରେ ମନ୍ତବ୍ୟ କରିପାରିବା ସମ୍ଭବ ନଥିଲା । ମନ କଥା ମନରେ ରହିଗଲା । କାର୍ଯ୍ୟରେ ନିଜକୁ ନିୟୋଗ କରି ରଖିଲି ସତ, ଏହି କାର୍ଯ୍ୟ ଯେ ସଫଳ ହେବ ଏଭଳି ବିଶ୍ୱାସ ବା ଭରସା ମନରେ ପ୍ରବେଶ କଲା ନାହିଁ ।

ଏଭଳି ଏକ ପ୍ରଶ୍ନବାଚକ ମନର କିଞ୍ଚିତ୍ ଜବାବର ସୂଚନା ମିଳିଲା ପଣ୍ଡିତ ଜବାହାରଲାଲ ନେହରୁଙ୍କ ଲେଖାରୁ । କମଳା ନେହରୁଙ୍କ ସ୍ୱାସ୍ଥ୍ୟ ଖରାପ ହେତୁ ସେ କିଛିଦିନ ଲାଗି ଜେଲରୁ ପାରୋଲରେ ଖଲାସ ହୋଇଥିଲେ । ସେ ଗାନ୍ଧିଜୀଙ୍କୁ ମଧ୍ୟ ଯାଇ ଭେଟିଥିଲେ । ତାଙ୍କ ମନରେ ବି ଏହିଭଳି କେତେକ ବିଷୟ ଉଠିଥିଲା । ସେ 'ଭାରତର ଗତି କେଉଁଆଡ଼େ ?' ନାମକ ଗୋଟିଏ ପ୍ରବନ୍ଧ ଲେଖିଲେ । ସେଥିରେ ସେ ବିଶ୍ୱର ରାଜ-ନୀତିକ ଓ ଅର୍ଥନୀତିକ ପରିସ୍ଥିତିର ଅନୁଧ୍ୟାନ କରି ନିଜର କେତେକ ମତ ପ୍ରକାଶ କଲେ । ସେତେବେଳର ପରିପ୍ରେକ୍ଷୀରେ ସେ ଭାଷା ଓ ଭାବ ସଂପୂର୍ଣ୍ଣ ନୂତନ ପରି ଲାଗିଲା । ଦେଶ ବିଦେଶର ଘଟଣାବଳୀ ସହ ଆମ ଦେଶର ଆନ୍ଦୋଳନର ଭୂମିକାକୁ ତୁଳନା କରାଯାଇଥିଲା । ସେଥିରେ ଲେଖାଥିଲା—

"ପୃଥିବୀରେ ସ୍ଥୂଳତଃ ସମଗ୍ର ଧନିକ ଶ୍ରେଣୀ ଓ ଅନ୍ୟମାନଙ୍କ ମଧ୍ୟରେ ଏକ ଅଧିକ ଜୀବନ୍ତ ସ୍ୱାର୍ଥର ସଂଘର୍ଷ ଲାଗିଛି । ଏକ ପକ୍ଷରେ 'ଥିଲାବାଲା', ଅପର ପକ୍ଷରେ 'ନଥିଲାବାଲା' । ଏହା ହେବା ଅବଶ୍ୟମ୍ଭାବୀ । କିନ୍ତୁ ଯାହାଙ୍କ ହାତରେ ରାଜନୀତିକ ବା ଅର୍ଥନୀତିକ କ୍ଷମତା ରହିଛି, ସେମାନେ ବାସ୍ତବ ସମସ୍ୟାଟିକୁ ଏଡ଼ାଇଦେବା ନିମନ୍ତେ ସବୁମନ୍ତେ ଉଦ୍ୟମ କରୁଅଛନ୍ତି ।

"ଭାରତର ଗତି କେଉଁଆଡ଼େ ? ଭାରତର ଗତି ନିଶ୍ଚିତ ଭାବରେ ହେବା ଉଚିତ— ମାନବସମାଜର ମହାନ୍ ଲକ୍ଷ୍ୟ ସାମାଜିକ ଓ ଆର୍ଥନୀତିକ ସମାନତା ପ୍ରତିଷ୍ଠା ଲାଗି; ଦେଶ ଦେଶ ଏବଂ ଶ୍ରେଣୀ ଶ୍ରେଣୀ ଭିତରେ ଯେଉଁ ସକଳ ଶୋଷଣ ଲାଗି ରହିଛି, ତାହା ଲୋପ କରିବା ନିମନ୍ତେ ଓ ଜାତୀୟ ସ୍ୱାଧୀନତା ଲାଭ କରିବା ପାଇଁ ଏକ ଅନ୍ତର୍ଜାତିକ କୋଅପରେ-ଟିଭ ସୋସଲିଷ୍ଟ ବିଶ୍ୱରାଷ୍ଟ୍ରସଂଘର ଗଣ୍ଡି ଭିତରେ ହିଁ ଏହା ସ୍ଥାପନା କରିବାକୁ ପଡ଼ିବ । କେତେକ ଭାବନ୍ତି ଏହା ଏକ ଫମ୍ପା ଅଦର୍ଶବାଦୀ ସ୍ୱପ୍ନ । ଏକଥା ସତ୍ୟ ନୁହେଁ । ବର୍ତ୍ତମାନ ଦେଶର ବାସ୍ତବ ରାଜନୀତି ଏବଂ ଭବିଷ୍ୟତର ଗତି ମଧ୍ୟ ଏହି ଦିଗରେ ଚାଳିତ ହେବ ।"

ଜବାହାରଲାଲଙ୍କର ଏହି ପ୍ରବନ୍ଧଗୁଡ଼ିକରେ ଯେ ସବୁ ବିଷୟ ସ୍ପଷ୍ଟ ହୋଇଗଲା, ଏପରି ନୁହେଁ । ଏହା ନୂତନ ଢଙ୍ଗରେ ଏବଂ ସାରା ବିଶ୍ୱର ଗତି ସହ ଭାରତ ପାଦ ମିଳାଇ ଗତି କରିବା ଉଚିତ ବୋଲି ଇଙ୍ଗିତ ଦେଲା । ଏ ସମ୍ବନ୍ଧରେ ଜବାହାରଲାଲଙ୍କର

ସେତେବେଳେ ଧାରଣା ଯେ ଖୁବ୍ ସ୍ପଷ୍ଟ ଥିଲା, ସେପରି ନୁହେଁ । ସୋସଲିଜମ୍ ସମ୍ବନ୍ଧରେ ତାଙ୍କର ଏକ ଗୋଳମାଳିଆ ଭାବ ବରାବର ରହିଆସିଥିଲା । କିନ୍ତୁ ତାଙ୍କ ପରି ଜଣେ ନେତା ସ୍ପଷ୍ଟଭାବରେ ସୋସଲିଷ୍ଟ ବିଶ୍ୱ ରାଷ୍ଟ୍ରସଂଘର ପରିଯୋଜନା ଭିତରେ ଆମକୁ ଗଢ଼ କରିବାକୁ ପଡ଼ିବ ବୋଲି ଲେଖିବାରୁ ଚନ୍ଦ୍ରାରାଜ୍ୟରେ ଗୋଟାଏ ପ୍ରକାର ଆଲୋଡ଼ନ ସୃଷ୍ଟି ହେଲା । ସୋସଲିଜମ୍‌ର ଚର୍ଚ୍ଚା ହେବାକୁ ଲାଗିଲା । ଏହି ଲେଖାଗୁଡ଼ିକରେ ଭବିଷ୍ୟତ କର୍ମପନ୍ଥା କଅଣ ହେବ ଏବଂ ତତ୍‌କାଳୀନ ପରିସ୍ଥିତିରେ କଣ କରାଯିବା ଉଚିତ ସେ ସମ୍ବନ୍ଧରେ କୌଣସି ସ୍ପଷ୍ଟ ଆଭାସ ନ ଥିଲା । ଏହି ପ୍ରବନ୍ଧଗୁଡ଼ିକ ଧାରାବାହିକ ଭାବରେ ୧୯୩୩ ମସିହା ଅକ୍ଟୋବର ୯, ୧୦ ଓ ୧୧ ତାରିଖରେ ବିଭିନ୍ନ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇଥିଲା ।

ସୋସଲିଜମ୍‌ର ଯେଉଁ ଚର୍ଚ୍ଚା ଜେଲ ପ୍ରାଚୀର ଭିତରେ ଏବଂ ବହୁ ଯୁବ କଂଗ୍ରେସୀଙ୍କ ହୃଦୟରେ ହେଉଥିଲା, ତାହା ଏବେ ପ୍ରକାଶ୍ୟରୂପ ଧାରଣ କଲା । ଆଗରୁ କମ୍ୟୁନିଷ୍ଟ ପାର୍ଟି ଏ ଦେଶରେ କାର୍ଯ୍ୟ କରୁଥିଲା; ମାତ୍ର ତାର କାର୍ଯ୍ୟ କେବଳ ବମ୍ବେ ଓ ଆଉ କେତେକ ସହରରେ ଶ୍ରମିକଶ୍ରେଣୀ ଭିତରେ ସୀମାବଦ୍ଧ ଥିଲା । ମୁଷ୍ଟିମେୟ ଲୋକ ଏଥିରେ ସଂଯୁକ୍ତ ଥିଲେ । ସ୍ୱାଧୀନତା ସଂଗ୍ରାମରେ ସେମାନେ ଯୋଗ ଦେଇ ନ ଥିବାରୁ ସେମାନଙ୍କ ସହ କଂଗ୍ରେସ କର୍ମୀମାନଙ୍କର ପ୍ରତ୍ୟକ୍ଷ ସମ୍ପର୍କ ହୋଇପାରି ନ ଥିଲା । ଅବଶ୍ୟ ବ୍ୟକ୍ତିଗତ ଭାବରେ କେତେକ କମ୍ୟୁନିଷ୍ଟ ଜେଲ ବରଣ କରିଥିଲେ ଏବଂ ଜେଲ ଭିତରେ କମ୍ୟୁନିଜମ୍‌ର ପ୍ରଚାର କରିବାର ଉଦ୍ୟମ କରୁଥିଲେ । କମ୍ୟୁନିଷ୍ଟ ପାର୍ଟିକୁ ବ୍ରିଟିଶ ସରକାର ବେଆଇନ କରିଥିବାରୁ ପ୍ରକାଶ୍ୟରେ କାର୍ଯ୍ୟ କରିବା ମଧ୍ୟ ସେମାନଙ୍କ ପକ୍ଷରେ କଷ୍ଟକର ଥିଲା । କିନ୍ତୁ ସୋଭିଏଟ୍ ରୁଷ ପ୍ରତି ପ୍ରବଳ ଆକର୍ଷଣ ରହିଥିଲା । ରୁଷ ବିପ୍ଳବର ବିବରଣୀ ଓ ମାର୍କସ, ଲେନିନ୍ ଓ ଟ୍ରଟ୍‌ସ୍କିଙ୍କ ପୁସ୍ତକ ଆଦି ଅଧ୍ୟୟନ କରିବା ନିମନ୍ତେ ଖୁବ୍ ଆଗ୍ରହ ରହିଥିଲା । ଆମେ ସବୁ ଜେଲ ଭିତରେ ଓ ବାହାରେ ଏଭଳି ପୁସ୍ତକ ବେଶି ପଢ଼ିବାକୁ ଆରମ୍ଭ କରିଥିଲୁ । ଆମେ ବେଶି ପରିମାଣରେ ଇଂରେଜ ସରକାର ଦ୍ୱାରା ବାଜ୍ୟାପ୍ତ ପୁସ୍ତକ ଲୁଚାଇ ପଢୁଥିଲୁ ଏବଂ ରାଜଦ୍ରୋହ ହେବାଭଳି ପଂକ୍ତିମାନ ଲେଖି ରଖିଥିଲୁ । ମୋର ସ୍ମରଣ ହେଉଛି, ୧୯୩୮ ମସିହାରେ ଗାନ୍ଧୀ-ଇରଉଇନ୍ ଚୁକ୍ତି ହୋଇସାରିବା ପରେ, ମତେ କଂଗ୍ରେସ କମିଟି ତରଫରୁ ଅନୁଗୋଳକୁ ପଠାଗଲା । ସେଠାରେ ଡେପୁଟି କମିସନରଙ୍କ ବିନାନୁମତିରେ କେହି ନିଜ ଘରେ ଅତିଥି ରଖିପାରୁ ନଥିଲେ ।

## ଅନୁଗୋଳରେ ଗୋଳ

ଅନୁଗୋଳ ବାହାରର ଲୋକ ଏପରିକି ଆପଣାର ବନ୍ଧୁବାନ୍ଧବଙ୍କୁ ଘରେ ରଖିବା ଥିଲା କାଠିକର ପାଠ । ସଭା ସମସ୍ତ; ପିକେଟିଂ ଓ ଅନ୍ୟ ସାଧାରଣ କାର୍ଯ୍ୟ କରିବାରେ

କୌଣସି ବାଧା ବା କଟକଣା ନ ଥିଲା । ଗାନ୍ଧୀ-ଇରଉଇନ୍ ଚୁକ୍ତିରେ ଏତିକି ଅଧିକାର ମିଳିପାରିଥିଲା । କିନ୍ତୁ ଅନୁଗୋଳରେ କଂଗ୍ରେସ କର୍ମୀମାନଙ୍କୁ ରହିବା ଲାଗି ସ୍ଥାନ ମିଳିଲା ନାହିଁ; ସେମାନେ ସରକାରୀ ସ୍ଥାନରେ ଏକ ଶ୍ରେଷ୍ଠ ପାହାଡ଼ ଉପରେ ପାଲ ବାନ୍ଧି ପଡ଼ିରହିଲେ । ସେମାନଙ୍କ ଉପରେ ନୋଟିସ ହେଲା ସରକାରୀ ଜାଗାରେ ଅନଧିକାର ପ୍ରବେଶ କରିଥିବା ହେତୁ ସ୍ଥାନ ପରିତ୍ୟାଗ କରିବା ନିମନ୍ତେ । ସେମାନେ ସେ ନୋଟିସକୁ ଅଗ୍ରାହ୍ୟ କରି ସେଠି ପତରକୁଡ଼ିଆ କରି ରହିଥିଲେ ଏବଂ କଂଗ୍ରେସ ପ୍ରଚାର କାର୍ଯ୍ୟ କରୁଥିଲେ । ସେମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ମୁଁ ଯାଇଥିଲି । ମୋ ସାଙ୍ଗରେ ଜବାହାରଲାଲଙ୍କ ଲିଖିତ "ସୋଭିଏଟ୍ ରୁଷିଆ" ମୁଦ୍ରିତ ପୁସ୍ତକଟି ଥିଲା । ହଠାତ୍ ପୁଲିସ ଆସି ସରକାରୀ ନୋଟିସକୁ ବେଖାତିର କରି ଟ୍ରେସପାସ୍ କରିଥିବା ଅପରାଧରେ ପାହାଡ଼ ଉପରେ ସମସ୍ତେ ପତର ପକାଇ ଖାଇବା ଆରମ୍ଭ କରୁଥିବାବେଳେ ଘେରାଉ କଲେ ଏବଂ ଅଧା ଖାଇଥିବାବେଳେ ପତରରୁ ଉଠାଇ ସମସ୍ତଙ୍କୁ ଗିରଫ କରିନେଲେ । ମୁଁ ବି ତହିଁରୁ ବାଦ୍ ପଡ଼ିଲି ନାହିଁ । ଅନ୍ୟ ବନ୍ଧୁମାନଙ୍କୁ ଏହି ଅପରାଧରେ ଗାନ୍ଧୀ-ଇରଉଇନ୍ ଚୁକ୍ତି ସତ୍ତ୍ୱେ ସଜା ଭୋଗିବାକୁ ପଡ଼ିଲା । ମୋ ବିରୁଦ୍ଧରେ କୌଣସି ପ୍ରମାଣ ପୁଲିସ ଦେଖାଇ ନ ପାରିବାରୁ କଚେରୀରୁ ମୁଁ ମୁକ୍ତ ହୋଇଗଲି; ମାତ୍ର ମୋ ସାଙ୍ଗରେ ଯେତିକି ବହି ଥିଲା, ବେଆଇନ୍ ଭାବରେ କୌଣସି ସରକାରୀ ଅର୍ଡର ନ ଥାଇ ସୁଦ୍ଧା ପୁଲିସ ଜବତ୍ କରିନେଲା । ନୋଟ୍‌ବୁକ୍‌ରେ ଲିଖିତ ରାଜଦ୍ରୋହସୂଚକ ପଂକ୍ତି ଏବଂ ସୋଭିଏଟ୍ ରୁଷିଆ ପୁସ୍ତକ ଯୋଗୁଁ ମୋ ନାମରେ ରାଜଦ୍ରୋହ ମକଦ୍ଦମା କରିବାର ଧମକ ଦିଆଗଲା । 'ସୋଭିଏଟ୍ ରୁଷିଆ' ପୁସ୍ତକ ଦେଖି କର୍ତ୍ତୃପକ୍ଷ ଅଧିକ ବିରକ୍ତ ହୋଇଗଲେ ଏବଂ ବହୁ ଅନୁରୋଧ ପରେ ଅନ୍ୟ କେତେକ ଶ୍ରେଷ୍ଠ ପୁସ୍ତକ ଫେରାଇଲେ ସୁଦ୍ଧା 'ସୋଭିଏଟ ରୁଷିଆ' ପୁସ୍ତକଟି ଓ ନୋଟ୍‌ବୁକ୍‌ଟିକୁ ରଖିନେଲେ । ଏ ଘଟଣାଟି ଯୋଗୁଁ ମୋ ମନରେ ଏକ ଧାରଣା ହେଲା ଯେ, ବ୍ରିଟିଶ ସରକାର ଗାନ୍ଧିଜୀଙ୍କ ଅପେକ୍ଷା ସୋଭିଏଟ୍ ରୁଷିଆକୁ ଅଧିକ ଭୟ କରୁଛି ଏବଂ ରୁଷବିପ୍ଳବ ସଂକ୍ରାନ୍ତ ପୁସ୍ତକ ପାଠ ଏକପ୍ରକାର ବ୍ରିଟିଶ-ବିରୋଧୀ କାର୍ଯ୍ୟ । ତେଣୁ ସେ ସଂକ୍ରାନ୍ତ ପୁସ୍ତକ ଖୋଜି ପଢ଼ିବା ଲାଗି ଚେଷ୍ଟା କରିବାରେ ଲାଗିଲି । ୧୯୩୨ ରେ ପୁଣି କାରାବରଣ କରିବା ପରେ 'ମଦର୍' ଓ ଅନ୍ୟ ପୁସ୍ତକ ସବୁ ଅଧିକ ଅଧ୍ୟୟନ କଲି । ବିଶେଷ କିଛି ପୁସ୍ତକ ମିଳୁ ନ ଥିଲା; ତଥାପି ମୋର ସ୍ମରଣ ହେଉଛି, ବର୍ଣ୍ଣାର୍ଡ ଶଙ୍କର ସୋସିଆଲିଜମ୍ ସଂକ୍ରାନ୍ତ ପୁସ୍ତକ ଜେଲଖାନା ଭିତରେହିଁ ପଢ଼ିଥିଲି । କମ୍ୟୁନିଷ୍ଟ ପାର୍ଟି ଅପରିଚିତ ଥିଲା । ସେଥିପ୍ରତି କିଛି ଶ୍ରଦ୍ଧା ବା ଆଦର ସୃଷ୍ଟି ହୋଇ ନ ଥିଲା, ମାତ୍ର ସୋଭିଏଟ୍ ରୁଷ, ମାର୍କସ, ଇଙ୍ଗେଲ୍‌ସ ଓ ବିଶେଷ ଭାବରେ ଲେନିନ୍‌ଙ୍କ ପ୍ରତି ଭକ୍ତି, ଆଦର ଓ ସମ୍ମାନଭାବନା ଜାତହେଲା ।

## ଦୁଇ ବର୍ଷର କାରାଜୀବନ

ଏହି କାରାବରଣ ଭିତରେ ବିଶେଷତଃ ୧୯୩୦ ଓ ୧୯୩୨ ମସିହାରେ ପାଟନା କ୍ୟାମ୍ପ ଜେଲରେ ଆଉ ଏକ ପ୍ରଭାବ ପ୍ରଚ୍ଛନ୍ନଭାବରେ ପଡ଼ିଥିଲା । ଗାନ୍ଧିଜୀଙ୍କ ସତ୍ୟାଗ୍ରହ ଆନ୍ଦୋଳନ ହେତୁ ଆତଙ୍କବାଦ ବା 'ଟେରରିଷ୍ଟ' ଆନ୍ଦୋଳନ ଟିକିଏ ଝିମେଇ ଯାଇଥିଲେ ସୁଦ୍ଧା ସେମାନଙ୍କର ତ୍ୟାଗ, ଦେଶପ୍ରୀତି ଓ ସାହସ ଆମମାନଙ୍କ ମନରେ ଗଭୀର ରେଖାପାତ କରିଥିଲା । କିଭଳି ଗୁପ୍ତ ସଙ୍ଗଠନ କରି ବ୍ରିଟିଶ କର୍ମଚାରୀମାନଙ୍କୁ ହତ୍ୟା କରାଯାଏ ଏବଂ ଚରମ ତ୍ୟାଗ ଓ କଷ୍ଟ ବରଣ କରିବାଲାଗି ବିପ୍ଳବୀମାନଙ୍କୁ ପ୍ରସ୍ତୁତ କରାଯାଏ ଓ ଶିକ୍ଷା ଦିଆଯାଏ, ଏ ସବୁର ଲୋମହର୍ଷଣକାରୀ ବିବରଣୀ ଜେଲ ଭିତରେ ଶୁଣିବାକୁ ମିଳିଲା ।

## ହିଂସା ନା ଅହିଂସା ?

ବିହାରର କେତେକ ବଙ୍ଗାଳୀ ବିପ୍ଳବୀ ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗ ଦେଇ ଜେଲ ଭିତରକୁ ଆସିଥାଆନ୍ତି ଏବଂ ସେମାନଙ୍କର ମୁଖ୍ୟ କାର୍ଯ୍ୟ ହୋଇଥିଲା ଯୁବକ ବନ୍ଦୀମାନଙ୍କ ସହ ସମ୍ପର୍କ ସ୍ଥାପନ କରିବା ଏବଂ ଏଥିରେ ଦୀକ୍ଷିତ କରାଇବା । ବଙ୍ଗଳା ଭାଷା ବୁଝିବା ଆମ ପକ୍ଷରେ ସହଜ ଥିବାରୁ ସେମାନଙ୍କଠାରୁ ବୀରତ୍ୱ କାହାଣୀସବୁ ଶୁଣିବାରେ ଓ ବୁଝିବାରେ ଅସୁବିଧା ନ ଥିଲା । ଏସବୁ ଶୁଣି ଗାନ୍ଧିଜୀଙ୍କର ଅହିଂସା ସଂଗ୍ରାମର ସଫଳତା ସମ୍ବନ୍ଧରେ ମନରେ ଏକ ସନ୍ଦେହ ସୃଷ୍ଟି ହେଉଥିଲା । ସ୍ୱାଧୀନତା ହାସଲ କରିବାକୁ ହେଲେ ଏବଂ ବ୍ରିଟିଶ ସାମ୍ରାଜ୍ୟବାଦକୁ ହଟାଇବାକୁ ହେଲେ ଆହୁରି କିଛି ବିଦ୍ରୋହାତ୍ମକ କାର୍ଯ୍ୟ କରିବାକୁ ପଡ଼ିବ ବୋଲି ମନରେ କ୍ରମେ ଧାରଣା ସୃଷ୍ଟି ହେଲା । ପରେ ୧୯୩୩ ମସିହାର ପ୍ରଥମ ଭାଗ ବେଳକୁ ବଙ୍ଗଳାର ଜଣେ ବିପ୍ଳବୀ ବିପିନ ଗାଙ୍ଗୁଲି ଆତ୍ମଗୋପନକାରୀ ରୂପେ ଓଡ଼ିଶାରେ ଆସି ଆଶ୍ରୟ ଗ୍ରହଣ କରିଥିଲେ । ତାଙ୍କ ସମ୍ପର୍କରେ ଆସିବାର ସୁଯୋଗ ଘଟିଥିଲା । ଆମର ଜଣେ ଅତି ଆପଣାର ସାଥୀ ଡାକ୍ତର ରବି ଘୋଷ ତାଙ୍କର ରହିବା ଇତ୍ୟାଦିର ବ୍ୟବସ୍ଥା କରିଥିଲେ ଏବଂ ବିଭିନ୍ନ ସ୍ଥାନରେ ତାଙ୍କୁ ଗୋପନରେ ରଖାଯାଉଥିଲା । ତାଙ୍କ ସହ ଆଲୋଚନା ପରେ ରାଜନୀତିକ ହତ୍ୟା ଓ ଗୋପନୀୟ ସଂଗଠନ ପ୍ରତି ଗୋଟାଏ ସହାନୁଭୂତି ମନରେ ଜାତ ହେଉଥିଲା । ଏତେବେଳକୁ ରୁଷିଆ ବିପ୍ଳବ ସମ୍ବନ୍ଧରେ କିଛି ପଢ଼ାପଢ଼ି ଆରମ୍ଭ ହୋଇସାରିଥିଲା । ଆତଙ୍କବାଦ ଏକ ବୀରୋଚିତ କାର୍ଯ୍ୟ ହେଲେ ସୁଦ୍ଧା ତାହା ଫଳପ୍ରସୂ ହେବ ବୋଲି ଟିକିଏ କମ୍ ବିଶ୍ୱାସ ହେଉଥିଲା । ମାତ୍ର ଏହା ସ୍ୱୀକାର କରିବାକୁ ପଡ଼ିବ ଯେ, ଗୁପ୍ତ ସଙ୍ଗଠନମାନ କରି ବିପ୍ଳବୀମାନଙ୍କୁ ଚରମ ତ୍ୟାଗ ଓ କଷ୍ଟବରଣ କରିବା ନିମନ୍ତେ ପ୍ରସ୍ତୁତ ହେବାର ଆବଶ୍ୟକତା ରହିଛି ବୋଲି ଆମେ ସବୁ ଅନୁଭବ କଲୁ ।

## ନବକୃଷ୍ଣ ଚୌଧୁରୀଙ୍କ ଅବଦାନ

ଏଥିରେ ଆମର ଗୁରୁ ଓ ପଥପ୍ରଦର୍ଶକ ହେଲେ ଶ୍ରୀ ନବକୃଷ୍ଣ ଚୌଧୁରୀ । ସତ୍ୟାଗ୍ରହ ଆନ୍ଦୋଳନ ସ୍ଥଗିତ ରହିଲା ସତ୍ୟ, ମାତ୍ର ସେ ସେଦିଗରେ ନାନା ଅନୁସନ୍ଧାନରେ ବ୍ରତୀ

ଥିଲେ; ମୋ ପରି କେତେକ ଯୁବକ ତାଙ୍କ ପ୍ରତି ଅଧିକ ଆକୃଷ୍ଟ ହୋଇଗଲୁ । ସେ ନାନା ପୁସ୍ତକ ପଢ଼ୁଥିଲେ ଏବଂ ଆମମାନଙ୍କ ସହ ସେ ସମ୍ପର୍କରେ ଆଲୋଚନା କରୁଥିଲେ । ରୀତିମତ କ୍ଲାସ କରି ଯେ ଶିକ୍ଷା ଦିଆଯାଉଥିଲା, ତାହା ନୁହେଁ, ମାତ୍ର କଥାବାର୍ତ୍ତାରେ, ଆଲୋଚନାରେ ସେ ଏ ଦିଗରେ ବିଭିନ୍ନ ଯୁକ୍ତି ବାଢ଼ୁଥିଲେ । ଫଳରେ ମନରେ ଉଠୁଥିବା ବହୁ ପ୍ରଶ୍ନର କିଞ୍ଚିତ ସନ୍ତୋଷଜନକ ଜବାବ ମିଳିଯାଉଥିଲା । ମୋର ସ୍ମରଣ ହେଉଛି, ରିଚାର୍ଡ଼ ଗ୍ରେଗ୍‌ଙ୍କର ଗାନ୍ଧିଜୀଙ୍କ ଅହିଂସା ସମ୍ବନ୍ଧରେ ଲିଖିତ ପୁସ୍ତକ ଖୁବ୍ ଆଲୋଚିତ ହୋଇଥିଲା । ଅହିଂସା ଆନ୍ଦୋଳନ କିପରି କ୍ରିୟାତ୍ମକ ଓ ଫଳପ୍ରଦ ହୋଇପାରେ, ସେ ସମ୍ବନ୍ଧରେ ଏକ ତାତ୍ତ୍ୱିକ ବିଚାର ବଡ଼ ପ୍ରାଞ୍ଜଳ ଭାବରେ ସେ କରିଥିଲେ । ଗାନ୍ଧିଜୀଙ୍କ ଅହିଂସା ସଂଗ୍ରାମରେ ଆମେ ଯୋଗ ଦେଇଥାଉ । ଇଂରେଜ ସାମ୍ରାଜ୍ୟକୁ ଏ ଦେଶରୁ ହଟାଇବା ନିମନ୍ତେ ଶପଥ ନେଇଥାଉ । ତେଣୁ ଆନ୍ଦୋଳନ ଶିଥିଳ ହୋଇଗଲା ପରେ ଏହାକୁ କିଭଳି ଅଧିକ ଫଳପ୍ରଦ କରାଯାଇ ପାରିବ, ତାହାହିଁ ଆମର ଥିଲା ପ୍ରଧାନ ଚିନ୍ତା । ନୂତନ କର୍ମପନ୍ଥାର ସନ୍ଧାନରେ ଥାଉ । ପୁସ୍ତକଗତ ରାଜନୀତିକ ବିଜ୍ଞାନ ବା ଧାରାବାହିକ ପଠନର ଅଭିଜ୍ଞତା ନ ଥିଲା; ତେଣୁ ଆମ ଯୁବକ ପ୍ରାଣରେ କିଛି ଏକ ବଦ୍ଧମୂଳ ସ୍ପଷ୍ଟ ଧାରଣା ନ ଥିଲା । ମନ ଓ ହୃଦୟ ଖୋଲା; ଭାବପ୍ରବଣତାରେ ହୃଦୟ ଭରା ।

ମୁଁ ୧୭ ବର୍ଷ ବୟସରେ ସ୍କୁଲ ପଢ଼ା ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲି । କେବଳ ଛାତ୍ର ସେତେବେଳେ ସ୍କୁଲ କଲେଜ ଛାଡ଼ି ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗଦାନ କରିବାଟା ଗୋଟାଏ ବଡ଼ ଘଟଣା ବୋଲି ମନେକରାଯାଉଥିଲା । ମୋର ମନେଅଛି—ମୁଁ ସ୍କୁଲ ଛାଡ଼ି ୧୯୩୦ ମସିହାରେ ସତ୍ୟାଗ୍ରହ ଆଶ୍ରମରେ ଯୋଗ ଦେବା ପରେ କାଠଯୋଡ଼ି ନଦୀ କୂଳରେ ଏକ ସଭାରେ ମତେ ଯେତେବେଳେ କିଛି ଭାଷଣ ଦେବାକୁ କୁହାଗଲା, ମୋ ମନରେ ଏକ କୋହ ଜାତ ହେଲା । ମୁଁ ଉଠି କହିଲି "ମୋର ମାତା ଯେତେବେଳେ ଲାଞ୍ଛିତା, ପଦଦଳିତା ଓ ପରାଧୀନତା ଶୃଙ୍ଖଳରେ ବନ୍ଧା ହୋଇଛି, ସେତେବେଳେ ମୁଁ ବସି 'ଏ ପ୍ଲସ୍ ବି. ହୋଲ ସ୍କୋୟାର' କରିପାରିବି ନାହିଁ ।" ସଭାରେ ବସିଥିବା ଲୋକେ ଏ କଥାରେ ତାଳି ଦେଲେ । "ଗାନ୍ଧିଜୀ ସ୍ୱରାଜ୍ୟ ପ୍ରାପ୍ତି ନ ହେବା ପର୍ଯ୍ୟନ୍ତ ସାବରମତୀ ଆଶ୍ରମକୁ ଫେରିବେ ନାହିଁ ବୋଲି ଘୋଷଣା କରିଅଛନ୍ତି ଏବଂ ମୁଁ ମଧ୍ୟ ଦେଶରେ ପୂର୍ଣ୍ଣ ସ୍ୱରାଜ୍ୟ ସ୍ଥାପିତ ନ ହେବା ପର୍ଯ୍ୟନ୍ତ ଆଉ ବ୍ରିଟିଶ୍ ଶାସିତ ସ୍କୁଲ କଲେଜରେ ପାଠ ପଢ଼ିବାକୁ ଯିବି ନାହିଁ କିମ୍ବା ଘରକୁ ଫେରିବି ନାହିଁ ।" ଏପରି ଭାବପ୍ରବଣତା ହିଁ ଆମମାନଙ୍କୁ ଆନ୍ଦୋଳନ ଆଡ଼କୁ ଟାଣିଆଣିଥିଲା । ତେଣୁ ଯେଉଁସବୁ ବିଚାର ହେଉଥିଲା, ତାହା ତଥ୍ୟ ଓ ପୁସ୍ତକଗତ ନୁହେଁ । ସ୍ୱରାଜ୍ୟ ଆନ୍ଦୋଳନର ସଫଳତା ହାସଲ କରିବାର ସର୍ବୋତ୍କୃଷ୍ଟ ପନ୍ଥା କଣ ହେବା ଉଚିତ ଥିଲା ସେହି ଦୃଷ୍ଟିକୋଣରୁ ମୁଁ ସବୁକଥା ଗ୍ରହଣ କରୁଥିଲି ।

ଏହିସବୁ ବିଚାର ମନ୍ଥନ ପରେ ସୋସଲିଜମ୍ ଆଡ଼କୁ ସ୍ୱାଭାବିକ ଭାବରେ ମନ ଆକୃଷ୍ଟ ହୋଇଗଲା । ଦେଶର ଜନସାଧାରଣଙ୍କୁ ଏ ବିପ୍ଳବରେ ସକ୍ରିୟ ଭାବରେ ଅଂଶ ଗ୍ରହଣ

କରାଇବାକୁ ହେଲେ ସେମାନଙ୍କ ଭିତରେ ଶ୍ରେଣୀସଂଗ୍ରାମର ଭାବନା ଜାଗ୍ରତ କରାଇବାକୁ ପଡ଼ିବ । ସମାଜରେ ବିଭିନ୍ନ ଶ୍ରେଣୀ ରହିଛନ୍ତି—ନିପୀଡ଼ିତ ଶ୍ରେଣୀ, କୃଷକ, ମଜଦୁର, ଜମିଦାର, ରୟତ, ମାଲିକ, ମୂଲିଆ, ଥିଲାବାଲା, ନଥିଲାବାଲା, ପୁଞ୍ଜିପତି, ସର୍ବହରା, ଶୋଷକ, ଶୋଷିତ, ରାଜା, ପ୍ରଜା, ଭୂମିହୀନ, ଭୂମି ମାଲିକ, ପୁରୋହିତ, ହରିଜନ ଇତ୍ୟାଦି । ଶୋଷିତ ଶ୍ରେଣୀର ସଂଗଠନ କରିବାକୁ ହେବ ଏବଂ ଶୋଷଣ ବିରୁଦ୍ଧରେ ସଂଗ୍ରାମ କରିବା ନିମନ୍ତେ ସେମାନଙ୍କୁ ପ୍ରସ୍ତୁତ କରିବାକୁ ପଡ଼ିବ ।

କିଭଳି କଣ କରିବାକୁ ପଡ଼ିବ, ସେଥିନିମନ୍ତେ ଶ୍ରୀ ନବକୃଷ୍ଣ ଚୌଧୁରୀ କେତେକ ବଛା ବଛା ଲୋକଙ୍କୁ ଡକାଇଲେ । ସେତେବେଳେ ସେ କଟକ ଜିଲାର ଅଣଖିଆଠାରେ ଏକ ଫାର୍ମ କରିଥିଲେ । ଶ୍ରୀମତୀ ମାଳତୀ ଚୌଧୁରୀ ଓ ସେ ସେଠାରେ ରହୁଥିଲେ । ଏପରି ଏକ ବୈଠକ ସେହିଠାକୁ ୧୯୩୩ ମସିହା ଫେବୃୟାରୀ ମାସରେ ଡକାଗଲା । କେବଳ କଂଗ୍ରେସ କର୍ମୀଙ୍କୁ, ଯେଉଁମାନଙ୍କ ସହ ତାଙ୍କର ବ୍ୟକ୍ତିଗତ ଭାବରେ ପ୍ରାଥମିକ ଆଲୋଚନା ହୋଇଥିଲା, ସେହିମାନଙ୍କୁ ଡାକିଥିଲେ । ଶ୍ରୀ ହରେକୃଷ୍ଣ ମହତାବ ନବବାବୁଙ୍କର ପରମ ବନ୍ଧୁ ଥିଲେ । ସତ୍ୟାଗ୍ରହ ଆନ୍ଦୋଳନବେଳେ ଆମେ ସବୁ ତାଙ୍କ ସହ ଏକାଠି କାର୍ଯ୍ୟ କରିଥିଲୁ—ଆମ ସାଙ୍ଗରେ ପାଟନା କ୍ୟାମ୍ପ ଜେଲରେ ବି ସେ କିଛିଦିନ ରହିଥିଲେ । ଯୁବକମାନଙ୍କ ସହିତ ମିଶି ଏକାଠି କାର୍ଯ୍ୟ କରୁଥିଲେ ଏବଂ ବିଭିନ୍ନ ତାତ୍ତ୍ୱିକ ବିଷୟ ଆଲୋଚନା କରୁଥିଲେ । ମୋର ଯେତେଦୂର ସ୍ମରଣ ହେଉଛି, ସେ ବାଲେଶ୍ୱରର କରୁଣାକର ପାଣିଗ୍ରାହୀ ଓ ବିଶ୍ୱନାଥ ହୋତାଙ୍କ ଦସ୍ତଖତରେ ଏକ ଚିଠି ସେ ଆମ କେତେଜଣଙ୍କୁ ପଠାଇଥିଲେ ଏବଂ ସେଥିରେ ଭବିଷ୍ୟତ କର୍ମପନ୍ଥା ବିଷୟରେ ତାଙ୍କର ମତ ଲେଖିଥିଲେ । ତହିଁର ମୋଟାମୋଟି ବିଷୟ ଥିଲା—ଏକ ସେବା ସମିତି ବା ତଦ୍ରୂପ ସଂଗଠନ କରି କାର୍ଯ୍ୟ କରିବାକୁ ପଡ଼ିବ । ନବବାବୁ ତାଙ୍କୁ ବି ନିମନ୍ତ୍ରଣ କରିଥିଲେ । ମାତ୍ର ପ୍ରକୃତ ସଂଗଠନ କରାଯିବା ବେଳକୁ ସେ ନ ଆସି ତାର ପଠାଇଥିଲେ । ତା' ପରେ ବ୍ୟକ୍ତିଗତ ସମ୍ପର୍କ ରଖିଥିଲେ ।

## ଆମେ କେମିତି ସାମ୍ୟବାଦୀ ହେଲୁ

ଏହି ଐତିହାସିକ ବୈଠକରେ ଯେଉଁମାନେ ଯୋଗ ଦେଇଥିଲେ, ସେମାନଙ୍କ ନାମ ଏକ ରୁଲପକା ଏକ୍ସରସାଇଜ ଖାତାରେ ଲେଖାହୋଇଥିଲା ଏବଂ ସେଥିରେ ଆମେସବୁ ଦସ୍ତଖତ କଲୁ । ସେ ଖାତା ହଜିଯାଇଛି । ଯୋଗଦେଇଥିଲେ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ ଗୌରଚନ୍ଦ୍ର ଦାସ, ଗୌରାଙ୍ଗ ଚରଣ ଦାସ, ସୁଧୀର ଚନ୍ଦ୍ର ଘୋଷ, ଡ଼ାକ୍ତର ନୃପେନ ସେନ୍, ମନମୋହନ ଚୌଧୁରୀ ଓ ମୁଁ । ୪୫।୪୬ ବର୍ଷ ତଳର ଘଟଣା—ମୋର ଯେତିକି ସ୍ମରଣ ହେଉଛି ତାହିହିଁ ଲେଖୁଛି । ଓଡ଼ିଶା ବାହାରେ କେଉଁଠି କଣ ହେଉଥିଲା ଆମକୁ କିଛି ଜଣାନଥିଲା, କମ୍ୟୁ। ସଂପର୍କ ହୋଇନଥିଲା । ଗୋପନ ଭାବରେ ରାତିରେ ହିଁ ଏ ବୈଠକ ହେଲା ଏବଂ ବିସ୍ତୃତ ଆଲୋଚନା ପରେ "ଉତ୍କଳ କଂଗ୍ରେସ ସାମ୍ୟବାଦୀ

କର୍ମୀସଂଘ” ନାମକ ଏକ ସଂଗଠନର ସ୍ଥାପନା ହେଲା । ଡାକ୍ତର ରବି ଘୋଷ ସେତେବେଳକୁ ମେଡ଼ିକାଲ ସ୍କୁଲରେ ପଢ଼ୁଥାନ୍ତି; ସେ ମଧ୍ୟ ଆମ ସହ ସଂପୃକ୍ତ ହେଲେ । ଏହିପରି ଭାବରେ ଓଡ଼ିଶାର ପ୍ରଥମ ସୋସିଆଲିଷ୍ଟ ସଂଗଠନର ମୂଳପତ୍ତନ ହେଲା ।

ଆମେ ସବୁ ନିଜକୁ ସାମ୍ୟବାଦୀ ବୋଲି ଘୋଷଣା କଲୁ । ଧର୍ମ ଓ ଭଗବାନଙ୍କ ପ୍ରତି ଆମର ଅଶ୍ରଦ୍ଧା ଜାହିର କଲୁ, କାରଣ କାର୍ଲ ମାର୍କସ ଲେଖିଥିଲେ—ଧର୍ମ ହେଉଛି ଲୋକଙ୍କ ଲାଗି ଅଫିମ ସଦୃଶ । ଜାତି ଓ ଅସ୍ପୃଶ୍ୟତାରେ ଆମର ବିଶ୍ୱାସ ରହିଲା ନାହିଁ । ମୁଁ ଏହି ମିଟିଂ ପରେ ଘରକୁ ଫେରି ପଇତା କାଢ଼ି ଫିଙ୍ଗିଦେଲି । ଆମର ବିଚାର ହେଲା ସାମ୍ୟବାଦୀ ହେବାକୁ ହେଲେ ଆମକୁ ସର୍ବହରା ହେବାକୁ ପଡ଼ିବ—ସାଧାରଣ ଲୋକ ସହ ନିଜକୁ ସମାନ ସ୍ତରରେ ରଖିବାକୁ ପଡ଼ିବ । ନିଜର ଆଚରଣ ଓ କାର୍ଯ୍ୟକଳାପରେ ମଧ୍ୟ ଏହା ପ୍ରତିଫଳିତ ହେବା ଉଚିତ; ତାହା ନ ହେଲେ ସାଧାରଣ ଲୋକଙ୍କର ବିଶ୍ୱାସଭାଜନ ହୋଇପାରିବା ନାହିଁ ।

ଏ ସଂପର୍କରେ ଆଉ ଏକ ସିଦ୍ଧାନ୍ତ ଗ୍ରହଣ କଲୁ—ଏହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । କମ୍ୟୁନିଜମ୍ ବା ସାମ୍ୟବାଦର ମୂଳ ସିଦ୍ଧାନ୍ତ ହେଲା 'ପ୍ରତ୍ୟେକେ ନିଜର ଆବଶ୍ୟକତା ଅନୁସାରେ ପାଇବେ ଏବଂ ନିଜର ସମସ୍ତ ଶକ୍ତି ସମାଜଲାଗି ଦାନ କରିବେ । ବ୍ୟକ୍ତିଗତ ସଂପତ୍ତି କାହାରି ରହିବା ଉଚିତ ନୁହେଁ ।' ବୁପଶୋକିନ୍‌ଙ୍କର 'ନୈରାଜ୍ୟବାଦ' ପୁସ୍ତକ ପଢ଼ି ମୋ ମନରେ ତାର କିଛି ପ୍ରଭାବ ବି ପଡ଼ିଥିଲା । ତେଣୁ ସ୍ଥିର କରାଗଲା—ସାମ୍ୟବାଦୀ କର୍ମୀ ସଂଘର ସଭ୍ୟଙ୍କର ବ୍ୟକ୍ତିଗତ ସମ୍ପତ୍ତି ରହିବ ନାହିଁ । ଜୀବନରେ ତାର ନିଜର ସମ୍ପତ୍ତି ରହିବ ନାହିଁ କିମ୍ବା କାହାରି ଦୟା ବା ଦାନ ଉପରେ ନିର୍ଭର କରିବ ନାହିଁ । ଏହା ଏକ କଠିନ ପ୍ରତିଜ୍ଞା; ମାତ୍ର ବିପ୍ଳବୀ ଓ ସାମ୍ୟବାଦୀ ହେବାର ଏପରି ପ୍ରବଳ ଆକାଂକ୍ଷା ମନ ଭିତରେ ସୃଷ୍ଟି ହୋଇଥିଲା ଯେ ମୁଁ କୌଣସି ଦ୍ୱିଧା ନ କରି ମନ ଆନନ୍ଦରେ ଏହା ଗ୍ରହଣ କରିଥିଲି । ସେଠାରେ ଉପସ୍ଥିତ ଥିବା ପ୍ରତ୍ୟେକେ ଏହା ସ୍ୱୀକାର କଲେ । ଅବଶ୍ୟ ନୃପେନ୍ ସେନ୍ ଓ ସୁଧୀର ଘୋଷ ବେଶି ଦିନ ଆମମାନଙ୍କ ସାଙ୍ଗରେ ରହିଲେ ନାହିଁ । ମନମୋହନ ଚୌଧୁରୀଙ୍କୁ ତାଙ୍କ ପିତା ଗୋପବନ୍ଧୁ ଚୌଧୁରୀ ଅନ୍ୟ ଶିକ୍ଷା ନିମନ୍ତେ କଲିକତା ସୋଦପୁରର ଗାନ୍ଧୀବାଦୀ ନେତା ଶ୍ରୀ ସତୀଶ ଚନ୍ଦ୍ର ଦାସଗୁପ୍ତଙ୍କ ପାଖକୁ ପଠାଇଦେବାରୁ ସେ ସେହିକାଳରୁ ଭିନ୍ନ ରାସ୍ତା ଧରିଲେ ।

## 'ସାରଥି' ପ୍ରକାଶ ପାଇଲା କିପରି ?

ଏହି ଶପଥ ଅନୁସାରେ ଦେଖିବାକୁ ଗଲେ ଆମେ ବାକି ଯେତେଜଣ ଥିଲୁ, ଆମର ପ୍ରାପ୍ୟ କିଛି ନ ଥିଲା । ନବବାବୁ ତାଙ୍କ କୃଷିଫାର୍ମଟିକୁ କର୍ମୀସଂଘ ଜିମା କରିଦେଲେ ଏବଂ ସେଥିର ଆୟରେ କର୍ମୀସଂଘର କାର୍ଯ୍ୟ ଚଳିବା ସ୍ଥିର ହେଲା । ଶ୍ରୀମତୀ ମାଳତୀ ଚୌଧୁରୀ ତାଙ୍କର ସମସ୍ତ ଗହଣା କର୍ମୀସଂଘ ମାର୍ଫତ୍‌ରେ ଅର୍ପଣ କଲେ । ସେହି କାଳରେ ତାହାର

ମୂଲ୍ୟ ପ୍ରାୟ ଛଅ ହଜାରରୁ ଅଧିକ ହେବ—ଆଜିକାଲିକା ଦର ଅନୁସାରେ ୬୦ ହଜାର ବା ଏକଲକ୍ଷ ପାଖାପାଖି ହେବ । ସ୍ଥିର ହେଲା ସେହି ଗହଣା ବିକି କର୍ମୀସଂଘ ତରଫରୁ **"ସାରଥି" ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶ ପାଇବ ।** ପ୍ରାୟ ଦୁଇ ମାସ ପରେ ଜାନୁଆରୀ ୧୯୩୬ ମଇ ପହିଲା ବେଳକୁ ଏହାର ପ୍ରଥମ ସଂଖ୍ୟା ପ୍ରକାଶିତ ହେଲା । ନବବାବୁ ଏହାର ସମ୍ପାଦକ ହେଲେ । ଏଭଳି ଉଗ୍ର ରାଜନୀତିକ ଚିନ୍ତାଧାରା ଆଲୋଚନା କରୁଥିବା ପତ୍ରିକା ଆମ ଓଡ଼ିଶାରେ ଏହା ହେଲା ପ୍ରଥମ—ଭାରତରେ କେଉଁଠି ବାହାରିଥିଲା ବୋଲି ମୋର ମନେହେଉନାହିଁ ।

## ମଇ ଦିବସ

ସୋସିଆଲିଜମ୍‌ର ପ୍ରଥମ ଧ୍ୱନି ହେଲା "ଦୁନିଆର ଶ୍ରମିକ ଏକଜୁଟ ହୁଅ ।" 'ସାରଥି'ର ପ୍ରଥମ ପୃଷ୍ଠାର ଉପରେ ଏହା ବରାବର ଲେଖା ହେଉଥିଲା । ସେହି ବର୍ଷ ସାମ୍ୟବାଦୀ ଆନ୍ଦୋଳନକୁ ସାଧାରଣଙ୍କ ଗୋଚରରେ ଆଣିବା ନିମନ୍ତେ ଆମେ ସବୁ କଟକରେ ମଇ ପହିଲା ଦିନ "ମଇ ଦିବସ" ପାଳନ କରିବା ନିମନ୍ତେ ସ୍ଥିର କଲୁ । ମାତ୍ର ଆମ ଆଗରେ ସମସ୍ୟା ପଡ଼ିଥିଲା—'ଶ୍ରମିକ' କେଉଁଠୁ ପାଇବା ? ଓଡ଼ିଶାରେ କୌଣସି କଳ କାରଖାନା ନଥିଲା । ମଜଦୁର ଶ୍ରେଣୀ ବୋଇଲେ ନିର୍ଦ୍ଦିଷ୍ଟ ଭାବରେ କିଛି ଦେଖାଯାଉନଥିଲେ । 'ସାରଥି' ପ୍ରକାଶିତ ହେଉଥିଲା କଟକରେ କବିରାଜ ରାଧାନାଥ ଶତପଥୀଙ୍କର ଏକ ଗ୍ରେଟ ହ୍ୟାଣ୍ଡପ୍ରେସ୍‌ରେ । ସେ ଅତି ଆଗ୍ରହ ସହକାରେ ଆମ ସହ ସହଯୋଗ କରୁଥିଲେ । ସେତେବେଳେ ନିଜକୁ ସୋସିଆଲିଷ୍ଟ ବୋଲି ପରିଚୟ ଦେବା କିଛି ସହଜ ନଥିଲା । ଲୋକଙ୍କର ନାନା ଭୁଲଧାରଣା ରହିଥିଲା—ଆମ ଭିତରୁ ଯେ ପୂରା ସଂକୋଚ ଚାଲି-ଯାଇଥିଲା, ଏପରି ନୁହେଁ । ଯାହାହେଉ, ରାଧାନାଥ ଶତପଥୀଙ୍କ ପ୍ରେସରେ କାର୍ଯ୍ୟ କରୁଥିବା ୭।୮ ଜଣ ପ୍ରେସ କର୍ମଚାରୀ ଓ ଆମେ କେତେଜଣ ମିଶି "ଦୁନିଆର ଶ୍ରମିକ ଏକଜୁଟ ହୁଅ" ବୋଲି ଧ୍ୱନି ଦେଇ ପ୍ଲାକାର୍ଡ଼ ଧରି କଟକ ସହରର ପ୍ରଧାନ ସଡ଼କରେ ଯେତେବେଳେ ଯାଉ, ଏକ ଅଭିନବ ଦୃଶ୍ୟ ହୋଇଗଲା । 'ମହାତ୍ମା ଗାନ୍ଧିଜୀ ଜୟ' 'ଭାରତମାତା କି ଜୟ' ଧ୍ୱନି ସହିତ ଲୋକେ ପରିଚିତ ଥିଲେ—ମାତ୍ର ଏ ପୁଣି କ'ଣ ? ଆମେ ଥିଲୁ ମାତ୍ର ମୁଷ୍ଟିମେୟ ୧୦।୧୫ ଜଣ । ନବବାବୁଙ୍କୁ ଲୋକେ ଚିହ୍ନିଥାଆନ୍ତି—ସେ ମଧ୍ୟ ଆମ ସାଙ୍ଗରେ ସେମିତି ମଇଳା ଧୋତି ପଞ୍ଜାବି ପିନ୍ଧି ଆଗେ ଆଗେ ଚାଲିବା ଦେଖି ଅନେକଙ୍କ ମନରେ କୌତୂହଳ ଜାତହେଲା । ଆମେ ଚାଲି ଚାଲି ଯାଇ ଗୌରୀଶଙ୍କର ପାର୍କ ନିକଟରେ ଗ୍ରେଟିଆ ସଭାଟିଏ କଲୁ ଏବଂ ନବବାବୁ ମଇ ଦିବସର ତାତ୍ପର୍ଯ୍ୟ ବୁଝାଇଲେ । ରାଜନୀତିକ ମହଲରେ ଚାଞ୍ଚଲ୍ୟ ଖେଳିଗଲା । ମାରୁଆଡ଼ି ବ୍ୟବସାୟୀମାନେ ଭାବିଲେ—ମଜଦୁରମାନଙ୍କର ମଜୁରୀ ବଢ଼ିଯିବ । ସାମ୍ୟବାଦ ନାମ ଶୁଣି କେତେକଙ୍କ ପ୍ରାଣରେ ଆତଙ୍କ ପଶିଲା । କେତେକ ଭାବିଲେ ଏମାନେ ଅର୍ଦ୍ଧପାଗଳ—"ସମସ୍ତେ କ'ଣ ସମାନ ହୋଇ ପାରିବେ !" ଆଉ

କେତେକ ଆଶଙ୍କା କଲେ—ବୋଧହୁଏ ଧନ ଦୌଲତ ସବୁ ଏମାନେ ଆଉ ରଖାଇ ଦେବେ ନାହିଁ; କିଛି ଉପଦ୍ରବ ଲଗିବ । ଏହିଭଳି ମିଶ୍ରିତ ପ୍ରତିକ୍ରିୟା ଭିତରେ ପ୍ରକାଶ୍ୟରେ ୧୯୩୩ ମସିହା ମଇ ମାସରେ ଓଡ଼ିଶାରେ ସାମ୍ୟବାଦୀ ଆନ୍ଦୋଳନର ଅଗ୍ରମାରମ୍ଭ ହେଲା ।

ଇଂରାଜୀରେ ଆମେ ଲେଖୁଥିଲୁ "ଉତ୍କଳ କଂଗ୍ରେସ ସୋସଲିଷ୍ଟ ଓ୍ୱର୍କର୍ସ ଲିଗ୍ ।" କିନ୍ତୁ ଓଡ଼ିଆରେ ଲେଖା ହେଉଥିଲା "ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀସଂଘ ।" ସୋସଲିଷ୍ଟଙ୍କୁ ସାମ୍ୟବାଦୀ ବୋଲି ଲେଖିବା ହେତୁ ପରେ ବହୁ ଭ୍ରମ ଧାରଣା ସୃଷ୍ଟି ହୋଇଥିଲା । ସୋସଲିଜମ୍‌ର ଅର୍ଥ ହେଉଛି 'ସମାଜବାଦ' ଏବଂ କମ୍ୟୁନିଜମ୍‌ର ଅର୍ଥ ହେଲା ସାମ୍ୟବାଦ । ମାତ୍ର ଆମେ ସେତେବେଳେ ଏହି ଦୁଇ ଶବ୍ଦରେ କୌଣସି ପ୍ରଭେଦ ଦେଖୁନଥିଲୁ । ଉତ୍କଳ କଂଗ୍ରେସ ସୋସଲିଷ୍ଟ କର୍ମୀସଂଘର 'ଉଦ୍ଦେଶ୍ୟ ଓ ପନ୍ଥା' ନିମ୍ନପ୍ରକାର ବୋଲି ସଂଘର ନିୟମାବଳୀରେ ଲିପିବଦ୍ଧ କରାଯାଇଥିଲା :—

> "ଭାରତରେ ଏକ ମୁକ୍ତ ସାମ୍ୟବାଦୀ ସାଧାରଣତନ୍ତ୍ର ପ୍ରତିଷ୍ଠା ନିମନ୍ତେ ଫଳପ୍ରଦଭାବରେ କାର୍ଯ୍ୟ କରିବା ପାର୍ଟିର ଉଦ୍ଦେଶ୍ୟ । ଏହାର ପ୍ରାପ୍ତି ନିମନ୍ତେ ପାର୍ଟି ସକଳ ପ୍ରକାର ନ୍ୟାୟସଂଗତ ପନ୍ଥା ଅନୁସରଣ କରିବ । ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଓ ବ୍ୟବହୃତ ନିଷ୍କ୍ରିୟାତ୍ମକ ଅହିଂସା ଓ ପ୍ରେମନୀତି ଅନୁସାରେ ଏହା ପରିଚାଳିତ ହେବ ।"

ସୋଭିଏଟ ରୁଷର ନାମ ହେଉଛି "ଇଉନିୟନ୍ ଅଫ ସୋଭିଏଟ୍ ସୋସଲିଷ୍ଟ ରିପବ୍ଲିକ୍ ।" ଆମର ସୋସଲିଷ୍ଟ ରିପବ୍ଲିକ୍‌ର ପରିକଳ୍ପନା ମୋଟାମୋଟି ସେଇଆ ଥିଲା । ଆମେ ଗାନ୍ଧିଜୀଙ୍କୁ ପ୍ରତ୍ୟକ୍ଷ ପ୍ରତ୍ୟାଖ୍ୟାନ ନକରି କେବଳ ଅହିଂସାର ନିଷ୍କ୍ରିୟାତ୍ମକ ରୂପକୁ ସ୍ୱୀକାର କଲୁ । ତେଣୁ ସାମ୍ୟବାଦ ଓ ସମାଜବାଦ ଏକ କଥା ବୋଲି ସେତେବେଳେ ଧରିନେଇଥିଲୁ । ତାହା ଛଡ଼ା ଆମ ଓଡ଼ିଶାରେ ଏବଂ ପରେ ସାରା ଭାରତରେ ଯେଉଁ କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠିତ ହେଲା, ତାହା ମାର୍କସୀୟ ନୀତି ଅନୁସାରେ ପରିଚାଳିତ ବୋଲି ପରିଷ୍କାର ଘୋଷଣା କଲା । କଂଗ୍ରେସରୁ ପରେ ପୃଥକ୍ ହୋଇ ସ୍ୱତନ୍ତ୍ରଭାବରେ ଭାରତରେ ସୋସଲିଷ୍ଟ ପାର୍ଟି ଗଠିତ ହୋଇ ସମାଜବାଦୀ ଦଳ ଭାବରେ ପରିଚିତ ହେଲା । ମାତ୍ର ବହୁ ବର୍ଷ ପର୍ଯ୍ୟନ୍ତ ଓଡ଼ିଶାରେ ଏହା ସାମ୍ୟବାଦୀ ଦଳ ଭାବରେ ଜଣାହେଲା ଏବଂ ଓଡ଼ିଆରେ ଆମେ କାଗଜ-ପତ୍ରରେ "ସାମ୍ୟବାଦୀ ଦଳ" ବୋଲି ଲେଖୁଥିଲୁ । ପରେ ନାନା ଭ୍ରମଧାରଣା ବାହାରେ ସୃଷ୍ଟି ହେବାରୁ "ସାମ୍ୟବାଦ" ଶବ୍ଦଟିକୁ ବଦଳାଇ କେବଳ ସୋସଲିଷ୍ଟ ବା ସମାଜବାଦୀ ବୋଲି ଲେଖିବାକୁ ଆରମ୍ଭ କଲୁ ।

## ଆମେରିକାରେ ଦେଖି

ସୋସଲିଜମ୍ ଓ କମ୍ୟୁନିଜମ ଭିତରେ ଆମେ ଯେଉଁଭଳି କିଛି ପାର୍ଥକ୍ୟ ସେତେବେଳେ ଉପଲବ୍ଧି କରି ପାରୁ ନଥିଲୁ । ବହୁ ବର୍ଷ ପରେ ୧୯୬୩ ମସିହାରେ ମୁଁ ଆମେରିକାରେ

ବି ଦେଖିଲି ଅତି ଶିକ୍ଷିତ ଏବଂ ଧନକୁବେରଙ୍କ ମଧ୍ୟରେ ବି ସେମିତି ବା ତତୋଧିକ ଅଜ୍ଞତା ରହିଅଛି । ସୋସିଆଲିଜମ୍ ନାମ ତାଙ୍କ ପ୍ରାଣରେ ଆତଙ୍କ ଓ ଭୟ ସଞ୍ଚାର କରେ । ମୁଁ ଏକ ପାର୍ଲିମେଣ୍ଟାରୀ ଡେଲିଗେସନ୍‌ରେ ଆମେରିକା ଯାଇଥାଏ । ଆମେରିକାର 'ଚାମ୍ବର ଅଫ୍ କମର୍ସ' ତରଫରୁ ଆମମାନଙ୍କୁ ନିଉୟର୍କର 'ଓ୍ୱାଲ୍‌ଡର୍ଫ ଅଷ୍ଟୋରିଆ' ହୋଟେଲରେ ଏକ ରାତ୍ରିଭୋଜି ଦିଆଯାଉଥାଏ । ଆମେରିକାର ସବୁ ବଡ଼ ବଡ଼ ଧନୀ ଉପସ୍ଥିତ ଥାଆନ୍ତି । ଆମ ଡେଲିଗେସନ୍‌ର ନେତା ଲୋକସଭା ସ୍ପିକର ସର୍ଦ୍ଦାର ହୁକୁମ୍ ସିଂ ଡେଲିଗେସନ୍‌ର ମେମ୍ବରମାନଙ୍କୁ ପରିଚିତ କରାଇଦେଲେ । ସେ ଯେତେବେଳେ "ଦ୍ୱିବେଦୀ ଭାରତର ପାର୍ଲିମେଣ୍ଟରେ ସୋସିଆଲିଷ୍ଟ ବିରୋଧୀ ଦଳର ନେତା" ବୋଲି କହିଲେ, ସାରା ଗୃହଟିରେ ଯେମିତି କିଛି ବଜ୍ରପାତ ହୋଇଗଲା ! ଧନପତି କୁବେରମାନେ ନାସିକା କୁଞ୍ଚନ କଲେ ଏବଂ 'ହିସ୍ ହିସ୍' କରିବାକୁ ଲାଗିଲେ । ସର୍ଦ୍ଦାର ହୁକୁମ୍ ସିଂହ ବଡ଼ ରସିକ ଲୋକ । ସେ ନକେ କିଛି କହି ସାରିବା ପରେ ରହସ୍ୟ ଦେଖିବା ନିମନ୍ତେ ମତେ ଡାକଦେଲେ ଭାଷଣ ଦେବାଲାଗି । ଆମେରିକାରେ ଥିବା ଭାରତୀୟ ରାଷ୍ଟ୍ରଦୂତ ବି. କେ. ନେହରୁ ଆମକୁ ଆଗରୁ ଏସବୁ ବିଷୟରେ ସୂଚନା ଦେଇଥିଲେ । ମୁଁ ପ୍ରଥମେ ଉଠି ଯେମିତି "କମ୍ରେଡ୍‌ଗଣ" ବୋଲି ସମ୍ବୋଧନ କଲି, ଏକ ଅତି ଗୁରୁତ୍ୱପୂର୍ଣ୍ଣ ପରିସ୍ଥିତି ସୃଷ୍ଟି ହୋଇଗଲା । ଉପସ୍ଥିତ କୁବେରମାନେ ଫିଡ଼ିକିଲେ ଓ ଆମ ବନ୍ଧୁମାନେ ଆତଙ୍କ ଗଣିଲେ—ମୁଁ ବୋଧହୁଏ କିଛି ଅଶୋଭନୀୟ କାଣ୍ଡ କରି ବସିବି । ସେମାନଙ୍କ ମନରେ ଆହୁରି ଆଶଙ୍କା ଜାତ ହେଲା ଯେ ଏହା ଫଳରେ ଆମେରିକା ସରକାର ମତେ ଅବାଞ୍ଛନୀୟ ବ୍ୟକ୍ତି 'Persona-non-grata' ଘୋଷଣା କରି ଫେରିଯିବାକୁ କହିଦେଇ ପାରେ । ମୁଁ ରହସ୍ୟ ଦେଖିବା ଲାଗି ହିଁ ଏମିତି ସମ୍ବୋଧନ କରିଥିଲି । ମୋର ଭାଷଣରେ ବୁଝାଇଲି ଯେ—'କମ୍ରେଡ୍' ଅର୍ଥ ସାଥୀ । ଆମେ ସମସ୍ତେ ଏକାଭଳି ଆସନରେ ବସିଛେ, ଏକା ଢଙ୍ଗରେ ଖାଦ୍ୟ ଖାଇବା, ଆମ ଭିତରେ ବଡ଼ ସାନ ବିଚାର ନାହିଁ । ପ୍ରଚୁର ଖାଦ୍ୟ ସାମନାରେ ରହିଛି । ଆମର ଯେତିକି ଆବଶ୍ୟକ ସେତିକି ସ୍ୱାଧୀନ ଭାବରେ ବାଣ୍ଟିକୁଣ୍ଟି ଖାଇବା—କେହି କାହାରିକି ବାଧ କରୁନାହିଁ କିମ୍ବା କେହି କାହାରିକି ଜବରଦସ୍ତି କରିବ ନାହିଁ । ଏହାହିଁ ସମାଜବାଦର ସ୍ୱରୂପ ଏବଂ ଆମେ ଭାରତବର୍ଷରେ ଏମିତିକା ସୁଖୀ ଓ ଶୋଷଣହୀନ ସମାଜ ଗଠନ କରିବାକୁ ଚାହୁଁ— ପାର୍ଲିମେଣ୍ଟ ପଦ୍ଧତି ଅନୁସାରେ—ହିଂସାରେ ନୁହେଁ । ମୋ ଭାଷଣ ଶୁଣିଲା ପରେ ସେମାନଙ୍କ ମନରେ ଭରସା ଆସିଲା ଏବଂ ଭାରତୀୟ ସୋସିଆଲିଜମ୍ ଓ ରୁଷିଆର କମ୍ୟୁନିଜମ୍ ଏକା କଥା ନୁହେଁ ବୋଲି ବୁଝିପାରିଲେ । ଆମର ବନ୍ଧୁମାନଙ୍କର ମନର ଆଶଙ୍କା ବି ଦୂରୀଭୂତ ହେଲା ।

ପ୍ରାଥମିକ ଅବସ୍ଥାରେ ଏହିଭଳି ଅଜବ ଧାରଣାସବୁ ଅନେକଙ୍କର ଥିଲା । ଓଡ଼ିଶାରେ ଏବଂ ଅନ୍ୟତ୍ର ଆମ ବିରୁଦ୍ଧରେ କେତେକ କଂଗ୍ରେସ ନେତା ପ୍ରଚାର କଲାବେଳେ କହୁଥିଲେ, "ସୋସିଆଲିଷ୍ଟ ସବୁ ଧନ ସମ୍ପଦ ଏକାଠି କରିନେବେ । କାହାର ପାଖରେ କିଛି ରହିବ ନାହିଁ ।

ଏକ ସ୍ଥାନରେ ଯୋଗେଇ ଦେବ । ଏକ ମାପର ଉଙ୍କା କରାଯାଇ ପେଟ ପୂରୁ ବା ନ ପୂରୁ ସମସ୍ତଙ୍କୁ ସମାନ ଭାବରେ ଖାଇବାକୁ ଦିଆଯିବ । ଏପରିକି ସ୍ତ୍ରୀଲୋକମାନଙ୍କୁ ମଧ୍ୟ ଜାତୀୟ-କରଣ କରାଯିବ । ସମସ୍ତେ ସମାଜର ସମ୍ପତ୍ତି ହେବେ ।" ଏହା ଯେ କେବଳ ପ୍ରଚାରର ଉଦ୍ଦେଶ୍ୟରେ କରାଯାଉଥିଲା ତାହା ନୁହେଁ—କେତେକ କଂଗ୍ରେସର ମୁଖ୍ୟ ଲୋକଙ୍କ ଭିତରେ ମଧ୍ୟ ଏଭଳି ଅଜ୍ଞତା ଥିଲା ଏବଂ ଏହା ସତ୍ୟ ବୋଲି ସେମାନେ ବିଶ୍ୱାସ କରୁଥିଲେ । ଏଭଳି ପରିସ୍ଥିତି ଭିତରେ ସୋସଲିଷ୍ଟ ହୋଇ କାର୍ଯ୍ୟ କରିବା କିଭଳି କଷ୍ଟସାଧ୍ୟ ଥିଲା, ତାହା କିଞ୍ଚିତ୍ ପରିମାଣରେ ଅନୁମାନ କରିହେବ ।

'ସାରଥି' ପ୍ରକାଶ ପାଇବା ହେତୁ ସୋସିଆଲିଜମ୍ ବିଷୟରେ ରାଜନୀତିକ ମହଲରେ ଆଲୋଚନା ଚାଲିଲା ଏବଂ କେତେକ ଯୁବକ ଗ୍ରୁପ ଏଥିପ୍ରତି କ୍ରମେ ଟାଣି ହୋଇ ଆସିଲେ । ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀସଂଘର ବି ପ୍ରସାର ହେଲା । ବିଧିବଦ୍ଧ ଏକ ପ୍ରାଦେଶିକ ସମ୍ମିଳନୀ କରାଯାଇ ତହିଁରେ ନିମ୍ନଲିଖିତ କର୍ମକର୍ତ୍ତା ରହିଲେ—ନବକୃଷ୍ଣ ଚୌଧୁରୀ—ସାଧାରଣ ସମ୍ପାଦକ, ମାଲତୀ ଚୌଧୁରୀ—କୋଷାଧ୍ୟକ୍ଷ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଦିବାକର ପଟ୍ଟନାୟକ, ଗୌରୀଶଙ୍କର ସାମନ୍ତ, ଡାକ୍ତର ନୃପେନ୍ଦ୍ର ନାରାୟଣ ସେନ୍, ଗୌରଚନ୍ଦ୍ର ଦାସ, ପ୍ରାଣନାଥ ପଟ୍ଟନାୟକ ଓ ରାଧାକୃଷ୍ଣ ସ୍ୱାଇଁ । ପାର୍ଟିର ଏକ ନିୟମାବଳୀ ବି ଗୃହୀତ ହେଲା ।

ବିଭିନ୍ନ ପ୍ରଦେଶରେ ବି ଏହିକବେଳେ ସୋସଲିଷ୍ଟ ପାର୍ଟି ଗଠନର ଚର୍ଚ୍ଚା ଚାଲିଥାଏ । ବମ୍ବେ (ବର୍ତ୍ତମାନ ମହାରାଷ୍ଟ୍ର) ପ୍ରଦେଶର ନାସିକ ଜେଲରେ ଜୟପ୍ରକାଶ ନାରାୟଣ, ମିନୁ ମସାନୀ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ଅଶୋକ ମେହେଟା ଆଦି ବନ୍ଦୀ ଥିଲେ । ୧୯୩୩ ଜାନୁୟାରୀରେ ପ୍ରାୟ ବର୍ଷେ କାଳ ସେମାନେ ଏକାଠି ରହିଥିଲେ । ଜୟପ୍ରକାଶ ନାରାୟଣ ଆମେରିକାରେ ୭ବର୍ଷ ରହିବା ପରେ ଫେରିଥିଲେ । ସେଠାରୁ ସେ ମଧ୍ୟପନ୍ଥୀ କମ୍ୟୁନିଷ୍ଟ ପାଲଟି ଆସିଥିଲେ । ମାତ୍ର ଜାତୀୟ ସଂଗ୍ରାମରେ କମ୍ୟୁନିଷ୍ଟ ପାର୍ଟିର ଅସହଯୋଗକୁ ସେ ପସନ୍ଦ କରିନଥିଲେ ଏବଂ ଗାନ୍ଧିଜୀଙ୍କ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନକୁ ଅଧିକ ଶକ୍ତିଶାଳୀ କରିବାର ପକ୍ଷପାତୀ ଥିଲେ । ସେମାନେ ନିଜ ଭିତରେ ଆଲୋଚନା ପରେ ବାହାରକୁ ଆସି କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠନ କରିବାର ସିଦ୍ଧାନ୍ତ ନେଲେ ।

## ନବବାବୁ ଓ ଜବାହାରଲାଲଙ୍କ ପତ୍ରାଳାପ

ପଣ୍ଡିତ ଜବାହାରଲାଲ ନେହରୁଙ୍କ 'ଭାରତର ଗତି କେଉଁଆଡେ' ଲେଖା ମଧ୍ୟ କଂଗ୍ରେସ କର୍ମୀଙ୍କ ଉପରେ ପ୍ରଭାବ ପକାଇଥିଲା । ତାହା ପ୍ରକାଶିତ ହେବା ଆଗରୁ ୧୯୩୩ ମସିହା ସେପ୍ଟେମ୍ବର ୮ ତାରିଖରେ ନବବାବୁ ଜବାହାରଲାଲଙ୍କ ନିକଟକୁ ଏ ସମ୍ପର୍କରେ ଏକ ପତ୍ର ଲେଖିଲେ ଏବଂ ସ୍ୱାଧୀନତା ସଂଗ୍ରାମକୁ ଜନସାଧାରଣଙ୍କ ଭିତରକୁ ଟାଣି ନେବାକୁ ହେଲେ

ଦେଶର ବିଭିନ୍ନ ସ୍ଥଳରେ "ସୁଦୃଢ଼ ଗୁପ୍ତ ସଂଗଠନ" ଗଠିତ ହେବାର ଆବଶ୍ୟକତା ରହିଛି ବୋଲି ଅକ୍ଟୋବର ୯ ତାରିଖରେ ଆଉ ଏକ ପତ୍ର ଲେଖିଲେ ।

ଜବାହାରଲାଲଜୀ ୧୯୩୩ ଅକ୍ଟୋବର ୧୫ ତାରିଖରେ ତାଙ୍କୁ ଏକ ପତ୍ରରେ ଲେଖିଲେ —"ଆପଣ ଯେଉଁସବୁ ବିଷୟ ଲେଖିଛନ୍ତି, ସେଥିରୁ ବହୁ କଥାରେ ମୁଁ ଆପଣଙ୍କ ସହ ସମ୍ପୂର୍ଣ୍ଣ ଏକମତ । କିନ୍ତୁ କାର୍ଯ୍ୟ ଆଗେଇନେବା ନିମନ୍ତେ ଯେଉଁ ଗୁପ୍ତ ସଂଗଠନ ସ୍ଥାପନା ବିଷୟ ଆପଣ ଲେଖିଛନ୍ତି, ସେଥିରେ ମୁଁ ଏକମତ ହୋଇପାରୁ ନାହିଁ । କେତେକ ବିଶେଷ ପରିସ୍ଥିତିରେ ଗୁପ୍ତ ସଂଗଠନର ଆବଶ୍ୟକତା ରହିଛି ଏବଂ ଏହା ଖୁବ୍ ଫଳପ୍ରଦ ହୋଇପାରେ । ମୋର ଏଥିଲାଗି ନୈତିକ ଦୃଷ୍ଟିରୁ କୌଣସି ଆପତ୍ତି ନାହିଁ; କିନ୍ତୁ ବର୍ତ୍ତମାନ ପରିସ୍ଥିତିରେ ଗୁପ୍ତ ଉପାୟ ଆଦୌ ସାହାଯ୍ୟ କରିବ ବୋଲି ମୁଁ ଭାବୁନାହିଁ ।" × × × × ଆହୁରି ଲେଖିଥିଲେ, "ଯେଉଁ କଂଗ୍ରେସ କର୍ମୀମାନେ ଏକ ଦୀର୍ଘ ସଂଗ୍ରାମ ଲାଗି ପ୍ରସ୍ତୁତ, ସେମାନଙ୍କର ଗୋଷ୍ଠୀ ସଂଗଠନ ହେବାର ଆବଶ୍ୟକତା ରହିଛି ବୋଲି ମୁଁ ଆପଣଙ୍କ ସହ ଏକମତ । ଜାତୀୟ ସଂଗ୍ରାମକୁ ଗୁରୁ ରଖିବାକୁ ପଡ଼ିବ ଏବଂ ଏହାକୁ ଜନ-ସାଧାରଣଙ୍କ ଭିତରେ ଏକ ସାମାଜିକ ଓ ଅର୍ଥନୀତିକ ସଂଗ୍ରାମ ରୂପେ ଆମକୁ ପରିଣତ କରିବାକୁ ପଡ଼ିବ ।"

## ଆମର ଅଗ୍ରଗତି

ଏ ଭିତରେ ଅବଶ୍ୟ ନବବାବୁ ନିର୍ଦ୍ଦିଷ୍ଟ ଭାବରେ ସୋସଲିଷ୍ଟ ଗ୍ରୁପ ଗଠନ କଥା ଉଲ୍ଲେଖ କରିନଥିଲେ । କିନ୍ତୁ ନାସିକ ଜେଲରୁ ଖଲାସ ହୋଇ ୧୯୩୩ ମସିହା ଡିସେମ୍ବର ୧୯ ତାରିଖରେ ମିନୁ ମସାନି ଏଲାହାବାଦରେ ଜବାହାରଲାଲଜୀଙ୍କ ସହ ଆଲୋଚନା କଲା ପରେ ଜବାହାରଲାଲ ଲେଖିଲେ, "ଦେଶରେ ଏବଂ କଂଗ୍ରେସ ଉପରେ ସମାଜବାଦୀ ଆଦର୍ଶର ପ୍ରଭାବ ପକାଇବା ଲାଗି କଂଗ୍ରେସ ଭିତରେ ସମାଜବାଦୀ ଗ୍ରୁପ୍ ଗଠନ ପ୍ରସ୍ତାବକୁ ମୁଁ ସ୍ୱାଗତ କରିବି ।" ଏ ଭିତି ପାଇ ବମ୍ବେରେ ୧୯୩୪ ଫେବୃୟାରୀ ୨୫ ତାରିଖରେ "ବମ୍ବେ ପ୍ରେସିଡେନ୍ସି କଂଗ୍ରେସ ସୋସଲିଷ୍ଟ ଗ୍ରୁପ୍" ଗଠିତ ହେଲା ଏବଂ ସେଥିରେ ପ୍ରଥମେ ପୁରୁଷୋତ୍ତମ ତ୍ରିକମ ଦାସ ଓ ମସାନି ଏବଂ ପରେ ପୁଣି ୟୁସୁଫ୍ ମହେରାଲୀ ଓ ମସାନି ଯୁଗ୍ମ ସମ୍ପାଦକ ଭାବରେ କାର୍ଯ୍ୟ ତୁଲାଇଲେ । କୌଣସି ସଭାପତି ନଥିଲେ । । ଏଥି ଭିତରେ ବିହାରରେ ଗଙ୍ଗା ଶରଣ ସିଂହ, ଫୁଲନ ପ୍ରସାଦ ବର୍ମା, ରାମବୃକ୍ଷ ବେନିପୁରୀ ଓ ଜୟପ୍ରକାଶ ନାରାୟଣ ଆଦି 'ବିହାର ସୋସଲିଷ୍ଟ ପାର୍ଟି' ଗଠନ କଲେ । ସେମାନେ ଏହାର ନାମକରଣରେ 'କଂଗ୍ରେସ' ନାମକୁ ବାଦ୍ ଦେଇଥିଲେ । ପଞ୍ଜାବ ଏବଂ ଏମିତି ଆଉ କେତେକ ସ୍ଥାନରେ ମଧ୍ୟ ସୋସଲିଷ୍ଟ ଗ୍ରୁପ ସବୁ ଗଠିତ ହୋଇଥିଲା । ଓଡ଼ିଶାରେ ଆମେ ଏ ସବୁ କଥା କିଛି ଜାଣି ନଥିଲୁ ଏବଂ

ଫେବୃୟାରୀ ୧୯୩୩ ମସିହାଠାରୁ ଆମର କର୍ମୀସଂଘ ସନ୍ନିୟମଭାବରେ କାର୍ଯ୍ୟ ଆରମ୍ଭ କରିଥିଲା । ଆମର ଏ କାର୍ଯ୍ୟକୁ ଗାନ୍ଧିବାଦୀ କଂଗ୍ରେସ ଲୋକେ ପସନ୍ଦ କରୁନଥିଲେ—ବିଶେଷଭାବରେ କୃଷକସଂଘ, ଶ୍ରମିକ ସଂଗଠନ ଏବଂ ଶ୍ରେଣୀ ସଂଗ୍ରାମର ପ୍ରଚାର ଗାନ୍ଧିଜୀଙ୍କ ମତର ବିରୋଧୀ ଓ ହିଂସାମୂଳକ କାର୍ଯ୍ୟ ବୋଲି ସେମାନେ ବିଶ୍ୱାସ କରୁଥିଲେ । ଏଥିରେ ବିସ୍ମିତ ହେବାର କିଛି ନଥିଲା—କାରଣ ଆମେ ମାର୍କସଙ୍କ ପ୍ରଦର୍ଶିତ ସାମ୍ୟବାଦରେ ବିଶ୍ୱାସ କରୁଥିଲୁ ଏବଂ ଗାନ୍ଧିଜୀଙ୍କ ଅହିଂସା ଯଥେଷ୍ଟ ନୁହେଁ—ଆବଶ୍ୟକ ପଡ଼ିଲେ ହିଂସା ପ୍ରୟୋଗ ନିମନ୍ତେ ଦ୍ୱିଧା କରିବୁ ନାହିଁ ବୋଲି ଅନୁଭବ କରିଥିଲୁ । ପରେ ନିଖିଳ ଭାରତ କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠିତ ହେବା ପରେ ଏହାକୁ ଆହୁରି ସ୍ପଷ୍ଟ କରିଦିଆଯାଇଥିଲା । କଂଗ୍ରେସ ସୋସଲିଷ୍ଟ ପାର୍ଟିର ସ୍ୱରୂପ ବିଷୟରେ ସନ୍ଦେହ ଦୂର କରିବା ନିମନ୍ତେ ଘୋଷଣା କରାଗଲା ଯେ ଏହା ଏକ ମାର୍କସିଷ୍ଟ ପାର୍ଟି । ୧୯୩୬ ମସିହା ମାର୍ଚ୍ଚ ୨୦ ତାରିଖରେ ଏ ସଂକ୍ରାନ୍ତ ଏକ ପ୍ରସ୍ତାବରେ ଉଲ୍ଲେଖ କରାଯାଇଥିଲା, "ପାର୍ଟିର କାର୍ଯ୍ୟକ୍ରମ ମାର୍କସ୍ ପନ୍ଥାର ଅନୁକୂଳ ହେବ । ତାହା ନ ହେଲେ ପାର୍ଟି ତାର କର୍ତ୍ତବ୍ୟ ଓ ନେତୃତ୍ୱ ନେବାଲାଗି ଅସମର୍ଥ ହେବ । କେବଳ ମାର୍କସ୍‌ବାଦଦ୍ୱାରା ହିଁ ସାମ୍ରାଜ୍ୟବାଦ ବିରୋଧୀ ଶକ୍ତି ଗୁଡ଼ିକ ନିଜର ଅଭୀଷ୍ଟ ସାଧନରେ ସମର୍ଥ ହେବେ । ତେଣୁ ପାର୍ଟି ସଭ୍ୟମାନଙ୍କ ବିପ୍ଳବର କୌଶଳ, ଶ୍ରେଣୀସଂଘର୍ଷର ତତ୍ତ୍ୱ ଓ ବ୍ୟବହାର ସମ୍ବନ୍ଧରେ ପୂର୍ଣ୍ଣ ଜ୍ଞାନ ଅର୍ଜନ କରିବାକୁ ପଡ଼ିବ । ରାଷ୍ଟ୍ର କି ଧରଣର ହେବା ଉଚିତ ଏବଂ କିଭଳି ପଦ୍ଧତିରେ ସମାଜବାଦୀ ସମାଜ ଆଡ଼କୁ ଗତି କରାଯିବ, ତାହା ମଧ୍ୟ ଜାଣିବା ଆବଶ୍ୟକ ।" (**Bliss was it in that Dawn, Masani.**

ଏସବୁ ପରବର୍ତ୍ତୀ ଘଟଣା । ମାତ୍ର ଏ ଯେଉଁସବୁ ଚିନ୍ତା କଂଗ୍ରେସ କର୍ମୀଙ୍କ ମନରେ ପ୍ରବେଶ କରିଥିଲା, ତାହାର ଫଳ ସ୍ୱରୂପ ଏହାକୁ ସାଂଗଠନିକ ରୂପ ଦେବା ନିମନ୍ତେ ପାଟନାଠାରେ ସୋସଲିଷ୍ଟ କଂଗ୍ରେସ ବ୍ୟକ୍ତିମାନଙ୍କର ଏକ ସମ୍ମିଳନୀ ୧୯୩୪ ମସିହା ମଇ ମାସ ୧୭ ତାରିଖରେ ବସିଲା । ସେଥିରେ ପ୍ରଫେସର୍ ଅବଦୁଲ ବାରି ଅଭ୍ୟର୍ଥନା ସମିତିର ସଭାପତି ହୋଇଥିଲେ ଏବଂ ଆଚାର୍ଯ୍ୟ ନରେନ୍ଦ୍ର ଦେବ ସମ୍ମିଳନୀର ସଭାପତି ହେଲେ । ସେଥିରେ ଏକ ନିଖିଳ ଭାରତ କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠନ ନିମନ୍ତେ ସିଦ୍ଧାନ୍ତ ଗ୍ରହଣ କରାଗଲା ଏବଂ ଏକ ସାଂଗଠନିକ କମିଟି ଗଠିତ ହୋଇ ଜୟପ୍ରକାଶ ନାରାୟଣଙ୍କୁ ଏହାର ସଂପାଦକ ରୂପେ ନିଯୁକ୍ତ କରାଗଲା । ନିଖିଳ ଭାରତ କଂଗ୍ରେସ କମିଟି ବୈଠକର ଠିକ୍ ପୂର୍ବରୁ ଏଭଳି ସମ୍ମିଳନୀ ହୋଇଥିଲା । ସେତେବେଳକୁ ଆସନ୍ତା କେନ୍ଦ୍ର ଆସେମ୍ବ୍ଲି ନିର୍ବାଚନରେ ଭାଗ ନେବା ନିମନ୍ତେ କଂଗ୍ରେସ କାର୍ଯ୍ୟକାରୀ କମିଟି ସ୍ଥିର କରିଥିଲା । ବ୍ରିଟିଶ୍ ସରକାର ସହ ପ୍ରତ୍ୟକ୍ଷ ସଂଗ୍ରାମ ଚାଲିଥିଲାବେଳେ ଏହା ବାଞ୍ଛନୀୟ ନୁହେଁ ବୋଲି କଂଗ୍ରେସ ସୋସଲିଷ୍ଟ ପାର୍ଟି ଏହାର ବିରୋଧ କଲା । ଏଇଥିଯୋଗୁଁ ଶ୍ରୀ ଶ୍ରୀପ୍ରକାଶ ଓ ଅଧ୍ୟାପକ ଏନ୍. ଜି. ରଙ୍ଗା ପ୍ରଭୃତି କଂଗ୍ରେସ ସୋସଲିଷ୍ଟ ପାର୍ଟିରୁ ଇସ୍ତଫା ଦେଲେ ।

ଯାହାହେଉ ପାର୍ଟି ଗଠିତ ହୋଇ ତାର ଏକ ଧାରାବାହିକ ସଙ୍ଗଠନ ଆରମ୍ଭ ହୋଇଗଲା । ଓଡ଼ିଶାରୁ ଆମେ କେହି ଏଥିରେ ଯୋଗ ଦେଇ ନ ଥିଲୁ କିମ୍ବା ଆମ ସହ ସେମାନଙ୍କର କିଛି ସମ୍ପର୍କ ସ୍ଥାପିତ ହୋଇ ନ ଥିଲା । ୧୯୩୪ ମେ ମାସ ୧୯ ତାରିଖରେ ନିଖିଳ ଭାରତ କଂଗ୍ରେସ ବୈଠକରୁ ଫେରି ଗାନ୍ଧିଜୀ ପୁଣି ଓଡ଼ିଶାରେ ତାଙ୍କର ହରିଜନ ପଦଯାତ୍ରା ଆରମ୍ଭ କଲେ ଏବଂ ତାଙ୍କୁ ଭେଟିବାଲାଗି ମିନୁ ମସାନୀ ଆସି ୧୦ ଦିନ ତାଙ୍କ ପଦଯାତ୍ରା ଦଳରେ ରହି ଗାନ୍ଧିଜୀଙ୍କ ସହ ସୋସଲିଜମ୍ ଓ କଂଗ୍ରେସ ସୋସଲିଷ୍ଟ ପାର୍ଟିର ପ୍ରସ୍ତାବ ଓ କାର୍ଯ୍ୟକ୍ରମ ବିଷୟରେ ଆଲୋଚନା କଲେ । ଏହିଭିତରେ ଆମର ଏଠି କିଛି ସମାଜବାଦୀ କାର୍ଯ୍ୟ ହେଉଛି ଜାଣି ସେ ନବବାବୁଙ୍କ ଘରକୁ ଆସି ଆମ କେତେଜଣଙ୍କୁ ଭେଟିଲେ । ଗାନ୍ଧିଜୀଙ୍କ ସହ ତାଙ୍କର ଯାହା ବିଚାର ଆଲୋଚନା ହୋଇଥିଲା ଏବଂ ନୂତନ ପାର୍ଟି ଗଠନ ସମ୍ବନ୍ଧରେ ଆମକୁ ସବୁ ଜଣାଇଲେ—ନିଖିଳ ଭାରତ ସୋସଲିଷ୍ଟ ପାର୍ଟିରେ ସାମିଲ ହେବାକୁ ଅନୁରୋଧ କଲେ । ମସାନୀ ଫେରିଗଲାପରେ ଜୟପ୍ରକାଶ ନାରାୟଣ ନବବାବୁଙ୍କ ପାଖକୁ ଏକ ପତ୍ର ଲେଖି ସେଥିରେ ଓଡ଼ିଶାରେ ପାର୍ଟି ଗଠନ ନିମନ୍ତେ ନବବାବୁଙ୍କୁ ଅନୁରୋଧ କଲେ ।

ଏ ଚିଠି ପାଇଲା ପରେ ଓଡ଼ିଶାରେ ଥିବା କଂଗ୍ରେସ ସାମ୍ୟବାଦୀ ସଂଘର ନାମ ପରିବର୍ତ୍ତନ କରାଗଲା ଏବଂ ବିଧିବଦ୍ଧ ନିଖିଳ ଭାରତ କଂଗ୍ରେସ ସୋସଲିଷ୍ଟ ପାର୍ଟିର ଶାଖାରୂପେ କାର୍ଯ୍ୟକଲା । ନବବାବୁଙ୍କ ଉପରେ ଆମର ପୂର୍ଣ୍ଣ ବିଶ୍ୱାସ ଥିଲା ଏବଂ ଆମେ ସବୁ ତାଙ୍କ କଥାରେ ଚାଲିଲୁ । କିନ୍ତୁ କର୍ମୀସଂଘର ରାଜନୀତିକ ଆଭିମୁଖ୍ୟ ପୂର୍ଣ୍ଣରୂପେ ପରିବର୍ତ୍ତିତ ହୋଇଗଲା । ଦେଶର ଚାରିଆଡ଼େ ବିପ୍ଳବୀ କର୍ମୀଗୋଷ୍ଠୀ ସୃଷ୍ଟି କରିବା ପରିବର୍ତ୍ତେ କଂଗ୍ରେସକୁ ଦଖଲ କରିବା ଏବଂ ଅନ୍ୟାନ୍ୟ ରାଜନୀତିକ କାର୍ଯ୍ୟରେ ଆମେ ଲିପ୍ତ ହୋଇଗଲୁ । କଂଗ୍ରେସ ଭିତରେ ନୀତିଗତ ବିରୋଧ ନ ହୋଇ ବ୍ୟକ୍ତିଙ୍କୁ କେନ୍ଦ୍ର କରି ଗୋଷ୍ଠୀ ସୃଷ୍ଟି ହୋଇଥାଏ; ଆମେ ସବୁ ହୁଏତ ଏକଡ଼ ସେକଡ଼ କାହାପଟ ହେବାକୁ ବାଧ୍ୟ । ଏପରି ନୂତନ ପନ୍ଥାରେ ମୁଁ ଅନ୍ତତଃ ଖୁବ୍ ଖୁସି ହୋଇ ନ ଥିଲି । ମୋର ବୟସ ସେତେବେଳକୁ ଖୁବ୍ କମ୍ । ନବବାବୁ ପ୍ରାଦେଶିକ କଂଗ୍ରେସ କମିଟିର ସମ୍ପାଦକ ହୋଇଯିବାରୁ ଅନେକ ଗୁରୁତର ସମସ୍ୟାରେ ସେ ନୀରବ ରହିଯାଉଥିଲେ ଏବଂ ଆମ ଚକ୍ଷୁରେ ଯେଉଁମାନେ ପ୍ରତିକ୍ରିୟାବାଦୀ ସେମାନେ ଏଥିରୁ ଫାଇଦା ଉଠାଉଥିଲେ । ବି. ଦାସ (ଭୁବନାନନ୍ଦ ଦାସ) ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇ ନ ଥିଲେ—କଂଗ୍ରେସ ଆହ୍ୱାନରେ ଆସେମ୍ବ୍ଲି ବୟକଟ ନ କରି ସ୍ୱାଧୀନ ସଭ୍ୟ ହୋଇ ରହିଥିଲେ । ପୁଣି ଆସନ୍ତା କେନ୍ଦ୍ର ଆସେମ୍ବ୍ଲି ନିର୍ବାଚନରେ ତାଙ୍କୁ ସମର୍ଥନ ଦିଆଯିବାରୁ ଆମେ କେତେଜଣ ଘୋର ବିରୋଧ କରିଥିଲୁ; ମାତ୍ର ନବବାବୁ ଆମର ନେତା ଥାଇ ସୁଦ୍ଧା କିଛି କହିଲେ ନାହିଁ କିମ୍ବା ଆମମାନଙ୍କୁ ସମଥନ ଦେଲେ ନାହିଁ । ଏଥିଲାଗି ମୁଁ ନବବାବୁଙ୍କୁ ଏକ କଡ଼ା ଚିଠି ଲେଖି ପ୍ରାଦେଶିକ କଂଗ୍ରେସ ସେକ୍ରେଟାରୀ ପଦରୁ ତାଙ୍କର ଇସ୍ତଫା ଦାବୀ କରିଥିଲି ।

## କର୍ମୀ ଗଠନ ଆମର ମୁଖ୍ୟ କାର୍ଯ୍ୟ

ଭାରତର ବିଭିନ୍ନ ପ୍ରଦେଶରେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ଶାଖା ଗଠିତ ହୋଇଯିବାରୁ ଅକ୍ଟୋବର ମାସରେ ଜାତୀୟ କଂଗ୍ରେସ ଅଧିବେଶନ ବେଳେ ବମ୍ବେଠାରେ ଏକ ନିଖିଳ ଭାରତ ସମ୍ମିଳନୀ କରାଯିବାର ସିଦ୍ଧାନ୍ତ ହୋଇଥିଲା । ଏହା ହେଲା ପ୍ରଥମ ପ୍ରତିନିଧିସ୍ଥାନୀୟ ନିଖିଳ ଭାରତ ସମ୍ମିଳନୀ । ଏଥିରେ ନବବାବୁ, ମାଳତୀ ଦେବୀ ଓ ପ୍ରାଣନାଥ ପଟ୍ଟନାୟକ ଯୋଗ ଦେଇଥିଲେ । ସେମାନଙ୍କ ବିଳମ୍ବରେ ମୁଁ ବି ଯାଇ ପହଞ୍ଚିଲି । ମୋ ପକ୍ଷରେ କଂଗ୍ରେସ ଅଧିବେଶନରେ ଏବଂ ଏଠାରେ ଯୋଗଦାନ ହେଉଛି ପ୍ରଥମ ।

କଂଗ୍ରେସ ସୋସଲିଷ୍ଟ ପାର୍ଟିର ଆବିର୍ଭାବ ଗାନ୍ଧିଜୀ ବା ଗାନ୍ଧୀବାଦ ପ୍ରତି ଏକ ଆହ୍ୱାନ କହିଲେ ଚଳେ । କଂଗ୍ରେସ ସୋସଲିଷ୍ଟ ପାର୍ଟି ଯେଉଁ ମାର୍କସ୍‌ବାଦକୁ ମୂଳଭିତ୍ତି ବୋଲି ଧରିଥିଲା, ଗାନ୍ଧିଜୀଙ୍କର ସତ୍ୟ ଓ ଅହିଂସା ସହିତ ତାହାର କୌଣସି ସମ୍ପର୍କ ନଥିଲା । ତଥାପି ପାର୍ଟି ଗଠନ ପୂର୍ବରୁ ଗାନ୍ଧିଜୀଙ୍କ ସହାନୁଭୂତି ପାଇବା ନିମନ୍ତେ ଉଦ୍ୟମ ହୋଇଥିଲା । କେବଳ ଗାନ୍ଧିଜୀଙ୍କ ପ୍ରଭାବ ଯୋଗୁ ନୁହେଁ, ଜୟପ୍ରକାଶ ନାରାୟଣ ଆଦିଙ୍କର ତାଙ୍କ ସହ ଦୃଢ଼ ବ୍ୟକ୍ତିଗତ ସମ୍ପର୍କ ରହିଥିଲା । ଜବାହରଲାଲଜୀଙ୍କ ପ୍ରତି ମଧ୍ୟ ସେହିଭଳି ଦୁର୍ବଳତା କେତେକ ନେତାଙ୍କର ରହିଥିଲା । ଜୟପ୍ରକାଶ ରାଜନୀତିରେ ଜବାହାରଲାଲ ନେହେରୁଙ୍କ ଘୋର ବିରୋଧୀ ହୋଇ ସୁଦ୍ଧା ତାଙ୍କୁ ବରାବର 'ଭାଇ' ବୋଲି ସମ୍ବୋଧନ କରୁଥିଲେ । ଆମେରିକାରୁ ଜୟପ୍ରକାଶ ଫେରିବା ପରେ ଜବାହାରଲାଲଜୀ ତାଙ୍କୁ ନିଖିଳ ଭାରତ କଂଗ୍ରେସ କମିଟିରେ କାର୍ଯ୍ୟ କରିବାର ସୁଯୋଗ ଦେଇଥିଲେ । ଗାନ୍ଧିଜୀଙ୍କ ମୃତ୍ୟୁ ପରେ ଏକ ରେଡ଼ିଓ ଭାଷଣରେ ଜବାହାରଲାଲ କହିଲେ ଯେ ଜୟପ୍ରକାଶ ଭବିଷ୍ୟତ ଭାରତର ଭାଗ୍ୟ ଗଢ଼ିବାରେ ପ୍ରଧାନ ଭାଗ ନେବେ । ସେମାନଙ୍କର ପରସ୍ପରପ୍ରତି ଏତେ ଆନ୍ତରିକତା ଥିଲା ଯେ ଜୟପ୍ରକାଶ ସୋସଲିଷ୍ଟ ପାର୍ଟି ଛାଡ଼ିଗଲା ପରେ ବି ତାଙ୍କର ସମାଲୋଚନାରେ ଜବାହାରଲାଲଜୀ ଅତ୍ୟନ୍ତ ବ୍ୟଥିତ ହୋଇ ପଡ଼ୁଥିଲେ । ମୋର ସ୍ମରଣ ହେଉଛି, ମୁଁ ୧୯୬୨ ମସିହା ଅକ୍ଟୋବର ୧୨ ତାରିଖରେ ପ୍ରଜା ସୋସଲିଷ୍ଟ ପାର୍ଟିର ନେତା ହିସାବରେ ଚୀନ ଆକ୍ରମଣର ପ୍ରତିରୋଧ ସମ୍ବନ୍ଧରେ ଦିଲ୍ଲୀ ସେକ୍ରେଟାରିଏଟର ପ୍ରଧାନମନ୍ତ୍ରୀଙ୍କ କୋଠରୀରେ ତାଙ୍କୁ ଭେଟିଥିଲି । ଆମର ପ୍ରସ୍ତୁତିରେ କେତେକ ତ୍ରୁଟି ଓ ଅସୁବିଧା କଥା ଦର୍ଶାଇ ଅତିଶୀଘ୍ର ତାର ମୁକାବିଲା କରାଯିବ ବୋଲି ସେ ପ୍ରତିଶ୍ରୁତି ଦେଇଥିଲେ । ବାସ୍ତବିକ ମୋର ତାଙ୍କ ସହ ପ୍ରାୟ ଦିନ ୧୧ଟା ବେଳେ ସାକ୍ଷାତ ଓ ଆଲୋଚନା ହୋଇଥିଲା ଏବଂ ସେହିଦିନ ସେ ଶ୍ରୀଲଙ୍କା ଯାତ୍ରା କରିଥିଲେ । ଶ୍ରୀଲଙ୍କା ଯିବା ପଥରେ ସେ ସାମ୍ବାଦିକମାନଙ୍କୁ କହିଥିଲେ ଯେ ଆମେ ଚୀନାମାନଙ୍କୁ ବାହାରକରିଦେବୁ—"**We shall throw out the Chinese.**" ମୋ ସହିତ ଏତେ ଗୁରୁତର ସମସ୍ୟାର ଆଲୋଚନା ଶେଷରେ ସେହି ଦିନୀ ପ୍ରଗୃତ ବିଷୟରେ ଜୟପ୍ରକାଶଙ୍କର ସମାଲୋଚନାରେ ଅତ୍ୟନ୍ତ ମର୍ମାହତ ହୋଇଛନ୍ତି ବୋଲି କହିଲେ । କିଛି

ଦିନ ପୂର୍ବରୁ କେନ୍ଦ୍ର ସରକାରଙ୍କ ଦ୍ୱନ୍ଦ୍ୱ ପ୍ରଚଳନ ନୀତିକୁ ସମାଲୋଚନା କରି ଜୟପ୍ରକାଶ ଏକ ବିବୃତି ଦେଇଥିଲେ । ଜବାହାରଲାଲ ସେଥିରେ ଖୁବ୍ କ୍ଷୁବ୍ଧ ହୋଇଥିଲେ । ମତେ କହିଲେ ଯେ, ଡକ୍ଟର ଲୋହିଆଙ୍କର ସମାଲୋଚନା ଅଲଗା କଥା, ମାତ୍ର ଜୟପ୍ରକାଶ କି ଏତିକିବେଳେ ଏଭଳି ସାଧାରଣ ସମାଲୋଚନା କରିବା ଠିକ୍ ହେଉଛି କି ? ମୋର ଜୟପ୍ରକାଶଜୀଙ୍କ ସହ ଘନିଷ୍ଠତା ଥିବା କଥା ତାଙ୍କୁ ଜଣାଥିବା ହେତୁ ତାଙ୍କ ମନ କଥା ଜୟପ୍ରକାଶଙ୍କ ଆଗରେ ରଖିବା ନିମନ୍ତେ ମତେ କହିଥିଲେ ଏବଂ ମୁଁ ତାହା ରକ୍ଷା କରିଥିଲି ।

## କଂଗ୍ରେସ, ସୋସଲିଷ୍ଟ, କମ୍ୟୁନିଷ୍ଟ—ତାରତମ୍ୟ

କଂଗ୍ରେସ, ସୋସଲିଷ୍ଟ ଓ କମ୍ୟୁନିଷ୍ଟଙ୍କ ଭିତରେ ପାର୍ଥକ୍ୟ ହେଉଛି ଦେଶର ସ୍ୱାଧୀନତାକୁ ସୋସଲିଷ୍ଟମାନେ ପ୍ରଥମ ଗୁରୁତ୍ୱ ଦେଉଥିଲେ । ତେଣୁ ଜାତୀୟ ନେତାମାନଙ୍କ ପ୍ରତି ସେମାନଙ୍କର ଶ୍ରଦ୍ଧା ଓ ଭକ୍ତି ରହିଥିଲା । ଜାତୀୟତାବାଦ ଓ ସମାଜବାଦ ପରସ୍ପରର ବିରୋଧୀ ଶକ୍ତି ନ ହୋଇ ଏକ ସଂଗ୍ରାମର ଦୁଇ ଦିଗ ବୋଲି କଂଗ୍ରେସ ସୋସଲିଷ୍ଟମାନେ ବିଶ୍ୱାସ କରୁଥିଲେ । ଜାତୀୟ ସଂଗ୍ରାମ ସହ ପୂର୍ଣ୍ଣ ସଂଯୋଗ ରଖିବା ନିମନ୍ତେ ହିଁ ପ୍ରତ୍ୟେକ ସୋସଲିଷ୍ଟକୁ କଂଗ୍ରେସର ପ୍ରାଥମିକ ସଭ୍ୟ ହେବାକୁ ପଡୁଥିଲା । କମ୍ୟୁନିଷ୍ଟମାନେ କଂଗ୍ରେସକୁ ଏକ ବୁର୍ଜୋୟା ସଂଗଠନ ରୂପେ ବିଶ୍ୱାସ କରୁଥିଲେ ଏବଂ ଜାତୀୟ ସଂଗ୍ରାମର ପ୍ରତ୍ୟକ୍ଷ ବିରୋଧ କରୁଥିଲେ । ଏହି କାରଣରୁହିଁ କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠନ ବେଳେ ହିଁ ଜାତୀୟତାବାଦୀ ନେତାମାନଙ୍କ ସହ ଭଲ ସଂପର୍କ ରଖିବାର ଉଦ୍ୟମ ହେଉଥିଲା । ବମ୍ବେରେ ପ୍ରଥମ ପାର୍ଟି ସମ୍ମିଳନୀ ଅକ୍ଟୋବର ମାସରେ ହୋଇଥିଲା । ୧୯୩୪ ମସିହା ଜୁନ ୧୪ ତାରିଖରେ ଗାନ୍ଧିଜୀ ମିନୁ ମସାନିଙ୍କୁ ଏକ ପତ୍ରରେ ଲେଖିଲେ— "କଂଗ୍ରେସ ଭିତରେ ସୋସଲିଷ୍ଟ ପାର୍ଟିର ଅଭ୍ୟୁଦୟକୁ ମୁଁ ସ୍ୱାଗତ କରୁଛି ।" ( Bliss was it in that Dawn ) ଗାନ୍ଧିଜୀ ଉଦାରମନା ଥିଲେ ଏବଂ ବିଭିନ୍ନ ମତାବଲମ୍ବୀ ସମସ୍ତଙ୍କୁ ଜାତୀୟ ସ୍ରୋତ ଭିତରେ ରଖିବାକୁ ଚାହୁଁଥିଲେ ବୋଲି ଏପରି ଲେଖିଲେ; ମାତ୍ର ଗାନ୍ଧୀମତାବଲମ୍ବୀ କଂଗ୍ରେସ ଲୋକେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ଜନ୍ମକାଳରୁହିଁ ଏଥିପ୍ରତି ସନ୍ଦେହ ଦୃଷ୍ଟି ରଖିଥିଲେ ।

ପାଟନା ଠାରେ ହୋଇଥିବା ସୋସଲିଷ୍ଟଙ୍କର ପ୍ରଥମ ସମ୍ମିଳନୀରେ ସଭାପତି ରୂପେ ଆଚାର୍ଯ୍ୟ ନରେନ୍ଦ୍ର ଦେବ ଜାତୀୟ ସଂଗ୍ରାମକୁ ଆହୁରି ମଜବୁତ କରିବାକୁ ହେଲେ ଶ୍ରେଣୀ ସଂଘର୍ଷ ଲଢ଼େଇ ଏବଂ ସଂଗଠନକୁ ଶକ୍ତିଶାଳୀ କରିବା ନିମନ୍ତେ ବିଭିନ୍ନ ଶ୍ରେଣୀର ସ୍ୱତନ୍ତ୍ର ସଂଗଠନର ଆବଶ୍ୟକତା ଉପରେ ଜୋର ଦେଇଥିଲେ । କଂଗ୍ରେସକୁ ସଂସ୍କାରବାଦ ଓ ବୈଧାନିକ ପନ୍ଥା ତ୍ୟାଗ କରି ଜନସଂଗ୍ରାମ ପଥରେ ନେବାକୁ ପଡ଼ିବ । ମାର୍କସଙ୍କ ପ୍ରଦର୍ଶିତ ବୈଜ୍ଞାନିକ ବିଶ୍ଳେଷଣରେ ସମାଜର ଚରିତ୍ର ବୁଝିବା ସହଜ ଏବଂ ସାମ୍ୟବାଦ ପ୍ରତି ନିଷ୍ଠା ଓ

ବିଶ୍ୱାସ ଥିଲେ କିଭଳି ଅସାଧ୍ୟ କାର୍ଯ୍ୟ ସାଧନ ହୋଇପାରେ, ତାହା ଲେନିନ୍ ଓ ରୁଷ ବିପ୍ଳବ ଦେଖାଇଦେଇଛି ବୋଲି କହୁଥିଲେ । ଜବାହାରଲାଲ ସେତେବେଳକୁ ଜେଲରୁ ମୁକ୍ତ ହୋଇନଥିଲେ । ନରେନ୍ଦ୍ର ଦେବ ଆଶା କରୁଥିଲେ ଯେ ଜବାହାରଲାଲ କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠନରେ ନିଶ୍ଚୟ ଆନନ୍ଦିତ ହେବେ ଏବଂ "ଆମେ ବେଶିଦିନ ତାଙ୍କର ମୂଲ୍ୟବାନ୍ ପରାମର୍ଶ, ନିର୍ଦ୍ଦେଶ ଓ ନେତୃତ୍ୱରୁ ବଞ୍ଚିତ ହେବା ନାହିଁ ।" କିନ୍ତୁ ଆଚାର୍ଯ୍ୟଙ୍କର ଏଭଳି ଇଚ୍ଛା କେବେହେଲେ ପୂରଣ ହୋଇପାରି ନଥିଲା । ପରବର୍ତ୍ତୀ ଘଟଣାବଳୀରୁ ସ୍ପଷ୍ଟ ପ୍ରମାଣିତ ଯେ, ଜବାହାରଲାଲ ସୋସଲିଷ୍ଟ ପାର୍ଟିରେ କେବେ ଯୋଗ ଦେଇ ନଥାନ୍ତେ; ବରଂ ସୋସଲିଷ୍ଟ ପାର୍ଟିକୁ ଦୁର୍ବଳ କରିବାକୁ ସେ ଉଦ୍ୟମ କରିଥିଲେ ।

କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠନ ସମ୍ବନ୍ଧରେ ଡକ୍ଟର ସମ୍ପୂର୍ଣ୍ଣାନନ୍ଦ ଯଥାର୍ଥରେ ଲେଖିଛନ୍ତି—"ପାର୍ଟି ଗଠନ ସମ୍ବନ୍ଧରେ ପଣ୍ଡିତ ଜବାହାରଲାଲ ଆଦୌ କିଛି କରିନାହାନ୍ତି କିମ୍ବା ସେଥିରେ ତାଙ୍କର କିଛି ଦାନ ନ ଥିଲା । ସେ ପରେ ଦୁ'ଥର ଏହାର ଫାଇଦା ଉଠାଇବାକୁ ଚେଷ୍ଟା କରିଥିଲେ; କିନ୍ତୁ ମୂଳତଃ ସେ ଏହାକୁ କୌତୁକ ଏବଂ ଘୃଣା ଚକ୍ଷୁରେହିଁ ଦେଖିଥିଲେ ।" ସମ୍ପୂର୍ଣ୍ଣାନନ୍ଦ ପ୍ରଥମ ସୋସଲିଷ୍ଟ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ ଏବଂ ମୋର ନିଜର ବହୁକାଳର ଅଭିଜ୍ଞତାରୁ ମୁଁ କହିବି ଯେ ତାଙ୍କ ଉକ୍ତି ବହୁପରିମାଣରେ ସତ୍ୟ । କେତେକ ସୋସଲିଷ୍ଟ ସାଥୀଙ୍କ ପ୍ରତି ଜବାହାରଲାଲଜୀଙ୍କର ଖୁବ୍ ଆଦର, ଶ୍ରଦ୍ଧା ଓ ଭକ୍ତି ଥିଲା, ମାତ୍ର ସଙ୍ଗଠିତ ସୋସଲିଷ୍ଟ ଆନ୍ଦୋଳନ ସହିତ ସେ ଆଦୌ ସଂଶ୍ଳିଷ୍ଟ ହେବାକୁ ଚାହୁଁ ନ ଥିଲେ ।

## କଂଗ୍ରେସ ସୋସଲିଷ୍ଟ ସଙ୍ଗଠନ

ଯାହାହେଉ ପାଟନାଠାରେ ସୋସଲିଷ୍ଟ ଭାବାପନ୍ନ କଂଗ୍ରେସ ଲୋକଙ୍କର ଏଭଳି ସମ୍ମିଳନୀ, କଂଗ୍ରେସର ବ୍ୟବସ୍ଥାପକ ସଭା ନିର୍ବାଚନ ପ୍ରତିଦ୍ୱନ୍ଦ୍ୱିତାର ବିରୋଧ ଏବଂ ମାର୍କସ୍‌ବାଦ ଓ ସୋସଲିଜମର ଆଲୋଚନା ଦେଶରେ ରାଜନୀତିକ ମହଲରେ ଚାଞ୍ଚଲ୍ୟ ସୃଷ୍ଟି କଲା । ଯୁବକମାନେ ବହୁଳ ଭାବରେ ଏହି ନୂତନ ଆନ୍ଦୋଳନ ପ୍ରତି ଆକୃଷ୍ଟ ହେଲେ । ଏହି ସମୟରେ ଜୟପ୍ରକାଶ ତାଙ୍କର 'ସମାଜବାଦ କାହିଁକି ?' (Why Socialism ?) ପୁସ୍ତିକାରେ ଗାନ୍ଧୀନୀତିର ତୀବ୍ର ସମାଲୋଚନା କରି ବୈଜ୍ଞାନିକ ସମାଜବାଦର ଆବଶ୍ୟକତା ବିଷୟରେ ଅତି ପ୍ରାଞ୍ଜଳ ଭାବରେ ନିଜର ବିଚାର ପ୍ରକଟନ କରିଥିଲେ । ସେତେବେଳେ ଏହାକୁ 'ସୋସଲିଜମ୍'ର ବାଇବେଲ ପରି ଯୁବସମାଜ ପଢ଼ିବାକୁ ଆରମ୍ଭ କଲେ । ସୋସଲିଷ୍ଟଙ୍କ ସଂଖ୍ୟା ମୁଷ୍ଟିମେୟ ଥିଲା । ସାରା ଭାରତରେ ଏହାର ସଙ୍ଗଠନ କିଛି ରୂପ ନେଇନଥିଲା । ତଥାପି ତାର କାର୍ଯ୍ୟକ୍ରମରେ ଗାନ୍ଧିଜୀଙ୍କର ବିରୋଧୀ କଂଗ୍ରେସ ନେତାଙ୍କ ଭିତରେ ଚହଳ ସୃଷ୍ଟି କଲା । ଅବଶେଷରେ ଗାନ୍ଧୀଜୀଙ୍କ ନେତୃତ୍ୱ ଉପରେ ଆଞ୍ଚ ଆସିବ ବୋଲି ସେମାନେ ଆଶଙ୍କା କଲେ । ଯୁବସମାଜର ମତିଗତି ତାଙ୍କ ମନରେ ଆତଙ୍କ ଜାତ କରାଇଲା ।

ତେଣୁ ଦେଶବାସୀଙ୍କ ଆଗରେ କଂଗ୍ରେସ ଏଭଳି ସୋସଲିଜମ୍ ପ୍ରତି ମତଗତ ସ୍ପଷ୍ଟ କରିଦେବାକୁ ସ୍ଥିର କଲା । ବମ୍ବେଠାରେ ପ୍ରଥମଥର ନିଖିଳ ଭାରତୀୟ ସୋସଲିଷ୍ଟ ସମ୍ମିଳନୀ ହେବା ଆଗରୁ ୧୯୩୪ ମସିହା ଜୁନ୍ ୧୭ ଓ ୧୮ ତାରିଖରେ ବମ୍ବେଠାରେ କଂଗ୍ରେସ କାର୍ଯ୍ୟକାରୀ ସମିତି ନିମ୍ନଲିଖିତ ପ୍ରସ୍ତାବ ପାସ୍ କଲେ—

"ବିଭିନ୍ନ ଚିନ୍ତାଧାରାସମ୍ପନ୍ନ ବ୍ୟକ୍ତିଙ୍କର କଂଗ୍ରେସ ଭିତରେ ଭିନ୍ନ ଗୋଷ୍ଠୀ ଗଠନକୁ କଂଗ୍ରେସ କାର୍ଯ୍ୟକାରୀ ସମିତି ସ୍ୱାଗତ ଜଣାଉଥିଲେ ସୁଦ୍ଧା ବ୍ୟକ୍ତିଗତ ସମ୍ପତ୍ତି ବାଜ୍ୟାପ୍ତୀକରଣ ଏବଂ ଶ୍ରେଣୀସଂଗ୍ରାମର ଆବଶ୍ୟକତା ରହିଛି ବୋଲି ଯେଉଁସବୁ ସହଜ ପ୍ରଚାର ଚାଲିଛି, ସେ ସମ୍ବନ୍ଧରେ କଂଗ୍ରେସ ଲୋକଙ୍କୁ ସ୍ମରଣ କରାଇ ଦିଆଯାଉଛି ଯେ କରାଚୀରେ କଂଗ୍ରେସ ଯେଉଁ ପ୍ରସ୍ତାବ ପାସ୍ କରିଥିଲା, ୧୯୩୧ ଅଗଷ୍ଟ ମାସରେ ବମ୍ବେଠାରେ ନିଖିଳ ଭାରତ କଂଗ୍ରେସ କମିଟିରେ ତାହାର ସ୍ପଷ୍ଟୀକରଣ କରାଯାଇଛି । ସେଥିରେ କେତେକ ନିର୍ଦ୍ଦିଷ୍ଟ ନୀତିର ଅବତାରଣା କରାଯାଇଛି । ଏଥିରେ ସମ୍ପତ୍ତି ବାଜ୍ୟାପ୍ତ କରିବା ଏବଂ ଶ୍ରେଣୀ ସଂଗ୍ରାମକୁ ସମର୍ଥନ କଥା ନାହିଁ । କାର୍ଯ୍ୟକାରୀ ସମିତିର ଆହୁରି ସ୍ପଷ୍ଟ ମତ ଯେ ସମ୍ପତ୍ତି ବାଜ୍ୟାପ୍ତୀକରଣ ଏବଂ ଶ୍ରେଣୀସଂଗ୍ରାମ କଂଗ୍ରେସର ଅହିଂସା ନୀତିର ସମ୍ପୂର୍ଣ୍ଣ ବିପରୀତ ।"

## କଂଗ୍ରେସଲୋକଙ୍କ ବିରୋଧ

୧୯୩୪ ଅକ୍ଟୋବର ୨୧ ଓ ୨୨ରେ ବମ୍ବେର ଓର୍ଲିଠାରେ 'ରେଡ଼ମନି ଟେରାସ' ଯାହାକୁ ଭୂତକୋଠି ବୋଲି କହୁଥିଲେ, ସେଠାରେ ପ୍ରଥମ ସର୍ବଭାରତୀୟ କଂଗ୍ରେସ ସୋସଲିଷ୍ଟ ପାର୍ଟିର ସମ୍ମିଳନୀ ବସିବା ପୂର୍ବରୁ ଛଅମାସ ଭିତରେ ସାରା ଦେଶରେ ରାଜନୀତିକ ମହଲରେ ସୋସଲିଜମ୍‌ର ବେଶ୍ ଆଲୋଚନା ଲାଗିଗଲା । ପୂର୍ବରୁ ଯାହା ଲେଖିଛି, କଂଗ୍ରେସ କାର୍ଯ୍ୟକାରୀ ସମିତି ବମ୍ବେରେ ଏକ ପ୍ରସ୍ତାବ ପାସ୍ କରି କ୍ଷାନ୍ତ ରହିଲା ନାହିଁ । ମହାତ୍ମା ଗାନ୍ଧୀ 'ହରିଜନ' କାଗଜରେ ଶ୍ରେଣୀ ସଂଗ୍ରାମ ବିରୋଧରେ ଲେଖିଲେ ଏବଂ ପରେ ଆଉ କଂଗ୍ରେସର ଚାରିଅଣିଆ ଅର୍ଥାତ୍ ପ୍ରାଥମିକ ସଦସ୍ୟ ରୂପେ ରହିବେ ନାହିଁ ବୋଲି ଘୋଷଣା କଲେ । ସେ ବିଚାରିଲେ ତାଙ୍କ ଅନୁପସ୍ଥିତିରେ କଂଗ୍ରେସ ଲୋକେ ସ୍ୱାଧୀନ ଭାବରେ ବିଚାର କରିପାରିବେ; ମାତ୍ର କଂଗ୍ରେସ ନେତାମାନେ ଏହାର ଭିନ୍ନ ଅର୍ଥ କଲେ । ଏବଂ ସର୍ଦ୍ଦାର ପଟେଲ ପ୍ରମୁଖ ସମାଜବାଦୀମାନେ ଅବାସ୍ତବ ବାକ୍ୟବାଗୀଶ୍ ବୋଲି କହି ସମାଲୋଚନା କଲେ । ମହାତ୍ମା ଗାନ୍ଧୀ ସୋସଲିଷ୍ଟଙ୍କ ଆଚରଣ ଯୋଗୁଁ ଏମିତି ଅନ୍ତର ହୋଇଯାଉଛନ୍ତି ବୋଲି ଆମ ବିରୁଦ୍ଧରେ ଖୁବ୍ ପ୍ରଚାର ଚାଲିଲା । ବାରାଣସୀରେ କଂଗ୍ରେସ କାର୍ଯ୍ୟକାରୀ ସମିତି ସୋସଲିଜମ୍ ବିରୁଦ୍ଧରେ ପୁଣି ଏକ ପ୍ରସ୍ତାବ ପାସ୍ କଲା । ଏହା ନିଶ୍ଚିତ ଭାବରେ କଂଗ୍ରେସ ଭିତରେ ସୋସଲିଷ୍ଟମାନଙ୍କ ସଂଖ୍ୟା କୌଣସି ପ୍ରକାର ବୃଦ୍ଧି ହେବାକୁ ନ ଦେବାର ଏକ କୌଶଳପୂର୍ଣ୍ଣ ପ୍ରୟାସ । ତେଣୁ ବମ୍ବେ ସମ୍ମିଳନୀ ବେଳକୁ କଂଗ୍ରେସ ଲୋକେ ଆଉ ବେଶି ଆସିଲେ ନାହିଁ ଏବଂ ଏଥିରେ ସଂପୃକ୍ତ ରହିଲେ ନାହିଁ । ଆମ ଓଡ଼ିଶାର

କର୍ମୀ ସଙ୍ଘର ଏହି କାରଣ ଦର୍ଶାଇ ଶ୍ରୀ ଦିବାକର ପଟ୍ଟନାୟକ ୨୧।୧୦।୧୯୩୪ରେ ଏକ ଚିଠି ଦେଇ ଇସ୍ତଫା ଦେଲେ । ତାଙ୍କ ସାଙ୍ଗରେ ଗୌରୀଶଙ୍କର ସାମନ୍ତ ବି ଗୁଡ଼ିଲେ । ଗଡ଼କୃଷ୍ଣ ସ୍ୱାଇଁ ତ ଆଉ କେତେ ବର୍ଷ ପରେ କମ୍ୟୁନିଷ୍ଟ ପାଲଟିଗଲେ । ବମ୍ବେ ସମ୍ମିଳନୀ ପୂର୍ବରୁ ଏକ ସମ୍ମିଳନୀ କରାଯାଇ ବିଧିବଦ୍ଧଭାବରେ ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀ ସଙ୍ଘକୁ ନିଖିଳ ଭାରତ କଂଗ୍ରେସ ସୋସଲିଷ୍ଟ ପାର୍ଟିରେ ସାମିଲ କରିଦିଆଗଲା । ଏହି ସମ୍ମିଳନୀ ନବବାବୁଙ୍କ ଘରେ ହୋଇଥିଲା ଏବଂ ଏଥିରେ ପ୍ରାଣନାଥ ପଟ୍ଟନାୟକ ସଭାପତି ହୋଇଥିଲେ । ପୁରୁଣା କଂଗ୍ରେସ ଲୋକଙ୍କ ଭିତରୁ ନବକୃଷ୍ଣ ଚୌଧୁରୀଙ୍କ ଛଡ଼ା ଆଉ ବିଶେଷ କେହି ରହିଲେ ନାହିଁ କହିଲେ ଚଳିବ । ମହାତ୍ମା ଗାନ୍ଧୀ ଓ ଜବାହାରଲାଲ୍ ନେହେରୁ ସୋସଲିଷ୍ଟ ଗୋଷ୍ଠୀ ଗଠନକୁ ସ୍ୱାଗତ କରି ଯେଉଁ କନ୍ଧି ଉପୂର୍ଣ୍ଣ ଭାବ ଦେଖାଇ-ଥିଲେ, ଅନ୍ୟମାନଙ୍କର ତଦପେକ୍ଷା ଅଧିକ ବିରୋଧ ଯୋଗୁଁ ଏକ ବିପରୀତ ବାୟୁମଣ୍ଡଳ ସୃଷ୍ଟି ହୋଇଗଲା ।

ଏ ସବୁ ସତ୍ତ୍ୱେ କଂଗ୍ରେସ ଅଧିବେଶନର ଠିକ୍ ପୂର୍ବରୁ ୧୯୩୪ ମସିହା ଅକ୍ଟୋବର ୨୧ ଓ ୨୨ ରେ ହୋଇଥିବା ପ୍ରଥମ କଂଗ୍ରେସ ସୋସଲିଷ୍ଟ ପାର୍ଟି ସମ୍ମିଳନୀରେ ୧୩ଟି ରାଜ୍ୟରୁ ୧୩୭ ଜଣ ଡେଲିଗେଟ୍ ଯୋଗଦେଲେ । ଏହା କମ୍ ତାତ୍ପର୍ଯ୍ୟପୂର୍ଣ୍ଣ ନ ଥିଲା । ଏହି ସମ୍ମିଳନୀରେ ବିଧିବଦ୍ଧ ପାର୍ଟି ଗଠିତ ହୋଇ ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ ନେଇ ଜାତୀୟ କାର୍ଯ୍ୟ ନିର୍ବାହିକା ସମିତି ଗଠିତ ହେଲା । ଜୟପ୍ରକାଶ ନାରାୟଣ—ସାଧାରଣ ସମ୍ପାଦକ, ଏମ୍ ଆର. ମସାନି, ମୋହନଲାଲ ଗୌତମ, ଏନ୍. ଜି. ଗୋରେ, ଇ. ଏମ୍. ଏସ୍ ନମ୍ବୁଦ୍ରିପଦ ଯୁଗ୍ମ ସମ୍ପାଦକ ଏବଂ ନରେନ୍ଦ୍ର ଦେବ, ସମ୍ପୂର୍ଣ୍ଣାନନ୍ଦ, କମଳାଦେବୀ ଚଟ୍ଟୋପାଧ୍ୟାୟ, ପୁରୁଷୋତ୍ତମ ତ୍ରିକମ୍ ଦାସ, ପି. ୱାଇ ଦେଶପାଣ୍ଡେ, ରାମ ମନୋହର ଲୋହିଆ, ଏସ୍. ଏମ୍, ଜୋଶୀ, ଅମରେନ୍ଦ୍ର ପ୍ରସାଦ ମିଶ୍ର, ଚାର୍ଲସ ମାସ୍କାରେନସ, ନବକୃଷ୍ଣ ଚୌଧୁରୀ, ଅଚ୍ୟୁତ ପଟ୍ଟବର୍ଦ୍ଧନ ଏଥିରେ ମେମ୍ବର ରହିଲେ । ୟୁସୁଫ ମେହେରଅଲୀ, ସୋଲି ବାଟ୍‌ଲିୱାଲା, ରୋହିତ ମେହେତା, ଫରିଦୁଲହକ୍ ଆନସାରୀ ଏବଂ ରାମବୃକ୍ଷ ବେନିପୁରୀ ଏଥିରେ ସଯୋଗକାରୀ ସଦସ୍ୟ ହୋଇ ରହିଲେ । ପ୍ରଥମ କଂଗ୍ରେସ ସୋସଲିଷ୍ଟ ପାର୍ଟି ସମ୍ମିଳନୀ ଏହିମାନଙ୍କୁ ବାଛିଲା ।

ସୋସଲିଷ୍ଟ ବିରୋଧୀ କଂଗ୍ରେସ ଲୋକଙ୍କ ପ୍ରଚାରରେ ଦବି ନ ଯାଇ ବରଂ ଅଧିକ ଉତ୍ସାହରେ ଉଦ୍ୟମ ଆରମ୍ଭ ହେଲା ଦିନକ ପରେ ଯେଉଁ କଂଗ୍ରେସ ଅଧିବେଶନ ଆରମ୍ଭ ହେଲା, ସେଥିରେ କଂଗ୍ରେସର ନିୟମାବଳୀରେ ସୋସଲିଷ୍ଟ ପାର୍ଟି ତରଫରୁ କେତେକ ସଂଶୋଧନ ଆଗତ କରାଗଲା । ଯଥା—ଖଦି ପିନ୍ଧିବା ବାଧ୍ୟତାମୂଳକ କରା ନ ଯାଉ ଓ ସତ୍ୟ ଅହିଂସା ବଦଳରେ ନ୍ୟାୟସଙ୍ଗତ ଓ ଶାନ୍ତିପୂର୍ଣ୍ଣ ପନ୍ଥାରେ ସ୍ୱରାଜ ହାସଲ ହେବ ବୋଲି ଉଲ୍ଲେଖ କରାଯାଉ । ପୂର୍ବରୁ କଂଗ୍ରେସ କାର୍ଯ୍ୟକାରୀ ସମିତି ବମ୍ବେ ଓ ବାରାଣସୀରେ ଶ୍ରେଣୀସଂଘର୍ଷ ଓ ସମ୍ପତ୍ତି ବାଜ୍ୟାପ୍ତିକରଣ ବିରୋଧ କରି ଯେଉଁ ପ୍ରସ୍ତାବ ପାସ୍ କରିଥିଲା'

ସେ ସମ୍ପର୍କରେ ଦୃଢ଼ଭାବରେ ପୁନର୍ବାର ଘୋଷଣା କରାଗଲା ଯେ ଶ୍ରେଣୀ-ସଂଗ୍ରାମ ଏବଂ ସମ୍ପତ୍ତି ବାଜ୍ୟାପ୍ତିକରଣ କଂଗ୍ରେସର କରାଚି ପ୍ରସ୍ତାବର ବିରୋଧ ନୁହେଁ । କଂଗ୍ରେସର ପୁନର୍ବାର ବ୍ୟବସ୍ଥାସଭା ନିର୍ବାଚନରେ ଯୋଗଦାନର ବିରୋଧ କରାଯାଇ କଂଗ୍ରେସ ସୋସଲିଷ୍ଟଙ୍କୁ କୌଣସି ସ୍ଥାନରେ ପ୍ରାର୍ଥୀ ନ ହେବା ନିମନ୍ତେ ନିର୍ଦ୍ଦେଶ ଦିଆଗଲା । ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ହେଉଛି ବ୍ରିଟିଶ ଶାସନ ଥିବା ପର୍ଯ୍ୟନ୍ତ ବ୍ରିଟିଶ କର୍ତ୍ତୃତ୍ୱାଧୀନରେ ରହିଥିବା ବ୍ୟବସ୍ଥାସଭା ଇତ୍ୟାଦିରେ ପ୍ରବେଶ କରାଯିବାର ବିରୋଧ କରାଗଲା ଏବଂ ତାହିଁ ସଙ୍ଗେ ସଙ୍ଗେ ଏକ ଗଣପରିଷଦଦ୍ୱାରା ଭାରତର ଭବିଷ୍ୟତ ସଂବିଧାନ ଗଠିତ ହେଉ ବୋଲି ଦାବୀ କରାଗଲା । ସ୍ୱରାଜ୍ୟ ଆନ୍ଦୋଳନକୁ ଲୋକପ୍ରିୟ ଏବଂ ଲୋକଭିତ୍ତିକ କରିବାକୁ ହେଲେ ବିଭିନ୍ନ ଶ୍ରେଣୀଙ୍କୁ ପ୍ରତ୍ୟକ୍ଷ ଭାବରେ କଂଗ୍ରେସ ଓ ଅନ୍ୟ ଲୋକ ଆନ୍ଦୋଳନରେ ଭାଗ ନେବାକୁ ପଡ଼ିବ; ତେଣୁ କଂଗ୍ରେସ ସୋସଲିଷ୍ଟମାନେ ଏଥିଲାଗି ବ୍ୟବସ୍ଥାସଭା ଅପେକ୍ଷା ଲୋକଗଠନ ଉପରେ ଜୋର୍ ଦେଲେ । ମୋଟାମୋଟି ବିଚାର କଲେ କଂଗ୍ରେସ ଭିତରେ ଏକ ନୂତନ ସୋସଲିଷ୍ଟ ଶକ୍ତି ସଂଗଠିତରୂପେ ଛିଡ଼ାହେଲା ଏବଂ ଗାନ୍ଧୀପନ୍ଥୀ କଂଗ୍ରେସ ନେତାମାନେ ଏହାପ୍ରତି ଗାନ୍ଧୀ ଓ ନେହେରୁଙ୍କ ପରି ସହାନୁଭୂତିସମ୍ପନ୍ନ ନ ହୋଇ ଅନ୍ୟ କଂଗ୍ରେସ ଲୋକେ ଯେମିତି ଏଥିରେ ଯୋଗ ନ ଦିଅନ୍ତି, ସେଥିଲାଗି ଉଦ୍ୟମ ଆରମ୍ଭ କରି ଦେଲେ । ଦକ୍ଷିଣପନ୍ଥୀମାନେ ମୂଳରୁ ହିଁ ସୋସଲିଷ୍ଟଙ୍କ ପ୍ରଭାବ ରୋକିବା ନିମନ୍ତେ ପ୍ରସ୍ତୁତ ହୋଇଗଲେ । ଏହାର ସୂଚନା ଦେଖି ଜୟପ୍ରକାଶ ନାରାୟଣ ବିଭିନ୍ନ ପ୍ରାଦେଶିକ ପାର୍ଟିକୁ ଏକ ସର୍କୁଲାର ପଠାଇଲେ ।

୧୯୩୫ ମସିହା ୧୭ ଜାନୁୟାରୀରେ ସେ ଲେଖିଥିଲେ—"ଆମର ପ୍ରଥମ କାର୍ଯ୍ୟ ହେଉଛି କଂଗ୍ରେସ କର୍ମୀମାନଙ୍କୁ ପ୍ରଭାବିତ କରିବା । ଏହି କାର୍ଯ୍ୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ । କାରଣ ଏହାର ସଫଳତା ଉପରେ ଆମ ପାର୍ଟିର ଭବିଷ୍ୟତ ନିର୍ଭର କରେ । ବାସ୍ତବରେ ସଚ୍ଚା ଜାତୀୟତାବାଦୀମାନେ ଯେପରି ଆମଠାରୁ ଦୂରେଇ ନ ଯାଆନ୍ତି ଏବଂ ସମାଧାନ ଚାହୁଁଥିବା •ଦକ୍ଷିଣପନ୍ଥୀଙ୍କ ସହ ହାତ ନ ମିଳାନ୍ତି ଏଥିପ୍ରତି ସତର୍କ ରହିବା ଦରକାର । କଂଗ୍ରେସକୁ ସୋସଲିଷ୍ଟ ଏବଂ ସୋସଲିଷ୍ଟ ବିରୋଧୀ ପକ୍ଷ ଏଭଳି ଦୁଇଭାଗରେ ବିଭକ୍ତ କରି-ଦେଲେ ବଡ଼ ଖରାପ ହେବ । କଂଗ୍ରେସର ଅଗ୍ରଗାମୀ ଶକ୍ତିକୁ ଆମେ ସାଙ୍ଗରେ ଧରି ଚାଲିବା ଏବଂ ସମାଧାନପନ୍ଥୀ ଓ ସମାଧାନବିରୋଧୀ ଏମିତି ଦୁଇପକ୍ଷ କରିଦେବା ନିମନ୍ତେ ଚେଷ୍ଟା କରିବା ।"

କଂଗ୍ରେସ ସହ ପାର୍ଟିର ସମ୍ପର୍କ କଥା ଉଲ୍ଲେଖ କରି ଜୟପ୍ରକାଶ ଉକ୍ତ ସର୍କୁଲାରରେ ପୁଣି ଲେଖିଥିଲେ -- "ଆମେ କଂଗ୍ରେସରୁ ଯେମିତି ଅଲଗା ଗୋଷ୍ଠୀ ନୋହୁଁ ଏହା ଉପରେ ଜୋର୍ ଦେବାକୁ ପଡ଼ିବ । କଂଗ୍ରେସ କାର୍ଯ୍ୟକ୍ରମ ଯାହା, ସେଥିରେ ଆମ ଭିତରେ ବିଶେଷ ଆଗ୍ରହ ଜାତ ହେଉ ନାହିଁ ସତ୍ୟ, କିନ୍ତୁ କରାଚି ପ୍ରସ୍ତାବ, ସ୍ୱାଧୀନତା ଦିବସ ଏବଂ ବ୍ରିଟିସ୍ର ଜଏଣ୍ଟ ପାର୍ଲିମେଣ୍ଟାରୀ କମିଟି ରିପୋର୍ଟର ବିରୋଧ ଆଦି କାର୍ଯ୍ୟକ୍ରମରେ ଆମକୁ ସମସ୍ତଙ୍କ ସାଥିରେ ମିଶି ଜୋରସୋର୍ରେ ଆନ୍ଦୋଳନ କରିବାକୁ ପଡ଼ିବ ।"

ଯେଉଁ ବାମପନ୍ଥୀମାନେ କଂଗ୍ରେସ ସୋସଲିଷ୍ଟ ପାର୍ଟିକୁ ସମାଲୋଚନା କରୁଥିଲେ, ତାଙ୍କୁ ଜବାବ ଦେଇ ଜୟପ୍ରକାଶ ଲେଖିଥିଲେ, "କଂଗ୍ରେସ ସୋସଲିଷ୍ଟ ପାର୍ଟି କୌଣସି ଏକ ଶ୍ରେଣୀର ପାର୍ଟି ନୁହେଁ। ଏହା କେବଳ ଶ୍ରମିକ ଶ୍ରେଣୀର ଦଳ ନୁହେଁ । ଏହା ଏକ ରାଜନୀତିକ ଦଳ ଏବଂ ଏହି ପୀଠରେ ସବୁ ସାମ୍ରାଜ୍ୟବାଦ ବିରୋଧୀ ଶକ୍ତିଙ୍କୁ ଏକତ୍ର କରିବାକୁ ଚାହେଁ । ଏହିସବୁ ଶକ୍ତିକୁ ବ୍ରିଟିଶ ସାମ୍ରାଜ୍ୟବାଦର ପତନ ଲାଗି ଲଗାଇ ବାସ୍ତବିକ ଜନତାର ସ୍ୱରାଜ ସ୍ଥାପନା କରିବା ହେଲା ଏହାର ପ୍ରାଥମିକ କାର୍ଯ୍ୟ।" * ୧୯୪୨ ମସିହା 'କର ବା ମର' ଶେଷ ସ୍ୱାଧୀନତା ସଂଗ୍ରାମରେ କଂଗ୍ରେସ ସୋସଲିଷ୍ଟ ମାନେ ଯେ ମହତ୍ତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କଲେ, ସେଥିରେ ଏହି ଲକ୍ଷ୍ୟ କେତେ ସଫଳତା ସହକାରେ ସମ୍ପନ୍ନ ହୋଇଥିଲା, ତାହା ସ୍ପଷ୍ଟ ପ୍ରମାଣିତ। ଆଗରୁ କଂଗ୍ରେସ ଭିତରେ ଏକ ଦଳ ହିସାବରେ ଆମେ ସଂଗଠିତ ହୋଇ କାର୍ଯ୍ୟ କରୁ ନ ଥିଲେ, ୧୯୪୨ ରେ ବମ୍ବେ ନିଖିଳ ଭାରତ କଂଗ୍ରେସ କମିଟି ଅଧିବେଶନ ବେଳେ ନିଭୃତରେ ଆମେସବୁ ୟୁସୁଫ ମେହେରଲୀଙ୍କ ଘରେ ଏକତ୍ର ହୋଇ ନ ଥାନ୍ତୁ କିମ୍ବା ନେତାମାନଙ୍କ ଗିରଫଦାରୀ ପରେ ଦେଶର ଚାରିଆଡ଼େ ଗୁପ୍ତ ଆନ୍ଦୋଳନର ଯୋଜନା ହୋଇ ପାରି ନ ଥାନ୍ତା । ସୋସଲିଜମର ପ୍ରସାର ଓ ପ୍ରଚାର ଛଡ଼ା କଂଗ୍ରେସ ସୋସଲିଷ୍ଟ ପାର୍ଟିର ଏହି କାର୍ଯ୍ୟ ଇତିହାସରେ ଲିପିବଦ୍ଧ ହୋଇ ରହିଛି ଏବଂ ଆମେ ଏଥିଲାଗି ବ୍ୟକ୍ତିଗତ ଭାବରେ ଗର୍ବ ଅନୁଭବ କରୁ । ତେଣୁ ଜୟପ୍ରକାଶ ତାଙ୍କ "ବନ୍ଦୀ ଡାଏରୀ" ( ପ୍ରିଜନ ଡାଏରୀ ) ବହିରେ ଯାହା ଉଲ୍ଲେଖ କରିଛନ୍ତି, ସେଥିରେ ମୁଁ ଏକମତ ହୋଇପାରୁନାହିଁ। ସେ ଲେଖିଛନ୍ତି, "ପଶ୍ଚାତ୍ ଅବଲୋକନରେ ମୋର ମନେ ହେଉଛି ନୀତି, କାର୍ଯ୍ୟକ୍ରମ, ସଭ୍ୟ, ସଂବିଧାନ ଓ ନିୟମାବଳୀ ଥାଇ ଏକ ସ୍ୱତନ୍ତ୍ର ଦଳ ଗଠନ ଠିକ୍ ହୋଇ ନ ଥିଲା। ଗୋଟିଏ ବ୍ଲକ ବା ଗୋଷ୍ଠୀ ଗଠନ ହୋଇଥିଲେ ଭଲ ହୋଇଥାନ୍ତା ଏବଂ କଂଗ୍ରେସର ନିୟମାବଳୀ ସଙ୍ଗତ ହୋଇଥାନ୍ତା ମଧ୍ୟ । କଂଗ୍ରେସ ସୋସଲିଷ୍ଟମାନଙ୍କର ସ୍ୱାଧୀନତା ପ୍ରତି ନିଷ୍ଠା, ସଚ୍ଚୋଟପଣିଆ ଓ ତ୍ୟାଗ ଏପରି ନିର୍ମଳ ଥିଲା ଯେ, କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷ କିଛି କାର୍ଯ୍ୟାନୁଷ୍ଠାନ କରି ପାରିଲେ ନାହିଁ।" ମୋର ମନେହୁଏ, ଜୟପ୍ରକାଶଙ୍କର ଏହି ଉକ୍ତି ମଧ୍ୟ ଠିକ୍ ନୁହେଁ । କଂଗ୍ରେସ ସୋସଲିଷ୍ଟ ପାର୍ଟିର ଅଭ୍ୟୁଦୟକୁ କଂଗ୍ରେସକୁ ବାସ୍ତବିକ ନିୟନ୍ତ୍ରଣ କରୁଥିବା ସର୍ଦ୍ଦାର ପଟେଲ ଓ ତାଙ୍କ ସମର୍ଥକମାନେ କେବେହେଲେ ଶୁଭ ଦୃଷ୍ଟିରେ ଦେଖି ନ ଥିଲେ। ପ୍ରାୟ ପ୍ରତ୍ୟେକ ପ୍ରଦେଶରେ କଂଗ୍ରେସ କମିଟିମାନଙ୍କରେ ଏବଂ ନିଖିଳ ଭାରତ କଂଗ୍ରେସ କମିଟିକୁ ଯେପରି ସୋସଲିଷ୍ଟ ନ ଆସିପାରନ୍ତି ସେଥିଲାଗି ବିଧିବଦ୍ଧ ସଂଗଠିତ ଉଦ୍ୟମ ହୋଇଥିଲା । ଜୟପ୍ରକାଶଙ୍କୁ ବହାରରୁ ନିଖିଳ ଭାରତ କଂଗ୍ରେସ କମିଟିର ମେମ୍ବର ହେବାରେ ମଧ୍ୟ ନାନା ଅନ୍ତରାୟ ସୃଷ୍ଟି କରାଯାଇଥିଲା । ମହାତ୍ମା ଗାନ୍ଧୀଙ୍କର ପୂର୍ଣ୍ଣ ସହାନୁଭୂତି ଓ ଜବାହରଲାଲଙ୍କର କଥିତ ପରିମାଣରେ ସୋସଲିଷ୍ଟଙ୍କ

---

* "Bliss was it in that Dawn" By Minoo Masani

ପ୍ରତି ଶ୍ରଦ୍ଧା ଥିବାରୁ କଂଗ୍ରେସ ନେତୃବୃନ୍ଦ ସୋସିଆଲିଷ୍ଟଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ କରିପାରୁ ନ ଥିଲେ । ତାହା ବ୍ୟତୀତ କଂଗ୍ରେସ ଭିତରେ ଏଭଳି ଗୋଷ୍ଠୀ ଗଠନରେ କୌଣସି ସାଂବିଧାନିକ ପ୍ରତିବନ୍ଧକ ନ ଥିଲା । ମୋତିଲାଲ ନେହେରୁ ଆଦି ପୁଣି ସ୍ୱରାଜ୍ୟ ପାର୍ଟି ଗଠନ କରିପାରିଥିଲେ । ମାତ୍ର ମହାତ୍ମା ଗାନ୍ଧୀଙ୍କ ମୃତ୍ୟୁର ୨୭ ଦିନ ପରେ କଂଗ୍ରେସର ନିୟମାବଳୀର ପରିବର୍ତ୍ତନ କରାଗଲା ଏବଂ ସ୍ୱତନ୍ତ୍ର ନିୟମାବଳୀ ଓ ସଭ୍ୟ ଆଦି ଥାଇ କୌଣସି ଦଳ କଂଗ୍ରେସ ଭିତରେ କାର୍ଯ୍ୟ କରିବା ନିଷେଧ କରିଦିଆଗଲା । ଏହା କେବଳ ସୋସିଆଲିଷ୍ଟଙ୍କୁ ବାହାର କରିବା ଉଦ୍ଦେଶ୍ୟରେ କରାଗଲା । କାରଣ ସୋସିଆଲିଷ୍ଟଙ୍କ ଛଡ଼ା ଆଉ କୌଣସି ଦଳ କଂଗ୍ରେସ ଭିତରେ ନ ଥିଲେ । କମ୍ୟୁନିଷ୍ଟମାନେ ୧୯୪୨ ମସିହା 'କର ବା ମର' ସଂଗ୍ରାମର ବିରୋଧ କଲା ପରେ ଆଉ କଂଗ୍ରେସ ଭିତରେ ତାଙ୍କର ସ୍ଥାନ ନ ଥିଲା ଏବଂ ନେତାଜୀ ସୁଭାଷ ବୋଷ ବହୁପୂର୍ବରୁ ୧୯୩୯ ମସିହାରେ ଅଲଗା ହୋଇଯାଇ ଫରଓ୍ୱାର୍ଡ଼ ବ୍ଲକ ଗଠନ କରିଥିଲେ ।

ବମ୍ବେ ସମ୍ମିଳନୀ ପରେ ବିଧିବଦ୍ଧ ସୋସିଆଲିଷ୍ଟ ସଙ୍ଗଠନ ଭାରତର ଚାରିଆଡ଼େ ଗଢ଼ି ଉଠିଲା । ଓଡ଼ିଶା ପାର୍ଟି ମଧ୍ୟ ଏକ ସାଙ୍ଗଠନିକ ଶାଖା ରୂପେ କାର୍ଯ୍ୟ ଆରମ୍ଭ କରିଦେଲା । ଓଡ଼ିଶାରେ ବିଶେଷ କିଛି ଶିଳ୍ପୋଦ୍ୟୋଗ ନଥିଲା—ତେଣୁ ଶ୍ରମିକ ସଙ୍ଗଠନର ପ୍ରଶ୍ନ ନଥିଲା । କ୍ଷେତ ମଜୁରିଆଙ୍କୁ ସ୍ୱତନ୍ତ୍ରଭାବରେ ସଙ୍ଗଠନ କରିବା ସମ୍ଭବ ନଥିଲା—କାରଣ ଅଧିକାଂଶ ଅଞ୍ଚଳ ଜମିଦାର ଓ ଗଡ଼ଜାତ ରାଜାମାନଙ୍କ ଅଧୀନରେ ଥିଲା । ଚାଷୀଙ୍କର କୌଣସି ସ୍ୱତ୍ୱ ନଥିଲା; ଜମି ଉପରେ ମାଲିକାନା ସ୍ୱତ୍ୱ ଖୁବ ଅଳ୍ପ ସଂଖ୍ୟକ ଲୋକଙ୍କୁ ଦିଆଯାଇଥିଲା । ସ୍ଥିତି ଯାହା ଥିଲା, ସେଥିରେ ଚାଷୀ ଓ ମୂଲିଆ ଏକା ନାଆରେ ବସିଥିଲେ । ଅନ୍ୟ ପ୍ରଦେଶ ପରି ଓଡ଼ିଶାରେ ଚାଷର ବିଶେଷ ଉନ୍ନତି ଘଟି ନ ଥିଲା କିମ୍ବା କେଉଁଠି ବଡ଼ ଧରଣର ବ୍ୟକ୍ତିଗତ କୃଷି ଫାର୍ମ ଆଦି ନ ଥିଲା । ସେପରି ଫାର୍ମ ଥିଲେ ସେଥିରେ ମଜୁରିଆ ସଙ୍ଗଠନ କରାଯାଇପାରିଥାନ୍ତା । ଚାଷୀଙ୍କ ଆଗରେ ପ୍ରଥମ ସମସ୍ୟା ହେଲା ସେମାନଙ୍କୁ ଜମିଦାରୀ ଅତ୍ୟାଚାର ଜୁଲମରୁ ରକ୍ଷା କରିବା ଏବଂ ସରକାରୀ ଆଇନ ଅନୁସାରେ ଯେତିକି ଅଧିକାର ମିଳିଛି ସେ ଅଧିକାର ପ୍ରାପ୍ତ ହେବା ।

ଓଡ଼ିଶା କଂଗ୍ରେସ ସାମ୍ୟବାଦୀ କର୍ମୀସଂଘ ଗଠନ ସାଙ୍ଗେ ସାଙ୍ଗେ ଆମେ ଏହି ସଂଗଠନରେ ଲାଗିଲୁ । କେତେକ ଗ୍ରାମ ବୁଲିଲା ପରେ ଦେଖାଗଲା ଲୋକଙ୍କୁ ଏକଜୁଟ କରିବା କଷ୍ଟକର । ଜମିଦାରଙ୍କ ଭୟରେ ସେମାନେ ଥରହର । ତାହାଛଡ଼ା ବ୍ରିଟିଶ ସରକାର ପୁରାପୁରି ଜମିଦାରଙ୍କ ପକ୍ଷରେ ରହିଥିଲେ । ଲୋକଙ୍କଠାରୁ ଭୟ ନ ଭାଙ୍ଗିଲେ ଅନ୍ୟ କୌଣସି କାର୍ଯ୍ୟ କରିବା ଅସମ୍ଭବ । ଆହୁରି ମଧ୍ୟ ଅଭିଜ୍ଞତାରୁ ଦେଖାଗଲା ମୁଦ୍ରିତ କାଗଜ ଉପରେ ଲୋକଙ୍କର ଖୁବ୍ ବିଶ୍ୱାସ । ତାହା ସରକାରୀ ଗେଜେଟ ବୋଲି ସେମାନଙ୍କର ଧାରଣା । ସେତେବେଳକୁ ଓଡ଼ିଶାର ସମ୍ବାଦପତ୍ର ଗାଁଗଣ୍ଡାରେ ବହୁ ପରିମାଣରେ ପହଞ୍ଚି ନ ଥିଲା । ଓଡ଼ିଶାରେ ସାକ୍ଷରଙ୍କ ସଂଖ୍ୟା ଶତକଡ଼ା ୫ କିମ୍ବା ୬ରୁ ବେଶି ନ ଥିଲା ।

## କୃଷକ ସଂଘ ଗଠନ

ଏକ କୃଷକ ସଂଘ ଗଠନ କରାଗଲା ଏବଂ ସେଥିରେ ମୁଁ ଓ ମାଳତୀ ଚୌଧୁରୀ ଯୁଗ୍ମ ସଂପାଦକ ରୂପେ କାର୍ଯ୍ୟ କଲୁ । କଟକ ଟାଉନ ହଲ୍‌ରେ ୧୯୩୪ ମସିହାରେ ଏକ କୃଷକ ସମ୍ମିଳନୀ ଆୟୋଜନ କରାଗଲା । କେତେକ ନୂଆ ନୂଆ ଚାଷୀ ଯୁବକ ସେଥିରେ ଯୋଗ ଦେଲେ । ପଣ୍ଡିତ ଗୋଦାବରୀଶ ମିଶ୍ର ସେତେବେଳକୁ ବିହାର ଓଡ଼ିଶା କାଉନ୍‌ସିଲର ସଦସ୍ୟ ଥାଆନ୍ତି । ସେ କଂଗ୍ରେସରେ ନ ଥିଲେ ଏବଂ ସ୍ୱାଧୀନଭାବରେ ନିର୍ବାଚିତ ହୋଇଥିଲେ । ବିହାର ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନରେ ଏକ ବ୍ୟବସ୍ଥା ଥାଏ ଯେ ଶସ୍ୟହାନି ଘଟିଲେ ସରକାରଙ୍କ ନିକଟରେ ଆବେଦନ ପଠାଇଲେ ଟଙ୍କାକେ ଚାରିଅଣା ରାଜସ୍ୱ ମାଫ ମିଳିବ । ସେତେବେଳେ ଅବଶ୍ୟ ଜମି ରାଜସ୍ୱ ବହୁତ ଊଣା ଥିଲା । ଏକର ପ୍ରତି ଦୁଇ ତିନି-ଟଙ୍କା ମାତ୍ର ମାତ୍ର ଚାଷୀଙ୍କୁ ଏହାହିଁ ଥିଲା ବଡ଼ ବୋଝ । ଖଜଣା ହ୍ରାସ କରିବା ପ୍ରସ୍ତାବ ଲୋକେ ସହଜରେ ଗ୍ରହଣ କରୁଥିଲେ । ତାହା ଛଡ଼ା ଏଥିରେ ଜମିଦାରଙ୍କ ସହ ତତ୍‌କ୍ଷଣାତ୍ ସଂଘର୍ଷର ଆଶଙ୍କା ନଥିଲା । ତେଣୁ ପୂରାପୂରି ସରକାରଙ୍କୁ ନିବେଦନ କରିବା ଭଳି ଏକ ଆନ୍ଦୋଳନ ପ୍ରାଥମିକ ଅବସ୍ଥାରେ ଆରମ୍ଭ କରାଗଲା । ଏହି ସମ୍ମିଳନୀରେ ପଣ୍ଡିତ ଗୋଦାବରୀଶ ମିଶ୍ର ଭାଷଣ ଦେଇ ସରକାରୀ ଆଇନ ବୁଝାଇଲେ । ଉତ୍ତରପ୍ରଦେଶରେ ପୁରୁଷୋତ୍ତମଦାସ ଟାଣ୍ଡନଙ୍କ ସଭାପତିତ୍ୱରେ ଯେଉଁ କୃଷକ ସଙ୍ଗଠନ ଥିଲା, ପରବର୍ତ୍ତୀ କାଳରେ ଆମେ ସେଥିରେ ବି ସଂପୃକ୍ତ ହେଲୁ । ମୋହନଲାଲ ଗୌତମ ସେଥିର ସଂପାଦକ ଥିଲେ । ଗୌତମ ମଧ୍ୟ ନିଖିଳ ଭାରତ କଂଗ୍ରେସ ସୋସିଆଲିଷ୍ଟ ପାର୍ଟିର ଜଣେ ଯୁଗ୍ମ ସଂପାଦକ ରୂପେ ନିଯୁକ୍ତ ହୋଇଥିଲେ । ସେ ବି ଆମ କୃଷକ ସଂଘ ଦ୍ୱାରା ଆୟୋଜିତ ସଭାରେ ଭାଷଣ ଦେଲେ । ଆମେ ସ୍ଥିର କଲୁ ଗ୍ରାମମାନଙ୍କରେ ଚାଷୀସଭା କରି ଫସଲ ହାନି ହେତୁ ରାଜସ୍ୱ ଛାଡ଼ ଦାବୀ କରି ଛପା ନିବେଦନ ପତ୍ରରେ ଚାଷୀଙ୍କ ଦସ୍ତଖତ ସଂଗ୍ରହ କରାଯିବ ଏବଂ ତାହା ବିହାର ଓଡ଼ିଶା କାଉନ୍‌ସିଲରେ ପାଟନାରେ ସରକାର ସମ୍ମୁଖରେ ଉପସ୍ଥାପିତ କରାଯିବ । ଏଭଳି କାର୍ଯ୍ୟରେ ଆମକୁ ଦୁଇଟି ଫାଇଦା ମିଳିବ । (୧) ସରକାରଙ୍କୁ ନିବେଦନ କରାଯାଉଛି ବୋଲି ଇଂରେଜ ସରକାର ତରଫରୁ କିଛି ବାଧା ସୃଷ୍ଟି ହେବ ନାହିଁ ଏବଂ ରାଜସ୍ୱ ଛାଡ଼ହେଲେ ଜମିଦାର ବି ତଦନୁରୂପ ଛାଡ଼ ପାଇବେ । ତେଣୁ ସେମାନେ ଆମ ସଂଗଠନରେ ବାଧା ସୃଷ୍ଟି କରିବେ ନାହିଁ । (୨) ଏହି କାମ କରିଆରେ ଆମେ ସ୍ୱଚ୍ଛନ୍ଦରେ ଗ୍ରାମ ଗହଳରେ ପ୍ରବେଶ କରିପାରିବୁ ଏବଂ କୃଷକ ସଂଘ ସ୍ଥାପନ କରି କୃଷକମାନଙ୍କୁ ପ୍ରତ୍ୟକ୍ଷ ଭାବରେ ସମ୍ପୃକ୍ତ କରାଇପାରିବୁ । କିନ୍ତୁ ସେତେବେଳେ ଗାଁଗହଳର ପରିସ୍ଥିତି ଯାହା ଥିଲା, ସେଥିରେ ଏଭଳି କାର୍ଯ୍ୟ ବି କରିବା କଷ୍ଟସାଧ୍ୟ ହୋଇଥିଲା ଏବଂ ଆମେ ନାନାଦି ପ୍ରତିବନ୍ଧକର ସମ୍ମୁଖୀନ ହେଉଥିଲୁ ।

ଦିନକର ଘଟଣା । ମୁଁ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଗୌରଚନ୍ଦ୍ର ଦାସ ଓ ଗୌରାଙ୍ଗ ଚରଣ ଦାସ କଟକ ଜିଲ୍ଲାର ଏକ ଗ୍ରେଟ ଗ୍ରାମରେ ଚାଷୀଙ୍କୁ

ଡାକି ସେମାନଙ୍କ ବାହାର ବାରଣ୍ଡାରେ ବସି ଛପା ନିବେଦନ ପତ୍ରରେ ଦସ୍ତଖତ ଦେଇ ଖଜଣା ହ୍ରାସ ବିଷୟରେ ବୁଝାଉଥିଲୁ । ଆମର ସେହି ଆଲୋଚନା ପ୍ରାୟ ସରିବା ଉପରେ । ଉପସ୍ଥିତ ବ୍ୟକ୍ତିଙ୍କ ଭିତରୁ ଅଧିକାଂଶ ଦସ୍ତଖତ କରିବାକୁ ସମ୍ମତ ଥିବାପରି ମନେ ହେଉଥିଲା । ଏତିକିବେଳେ ଏକ ଗ୍ରାମ ଚୌକିଦାର କାଗଜ ପେନ୍‌ସିଲ୍ ଧରି ଆସି ଏକ ପାଖରେ ବସିଲା ଏବଂ କାହାକୁ କିଛି ନ କହି ଲେଖିବାକୁ ଆରମ୍ଭ କଲା । ଗ୍ରାମ ଚୌକିଦାର ହେଉଛି ଗ୍ରାମର ପୁଲିସ ବିଭାଗର ପ୍ରତ୍ୟକ୍ଷ କର୍ମଚାରୀ ଏବଂ ତାର ସମ୍ପର୍କ ପୁଲିସ ଥାନା ସହିତ । ତେଣୁ ସେ ପୁଲିସ କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରୁଛି ବୋଲି ଗଣ୍ୟ କରାଯାଉଥିଲା । ସେ ଆସି ଏଭଳି ଲେଖିବା ଆରମ୍ଭ କରିବାରୁ ଲୋକଙ୍କ ମନରେ ଆଶଙ୍କା ଜାତ ହେଲା । ସେମାନେ ଭାବିଲେ ସଭାରେ ଯୋଗ ଦେଉଛନ୍ତି ବୋଲି ତାଙ୍କ ନାମରେ ରିପୋର୍ଟ ହୋଇଯିବ । ଏହି ଭୟରେ ପ୍ରାୟ ସବୁ ଗ୍ରାମବାସୀ ଯେଝା ଘର ଭିତରକୁ ପଳାଇଲେ । ଏଇ ସାମାନ୍ୟ ଘଟଣାରୁ ବୁଝାପଡ଼ିବ ଇଂରେଜ ସରକାର ଅମଳରେ ଲୋକେ କିଭଳି ଭୟଭୀତ ହୋଇ ରହିଥିଲେ ଏବଂ ରାଜ-ନୀତିକ ଏପରିକି କୌଣସି ସାମାଜିକ ବା ଅର୍ଥନୀତିକ ଅସୁବିଧା ଦୂର କରିବା ନିମନ୍ତେ ସଂଗଠନ କରିବା କିଭଳି ଦୁଷ୍କରଥିଲା । ଜମିଦାରଙ୍କୁ ଲୋକେ ବିଷ୍ଣୁଙ୍କ ଅବତାର ବୋଲି ବିଚାର କରୁଥିଲେ; ଜମିଦାର ଯେ ଅନ୍ୟାୟରେ ସବୁ ଦଖଲ କରି ବସିଛି ଏବଂ ଜୁଲମ କରୁଛି, ଏହା ସେମାନେ ସହଜରେ ବିଶ୍ୱାସ କରୁ ନ ଥିଲେ । ଧନୀ ଦରିଦ୍ର, ଉଚ୍ଚ ନୀଚର ସୃଷ୍ଟି ଭଗବାନ କରିଛନ୍ତି ଏବଂ ଜମିଦାରଙ୍କ ହୁକୁମ ମାନିବା ଧର୍ମ ବୋଲି ଲୋକେ ବିଚାରୁଥିଲେ । ସେଥିଯୋଗୁଁ ବେଠି ବେଗାରି ଗଡ଼ଜାତ ଇଲାକା ଓ ମୋଗଲବନ୍ଦୀ ଉଭୟ ଅଞ୍ଚଳରେ ବେଶ୍ ଚାଲୁଥିଲା । ଜମିଦାରୀ ଇଲାକାମାନଙ୍କରେ ଚାଷୀର ନିଜ ବାଡ଼ିରେ ଥିବା ଗଛ କମ୍ବା ପୋଖରୀରେ ଥିବା ମାଛ ଉପରେ ମଧ୍ୟ ଅଧିକାର ନ ଥିଲା । ଏହା ଆଇନରେ ବି ଧାର୍ଯ୍ୟ ହୋଇଥିଲା, ତେଣୁ ଏହା ସାଙ୍ଗକୁ ବିଭିନ୍ନ ପ୍ରକାର ବେଆଇନ ପାଉଣା ଅସୁଲ କରିବା ଜମିଦାର ମହାଜନଙ୍କ ପକ୍ଷରେ ଅତି ସହଜ ହେଉଥିଲା ।

ଏହି ସବୁ ପରିସ୍ଥିତିରେ ଶ୍ରେଣୀ ସଂଘର୍ଷ ଭିତରେ କୃଷକ ଶ୍ରେଣୀକୁ ସଂଗଠନ କରିବା ଏକ ଅବାସ୍ତବ କଳ୍ପନା । ତେଣୁ ଆମେ ସ୍ଥିର କଲୁ ପ୍ରଥମେ ଚାଷୀଙ୍କ ଭିତରୁ ଭୟ ଦୂର କରିବା ନିମନ୍ତେ ଚେଷ୍ଟା କରାଯିବ ଏବଂ କୃଷକ ସମ୍ମିଳନୀମାନଙ୍କରେ ଅଣସୋସିଆଲିଷ୍ଟ ମାନଙ୍କର ବି ସମର୍ଥନ ଲୋଡ଼ାଯିବ । ଏହି ଉଦ୍ଦେଶ୍ୟରେ କଟକ ଜିଲ୍ଲାର ବାଗଲପୁର ଗ୍ରାମରେ ପ୍ରଥମ ପ୍ରାଦେଶିକ କୃଷକ ସମ୍ମିଳନୀ କରାଗଲା । ଆମେ ଗ୍ରାମ ଗ୍ରାମ ବୁଲି ଲୋକଙ୍କଠାରୁ ଚାଉଳ ପଇସା ସଂଗ୍ରହ କରି ସମ୍ମିଳନୀର ବ୍ୟବସ୍ଥା କଲୁ । ଅଭ୍ୟର୍ଥନା ସମିତିର ସଭାପତି କରାଗଲା ସେହି ଗ୍ରାମର ଜଣେ ବୟସ୍କ ଚାଷୀ ଶ୍ରୀ ଜୟକୃଷ୍ଣ ଦାସଙ୍କୁ । ତାଙ୍କର ବକ୍ତୃତା ମୁଁ ଲେଖି ତାଙ୍କୁ ପଢ଼ାଇ ତାଙ୍କର ସମ୍ମତି ନେଇଥିଲି ଏବଂ ସେ ସମ୍ମିଳନୀରେ ତାହା ନିଜେ ପାଠ କରିଥିଲେ । ଜଣେ କୃଷକ ଏପରି ଏକ ବିରାଟ ଚାଷୀ

ସମ୍ମିଳନୀରେ ଚାଷୀ ସମସ୍ୟା ବିଷୟରେ ଭାଷଣ ଦେବା ଓଡ଼ିଶାରେ ଏହା ହେଲା ପ୍ରଥମ ଏବଂ ଏହା ଖୁବ୍ ଗୋଟାଏ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । 'ସମାଜ' ସଂପାଦକ ପଣ୍ଡିତ ଲିଙ୍ଗରାଜ ମିଶ୍ର 'ସମାଜ'ରେ ପୂରା ଭାଷଣଟି ପ୍ରକାଶ କରିଥିଲେ ।

ଅନେକେ ଏବେ ଶୁଣି ହୁଏତ ବିଦ୍ରୂପ କରିପାରନ୍ତି, ମାତ୍ର ଏହି ସମ୍ମିଳନୀରେ ଏକ ମୁଖ୍ୟ ପ୍ରସ୍ତାବ ହେଲା—ଚାଷୀ ଶପଥ କରିବ ଯେ ସେ ଭଗବାନ ବା ଠାକୁରଙ୍କ ଛଡ଼ା ଆଉ କାହା ପାଖରେ ମୁଣ୍ଡ ତଳେ ଲଗାଇ ଦଣ୍ଡବତ କରିବ ନାହିଁ । ଅନ୍ୟ କେତେକ ଅର୍ଥନୈତିକ ଓ ସାମାଜିକ ସମସ୍ୟା ସମ୍ବନ୍ଧରେ ପ୍ରସ୍ତାବ ଗୃହୀତ ହେଲା । ନାନା ଦାବୀ ସମ୍ବଳିତ ଏକ ଘୋଷଣାପତ୍ର ସମ୍ମିଳନୀରେ ଧାର୍ଯ୍ୟ ହେଲା ଏବଂ ସେହି ଦାବୀକୁ ଭିତ୍ତି କରି ଓଡ଼ିଶାର ବିଭିନ୍ନ ଜିଲ୍ଲାରେ କୃଷକସଂଗଠନର କାର୍ଯ୍ୟ ଆମେ ଆରମ୍ଭ କରିଦେଲୁ । କିନ୍ତୁ ଉପରୋକ୍ତ ପ୍ରସ୍ତାବ ଏକ ଯୁଗାନ୍ତକାରୀ ସିଦ୍ଧାନ୍ତ ।

## ରାଜା ଓ ଜମିଦାର

ଓଡ଼ିଶାର ଅଧିକାଂଶ ଅଞ୍ଚଳରେ ସାମନ୍ତ ଗଡ଼ଜାତ ରାଜା ଓ ଚିରସ୍ଥାୟୀ ଇଲାକାରେ ଜମିଦାରମାନଙ୍କର ପ୍ରଭୁତ୍ୱ ଥିଲା । ସେମାନେ ପ୍ରଜାଙ୍କୁ ଖାଲି ଶୋଷଣ କରୁ ନ ଥିଲେ, କାଙ୍ଗାଳ ଅବସ୍ଥାରେ ପକାଉ ନ ଥିଲେ, ପଶୁଠାରୁ ହୀନ ବୋଲି ଜ୍ଞାନ କରୁଥିଲେ । ମୁଁ ନିଜ ଆଖିରେ ମୋର ଜନ୍ମସ୍ଥଳୀ ଗ୍ରାମରେ ଦେଖିଛି—ଜମିଦାର ଗ୍ରାମ ଭିତରେ ଚାଲିଗଲେ ଯେ ଯେଉଁଠି ବାଟରେ ଥିବେ, ନଚେତ୍ ଘରୁ ବାହାରି ସମସ୍ତେ ସାଷ୍ଟାଙ୍ଗ ପ୍ରଣିପାତ କରନ୍ତି, ସ୍ତ୍ରୀମାନେ ଘର ଆଢୁଆଳରେ ରହି ହୁଳହୁଳି ଧ୍ୱନି କରନ୍ତି । ଆମ ଗାଁ ଜମିଦାର ଥିଲେ ଅସ୍ଥାୟୀ ଜମିଦାର; ଗ୍ରାମର ସମସ୍ତ ଲୋକ କିଛି ତାଙ୍କର ରଯ୍ୟତ ନ ଥିଲେ, ମାତ୍ର ପୁନିଅା ଦିନ ଗ୍ରାମରେ ବାସ କରୁଥିବା ପ୍ରତ୍ୟେକ ପରିବାରକୁ ଜମିଦାର କଚେରୀକୁ ଯାଇ ଭେଟି ଦେବାକୁ ପଡ଼ୁଥିଲା । ଚାଷକାମ ଆରମ୍ଭ ହେଲେ ପ୍ରତ୍ୟେକ ପରିବାରରୁ ହଳ ଲଙ୍ଗଳ ବଳଦ ଯାଇ ପ୍ରଥମେ ଜମିଦାରଙ୍କ ଜମି ଚାଷ କରାଯାଉଥିଲା । ଖୋଦ ପ୍ରଜାଙ୍କଠାରୁ ଯାହା ବେଆଇନ ପାଉଣା ଓ ଅନ୍ୟ ଜିନିଷ ଆଦାୟ କରାଯାଉଥିଲା, ତାହା ବର୍ଣ୍ଣନାତୀତ । କୌଣସି କୌଣସି ଜମିଦାରୀରେ ନିଶ ରଖିବା, ଘରେ କାଉଁଲ କବାଟ ଲଗାଇବା, ଜମିଦାରଙ୍କ କଚେରୀ ସାମନାରେ ଜୋତାମାଡ଼ି ବା ଛତାଧରି ଯିବା ବାରଣ କରାଯାଇଥିଲା । କେହି ଅବଜ୍ଞା କଲେ ବରକନ୍ଦାଜ ପିଆଦା ଲଗାଇ ପ୍ରକାଶ୍ୟରେ ସମସ୍ତଙ୍କ ସାମନାରେ ତାକୁ ମାଡ଼ ଦେବା ଏକ ଅତି ମାମୁଲି ବିଷୟ ହୋଇଥିଲା ।

ଓଡ଼ିଶାକୁ ମୋଗଲବନ୍ଦୀ ଓ ଗଡ଼ଜାତ ଏହି ଦୁଇ ଭାଗରେ ବିଭକ୍ତ କରାଯାଇଥିଲା । ମୋଗଲବନ୍ଦୀ ଜମିଦାରଙ୍କ ଆଧିପତ୍ୟ ଓ ଦୌରାତ୍ମ୍ୟ ଅପେକ୍ଷା ବହୁଗୁଣ ଅଧିକ ଗଡ଼ଜାତ ମାନଙ୍କରେ ଚାଲିଥିଲା । ବ୍ରିଟିଶ ସରକାରର ଛତ୍ରଚ୍ଛାୟା ତଳେ ଗଡ଼ଜାତର ତଥାକଥିତ ରାଜାମାନେ ଅଖଣ୍ଡ କ୍ଷମତା ପାଇଥିଲେ । ଲୋକଙ୍କର ଧନ ଜୀବନ ସର୍ବଦା ବିପନ୍ନ ଥିଲା ।

ବେଠି ବେଗାରି ଥିଲା ଏକ ମାମୁଲି କଥା । ଆର୍ଥିକ ଶୋଷଣ ଅପେକ୍ଷା ଦମନ ଓ ସାମାଜିକ ପୀଡ଼ନରେ ଲୋକେ ହନ୍ତସନ୍ତ ହେଉଥିଲେ । ଓଡ଼ିଶାର ଦୁଇତୃତୀୟାଂଶ ଏଭଳି ଗଡ଼ଜାତ ଅଞ୍ଚଳ ହୋଇ ରହିଥିଲା । ଏହାକୁ ଅନ୍ଧାରି ମୂଲକ ବୋଲି କୁହାଯାଉଥିଲା । ତା ଭିତରକୁ ପ୍ରବେଶ ବାରଣ । ଭିତର ଅବସ୍ଥା ବାହାରକୁ ଆସୁ ନଥିଲା—କରୁଣ କାହାଣୀ ବା ଦୁର୍ଦ୍ଦଶା ବାହାରେ ପ୍ରକାଶିତ ହୋଇ ପାରୁ ନଥିଲା । ରାଜାଙ୍କ ସ୍ୱାର୍ଥରକ୍ଷା ନିମନ୍ତେ ବ୍ରିଟିଶ ସରକାର ଏକ Princes Protection Act ଜାରି କରିଥିଲେ । ଏହି ଆଇନ ବଳରେ ଗଡ଼ଜାତୀ ଶାସନ ବିଷୟରେ କିଛି ସମାଲୋଚନା ବା ସେହିଭଳି ସମ୍ବାଦ ପ୍ରକାଶ ଦଣ୍ଡନୀୟ ହେଉଥିଲା ।

## ପକ୍କା ମାହାଲ ଓ କଚା ମାହାଲ

ଓଡ଼ିଶାର ମୋଗଲବନ୍ଦୀ ବୋଲି ଯେଉଁ ଅଞ୍ଚଳଗୁଡ଼ିକ ଥିଲା ସେଥିରେ ରହିଥିଲା ପକ୍କାମାହାଲ ଓ କଚା ମାହାଲ, ଅର୍ଥାତ୍ ଚିରସ୍ଥାୟୀ ଜମିଦାରି ଓ ଅସ୍ଥାୟୀ ଜମିଦାରି ଏମିତି ଦୁଇଭାଗରେ ବିଭକ୍ତ ହୋଇଥିଲା । ଅଳ୍ପ କେତେକ ଅଞ୍ଚଳରେ ଜମିଦାରି ବଦଳରେ ସର୍ବରାକାରି ଓ ରୟତୱାରି ପ୍ରଥା ପ୍ରଚଳନ ଥିଲା । ଅର୍ଥାତ୍ ସେଠାରେ ମଧ୍ୟବର୍ତ୍ତୀ ଜମିଦାର ଶ୍ରେଣୀ ନ ଥାଇ ଖୋଦ ସରକାରଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ମାହାଲ ପରିଚାଳନା କରାଯାଉଥିଲା । କିନ୍ତୁ ଚିରସ୍ଥାୟୀ ଜମିଦାରି ମାହାଲଗୁଡ଼ିକ ମଧ୍ୟ ଗଡ଼ଜାତ ଅଞ୍ଚଳଠାରୁ କୌଣସି ଗୁଣେ ଊଣା ନ ଥିଲା—ସାମାଜିକ ଓ ଅର୍ଥନୀତିକ ଦିଗରୁ ଲୋକଙ୍କ ଅବସ୍ଥା ଆହୁରି ଶୋଚନୀୟ ହୋଇ ରହିଥିଲା । କନିକା, ଆଳି, ମଧୁପୁର, ପାରଳାଖେମଣ୍ଡି, ଖଲ୍ଲିକୋଟ, ପାରିକୁଦ, ଚିକିଟି, ଧରାକୋଟ ଓ ଜୟପୁର ଆଦି ଅଞ୍ଚଳର ଦୁର୍ଦ୍ଦଶା କୌଣସି ଗୁଣରେ ଊଣା ନଥିଲା । ଏଗୁଡ଼ିକ ଗଡ଼ଜାତ ରାଜାଙ୍କ ପରି ସୁବିଧା ଓ ଐଶ୍ୱର୍ଯ୍ୟ ଭୋଗ କରୁଥିଲେ । ଏମାନଙ୍କୁ ଜମିଦାର ନ କହି ରାଜା ବୋଲି ସମ୍ବୋଧନ କରାଯାଉଥିଲା । ବ୍ରିଟିଶ ସରକାର ମଧ୍ୟ କେତେକଙ୍କୁ ରାଜା ମହାରାଜା ଓ ନାଇଟ୍ ଉପାଧିରେ ଭୂଷିତ କରିଥିଲେ । ଏହି ପ୍ରଥାଟି ଥିଲା ବ୍ରିଟିଶ ସରକାରରେ ଶୋଷଣ ଯନ୍ତ୍ରର ମାଧ୍ୟମ । ଏକ ସାମନ୍ତବାଦୀ ବ୍ୟବସ୍ଥା ଉପରେ ସାମ୍ରାଜ୍ୟବାଦ ତିଷ୍ଠି ରହିଥିଲା । ଏହି ସାମନ୍ତବାଦୀ ବ୍ୟବସ୍ଥା ହେତୁ ଲୋକେ କ୍ରୀତଦାସ ପରି ହୀନ ଅବସ୍ଥାରେ ରହିଥିଲେ । ରାଜନୀତିକ ପରାଧୀନତା ସାଙ୍ଗେ ସାଙ୍ଗେ ଯେପରି ଅର୍ଥନୀତିକ ଶୋଷଣ ଓ ସାମାଜିକ ଉତ୍ପୀଡ଼ନ ଚାଲିଥିଲା ସେଥିରେ ଲୋକଙ୍କ ମେରୁଦଣ୍ଡ ଭାଙ୍ଗି ପଡ଼ିଥିଲା ।

ପ୍ରଥମାବସ୍ଥାରେ ଆମର ପ୍ରଧାନ କାର୍ଯ୍ୟ ଥିଲା—ଗ୍ରାମେ ଗ୍ରାମେ ବୁଲି ସଭା ସମିତି କରିବା, କୃଷକ ସଂଗଠନ କରିବା ଏବଂ ଜମିଦାରି ଅତ୍ୟାଚାର ବିରୁଦ୍ଧରେ ବଡ଼ ବଡ଼ ଚାଷୀ ସମ୍ମିଳନୀ କରିବା । କଂଗ୍ରେସ ସଭାସମିତିକୁ ବେଶି ଲୋକ ଆସୁ ନ ଥିଲେ—ଏହା ହେବା ସ୍ୱାଭାବିକ । କାରଣ କେବଳ ରାଜନୀତିକ ସମସ୍ୟାରେ ଏଭଳି ପ୍ରପୀଡ଼ିତ ଦୁଃଖୀ ଲୋକଙ୍କର କ'ଣ ବା ଆଗ୍ରହ ଜାତ ହେବ ! କଂଗ୍ରେସର ଯେଉଁମାନେ ନେତା ବା ଗ୍ରାମରେ

ସମର୍ଥକ, ସେମାନେ ସାଧାରଣତଃ ଜମିଦାର ଓ ମଧ୍ୟବର୍ତ୍ତୀ ଶ୍ରେଣୀର ଲୋକେ । ଜାତିପ୍ରେମ ଓ ସ୍ୱାଧୀନତା ପ୍ରତି ସେମାନଙ୍କର ବ୍ୟାକୁଳତା ଥିଲା, ମାତ୍ର ସାମାଜିକ ଦୃଷ୍ଟିକୋଣ ବଡ଼ ଅସ୍ପଷ୍ଟ ରହିଥିଲା । ସେମାନେ ନିଜର ଆର୍ଥିକ ସ୍ଥିତିରେ କୌଣସି ପ୍ରକାର ଆଞ୍ଚ ଆସିଲାଭଳି କାର୍ଯ୍ୟ କରିବାକୁ ପ୍ରସ୍ତୁତ ନ ଥିଲେ । ସେତେବେଳର ଗ୍ରାମର ଯାହା କୃଷି ଅର୍ଥନୀତିକ ବ୍ୟବସ୍ଥା ଥିଲା, ସେଥିରେ ମଧ୍ୟବର୍ତ୍ତୀ ଶ୍ରେଣୀଙ୍କ ସଂଖ୍ୟା ଥିଲା ନଗଣ୍ୟ—ନୂତନ ହୋଇ କିଛି ଗଢ଼ି ଉଠୁଥିଲା । ତେଣୁ କଂଗ୍ରେସ କର୍ମୀଙ୍କ ଭିତରେ ସଂଘର୍ଷମୂଳକ କାର୍ଯ୍ୟରେ ଲିପ୍ତ ହେବାଭଳି ମନୋବଳ ନ ଥିଲା । ଅଧିକାଂଶ ଶ୍ରେଷ୍ଠ ଶ୍ରେଷ୍ଠ ଜମିଦାର ଓ ବଡ଼ ଗୃହୀ ହୋଇଥିବାରୁ ବରଂ ଏଭଳି ଶ୍ରେଣୀର ଲୋକେ ବେଶି ନେତୃତ୍ୱ କରୁଥିଲେ ।

## ଜମିଦାରଙ୍କ ଅତ୍ୟାଚାର

ଥରେ କଟକ ଜିଲ୍ଲାର ଫତେଗଡ଼ ଗ୍ରାମର ଏକ କେନ୍ଦ୍ରରେ ମୁଁ ବନ୍ୟା କ୍ଷତିଗ୍ରସ୍ତ ଲୋକଙ୍କୁ ବେସରକାରୀ ରିଲିଫ ଚାଉଳ ବଣ୍ଟନ କାର୍ଯ୍ୟରେ ନିଯୁକ୍ତ ଥାଏ । ଏପରି ସମୟରେ ଖଣ୍ଡେ ଦୂରରେ ଦେଖିଲି ଜଣେ କଂଗ୍ରେସୀ ଶ୍ରେଷ୍ଠଜମିଦାର ତାଙ୍କ ଧାନଖଳାରେ କାର୍ଯ୍ୟ କରୁଥିବା ମୂଲିଆକୁ ନିର୍ମମ ଭାବରେ ପ୍ରହାର କରିବାକୁ ଲାଗିଲେ । ଏପରି ଦୃଶ୍ୟ ଦେଖି ମୋର ଯୁବପ୍ରାଣ ଅସ୍ଥିର ହେଲା—ମୁଁ ଧୈର୍ଯ୍ୟ ଧରି ପାରିଲି ନାହିଁ—ଘଟଣାସ୍ଥଳୀକୁ ତୀବ୍ର-ବେଗରେ ଦଉଡ଼ିଗଲି ଏବଂ ମୂଲିଆକୁ ପିଟୁଥିବା ଜମିଦାର ବନ୍ଧୁଙ୍କ ଉପରେ ଆକ୍ରମଣ କଲି । ସେ ସ୍ତମ୍ଭୀଭୂତ ହୋଇଗଲେ; ମୋ ମୁହଁକୁ ଜଳଜଳ ଅନାଇଲେ—ପାଖରେ ଲୁଣ୍ଠ ହୋଇଥିବା ମୂଲିଆ ବି ଚକିତ ହୋଇଗଲେ । ଏକ ବିଷମ ପରିସ୍ଥିତି । ମୁଁ ଜଣେ ସାଧାରଣ କଂଗ୍ରେସ କର୍ମୀ—ସେ ଅଞ୍ଚଳର ନୁହେଁ, ବାହାରୁ ଯାଇ ସେଠି ଲୋକଙ୍କୁ ସାହାଯ୍ୟ କରିବା ନିମନ୍ତେ ସ୍ୱେଚ୍ଛାସେବୀ କାର୍ଯ୍ୟ କରୁଥିଲି । ସେ ମୋର ବା କଅଣ କରିପାରନ୍ତେ ! ସମସ୍ତଙ୍କ ଆଗରେ ଅପମାନିତ ହେଲେ, ଲଜ୍ଜା ସହିବାକୁ ପଡ଼ିଲା । ପରେ ଆସି ମୋ ବିରୁଦ୍ଧରେ କଂଗ୍ରେସ ଉପର ମହଲରେ ଆପତ୍ତି କଲେ; ମାତ୍ର ଏହାର ଫଳସ୍ୱରୂପ ସେହିଦିନଠୁ ଖାଲି ସେ ନୁହନ୍ତି, ପାଖଆଖ ଅଞ୍ଚଳର ଯେତେ ଶ୍ରେଷ୍ଠ ଜମିଦାର ଥିଲେ, ମୁଁ ଫତେଗଡ଼ କେନ୍ଦ୍ରରେ ରହିଥିବା ଭିତରେ କେହି ତାଙ୍କ ମୂଲିଆକୁ ହାତ ଉଠାଇ ମାରିବା ସମ୍ବାଦ ମୁଁ ପାଇ ନ ଥିଲି । ମୂଲିଆ ଶ୍ରେଣୀ ଭିତରେ ବିଜୁଳି ବେଗରେ କଥାଟି ବ୍ୟାପିଗଲା । ମୁଁ ତ ନିର୍ଭୟରେ ଗ୍ରାମେ ଗ୍ରାମେ ବୁଲି ଚାଉଳ ବାଣ୍ଟୁଥିଲି—କେହି ମତେ କୌଣସି ବାଧା ନ ଦେବା ଦେଖି ଲୋକଙ୍କ ଭିତରେ ଆହୁରି ସାହସ ଦେଖାଦେଲା । ମତେ ଦେଖିବାଲାଗି କେନ୍ଦ୍ରକୁ ଦଳ ଦଳ ହୋଇ ଲୋକ ଆସିବାକୁ ଆରମ୍ଭ କଲେ । ଶ୍ରେଷ୍ଠ ଜମିଦାରମାନେ ଥିଲେ ଅଧିକ ପ୍ରତାପୀ ଓ ସେମାନଙ୍କ ପ୍ରକୋପ ପ୍ରତ୍ୟକ୍ଷ ଭାବରେ ଲୋକଙ୍କୁ ସହିବାକୁ ପଡ଼ୁଥିଲା । ବଡ଼ ଜମିଦାରମାନଙ୍କର ଶୋଷଣ ଗୁମାସ୍ତା ପିଅଦା ଜରିଆରେ ହେଉଥିଲା ପରୋକ୍ଷ ଭାବରେ; କିନ୍ତୁ ଲୋକଙ୍କର ସେହିଙ୍କ ପ୍ରାଣେ ଭୟ । ଏ ଭୟର ଆହୁରି ଏକ କାରଣ ହେଲା

ଅନ୍ଧ ଧର୍ମବିଶ୍ୱାସ । ନିଜର ଦାରିଦ୍ର୍ୟଲାଗି ଲୋକେ ଭାଗ୍ୟକୁ ଦୋଷ ଦେଉଥିଲେ । ଜମିଦାରଙ୍କୁ ଭଗବାନଙ୍କ ଅବତାର ବୋଲି ମଣୁଥିଲେ । ସତେ କି ପ୍ରଜାଙ୍କୁ ଶୋଷଣ କରିବା, ଲୁଣ୍ଠନ କରିବା ଏବଂ ପରଧନରେ ପୋଷିହେବା ତାଙ୍କର ଭଗବାନ ପ୍ରଦତ୍ତ ଅଧିକାର ଏବଂ ଦୁଃଖ-ଦାରିଦ୍ର୍ୟ ଭୋଗକରିବା ଆମର ବିଧିନିର୍ଦ୍ଦିଷ୍ଟ ଭାଗ୍ୟ !

ଏହି ଅନ୍ଧ ବିଶ୍ୱାସ ଖାଲି କୃଷକମାନଙ୍କ ଭିତରେ ରହିଥିଲା କହିବା ଭୁଲ—ସମାଜର ପ୍ରତ୍ୟେକ ସ୍ତରରେ ଏହା ରହିଥିଲା । ଆମେ ସବୁ ଯେଉଁ ସାମାଜିକ ବେଷ୍ଟନୀ ଭିତରେ ବଢ଼ିଥିଲୁ, ସେଥିରେ ଆମେ ଏସବୁ ଭେଦ ଓ ଦରିଦ୍ର ଧନୀ ଅବସ୍ଥାକୁ ଏକ ସ୍ୱାଭାବିକ ଓ ଜନ୍ମଗତ ଧାରା ବୋଲି ଧରିନେଉଥିଲୁ । ଆମେ ଯେତେ ପାଠ ପଢ଼ି ଉଚ୍ଚ ଶିକ୍ଷା ଲାଭ କରୁ ପଛକେ ଏଥିପ୍ରତି ଆମର କୌଣସି ଦୃଷ୍ଟି ନ ଥିଲା । କୃଷକ ଆନ୍ଦୋଳନ ବେଳେ ଏହି ଭଳି ସମସ୍ୟା ସବୁର ସମ୍ମୁଖୀନ ହେବାରୁ ମାର୍କସୀୟ ପୁସ୍ତକ ଅଧ୍ୟୟନର କେତେକ ତଥ୍ୟ ନିରାଟ ସତ୍ୟ ବୋଲି ମନରେ ଧାରଣା ଜନ୍ମିବାକୁ ଲାଗିଲା । ଧର୍ମରେ ଅନ୍ଧବିଶ୍ୱାସ ବାସ୍ତବିକ ଲୋକଙ୍କ ଭିତରେ ଅଫିମନିଶା ପରି କାମ କରୁଛି—ନଚେତ୍ ଏତେ ଦୁଃଖ କଷ୍ଟ, ଲୋକେ ନୀରବରେ ସହି ଯାଉଛନ୍ତି କିପରି ? ଏହାର ପ୍ରତିବାଦ କରୁ ନାହାଁନ୍ତି କାହିଁକି ? ଏକଥା ଆମେ ବୁଝାଇଲେ ସୁଦ୍ଧା ତାହା ଗ୍ରହଣ କରିବାକୁ ବି ପ୍ରସ୍ତୁତ ହେଉନାହାଁନ୍ତି । ଇଂରେଜ ଅମଳର କୋର୍ଟ ଅଦାଲତକୁ ଏହିଭଳି ବଡ ଲୋକଙ୍କ ସ୍ୱାର୍ଥ ରକ୍ଷାପାଇଁ ହୋଇଥିଲା । ହାକିମଙ୍କୁ ଧର୍ମାବତାର ବୋଲି କୁହାହେଉଥିଲା—ସେମାନେ ନିହିତ ସ୍ୱାର୍ଥରକ୍ଷା ଢଙ୍ଗରେ ନ୍ୟାୟ ଦେଉଥିଲେ - ସେ ସ୍ୱାର୍ଥ ବିରୁଦ୍ଧରେ କେହି ଗଲେ କିମ୍ବା ଗରିବ ଲୋକଙ୍କୁ ନ୍ୟାୟ ବିଚାର ଦେବାଲାଗି ଦାବୀ କଲେ, ତାଙ୍କୁ ବିଦ୍ରୋହି ବୋଲି ଧରିନିଆଯାଉଥିଲା ।

ସେତେବେଳେ ଓଡ଼ିଶା ବୋଇଲେ ଏକ ଡିଭିଜନାଲ କମିସନର ଅଧୀନରେ ରହିଥିବା ମାତ୍ର ପାଞ୍ଚଟି ଜିଲ୍ଲା—କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ଓ ଅନୁଗୁଳ । ଫୁଲବାଣୀ ଅନୁଗୁଳ ଜିଲ୍ଲା ଅନ୍ତର୍ଗତ ହୋଇ ରହିଥିଲା । ଏହା ବିହାର ଓଡ଼ିଶା ପ୍ରଦେଶର ଶାସନାଧୀନରେ ରହିଥିଲା । ଗଞ୍ଜାମ, କୋରାପୁଟ ଓ ଆଉ କେତେକ ଅଞ୍ଚଳ ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ବେଳେ ଆସି ଏଥିରେ ମିଶିଲା । ତେଣୁ ବିହାର ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ ହିଁ ଚାଷୀଙ୍କ ପାଇଁ ମୁଖ୍ୟ ଆଇନ ହୋଇ ରହିଥିଲା । ଏହି ଆଇନରେ ରହିଥିବା ଅଧିକାର ବି ପ୍ରଜାଙ୍କୁ ମିଳୁ ନ ଥିଲା । ଜମିଦାର ଓ ସରକାରୀ କର୍ତ୍ତୃପକ୍ଷ ଦୁହେଁ ମିଶି ଲୋକଙ୍କୁ ନାନାଭାବରେ ଶୋଷଣ କରୁଥିଲେ । ଲୋକେ କପାଳକୁ ଆଦରି ପଡ଼ିରହୁଥିଲେ । ଆମେ ଦେଶରେ ଶ୍ରେଣୀସଂଘର୍ଷ ସୃଷ୍ଟି କରିବା ନିମନ୍ତେ କୃଷକ ଓ ଶ୍ରମିକଶ୍ରେଣୀର ସଂଗଠନ ଆରମ୍ଭ କଲୁ । ମାତ୍ର ଗ୍ରାମାଞ୍ଚଳରେ ଜମିଦାର ଓ ପ୍ରଜାଶ୍ରେଣୀ ଭେଦସୃଷ୍ଟି କରାଗଲେ ସୁଦ୍ଧା କୃଷକଙ୍କୁ ସଙ୍ଘବଦ୍ଧ କରାଗଲା ବୋଲି କହିବା ହାସ୍ୟାସ୍ପଦ । ତାହା ଛଡ଼ା ଜମିଦାରଦ୍ୱାରା ପ୍ରପୀଡ଼ିତ କୃଷକ ଭିତରେ ଥିଲେ ବଡ଼ ଚାଷୀ, ଶ୍ରେଷ୍ଠ ଚାଷୀ ଓ କୃଷିମୂଲିଆ ।

ସେମାନଙ୍କ ଭିତରେ ପରସ୍ପର ସ୍ୱାର୍ଥ ବିରୋଧ କରୁଥିଲା । "ଦୁନିଆର ସର୍ବହରା ଶ୍ରେଣୀ ଏକଜୁଟ ହେବା" ଧ୍ୱନି ଏମାନଙ୍କ ଆଗରେ ନିରର୍ଥକ ହେଉଥିଲା ଏବଂ ତାର ତାତ୍ପର୍ଯ୍ୟ ସେମାନେ ବୁଝିପାରୁ ନ ଥିଲେ । ତେଣୁ ଆମେ କୃଷକ ସଂଘ ଗଢ଼ି ନୂତନ ଧ୍ୱନି ଦେଲୁ "ଚାଷୀ ମୂଲିଆ ଏକଜୁଟ ହୁଅ" । ତାଙ୍କ ସମ୍ମୁଖରେ ଜମିଦାରୀ ଅତ୍ୟାଚାରମୁଖୀ ହୋଇ ରହି-ଥିବାରୁ ଏହି ଧ୍ୱନି ତାଙ୍କ ମନକୁ ସ୍ପର୍ଶ କଲା ଏବଂ ଗ୍ରାମେ ଗ୍ରାମେ କୃଷକ ସଂଘ ଗଢ଼ିଉଠିଲା ।

ଏହି ଆନ୍ଦୋଳନ ମୁଖ୍ୟତଃ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାରେ ସୀମାବଦ୍ଧ ରହିଥିଲା । ଅବଶ୍ୟ ମାନ୍ଦ୍ରାଜ ପ୍ରଦେଶର ଅନ୍ତର୍ଭୁକ୍ତ ହୋଇ ରହିଥିବାବେଳେ ଗଞ୍ଜାମରେ ଜମିଦାରୀ ରୟତ ଆନ୍ଦୋଳନ କିଞ୍ଚିତ୍ ପରିମାଣରେ ଅଗ୍ରଗତି କରିଥିଲା । ଗଞ୍ଜାମ ଓ କୋରାପୁଟ ଜିଲ୍ଲା ବି କଂଗ୍ରେସ ଦୃଷ୍ଟିରୁ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ଅନ୍ତର୍ଭୁକ୍ତ ହୋଇ ରହିଥିବାରୁ ଏସବୁ ଅଞ୍ଚଳର ରାଜନୀତିକ କାର୍ଯ୍ୟ ଏକତ୍ର କରାଯାଉଥିଲା । ଏହି ସୂତ୍ରରେ ଗଞ୍ଜାମ ରୟତ ଆନ୍ଦୋଳନ ସହ କ୍ରମେ ସଂପର୍କ ସ୍ଥାପିତ ହେଲା ଏବଂ ଆମ ଭିତରୁ ଶ୍ରୀ ନବକୃଷ୍ଣ ଚୌଧୁରୀ ଏସବୁ ଅଞ୍ଚଳ ଗସ୍ତ କରି ବଡ଼ ବଡ଼ ରୟତ ସଭାମାନଙ୍କରେ ଭାଷଣ ଦେଲେ ଏବଂ ପ୍ରଭାବଶାଳୀ ଜମିଦାର ଓ ବଡ଼ ବଡ଼ ରୟତଙ୍କ ମନରେ ଏଥିରେ ଚାଞ୍ଚଲ୍ୟ ସୃଷ୍ଟି ହେଲା ।

ଓଡ଼ିଶାରେ ସୋସିଆଲିଷ୍ଟ ଓ କୃଷକ ଆନ୍ଦୋଳନର ଏହା ଅତ୍ୟନ୍ତ ପ୍ରାଥମିକ ଅବସ୍ଥା । ଏଥିରେ ଅନ୍ୟମାନଙ୍କ ଅପେକ୍ଷା ଶ୍ରୀମତୀ ମାଳତୀ ଚୌଧୁରୀ ଓ ଗୌରାଙ୍ଗ ଚରଣ ଦାସଙ୍କ ଦାନ ଅତୁଳନୀୟ । ସୁଦୂର ଗ୍ରାମ ଗହଳରେ ବୁଲି ବୁଲି କମ୍ପା ଗୋରୁଗାଡ଼ିରେ ଯାଇ ଜମିଦାରୀ ମହାଜନୀ ଅତ୍ୟାଚାର ବିରୁଦ୍ଧରେ ତାଙ୍କ ପ୍ରଚାର ଲୋକମନକୁ ସ୍ପର୍ଶ କଲା ଏବଂ ବହୁ କପଟ ମଫସଲରେ କେତେକ ଧନୀ ଚାଷୀର ଆନ୍ଦୋଳନର ମୁଖ୍ୟ ହୋଇ ବାହାରି ଆସିଲେ—ସେ ଅଞ୍ଚଳର କାର୍ଯ୍ୟଭାର ଗ୍ରହଣ କଲେ । ପଟ୍ଟାମାହାଲ ଜମିଦାରୀ ଇଲାକାରେ ଏହା ଜଙ୍ଗଲରେ ନିଆଁ ଲାଗିଲା ଭଳି ବ୍ୟାପିଗଲା । ମାଳତୀ ଚୌଧୁରୀ ଜଣେ ଶିକ୍ଷିତା ମହିଳା, ସମ୍ଭ୍ରାନ୍ତ ବଂଶର । ସେ ନିଜର ସୁଖସମ୍ଭୋଗ ତ୍ୟାଗ କରି ନିଜେ ବଇଣୀ ନିଜେ ଧରି ଗୀତ ଗାଇ ଚାଷୀଙ୍କୁ ଯେ ମତାଇଲେ ଏବଂ ଗୌରାଭାଇ (ଗୌରାଙ୍ଗ ଚରଣ ଦାସ)ଙ୍କ ସହ ଯେ ବୁଲିଲେ ଓ ଗାଁରେ ଚାଷୀଘରର ଅତିଥି ହୋଇ ରହିଲେ, ଏହା ଲୋକଙ୍କ ମନରେ ଏକ ଅତି ଆପଣାର ଭାବ ସୃଷ୍ଟି କଲା ଏବଂ ତାଙ୍କ ପ୍ରତି ପ୍ରଗାଢ଼ ବିଶ୍ୱାସ ଜନ୍ମିଲା । ମାର୍କ୍ସୀୟ ଶାସ୍ତ୍ରରେ ଲେଖାଅଛି— ଶ୍ରେଣୀହୀନ ସମାଜ ଗଠନ ଲାଗି ଯେଉଁମାନେ କାର୍ଯ୍ୟ କରିବେ, ସେମାନେ ପ୍ରଥମେ ନିଜର ଶ୍ରେଣୀ ଭୁଲିଯିବା ଉଚିତ । ଏହା ଖାଲି କଥାରେ ବା ମନରେ ଗ୍ରହଣ କରିବାର କିଛି ଅର୍ଥ ନାହିଁ—ପ୍ରକୃତ ଜୀବନରେ ଏହା ପ୍ରତିପାଳିତ ହେବା ଉଚିତ । ଶ୍ରୀମତୀ ମାଳତୀ ଚୌଧୁରୀ ଏହା ବାସ୍ତବିକ ପାଳନ କଲେ ଏବଂ ୪୦।୫୦ ବର୍ଷ ହେଲା ସେହିପରି ସାଧାରଣ ଦରିଦ୍ର ଜୀବନ ଯାପନ କରୁଛନ୍ତି—କ୍ଷମତା ବାହାରେ ରହି ଲୋକଙ୍କ ଭିତରେ ରହିଛନ୍ତି, ସେମାନଙ୍କ ସମସ୍ୟା ସହ ପୂର୍ଣ୍ଣରୂପେ ଜଡ଼ିତ ହୋଇଛନ୍ତି । କୃଷକ ଆନ୍ଦୋଳନ ବହୁଦିନରୁ ଚାଲିଛି ।

କେତେ ରାଜନୀତକ ପରିବର୍ତ୍ତନ ଘଟିଗଲଣି; ମାତ୍ର ମାଳତୀ ଚୌଧୁରୀ ଓଡ଼ିଶାର ଗଞ୍ଜାମର ମାଳ ଅଞ୍ଚଳ ଏବଂ କୋରାପୁଟର ଅଭି ନିବିଡ଼ ଜଙ୍ଗଲରେ ବାସ କରୁଥିବା ଆଦିବାସୀଙ୍କ ଭିତରେ ଏବେ ବି ସଂପର୍କ ରଖିଛନ୍ତି ଏବଂ ବୃଦ୍ଧା ଓ ଭଗ୍ନସ୍ୱାସ୍ଥ୍ୟ ହୋଇ ମଧ୍ୟ ଅଶେଷ ଶାରୀରିକ ଦୁଃଖ କଷ୍ଟ ବରଣ କରି ତାଙ୍କ ଭିତରେ କାର୍ଯ୍ୟ କରିବା ନିଜ ଜୀବନର ବ୍ରତ କରିନେଇଛନ୍ତି । ଓଡ଼ିଶାରେ ତ ନୁହେଁ, ଭାରତବର୍ଷରେ ଏଭଳି ଉଦାହରଣ ଖୁବ୍ ବିରଳ ।

ଯାହାହେଉ ମାଳତୀ ଚୌଧୁରୀ ଇତ୍ୟାଦିଙ୍କ କଠୋର ପରିଶ୍ରମ ଓ କୃଷକ ଶ୍ରେଣୀ ସଂଗଠନ ନିମନ୍ତେ ପ୍ରଗାଢ଼ ଉଦ୍ୟମ ଫଳରେ ଏକ ଶକ୍ତିଶାଳୀ କୃଷକ ସଂଗଠନ ଗଢ଼ି ଉଠିଲା ଏବଂ ଓଡ଼ିଶା ଜମିଦାରମାନଙ୍କର ଏହି ଆନ୍ଦୋଳନ ଚକ୍ଷୁଶୂଳ ହୋଇଉଠିଲା । ଜମିଦାର-ମାନେ ଏହି ଆନ୍ଦୋଳନକୁ ଦବାଇ ଦେବା ନିମନ୍ତେ ନାନାପ୍ରକାର ଅସତ୍ ଉପାୟ ଅବଲମ୍ବନ କଲେ ଏବଂ ବ୍ରିଟିଶ ସରକାରର ଶାସନକଳ ପୂର୍ଣ୍ଣରୂପେ ସେମାନଙ୍କୁ ସାହାଯ୍ୟ କରିଥିଲା । ନାନା ମିଥ୍ୟା ମକଦ୍ଦମା ଓ ଫନ୍ଦି ଫିକର ସୃଷ୍ଟି ହେଲା । ପୁଲିସ ଚାଷୀଙ୍କ ନାମରେ ୧୦୭ ଦଫାରେ ଓ ଅନ୍ୟାନ୍ୟ ନାନା ମିଥ୍ୟା ମକଦ୍ଦମା ବିନା କାରଣରେ ଦାଖଲ କରୁଥିଲା ।

## ବିଚିତ୍ର ଅଦାଲତ ରହସ୍ୟ

ଥରେ ମୁଁ ମୋର ଗ୍ରାମ କଟକ ଜିଲ୍ଲାର ସାଲେପୁର ଥାନାର ଖଣ୍ଡସାହିକୁ ଯାଇଥିଲି । ସେତେବେଳକୁ ମୁଁ ଥାଏ ଉତ୍କଳ ପ୍ରାଦେଶିକ କୃଷକ ସଂଘର ଯୁଗ୍ମ ସଂପାଦକ । ସେଠାରେ ଆଗରୁ କୃଷକ ସଂଘ ସ୍ଥାପିତ ହୋଇଥିଲା ଏବଂ ମୁଁ ଯିବାଦିନ ସେମାନେ ଏକ ସଭା ଡ଼ାକିଥିଲେ । ସେ ସଭାରେ ମୁଁ ଭାଷଣଦେଇ ଜମିଦାରଙ୍କ କୋଠାକୁ ଦେଖାଇ ତାହାର ଇଟା ଚୂନକୁ ଚାଷୀଙ୍କ ରକ୍ତ ହାଡ଼ ସହ ତୁଳନା କଲି—କାରଣ ଏହି କୋଠା ତିଆରିର ଅଧିକାଂଶ କାର୍ଯ୍ୟ ବେଠିଦ୍ୱାରା କରାଯାଇଥିଲା । ଏପରି ପ୍ରତ୍ୟକ୍ଷ ଆକ୍ରମଣ, ପୁଣି ଗ୍ରାମର ଜଣେ ଯୁବକ ଦ୍ୱାରା ହେବାରୁ ଜମିଦାରଙ୍କ ଦେହରେ ନିଆଁ ଲାଗିଗଲା ଏବଂ ସେ ବଡ଼ ଅପମାନିତ ବୋଧକଲେ । ଆମେ ତାଙ୍କର ପ୍ରତ୍ୟକ୍ଷ ପ୍ରଜା ହୋଇ ନ ଥିବାରୁ ମୋର ପିତା ଓ ପରିବାର ଉପରେ କିଛି ଦାଉ ସାଧିବା ସମ୍ଭବ ହେଲା ନାହିଁ । ଏଣେ ମୁଁ ବି ତ ଗାଁ ବାହାରେ ଅଧିକାଂଶ ସମୟ ବିତାଉଥିଲି ଏବଂ ରାଜନୀତକ କାର୍ଯ୍ୟରେ ଲିପ୍ତ ରହିଥିଲି—ତେଣୁ ମୋର ବା କି କ୍ଷତି କରିପାରନ୍ତେ ? ତେଣୁ ସେଠାକାର ଦୁଇଜଣ ସଂଗଠକ ଓ ମୋତେ ଜବତ୍ କରିବା ନିମନ୍ତେ ଏକ ମିଥ୍ୟା ମକଦ୍ଦମା ଦାଏର କରାଗଲା । ବନ୍ଧୁପୁର ନାମକ ଏକ ଗ୍ରାମ ଯାହାକି ମୁଁ ଆଦୌ ଦେଖିନଥିଲି, ସେହିଠାରେ ଏକ ସଭାରେ ମୁଁ ଗାଳିଗୁଲଜ କରିଥିବା ଅଭିଯୋଗ କରି ଯଦୁମଣି ପଣ୍ଡା ନାମକ ଏକ ବ୍ୟକ୍ତି କଚେରୀରେ ମକଦ୍ଦମା ଦାୟର କଲେ । ସେ ବ୍ୟକ୍ତି ମତେ ଚିହ୍ନନ୍ତି ନାହିଁ କିମ୍ବା ମୁଁ ତାଙ୍କୁ କେବେ ପୂର୍ବରୁ ଦେଖି ନ ଥିଲି—

କଚେରୀରେହିଁ ଦେଖାସାକ୍ଷାତ୍ ଏବଂ କଚେରୀରେ ମତେ ଦେଖି ସେ ଚହ୍ନଟ କଲେ । କଚେରୀ ଗୁଡ଼ିକ କିଭଳି ମିଥ୍ୟା ଛଳନାର କେନ୍ଦ୍ର, ଏହା ଏହି ମକଦ୍ଦମାରୁ ପ୍ରମାଣିତ ହେଲା ।

ଏହି ମକଦ୍ଦମାରେ ବହୁ ଗଣ୍ୟମାନ୍ୟ ବ୍ୟକ୍ତି ସାକ୍ଷୀଦେଇ କହିଲେ ଯେ ଉତ୍କଳଦନ ମୁଁ ସେଠାରେ ନଥିଲି । ସାଲେପୁର ପୁଲିସ ଥାନାର ରେକର୍ଡ଼ ବାହାର କରି ଦେଖାଗଲା ଯେ ଉତ୍କଳଦନ ମୁଁ ଅନ୍ୟତ୍ର ଯାଇ କୃଷୀସଭା କରିଛି । ଜମିଦାର ଥିଲେ ରାୟସାହେବ ଏବଂ ତତ୍କାଳୀନ ସଦର ଏସ. ଡି. ଓ. ବି ଥିଲେ ରାୟସାହେବ—ବ୍ରିଟିସ ସରକାରର ଖେତାବ ଧାରୀ—ବିଶେଷ ପ୍ରଭୁଭକ୍ତ ବୋଲି ପ୍ରମାଣିତ—ତେଣୁ ନ୍ୟାୟ ତାଙ୍କ ସପକ୍ଷରେ ଯିବ । ଏହିସବୁ ନିର୍ଦ୍ଦିଷ୍ଟ ପ୍ରମାଣ ସତ୍ତ୍ୱେ ମତେ ଓ ମୋର ଅନ୍ୟ ଦୁଇଜଣ ସାଥିଙ୍କି ୩ମାସ ସଶ୍ରମ କାରାଦଣ୍ଡ ଓ ୩୦ ଟଙ୍କା ଜୋରିମାନା କରାଗଲା । ଏହାର ଅପିଲ ଆମେ ଉପର ହାକିମଙ୍କ ପାଖରେ ଦାଖଲ କଲୁ ଏବଂ ସେଠାରେ ଖଲାସ ହେଲୁ । ମାତ୍ର ଯେଉଁଭଳି ଭାବରେ ଖଲାସ ହେଲୁ ସେଥିରେ ତଥାକଥିତ ବ୍ରିଟିଶ ନ୍ୟାୟ ଅଦାଲତରେ ନିରପେକ୍ଷ ବିଚାରର ପ୍ରତ୍ୟକ୍ଷ ଅଭିଜ୍ଞତା ମିଳିଲା । ବିଚାରକଙ୍କ ବନ୍ଧୁ, ମୋ ତରଫରୁ ଓକିଲାତି କଲେ ଏବଂ ତାଙ୍କର ଅନ୍ୟ ଏକ ଅତି ଘନିଷ୍ଟ ସମ୍ପର୍କୀୟ ବନ୍ଧୁ ମୋ ତରଫରୁ ତାଙ୍କୁ ଯାଇ କହିଲେ । ଫଳସ୍ୱରୂପ ଆମେ ସବୁ ଖଲାସ ହୋଇଗଲୁ । ଏହି ୩ଜଣ ବ୍ୟକ୍ତି ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ଖୁବ୍ ମୁଖ୍ୟସ୍ଥାନ ଅଧିକାର କରିଥିଲେ ଏବଂ ସମ୍ମାନାସ୍ପଦ ବ୍ୟକ୍ତି ମଧ୍ୟ ଥିଲେ । ଯେଉଁ ଉପାୟରେ ଆମେ ଖଲାସ ହୋଇଥାଉ ପଛକେ, ଏଥିରେ ନ୍ୟାୟ ମିଳିଲା; କାରଣ ଆମ ଉପରେ ଦଣ୍ଡବିଧାନ ନିଛକ ମିଥ୍ୟା ଉପରେ ପ୍ରତିଷ୍ଠିତ ଥିଲା । ସରକାରୀ ଶାସନକଳ ଖାଲି ନୁହେଁ, ସରକାରୀ ଅଦାଲତ ମଧ୍ୟ କିଭଳି ଧନୀ ଓ ସମାଜର ପ୍ରତିପତ୍ତିଶାଳୀ ବ୍ୟକ୍ତିଙ୍କୁ ସମର୍ଥନ କରୁଥିଲା, ତାହା ଏଇଥିରୁ ବୁଝାପଡ଼ିବ ।

ପରବର୍ତ୍ତୀ କାଳରେ ଯେତେବେଳେ କୃଷକ ଆନ୍ଦୋଳନ ଓ ସଭାସମିତି କ୍ରମଶଃ ବ୍ୟାପକରୂପ ଧାରଣ କଲା, ସେତେବେଳେ କୃଷୀମାନଙ୍କୁ ଜବତ କରିବା ନିମନ୍ତେ ହଇରାଣ ହରକତରେ ପକାଇ ଅସ୍ତବ୍ୟସ୍ତ କରିବାଲାଗି ଏଭଳି ମିଥ୍ୟା ଜାଲ୍ ମକଦ୍ଦମାରେ ଜଡ଼ିତ କରାଗଲା—ଯେମିତିକି ଖର୍ଚ୍ଚାନ୍ତ ହୋଇ ସେମାନେ ଆଉ କୃଷୀସଭା କାର୍ଯ୍ୟରେ ସହଯୋଗ ନ କରିବେ । ମାତ୍ର ଏ ଚେଷ୍ଟା ସଫଳ ହେଲା ନାହିଁ । ଓଡ଼ିଶାରେ ଆମେ ଖୁବ୍ ସଗଠିତ କୃଷକ ଆନ୍ଦୋଳନ ଠିଆ କରାଇପାରିଲୁ । ଏହି ଆନ୍ଦୋଳନ କରିଆରେହିଁ ସୋସଲିଷ୍ଟ ପାର୍ଟି ଶକ୍ତିଶାଳୀ ହୋଇପାରିଲା ।

ଆମେ ତ ବିଧିବଦ୍ଧଭାବରେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ଶାଖା ହୋଇ ଯାଉଥିଲୁ—ସି. ଏସ. ପି ଉଦ୍ୟମରେ ନିଖିଳ ଭାରତ ସ୍ତରରେ ମଧ୍ୟ କିଷାନ ସଭା ସ୍ଥାପିତ ହେଲା—ଆମର କୃଷକ ସଂଘର କାର୍ଯ୍ୟ ତାହିଁ ସହ ସଂଲଗ୍ନ ହୋଇଗଲା । ନବକୃଷ୍ଣ ଚୌଧୁରୀ

ନିଖିଳ ଭାରତ କଂଗ୍ରେସ ସୋସଲିଷ୍ଟ ପାର୍ଟିର କାର୍ଯ୍ୟକାରୀ ସମିତିର ସଦସ୍ୟ ରହିଥିଲେ ଏବଂ ଏଥିରେ ମଧ୍ୟ ରହିଲେ । ଅନ୍ୟ ପ୍ରଦେଶ ଗୁଡ଼ିକରେ ଶ୍ରମିକ ସଂଘ ଇତ୍ୟାଦି ସ୍ଥାପନା କରା-ଯାଇଥିଲା; ମାତ୍ର ଆମ ଏଠାରେ କିଛି କଳକାରଖାନା ନ ଥିବାରୁ ଏହାହିଁ ଆମର ମୁଖ୍ୟ କାର୍ଯ୍ୟ ହୋଇ ରହିଲା । କଂଗ୍ରେସ କାର୍ଯ୍ୟ ମାନ୍ଦା ଥିଲା । କମ୍ୟୁନିଷ୍ଟ ପାର୍ଟି ଏଠାରେ ସଂଗଠିତ ହୋଇ ନଥିଲା । ତେଣୁ ଆମ ପାର୍ଟି ଓଡ଼ିଶାର ସବୁ ବାମପନ୍ଥୀ ଓ ପ୍ରଗତିବାଦୀ ଯୁବକ ଗୋଷ୍ଠୀଙ୍କ ପାଖରେ ଆଦୃତ ହେଲା ଏବଂ ବହୁ ଛାତ୍ର ଯୁବକ ଏହି ସମ୍ମିଳନୀମାନଙ୍କରେ ଯୋଗ ଦେବାକୁ ଲାଗିଲେ । ଏହି ସମୟରେ ହିଁ ଭଗବତୀ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ, ବିଶ୍ୱନାଥ ପଶାୟତ, ସଚ୍ଚି ରାଉତରାୟ, ରାମକୃଷ୍ଣ ପତି ଓ ମନମୋହନ ମିଶ୍ରଙ୍କ ପରି ଉଚ୍ଚ ଶିକ୍ଷିତ ଯୁବକମାନେ ପାର୍ଟି କାର୍ଯ୍ୟରେ ସଂପୃକ୍ତ ହୋଇଗଲେ । ଆଗରୁ ପୁରୁଣା କଂଗ୍ରେସ କର୍ମୀଙ୍କ ଭିତରୁ କେତେକଙ୍କର ପାର୍ଟିରେ ଯୋଗଦାନ କଥା ଉଲ୍ଲେଖ କରିଛି । ସେମାନେ ନିଜ ନିଜ ଅଞ୍ଚଳରେ କାର୍ଯ୍ୟ ଆରମ୍ଭ କରିଦେଲେ । ପ୍ରାଣନାଥ ପଟ୍ଟନାୟକ ପ୍ରଥମ କଂଗ୍ରେସ ସୋସଲିଷ୍ଟ ପାର୍ଟି ସମ୍ମିଳନୀରେ ସଭାପତି ହୋଇଥିଲେ । ସେ କାଶୀ ବିଦ୍ୟାପୀଠରୁ ଶାସ୍ତ୍ରୀ ଉପାଧି ପାଇ ଫେରିଥାଆନ୍ତି—ସେଇଠାରୁ ଶିକ୍ଷା ପାଇ ଗୁରୁଚରଣ ପଟ୍ଟନାୟକ ମଧ୍ୟ ଆସି ପାର୍ଟି କାର୍ଯ୍ୟରେ ମିଶିଲେ । ତେଣୁ ଓଡ଼ିଶା ପାର୍ଟିରେ ଗ୍ରାମାଞ୍ଚଳରେ କାର୍ଯ୍ୟ କରୁଥିବା, ଜେଲ ଭୋଗିଥିବା କଂଗ୍ରେସ କର୍ମୀ ଓ ଶିକ୍ଷିତ ବୁଦ୍ଧିଜୀବୀ ଯୁବକମାନଙ୍କର ଏକ ଅଭୂତ ମିଳନ ହେଲା । ବାସ୍ତବିକ କୃଷକ ସମ୍ମିଳନୀ ଇତ୍ୟାଦି ହେତୁ ଗାଁମାନଙ୍କରେ ଖାଲି ଘରୁଆ ବଡ଼ ଚାଷୀ ନୁହନ୍ତି, ବହୁ ଅର୍ଦ୍ଧଶିକ୍ଷିତ ଯୁବକ, ଶିକ୍ଷକ ଆଦି କ୍ରମେ ଆମ ସାଙ୍ଗକୁ ଆସିଗଲେ । ନୂଆ ନୂଆ କର୍ମୀ ବାହାରିଲେ । ଓଡ଼ିଶାରେ କଂଗ୍ରେସ ଛଡ଼ା ଅନ୍ୟ କୌଣସି ରାଜନୀତିକ ସଂଗଠନ ନଥିଲା । କଂଗ୍ରେସ କାର୍ଯ୍ୟ ବୋଇଲେ ସେପରି କିଛି ନିର୍ଦ୍ଦିଷ୍ଟ କାମ ବି ନଥିଲା । କଂଗ୍ରେସ କମିଟି ରହିଥାଏ ଏବଂ ବେଳେ ବେଳେ ବୈଠକ ହୁଏ କିମ୍ବା ନିର୍ବାଚନବେଳେ ତତ୍ପରତା ଦେଖିବାକୁ ମିଳେ । ଅନ୍ୟ ସମୟରେ ସେମାନେ ନିଜ ନିଜ ଧନ୍ଦାରେ ନିଯୁକ୍ତ ଥାଆନ୍ତି । ସେଥିରୁ ପୁଣି ଗାନ୍ଧିଜୀଙ୍କ ରଚନାତ୍ମକ କାର୍ଯ୍ୟରେ ବିଶ୍ୱାସ କରୁଥିବା ଲୋକେ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ସକ୍ରିୟ କଂଗ୍ରେସ କାର୍ଯ୍ୟରୁ ଅଲଗା ହୋଇ ଗାଁରେ ରହି ଗ୍ରାମସଂଗଠନ କାର୍ଯ୍ୟରେ ଲାଗିଥାଆନ୍ତି । ଯେଉଁମାନେ କଂଗ୍ରେସର କର୍ମକର୍ତ୍ତା ହୋଇ ରହିଥାଆନ୍ତି, ସେମାନେ ଅବଶ୍ୟ ମଝିରେ ମଝିରେ ଦେଶର ବିଭିନ୍ନ ସମସ୍ୟା ଉପୁଜିଲେ ସେ ସମ୍ବନ୍ଧରେ ନିଜର ପ୍ରତିକ୍ରିୟା ପ୍ରକାଶ କରନ୍ତି । ସେତେବେଳକାର ପରିସ୍ଥିତି ଏବେ ସ୍ମରଣ କଲାବେଳକୁ ମନେହେଉଛି, ସତେ କି ଓଡ଼ିଶାର ରାଜନୀତିକ ଜୀବନରେ ଏକ ଶୂନ୍ୟତା ପଡ଼ିଥିଲା । କଂଗ୍ରେସ ସୋସଲିଷ୍ଟ ପାର୍ଟି ଓଡ଼ିଶାର ରାଜନୀତିକ ଜୀବନକୁ ସଜୀବ କରାଇ ପାରିଲା । ଏହାର କାର୍ଯ୍ୟ ମଧ୍ୟ ବ୍ୟାପକ ହେଲା ।

ଏତେବେଳେ ହରେକୃଷ୍ଣ ମହତାବ କେବଳ ବନ୍ୟା ଆଦି ଆସିଲେ ସେଥିରେ ସାହାଯ୍ୟ କରିବା ଛଡ଼ା ନିଜ ଗ୍ରାମରେ କର୍ମମନ୍ଦିର ସ୍ଥାପନା କରି ନିଜକୁ ସଂଗଠନ କାର୍ଯ୍ୟରେ ସୀମାବଦ୍ଧ

ରଖିଥିଲେ । ପଣ୍ଡିତ ନୀଳକଣ୍ଠ ଦାସ କେନ୍ଦ୍ର ଆସେମ୍ବ୍ଲିରେ ମେମ୍ବର ଥିବାରୁ ଅଧିକ ସକ୍ରିୟ ଥିଲେ ।

## ଶ୍ରୀ ସାରଙ୍ଗଧର ଦାସ

ଶ୍ରୀ ସାରଙ୍ଗଧର ଦାସ ବାଙ୍ଗାଲୋରରେ ଏକ ଚିନି କାରଖାନାରେ ବଡ଼ ଚାକିରି କରୁଥିଲେ । ସେ ନବବାବୁଙ୍କର ପରମ ବନ୍ଧୁ ଥିଲେ ଏବଂ ତାଙ୍କ ପରିବାର ସହିତ ତାଙ୍କର ଘନିଷ୍ଠତା ଥିଲା । ତାଙ୍କ ସ୍ତ୍ରୀ ଫ୍ରେଡ଼ା (ହାସ୍‌ୱେଥ) ଦାସଙ୍କୁ ନେଇ ସେ ଆସି କଚ୍ଛଦନ ଓଡ଼ଶାରେ କଟାଉଥିଲେ । ଆମେମାନେ ଯେ କୃଷୀମାନଙ୍କୁ ଏକାଠି କରୁଛୁ ଏବଂ ଗାଁ ସଭା-ମାନଙ୍କରେ କୃଷୀ ଏକଜୁଟ ହୋଇ ତାଙ୍କ ସମସ୍ୟା ଆଲୋଚନା କରୁଛନ୍ତି, ଏହା ଶୁଣି ତାଙ୍କ ମନରେ ବଡ଼ କୌତୂହଳ ଜାତହେଲା । ସେ ପୂରା ସାହେବୀ ପୋଷାକ ପିନ୍ଧି କେତେକ କୃଷୀ ସଭା ଦେଖିବାକୁ ଗଲେ । କୃଷକମାନଙ୍କ ଭିତରୁ ଲୋକ ବାହାରି ସଭାମାନଙ୍କରେ ନିଜନିଜର ଦୁର୍ଦ୍ଦଶା ଓ ଜମିଦାରୀ ଉତ୍ପୀଡ଼ନ କାହାଣୀ ବର୍ଣ୍ଣନା କରିପାରୁଛନ୍ତି ଜାଣି ସେ ଖୁବ୍ ଆନନ୍ଦିତ ଓ ଉତ୍ସାହିତ ହେଲେ । ପରେ ସେ ତାଙ୍କର ସବୁ ସୁଖସମ୍ଭୋଗ ତ୍ୟାଗକରି ସାଧାରଣ କର୍ମୀ ପରି ଜୀବନଯାପନ କଲେ ଏବଂ ଏହି ସମୟରେ ଗଡ଼ଜାତରେ ପ୍ରଜା ଆନ୍ଦୋଳନ ସଗଠନ ଆରମ୍ଭ କରିବା ନିମନ୍ତେ ସେ ମନସ୍ଥ କଲେ ।

ଗଡଜାତଗୁଡ଼ିକ ପୂରାପୂରି ଅନ୍ଧାରାତ୍ମକ ହୋଇ ରହିଥିଲା ଏବଂ ଢେଙ୍କାନାଳ, ତାଳଚେର ପରି ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟଗୁଡ଼ିକରେ ଅକଥନୀୟ ଅତ୍ୟାଚାର ଚାଲିଥିଲା । ସାରଙ୍ଗଧରବାବୁ ନିଜେ ଢେଙ୍କାନାଳ ରାଜାଙ୍କ କୋପଦୃଷ୍ଟିରେ ପଡ଼ିଥିଲେ ଏବଂ ନିଜର ଜନ୍ମସ୍ଥଳୀ ଢେଙ୍କାନାଳରେ ଏକ ଚିନି ଶିଳ୍ପ ଓ ବିସ୍ତୃତ ଆଖୁଚାଷ କରିବା ନିମନ୍ତେ ସେ ଯେଉଁ ଯୋଜନା କରିଥିଲେ, ଢେଙ୍କାନାଳ ରାଜାଙ୍କ ଦମନ ଓ ଅତ୍ୟାଚାର ଯୋଗୁଁ ତାହା ପଣ୍ଡହୋଇଥିଲା ଏବଂ ଏକପ୍ରକାର ନିର୍ବାସିତ ହୋଇ ରାଜ୍ୟ ବାହାରେ ତାଙ୍କୁ ରହିବାକୁ ପଡ଼ୁଥିଲା । ଗଡ଼ଜାତବାସୀଙ୍କୁ ରାଜାଙ୍କ କବଳରୁ ରକ୍ଷାକରି ତାଙ୍କ ଭିତରେ ଆତ୍ମସମ୍ମାନ ବୋଧ ଆଣିଦେବା ନିମନ୍ତେ ସେ ପ୍ରତିଜ୍ଞାବଦ୍ଧ ହେଲେ । ୧୯୩୩-୩୪ ବେଳକୁ ନିଖିଳ ଭାରତ ସ୍ତରରେ ମଧ୍ୟ ଏକ ନିୟମିତ ଗଡ଼ଜାତ ପ୍ରଜା ସମ୍ମିଳନୀ କାର୍ଯ୍ୟ କରୁଥିଲା । କଂଗ୍ରେସ ପ୍ରତ୍ୟକ୍ଷଭାବରେ ଗଡ଼ଜାତ ପ୍ରଜାଆନ୍ଦୋଳନରେ ସମ୍ପୃକ୍ତ ହେବାର ଗାନ୍ଧିଜୀ ବିରୋଧୀ ଥିଲେ । ତେଣୁ ବ୍ୟକ୍ତିଗତ ଭାବରେ ସେ ଅଞ୍ଚଳରୁ ଲୋକ ଆସି ମୋଗଲବନ୍ଦୀ ଅଞ୍ଚଳରେ କଂଗ୍ରେସ କାର୍ଯ୍ୟରେ ସମ୍ପୃକ୍ତ ରହିଥିଲେ କିମ୍ବା ଆଇନ ଅମାନ୍ୟ କରି କାରାବରଣ କରୁଥିଲେ । ମାତ୍ର ସ୍ୱାଧୀନତା ଆନ୍ଦୋଳନ ଯେତେ ପ୍ରସାର ଲାଭ କଲା, ଏତେବଡ଼ ବିଶାଳ ଗଡ଼ଜାତ ଅଞ୍ଚଳର ଅଧିବାସୀଙ୍କ ଉପରେ ତାର ପ୍ରଭାବ ପଡ଼ିବା ସ୍ୱାଭାବିକ । ସେସବୁ ଅଞ୍ଚଳରୁ ଆସିଥିବା କଂଗ୍ରେସଲୋକେ ନୀରବରେ ଏହା କିପରି ସହ୍ୟ କରି ପାରନ୍ତେ ! ତେଣୁ ଗଡ଼ଜାତ

ପ୍ରଜା ସମ୍ମିଳନୀର ସୃଷ୍ଟି ହେଲା । ସେମାନେ ନିଜ ନିଜ ଷ୍ଟେଟରେ ପ୍ରଜାମଣ୍ଡଳମାନ ଗଠନ କରି ସ୍ୱାୟତ୍ତଶାସନ ଦାବୀ କଲେ । ଭାରତର ବଡ ବଡ ଦେଶୀୟ ରାଜ୍ୟମାନଙ୍କରେ ସଂଗଠିତ ଆନ୍ଦୋଳନ ଆରମ୍ଭ ହୋଇଯାଇଥିଲା; ମାତ୍ର ଓଡ଼ିଶାରେ କୌଣସି ସଂଗଠନ ନଥିଲା । ଶ୍ରୀ ସାରଙ୍ଗଧର ଦାସଙ୍କ ଉଦ୍ୟମରେ ୧୯୩୪ ମସିହାରେ ଓଡ଼ିଶାରେ ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜାସମ୍ମିଳନୀର ଶାଖା ରୂପେ ଏକ ସଂଗଠନ ଛିଡ଼ାହେଲା ଏବଂ ଏହାର ପ୍ରଥମ ସମ୍ମିଳନୀରେ ଡକ୍ଟର ପଟ୍ଟାଭି ସୀତାରାମାୟା ସଭାପତିତ୍ୱ କରିଥିଲେ । ଓଡ଼ିଶାରେ କଂଗ୍ରେସ ଲୋକଙ୍କର ପ୍ରାଥମିକ ଅବସ୍ଥାରେ ଏଥିପ୍ରତି କୌଣସି ଆଗ୍ରହ ନ ଥିଲା । ସାରଙ୍ଗଧରବାବୁଙ୍କର ଆମ ସହ ଘନିଷ୍ଠତା ଥିବାରୁ ଏବଂ ସେ କଂଗ୍ରେସର କ୍ଷମତା ରାଜନୀତି ଅପେକ୍ଷା ଲୋକଙ୍କ ସେବାଧର୍ମକୁ ଆଦରିଥିବାରୁ ଆମମାନଙ୍କ ସହିତ ସହଯୋଗ ରକ୍ଷାକରି କାର୍ଯ୍ୟ କଲେ ଏବଂ କ୍ରମେ କଂଗ୍ରେସ ସୋସଲିଷ୍ଟମାନେ ଏଥିରେ ଜଡ଼ିତ ହୋଇଗଲେ । ମୋଟଉପରେ କହିବାକୁ ଗଲେ ସେତେବେଳର କଂଗ୍ରେସ ସୋସଲିଷ୍ଟ ପାର୍ଟିର ମୁଖ୍ୟ କାର୍ଯ୍ୟ ହେଲା କୃଷକ ଆନ୍ଦୋଳନ ଓ ଗଡ଼ଜାତ ପ୍ରଜାଆନ୍ଦୋଳନ ।

## ବନ୍ୟା ଅଞ୍ଚଳରେ ସେବା କାର୍ଯ୍ୟ

ଏହି କେତେ ବର୍ଷ ମୋ ନିଜର କାର୍ଯ୍ୟବିଧିରେ ବି କେତେକ ପରିବର୍ତ୍ତନ ଘଟିଲା । ୧୯୩୩ର ଖଣ୍ଡେଇତା ଘାଇ ଅଞ୍ଚଳର ବନ୍ୟା ଯୋଗୁଁ ମୁଁ ଅଧିକାଂଶ ଦିନ ଗ୍ରାମରେ ବନ୍ୟା ଅଞ୍ଚଳରେ ରିଲିଫ କାର୍ଯ୍ୟରେ ଲିପ୍ତ ରହିଥିଲି । ସେତେବେଳେ ଯେଉଁଭଳି ପରିଶ୍ରମ କରୁଥିଲି ଭାବିଲେ ଏବେ ଆଶ୍ଚର୍ଯ୍ୟ ଲାଗେ । ବ୍ରିଟିଶ ଅମଳ—ବନ୍ୟା ସାହାଯ୍ୟ କାର୍ଯ୍ୟରେ ମଧ୍ୟ ବାଧା ଉପୁଜୁଥିଲା । ସରକାରୀ ସାହାଯ୍ୟ କିଛି ମିଳୁ ନଥାଏ । କଲିକତାର ମାରୁଆଡ଼ି ରିଲିଫ ସୋସାଇଟି, ରାମକୃଷ୍ଣ ମିସନ ଏବଂ ଅନ୍ୟ ବେସରକାରୀ ସଂସ୍ଥାସବୁ ଆସି ବାହାରୁ ସାହାଯ୍ୟ ଆଣି ଲୋକଙ୍କୁ ଦଉଥାନ୍ତି । ଆମର ଏଠି ବି ଓଡ଼ିଶା ବନ୍ୟା ସାହାଯ୍ୟ ସମିତି ଗଠନ କରାଯାଇ ବମ୍ବେ ଓ ଅନ୍ୟାନ୍ୟ ଅଞ୍ଚଳରୁ ଅର୍ଥ ସଂଗ୍ରହ କରାଯାଇ ବିଭିନ୍ନ ସ୍ଥାନରେ କେନ୍ଦ୍ର ଖୋଲାଯାଇ ସାହାଯ୍ୟବଣ୍ଟନ କରାଯାଉଥାଏ । ମୁଁ ଉଣ୍ଡିକଣା ଉରାଡ଼ ନାମକ ସ୍ଥାନରେ ଏହି ବଣ୍ଟନ କେନ୍ଦ୍ର ପରିଚାଳନା କରୁଥିଲି । ନଦୀକୂଳରେ ସନ୍ତନ୍ତିଆ ଓଦା ଜାଗାରେ ଖଣ୍ଡେ ତାଟି କୁଡ଼ିଆ କରି ପଡ଼ିଥାଏ । ତଳ ଓଦା; ରାତିରେ ଉପରୁ କାକର ପଡ଼ି ଲୁଗା ଶେଯ ଭିଜିଯାଏ । ଦିନସାରା କାଦୁଅ ପାଣିରେ ଗାଁ ଗାଁ ବୁଲି କାହା ଅବସ୍ଥା କିପରି ତଦନ୍ତ କରୁ । ଯାହାର ନିହାତି ଲୋଡ଼ା, ତାକୁ ଦିଆଯାଏ । ଆମକୁ ଚଳିବା ଲାଗି ଯତ୍‌ସାମାନ୍ୟ ମିଳେ ଏବଂ ରିଲିଫ ଚାଉଳ ନିଜଲାଗି ବ୍ୟବହାର ନ କରିବା ନିମନ୍ତେ କଡ଼ା ନିର୍ଦ୍ଦେଶ ଥାଏ । ଆମେ ମଧ୍ୟ ଗରିବ ମୁହଁରେ ପଡ଼ିବା ଧନରେ ହାତ ଦେବା, ହିସାବରେ ଟିକିଏ ଏକଡ଼ ସେକଡ଼ ହେବା ବା ନଷ୍ଟ ହେବା କିମ୍ବା ଅପାତ୍ରରେ ଦେବାକୁ ଅଧର୍ମ ଓ ଅନୈତିକ କାର୍ଯ୍ୟ ବୋଲି ବିଚାରୁଥାଉଁ । ନିଜ ମୁଣ୍ଡରେ ଚାଉଳ ଲୁଣ୍ଡା ବସ୍ତା ମୁଣ୍ଡାଇ ଗାଁ ଭିତରକୁ ଯାଇ ନିଃସହାୟ ଲୋକଙ୍କ ପାଖରେ ପହଞ୍ଚାଇଦେଉ । ମୂଲିଆ ଲଗାଇ ନେବା ନିମନ୍ତେ ଆମ

ପାଖରେ ପଇସା ନଥାଏ । ତାହାଛଡ଼ା ଏଥିଲାଗି ଶାଳଫ ଗୃଞ୍ଜଳ ଖର୍ଚ୍ଚକରି ମୂଲିଆ ଲଗାଇବାଟା ଅନୈତିକ କାର୍ଯ୍ୟ ହୁଅନ୍ତା । କିନ୍ତୁ ଯଦିଓହେଲେ ଏଭଳି କଷ୍ଟ ଦୁଃଖ ବୋଲି ଲାଗି ନଥିଲା; ମନ ଆନନ୍ଦରେ କାର୍ଯ୍ୟ ହେଉଥିଲା । ନିଜର ଭବିଷ୍ୟତ ଲାଗି ବି କୌଣସି ପଚୁଆ ନଥିଲା କିମ୍ବା ବିଗ୍ରହ ହେଉନଥିଲା । ବହୁଦିନ ଓଦା କାକରରେ ପଡ଼ିବା ହେତୁ ମତେ ଅନବରତ ଥଣ୍ଡା ଧରିଲା ଏବଂ ଶେଷକୁ ନଈରେ ଭାସି ଆସୁଥିବା ଖଣ୍ଡେ କବାଟ ଧରି ମୋ କୁଡ଼ିଆରେ ନଈପଠାରେ ମୁଁ ତାରି ଉପରେ ଶୋଇବାରୁ ଥଣ୍ଡା ଟିକିଏ ଊଣା ହେଲା । କଟକ ଜିଲ୍ଲାର ଗୋବିନ୍ଦପୁର ଥାନାର ଏହି ଅଞ୍ଚଳ ଲୋକଙ୍କ ସେବା କାର୍ଯ୍ୟରେ ମୋର ଏ ଅଞ୍ଚଳ ପ୍ରତି ଏପରି ମମତା ବୃଦ୍ଧି ପାଇଲା ଏବଂ ଦରିଦ୍ର ନିପୀଡ଼ିତ ଲୋକଙ୍କ ସହ ଏପରି ସ୍ନେହସମ୍ପର୍କ ସ୍ଥାପିତ ହୋଇଗଲା ଯେ ମୁଁ ସେହି ସ୍ଥାନକୁ କେନ୍ଦ୍ର କରି କାର୍ଯ୍ୟ କରିବି ବୋଲି ଏକପ୍ରକାର ନିଷ୍ପତ୍ତି କରିନେଲି ଏବଂ ତଣ୍ଡିକଣା ଗ୍ରାମର ବାଲିକୁଦ ଉପରେ ଗୋଟିଏ ଘର ବି ତିଆରି କଲି । ମାତ୍ର ମୋର ଏ କଳ୍ପନା କେବଳ କଳ୍ପନାରେ ରହିଗଲା । ପୂର୍ବରୁ କେତେମାସ ଯେ ଥଣ୍ଡା କାକର ଭିତରେ ଦିନ କଟାଇବାକୁ ପଡ଼ିଥିଲା ତାହାରି ଫଳ ସ୍ୱରୂପ ମୁଁ ସାଇଟିକା ରୋଗରେ ଆକ୍ରାନ୍ତ ହେଲି ଏବଂ ଶୁଆରିରେ ବୁହାହୋଇ ମତେ କଟକ ଆସିବାକୁ ପଡ଼ିଲା । କଟକରେ ଛ'ମାସ କାଳ ଚିକିତ୍ସାରେ ରହିବା ପରେ କିଞ୍ଚିତ ପରିମାଣରେ କ୍ଳେଶ ଊଣା ହେଲା; କିନ୍ତୁ ହଠାତ୍ ଆଉ ଗ୍ରାମାଞ୍ଚଳ ବା ଦୂର ଜାଗାକୁ ଯିବା ସମ୍ଭବ ହେଲା ନାହିଁ । ସେହି ରୋଗ ଏବେ ବି ମୋର ଚିରସାଥୀ ହୋଇ ରହିଛି; ମଧ୍ୟେ ମଧ୍ୟେ ବାହାରୁଛି; କିନ୍ତୁ ମୁଁ ଗତିହୀନ ହୋଇପଡ଼ିନାହିଁ—ସାମୟିକ ଆକ୍ରମଣ ହେଲେ ଚିକିତ୍ସା କରେ ।

ଏଭଳି ରୋଗ ହେତୁ ମତେ କଟକରେ ରହିବାକୁ ପଡ଼ିଲା ଏବଂ ମୁଁ ଉତ୍କଳ କୃଷକ ସଂଘର ଯୁଗ୍ମ ସମ୍ପାଦକ ହିସାବରେ ଅଫିସ କାର୍ଯ୍ୟ ବିଶେଷଭାବରେ ଦେଖିଲି । କୃଷି ସମ୍ବନ୍ଧୀୟ ଆଇନ ପଢ଼ିବାକୁ ଆରମ୍ଭ କଲି । ଏହି ପ୍ରାଥମିକ କାର୍ଯ୍ୟ ଯୋଗୁ ଦେଶର କୃଷି ଅର୍ଥନୈତିକ ସମସ୍ୟାରେ ମୋର ଆଗ୍ରହ ବୃଦ୍ଧି ପାଇଲା ଏବଂ ବିଶେଷଭାବରେ ବିଭିନ୍ନ ଦେଶର କୃଷି ଆନ୍ଦୋଳନ ସମ୍ପର୍କରେ ତଥ୍ୟ ଜାଣିବାର ଚେଷ୍ଟାକଲି । ପରବର୍ତ୍ତୀ କାଳରେ ପାର୍ଲିଆମେଣ୍ଟରେ ମଧ୍ୟ ମୁଁ ଏ ସମ୍ବନ୍ଧରେ ଅଧିକ ଚର୍ଚ୍ଚା କରୁଥିଲି, ସେଥିଲାଗି ପ୍ଲାନିଂ କମିସନ ତରଫରୁ ହେଉଥିବା ଭୂମି ପାନେଲ୍ ଆଦିରେ ଓ ପାର୍ଲିଆମେଣ୍ଟର ଏ ସମ୍ବନ୍ଧୀୟ ହେଉଥିବା କମିଟି ଆଦିରେ ମତେ ମେମ୍ବର କରାଯାଉଥିଲା । ପ୍ରଜା ସୋସଲିଷ୍ଟ ପାର୍ଟିର ବୈଠକମାନଙ୍କରେ ମଧ୍ୟ ଏ ସମ୍ବନ୍ଧୀୟ ପ୍ରସ୍ତାବ ଆଦି ଗଠା କରିବା ଓ ବିତର୍କ ଆରମ୍ଭ କରିବା ନିମନ୍ତେ ମୋ ଉପରେ ପ୍ରାୟ ଭାର ଦିଆଯାଉଥିଲା ।

୧୯୫୮ରେ ମୁଁ ଯେତେବେଳେ ବ୍ରିଟିଶ ସରକାରର ନିମନ୍ତ୍ରଣରେ ଇଂଲଣ୍ଡ ଗସ୍ତରେ ଗଲି, ସେତେବେଳେ ଗ୍ରାମ୍ୟ ଜୀବନ ଓ କୃଷି ବିଶେଷଭାବରେ ଲକ୍ଷ୍ୟ କରିବା ନିମନ୍ତେ ମୋର ଆଗ୍ରହ ଦର୍ଶାଇଥିଲି ଏବଂ ସେହି ଅନୁସାରେ ଇଂଲଣ୍ଡ ଓ ଅନ୍ୟାନ୍ୟ ଦେଶର କୃଷି ଓ ଗ୍ରାମ୍ୟ ଜୀବନ ଅନୁଧ୍ୟାନ କରିବାର ସୁଯୋଗ ପାଇଥିଲି । ଏତିକବେଳେ ମୁଁ ପୁଣି ମୋର

ସାମ୍ବାଦିକତା କାର୍ଯ୍ୟର ପରିସର ବଢ଼ାଇଲି ଏବଂ ତତ୍‌କାଳୀନ "ଫ୍ରି ପ୍ରେସ୍ ଅଫ୍ ଇଣ୍ଡିଆ"ର ଓଡ଼ିଶା ପ୍ରତିନିଧି ଭାବରେ ନିଯୁକ୍ତି ପତ୍ର ପାଇଲି ।

## ମୋର ସାମାଜିକ ଜୀବନ

ସେତେବେଳକୁ ଭାରତରେ ଦୁଇଟି ମାତ୍ର ସମ୍ବାଦବାହୀ ଏଜେନ୍‌ସି ଥାଏ । ଗୋଟିଏ "ଆସୋସିଏଟେଡ୍ ପ୍ରେସ୍ ଅଫ୍ ଇଣ୍ଡିଆ" । ଏହା ଇଂରେଜମାନଙ୍କ ଦ୍ୱାରା ପ୍ରଭାବିତ । ବାକୀ "ଫ୍ରି ପ୍ରେସ୍ ଅଫ୍ ଇଣ୍ଡିଆ" ଏକ ଜାତୀୟତାବାଦୀ ସମ୍ବାଦ ସରବରାହ ଏଜେନ୍‌ସି ଭାବରେ କାର୍ଯ୍ୟ କରୁଥାଏ । ମୋର କାହାରି ସହିତ କିଛି ପରିଚୟ ନଥାଏ କିମ୍ବା ଏତଦ୍ୱାରା ଯେ କିଛି ରୋଜଗାରର ପନ୍ଥା ବାହାରିପାରିବ ଏହା ମତେ ଜଣାନଥିଲା । ଇଂରେଜୀ ସମ୍ବାଦପତ୍ର ପଢ଼ିଲାବେଳେ ଓଡ଼ିଶାର ବିଶେଷଭାବରେ ଓଡ଼ିଶା କଂଗ୍ରେସର ଓ ଅନ୍ୟ ସଭାସମିତିର କିଛି ବିବରଣୀ ପ୍ରକାଶ ପାଉ ନଥିବା ଦେଖି ମୋ ମନରେ ଏହା କିପରି ହୁଅନ୍ତା ବୋଲି ଚିନ୍ତା ପଶିଲା । ଅନ୍ୟମାନଙ୍କ ସହ ଆଲୋଚନା କରି ବୁଝିଲି ଯେ ଏପରି ସରବରାହ ସଂସ୍ଥା ଜରିଆରେ ହିଁ ସମ୍ବାଦ ପରିବେଷଣ କରାଯାଏ । ତେଣୁ ମୋର ରାଜନୀତିକ ଜୀବନର କ୍ଷୁଦ୍ର ଇତିହାସ ସହ "ଫ୍ରି ପ୍ରେସ"ର ପରିଚାଳକ ଶ୍ରୀ ସଦାନନ୍ଦଙ୍କ ପାଖକୁ ମୁଁ ଓଡ଼ିଶାରେ ଏ କାର୍ଯ୍ୟ କରିବାକୁ ଚାହେଁ ବୋଲି ପତ୍ର ଲେଖିଲି ଏବଂ ସେ ମୋ ପାଖକୁ ଏକ ନିଯୁକ୍ତିପତ୍ର ପଠାଇ କଲିକତା ଅଫିସ ସହ ସଂପୃକ୍ତ କରାଇଦେଲେ ।

କିଛିଦିନ ପରେ କଲିକତା ଅଫିସରୁ ଏକ ପତ୍ର ଆସିଲା ଏବଂ ତାହା ସହିତ ବିଧିବଦ୍ଧ ରିପୋର୍ଟ ପଠାଇବା ନିମନ୍ତେ କିଛି ଡାକଟିକଟ ମଧ୍ୟ ଆସିଲା । ସେଦିନ ମୋ ମନର ଆନନ୍ଦ କିଏ ବର୍ଣ୍ଣନା କରିବ ! କେତେ ଲୋକଙ୍କୁ ଏପରିକି ମୋର ମାମୁଁ ପଣ୍ଡିତ ଆକୁଳ ମିଶ୍ରଙ୍କୁ ଯାଇ ଦେଖାଇଲି - କହିଲି, ଦେଖ, ଆମ ଓଡ଼ିଶାର ସଂବାଦ ଏମାନଙ୍କ ପାଖକୁ ପଠାଯିବ । ଆମକୁ କିଛି ଖର୍ଚ୍ଚ କରିବାକୁ ପଡ଼ୁନାହିଁ । ସେମାନେ ଓଲଟା ଆମ ପାଖକୁ ଡାକଟିକଟ ପଠାଉଛନ୍ତି ! ଦେଶହିତ ଦୃଷ୍ଟିରୁ ସବୁ କାର୍ଯ୍ୟ କରିବାର ମନୋବୃତ୍ତି ଥିବାରୁ ଏଥିରେ ସାଧାରଣ ବ୍ୟାବସାୟିକ ଭିତ୍ତିରେ ଅର୍ଥାଗମର ପନ୍ଥା ରହିଛି ବୋଲି ଧାରଣା ମନରେ ପ୍ରବେଶ କରି ନ ଥିଲା । ଏହି କାର୍ଯ୍ୟ ଭଲରୂପେ କରିବାଲାଗି ନିଜକୁ କ୍ଷମ କରିବା ନିମନ୍ତେ କଟକରେ ନୂଆ ହୋଇ ଖୋଲିଥିବା ରେମିଙ୍ଗଟନ୍ କମ୍ପାନୀ ଅଫିସରେ ଯାଇ ଟାଇପ ଶିଖିଲି ଏବଂ ଶର୍ଟହାଣ୍ଡ ପ୍ରାକ୍‌ଟିସ୍ ମଧ୍ୟ କଲି । ଶର୍ଟହାଣ୍ଡରେ ସଫଳତା ଲାଭ କରି ପାରିଲି ନାହିଁ—ସେପରି ବିଧିବଦ୍ଧ ଉଦ୍ୟମ ବି କରିନାହିଁ; ମାତ୍ର ଟାଇପ୍ ଶିଖିଗଲି । ପରବର୍ତ୍ତୀ କାଳରେ ଏହା ମୋର କାର୍ଯ୍ୟରେ ଖୁବ୍ ସହାୟକ ହୋଇଥିଲା ।

ସାଂବାଦିକତା ଆରମ୍ଭ କଲି; ଅର୍ଥ ଉପାର୍ଜନ ପାଇଁ ନୁହେଁ—ମୋର ଦେଶସେବା କାର୍ଯ୍ୟରେ ସହାୟକ ଭାବରେ । ତେଣୁ ମୋର ଅନ୍ୟ ସାଧାରଣ ରାଜନୀତିକ କାର୍ଯ୍ୟରେ ମୁଁ

ପୂର୍ବପର ସକ୍ରିୟ ହୋଇ ରହୁଥାଏ । ତେବେ ଏଥିରେ ଗୋଟାଏ ପରିବର୍ତ୍ତନ ଘଟିଲା । ମୋର ସ୍ୱାସ୍ଥ୍ୟ ଓ ସାଂବାଦିକ କାର୍ଯ୍ୟ ଦୃଷ୍ଟିରୁ ମୋତେ ସହରରେ ବେଶୀ ସମୟ କଟାଇବାକୁ ପଡ଼ିଲା । ରାଜନୀତିକ କାର୍ଯ୍ୟ ଓ ବିଷୟଗୁଡ଼ିକ ଅନୁଧ୍ୟାନ କରିବାକୁ ପଡ଼ିଲା । ଇଂରେଜୀ ଜ୍ଞାନକୁ ଟିକିଏ ସଂଶୋଧିତ ଓ ମାର୍ଜିତ କରିବାକୁ ପଡ଼ିଲା । କାରଣ ମୋତେ ଇଂରେଜୀରେହିଁ ତାର ଓ ସମ୍ବାଦ ପ୍ରେରଣ କରିବାକୁ ପଡ଼ୁଥିଲା । କ୍ରମେ କଲିକତାର ଓ ଅନ୍ୟ କେତେକ ଇଂରେଜୀ ଦୈନିକ ସଂବାଦପତ୍ରର ପ୍ରତିନିଧି ବି ହେଲି । ମୋର ମନେଅଛି, ୧୯୩୭ ମସିହାରେ ଯେତେବେଳେ ଜବାହାରଲାଲ ନେହରୁ ଲକ୍ଷ୍ନୌରୁ ପ୍ରଥମେ "ନେସନାଲ୍ ହେରଲ୍ଡ" ଦୈନିକରୂପେ ପ୍ରକାଶ କଲେ, ତହିଁର ପ୍ରଥମ ସଂପାଦକ କେ. ରାମାରାଓ ମତେ ପତ୍ର ଲେଖି ତାଙ୍କର ସଂବାଦଦାତା ରୂପେ ନିଯୁକ୍ତି ଦେଇଥିଲେ । ମୋର ସଂବାଦଗୁଡ଼ିକ କେବଳ ସଂବାଦ ନ ହୋଇ ସେଥିରେ କିଛି ପରିମାଣରେ ମନ୍ତବ୍ୟ ବି ମିଶ୍ରିତ ଥାଏ ଏବଂ ନାସନାଲ ହେରଲ୍ଡ ସଂବାଦପତ୍ରରେ ତାହା ଆଦୃତ ହୋଇଥିଲା ।

ଏକଥା ପରେ ରାମାରାଓ ମତେ କହିଲେ, ଏପରିକି ଜବାହାରଲାଲ ମଧ୍ୟ ଥରେ ପଚାରି ବୁଝିଥିଲେ ସଂବାଦଦାତାର ନାମ ଓ ପରିଚୟ । ରାମାରାଓଙ୍କ ସହିତ ବି ବ୍ୟକ୍ତିଗତ ପରିଚୟ ନଥିଲା । ମୁଁ ଯେତେବେଳେ ୧୯୫୨ରେ ରାଜ୍ୟସଭାକୁ ମେମ୍ବର ହୋଇ ଗଲି, ସେ ବି ସେଥିରେ ଜଣେ ସଭ୍ୟ ଥିଲେ; କିନ୍ତୁ ସେତେବେଳକୁ ନେସନାଲ ହେରାଲ୍ଡରୁ ସେ ବିଦାୟ ନେଇଥାଆନ୍ତି ଏବଂ ଚଲପତି ରାଓ ନୂଆ ସଂପାଦକ ଭାବେ ଆସିଯାଇଥାଆନ୍ତି । ମୁଁ ମଧ୍ୟ ପ୍ରାୟ ବର୍ଷେ ଦୁଇବର୍ଷ ପରେ 'ନେସନାଲ ହେରଲ୍ଡ' ଛାଡ଼ିଦେଇଥିଲି, ରାଜନୀତିକ କାର୍ଯ୍ୟର ଚାପହେତୁ । ଏହି ଯେ ସାଂବାଦିକ କାର୍ଯ୍ୟରେ ପ୍ରବେଶ କଲି, ତହିଁରେ ମୁଁ ପୂରାପୂରି ସଂପୃକ୍ତ ହୋଇ ରହିଲି ୧୯୪୨ ଭାରତ ଛାଡ଼ ଆନ୍ଦୋଳନରେ ଯୋଗ ଦେବା ପର୍ଯ୍ୟନ୍ତ । ମଝିରେ ମୋର ଜେଲଜୀବନ ବେଳେ ମୋ ତରଫରୁ ମୋର ପରମବନ୍ଧୁ ମୋହିତ କୁମାର ମୈତ୍ର ମୋ କାର୍ଯ୍ୟ ଚଳାଇ ଦେଇଥିଲେ; ତେଣୁ ମୋ ଅଫିସ ଇତ୍ୟାଦି ସେହିଭଳି ରହିଥିଲା, ମୁଁ ଜେଲରୁ ଫେରିବା ପର୍ଯ୍ୟନ୍ତ । ମୋହିତ ବାବୁଙ୍କର ମୃତ୍ୟୁ ହୋଇଯାଇଛି । 'କୃଷକ' ପ୍ରକାଶ କଲା ପରେ ମୋର ସାଂବାଦିକ ଜୀବନ ଆହୁରି ପ୍ରସାର ଲଭିଲା ଏବଂ ବହୁକାଳ ମୁଁ କେତେକ ଇଂରେଜୀ ସଂବାଦପତ୍ରର ମଧ୍ୟ ପ୍ରତିନିଧିରୂପେ କାର୍ଯ୍ୟକରି ଏକ ବିଧିବଦ୍ଧ ସାଂବାଦିକ ରୂପେ ପରିଚିତ ହୋଇଥିଲି । ରେଭେନ୍ସା କଲେଜରେ ବସୁଥିବା ଆସେମ୍ବ୍ଲିର ବିବରଣୀ ପଠାଇବା ନିମନ୍ତେ କେତେକ ସଂବାଦପତ୍ର ମତେ ବିଶେଷ ସଂବାଦ-ଦାତା ଭାବରେ ନିଯୁକ୍ତ କରିଥିଲେ । ଏତେବେଳେ ଆମ ସାଥିରେ କାର୍ଯ୍ୟ କରୁଥିବା ଦୁଇଜଣ ସାଂବାଦିକଙ୍କ ସହି ମୋର ଘନିଷ୍ଠତା ହୋଇଥିଲା । ତାଙ୍କ ନାମ ହେଲା ଏନ୍. ଆର. ସ୍ୱାମୀ ଓ ମୋହିତ କୁମାର ମୈତ୍ର । ମୋହିତ ବାବୁ ଅମୃତବଜାର ପତ୍ରିକାର ବିଶେଷ ସଂବାଦଦାତା ଥିଲେ ଏବଂ ଓଡ଼ିଶାରେ ଅତ୍ୟନ୍ତ ଲୋକପ୍ରିୟ ଥିଲେ । ଏହି ସାଂବାଦିକ ଜୀବନ ଭିତରେ ଘଟିଥିବା ଗୋଟିଏ ଦୁଇଟି କ୍ଷୁଦ୍ର ଘଟଣା ଉଲ୍ଲେଖ କରିବାର ଲୋଭ ସମ୍ବରଣ କରିପାରୁନାହିଁ ।

୧୯୩୭ ମସିହାରେ ବିଶ୍ୱନାଥ ଦାସଙ୍କ ପ୍ରଥମ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ମୁଁ ତାଙ୍କୁ ପ୍ରଭାବିତ କରି ଇଉନାଇଟେଡ୍ ପ୍ରେସ୍‌ର ଏକ ବିଧିବଦ୍ଧ ଶାଖା ଗଠନ ଲାଗି ପ୍ରାଦେଶିକ ସରକାରରୁ ଗ୍ରାଣ୍ଟ କରାଇଲି । ସେତେବେଳକୁ ଫ୍ରି ପ୍ରେସ ଏଜେନ୍‌ସି ଭାଙ୍ଗିଯାଇଥାଏ । ଇଉନାଇଟେଡ୍ ପ୍ରେସ୍ ହୋଇଥାଏ ଏବଂ ତାର ପ୍ରତିଯୋଗିତା ଚାଲିଥାଏ ଆସୋସିଏଟେଡ ପ୍ରେସ୍ ସହିତ । ଆସୋସିଏଟେଡ୍ ପ୍ରେସ ଏକ ଉତ୍କୃଷ୍ଟ ଏଜେନ୍‌ସି ଓ ବେତନ ଆଦି ଭଲ ଦେଉଥାଏ । ମୁଁ ଇଉନାଇଟେଡ୍ ପ୍ରେସରୁ ମୋଟେ ୭୫ ଟଙ୍କା ପାଇ ତାଙ୍କର ଅଫିସ ପରିଚାଳନା କରୁଥିଲି ଏବଂ ବହୁ ଦାୟିତ୍ୱ ତୁଲାଉଥିଲି । ମୋର ସେତେବେଳକୁ କିଛି ରାଜନୀତିକ ପ୍ରତିଷ୍ଠା ମଧ୍ୟ ବଢ଼ିଥାଏ । ଯାହା ଆମ ରାଜନୀତିରେ ହୁଏ, ମତେ ଏକପ୍ରକାର ସନ୍ତୁଷ୍ଟ କରିବା ନିମନ୍ତେ ଇଉନାଇଟେଡ୍ ପ୍ରେସ ଛାଡ଼ି ଆସୋସିଏଟେଡ୍ ପ୍ରେସ ନେବାକୁ ବିଶ୍ୱନାଥ ବାବୁ ଅନୁରୋଧ କଲେ । ଓଡ଼ିଆ ଜଣେ ଏଥିରେ ରହିବ ଏବଂ ମୁଁ ପାଇପାରିବି ଏହା ହେଲା ତାଙ୍କର ଉଦ୍ଦେଶ୍ୟ । ଏକ ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କ କଥାକୁ ସେମାନେ ଏଡ଼ି ପାରନ୍ତେ ନାହିଁ; ମାତ୍ର ମୁଁ ତାହା ଗ୍ରହଣ କଲିନାହିଁ । ମୁଁ କହିଲି, ଇଉନାଇଟେଡ୍ ପ୍ରେସ ଏକ ଜାତୀୟବାଦୀ ସମ୍ବାଦ ସରବରାହ ଅନୁଷ୍ଠାନ ବୋଲି ମୁଁ ସେଥିରେ ରହିଛି । ଚାକିରି ମୋର ଉଦ୍ଦେଶ୍ୟ ନୁହେଁ—ପଇସା ରୋଜଗାର ଦୃଷ୍ଟିରୁ ମୁଁ ଏହା ଗ୍ରହଣ କରିନାହିଁ । ଏହା ବିଶ୍ୱନାଥ ଦାସଙ୍କ ଉପରେ ଏପରି ପ୍ରଭାବ ପକାଇଲା ଯେ ସେ ବିଭିନ୍ନ ଲୋକଙ୍କ ଆଗରେ ଏ ବିଷୟରେ ଉଲ୍ଲେଖ କରନ୍ତି ।

ଗାନ୍ଧିଜୀ ଓ କଂଗ୍ରେସ ସଭାପତିଙ୍କର ସ୍ପଷ୍ଟ ନିର୍ଦ୍ଦେଶ ଥାଏ ଯେ କୌଣସି କଂଗ୍ରେସ କର୍ମକର୍ତ୍ତା ବ୍ରିଟିଶ କର୍ତ୍ତୃପକ୍ଷଙ୍କ ସହ ସାମାଜିକ ସମ୍ପର୍କ ରଖିବେ ନାହିଁ । ବ୍ରିଟିଶ କର୍ତ୍ତୃପକ୍ଷଙ୍କ ସହ ଅସହଯୋଗକୁ ଆହୁରି ଦୃଢ଼ କରିବା ନିମନ୍ତେ ଏହି ନୀତି ଅନୁସରଣ କରାଯାଇଥାଏ । କାରଣ ବିଭିନ୍ନ ପ୍ରାଦେଶିକ ଆସେମ୍ବ୍ଲିରେ କଂଗ୍ରେସ ଦଳ ବହୁମତ ପାଇସାରିଥାଏ । କିନ୍ତୁ କେତେକ ସର୍ତ୍ତ ପୂରଣ ନହେଲେ ଏବଂ ଗଭର୍ଣ୍ଣରମାନେ ମନ୍ତ୍ରୀମଣ୍ଡଳର ଦୈନନ୍ଦିନ କାର୍ଯ୍ୟରେ ହସ୍ତକ୍ଷେପ କରିବେ ନାହିଁ ବୋଲି ବ୍ରିଟିଶ ସରକାର ପ୍ରତିଶ୍ରୁତି ନଦେବା ପର୍ଯ୍ୟନ୍ତ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗ୍ରହଣ କରିବ ନାହିଁ ବୋଲି ସ୍ଥିର କରିଥାଏ । ପୂର୍ବେ ଯେତେବେଳେ ୧୯୨୪-୨୫ ମସିହାରେ ସ୍ୱରାଜ୍ୟ ପାର୍ଟି ଗଠିତ ହୋଇ ବ୍ୟବସ୍ଥାସଭା ପ୍ରବେଶ ନୀତିକୁ ସ୍ୱୀକାର କରାଯାଇଥିଲା, ସେତେବେଳେ କେତେକ କଂଗ୍ରେସ ବ୍ୟକ୍ତି ସାମ୍ରାଜ୍ୟବାଦୀ ଶାସନ ସହିତ ସହଯୋଗ କଲେ ଏବଂ କଂଗ୍ରେସର ବିରୋଧ ସତ୍ତ୍ୱେ କ୍ଷମତାଲୋଭର ବଶବର୍ତ୍ତୀ ହୋଇ ମନ୍ତ୍ରୀସଭାରେ ଯୋଗ ଦେଇଥିଲେ । କଂଗ୍ରେସ ଏଥରକ ତାହାର ପୁନରାବୃତ୍ତିକୁ ରୋକିବା ନିମନ୍ତେ କଡ଼ା ଶୃଙ୍ଖଳା ଜାରିକରି ସାମାଜିକ ବର୍ଜନ ନୀତି ଅନୁସରଣ କଲା ଏବଂ ମହାତ୍ମା ଗାନ୍ଧୀ ଏ ସମ୍ପର୍କରେ 'ହରିଜନ' କାଗଜରେ ଲେଖାମାନ ଲେଖୁଥିଲେ । ଏକ ଅଚଳ ଅବସ୍ଥା ସୃଷ୍ଟି ହୋଇଥିଲା । ଆହୁରି ମଧ୍ୟ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ ଅନୁସାରେ ଷ୍ଟେଟ ଗଭର୍ଣ୍ଣରମାନେ ଅଧିକ ସଂଖ୍ୟା ବିଶିଷ୍ଟ ଦଳର ଯେଉଁ ନେତାକୁ

ମନ୍ତ୍ରୀମଣ୍ଡଳ ଗଠନ କରିବାକୁ ଆହ୍ୱାନ କରିବେ, ସେ ନେତା କଂଗ୍ରେସ ଆସେଂବ୍ଲି ଦଳର ଦଳପତି ନା କଂଗ୍ରେସ କମିଟିର ସଭାପତି, ଏହାର ସ୍ପଷ୍ଟୀକରଣ ହୋଇନଥିଲା ।

ଓଡ଼ିଶାରେ କଂଗ୍ରେସ ଦଳ ୧୯୩୭ ନିର୍ବାଚନରେ ସଂଖ୍ୟାଗରିଷ୍ଠତା ଲାଭ କରିଥାଏ । ହରେକୃଷ୍ଣ ମହତାବ ଆସେଂବ୍ଲି ଲାଗି ଛିଡ଼ା ହୋଇ ନ ଥିଲେ; ମାତ୍ର କଂଗ୍ରେସ ବହୁମତ ପାଇଗଲାପରେ ପୁଣି ସକ୍ରିୟ ରାଜନୀତିକୁ ଆସିଲେ ଏବଂ କୌଣସି ପ୍ରକାରେ ପଣ୍ଡିତ ନୀଳକଣ୍ଠଙ୍କୁ ଗୋଟିଏ ଭୋଟରେ ହରାଇ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହୋଇଗଲେ । ତତ୍ପରଦିନ ସେ ତତ୍କାଳୀନ ଗଭର୍ଣ୍ଣର ଲର୍ଡ଼ ହବାକ୍‌ଙ୍କ ସହ ସାକ୍ଷାତ୍ କରି ରାଜନୀତିକ ଚର୍ଚ୍ଚା କଲେ । କେଉଁ ଉଦ୍ଦେଶ୍ୟରେ ଏଭଳି ଅଗ୍ରୀକକ ସାକ୍ଷାତ କଲେ, ତାହା ରାଜନୀତିକ ମହଲରେ ଅଛପା ହୋଇ ରହିଲା ନାହିଁ । ମୁଁ ତାଙ୍କ ସହ ଘନିଷ୍ଠ ସଂପର୍କରେ ଥିଲି ଏବଂ ସବୁ ଗତିବିଧି ଜାଣୁଥିଲି । ମୁଁ ସେହି ସନ୍ଧ୍ୟାରେ ଇଉନାଇ-ଟେଡ଼ ପ୍ରେସକୁ ତାର କରି ସାକ୍ଷାତ ସମ୍ବାଦଟି ଦେଇଥିଲି । ତତ୍ପରଦିନ ସକାଳେ ଦିଲ୍ଲୀ ସମ୍ବାଦପତ୍ରମାନଙ୍କରେ ପ୍ରଥମ ପୃଷ୍ଠାରେ ପ୍ରକାଶ ପାଇଗଲା । ଆମର ଏଠିକି ତ ଦିନକ ପରେ କଲିକତା ସଂବାଦପତ୍ର ଆସେ—ଏବେ ବି ସେମିତି ଆମେ କଲିକତା ସଂବାଦପତ୍ର ଜରିଆରେ ଦିନକର ବାସି ସଂବାଦ ପାଉ । ଏଠି ସଂବାଦପତ୍ରରେ ସଂବାଦ ପହଞ୍ଚିବା ପୂର୍ବରୁ କଂଗ୍ରେସ ସଭାପତି ଜବାହାରଲାଲ ନେହରୁଙ୍କ ପାଖରୁ ଏକ ଟେଲିଗ୍ରାମ୍ ଆସିଗଲା—"କାହିଁକି ଗଭର୍ଣ୍ଣର ସହ ସାକ୍ଷାତ୍ କଲ, କୈଫିୟତ୍ ଦିଅ ।" ମହାତାବବାବୁ ଚକିତ, ବିସ୍ମିତ ଓ ବିବ୍ରତ । ଆମେ ସବୁ କିଛି ବୁଝିପାରିଲୁ ନାହିଁ । ପରେ ଜଣାପଡ଼ିଲା, ମୋର ପ୍ରେରିତ ସମ୍ବାଦ ପଢ଼ି ଜବାହାରଲାଲଜୀ କୈଫିୟତ ମାଗିଥିଲେ । ମୁଁ ସାଂବାଦିକ ଦକ୍ଷତା ଓ ତତ୍ପରତା ଦେଖାଇଲି; ମାତ୍ର ମୋର ରାଜନୀତିକ ବନ୍ଧୁ ବିଶେଷତଃ ମହତାବ-ବାବୁଙ୍କର ସମର୍ଥକମାନଙ୍କର ଚକ୍ଷୁଶୂଳ ହୋଇଗଲି ।

ସଂବାଦପତ୍ର ଓ ସଂବାଦ ସରବରାହ ଏଜେନ୍‌ସିଗୁଡ଼ିକ ନାନାଭାବରେ ରାଜନୀତି କ୍ଷେତ୍ରରେ ସମସ୍ୟା ସୃଷ୍ଟି କରିପାରନ୍ତି ଓ ପ୍ରଭାବିତ ବି କରିପାରନ୍ତି । ସରକାରୀ ସୁବିଧା ପାଇବା ନିମନ୍ତେ ସରକାର ପକ୍ଷ ସମ୍ବାଦ ବାହାର କରିବା କିମ୍ବା ସରକାରୀ ପକ୍ଷକୁ ନ ସୁହାଇବା ଭଳି ସମ୍ବାଦ ନ ଛପାଇବା ଏବଂ ଗୁପିଦେବା ଏବେ ତ ପ୍ରାୟ ଏକ ନିର୍ଦ୍ଧାରିତ ନୀତି ହୋଇଗଲାଣି । ସେକାଳରେ ଅନ୍ୟପ୍ରକାରେ ଉଦ୍ୟମ ହେଉଥିଲା । ମୁଁ ଇଉନାଇଟେଡ଼ ପ୍ରେସର ଏଠି ଶାଖା ସ୍ଥାପନ କଲି; ତାର ସମ୍ପାଦକ ଥିଲି ଏବଂ ସରକାରୀ ଗ୍ରାଣ୍ଟ ବି କରାଉ ପାଉଥିଲି । ମୋର ରାଜନୀତିକ ପ୍ରଭାବ ସମ୍ବନ୍ଧରେ ଉପରିସ୍ଥ କର୍ମକର୍ତ୍ତା ସବୁକଥା ଜାଣିଥିଲେ । ମୁଁ ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟ ବି ଥିଲି । କଂଗ୍ରେସ ସଭାପତି ପଦ ଲାଗି ଯେତେବେଳେ ଗାନ୍ଧିଜୀଙ୍କ ମନୋନୀତ ପ୍ରାର୍ଥୀ ଡ଼କ୍ଟର ପଟ୍ଟାଭି ସୀତାରାମାୟା ଏବଂ ନେତାଜୀ ସୁଭାଷ ବୋଷଙ୍କ ସହ ପ୍ରତିଯୋଗିତା ହେଲା, ଆମେ ସବୁ ସୁଭାଷବାବୁଙ୍କୁ ସମର୍ଥନ କରୁଥିଲୁ । କିନ୍ତୁ ଇଉନାଇଟେଡ଼ ପ୍ରେସ୍ ସଂବାଦ ଏଜେନ୍‌ସି ଭାବରେ ଏଥିରେ ପକ୍ଷ ସମର୍ଥନ ନ କରିବା

କଥା । ମୁଁ ଏକ "ଗୋପନୀୟ" ଚିଠି ମ୍ୟାନେଜିଙ୍ଗ୍ ଡିରେକ୍ଟରଙ୍କ ପାଖରୁ ପାଇଲି— "ସୁଭାଷବାବୁଙ୍କୁ ସମର୍ଥନ ଦେବାଭଳି ସଂବାଦ ପଠାଅ ଏବଂ ବିବୃତି ଯୋଗାଡ଼ କର ।" ମତେ ବିଷୟଟି ସୁନ୍ଦର ଲାଗିଲା ନାହିଁ । ତାହାଛଡ଼ା ନିରପେକ୍ଷତା ରକ୍ଷାର ଏହା ହେବ ବିରୁଦ୍ଧାଚରଣ । ଏପରି ପତ୍ର ନ ଆସିଥିଲେ ମୁଁ ଯେହେତୁ ସୁଭାଷବାବୁଙ୍କ ଲାଗି ବ୍ୟକ୍ତିଗତ ଭାବରେ କାର୍ଯ୍ୟ କରୁଥିଲି, ଅଲକ୍ଷ୍ୟରେ ହୁଏତ ତାଙ୍କୁ ସମର୍ଥନ କଲାଭଳି ସମ୍ବାଦ ପଠାଇଥାଆନ୍ତି । ମାତ୍ର ଏପରି ଏକ ଅନଭିପ୍ରେତ ନିର୍ଦ୍ଦେଶ ଆସିବାଯୋଗୁଁ ମୁଁ ସେଥିରୁ କ୍ଷାନ୍ତ ହେଲି—ଖୁବ୍ କମ୍ ସଂବାଦ ପଠାଇଲି ।

ପରେ ମ୍ୟାନେଜିଙ୍ଗ୍ ଡିରେକ୍ଟର ମୋ କାର୍ଯ୍ୟରେ ଅସନ୍ତୋଷ ପ୍ରକାଶ କରି ପତ୍ର ଲେଖିଲେ । ମୁଁ ସାଙ୍ଗେ ସାଙ୍ଗେ ଜବାବ ଦେଲି—"ମୁଁ ସାମ୍ବାଦିକ ଶିଷ୍ଟାଚାର ବିରୋଧୀ କାର୍ଯ୍ୟ କରିପାରିବି ନାହିଁ—କରିନାହିଁ ମୋର ଇସ୍ତଫା ଗୃହୀତ ହେଉ ।" ଏତିକରେ ସେ ଚୁପ୍ । ମୁଁ ଇଉନାଇଟେଡ୍ ପ୍ରେସରେ ଥିବା ପର୍ଯ୍ୟନ୍ତ କେବେ ଆଉ ସେପରି କହିବାକୁ ସାହସ କରିନଥିଲେ । ୧୯୪୬ରେ ଜେଲମୁକ୍ତ ପରେ ମୁଁ ନିଜଆଡ଼ୁ ଅସ୍ୱୀକାର କରିନଥିଲେ ପୁଣି ସେଥିରେ ରହିଥାଆନ୍ତି ଏବଂ ମୋ ଜୀବନର ଗତି ବୋଧହୁଏ ବଦଳି ଯାଇଥାଆନ୍ତା— ରାଜନୀତି ଛାଡ଼ି ସାମ୍ବାଦିକ ହୋଇ ରହି ଯାଇଥାନ୍ତି । ମାତ୍ର ମୁଁ ପୂରା ସମୟ ରାଜନୀତିକ କାର୍ଯ୍ୟରେ ଦେବାକୁ ସ୍ଥିର କଲି । ତେବେ ଏକଥା ନିଶ୍ଚିତ ଯେ, ମୁଁ ବିଭିନ୍ନ ଭାବରେ ସମ୍ବାଦପତ୍ର ଓ ସମ୍ବାଦ ଏଜେନ୍ସି ସହ ସଂପୃକ୍ତ ହୋଇ କାର୍ଯ୍ୟ କରୁଥିବା ହେତୁ କୃଷକ ଆନ୍ଦୋଳନ, ଗଡ଼ଜାତ ପ୍ରଜାମେଳି ଏବଂ ସମାଜବାଦୀ ପାର୍ଟିର କାର୍ଯ୍ୟାବଳୀ ଓଡ଼ିଶା ବାହାର ଜଗତରେ ଭଲଭାବରେ ପ୍ରଚାରିତ ହୋଇପାରିଥିଲା ।

## କୃଷକ ଆନ୍ଦୋଳନ

ଓଡ଼ିଶାର କୃଷକ ଆନ୍ଦୋଳନ ଆରମ୍ଭ ବିଷୟରେ ଆଗରୁ କିଛି ଲେଖିଛି । ଓଡ଼ିଶାରେ ଏଭଳି ଆନ୍ଦୋଳନ ଆମେ ଯେ ନୂଆ ଆରମ୍ଭ କଲୁ, ତାହା ନୁହେଁ । ୧୯୨୦।୨୧ ସାଲରୁ କନିକା ପ୍ରଜା ଆନ୍ଦୋଳନ ଆରମ୍ଭ ହୋଇଥିଲା ଏବଂ ଉତ୍କଳମଣି ଗୋପବନ୍ଧୁ ଦାଶ ଆଦି ସେଥିଯୋଗୁ ଜେଲବରଣ କରିଥିଲେ । ଗଞ୍ଜାମ ଜିଲ୍ଲାରେ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ଜମିଦାରୀ-ରଯ୍ୟତ ଆନ୍ଦୋଳନ ମଧ୍ୟ ହୋଇଯାଇଥିଲା । ମାତ୍ର ଏଗୁଡ଼ିକ ଏକ ସୀମାବଦ୍ଧ କ୍ଷେତ୍ରରେ ଆବଦ୍ଧ ଥିଲା । ସାରା ଓଡ଼ିଶାର କୃଷକ ସମସ୍ୟାକୁ ନେଇ କେବେ ବିଧିବଦ୍ଧ ସଙ୍ଗଠନ ବା ଆନ୍ଦୋଳନ ହୋଇନଥିଲା । ତାହା ଛଡ଼ା ପୂର୍ବ ଆନ୍ଦୋଳନ ଗୁଡ଼ିକର କୌଣସି ବିଶେଷ ରାଜନୀତିକ ଆଭିମୁଖ୍ୟ ନଥିଲା । ଏ ଆନ୍ଦୋଳନଟିରେ ସୋସିଆଲିଷ୍ଟମାନେ ମୁଖ୍ୟଭାଗ ନେଲେ, କୃଷକଙ୍କ ଭିତରେ ଶ୍ରେଣୀ ଚେତନା ଜାଗ୍ରତ କରିବା ନିମନ୍ତେ ଏବଂ ସେମାନଙ୍କୁ ଅଧିକ ପରିମାଣରେ ରାଜନୀତି ଭିତରକୁ ଟାଣିଆଣିବା ନିମନ୍ତେ ଏଥିରେ ଆମେ ଅନ୍ୟମାନଙ୍କର ବି ସହଯୋଗ ନେଉଥିଲୁ । ଅନ୍ୟ କଂଗ୍ରେସ ଲୋକେ ଏଥିରେ ବିଶେଷ ଆଗ୍ରହ ଦେଖାଉ ନ ଥିଲେ । ସୋସିଆଲିଷ୍ଟଙ୍କ ପ୍ରତି ସେମାନଙ୍କର ଗୋଟାଏ ପ୍ରକାର ଭୟମିଶ୍ରିତ ଘୃଣା ଥାଏ;

ଅଧିକାଂଶ କଂଗ୍ରେସ ଲୋକେ ନିଷ୍କ୍ରିୟ ହୋଇପଡ଼ିଥାନ୍ତି । କୃଷକ ଆନ୍ଦୋଳନ ଆରମ୍ଭ ହେବାରୁ ଗାଁଗହଳରେ ରହିଥିବା କିଛି କିଛି କଂଗ୍ରେସ କର୍ମୀ ଏଥି ସହ ସମ୍ପୃକ୍ତ ହେଲେ । ବାସ୍ତବିକ ଗୃଷୀ ଆନ୍ଦୋଳନରେ ଦେଖାଗଲା ଜମିଦାର ଓ ସରକାରୀ ପୁଲିସ କିଭଳି ମିଳି କାର୍ଯ୍ୟ କରୁଥିଲେ । ସରକାରର ଜମିଦାର ପକ୍ଷକୁ ପ୍ରତ୍ୟକ୍ଷ ସମର୍ଥନ ଅନେକ ସ୍ଥଳରେ ଗୃଷୀଙ୍କ ଆଖି ଖୋଲିଦେଲା ଏବଂ ଏଥିରେ ଆମର ରାଜନୀତିକ ଉଦ୍ଦେଶ୍ୟ ବହୁପରିମାଣରେ ସଫଳ ହେଲା । ସରକାର ଓ ଜମିଦାର ଉଭୟଙ୍କୁ ଗୃଷୀ ତାଙ୍କର ବିରୋଧୀ ବୋଲି ବିଗ୍ରରିଲେ ଓ ତାଙ୍କ ବିରୁଦ୍ଧରେ ବିଦ୍ରୋହ କରିବାର ମନୋବୃତ୍ତି ତାଙ୍କ ଭିତରେ ବୃଦ୍ଧି ପାଇଲା । ଯେଉଁଠି ସବୁ ମାଲିମକଦମା ହୁଏ, ଗୃଷୀ ଗାଁମାନେ ମିଳିତ ହୋଇ ଗ୍ରନ୍ଦା ଉଠାଇ ସେଥିରେ ଲଢ଼ିବାର ବ୍ୟବସ୍ଥା କରନ୍ତି । ଅଭିଜ୍ଞତାରୁ ଦେଖାଯାଇଛି, ଗୃଷୀଙ୍କି ହଇରାଣ ଓ ଦମନ କରିବା ନିମନ୍ତେ ପିଙ୍ଗଲ କୋର୍ଡ଼ର ୧୦୭ (ମୁଗ୍ରଲିକା), ୧୪୪ (ମୁହଁବନ୍ଦ), ୧୪୫ (ଜମିଉପରକୁ ପବେଶ ନିଷେଧ) ଏବଂ ୧୪୭ (ଦଙ୍ଗା) ଦଫାଗୁଡ଼ିକ ଗୃଷୀଙ୍କ ବିରୁଦ୍ଧରେ ବହୁଳଭାବରେ ବ୍ୟବହାର କରାଯାଇଛି । କଂଗ୍ରେସ ମନ୍ତ୍ରୀମଣ୍ଡଳ ସବୁ ଗଠିତ ହେବା ପରେ ଏଥିର ସଂଶୋଧନ ନିମନ୍ତେ ଆମେ ସବୁ ଖୁବ୍ ଉଦ୍ୟମ କରିଥିଲୁ—ମାତ୍ର ସଫଳ ହୋଇ ପାରିନାହୁଁ । ଦେଶ ସ୍ୱାଧୀନ ହେଲା ପରେ ମଧ୍ୟ ଏତେ ଆଇନ ସଂଶୋଧିତ ହୋଇଛି ଏବଂ ନୂତନ ବିଧାନମାନ ପ୍ରଣୟନ କରାଯାଇଛି; କିନ୍ତୁ ଏହିଭଳି ବ୍ୟବସ୍ଥାଗୁଡ଼ିକ ଉଠାଇଦେବା ବା ସଂଶୋଧନ କରିବାରେ କୌଣସି ଉଦ୍ୟମ ହୋଇନାହିଁ । ଏବେ ମଧ୍ୟ ଗୃଷୀ ଆନ୍ଦୋଳନ ଯେଉଁଠି ଯେମିତି ଦେଖା ହେଉଛି, ସେଠାରେ ମଧ୍ୟ ଉପରେ କୁହାହୋଇଥିବା ଦଫାମାନ ପୁଲିସ ହାତରେ ପ୍ରଧାନ ଅସ୍ତ୍ରରୂପେ ବ୍ୟବହୃତ ହେଉଛି ।

ଗୃଷୀ ଆନ୍ଦୋଳନ ଏହିରୂପେ ଗଢି ଉଠୁଥିବାବେଳେ କଂଗ୍ରେସ ଆଗରେ ଏକ ସମସ୍ୟା ଆସି ଉପସ୍ଥିତ ହେଲା—୧୯୩୫ ମସିହାର ଗଭର୍ଣ୍ଣମେଣ୍ଟ ଅଫ ଇଣ୍ଡିଆ ଆକ୍ଟ । ପ୍ରଥମେ **୧୯୩୩ରେ ଯେଉଁ ହ୍ୱାଇଟ ପେପର ପ୍ରକାଶ ପାଇଥିଲା, ସେଥିରେ ଓଡ଼ିଶା ପ୍ରଦେଶ ଗଠନର** ସୂଚନା ଦିଆଯାଇଥିଲା । ଓଡ଼ିଶାର ଶିକ୍ଷିତ ରାଜନୀତିକ ମହଲରେ ଏହା ଅଶେଷ ଆଗ୍ରହ ଜାତ କରାଇଲା ଏବଂ ବ୍ରିଟିଶ ସରକାରଙ୍କ ସହ ସହଯୋଗ କରି ସମଗ୍ର ଓଡ଼ିଆ ଜାତିର କୃତଜ୍ଞତା ଜଣାଇବା ଲାଗି ଅଗ୍ରହ ପ୍ରକାଶ ପାଇଲା । ଏପରି ଖୋସାମଦ୍‌କାରୀ ମନୋବୃତ୍ତି ମୂଳରେ ଆକାଙ୍କ୍ଷା ରହିଲା ବାଦ ଦିଆଯାଇଥିବା ଓଡ଼ିଆ ଅଞ୍ଚଳକୁ ପ୍ରକୃତ ପ୍ରଦେଶ ଗଠନ ବେଳକୁ ତାର ସୀମା ଭିତରକୁ ଆଣିବା ।

## ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ

ଶେଷପର୍ଯ୍ୟନ୍ତ ଓଡ଼ିଆ ନେତାମାନେ ଏଥିରେ ସଫଳ ହେଲେ ନାହିଁ; ତେବେ ପାରଳା ଖେମଣ୍ଡିର ମହାରାଜା ଇଂଲଣ୍ଡ ଯାଇ ଜଏଣ୍ଟ ପାର୍ଲିମେଣ୍ଟାରୀ କମିଟି ଆଗରେ ଦାବୀ ଉଠାଇ ପାରଳାଖେମଣ୍ଡି ଓ ମାନ୍ଦ୍ରାଜର କୋରାପୁଟ ଆଦି ଅଞ୍ଚଳକୁ ଓଡ଼ିଶାର ଅନ୍ତର୍ଭୁକ୍ତ କରିବାରେ ସଫଳ ହେଲେ । ଓଡ଼ିଶା ମିଶ୍ରଣ ଆନ୍ଦୋଳନ ପ୍ରତି ଆମର ସହାନୁଭୂତି ଥିଲେ

ସୁଦ୍ଧା ଆମେ ସବୁ ସେଥିରେ ସେଭଳି ସଂପୃକ୍ତ ହୋଇନଥିଲୁ ଏବଂ ଏଭଳି ଆନ୍ଦୋଳନକାରୀ-ମାନେ ମୁଖ୍ୟତଃ ବ୍ରିଟିଶ ସହଯୋଗର ପକ୍ଷପାତୀ ଥିବାରୁ ଆମେ ସବୁ ଘୃଣାଚକ୍ଷୁରେ ଦେଖୁଥିଲୁ । ୧୯୩୫ର ଭାରତ ଶାସନ ଆଇନ ପ୍ରବର୍ତ୍ତନ ପୂର୍ବରୁ ଯେଉଁ ଚିଠା ଓ ସୂଚନା ପ୍ରକାଶ ପାଇଥିଲା କଂଗ୍ରେସ ତାହା ପ୍ରତ୍ୟାଖ୍ୟାନ କରିବ ବୋଲି ପ୍ରସ୍ତାବ କରିଥିଲା ।

ମୋର କାଲି ପରି ମନେ ପଡ଼ୁଛି—ବ୍ରିଟିଶ ସରକାରଙ୍କ ଶ୍ୱେତପତ୍ର ପ୍ରକାଶ ପାଇଲା ପରେ କଟକ ଟାଉନହଲ୍‌ରେ ଏଥି ନିମନ୍ତେ ଏକ ସଭା ହୋଇଥିଲା ଏବଂ ସେଥିରେ ବି. ଦାସ (ଭୁବନାନନ୍ଦ ଦାସ) ବକ୍ତୃତା କରୁଥାନ୍ତି । ସେ ଜଣେ ପ୍ରଖ୍ୟାତ ପାର୍ଲିଆମେଣ୍ଟେରିଆନ ଥିଲେ; ଓଡ଼ିଶା ଓ ବାହାରେ ଖ୍ୟାତି ଅର୍ଜନ କରିଥିଲେ; କଂଗ୍ରେସ ଲୋକ ବି ଥିଲେ । ସେ ତାଙ୍କ ଭାଷଣ ପ୍ରସଙ୍ଗରେ ସାଧାରଣ ସଭାରେ ଘୋଷଣା କଲେ ଯେ ବ୍ରିଟିଶ ସରକାର ଓଡ଼ିଶାର ଦାବୀ ସ୍ୱୀକାର କରିଥିବା ହେତୁ ଓଡ଼ିଶା କଂଗ୍ରେସ ଲୋକେ ଏହାକୁ ଗ୍ରହଣ କରୁଛନ୍ତି । ସେ ଜଣେ ଲିବରାଲ ରାଜନୀତିଜ୍ଞ ଥିଲେ ଏବଂ ସେତେବେଳେ ସେମାନେ ଏପରି କହିବା ଓ କରିବାଟାକୁ ଡିପ୍ଲୋମେସି ବୋଲି ବିଚାରୁଥିଲେ । ଅନ୍ୟପ୍ରକାର ଆଉ କିଛି ମତ ପ୍ରକାଶ କରିବାର ବାଟ ପ୍ରାୟ ନ ଥାଏ । ଏମିତି ସଭା ସମିତିରେ ପ୍ରସ୍ତାବ କଲେ ବ୍ରିଟିଶ ସରକାର ଏହାକୁ ଓଡ଼ିଶାର ଜନମତ ବୋଲି ବିଚାରିବ ଏବଂ ଖୁସି ହୋଇ ପ୍ରତିଶ୍ରୁତି ପାଳନ କରିବ । ବି. ଦାସଙ୍କର ଏହି ଉକ୍ତିରେ ସଭାରେ ତାଳି ଉଠିବା ସାରିବା ପରେ ମୁଁ ଖୁବ୍ ବଡ଼ ପାଟିରେ ମୋ ଚଉକିରେ ବସିଥାଇ ଚିତ୍କାର କଲି "Question" ଅର୍ଥାତ ଏହା ଠିକ୍ ନୁହେଁ । ସଭାରେ ଶୃଙ୍ଖଳା ଖେଳିଗଲା । ମତେ କେତେକ ଆସି ଭର୍ତ୍ସନା କଲେ । ଓଡ଼ିଶା କଂଗ୍ରେସ ଅବଶ୍ୟ ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନରେ ପୂର୍ଣ୍ଣରୂପେ ସାମିଲ ହୋଇଥାଏ ଏବଂ ପଣ୍ଡିତ ଗୋପବନ୍ଧୁ ଦାସଙ୍କଠାରୁ ଆରମ୍ଭ କରି ଶେଷ ପର୍ଯ୍ୟନ୍ତ କଂଗ୍ରେସ କମିଟି ପ୍ରଦେଶ ଗଠନର ପକ୍ଷପାତୀ ରହିଥିଲା । ମାତ୍ର ଆମେ ଯୁବକମାନେ ଏହି କାର୍ଯ୍ୟର ବିରୋଧୀ ନଥିଲେ ସୁଦ୍ଧା ବ୍ରିଟିଶ ସରକାର ସହ ସହଯୋଗର ପକ୍ଷପାତୀ ନଥିଲୁ –ତେଣୁ ଏ ମନୋବୃତ୍ତିର ବିରୋଧ କରିଥିଲୁ । କିଛିଦିନ ଧରି ସମ୍ବାଦପତ୍ରରେ ମୋ ପରି ଅତି ନଗଣ୍ୟ ଓ ଅଜଣା କର୍ମୀର ବିରୋଧ ସମାଲୋଚିତ ହେଲା । ମୁଁ ଏହାକୁ ଖୁବ୍ ଉପଭୋଗ କଲି ଏବଂ ମୋର ବି ଗୋଟାଏ ଗୁରୁତ୍ୱ ଅଛି ବୋଲି ଅନୁଭବ କଲି । ନୂତନ ଓଡ଼ିଶା ପ୍ରଦେଶ ଗଠନ ୧୯୩୬ ଏପ୍ରିଲ ପହିଲାରେ ହେଲା । ଓଡ଼ିଶାର ଗଡ଼ଜାତ ରାଜ୍ୟଗୁଡ଼ିକ ସେମିତି ଅଲଗା ରହିଲେ ଏବଂ ମେଦିନୀପୁର, ମଧ୍ୟପ୍ରଦେଶ, ମାନ୍ଦ୍ରାଜ ଓ ବିହାରର ସିଂହଭୂମି ପରି ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକ ବାହାରେ ରହିଗଲା । ତଥାପି ଓଡ଼ିଆମାନଙ୍କର ଏକ ସ୍ୱତନ୍ତ୍ର ସ୍ଥିତି ଓ ଶାସନ ହେବା ହେତୁ ଗୋଟାଏ ଆଶ୍ୱସ୍ତି ଆସିଲା । ଆମେ ସବୁ ଏହାକୁ ଖୁବ୍ ଗୁରୁତ୍ୱ ଦେଉନଥିଲୁ । କାରଣ ବ୍ରିଟିଶ ସରକାର ସହିତ ଲଢ଼ିବା ମନୋବୃତ୍ତି ଏହା ଫଳରେ ମାନ୍ଦା ପଡ଼ିଯିବ । ଆମେ ଚାହୁଁଥିଲୁ ଅସନ୍ତୋଷ ବଢ଼ାଇବା ନିମନ୍ତେ ।

୧୯୩୫ ଭାରତ ଶାସନ ଖସଡ଼ା ପ୍ରବର୍ତ୍ତନ ପରେ ଏକ ନୂତନ ପରିସ୍ଥିତି ସୃଷ୍ଟି ହେଲା ଏବଂ ପ୍ରାଦେଶିକ ବ୍ୟବସ୍ଥା ସଭାଗୁଡ଼ିକର ନିର୍ବାଚନରେ ଭାଗ ନେଇ ଲୋକସମର୍ଥନ ବ୍ରିଟିଶ

ସରକାର ପଛରେ ନାହିଁ ଏହା ପ୍ରମାଣ କରାଇଦେବା ନିମନ୍ତେ କଂଗ୍ରେସ ସ୍ଥିରକଲା । ଗାନ୍ଧିଜୀ ଏଥିରେ ଖୁବ୍ ଉତ୍ସାହିତ ନ ହୋଇଥିଲେ ସୁଦ୍ଧା ଏହି ମତର ବିରୋଧ କରିନଥିଲେ । ନିର୍ବାଚନ ଆସିଲେ ହିଁ କଂଗ୍ରେସ ଲୋକଙ୍କ ଭିତରେ ଜୀବନ ଆସେ । ଓଡ଼ିଶା କଂଗ୍ରେସ ଯାହା ନିର୍ଜୀବ ହୋଇ ପଡ଼ିଥିଲା, ତାହା ପୁଣି ସଜାଗ ହୋଇ ଉଠିଲା ଏବଂ ଏଥିରେ ମୁଖ୍ୟ ନେତୃତ୍ୱ ନେଲେ ପଣ୍ଡିତ ନୀଳକଣ୍ଠ ଦାସ ।

କଂଗ୍ରେସ ସୋସଲିଷ୍ଟ ପାର୍ଟି ଏହି ନୂତନ ପରିସ୍ଥିତିକୁ ପର୍ଯ୍ୟାଲୋଚନା କରି ସ୍ଥିରକଲା ଯେ ଆମେ କଂଗ୍ରେସ ଭିତରେ ରହିଥିବା ହେତୁ ତାର ଶୃଙ୍ଖଳା ମାନି ଏଥିରେ ଭାଗ ନେବା ଏବଂ ତାହିଁ ସଙ୍ଗେ ସଙ୍ଗେ କଂଗ୍ରେସ ନିର୍ବାଚନ ଇସ୍ତାହାରରେ ଜମିଦାରୀ ଉଚ୍ଛେଦ ଓ ଅନ୍ୟାନ୍ୟ କେତେକ ଅଗ୍ରଗାମୀ କାର୍ଯ୍ୟକ୍ରମ ଭର୍ତ୍ତି କରିବା ନିମନ୍ତେ ଉଦ୍ୟମ କରିବା । ଅନ୍ୟ ପ୍ରଦେଶରେ କ'ଣ ହୋଇପାରିଥିଲା, ମୋର ସ୍ମରଣ ନାହିଁ; ମାତ୍ର ଓଡ଼ିଶାରେ ଆମେ ସୋସଲିଷ୍ଟମାନେ ଓଡ଼ିଶା କଂଗ୍ରେସ ନିର୍ବାଚନ ଇସ୍ତାହାରରେ ଜମିଦାରୀ ଉଚ୍ଛେଦ ଆଦି କର୍ମପନ୍ଥା ଗ୍ରହଣ କରାଇ ନେଇ ପାରିଲୁ । ପଣ୍ଡିତ ନୀଳକଣ୍ଠ ଦାସ ନବବାବୁଙ୍କ ଉପରେ ବିଶ୍ୱାସ ରଖିଲେ ଏବଂ ତାଙ୍କର ସକ୍ରିୟ ସହଯୋଗ ପାଇବା ନିମନ୍ତେ ଉତ୍କଣ୍ଠିତ ହେଲେ । ଆମେ ସବୁ ତ କଂଗ୍ରେସରେ ଥାଉ—ଏହି ଅବସରରେ ଆମର କେତେକ ନୂଆ ସାଥିଙ୍କୁ କଂଗ୍ରେସ କମିଟି ଭିତରକୁ ଆଣିବାର ସୁଯୋଗ ମିଳିଲା । ଓଡ଼ିଶା କଂଗ୍ରେସ ଭିତରେ ଆମେ ଏକ ପ୍ରଭାବଶାଳୀ ଗ୍ରୁପ୍ ହୋଇପାରିଲୁ । କଂଗ୍ରେସକୁ ତ ସୋସଲିଜମ୍ ଆଡ଼କୁ ନେବା ଏବଂ ଅଧିକ ବ୍ରିଟିଶ ବିରୋଧୀ କରିବା ଆମର ସେତେବେଳକାର ଉଦ୍ଦେଶ୍ୟ ରହିଥାଏ—ଆମେ ବିଚାର କଲୁ, ଆମର ପ୍ରସ୍ତାବ ଗୃହୀତ ହୋଇଯିବା ଯୋଗୁଁ ନିର୍ବାଚନ ପ୍ରଚାର ଜରିଆରେ ଆମେ ସାମ୍ରାଜ୍ୟବାଦ ବିରୋଧରେ ମଧ୍ୟ ପ୍ରଚାର କରିବାର ସୁଯୋଗ ଲାଭ କରିବୁ । ସେତେବେଳକୁ ଓଡ଼ିଶା ପ୍ରଦେଶର ନୂଆ ନିର୍ବାଚନ । କଂଗ୍ରେସ ପରିସ୍ଥିତି ଅତି ଦୁର୍ବଳ । ରାଜା ଜମିଦାରଙ୍କ ପ୍ରଭାବ ଅକ୍ଷୁଣ୍ଣ ରହିଥାଏ । ବ୍ରିଟିଶ ସରକାରର ପୂର୍ଣ୍ଣ ସମର୍ଥନ ତାଙ୍କ ପଛରେ ରହିଥାଏ । ନୂତନ ବିଧାନସଭାର ସଭ୍ୟ ସଂଖ୍ୟା ଥାଏ ୬୦ ଏବଂ ସୀମାବଦ୍ଧ ଭୋଟର । ୧୯୫୦ରେ ନୂତନ ପ୍ରଜାତାନ୍ତ୍ରିକ ସମ୍ବିଧାନ ପ୍ରଚଳନ ପରେ ଯିନା ସାବାଳକ ଭୋଟାଧିକାର ମିଳିଲା । ୬୦ଟି ସ୍ଥାନ ଲାଗି ପ୍ରାର୍ଥୀ ହେବା ନିମନ୍ତେ ଲୋକ ପାଇବା କଷ୍ଟକର ଥିଲା । କେତେକ ପ୍ରତିଷ୍ଠିତ ଲୋକ କଂଗ୍ରେସ ଟିକେଟରେ ଲଢ଼ାଇ କରିବାର ପକ୍ଷପାତୀ ନଥିଲେ ।

## ନିର୍ବାଚନ ଓ ପଣ୍ଡିତ ନୀଳକଣ୍ଠ

ପଣ୍ଡିତ ନୀଳକଣ୍ଠ ଦାସ ପ୍ରବଳ ଚେଷ୍ଟା ଚଳାଇଲେ । କୋରାପୁଟ ପରି ଜମିଦାର ପ୍ରପୀଡ଼ିତ ଓ ଆଦିବାସୀବହୁଳ ଅଞ୍ଚଳରେ ପ୍ରବେଶହିଁ ଦୁଃସାଧ୍ୟ ଥିଲା । ଲୋକ ବାହାର କରିବା ଆହୁରି ମୁସ୍କିଲ । ଅଦମ୍ୟ ଚେଷ୍ଟା କରି ନୀଳକଣ୍ଠବାବୁ ସେଠାରେ ତିନିଜଣ କଂଗ୍ରେସ ପ୍ରାର୍ଥୀ

ପାଇଲେ । ଏ ସମୟର ଆହୁରି ଏକ ବିସ୍ମୟକର ସମ୍ବାଦ ହେଉଛି ବିଶ୍ୱନାଥ ଦାସ ଯେ କି ପରେ ଏହି ବିଧାନସଭା ନିର୍ବାଚନରେ ଓଡ଼ିଶାର ପ୍ରଥମ କଂଗ୍ରେସ ପ୍ରଧାନମନ୍ତ୍ରୀ ହେଲେ, ସେ ପ୍ରଥମେ କଂଗ୍ରେସ ପ୍ରାର୍ଥୀପତ୍ରରେ ଦସ୍ତଖତ କରିବାକୁ ଇଚ୍ଛା କରୁନଥିଲେ । ସେ ବିଚାରୁ-ଥିଲେ ଗଞ୍ଜାମ ଜିଲ୍ଲାରେ ଖଲିକୋଟ ରାଜାଙ୍କର ଏଭଳି ପ୍ରଭାବ ରହିଛି, ସେଥିରେ ଜମିଦାରୀ ରଯ୍ୟତ ସଭା ତରଫରୁ ଲଢ଼ାଇ କଲେ ସଫଳତା ମିଳିପାରେ, କିନ୍ତୁ କଂଗ୍ରେସ ନାମରେ ଅସୁବିଧା ହେବ । ପରେ ଅବଶ୍ୟ ଅନ୍ୟମାନେ ପ୍ରବର୍ତ୍ତାଇବାରୁ ସେ କଂଗ୍ରେସ ପ୍ରାର୍ଥୀରୂପେ ଛିଡ଼ାହେଲେ ଏବଂ ଜିତିଲେ । ୬୦ଟି ସ୍ଥାନରୁ କଂଗ୍ରେସ ମୋଟ ୩୭ଟି ଜାଗାରେ ପ୍ରାର୍ଥୀ ଠିଆ କରାଇ ପାରିଥିଲା ଏବଂ ତହିଁରୁ ୩୬ ଟି ଜାଗାରେ ଅପ୍ରତ୍ୟାଶିତ ବିଜୟ ଲାଭକଲା । ଓଡ଼ିଶାରେ ଏଭଳି ବିଜୟ କେହି ଆଶା କରି ନଥିଲେ । ଭାରତର ଅନ୍ୟ ପ୍ରଦେଶର ନିର୍ବାଚନର ଫଳାଫଳ ପ୍ରକାଶିତ ହେବା ଆଗରୁ ସର୍ବପ୍ରଥମେ ଏହା ବାହାରିବାରୁ ସାରା ଭାରତର କଂଗ୍ରେସ ଲୋକଙ୍କ ଭିତରେ ଖୁବ୍ ଉତ୍ସାହ ଆସିଲା । ତେଣୁ ସର୍ଦ୍ଦାର ପଟେଲ ପଣ୍ଡିତ ନୀଳକଣ୍ଠଙ୍କୁ ତାରଦ୍ୱାରା ଜଣାଇଲେ "ସାବାସ୍, ଓଡ଼ିଶା" !

ଆମ ସୋସଲିଷ୍ଟଙ୍କର ସେଭଳି ବିଶେଷ କିଛି ପ୍ରାର୍ଥୀ ନଥିଲେ । ଆମେ ସବୁ ନବବାବୁଙ୍କୁ ଜିତାଇବା କାମରେ ଲଗିଲୁ । ଡାକବାଙ୍ଗୀ ଯାନ ନ ଥାଏ କିମ୍ବା ଗାଡ଼ି ଘୋଡ଼ା ନ ଥାଏ । ଏପରିକି ବେଶି ପରିମାଣରେ ସାଇକଲ୍ ବି ନ ଥାଏ । ମୋର ଯେତେଦୂର ସ୍ମରଣ ହେଉଛି, ପଣ୍ଡିତ ନୀଳକଣ୍ଠ ସାରା ଓଡ଼ିଶାର ନିର୍ବାଚନ ଲାଗି କେନ୍ଦ୍ର କଂଗ୍ରେସ କର୍ତ୍ତୃପକ୍ଷଙ୍କଠାରୁ ମାତ୍ର ୮୦୦୦ ଟଙ୍କା ପାଇଥାଆନ୍ତି । ସେଥିରୁ ସେ ନବବାବୁଙ୍କ ନିର୍ବାଚନ ଲାଗି ମୋଟେ ୩୦୦ଟଙ୍କା ଦେଇଥାଆନ୍ତି । ଆମେମାନେ ସବୁ ଦଳ ଦଳ ହୋଇ, ପତାକା ଧରି, ଧ୍ୱନି ଦେଇ ଗାଁ ଗାଁ ବୁଲୁଥାଉ, ଚାନ୍ଦା ମାଗୁଥାଉ ଏବଂ ସନ୍ଧ୍ୟାରେ ଯେଉଁଠି ପହଞ୍ଚୁ, ସେଠି ସଭା କରି ନିର୍ବାଚନ କଥା କହୁ । ଅନ୍ୟ ପ୍ରୋଗ୍ରାମ୍ ଛଡ଼ା ଚାଷୀ ଜମିଦାର ସଂଘର୍ଷ ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ବେଶି କୁହାଯାଉଥାଏ । ଆମ ପ୍ରଚାର ଏପରି ଲୋକପ୍ରିୟ ହେଲା ଯେ ଗାଁ ଗାଁରୁ ଲୋକ ବାହାରି ତାଙ୍କ ଅଞ୍ଚଳକୁ ଯିବା ନିମନ୍ତେ ଆମକୁ ନିମନ୍ତ୍ରଣ କରି ଆସିଲେ । ଲୋକେ ଆସି କହନ୍ତି—"ଆମ ଗାଁ ଠିକ୍ ଅଛି; କେବଳ କେତୋଟା 'ସାମ୍ରାଜ୍ୟବାଦୀ'ଙ୍କି ଗୁଡ଼ିଦେଲେ ବାକି ସବୁ ଆମ ପଟରେ । ସେଠିକି ଥରେ ଗଲେ ସେମାନେ ଜବତ ହୋଇଯିବେ ।" ଏଇଥିରୁ ବୁଝିବାକୁ ହେବ, ଆମର କିଭଳି ରାଜନୈତିକ ପ୍ରଚାର ହୋଇଥିଲା ଏବଂ ଗ୍ରାମର ସାଧାରଣ ଲୋକେ ଯିଏ ଅତ୍ୟାଚାରୀ ଓ ଆମର ବିରୋଧ କରୁଥିଲା, ତାକୁ 'ସାମ୍ରାଜ୍ୟବାଦୀ' ବୋଲି ନାମକରଣ କଲେ । ମୁଁ ତ ଏତେ ନିର୍ବାଚନ ଲଢ଼ିଛି; ଏତେ କାଳ ପାର୍ଲିଆମେଣ୍ଟ ମେମ୍ବର ହୋଇ ରହିଲି—ମାତ୍ର ଏଭଳି ନିର୍ବାଚନ ଲଢ଼ାଇ ଆଉ କେବେ ହୋଇ ନାହିଁ । ଫରକ୍ ହେଉଛି ସେତେବେଳେ ଲୋକଙ୍କ ଆଡ଼ୁ ସମର୍ଥନ ଆସୁଥିଲା—ଏବେ ଲୋକଙ୍କ ପାଖରୁ ସମର୍ଥନ ଆଣିବାର ଚେଷ୍ଟା କରାଯାଉଛି ।

ନିର୍ବାଚନ ପରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କରିବ କି ନାହିଁ, ଏ ପ୍ରଶ୍ନ ବଡ଼ ଜଟିଳ ହୋଇଥିଲା । ଆମେ ସୋସଲିଷ୍ଟମାନେ ଏହାର ବିରୋଧୀ ଥିଲୁ ଏବଂ କଂଗ୍ରେସ ବ୍ୟବସ୍ଥା

ଭିତରେ ପଶି ତାକୁ ଭିତରୁ ଭାଙ୍ଗିବାଲାଗି ନିର୍ବାଚନ ଇସ୍ତାହାରରେ ଯେଉଁ ପ୍ରତିଶ୍ରୁତି ଦେଇଥିଲି, ତଦନୁସାରେ କାର୍ଯ୍ୟକାରୀ ହେବାର ପକ୍ଷପାତୀ ଥିଲୁ । ପଣ୍ଡିତ ନେହରୁ ମଧ୍ୟ ପ୍ରଥମ ଅବସ୍ଥାରେ ଏହି ମତର ସମର୍ଥକ ଥିଲେ । କଂଗ୍ରେସ ଭିତରେ ଏକ ମନ୍ତ୍ରୀପଦ ଗ୍ରହଣ ବିରୋଧୀ ସଂଗଠନ ବି ଛିଡ଼ାହୋଇଗଲା ସପକ୍ଷରେ ଜନମତ ସୃଷ୍ଟି କରିବା ନିମନ୍ତେ । ମାତ୍ର ଶେଷକୁ କଂଗ୍ରେସ କେତେକ ସର୍ତ୍ତ ପୂରଣ ହେଲେ ମନ୍ତ୍ରୀମଣ୍ଡଳ ଗ୍ରହଣ କରିବାର ପକ୍ଷପାତୀ ବୋଲି ନିଷ୍ପତ୍ତି ନେଲା ।

ପ୍ରତି ପ୍ରଦେଶରେ ଏଥିଲାଗି କଂଗ୍ରେସ ଆସେମ୍ବ୍ଲି ଦଳର ନେତା ନିର୍ବାଚନ ପ୍ରଶ୍ନ ଉଠିଲା । ଉତ୍ତର ପ୍ରଦେଶରେ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ପ୍ରତି ବିପୁଳ ସମର୍ଥନ ଥିଲା ଏବଂ ପଣ୍ଡିତ ନେହରୁ ଇତ୍ୟାଦି ତାଙ୍କୁ ନେତା କରିବା ନିମନ୍ତେ ପ୍ରସ୍ତାବ କଲେ । ଓଡ଼ିଶାରେ ମଧ୍ୟ ଏକ ବିଚିତ୍ର ପରିସ୍ଥିତି ଥିଲା । ଉପର ନେତାଙ୍କ ମଧ୍ୟରେ ପରସ୍ପର ପ୍ରତି ଏତେ ସନ୍ଦେହ ଓ ଅବିଶ୍ୱାସ ଯେ ପ୍ରତ୍ୟେକ ପ୍ରତ୍ୟେକର ବିରୋଧରେ ବିକ୍ଷୋଦ୍‌ଗାର କରିବା ଆରମ୍ଭ କରିଦେଲେ । ତେଣୁ ଏକ ବିଚାର ଚାଲିଲା ଯେ ନବକୃଷ୍ଣ ଚୌଧୁରୀଙ୍କୁ ନେତା କରାଯାଉ; ମାତ୍ର କଂଗ୍ରେସ ସୋସଲିଷ୍ଟ ପାର୍ଟିର କର୍ଯ୍ୟନିର୍ବାହିକା ସମିତି ସବୁ ପରିସ୍ଥିତିକୁ ବିଚାରକୁ ନେଇ ନିଷ୍ପତ୍ତି ନେଲେ ଯେ ଯେହେତୁ କଂଗ୍ରେସ ମନ୍ତ୍ରୀପଦ ଗ୍ରହଣ କରିବାର ପକ୍ଷପାତୀ ଏବଂ ସୋସଲିଷ୍ଟମାନେ ତାହାର ବିରୋଧ କରୁଛନ୍ତି, ତେଣୁ ପ୍ରଦେଶ ମାନଙ୍କରେ କୌଣସି ସୋସଲିଷ୍ଟ କଂଗ୍ରେସ ଆସେମ୍ବ୍ଲି ପାର୍ଟିର ଦଳପତି ହେବାକୁ ପ୍ରାର୍ଥୀ ହେବେ ନାହିଁ । ତେଣୁ ନବବାବୁ ହେବା କଥା ନୋହିଲା । ତା' ପରେ ଓଡ଼ିଶା କଂଗ୍ରେସରେ ଯୋଉ ପାଲା ଲାଗିଲା, ତାହା ବାସ୍ତବିକ ଆମୋଦଦାୟକ ।

ଆଗରୁ ଲେଖିଛି, ହରେକୃଷ୍ଣ ମହତାବ କିଭଳି କ୍ଷମତା ଆସିବାର ସମ୍ଭାବନା ଦେଖି ଗଭର୍ଣ୍ଣର ହବାକଙ୍କ ସହ ସାକ୍ଷାତ କଲେ ଓ କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷଙ୍କଠାରୁ ଭର୍ତ୍ସନା ପାଇଲେ । ସେ ଆସେମ୍ବ୍ଲିକୁ ପ୍ରାର୍ଥୀ ବି ହୋଇ ନ ଥିଲେ । ସେମିତି ପଣ୍ଡିତ ନୀଳକଣ୍ଠଙ୍କ ଅବସ୍ଥା । ସେ କେନ୍ଦ୍ର ଅସେମ୍ବ୍ଲି ସଭ୍ୟ ଥିଲେ । ବାସ୍ତବିକ ଯେଉଁ ପ୍ରତିକୂଳ ପରିସ୍ଥିତି ଓ ଅନ୍ୟମାନଙ୍କ ଉଦାସୀନତା ସତ୍ତ୍ୱେ ସେ ଓଡ଼ିଶାରେ ଏଭଳି ଏକ ଅଭୂତପୂର୍ବ ସାଫଲ୍ୟ କଂଗ୍ରେସ ପାଇଁ ଅଣିପାରିଥିଲେ ସେଥିରେ ସେ ଥିଲେ ପ୍ରକୃତ ନେତା ଏବଂ ଆସେମ୍ବ୍ଲି ଦଳର ନେତାହେବା ତାଙ୍କର ହକ୍ ଥିଲା କହିଲେ ଚଳେ । ମହତାବବାବୁ ଓ ତାଙ୍କ ସମର୍ଥକ ମାନେ ନୀରବ ରହିଲେ ନାହିଁ । ନୀଳକଣ୍ଠବାବୁଙ୍କ ବିରୁଦ୍ଧରେ ନାନାପ୍ରକାର ଅପପ୍ରଚାର ଓ ଚକ୍ରାନ୍ତ ଆରମ୍ଭ ହୋଇଗଲା । କିନ୍ତୁ ଆସେମ୍ବ୍ଲି ମେମ୍ବର ମାନଙ୍କ ଭିତରେ ନୀଳକଣ୍ଠଙ୍କର ହିଁ ବହୁଳ ସମର୍ଥନ ଥାଏ । ମେମ୍ବର ନ ଥାଇ ବି ଜଣେ ମନ୍ତ୍ରୀ ହୋଇପାରିବ—ମାତ୍ର ୬ ମାସ ଭିତରେ ତାକୁ ବିଧାନ ସଭାକୁ ନିର୍ବାଚିତ ହୋଇ ଆସିବାକୁ ପଡ଼ିବ । ଏମିତି ବ୍ୟବସ୍ଥା ୧୯୩୫ ମସିହା ଗଭର୍ଣ୍ଣମେଣ୍ଟ ଅଫ ଇଣ୍ଡିଆ ଆକ୍ଟରେ ରହିଥାଏ । ସେହି ଦଫାର ସୁବିଧା

ଯେବେ ତାଙ୍କ ସମର୍ଥକମାନେ ତାଙ୍କୁ ନେତା କରିବା କଥା ଚିନ୍ତା କଲେ । ତାଙ୍କ ବାଟରେ ଆଉ ଏକ ବାଧା ହେଲା କେନ୍ଦ୍ର କଂଗ୍ରେସ କର୍ତ୍ତୃପକ୍ଷଙ୍କ ନିଷ୍ପତ୍ତି । ସେମାନେ ଘୋଷଣା କଲେ ଯେ କେନ୍ଦ୍ର ଆସେମ୍ବ୍ଲିରେ ସଭ୍ୟ ଥିବା କୌଣସି ବ୍ୟକ୍ତି ପ୍ରାଦେଶିକ ଆସେମ୍ବ୍ଲି ଦଳର ନେତୃତ୍ୱ ଲାଗି ଛିଡ଼ା ହୋଇପାରିବ ନାହିଁ । ଏସବୁ ସତ୍ତ୍ୱେ ନୀଳକଣ୍ଠବାବୁଙ୍କ ସମର୍ଥକମାନେ ସ୍ଥିର କଲେ ଯେ ସେ ବହୁତ ଅଧିକ ଭୋଟରେ ନିର୍ବାଚିତ ହେଲେ କେନ୍ଦ୍ର କର୍ତ୍ତୃପକ୍ଷ ବଳେ ସର୍ତ୍ତ କୋହଳ କରିଦେବେ । ତେଣୁ ପ୍ରବଳ ଆୟୋଜନ ଚାଲିଲା ଏବଂ ନୀଳକଣ୍ଠବାବୁଙ୍କ ବିରୋଧୀଙ୍କ ସଂଖ୍ୟା ଏତେ ଊଣା ଥିଲା ଯେ ସେମାନେ ତାଙ୍କୁ କୌଣସି ପ୍ରକାର ବାଧା ଦେଇ ପାରି ନଥାନ୍ତେ । କିନ୍ତୁ ସେମାନେ ଏକ କୌଶଳପୂର୍ଣ୍ଣ ପନ୍ଥା ଆବିଷ୍କାର କଲେ । ଉପରବେଳା ଥାଏ ନେତା ନିର୍ବାଚନ ଓ ସକାଳ ବୈଠକରେ ପାର୍ଟିର ନିୟମାବଳୀ ପ୍ରସ୍ତୁତ ଓ ଗ୍ରହଣ । ଏହି ବୈଠକରେ ନୀଳକଣ୍ଠ ବିରୋଧୀ ପକ୍ଷ ଏକ ବିଧାନ ଖଞ୍ଜିଦେଲେ ଯେ ବିଧାନ ସଭାର ସଭ୍ୟ ନ ଥିବା କୌଣସି ବ୍ୟକ୍ତି ନେତା ପଦ ଲାଗି ପ୍ରାର୍ଥୀ ହୋଇ ପାରିବେ ନାହିଁ । ନିଜ ପ୍ରଚାରର ଧୂମ୍‌ରେ ମାତିଥିବା ନୀଳକଣ୍ଠ ଗୋଷ୍ଠୀ ଏ ବିଷୟଟିକୁ ଲକ୍ଷ୍ୟ କରି ନ ଥିଲେ ଏବଂ ନିୟମାବଳୀ ଆଲୋଚନାରେ ବିଶେଷ କିଛି ଆଗ୍ରହ ଦେଖାଇନଥିଲେ । ଉପରବେଳା ନେତା ନିର୍ବାଚନ ବେଳେ ପଣ୍ଡିତ ନୀଳକଣ୍ଠଙ୍କ ନାମ ପ୍ରସ୍ତାବ ହୁଅନ୍ତେ, ବୈଠକରେ ସଭାପତିତ୍ୱ କରୁଥିବା ଓକିଲ ଗୁରୁଚନ୍ଦ୍ର ରାୟ ତାହା ଉପରୋକ୍ତ ନିୟମାନୁସାରେ ଗ୍ରହଣ ଯୋଗ୍ୟ ନୁହେଁ ବୋଲି ରାୟ ଦେଲେ । ଗୁରୁବାବୁ ବାଲେଶ୍ୱର ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ଆସିଥିଲେ ।

ଏହା ପରେ ଭୀଷଣ ଗଣ୍ଡଗୋଳ ହୋଇ ବୈଠକ ମୁଲତବୀ ରହିଲା । ପୁଣି ଦୁଇପକ୍ଷ ବିକଳ୍ପ ବ୍ୟବସ୍ଥାରେ ଲାଗିପଡ଼ିଲେ । ନୀଳକଣ୍ଠଙ୍କ ସମର୍ଥକମାନେ ଏପରି ଲୋକ ଖୋଜିଲେ ଯେ ପରେ ନୀଳକଣ୍ଠବାବୁଙ୍କ ଲାଗି ସ୍ଥାନ ଛାଡ଼ିଦେବ । ଗଞ୍ଜାମର ଦିବାକର ପଟ୍ଟନାୟକ ବିଶ୍ୱନାଥ ଦାସଙ୍କ ସହ କଥାବାର୍ତ୍ତା କରି ତାଙ୍କ କଥାରୁ ଧାରଣା ନେଇ ଆସିଲେ ଯେ ସେ ଏଥିଲାଗି ପ୍ରସ୍ତୁତ । ତେଣୁ ବିଶ୍ୱନାଥ ଦାସଙ୍କର ଜଣେ ହେଲେ ସମର୍ଥକ ନଥିଲେ ସୁଦ୍ଧା ଏମାନଙ୍କ ସମର୍ଥନରେ ସେ ନେତା ନିର୍ବାଚିତ ହେଲେ ଏବଂ ପରେ ପ୍ରଧାନ ମନ୍ତ୍ରୀ ହେଲେ । ଦୁଇପକ୍ଷର ବିବାଦରେ ତାଙ୍କର ଲାଭ ହେଲା ଏବଂ ପରେ ସେ ନୀଳକଣ୍ଠଙ୍କ ପକ୍ଷ ଛାଡ଼ି ମହତାବଙ୍କ ପକ୍ଷ ହୋଇଗଲେ ଏବଂ ମହତାବବାବୁ କଂଗ୍ରେସ କାର୍ଯ୍ୟକାରୀ ସମିତିର ସଭ୍ୟ ହୋଇଥିବାରୁ ନୀଳକଣ୍ଠବାବୁ ଓ ତାଙ୍କ ସମର୍ଥକମାନଙ୍କ ଆକ୍ରମଣରୁ ମନ୍ତ୍ରୀମଣ୍ଡଳକୁ ରକ୍ଷା କଲେ । ଶୁଣିବାକୁ ମିଳିଲା ଯେ ବିଶ୍ୱନାଥ ଦାସ କିଛି ନିର୍ଦ୍ଦିଷ୍ଟ 'ହଁ' କରିନଥିଲେ । ସେ ତାଙ୍କ ଢଙ୍ଗରେ ଦିବାକର ପଟ୍ଟନାୟକଙ୍କୁ କହିଥିବା ପ୍ରକାଶ ଯେ ସମସ୍ତେ ଯାହା ସ୍ଥିର କରିବେ ମୁଁ କଣ ସେଥିରୁ ବାଦ ଯିବି ? ଅଭି ତ ସମସ୍ତେ ସ୍ଥିର କରିବାଟା ହେଲା ନାହିଁ—ତେଣୁ ସେ ତାଙ୍କ ପ୍ରତିଶ୍ରୁତି ରକ୍ଷା କରନ୍ତେ କେମିତି ?

## କୃଷୀ ଆନ୍ଦୋଳନର ପ୍ରଥମ ବିଜୟ

କଂଗ୍ରେସ ମନ୍ତ୍ରୀମଣ୍ଡଳ ହେବା ପରେ ଆମର କୃଷକ ଆନ୍ଦୋଳନର କାର୍ଯ୍ୟ ବଢ଼ାଇବା ସୁବିଧା ହେଲା । ପ୍ରଦେଶର ବିଭିନ୍ନ ଜିଲ୍ଲା ଓ ଅଞ୍ଚଳମାନଙ୍କରେ କୃଷକ ସଂଘର ଶାଖା ସ୍ଥାପନ କରାଗଲା ଏବଂ ସମ୍ମିଳନୀମାନଙ୍କରେ କୃଷୀଙ୍କର ବିଭିନ୍ନ ଦାବୀ ଦେଇ ପ୍ରସ୍ତାବ ସବୁ ପାସ୍ ହେଲା । ଜମିଦାରୀ ଅଞ୍ଚଳରେ କୃଷୀମାନଙ୍କର ଏକ ବଡ଼ ଆପତ୍ତି ଥିଲା ଯେ ତାଙ୍କ ବାଡ଼ିରେ ଥିବା ଗଛ ଓ ପୋଖରୀରେ ଥିବା ମାଛ ବ୍ୟବହାରରୁ ସେମାନେ ବଞ୍ଚିତ । ସେ ସବୁରେ ଜମିଦାରର ଅଧିକାର—ଫଳ ପାଚିଲେ ବା ହେଲେ ଜମିଦାର ଘରେ ଦେବାକୁ ପଡ଼େ । ଏହା ଏକ ଅତି ସାଂଘାତିକ ପ୍ରଥା ଯାହା ତୁରନ୍ତ ଉଠିଯିବା ଉଚିତ । ଆମେ କେତେକ ସ୍ଥଳରେ କୃଷୀଙ୍କି ସଂଗଠିତ କରି ଏହା ନ ଦେବାଲାଗି ଲୋକଙ୍କୁ ମତାଇଲୁ ଏବଂ ଅତି ଅଳ୍ପ ସ୍ଥାନରେ ଏହାର ସଫଳତା ମିଳିଲା । କାରଣ ଆଇନଗତ ଅଧିକାର ନଥିଲା—ତେଣୁ ଜମିଦାର ପକ୍ଷ ମକଦ୍ଦମା କରିଦେଉଥିଲା । ମକଦ୍ଦମାର ଖର୍ଚ୍ଚାନ୍ତ ହୋଇ ଲଢ଼ିବାର ଶକ୍ତି ପ୍ରଜାଙ୍କର କେଉଁଠୁ ଆସିବ ? ସେଥିଲାଗି ଆମେମାନେ ସ୍ଥିର କଲୁ ୧୯୩୭ ମସିହା ସେପ୍‌ଟେମ୍ବର ପହିଲାରେ କଟକଠାରେ ଏକ ବିରାଟ କୃଷୀ ସମାଗମ କରି ସେଥିରେ ପ୍ରଜାସତ୍ତ୍ୱ ଆଇନର ସଂଶୋଧନ ନିମନ୍ତେ ଦାବୀ କରାଯିବ ଏବଂ ମନ୍ତ୍ରୀମଣ୍ଡଳର ସଭ୍ୟମାନେ ଆସି ଏହି ସମ୍ମିଳନୀରେ ତାଙ୍କ ଦାବୀ ଗ୍ରହଣ କରି ପ୍ରତିଶ୍ରୁତି ଦେବେ । ଆମର ପ୍ରଭାବ ଥିବା ହେତୁ ଏପରି ସମ୍ମିଳନୀକୁ ମନ୍ତ୍ରୀଙ୍କି ଆଣିବାଟା କିଛି ବଡ଼ କଥା ନଥିଲା । ମାତ୍ର ଏପରି ଏକ କୃଷୀ ସମ୍ମିଳନୀ ଓ ବିକ୍ଷୋଭ ଓଡ଼ିଶାରେ ହେଲା ନୂତନ । ଗାଁ ଗଣ୍ଡାରୁ ଚୂଡ଼ା ଗୁଡ଼ିଏ ବାନ୍ଧି ଦଳ ଦଳ ହୋଇ ତୀର୍ଥ-ଯାତ୍ରୀଙ୍କ ପରି କୃଷୀ ଯେ ବିଭିନ୍ନ ଅଞ୍ଚଳରୁ କଟକ ସଭାକୁ ଆସିଲେ, ତାହା ଅଦ୍ଭୁତ ଶୃଙ୍ଖଳା ସୃଷ୍ଟି କଲା । ଗୁରିଆଡ଼େ ଚହଲ ପଡ଼ିଗଲା । ସହରବାସୀ ବି ଚକିତ ହୋଇଗଲେ । ମନ୍ତ୍ରୀ-ମଣ୍ଡଳର ସଦସ୍ୟମାନେ ସଭାରେ ଉପସ୍ଥିତ ହୋଇ କୃଷୀଙ୍କ ଦାବୀପତ୍ର ଗ୍ରହଣ କଲେ ଏବଂ ଆଇନର ଆବଶ୍ୟକୀୟ ସଂଶୋଧନ କରାଯିବ ବୋଲି ପ୍ରତିଶ୍ରୁତି ଦେଲେ । ଏହା ସଂଗଠିତ କୃଷୀ ଆନ୍ଦୋଳନର ପ୍ରଥମ ବିଜୟ ।

କୃଷକ ଆନ୍ଦୋଳନର ପ୍ରସାର ସଙ୍ଗେ ସଙ୍ଗେ ସୋସଲିଷ୍ଟ ପାର୍ଟିର ସଂଗଠନ ବି ପ୍ରସାରିତ ହେଲା—ଅବଶ୍ୟ ସେପରି କିଛି ବିଧିବଦ୍ଧ ଜିଲା ଇଉନିଟ ଆଦି କରାଯାଉନଥିଲା । କୃଷକ ସଂଘର ଜିଲ୍ଲା ଶାଖା ଆଦି ଜରିଆରେ କାର୍ଯ୍ୟ ହେଉଥିଲା । ତାହା ଛଡ଼ା ଆମେ ସବୁ କଂଗ୍ରେସରେ ଥାଉ, କଂଗ୍ରେସ କମିଟି ଯେଉଁଠି ସମ୍ଭବ, ଏପରି ସମ୍ମିଳନୀ ଆଦିରେ ସହଯୋଗ କରୁଥିଲେ ।

ଏତିକବେଳେ ଆନ୍ଦୋଳନକୁ ଆହୁରି ପ୍ରସାରିତ କରିବା ନିମନ୍ତେ ବିଧିବଦ୍ଧ ଏକ ମୁଖପତ୍ରର ଆବଶ୍ୟକତା ଉପଲବ୍‌ଧି କରାଗଲା । ପୁରୀ ଜିଲ୍ଲାର ଖୋର୍ଦ୍ଧାଠାରେ କଂଗ୍ରେସ ସୋସଲିଷ୍ଟ ପାର୍ଟିର କାର୍ଯ୍ୟକାରୀ ସମିତିର ଏକ ବୈଠକ ବସିଲା । ଏତେବେଳକୁ ପାର୍ଟି ବେଶ୍ ରୂପ

ନେଇସାରିଥିଲା ଏବଂ ପରେ ଯେଉଁମାନେ କମ୍ୟୁନିଷ୍ଟ ପାର୍ଟି ଗଢ଼ି କଂଗ୍ରେସ ସୋସଲିଷ୍ଟ ପାର୍ଟିରୁ ଅଲଗା ହୋଇଗଲେ ସେମାନେ ମଧ୍ୟ ଏହାର ଅନ୍ତର୍ଭୁକ୍ତ ହୋଇଥିଲେ । ଏତେବେଳକୁ କମ୍ୟୁନିଷ୍ଟମାନେ କଂଗ୍ରେସ ସୋସଲିଷ୍ଟ ପାର୍ଟି ଭିତରେ ପ୍ରବେଶ କରି ସାରିଥିଲେ । କମ୍ୟୁନିଷ୍ଟ ଇଣ୍ଟରନେସନାଲର ସିଦ୍ଧାନ୍ତ ଅନୁସାରେ 'ପପୁଲର ଫ୍ରଣ୍ଟ' ନୀତି ଅନୁସରଣ କରୁଥିଲେ ଏବଂ ସି. ଏସ୍. ପି.ରେ ପ୍ରବେଶ କରି ନିଜର ପ୍ରଭାବ ବିସ୍ତାରର ଉଦ୍ୟମରେ ଲାଗିଥିଲେ । ଓଡ଼ିଶାରେ କିଛି କମ୍ୟୁନିଷ୍ଟ ସଙ୍ଗଠନ ନ ଥିଲା । କେବଳ ଗୁରୁଚରଣ ପଟ୍ଟନାୟକ ୧୯୩୫ ବେଳକୁ କମ୍ୟୁନିଷ୍ଟ ପାର୍ଟିର ଏକ ଗୋପନୀୟ ସଦସ୍ୟପଦ ଗ୍ରହଣ କରି ଆସିଥିଲେ ।

କଂଗ୍ରେସ ସୋସଲିଷ୍ଟ ପାର୍ଟି ଭିତରେ ସେ ପୂରାପୂରି ସେହି ନିର୍ଦ୍ଦେଶରେ କାର୍ଯ୍ୟ କରୁଥିଲେ । ତାଙ୍କ ମତର କିଛି ଝଲକ ଏଥିପୂର୍ବରୁ ମଧ୍ୟ ମିଳିଥିଲା । ଆମେମାନେ ସମସ୍ତେ ମିଶି 'ଆଧୁନିକ' ବୋଲି ଏକ ମାସିକ ପତ୍ରିକା ପ୍ରକାଶ କଲୁ । ଏହି ଆଧୁନିକ ପତ୍ରିକାର ସମ୍ପାଦକ ହେଲେ ଭଗବତୀ ପାଣିଗ୍ରାହୀ ଏବଂ ଏହା ସାଙ୍ଗକୁ ନବଯୁଗ ସାହିତ୍ୟ ସଂସଦ ନାମରେ ଏକ ସାଂସ୍କୃତିକ ସଂଘ ବି ସ୍ଥାପନା କରାଗଲା । ଭଗବତୀ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ ପ୍ରଭୃତି ଯେଉଁ ଶିକ୍ଷିତ ଯୁବକ ପାର୍ଟି ସହିତ ସଂପୃକ୍ତ ହୋଇଥିଲେ, ସେମାନେ ଏହାର ମୁଖ୍ୟତଃ ପରିଚାଳନା କରୁଥିଲେ ଏବଂ ନିର୍ଦ୍ଦିଷ୍ଟ ଭାବରେ ସେଥିରେ ସୋଭିଏଟ୍ ରୁଷ ଓ କମ୍ୟୁନିଜମ୍ ଆଦର୍ଶବାଦ ପ୍ରତି ଅଧିକ ଝୁଙ୍କ୍ ଥିବାଭଳି ପ୍ରବନ୍ଧମାନ ପ୍ରକାଶ ପାଉଥିଲା । ମାତ୍ର ଆମେ ସବୁ ବି ସୋଭିଏଟ୍ ରୁଷ ଓ ମାର୍କସବାଦର ପୂର୍ଣ୍ଣ ସମର୍ଥକ ଥିବାରୁ ଏହା ପଛରେ ଯେ କମ୍ୟୁନିଷ୍ଟ ଗ୍ରୁପ୍ ଗଠନର କାରସାଦୀ ଥିଲା, ତାହା ସନ୍ଦେହ କରୁ ନ ଥିଲୁ । ମୁଁ ନିଜେ 'ଆଧୁନିକ'ରେ ସୋଭିଏଟ୍ ରୁଷ ସମ୍ବନ୍ଧରେ ଏକ ପ୍ରବନ୍ଧ ଲେଖିଥିବା ପରି ମନେ ହେଉଛି । ଛାତ୍ର ଯୁବକଙ୍କ ଭିତରେ ସେମାନେ ବିଶେଷ ଭାବରେ ଏହି ଗ୍ରୁପ୍ ମନୋବୃତ୍ତି ପୂରାଇଲେ । ତାପରେ ମଧ୍ୟ ଏକପ୍ରକାର କମ୍ୟୁନିଷ୍ଟ ନେତା ଭାବରେ ଖ୍ୟାତି ଲଭିଥିବା ବ୍ୟକ୍ତିଙ୍କ ଭିତରୁ କେତେକ କଂଗ୍ରେସ ସୋସଲିଷ୍ଟ ପାର୍ଟିର କର୍ମକର୍ତ୍ତା ହୋଇଥିଲେ ଏବଂ ସେମାନେ ଘନ ଘନ ଗସ୍ତ କରି ଏପରି ଗ୍ରୁପ୍‌ମାନଙ୍କୁ ଆହୁରି ମଜବୁତ୍ କରାଉଥିଲେ; ସେମାନଙ୍କ ଭିତରେ ଗୁପ୍ତ ମନ୍ତ୍ରଣା ହେଉଥିବାର ସନ୍ଧାନ ମଧ୍ୟ କେତେକାଂଶରେ ମିଳିଲା । କିନ୍ତୁ ପାର୍ଟିର କର୍ମକର୍ତ୍ତା କିମ୍ବା କାର୍ଯ୍ୟକାରୀ ସମିତିର ସଦସ୍ୟ ହେବାରେ ଆମ ଭିତରେ କୌଣସି ପ୍ରତିଯୋଗିତା ନ ଥିବାରୁ ଏବଂ ନବବାବୁଙ୍କ ଉପରେ ସମସ୍ତଙ୍କର ବିଶ୍ୱାସ ରହିଥିବାରୁ ଏଠାରେ ପରସ୍ପର ଭିତରେ ବିବାଦର ସମ୍ଭାବନା ନ ଥିଲା ଏବଂ ତାଙ୍କୁ ବାଦ୍ ଦେଇ କେହି କିଛି କରିପାରିବା ଭଳି ଅବସ୍ଥାରେ ନ ଥିଲେ । ଆମେ ସମସ୍ତେ ଏକ ସାଙ୍ଗରେ କାର୍ଯ୍ୟ କରିଯାଉଥିଲୁ ବିଭିନ୍ନ କ୍ଷେତ୍ରରେ ।

## କୃଷକ ପତ୍ରିକା

ଏପରି ଦୁଇ ମତବାଦର ଟିକିଏ ସୂଚନା ମିଳିଲା ଯେତେବେଳେ ଖୋର୍ଦ୍ଧାଠାରେ ପ୍ରାଦେଶିକ ପାର୍ଟି କାର୍ଯ୍ୟକାରୀ ସମିତି ବୈଠକରେ ପତ୍ରିକା ପ୍ରକାଶନ ବିଷୟଟି ଆଲୋଚିତ

ହୁଏ । ପତ୍ରିକାର ନାମକରଣ କଣ ହେବ ଏହା ପେନ ଗୁରୁତ୍ୱ ଆଲୋଚନା ଚାଲିଲା ବହୁରାତି ପର୍ଯ୍ୟନ୍ତ । ମୁଁ ପତ୍ରିକାଟିର ନାମ "କୃଷକ" ରଖିବାଲାଗି ପ୍ରସ୍ତାବ ଦେଲି । ତାତ୍ତ୍ୱିକ ଦୃଷ୍ଟିରୁ ଏହି ନାମକରଣ ସମାଜବାଦୀ ଆନ୍ଦୋଳନ ଦୃଷ୍ଟିରୁ କେତେଦୂର ଶ୍ରେୟ ଏହା ପେନ ବିତର୍କ ଲାଗିଲା । ମାର୍କସୀୟ ତତ୍ତ୍ୱ ଅନୁସାରେ ମଜଦୁର ହିଁ ବିପ୍ଳବର ଅଗ୍ରଦୂତ; କୃଷକ ରକ୍ଷଣଶୀଳ, ଓ ପ୍ରଗତି ଅଭିମୁଖୀ ନୁହେଁ; ତେଣୁ ମଜଦୁର ନାମକରଣ ଏକ ସୋସାଲିଷ୍ଟ ପାର୍ଟି ପକ୍ଷରେ ନିତାନ୍ତ ଉଚିତ ବୋଲି କମ୍ୟୁନିଷ୍ଟ ଭାବାପନ୍ନ ବନ୍ଧୁମାନେ ଯୁକ୍ତି ଦର୍ଶାଇଲେ । ଶେଷକୁ କୌଣସି ନିଷ୍ପତ୍ତି ନ ହୋଇ ପାରିବାରୁ ଭୋଟ ନିଆଗଲା ଏବଂ ଅଳ୍ପ ଅଧିକ ଭୋଟରେ "କୃଷକ" ନାମଟି ସ୍ଥିର ହେଲା । କୃଷକ ଆନ୍ଦୋଳନ ସେତେବେଳକୁ ପ୍ରଖର ହୋଇ ଯାଇଥିଲା ଏବଂ 'କୃଷକ' ନାମଟି ବିଶେଷ ଅଦ୍ଭୁତ ହୋଇପାରିବ ବୋଲି ଗାଁଗହଳର କାର୍ଯ୍ୟରେ ସଂପୃକ୍ତ ଥିବା ବନ୍ଧୁମାନେ ଅନୁଭବ କଲେ । ଏଥିର ସମ୍ପାଦକ ହେଲେ ଭଗବତୀ ଚରଣ ପାଣିଗ୍ରାହୀ ଏବଂ ପରିଚାଳକ, ମୁଦ୍ରକ ଓ ପ୍ରକାଶକ ହେଲି ମୁଁ ।

ଏହା ପ୍ରକାଶ କରିବାର ପୂର୍ଣ୍ଣ ଦାୟିତ୍ୱ ହେଲା ମୋ ଉପରେ । ମୁଁ ମଧ୍ୟ ଯେତେ ଶୀଘ୍ର ଏହା ପ୍ରକାଶ ପାଇବ ତହିଁର ବ୍ୟବସ୍ଥାରେ ଲାଗିପଡ଼ିଲି । ମୋ ମନରେ ଆଶଙ୍କା ରହିଥାଏ ଯେ ବିଳମ୍ବ କଲେ ହୁଏତ ପୁଣି ନାମଟା ବଦଳି ଯାଇପାରେ । ମୋର ପ୍ରେସ ସହିତ ଅଧିକ ସମ୍ପର୍କ ଥାଏ । କଟକ ସାରସ୍ୱତ ପ୍ରେସରେ ଏହାର ମୁଦ୍ରଣର ବ୍ୟବସ୍ଥା କରାଗଲା ଏବଂ ତାହାର ପାଖରେ ଗୋଟିଏ ଛୋଟ ଘରେ ଏକ ଅଫିସରୁମ୍ ନିଆଗଲା । ଭଗବତୀ ପାଣିଗ୍ରାହୀ ସେତେବେଳକୁ କଟକରେ ନ ଥାନ୍ତି, ତାଙ୍କ ପରାମର୍ଶ କଲାଭଳି କୌଣସି ସୁବିଧା ନ ଥାଏ । ପ୍ରଥମ ସଂଖ୍ୟାଟି ବାହାରିଲା ୧୯୩୭ ମସିହା ଜାନୁୟାରୀ ୧୩ ତାରିଖରେ ଓ ପ୍ରଥମ ସଂଖ୍ୟାର ସମ୍ପାଦକୀୟ ମଧ୍ୟ ମୁଁ ଲେଖିଲି । ପରେ ସେମାନେ କାଳେ ଆପତ୍ତି ଉଠାଇପାରନ୍ତି, ଏଥି-ନିମନ୍ତେ ଭଗବତୀ ପାଣିଗ୍ରାହୀଙ୍କ ବଡ଼ଭାଇ ଓଡ଼ିଶାର ଲବ୍ଧପ୍ରତିଷ୍ଠ ଲେଖକ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କୁ ସମ୍ପାଦକୀୟ ଲେଖାଟି ଦେଖାଇ ଆଣିଲି । ଭଗବତୀ ପାଣିଗ୍ରାହୀ ତାଙ୍କର ଗ୍ରାମରେ ରହୁଥିଲେ । କାଳିନ୍ଦୀବାବୁ ଲେଖାଟିକୁ ଖୁବ୍ ପସନ୍ଦ କଲେ । ରାଜନୀତିରେ ପ୍ରତ୍ୟକ୍ଷଭାବରେ ସଂପୃକ୍ତ ନହେଉଥିଲେ ସୁଦ୍ଧା ତାଙ୍କର ଏଥିପ୍ରତି ପୂର୍ଣ୍ଣ ସହାନୁଭୂତି ଥିଲା । ସେ ପ୍ରଥମ ସଂପାଦକୀୟରୁ କିୟଦଂଶ ଏଠାରେ ଦେବା ପ୍ରାସଙ୍ଗିକ ହେବ ବୋଲି ଭାବୁଛି ।

"ଦେଶରେ କୃଷୀ ଓ ଶ୍ରମିକମାନଙ୍କର ଯେ ଶ୍ରେଣୀ ଆନ୍ଦୋଳନ, ସାମ୍ରାଜ୍ୟ ଶାସନ ବଦଳରେ ଲୋକପ୍ରତିନିଧି ଶାସନ ପ୍ରତିଷ୍ଠା ଲାଗି ଗଢ଼ାଜାତ ପ୍ରଜାଙ୍କର ଯେ ଆନ୍ଦୋଳନ ଚାଲିଛି, ତାହାକୁ ଏହା ସମର୍ଥନ କରିବ । କଂଗ୍ରେସକୁ ଅଧିକ ବଳଶାଳୀ, ଗଣତନ୍ତ୍ରମୂଳକ କରିବା ନିମନ୍ତେ "କୃଷକ" ବରାବର ଜାଗ୍ରତ ରହିବ । ଶୋଷିତ ଶ୍ରେଣୀର ଏହି ନ୍ୟାଯ୍ୟ ଦାବୀ ନିର୍ଭୟରେ ସମର୍ଥନ କରିବା ଯୋଗୁଁ ଯଦି ସମାଜର ବର୍ତ୍ତମାନ କ୍ଷମତାଶାଳୀ ବା ଧନିକ ଶ୍ରେଣୀଙ୍କର ବିରାଗଭାଜନ ହେବାକୁ ପଡ଼େ, ସେଥିପାଇଁ "କୃଷକ" ଭ୍ରୂକ୍ଷେପ କରିବ ନାହିଁ ।

"ଆଜକାଲି କଂଗ୍ରେସ ମଣ୍ଡଳରେ ନାନାପ୍ରକାର ବିବାଦ ଦେଖାଯାଉଛି । ସମ୍ବାଦପତ୍ର ସବୁ ବ୍ୟକ୍ତିଗତ ସ୍ୱାର୍ଥ ଉଦ୍ଦେଶ୍ୟରେ ଚାଳିତ ହୋଇ ବ୍ୟକ୍ତିଗତ ଆଲୋଚନାରେ ବୁଡ଼ି ରହିଛନ୍ତି । 'କୃଷକ' ଏଥିରୁ ଦୂରରେ ରହିବ । କୌଣସି ବ୍ୟକ୍ତି ବା ଗୋଷ୍ଠୀର ନିନ୍ଦା କରିବ ନାହିଁ; ମାତ୍ର ନୀତି ଦୃଷ୍ଟିରୁ ସେମାନଙ୍କୁ କଠୋର ଭାବରେ ସମାଲୋଚନା କରିବାରେ ଏହା ପଛାଇବ ନାହିଁ ।"

'କୃଷକ'ର ଜନ୍ମ ହେଲା ଏକ ଆନ୍ଦୋଳନକୁ ସମର୍ଥନ କରିବା ନିମନ୍ତେ ଏବଂ ସମାଜବାଦୀ ଆନ୍ଦୋଳନକୁ ବଳଶାଳୀ କରିବା ନିମନ୍ତେ । ଜମିଦାରୀ ଓ ଗଡ଼ଜାତ ଆନ୍ଦୋଳନର ବିବରଣୀ ନିର୍ଭିକ ଭାବରେ ଏଥିରେ ପ୍ରକାଶ ପାଇଲା । ଓଡ଼ିଶାରେ ଚାଷୀ ଓ ଗଡ଼ଜାତ ଆନ୍ଦୋଳନର ଏହା ହେଲା ବାର୍ତ୍ତାବହ । ପାର୍ଟି ଲୋକଙ୍କ ଛଡ଼ା ଅନ୍ୟମାନଙ୍କ ଦ୍ୱାରା ଏହା ଆଦୃତ ହେଲା । କଂଗ୍ରେସ ମନ୍ତ୍ରୀମଣ୍ଡଳ ସମୟରେ ବି କିଛି ପୁଲିସ ଓ ଅନ୍ୟ ଅତ୍ୟାଚାର ବିବରଣୀ ପ୍ରକାଶ କରିବା ନିମନ୍ତେ କଂଗ୍ରେସ ଲୋକେ ବି "କୃଷକ" ଅଫିସକୁ ଆସୁଥିଲେ । ମୋର କାଲି ପରି ମନେପଡ଼ୁଛି, ଏକ ସ୍ଥାନରେ କଂଗ୍ରେସ ସରକାରର ପୁଲିସ ଚାଷୀଙ୍କ ଉପରେ ଅତ୍ୟଧିକ ନିଷ୍ଠୁର ବ୍ୟବହାର ଓ ୧୪୦ ଧାରା ଜାରି କରିଥିବାରୁ ଆମେ ପ୍ରତିବାଦ କରୁଥାଉଁ । ହରେକୃଷ୍ଣ ମହତାବ ସେତେବେଳକୁ କଂଗ୍ରେସ କାର୍ଯ୍ୟକାରୀ ସମିତିର ସଭ୍ୟ ଏବଂ ବିଶ୍ୱନାଥ ଦାସ ମନ୍ତ୍ରୀମଣ୍ଡଳର ପ୍ରଧାନ ସମର୍ଥକ । ତାହାରେ ପ୍ରତିବାଦ କରିବା ତାଙ୍କ ପକ୍ଷେ ସମ୍ଭବ ନଥିଲା । ସେ ହଠାତ୍ ମୋ ପାଖରେ 'କୃଷକ' ଅଫିସରେ ଆସି ପହଞ୍ଚିଲେ ଏବଂ ଆମେ 'କୃଷକ'ରେ ଯେଉଁ ଧରଣର ସମାଲୋଚନା କରୁଛୁ ତାହା ପସନ୍ଦ କଲେ । ନିଜେ ସେ ସଂଖ୍ୟାର ସଂପାଦକୀୟ ବି ସେଇଠି ବସି ମୋ ସହିତ ଆଲୋଚନା ପରେ ଲେଖି ଦେଇଗଲେ । ପରେ ଜାଣିଲି ସେହି ଲେଖାକୁ ଭିତ୍ତି କରି ସରକାରୀ ତଦନ୍ତ ହେଲା ଏବଂ କିଛି କାର୍ଯ୍ୟାନୁଷ୍ଠାନ ମଧ୍ୟ କରାଗଲା ।

ଓଡ଼ିଶା ଗଡ଼ଜାତ ପ୍ରଜା ଆନ୍ଦୋଳନ ଯାହା ସାରଙ୍ଗଧରବାବୁ କଟକରେ ଓ ଅନ୍ୟତ୍ର ରହି ଚଳାଉଥିଲେ, ତାହା 'କୃଷକ' ଜରିଆରେ ଗଡ଼ଜାତ ଭିତରକୁ ପ୍ରବେଶକଲା । ଗଡ଼ଜାତ ଭିତରକୁ କୌଣସି ସମ୍ବାଦପତ୍ର ଯିବା ବାରଣ ଥିଲା, ଗଡ଼ଜାତର ରାଜଶାସନର ବିନାନୁମତିରେ । 'କୃଷକ'ର ପ୍ରବେଶ ତ ସାଧାରଣ ଭାବରେ ହୋଇ ପାରନ୍ତା ନାହିଁ । "କୃଷକ"ର କେତେକ ଲେଖାରେ ଗଡ଼ଜାତ ରାଜାମାନେ ଏପରି ଉତ୍ତ୍ୟକ୍ତ ହୋଇଥିଲେ ଯେ Princes Protection Act ଅନୁସାରେ 'କୃଷକ' ବିରୁଦ୍ଧରେ ମକଦ୍ଦମା କରିବା ନିମନ୍ତେ ପଲିଟିକାଲ ଏଜେଣ୍ଟ ଜରିଆରେ ଓଡ଼ିଶା ଗଭର୍ଣ୍ଣର ପାଖରେ ଦାବୀ କରାଗଲା । ମାତ୍ର ଏଠାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଥିବାରୁ ଏବଂ ଆମମାନଙ୍କର ସେଥିରେ ପ୍ରଭାବ ଥିବାରୁ ସେମାନେ ଏ ଅନୁରୋଧ ରକ୍ଷା କଲେ ନାହିଁ; ନୀରବ ରହିଗଲେ ।

'କୃଷକ' ଗଡ଼ଜାତ ଲୋକଙ୍କ ଭିତରେ ଲୁଚାଇ, ରାତି ଅଧରେ ପହଞ୍ଚାଇ ଦିଆଗଲା ଏବଂ 'କୃଷକ'ର ବାର୍ତ୍ତା ଜଙ୍ଗଲରେ ଦାବାନଳ ବ୍ୟାପିଲା ପରି ଲୋକଙ୍କ ପାଖରେ ପହଞ୍ଚିଗଲା ।

ବିଭିନ୍ନ ଅତ୍ୟାଚାରର କାହାଣୀ ଏଭଳି ଭାବରେ ପ୍ରକାଶ ପାଉଥିଲା ଯେ ଗଡ଼ଜାତବାସୀ ତାହା ପାଠକରି ତାଙ୍କ ମନକଥା କେହି ଲେଖିଲା ପରି ବୋଧକଲେ ଏବଂ କୌଣସି ନାମ ଓ ଠିକଣା ନ ଥାଇ ଗଡଜାତ ଭିତରର ବୀଭତ୍ସ କାହାଣୀ ସବୁ ଅତି ଗାଉଁଲି ଲୋକଙ୍କ ଠାରୁ ଗାଉଁଲି ଭାଷାରେ ଆସି ଡାକରେ ପହଞ୍ଚୁଥିଲା । ସେଗୁଡ଼ିକ ତାଙ୍କର ଭାଷାରେ ସେମିତି ଛପାଇ ଦିଆଯାଉଥିଲା । ଏହା ଲୋକଙ୍କ ଭିତରେ ଯେପରି ଶୃଙ୍ଖଳା ସୃଷ୍ଟି କରୁଥିଲା ରାଜ-ଦରବାରରେ ସେମିତି ବିସ୍ମୟ ଜାତକରାଉଥିଲା । 'କୃଷକ'ର ବାଣୀକୁ କେତେକ ଅଞ୍ଚଳରେ ଲୋକେ ଦୈବବାଣୀ ପରି ବିଚାରିଲେ ।

ଏସବୁ ପ୍ରଚଣ୍ଡ ପ୍ରଚାରର ଅଭିଯାନ ଏକ ସଂଗଠିତ ଆନ୍ଦୋଳନର ରୂପ ପାଇଲା କଟକ ଜିଲ୍ଲାର ଜେନାପୁରରେ ଆୟୋଜିତ ବିରାଟ କୃଷକ ମେଳାରେ । ସେଠାରେ ମୁଖ୍ୟତଃ ମୋଗଲବନ୍ଦୀ ଜମିଦାରୀ ଅତ୍ୟାଚାର ସମ୍ବନ୍ଧରେ କୃଷକ ସମ୍ମିଳନୀ ସଂଗଠିତ ହୋଇଥିଲେ ସୁଦ୍ଧା ଢେଙ୍କାନାଳ ଗଡଜାତ ସୀମାରେ ଏହା ଅବସ୍ଥିତ ହୋଇଥିବାରୁ ଏବଂ କବାଟବନ୍ଧ ଇଲାକାରେ ଢେଙ୍କାନାଳର ଜମିଦାରୀ ଥିବାରୁ ଏହି ସମ୍ମିଳନୀରେ ବହୁ ସଂଖ୍ୟାରେ ଢେଙ୍କାନାଳର ପ୍ରଜା ଯୋଗଦାନ କଲେ ଏବଂ ଗଡ଼ଜାତ ଅତ୍ୟାଚାର ଏବଂ ବିଶେଷଭାବରେ ବେଠି, ବେଗାରି ଓ ନାନା ଅକଥନୀୟ ଅତ୍ୟାଚାରରେ ଢେଙ୍କାନାଳ ପ୍ରଜା କିଭଳି ସନ୍ତ୍ରସ୍ତ ଏବଂ ବହୁ ସଂଖ୍ୟକ ଦୁଃଖୀ ଲୋକ ଢେଙ୍କାନାଳ ଛାଡ଼ି କିଭଳି ବାହାରେ ଆସି ଅତି ହୀନାବସ୍ଥାରେ କାଳାତିପାତ କରୁଛନ୍ତି, ତାହା ବିସ୍ତୃତ ଭାବରେ ଆଲୋଚିତ ହେଲା । ଜେନାପୁରରେ ଏହି କୃଷୀମେଳା ପାଇଁ ଯେଉଁ ନିବେଦନପତ୍ର ଛପା ଯାଇଥିଲା, ସେଥିରେ ନିବେଦକ ଥିଲେ— ଚୌଧୁରୀ ଚରଣ ଦାସ, ଅକ୍ଷୟ କୁମାର ଚକ୍ରବର୍ତ୍ତୀ, ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିହାରୀ, ମାଳତୀ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ ଓ ସଦାନନ୍ଦ ନାଥ ପାଲ । ଏହାର ସଂଗଠିତ ପ୍ରତିରୋଧ କରିବା ନିମନ୍ତେ ଏହିଠାରେ ହିଁ ଧାର୍ଯ୍ୟ ହେଲା । ଶ୍ରୀ ସାରଙ୍ଗଧର ଦାସଙ୍କ ନେତୃତ୍ୱରେ ଏବଂ ଆମ ସୋସିଆଲିଷ୍ଟଙ୍କର ସକ୍ରିୟ ସହଯୋଗ ଓ ସମର୍ଥନରେ ଏ ଆନ୍ଦୋଳନ ତେଜି ଉଠିଲା—ଖାଲି ଢେଙ୍କାନାଳ ନୁହେଁ ଢେଙ୍କାନାଳ, ଆଠଗଡ, ତାଳଚେରରେ ଏହା ପ୍ରସାର ଲାଭ କଲା ।

୧୯୩୮ ମସିହା ସେପ୍‌ଟେମ୍ବରରେ ଢେଙ୍କାନାଳରେ ରାଜଦରବାରକୁ ଯେପରି ହଜାର ହଜାର ପ୍ରଜା ମେଳି ବାନ୍ଧି ଘେରାଉ କରିଥିଲେ, ତାହା ଓଡ଼ିଶା ଇତିହାସରେ ଅଭୂତପୂର୍ବ । ଲୋକେ ଯେଭଳି ଉତ୍ତେଜିତ ଓ ଦୃଢ଼ପ୍ରତିଜ୍ଞ ହୋଇ ଆସିଥିଲେ, ଆମେମାନେ ହିଂସାପନ୍ଥାର ଆଶ୍ରୟ ନେଇଥିଲେ ଏବଂ ଟିକିଏ ଅଣିଠାର ମାରିଥିଲେ, ଢେଙ୍କାନାଳ ଗଡ଼ରେ ସେଦିନ ରକ୍ତସ୍ନାନ ହୋଇଯାଇଥାନ୍ତା । ଢେଙ୍କନାଳ ସୀମା ଭିତରକୁ ପ୍ରବେଶ ବାରଣ ଥିଲା । ଯାଇଥିଲେ ଗିରଫ ଓ ଅନ୍ୟାନ୍ୟ ଦମନ ଲୀଳା ହୋଇଥାଆନ୍ତା । ତେଣୁ ସାରଙ୍ଗଧରବାବୁ, ନବବାବୁ ଓ ମାଳତୀ ଦେବୀ ଇତ୍ୟାଦି ଭାରତ ସରକାର ଅଧୀନରେ ଥିବା ରେଲୱାଇ

ଭିତରେ ରହି ପ୍ରଜାଙ୍କୁ ଶୋଷଣ ଦେଲେ । ନେତାମାନଙ୍କୁ ବାହାରେ ରହି ହିଁ କାର୍ଯ୍ୟ ଚଳାଇବାକୁ ପଡୁଥିଲା । କିନ୍ତୁ ଢେଙ୍କାନାଳ ପ୍ରଜାମଣ୍ଡଳର ସଭାପତି ମହେଶ୍ୱର ସୁବାହୁସିଂ, ବୈଷ୍ଣବ ପଟ୍ଟନାୟକ ଓ ଅନ୍ୟ କେତେକ କର୍ମକର୍ତ୍ତାଙ୍କୁ ଜେଲ ଓ ଅନ୍ୟ କାରାଦଣ୍ଡ ଭୋଗିବାକୁ ପଡ଼ିଲା । ଆନ୍ଦୋଳନ ଓ ଦମନ ଏଭଳି ରୂପ ଧରିଲା ଯେ ଶେଷକୁ ଅକ୍ଟୋବର ୧୧ ତାରିଖରେ ଭୁବନଠାରେ ଗୋରା ଫଉଜଙ୍କୁ ଡ଼ଙ୍ଗା ଦେବାର ପ୍ରତିରୋଧ ସ୍ୱରୂପ ବାଜି ରାଉତ, ହୃଷି ଇତ୍ୟାଦି ବାଳକ ଓ ଯୁବକମାନଙ୍କୁ ଗୁଳିରେ ଆତ୍ମାହୁତି ଦେବାକୁ ପଡ଼ିଲା । ଢେଙ୍କାନାଳ ଓ ଅନ୍ୟ ଗଡ଼ଜାତମାନଙ୍କରେ କିଭଳି ପ୍ରଜା ଆନ୍ଦୋଳନ ବ୍ୟାପିଲା, ମହାତ୍ମା ଗାନ୍ଧୀ ଓ ଅନ୍ୟମାନେ କିଭଳି ଏଥିରେ ହସ୍ତକ୍ଷେପ କଲେ, ଢେଙ୍କାନାଳ ପରି ତାଳଚେର, ରଣପୁର ଆଦିରେ ଯେପରି ହିଜରତ୍, ବେଜଲଗେଟ ହତ୍ୟା ଏବଂ ପରବର୍ତ୍ତୀ କାଳରେ ପୁଣି ୧୯୪୬ ମସିହାରେ ପ୍ରଜାମଣ୍ଡଳ ଆନ୍ଦୋଳନ କିଭଳି ରୂପ ଧାରଣ କରି ଶେଷରେ ୧୯୪୮ ମସିହାରେ ଓଡ଼ିଶାର ଗଡ଼ଜାତସମୂହର ଯେ ମୋଗଲବନ୍ଦୀ ଇଲାକା ସହିତ ପୂର୍ଣ୍ଣ ମିଶ୍ରଣ ଘଟିଲା, ତାହାର ବିସ୍ତୃତ ବର୍ଣ୍ଣନା ସମ୍ଭବ ନୁହେଁ । ତଥାପି ଏହା ଲେଖିଲାବେଳକୁ ଯେତେ ପୁରୁଣା କଥାସବୁ ମନ ଭିତରକୁ ଆସିଯାଉଛି, ସେଥିରୁ କିଞ୍ଚିତ୍ ଉଲ୍ଲେଖ କରାଯାଉଛି ।

---

## ୩ । ଓଡ଼ିଶାରେ ଗଡ଼ଜାତ ଆନ୍ଦୋଳନ

### ଏକ ଯୁଗାନ୍ତକାରୀ ବିଦ୍ରୋହ

ଏଥିରେ ସନ୍ଦେହ ନାହିଁ ଯେ, ଓଡ଼ିଶାର ଗଡ଼ଜାତ ପ୍ରଜାଆନ୍ଦୋଳନ ଏକ ଯୁଗାନ୍ତକାରୀ ବିଦ୍ରୋହ ଏବଂ ଏହା ଭାରତର ରାଜନୀତିକୁ ବି ପ୍ରଭାବିତ କରିଥିଲା । ଭାରତର ଅନ୍ୟାନ୍ୟ ଦେଶୀୟ ରାଜ୍ୟ ସହ ଏହାର ତୁଳନା କରାଯାଇପାରେନା କାରଣ ଏ ଗୁଡ଼ିକ ସବୁ ଥିଲା ଅତି କ୍ଷୁଦ୍ର ଓ ଅନୁନ୍ନତ । ରାଜାମାନେ ଥିଲେ ବ୍ରିଟିଶ ସରକାରର କାଙ୍କରଠାରୁ ଆହୁରି ହୀନ । କ୍ଷୁଦ୍ର ଜମିଦାରୀ ଓ ଶ୍ରେଷ୍ଠ ରାଜ୍ୟମାନଙ୍କରେ ପ୍ରତ୍ୟକ୍ଷଭାବରେ ଦମନ, ଲୁଣ୍ଠନ ଆଦି ହେଉଥିଲା ଏବଂ ଏକପ୍ରକାର ସାର୍ବଭୌମ କ୍ଷମତା ଲାଭ କରିଥିବାରୁ ଓଡ଼ିଶା ଦେଶୀୟ ରାଜ୍ୟମାନଙ୍କର ଦମନଲୀଳା ଅତି ବୀଭତ୍ସ ଓ ନିର୍ମମ ରୂପ ଧାରଣ କରିଥିଲା । ତେଣୁ ମାମୁଲି ଉପାୟରେ ଏଠାରେ କିଛି କରାଯାଇ ପାରି ନ ଥାନ୍ତା । କଂଗ୍ରେସ ମଧ୍ୟ ପ୍ରତ୍ୟକ୍ଷଭାବରେ ଦେଶୀୟ ରାଜ୍ୟ ଆନ୍ଦୋଳନରେ ସଂପୃକ୍ତ ହେବାକୁ ଚାହୁଁ ନ ଥିଲା । ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀ କଂଗ୍ରେସ ଲୋକଙ୍କ ନେତୃତ୍ୱରେ ଗଢ଼ାଯାଇଥିଲେ ସୁଦ୍ଧା ଏହା କୌଣସି ବିଦ୍ରୋହାତ୍ମକ ପଦକ୍ଷେପ ନେବାଲାଗି ଇଚ୍ଛୁକ ନଥିଲା । କୌଣସି ପ୍ରକାରେ ସ୍ୱାୟତ୍ତଶାସନ ଦାବୀ ହାସଲ ଥିଲା ପ୍ରଜାମଣ୍ଡଳଗୁଡ଼ିକର ମୂଳ ଲକ୍ଷ୍ୟ—ରାଜଦରବାର ଶାସନ ଲୋପ ଧ୍ୱନି ଦେବାକୁ ସେମାନେ ପଶ୍ଚାତ୍‌ପଦ ହେଉଥିଲେ । ଶ୍ରୀ ସାରଙ୍ଗଧର ଦାସ ପଣ୍ଡିତ ନେହରୁଙ୍କ ଅନୁରୋଧରେ ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀର ସଂପାଦକ ହୋଇ ବିଭିନ୍ନ ଦେଶୀୟ ରାଜ୍ୟ ସମ୍ବନ୍ଧରେ ଅତି ନିଗୂଢ଼ ତଥ୍ୟ ବାହାର କରିଥିଲେ ସୁଦ୍ଧା ଓଡ଼ିଶାରେ କେବଳ ତଥ୍ୟ ସଂଗ୍ରହରେ କିଛି ହୋଇ ନ ଥାନ୍ତା—ତଥ୍ୟ ସଂଗ୍ରହ କରିବା ମଧ୍ୟ କଷ୍ଟସାଧ୍ୟ ଥିଲା ।

ତେଣୁ ସାରଙ୍ଗଧର ଦାସ ସୋସଲିଷ୍ଟ ଓ କମ୍ୟୁନିଷ୍ଟଙ୍କ ସହ ମିଶି ଓଡ଼ିଶା କୃଷକ ଆନ୍ଦୋଳନର ଏକ ଅଂଶରୂପେ ଏଥିରେ ସଂପୂର୍ଣ୍ଣଭାବରେ ଜଡ଼ିତ ହୋଇଗଲେ । ଏହା ଏକ ନୂତନ ରୂପ ଧାରଣ କଲା । ୧୯୩୮ରୁ ୪୦ ପର୍ଯ୍ୟନ୍ତ ଢେଙ୍କାନାଳ ଓ ତାଳଚେରରେ ଏବଂ ପରେ ରଣପୁରରେ ଏହା ଏକ ବୈପ୍ଳବିକ ଗତି ଧାରଣ କଲା । ଗଡ଼ଜାତ ଇଲାକା ଭିତରୁ ନୀଳଗିରି, ରଣପୁର, ନୟାଗଡ଼, ତାଳଚେର ଓ ଢେଙ୍କାନାଳରେ ଯେପରି ରାଜ୍ୟ ଭିତରେ ଜନବିଦ୍ରୋହ ଘଟିଛି, ତାହା ଅନ୍ୟ ଅଞ୍ଚଳମାନଙ୍କରେ ହୋଇପାରିଲା ନାହିଁ । ତାହାର ପ୍ରଧାନ କାରଣ ହେଉଛି ଯଦିଓ କଠୋର ପରିଶ୍ରମ କରି ସାରଙ୍ଗଧର ବାବୁ ପ୍ରାୟ ସବୁ

ଗଡ଼ଜାତ ରାଜ୍ୟରେ ପ୍ରଜାମଣ୍ଡଳର ଶାଖା ସ୍ଥାପନ କରିପାରିଥିଲେ ମଧ୍ୟ ସ୍ଥାନୀୟ ନେତୃବୃନ୍ଦ ଆନ୍ଦୋଳନାତ୍ମକ ମନୋବୃତ୍ତି ପସନ୍ଦ କରୁ ନ ଥିଲେ । ସେମାନେ ବରଂ ପଛକୁ ଟାଣିବା ଲାଗି ଉଦ୍ୟମ କରୁଥିଲେ । ଓଡ଼ିଶା କଂଗ୍ରେସର କେତେକ ନେତା ମଧ୍ୟ ଏଥିରେ କିଛି ରାଜନୀତି ଖେଳ ବରାବର ଖେଳୁଥିଲେ । ଯେଉଁ ଶ୍ରେଷ୍ଠ ଶ୍ରେଷ୍ଠ ଗଡ଼ଜାତର ନେତା ଆନ୍ଦୋଳନକୁ ଭୟ କରୁଥିଲେ, ସେମାନେ କଂଗ୍ରେସ ଲୋକଙ୍କ ଆଶ୍ରା ନେଇ ଆମ ଆନ୍ଦୋଳନକୁ ହିଂସାତ୍ମକ ବୋଲି ଦୁଆ ଉଠାଇଲେ । ଗାନ୍ଧୀବାଦୀମାନେ ଏଥିରେ କେବଳ ହିଂସାର ଏପରି ଏକ କୋକୁଆଭୟ ସୃଷ୍ଟି କଲେ ଯେ ଆନ୍ଦୋଳନର ପକ୍ଷପାତୀ ନଥିବା ଲୋକଙ୍କୁ ଏକ ଆଳ ମିଳିଗଲା । ଢେଙ୍କାନାଳ ତାଳଚେର ଠାରୁ ଆରମ୍ଭ କରି ରଣପୁର ପର୍ଯ୍ୟନ୍ତ ଯାହା ଘଟିଗଲା, ସେଥିରେ ମହାତ୍ମା ଗାନ୍ଧୀଙ୍କର ପରୋକ୍ଷ ସମର୍ଥନ ହିଁ କଂଗ୍ରେସ ଲୋକଙ୍କୁ ନିରାଶ କରାଇଦେଲା । ସାରଙ୍ଗଧର ଦାସଙ୍କ ରିପୋର୍ଟ ଉପରେ ଉପର କର୍ତ୍ତୃପକ୍ଷ ଖୁବ୍ ବିଶ୍ୱାସ କରୁଥିଲେ । ସେହିପରି ଢେଙ୍କାନାଳ, ତାଳଚେର ଏପରିକି ରଣପୁର ହତ୍ୟାକାଣ୍ଡ ଯେତେବେଳେ ଚରମ ଅବସ୍ଥାକୁ ଆସିଲା, ଲୋକେ ହଜାର ହଜାର ସଂଖ୍ୟାରେ ରାଜ୍ୟ ଛାଡ଼ି ପଦାକୁ ପଳାଇ ଆସିଲେ, ସେତେବେଳେ ସେ ସେମାନଙ୍କୁ ପ୍ରତ୍ୟକ୍ଷ ଭାବରେ ସାହାଯ୍ୟ ଦେବାର କୌଣସି ବ୍ୟବସ୍ଥା କଲେ ନାହିଁ, ହରିଜନ କାଗଜରେ ଏପରି ଲେଖାମାନ ପ୍ରକାଶ କଲେ ଯଦ୍ୱାରା ସାରା ଦେଶରେ ଓ ସରକାରୀ ମହଲରେ ବି ଗୋଳମାଳ ଖେଳିଗଲା । ହରେକୃଷ୍ଣ ମହତାବ ମଧ୍ୟ ଏଥିରେ ଖୁବ୍ ସାହାଯ୍ୟ କରିଥିଲେ । ଆନ୍ଦୋଳନ ସହ ପ୍ରତ୍ୟକ୍ଷ ଭାବରେ ସଂପୃକ୍ତ ନହୋଇ ପରିସ୍ଥିତିର ସମ୍ମୁଖୀନ ହେବା ନିମନ୍ତେ ସେ ବିଭିନ୍ନ ଉପାୟ ଅବଲମ୍ବନ କରୁଥାଆନ୍ତି । ଏଭଳି ବ୍ୟକ୍ତିମାନଙ୍କର ନେତୃତ୍ୱାଭିଳାଷ ଅନେକ ସ୍ଥଳରେ ବଡ଼ ଅଡୁଆ ପରିସ୍ଥିତି ସୃଷ୍ଟି କରେ । ଆମମାନଙ୍କ ବିଚାରରେ ଢେଙ୍କାନାଳ ଆନ୍ଦୋଳନ ଯେତେବେଳେ ଗୋଟାଏ ମୀମାଂସାତ୍ମକ ପରିସ୍ଥିତିର ସମ୍ମୁଖୀନ ହୋଇଥିଲା ସେତେବେଳେ ମହତାବବାବୁ ରାଜଦରବାର ସହ ଗୋଟାଏ ମିଳାମିଶାର ଯେ ସୂତ୍ରପାତ କଲେ, ତାହା ଆନ୍ଦୋଳନ ପକ୍ଷରେ ବଡ଼ କ୍ଷତିକାରକ ହେଲା । ତାହା ପୁଣି ଆମେ ସବୁ, ବିଶେଷଭାବରେ ସାରଙ୍ଗଧର ବାବୁ, ନବବାବୁ ଓ ମାଳତୀ ଦେବୀଙ୍କ ଅଗୋଚରରେ ଓ ବିନା ପରାମର୍ଶରେ ହୋଇଥିଲା । ମହତାବବାବୁଙ୍କର ମନୋବୃତ୍ତି ବିଚିତ୍ର । ସେ ଅନ୍ୟ ସାଧାରଣ କଂଗ୍ରେସ ଲୋକଙ୍କ ପରି ଆନ୍ଦୋଳନର ବିରୋଧୀ ନଥିଲେ କିମ୍ବା ଥରେ କୌଣସି ଆନ୍ଦୋଳନରେ ଲିପ୍ତ ହୋଇଗଲେ ସେଥିରୁ ପଛେଇ ଯାଉ ନଥିଲେ । କିନ୍ତୁ ଆନ୍ଦୋଳନକୁ ସାଧାରଣଭାବରେ ଆରମ୍ଭ କରିବା କିମ୍ବା ଏଥିରେ ବେଶିଦୂର ଆଗେଇଦିବା ଯେପରିକି ତାଙ୍କର ପ୍ରକୃତିବିରୁଦ୍ଧ କାର୍ଯ୍ୟ । ଯେନକେନପ୍ରକାରେଣ ଗୋଟାଏ ମୀମାଂସା କରିଦେବା ହେଲା ତାଙ୍କର ନୀତି । ଆନ୍ଦୋଳନ ଯେଉଁ ଅବସ୍ଥାରେ ପହଞ୍ଚିଥିଲା ଏବଂ ଅପ୍ରସ୍ତୁତ ଅବସ୍ଥାରେ ରାଜନୀତିକ ବିଭାଗ ଓ ରାଜଦରବାର ଯେପରି ତ୍ରସ୍ତ ହୋଇପଡ଼ିଥିଲେ, ସେଥିରେ କଣ ଯେ ଘଟିଯାଇଥାନ୍ତା, କହିବା ମୁସ୍କିଲ୍ । କିଛି ଘଟିଯାଇଥିଲେ ସେଥିରେ ବିଚଳିତ

ହେବାର କିଛି ନଥିଲି ଏବଂ ମୋର ନିଜର ବିଶ୍ୱାସ ଗାନ୍ଧିଜୀ ଏହାର ବିରୋଧ କରି ନଥାନ୍ତେ —ଏହା ସମର୍ଥନ କରିଥାଆନ୍ତେ ବୋଲି ଆଶା କରିବା ନିରର୍ଥକ । ମୁଁ ଗାନ୍ଧିଜୀଙ୍କ ସଂପର୍କରେ ଏଭଳି ଲେଖିବା ଲାଗି ସାହସ କରୁଛି ମୋର ନିଜର ଅଭିଜ୍ଞତାରୁ ।

## ବୀରତ୍ୱପୂର୍ଣ୍ଣ ଦେଶପ୍ରୀତି

୧୯୪୨ ମସିହାରେ ଏପ୍ରିଲ ଜୁନ୍ ଆଡ଼କୁ କଟକ ସହର ଜାପାନୀ ଅଧିକାରରେ ଆସିବା ଆସନ୍ନ ପ୍ରାୟ ବିଚାର କରାଗଲା । ପରାମର୍ଶ ଆଣିବା ନିମନ୍ତେ ମୁଁ ଗାନ୍ଧିଜୀଙ୍କୁ ଓ୍ୱାର୍ଦ୍ଧା ସେବାଗ୍ରାମ ଠାରେ ଯାଇ ସାକ୍ଷାତ କଲି । ସେତେବେଳେ ମୋ ନିଜ ଆଡ଼ୁ କେତେକ ପ୍ରଶ୍ନ ପଚାରିଥିଲି । ଯେଉଁ ଜବାବ ବିଶେଷତଃ ଗଡ଼ଜାତ ରାଜାମାନଙ୍କ ବିଷୟରେ ପାଇଥିଲି, ତାହା ଉଲ୍ଲେଖ-ଯୋଗ୍ୟ । ମୋର ପ୍ରଶ୍ନ ହେଲା— ଜାପାନୀଙ୍କ ପାଖରେ ଗଡ଼ଜାତ ରାଜାମାନଙ୍କର ଆତ୍ମସମର୍ପଣ କରିସିବାର ସଂପୂର୍ଣ୍ଣ ସମ୍ଭାବନା ରହିଛି । ଏଭଳି ଅବସ୍ଥାରେ ଯଦି ପ୍ରଜାମଣ୍ଡଳ ସବୁ ରାଜ-ଦରବାର ଦଖଲ କରିଯାଇ ନିଜର ସ୍ୱାଧୀନତା ଘୋଷଣା କରିଦିଅନ୍ତି ଏବଂ ରାଜାମାନଙ୍କୁ ବନ୍ଦୀ କରି ପକାନ୍ତି—ତାହା ହିଂସାଚରଣ ବୋଲି ଆପଣ ନିନ୍ଦା କରିବେ କି ? ଗାନ୍ଧିଜୀ କହିଲେ— ଏହା ହେବ ଏକ ବୀରତ୍ୱପୂର୍ଣ୍ଣ ଦେଶପ୍ରୀତି ।

## ଢେଙ୍କାନାଳ ପ୍ରବେଶ

ଏସବୁ ସତ୍ତ୍ୱେ ୧୯୩୮-୪୦ ଭିତରେ ଓଡ଼ିଶାର ଗଡ଼ଜାତ ପ୍ରଜା ଆନ୍ଦୋଳନ ଏକ ବିଦ୍ରୋହାତ୍ମକ ଭୂମିକା ଗ୍ରହଣ କରି ରହିଲା । ଏଥି ଭିତରେ ବିଶ୍ୱଯୁଦ୍ଧ ଓ ଅନ୍ୟାନ୍ୟ ରାଜନୀତିକ କାରଣରୁ ଆନ୍ଦୋଳନ ଧିମେଇ ଗଲା । କିନ୍ତୁ ଆମେ ସୋସଲିଷ୍ଟମାନେ ବିଶେଷ-ଭାବରେ ଢେଙ୍କାନାଳ ଆନ୍ଦୋଳନକୁ ଭିନ୍ନଭାବରେ ଚାଲୁ ରଖିବାକୁ ଚେଷ୍ଟା କଲୁ । ମୋଗଲବନ୍ଦୀ ଇଲାକାରୁ ସତ୍ୟାଗ୍ରହ ବାହିନୀ ଯାଇ ଢେଙ୍କାନାଳରେ ପ୍ରବେଶ କରିବାର ଯୋଜନା କରାଗଲା । ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ ଓ ଗୌରାଙ୍ଗ ଚରଣ ଦାସ ୩ଗୋଟି ବାହିନୀର ମୁଖ୍ୟଭାବରେ ତିନି ଦିଗରୁ ଢେଙ୍କାନାଳରେ ପ୍ରବେଶ କଲେ । ମୁଁ ନବକୃଷ୍ଣ ଚୌଧୁରୀଙ୍କ ବାହିନୀ ସହ ଏକ ପ୍ରେସ ସଂବାଦଦାତା ଭାବରେ ମେରାମଣ୍ଡଳୀ ପର୍ଯ୍ୟନ୍ତ ଯାଇଥିଲି । ପ୍ରବେଶମାତ୍ରକେ ସତ୍ୟାଗ୍ରହୀ ବାହିନୀ ସବୁ ଗିରଫ ହୋଇଗଲେ । ସେମାନଙ୍କୁ ପରେ ଛାଡ଼ିଦିଆଗଲା । ମାତ୍ର ଗୌରାଙ୍ଗ ଚରଣ ଦାସଙ୍କ ଉପରେ ଏପରି ମାଡ଼ ହେଲା ଯେ ସେ ପ୍ରାୟ ଅଚେତ ଓ ନିର୍ବେଦ ହୋଇପଡ଼ିଲେ, ଅନେକ ଦିନ ପର୍ଯ୍ୟନ୍ତ କଷ୍ଟ ଭୋଗିଲେ । ମୁଁ ତାଙ୍କୁ ଆଣି ମୋ ପାଖରେ ରଖି ଚିକିତ୍ସାର ବ୍ୟବସ୍ଥା କଲି । ଢେଙ୍କାନାଳ ଜେଲ୍ ଭିତରେ ବହୁ ପ୍ରଜାମଣ୍ଡଳ କର୍ମୀ ଓ ସମାଜବାଦୀ ରହିଗଲେ । ଅନନ୍ତ ପଟ୍ଟନାୟକ ଓ ରବି ଘୋଷଙ୍କୁ ମଢ଼ି (କାମାକ୍ଷାନଗର) ଜେଲ ଭିତରେ ରଖି ଅକଥନୀୟ ଅତ୍ୟାଚାର



[ ନବକୃଷ୍ଣ ଚୌଧୁରୀ, ଗୌରାଙ୍ଗ ଚରଣ ଦାସ, ଭଗବତୀ ପାଣିଗ୍ରାହୀ—
ଢେଙ୍କାନାଳ ସତ୍ୟାଗ୍ରହ ବାହିନୀର ସେନାପତିତ୍ରୟ ]

କରାଗଲା । ଢେଙ୍କାନାଳର ନିଆଁ ପାଉଁଶ ଗଦା ଭିତରେ ଜୁହୁଳା ଜୁହୁଳା ରହିଲା; ବାହାରେ ଶାନ୍ତ—ଏପରିକି ଧୂଆଁ ବି ଜଣାପଡ଼ୁ ନଥିଲା ।

ପୁଣି ୧୯୪୨ରେ ଭାରତ ଛାଡ଼ ଆନ୍ଦୋଳନର ପ୍ରତିଧ୍ୱନି ବିଶେଷଭାବରେ ନୟାଗଡ଼, ଢେଙ୍କାନାଳ ଓ ତାଳଚେରରେ ଦେଖାଦେଲା । ତାଳଚେର ଜେଲ ଭିତରୁ ପବିତ୍ରମୋହନ ପ୍ରଧାନ ପଳାୟନ କଲେ ଏବଂ ସେଠାରେ ଏପରି ଏକ ବୈପ୍ଳବିକ ପରିସ୍ଥିତି ସୃଷ୍ଟି ହେଲା ଯେ ଆକାଶମାର୍ଗରୁ ବ୍ରିଟିଶ ସରକାରଙ୍କୁ ବୋମାବର୍ଷଣ କରିବାର ଆବଶ୍ୟକତା ପଡ଼ିଥିଲା । ଭାରତର ଖୁବ୍ ଅଳ୍ପ ସ୍ଥାନରେ ଏଭଳି ପରିସ୍ଥିତି ସୃଷ୍ଟି ହୋଇପାରିଥିଲା ।

ଢେଙ୍କାନାଳରେ ବୈଷ୍ଣବ ପଟ୍ଟନାୟକଙ୍କ ନେତୃତ୍ୱରେ ପ୍ରଥମତ ସଶସ୍ତ୍ର ସଂଘର୍ଷ ହେଲା । ବୈଷ୍ଣବ ନବଘନ ଜେନାଙ୍କ ସାଙ୍ଗରେ ଧରି ପଳାଇ ଆସିଲେ । ମୁଁ ସେତେବେଳେ ଆତ୍ମଗୋପନ କରି କଟକରେ ଭାରତ ଛାଡ଼ ଆନ୍ଦୋଳନର ପରିଚାଳନା କରୁଥାଏ । ବୈଷ୍ଣବଙ୍କ ଦେହରେ ଗୁଳି ରହିଥାଏ । ମୁଁ ତାଙ୍କୁ ମୋର ଗୁପ୍ତରହଣି ଅଲିଶାବଜାରକୁ ଅଣାଇଲି ଏବଂ ସେଠାରେ ପ୍ରାଥମିକ ଚିକିତ୍ସା କରାଇ କଲିକତା ପଠାଇଦେଲି । ସେଠାରେ ସେ ଫେରାର ହୋଇ ରହିଲେ । ତାଙ୍କ ସାଥିରେ ଆସିଥିବା ନବଘନ ଜେନା ମୋ ପାଖରେ ରହିଲେ ଏବଂ ପରେ ମୋ ବିରୁଦ୍ଧରେ ବ୍ରିଟିଶ ସରକାର କରିଥିବା ଷଡ଼ଯନ୍ତ୍ର ମକଦ୍ଦମାରେ ତାଙ୍କୁ ୪ ବର୍ଷ ସଜା ମିଳିଲା ଏବଂ ଢେଙ୍କାନାଳକୁ ନିଆଯାଇ ସେଠାରେ ଆଉ ୧୦ ବର୍ଷ କାରାଦଣ୍ଡ ଦିଆଗଲା । ପବିତ୍ରମୋହନ ପ୍ରଧାନ ମଧ୍ୟ ଫେରାର ହୋଇ ବହୁବର୍ଷ ରହିଲେ । ମୁଁ ୧୯୪୬ରେ ଜେଲରୁ ମୁକ୍ତ ଲଭିଲା ପରେ ସେ ମୋ ସହ ସମ୍ପର୍କ ସ୍ଥାପନକଲେ । ମୁଁ ତାଙ୍କୁ ନେଇ ଜୟପ୍ରକାଶ ନାରାୟଣଙ୍କ ସହ ପରିଚୟ କରାଇଦେଲି ଏବଂ ଷ୍ଟେଟ୍‌କୁ ସେତେବେଳେ ଫେରିବା ସମ୍ଭବ ନ ଥିବାରୁ ଜେ:ପି: ତାଙ୍କୁ ୧୯୪୨ ଆନ୍ଦୋଳନବେଳେ ସତାରା ଓ ବାଲିଆ ଜିଲ୍ଲାମାନଙ୍କରେ ଘଟିଥିବା ବିବରଣ ସଂଗ୍ରହ କାର୍ଯ୍ୟରେ ଲଗାଇଲେ । ସେତିକିବେଳେ ଅଚ୍ୟୁତ ପଟ୍ଟବର୍ଦ୍ଧନ, ଅଶୋକ ମେହେଟା ଆଦିଙ୍କ ସହ ତାଙ୍କର ସମ୍ପର୍କ ସ୍ଥାପିତ ହୋଇଥିଲା । ନୟାଗଡ଼ରେ ଏହି ଆନ୍ଦୋଳନ ତେଜି ଉଠିଥିଲା । କର୍ଣ୍ଣ ଡାକୁଆ ୧୯୪୨ ଆନ୍ଦୋଳନ ଯୋଗୁ ନୟାଗଡ଼ରେ ଶହୀଦ ହେଲେ ।

୧୯୪୬ ରେ ପୁଣି ଭାରତବର୍ଷର ପ୍ରାନ୍ତମାନଙ୍କରେ କଂଗ୍ରେସ ମନ୍ତ୍ରିତ୍ୱ ସ୍ଥାପିତ ହେବା ପରେ ଏବଂ ୧୯୪୭ ରେ ଭାରତ ସ୍ୱାଧୀନତା ପ୍ରାପ୍ତିର ସମ୍ଭାବନା ଉଜ୍ଜ୍ୱଳ ଦେଖାଯିବାରୁ ଓଡ଼ିଶା ଗଡ଼ଜାତ ପ୍ରଜା ଆନ୍ଦୋଳନ ନୂତନ ରୂପ ଧାରଣକଲା । ସାରଙ୍ଗଧରବାବୁ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଲାଗିପଡ଼ିଲେ ଏବଂ ଆମେ ସବୁ ତାଙ୍କୁ ପୃଷ୍ଠ ସମର୍ଥନ ଦେଲୁ । ରାଜନୀତିକ ପରିସ୍ଥିତିର ପରିବର୍ତ୍ତନ ହେତୁ ଗଡ଼ଜାତ ଅଞ୍ଚଳରେ ପ୍ରବେଶ କରି ସଭା ସମ୍ମିଳନୀ ଇତ୍ୟାଦି କରାଯାଇପାରୁଥିଲା । ତେଣୁ ବିଧିନିଷେଧ ସଙ୍ଗଠନ ପ୍ରାନ୍ତମାନଙ୍କରେ ଛାଡ଼ା ହୋଇଗଲା । ଏଥିଭିତରେ ନୀଳଗିରି ଷ୍ଟେଟରେ ଏକ ପ୍ରଜା ବିଦ୍ରୋହ ସୃଷ୍ଟି ହେଲା । ସେଥିରେ ଆଦିବାସୀମାନେ ତୀର ଧନୁ ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ସହ ରାଜଶକ୍ତି ବିରୁଦ୍ଧରେ ସଂଗ୍ରାମ ଆରମ୍ଭ

କରିଦେଲେ । ସୋସଲିଷ୍ଟ ପାର୍ଟିର ଏଥି ଭିତରେ ଏକ ଶାଖା ମୟୂରଭଞ୍ଜରେ ସ୍ଥାପନ କରାଯାଇଥାଏ । ଗିରୀଶ ଚନ୍ଦ୍ର ଗୁପ୍ତ ଆଦିବାସୀଙ୍କ ସଂଗଠନରେ ଧୁରନ୍ଧର ଥିଲେ । ସେ ମୟୂରଭଞ୍ଜରୁ କେତେକ ଆଦିବାସୀଙ୍କ ସହ ଏହା ଭିତରର ଲଢ଼େଇରେ ଯୋଗଦେଲେ ଏବଂ ମାଳତୀ ଚୌଧୁରୀଙ୍କର ପୂର୍ଣ୍ଣ ଓ ସକ୍ରିୟ ସହଯୋଗ ମିଳିଲା । ହରେକୃଷ୍ଣ ମହତାବଙ୍କ ନିର୍ଦ୍ଦେଶ ପାଇ ବାଲେଶ୍ୱର କଂଗ୍ରେସ ଲୋକେ ମଧ୍ୟ ଏଥିରେ ସହଯୋଗ କଲେ । ଶେଷକୁ ଓଡ଼ିଶା ସରକାର ଓ ଭାରତ ସରକାର ଏଥିରେ ନୀଳଗିରି ଦରବାରକୁ ସାହାଯ୍ୟ ନ କରିବା ନିମନ୍ତେ ଜଣାଇଦେବାରୁ ସେଠାରେ ପ୍ରଜାଙ୍କର ହିଁ ବିଜୟ ହେଲା । ଏହିରୂପେ ମୋଟାମୋଟି ସବୁ ଗଡ଼ଜାତ ଇଲାକାରେ ପ୍ରବଳ ପ୍ରଜାଆନ୍ଦୋଳନ ମୁଣ୍ଡ ଟେକିଲା । ମୁଁ ପ୍ରାଦେଶିକ କଂଗ୍ରେସ କମିଟି ସମ୍ପାଦକ ପଦରୁ ଇସ୍ତଫା ଦେବା ପରେ ପୁଣି ଓଡ଼ିଶାରେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ପୁନର୍ଗଠନ ହେଲା ଏବଂ ଆମ ପାର୍ଟି ଏ କାର୍ଯ୍ୟରେ ସାରଙ୍ଗଧର ଦାସଙ୍କୁ ସକ୍ରିୟ ଭାବରେ ସହଯୋଗ ଦେଲା । ପବିତ୍ରମୋହନ ପ୍ରଧାନ ମଧ୍ୟ ବାହାରକୁ ଆସି ଓଡ଼ିଶା ତଥା ପୂର୍ବାଞ୍ଚଳର ଗଡ଼ଜାତଗୁଡ଼ିକର ସଂଗଠନରେ ସାରଙ୍ଗଧରବାବୁଙ୍କ ସହ ମିଶି କାର୍ଯ୍ୟ କଲେ । ଏଥିରକ ସାଧାରଣ ଭାବରେ ବଧିବଦ୍ଧ ଆନ୍ଦୋଳନ ଆରମ୍ଭ ହେଲା କହିଲେ ଚଳେ—କୌଣସି ପ୍ରତିରୋଧାତ୍ମକ କାର୍ଯ୍ୟ ନ ହୋଇ କେବଳ ସଭା ସମିତିରେ ସ୍ୱାୟତ୍ତଶାସନ ଦାବୀ ହିଁ ମୁଖ୍ୟ ହେଲା । ବିଦ୍ରୋହାତ୍ମକ ଆନ୍ଦୋଳନର ଯେଉଁମାନେ ପକ୍ଷପାତୀ ନ ଥିଲେ, ସେମାନେ ମଧ୍ୟ ଏଥିରେ ସହଯୋଗ କଲେ । ନିୟମ-ତାନ୍ତ୍ରିକ ଆନ୍ଦୋଳନ ରୂପ ନେବା ହେତୁ ଆନ୍ଦୋଳନରେ ଯୋଗଦେବା ନିରାପଦ ହୋଇଗଲା; ଅର୍ଥାତ୍ ଜେଲବରଣ, ରାଜଦରବାର ବା ସରକାର ସହ ପ୍ରତ୍ୟକ୍ଷ ସଂଘର୍ଷର ସମ୍ଭାବନା ଊଣା । ଏହା ସାଙ୍ଗକୁ ପୁଣି କିଛି କିଛି କ୍ଷମତା ପାଇବାର ସମ୍ଭାବନା ଉଜ୍ଜ୍ୱଳତର ହେଲା । ତେଣୁ ଗଡ଼ଜାତ ଅଞ୍ଚଳର ଯେଉଁ ନେତାମାନେ ସାରଙ୍ଗଧର ଦାସଙ୍କ ନେତୃତ୍ୱରେ ଚାଲିଥିବା ଆନ୍ଦୋଳନରୁ ଦୂରରେ ରହିଥିଲେ, ସେମାନେ ଏଥିରେ ଆଗ୍ରହର ସହିତ ପ୍ରବେଶ କଲେ ନିଜ ନିଜ ଅଞ୍ଚଳର ନେତୃତ୍ୱ ନେଲେ । ଏଭଳି ନେତାମାନେ ସାରଙ୍ଗଧରବାବୁଙ୍କ ପରିଚାଳିତ କାର୍ଯ୍ୟକ୍ରମ ପୂର୍ଣ୍ଣରୂପେ ଗ୍ରହଣ କରୁ ନ ଥିଲେ । ଓଡ଼ିଶା ଗଡ଼ଜାତ ପ୍ରଜା ଆନ୍ଦୋଳନ କେବଳ ନିଜ ରାଜ୍ୟରେ ସ୍ୱାୟତ୍ତଶାସନ ଦାବୀ କରୁ ନ ଥିଲା ଗଡ଼ଜାତଗୁଡ଼ିକ ପୂର୍ଣ୍ଣମାତ୍ରାରେ ଓଡ଼ିଶା ପ୍ରଦେଶର ସାମିଲ କରାଇ ଏକଶାସନାଧୀନ କରାଇବା ଏହାର ନିଶ୍ଚିତ ଲକ୍ଷ୍ୟ ଥିଲା । ପୂର୍ବରୁ ହରେକୃଷ୍ଣ ମହତାବଙ୍କ ସଭାପତିତ୍ୱରେ ଗଠିତ ଗଡ଼ଜାତ ଅନୁସନ୍ଧାନ କମିଟିର ରିପୋର୍ଟର ମଧ୍ୟ ଓଡ଼ିଶା ଦେଶୀୟ ରାଜ୍ୟଗୁଡ଼ିକର ପ୍ରଦେଶ ସହ ମିଶ୍ରଣ ଲାଗି ସୁପାରିସ କରାଯାଇଥିଲା । ସାରଙ୍ଗଧର ଦାସ ଏହି କମିଟିର ମୁଖ୍ୟ କର୍ମକର୍ତ୍ତା ଥିଲେ ଏବଂ ବହୁ ପରିଶ୍ରମ କରି କମିଟିର କାର୍ଯ୍ୟଟିକୁ ସମ୍ପନ୍ନ କରିଥିଲେ । କେବଳ ରାଜାଙ୍କ ଅଧୀନରେ ସ୍ୱାୟତ୍ତଶାସନ ଦାବୀ ହିଁ ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜାସମ୍ମିଳନୀର ଲକ୍ଷ୍ୟ ଥିଲା । ତେଣୁ ବିଧିବଦ୍ଧ ଭାବରେ ଏଠାରେ ଗଠିତ ଓଡ଼ିଶା ଶାଖାରେ ସେହି ଦାବୀ ରଖିବା ବ୍ୟତୀତ ମିଶ୍ରଣ ଏକ ଲକ୍ଷ୍ୟ ବୋଲି ଉଲ୍ଲେଖ କରାଯାଇ ପାରିନଥିଲା । କିନ୍ତୁ ଆମେ ସବୁ

ଓ ସାରଙ୍ଗଧର ଦାସ ନିର୍ଦ୍ଦିଷ୍ଟ ରୂପେ ଏହି ଲକ୍ଷ୍ୟ ପ୍ରଜାମଣ୍ଡଳ ସମ୍ମିଳନୀ ଆଦିରେ ପ୍ରକାଶ କରୁଥିଲୁ ଏବଂ ଯୁବକ ସମ୍ପ୍ରଦାୟ ଓ ସାଧାରଣ ଲୋକଙ୍କର ଏଥିରେ ସହାନୁଭୂତି ରହିଥିଲା । ୧୯୪୬ରେ ହରେକୃଷ୍ଣ ମହତାବ ଓଡ଼ିଶାର ପ୍ରଧାନମନ୍ତ୍ରୀ ହେଲେ ଏବଂ ସେ ମଧ୍ୟ ଏହି ମତର ପୋଷକ ଥିଲେ ।

ପୁନର୍ଗଠିତ ସୋସଲିଷ୍ଟ ପାର୍ଟିର କର୍ମୀମାନେ ବିଭିନ୍ନ ଗଡଜାତର ପ୍ରଜାମଣ୍ଡଳ ଗଠନରେ ସମ୍ପୂର୍ଣ୍ଣ ସାହାଯ୍ୟ ସହଯୋଗ କଲେ । ପବିତ୍ରମୋହନ ପ୍ରଧାନଙ୍କ ବ୍ୟତୀତ ଆଉ କୌଣସି ଗଡ଼ଜାତ ଅଞ୍ଚଳର ନେତା ନିଜ ଷ୍ଟେଟ ବାହାରକୁ ଯାଇ ସଂଗଠନ କରିବାକୁ ପ୍ରସ୍ତୁତ ନ ଥିଲେ । ଅଧିକାଂଶ ନିଜ ଷ୍ଟେଟ ଭିତରେ ଆବଦ୍ଧ ର ୍ଲେ ଏବଂ କେତେକ ସ୍ଥଳରେ ରାଜଦରବାର ସହିତ ବନ୍ଧୁତା କରି ତଥାକଥିତ ସ୍ୱାୟତ୍ତଶାସନ ହାସଲ କରିବାକୁ ଉଦ୍ୟମ କଲେ । ବଲାଙ୍ଗୀରର ରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଏକ ପ୍ରଜାମଣ୍ଡଳ ଗଠନକରାଇ ସାରା ଆନ୍ଦୋଳନକୁ ଭଣ୍ଡୁର କଲେ । ସେଠାରେ ଗଠିତ ପ୍ରଜା ଆନ୍ଦୋଳନକୁ "କୃଷକ ଦଳ" ବୋଲି ନାମିତ କରାଗଲା । ଆଉ କେତେକ ରାଜ୍ୟରେ ଆଞ୍ଚଳିକ ମନୋବୃତ୍ତି ଦେଖାଦେଲା । ଅବଶେଷରେ ଆଞ୍ଚଳିକ ମନୋବୃତ୍ତି ଏପରି ବ୍ୟାପିଲା ଯେ କ୍ଷୁଦ୍ର କ୍ଷୁଦ୍ର ଗଡଜାତ ରାଜ୍ୟଗୁଡ଼ିକୁ ସ୍ୱତନ୍ତ୍ର ଅଧିକାର ଓ ଅନ୍ୟ ସକଳ ସୁବିଧା ଦେବାର ଦାବୀ ପ୍ରବଳତର ହେଲା । କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ରହିଲେ, ନେତାମାନଙ୍କ ପକ୍ଷରେ କ୍ଷମତା ପାଇବାର ସୁଯୋଗ ଅଧିକ ମିଳିବ, ସେହି ଉଦ୍ଦେଶ୍ୟରେ ସେମାନେ ବୃହତ୍ତର ସ୍ୱାର୍ଥକୁ ଭୁଲିଗଲେ । ରାଜାମାନେ ମଧ୍ୟ ଏହି ଦୁର୍ବଳତାର ସୁଯୋଗ ନେଇ ଏପରି ଦୁର୍ବଳମନା ଗଡ଼ଜାତ ନେତାଙ୍କୁ ହାତ କରିବା ନିମନ୍ତେ ସକଳ କୌଶଳ ପ୍ରୟୋଗ କଲେ । ବଲାଙ୍ଗିର, କଳାହାଣ୍ଡି, ଗାଙ୍ଗପୁର, ବଣେଇ, ବାମଣ୍ଡା ଆଦି ଷ୍ଟେଟରେ ଆମେ ସବୁ ପ୍ରବେଶ କରି ରାଜାଙ୍କ ଚକ୍ରାନ୍ତକୁ ପଣ୍ଡ କଲୁ । ସାରଙ୍ଗଧର ଦାସଙ୍କ ନାମ ଗୁରିଆଡ଼େ ପ୍ରଚାରିତ ହୋ ଥାଏ ଏବଂ ତାଙ୍କୁ ଲୋକେ 'ଗଡ଼ଜାତ ଗାନ୍ଧୀ' ଆଖ୍ୟା ଦେଇଥାଆନ୍ତି । ସେ ଯେଉଁ ଷ୍ଟେଟକୁ ଆମମାନଙ୍କୁ ସାଙ୍ଗରେ ନେଇ ଯାଉଥିଲେ ସେଠାରେ ପ୍ରବଳ ଲୋକସମାଗମ ଓ ସମର୍ଥନ ଦେଖାଯାଉଥିଲା ଏବଂ ତଦ୍ୱାରା ସ୍ଥାନୀୟ ପ୍ରଜାମଣ୍ଡଳ କର୍ମୀ ଓ ନେତାମାନଙ୍କର ସାହସ ବୃଦ୍ଧି ପାଉଥିଲା । ଯେଉଁ ଉପର-ଠାଉରିଆ ନେତା ଫାଇଦା ଉଠାଇବା ଫନ୍ଦିରେ ଥିଲେ, ସେମାନେ ନିରାଶ ହେଉଥିଲେ ।

ବଣେଇ ଆମ ଓଡ଼ିଶାର ଏକ ଆଦିବାସୀବହୁଳ ରାଜ୍ୟ ଥିଲା । ସେଥିରେ କେହି ପ୍ରବେଶ କରିବା ନିମନ୍ତେ ଭୟ କରୁଥିଲେ । ଶିକ୍ଷିତ ଲୋକ କେହି ପଦାକୁ ବାହାରି ପ୍ରଜାମଣ୍ଡଳ ଆନ୍ଦୋଳନରେ ଯୋଗ ଦେବାର ସାହସ କରୁ ନ ଥିଲେ । ପ୍ରବେଶ ଆଦି ରାଜାଙ୍କ ନିୟନ୍ତ୍ରଣରେ ରହିଥିଲା ।

## ବଣାଇ ଆନ୍ଦୋଳନ

କେତେକ ଯୁବକଙ୍କୁ ସାହାଯ୍ୟ କରିବା ନିମନ୍ତେ ମୁଁ ଏକ ସଭା କରିବା ପାଇଁ ସେଠାକୁ ଗଲି । ପ୍ରଥମେ ବସ୍‌ରେ ନ ନେବାର ଉଦ୍ୟମ ହେଲା । ମାତ୍ର ମୁଁ ଆଗ ଯାଇ ବସ୍‌ରେ

ବସିଗଲି । ବାଟରେ ପ୍ରଥମ ପୁଲିସ ଷ୍ଟେସନରେ ଗାଡ଼ି ପ୍ରାୟ ୩ଘଣ୍ଟା ଅଟକ ରଖାଗଲା, ବିଚାର ଚାଲିଲା—ମତେ ଆଗକୁ ଯିବାଲାଗି ଅନୁମତି ଦିଆଯିବ କି ନାହିଁ ? ବହୁ ପରାମର୍ଶ ପରେ ବସ୍‌ଟି ତାର ଗନ୍ତବ୍ୟ ପଥକୁ ଗଲା । ବ୍ରାହ୍ମଣୀ ନଦୀ ପାରି ହେଲେ ବଣେଇ ଗଡ଼ ପଡ଼ିବ । ସେଠାରେ କେହି ସ୍ଥାନ ଦେବେ ନାହିଁ ଜାଣି ନଦୀ ଏପଟେ ଏକ ଛୋଟ ଗ୍ରାମରେ ମୁଁ ରହିଲି । ବଣେଇଗଡ଼ରେ ସଭା ନ କରିବା ନିମନ୍ତେ ରାଜଦରବାରର ଶିକ୍ଷାବିଭାଗୀୟ କର୍ମଚାରୀ ମୋର ଜଣେ ଆତ୍ମୀୟ ଏବଂ ଆଉ ଜଣେ ପରିଚିତ ବନ୍ଧୁଙ୍କୁ ପଠାଯାଇ ମତେ ନିବୃତ୍ତ କରିବାର ଉଦ୍ୟମ ହେଲା । ରାଜାଙ୍କ ସହ ସାକ୍ଷାତ୍ କଲେ ଭଲ ହୁଅନ୍ତା ବୋଲି ପରାମର୍ଶ ଦିଆଗଲା । ମୁଁ ପ୍ରଥମେ ସଭା କରିବି ଏବଂ ପରେ ଆଲୋଚନା କରିବି ବୋଲି ସ୍ଥିର ରହିଲି । ସେମାନେ ବାହୁଡ଼ିଗଲେ ଏବଂ ଆମେ ଠିକ୍ ସନ୍ଧ୍ୟା ପୂର୍ବରୁ ଏକ ଛୋଟ କୀର୍ତ୍ତନ ଦଳ ଧରି ନଦୀକୂଳରେ ଯାଇ ପହଞ୍ଚିଲୁ, ବଣେଇଗଡ଼କୁ ଯିବା ନିମନ୍ତେ ନଦୀ ପାର ହୋଇ । ମାତ୍ର ରାଜାଙ୍କ ନିର୍ଦ୍ଦେଶରେ ଡଙ୍ଗା ଅନ୍ୟ କଡ଼ରେ ବନ୍ଧା କରିଦିଆଗଲା । ଯେତେ ଅନୁରୋଧ କଲେ ସୁଦ୍ଧା ସେ ପାଖରୁ ଡଙ୍ଗା ଆସିଲା ନାହିଁ । ମୁଁ ଏ ପଟୁ ଥାଇ ଲକ୍ଷ୍ୟକଲି ରଜାତରଫ ଲୋକେ ଆମ ଦୁରବସ୍ଥା ବେଶ୍ ଉପଭୋଗ କରୁଥାଆନ୍ତି ଏବଂ ପରିହାସ କରୁଥାଆନ୍ତି ମଧ୍ୟ । ବହୁ ଲୋକ ଏକତ୍ର ସେକଡ଼ ହେଉଥିବାର ବି ଦେଖିବାକୁ ମିଳିଲା । ମୁଁ ସ୍ଥିରକଲି ବ୍ରାହ୍ମଣୀ ନଦୀ ପହଁରି ଗଡ଼ରେ ପହଞ୍ଚିବି ଏବଂ ସଭା କରିବି । ମୋ ସାଙ୍ଗରେ ଯେଉଁ ଅଳ୍ପ ଗାଁଲୋକ ଥିଲେ ସେମାନେ ଭୟରେ ଥରିଲେ । ମୁଁ ଚିତ୍କାର କରି ଘୋଷଣା କଲି—ମୁଁ ନଦୀରେ ପହଁରିବି । ବ୍ରାହ୍ମଣୀ ନଦୀର କୁମ୍ଭୀର ଯଦି ମତେ ଖାଏ, ମୁଁ ସିନା ମରିବି, କିନ୍ତୁ ସାରା ଭାରତରେ ରଜାଙ୍କର ଅପବାଦ ହେବ ଏବଂ ମୋ କାମ ସିଦ୍ଧ ହେବ ।" ଏ କଥା ଶୁଣି ରାଜପକ୍ଷ ମନରେ ଛନକା ପଶିଲା । ସେଇଠୁ ଜଣେ ଡଙ୍ଗା ବୁହାଇ ଆଣିଲେ ଏବଂ ଆମେ ପାରିହୋଇଗଲୁ ।

ସେଠି ପହଞ୍ଚି ଦେଖିଲିବେଳକୁ ରାଜାର ପୁଲିସ ସଭାକୁ ଘେରି ଚାରିଆଡ଼େ ଛିଡ଼ା ହୋଇଛନ୍ତି । ମୁହଁ ଅନ୍ଧାର ହୋଇ ଗଲାଣି । ଆଲୁଅଟିଏ ମିଳିଲା ନାହିଁ । ମୁଁ ସେହି ଅନ୍ଧାର ଭିତରେ ଛିଡ଼ାହୋଇ ସଭା ଆରମ୍ଭ କରିଦେଲି । ଲାଉଡ୍ ସ୍ପିକର ନଥାଏ; ମୁଁ ସିଧାସଳଖ ରାଜାଙ୍କ ଉପରେ ପ୍ରଚଣ୍ଡ ଆକ୍ରମଣ କଲି । ମତେ ପୁଲିସ କିଛି କରୁନାହିଁ ଦେଖି କେତେକ ଲୋକ ଆସି ରୁଣ୍ଡ ହୋଇଗଲେ । ମୋ ଭାଷଣରେ ପୋଲିସପକ୍ଷ ବି ଅପ୍ରତିଭ ହୋଇଗଲେ । ଶେଷକୁ ଆମର ଜଣେ ପରିଚିତ ବନ୍ଧୁ ମାନଗୋବିନ୍ଦ ମହାନ୍ତି ଯେ ସେଠାରେ ଖଣି ଧରିଥାନ୍ତି, ଉଠି ମୋ କଥାର ପ୍ରତିବାଦ ଜଣାଇ ରାଜାଙ୍କ ପ୍ରଶସ୍ତି ଗାଇଲେ । ତାହା ମତେ ଆହୁରି ଏକ ମଉକା ଦେଲା ସେମାନଙ୍କ କାରବାର ଓ ରାଜଅତ୍ୟାଚାରର ନିର୍ମମ କାହାଣୀ ବର୍ଣ୍ଣନା କରିବା ନିମନ୍ତେ । ଯେଉଁ ଲୋକେ ଡରି ଗଛ ଅନ୍ଧାରରେ ଲୁଚି-ଥିଲେ, ଏସବୁ ଦେଖି ଶହ ଶହ ସଂଖ୍ୟାରେ ପହଞ୍ଚିଗଲେ । ନିମନ୍ତ୍ରେ ତାଳିକା । ମୁଁ ପ୍ରଜା-ମଣ୍ଡଳ ଗଠନର ଘୋଷଣା କଲି ଏବଂ ଗୋଟିଏ ଲଣ୍ଠନ ଧରି "ରାଜଦରବାର ଧ୍ୱଂସ ହେଉ"

ଧ୍ୱଜ ଦେଇ ଏକ ବିରାଟ ଶୋଭାଯାତ୍ରା ଗଡ଼ରେ ବୁଲାଇଲି । କେହି ପ୍ରତିରୋଧ କଲେ ନାହିଁ । ବଣେଇରେ ପ୍ରଜାମଣ୍ଡଳ ଧ୍ୱଜା ଉଡ଼ିଲା । ଯେ ରାତିଟି ଏକ ଘର ବାରଣ୍ଡାରେ ବସି ନଆଁ ପୁଇଁ ଆଦିବାସୀ ନୃତ୍ୟ ଦେଖି କଟାଇଲି । ଅବଶ୍ୟ ପରଦିନ ସକାଳୁ ଦେଓ୍ୱାନ, ରାଜା ଓ ଅନ୍ୟମାନେ ଡକାଇ ପଠାଇ ସାକ୍ଷାତ୍ ଦେଲେ । ଲୋକଙ୍କର ଏଭଳି ଉତ୍ସାହ ଦେଖି ସେମାନେ ଦମନର ରାସ୍ତା ଛାଡ଼ିଲେ ଏବଂ କାର୍ଯ୍ୟରେ ଆଉ ବାଧା ଦେଲେ ନାହିଁ । ସେତେବେଳକୁ ରାଜନୀତିକ ପରିସ୍ଥିତି ବଦଳି ଯାଇଥିବାରୁ ରାଜ୍ୟ ଭିତରେ ଅଶାନ୍ତି ଗଣ୍ଡଗୋଳ ଲାଗିଲେ କାଳେ ଭାରତ ସରକାର ହସ୍ତକ୍ଷେପ କରିବ ଏଭଳି ଏକ ଆଶଙ୍କା ଉପୁଜିଥାଏ । ଏହିରୂପେ ଓଡ଼ିଶା ଓ ଛତିଶଗଡ଼ର ପ୍ରାୟ ସବୁ ଗଡ଼ଜାତରେ ପ୍ରଜାମଣ୍ଡଳ ସଂଗଠିତ ହୋଇଗଲା ।

ଏହିଭିତରେ ଓଡ଼ିଶା ଆସେମ୍ବ୍ଲି ନିର୍ବାଚନ ହୋଇଯାଇଥାଏ ଏବଂ ସାରଙ୍ଗଧରବାବୁ କଂଗ୍ରେସ ପ୍ରାର୍ଥୀ ରୂପେ କଟକ ଜିଲ୍ଲାର ତିର୍ତ୍ତୋଲ-ଏରସମା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ଆସିଥାଆନ୍ତି । ସେ ଏଥିପ୍ରତି ବିଶେଷ ଆଗ୍ରହୀ ନଥିଲେ । ମାତ୍ର ତାଙ୍କ ପରି ଜଣେ ବିଶେଷଜ୍ଞଙ୍କୁ ମନ୍ତ୍ରୀମଣ୍ଡଳରେ ସ୍ଥାନ ଦିଆଯିବ ଏବଂ ସେଥିରେ ଓଡ଼ିଶା ଉପକୃତ ହେବ, ଏହି ବିଚାରରେ କଂଗ୍ରେସ କମିଟି ବିଶେଷ ପ୍ରସ୍ତାବ କରି ତାଙ୍କୁ ଅନୁରୋଧ କଲା । ମାତ୍ର ମହତାବଙ୍କ ନେତୃତ୍ୱରେ ଯେ ମନ୍ତ୍ରୀମଣ୍ଡଳ ଗଠନ କରାଗଲା, ସେଥିରେ ତାଙ୍କୁ ସ୍ଥାନ ମିଳିଲା ନାହିଁ । ସେ କିନ୍ତୁ ପୂର୍ବପରି ଗଡ଼ଜାତ ପ୍ରଜା ସଂଗଠନକୁ ଆହୁରି ମଜଭୁତ କରିବାରେ ଲାଗିଲେ ।

## ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ

ସମଗ୍ର ଓଡ଼ିଶା ଓ ଛତିଶଗଡ଼ ରାଜ୍ୟଗୁଡ଼ିକ ଏକ ସଂଗଠନ ଅଧୀନରେ ଆସିଯିବାରୁ ଓଡ଼ିଶାର ଗଡ଼ଜାତ ରାଜାମାନଙ୍କ ପକ୍ଷରେ ସବୁ ଦ୍ୱାର ରୁଦ୍ଧ ପରି ମନେହେଲା । ସେମାନେ ଏହାର ପ୍ରଭାବ କମାଇବା ନିମନ୍ତେ ବଲାଙ୍ଗିରର ରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ନେତୃତ୍ୱରେ ପୂର୍ବାଞ୍ଚଳ ଦେଶୀୟ ରାଜାମାନଙ୍କର ଏକ ସଂଗଠନ ଠିଆ କଲେ । ଭାରତର ନୂତନ ସଂବିଧାନ ପ୍ରଣୟନ ସଂସ୍ଥାରେ ଦେଶୀୟ ରାଜ୍ୟମାନଙ୍କର ପ୍ରତିନିଧିତ୍ୱ ନିମନ୍ତେ ରାଜନ୍ୟ ମଣ୍ଡଳୀ ସହ ଏକ ଚୁକ୍ତିନାମା ସ୍ୱାକ୍ଷରିତ ହେଲା । ଏହି ଚୁକ୍ତିନାମା ଅନୁସାରେ ପ୍ରତିନିଧିତ୍ୱର ଅର୍ଦ୍ଧେକ ରାଜପକ୍ଷ ଓ ଆଉତକ ପ୍ରଜାପକ୍ଷ ପାଇବାର କଥା । ପ୍ରଜା ପକ୍ଷ ପ୍ରତିନିଧିତ୍ୱଟି ନିର୍ବାଚନ ଜରିଆରେ ହେବ । ବଲାଙ୍ଗୀର ରାଜାଙ୍କର ଏଭଳି ଉଦ୍ୟମ ମୂଳରେ ଉଦ୍ଦେଶ୍ୟ ଥିଲା ପ୍ରଜାପକ୍ଷକୁ ପୂର୍ବାଞ୍ଚଳରୁ ଯେଉଁ ଦୁଇଟି ସ୍ଥାନ ଶାସନବିଧାୟକ ସଂସ୍ଥା ଲାଗି ମିଳୁଛି, ସେଥିରେ ନିଜ ଲୋକଙ୍କୁ ଛିଡ଼ା କରି ଜିତାଇବା—ତାହାହେଲେ ରାଜ୍ୟ ସ୍ୱାର୍ଥରକ୍ଷା କରିବା ନିମନ୍ତେ ସେମାନେ ଶକ୍ତି ଲାଭ କରିବେ । କିନ୍ତୁ ଏହି ନିର୍ବାଚନରେ ସାରଙ୍ଗଧର ଦାସ ଓ ବଲାଙ୍ଗୀରର ଯୁଧିଷ୍ଠିର ମିଶ୍ର ପ୍ରଜାମଣ୍ଡଳ ପକ୍ଷରୁ ବହୁ ସଂଖ୍ୟାରେ ଭୋଟ ପାଇ ନିର୍ବାଚିତ ହେଲେ । ଓଡ଼ିଶାର ରାଜାମାନଙ୍କର ଚକ୍ରାନ୍ତ ବିଫଳ ହେଲା । ପ୍ରଜାପକ୍ଷ ବଳଶାଳୀ ହେଲେ । ପ୍ରଜାମଣ୍ଡଳ ସବୁ ଶକ୍ତିଶାଳୀ ହେବାରୁ ରାଜପକ୍ଷ ବିଭିନ୍ନ କୌଶଳ ପ୍ରୟୋଗ କରି

ତାଙ୍କୁ ଦୁର୍ବଳ କରିବାର ଉଦ୍ୟମ କଲେ । ପ୍ରଜାମଣ୍ଡଳ ଭିତରେ ନିଜ ଲୋକ ପୂରାଇ ବିଭେଦ କରିବାର ଉଦ୍ୟମ ହେଲା । ସ୍ୱାୟତ୍ତ ଶାସନ ଦାବୀକୁ ଦୁର୍ବଳ କରିଦେବା ନିମନ୍ତେ କେତେକ ରାଜ୍ୟରେ କିଛି ଶାସନ ସଂସ୍କାର ଘୋଷଣା କରିଦିଆଗଲା । ସେପରି ପୋଖତ ରାଜନୀତିକ ଶକ୍ତିସବୁ ଗଡ଼ଜାତ ଅଞ୍ଚଳରେ ହୋଇ ନଥା'ନ୍ତି । କ୍ଷୁଦ୍ର ସ୍ୱାର୍ଥର ବଶବର୍ତ୍ତୀ ହୋଇ କେତେକ ଷ୍ଟେଟର ପ୍ରଜାମଣ୍ଡଳ ନେତା ଏ ପ୍ରଲୋଭନରେ ପଡ଼ିଗଲେ ଏବଂ ଲୋକ ଦେଖାଣିଆ ମନ୍ତ୍ରୀମଣ୍ଡଳ ବି ଗଠନ କଲେ । ଏହାଦ୍ୱାରା ନିଜନିଜର ଷ୍ଟେଟ ବା ଅଞ୍ଚଳର ସ୍ୱାର୍ଥ ଆଗ ରକ୍ଷା କରିବାକୁ ହେବ ଏଭଳି ଏକ ମନୋଭାବ ସୃଷ୍ଟି ହୋଇଗଲା । ରାଜାଙ୍କର ବିରୋଧୀ ନହୋଇ ସେମାନଙ୍କ ସହ ମିଳିମିଶି ରହିବାର ଏକ ପ୍ରବୃତ୍ତି ଦେଖା-ଦେଲା । ଓଡ଼ିଶା ପ୍ରଦେଶକୁ ଏକ କରିବା କିମ୍ବା ସମସ୍ତେ ଏକ ଗଣତାନ୍ତ୍ରିକ ଶାସନାଧୀନକୁ ଆସିବାର ଯେ ପ୍ରଚେଷ୍ଟା ଚାଲିଥିଲା, ତାହା କିଛିମାତ୍ରାରେ ପରିମାଣରେ ବାଧାପ୍ରାପ୍ତ ହେଲା । ଏହି କ୍ଷଣିକ ସ୍ୱାର୍ଥ ଅଭିଳାଷୀ ନେତାମାନେ ସାରଙ୍ଗଧର ଦାସଙ୍କ ବିରୁଦ୍ଧରେ ମଧ୍ୟ ଅଭିଯାନ ଆରମ୍ଭ କରିଦେଲେ । ଏଥିରେ ରାଜପକ୍ଷ, ବିଶେଷ ଭାବରେ ବଲାଙ୍ଗିରର ରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କର ପ୍ରଚ୍ଛନ୍ନ ହାତ ଥିଲା । ରାଜାମାନେ ବୁଝି ପାରିଥିଲେ ଯେ ଏ ଯେଉଁ ଲୋକ-ସ୍ରୋତ ଚାଲିଛି ତାକୁ ରୋକା ହେବ ନାହିଁ କିମ୍ବା ଭାରତ ସରକାର ସହିତ ଲଢ଼ାଇ କରିବା ସମ୍ଭବ ନୁହେଁ । କେବଳ ପ୍ରଜା ମଣ୍ଡଳବାଲାଙ୍କୁ କୌଣସି ପ୍ରକାରେ ସନ୍ତୁଷ୍ଟ କରାଇ ପାରିଲେ ସେମାନଙ୍କ ପକ୍ଷରେ ଆଉ କିଛିଦିନ ତିଷ୍ଠିବା ସମ୍ଭବ ହେବ । ସାରଙ୍ଗଧର ଦାସ ଓଡ଼ିଶା ଓ ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀର ସଭାପତି ରହିଥିବାରୁ ତାଙ୍କ ଉଦ୍ଦେଶ୍ୟ ସାଧନରେ ପ୍ରଧାନ କଣ୍ଟକ ହୋଇ ରହିଥିଲେ ।

ଏଣେ ହରେକୃଷ୍ଣ ମହତାବ ଓଡ଼ିଶାର ପ୍ରଧାନମନ୍ତ୍ରୀ ହେବାରୁ (ସେକାଳରେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା) ସେ ସରକାରୀ ସ୍ତରରେ ଗଡ଼ଜାତ ଗୁଡ଼ିକର ମିଶ୍ରଣ ପ୍ରସ୍ତାବକୁ ଭୂମିସାତ କରିବାକୁ ଲାଗିଲେ ଏବଂ କ୍ୟାବିନେଟ ମିଶନଠାରୁ ଆରମ୍ଭ କରି ପଲିଟିକାଲ ଡିପାର୍ଟମେଣ୍ଟ ଆଦିକୁ ନାନା ଭାବରେ ପ୍ରଭାବିତ କରି ମିଶ୍ରଣର ସପକ୍ଷରେ ପ୍ରବଳ ଯୁକ୍ତି ବାଢ଼ିଲେ ।

ଓଡ଼ିଶାର ରାଜାମାନେ, ବିଶେଷଭାବରେ ସରେଇକଳା ଓ ପାଟନାର ମହାରାଜା, ଏ ବିରୋଧର ପ୍ରଧାନ ନାୟକ ଭାବରେ କାର୍ଯ୍ୟକଲେ । ଇଷ୍ଟର୍ଣ୍ଣ ଇଉନିୟନ ଗଠନ ସାଙ୍ଗେ ସାଙ୍ଗେ ଓଡ଼ିଶାକୁ ଖଣ୍ଡ ଖଣ୍ଡ କରିଦେବାର ଗୁପ୍ତ ଆନ୍ଦୋଳନ ଆରମ୍ଭ କରିଦେଲେ । ପାଟନା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ପ୍ରତ୍ୟକ୍ଷ ଭାବରେ ହୀରାକୁଦ ବିରୋଧୀ ଆନ୍ଦୋଳନକୁ ଅର୍ଥ ଓ ଅନ୍ୟାନ୍ୟ ସାହାଯ୍ୟ ଦେଇ ଉସକାଇବା ଆରମ୍ଭ କଲେ ଏବଂ ଏକ ପତ୍ରିକା ଜରିଆରେ ପଶ୍ଚିମ ଓଡ଼ିଶା ଓ ଉପକୂଳ ଜିଲ୍ଲାମାନଙ୍କ ଭିତରେ ଭେଦଭାବ ପ୍ରଚାର କଲେ । ସମ୍ବଲପୁରକୁ କୋଶଳ ପ୍ରଦେଶର ଅନ୍ତର୍ଭୁକ୍ତ କରାଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନର ଚକ୍ରାନ୍ତ ଚାଲିଲା । ଏଥିଲାଗି ଆଗରୁ ସୂଚନା ଦିଆଯାଇଥିଲା । ଓଡ଼ିଶା ଗଡ଼ଜାତ ଗୁଡ଼ିକର

ଭୌଗୋଳିକ, ଐତିହାସିକ ଓ ଶାସନଗତ ଦୃଷ୍ଟିରୁ ପ୍ରଦେଶ ସହ ମିଶ୍ରଣର ଯୁକ୍ତି ବିରୁଦ୍ଧରେ ଲେଖିବାକୁ ଯାଇ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସର ରେସିଡେଣ୍ଟ କର୍ଣ୍ଣେଲ ଟେଉଙ୍କୁ ସରେଇକଳା ରାଜା ଏ. ପି. ସିଂହ ୩୦-୭-୪୬ରେ ଲେଖିଲେ—"ପ୍ରାୟ ୫୦୦ ବର୍ଷ ପୂର୍ବେ ଓଡ଼ିଶା ମୋଗଲ କିମ୍ବା ତୁର୍କି-ଅଫଗାନଙ୍କ ଅଧୀନରେ ରହିଥିଲା ଏବଂ ଓଡ଼ିଶା ରାଜାଙ୍କଠାରୁ ସ୍ୱତନ୍ତ୍ର ଭାବରେ ଆଦିବାସୀ ମୁଖ୍ୟମାନେ ଏହିସବୁ ଗଡ଼ଜାତରେ ମୁଖ୍ୟ ଭାବରେ ପ୍ରତିଷ୍ଠା କରିଥିଲେ । ବର୍ତ୍ତମାନ ଗଡ଼ଜାତ ରାଜାମାନଙ୍କର ପୂର୍ବପୁରୁଷମାନେ ସେମାନଙ୍କୁ ପରାଜିତ କରି ପ୍ରାୟ ସବୁ ଗଡ଼ଜାତରେ ନିଜର ରାଜ୍ୟ ସ୍ଥାପନା କରିଥିଲେ । ପାଟନା, କଳାହାଣ୍ଡି, ସୋନପୁର, ସମ୍ବଲପୁର, ରେଢ଼ାଖୋଲ, ବାମଡ଼ା, ବଣାଇ, ଗାଙ୍ଗପୁର, ବୌଦ୍ଧ, ଆଠମଲ୍ଲିକ ଓ ଦଶପଲ୍ଲା କେବେହେଲେ ଓଡ଼ିଶା ବା ପୁରୀ ରାଜା ଅଧୀନରେ ରହି ନଥିଲେ । ସେମାନେ କୋଶଳ ରାଜ୍ୟର ଅନ୍ତର୍ଭୁକ୍ତ ଥିଲେ ଏବଂ ପାଟନା ଗଡ଼ଜାତ ସମୂହ ବୋଲି ମହାସଂଘ ଗଠିତ ହୋଇଥିଲା, ସେମାନେ ତାର ଅଧୀନସ୍ଥ ଥିଲେ । ପାଟନା ଯେ ଏକ ସ୍ୱାଧୀନ ଓ ଶକ୍ତିଶାଳୀ ଗଡ଼ଜାତ ରାଜ୍ୟରୂପେ ଥିଲା, ଏହାକୁ ଅସ୍ୱୀକାର କରିହେବ ନାହିଁ ।" (Beginning of the End—By H. K. Mahatab)

ସେହି ପତ୍ରରେ ପୁଣି ସେ ଲେଖିଲେ—"ସିଂହଭୂମ ଏବଂ ପୋଡ଼ହାଟ ଓ ସରେଇକଳାର ଶାସକମାନେ କେବେହେଲେ ଓଡ଼ିଶାରେ ନ ଥିଲେ, ଏହା ବିହାରର ଏକ ଅଙ୍ଗ ରୂପେ ରହିଥିଲା ।" (Beginning of the End—Page-96)

ସରେଇକଳା ଓ ବଲାଙ୍ଗିର-ପାଟଣା ମହାରାଜା (ବାପ-ପୁଅ) ଖାଲି ନିଜର ଅସ୍ତିତ୍ୱ ରକ୍ଷା ନିମନ୍ତେ ଉଦ୍ୟମ କଲେ ନାହିଁ, ଓଡ଼ିଶା ପ୍ରଦେଶ ଗଠନ କାର୍ଯ୍ୟରେ ମଧ୍ୟ ବାଧାବିଘ୍ନ ସୃଷ୍ଟି କଲେ—ଓଡ଼ିଶାର ଶିଖିମନାର ହେଲେ । ବଲାଙ୍ଗିର ପାଟନା ମହାରାଜା ଅବଶ୍ୟ ପରେ ୧୯୫୬ ମସିହାରେ ରାଜ୍ୟ ପୁନର୍ଗଠନ କମିସନର ନିଷ୍ପତ୍ତି ବିରୁଦ୍ଧରେ ଓଡ଼ିଶାର ଆନ୍ଦୋଳନରେ ଯୋଗଦେଇ କାରାବରଣ କରିଥିଲେ ଏବଂ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ହେବାର ସୁଯୋଗ ପାଇଥିଲେ । ମାତ୍ର ତାଙ୍କର ବିଭେଦକାରୀ କାର୍ଯ୍ୟ ଓଡ଼ିଶାର ପ୍ରଭୂତ କ୍ଷତି ସାଧନ କଲା । ୧୯୪୮ରେ ଯେତେବେଳେ ଓଡ଼ିଶାର ୨୬ ଗଡ଼ଜାତର ମିଶ୍ରଣ ହେବା କଥା, ସେଥିରେ ସରେଇକଳା ମହାରାଜା ଯଦି ବିହାର ପକ୍ଷ ହୋଇ ନଥାନ୍ତେ ତାହାହେଲେ ଓଡ଼ିଶାରେ ତାର ମିଶ୍ରଣ ଅବଶ୍ୟମ୍ଭାବୀ ହୋଇ ପଡ଼ିଥାଆନ୍ତା । ତାଙ୍କର ବିରୋଧ ବିହାର ନେତାମାନଙ୍କୁ ଏକ ଆଳ ପରି ମିଳିଗଲା । ଉତ୍କଳମଣି ଗୋପବନ୍ଧୁ ସିଂହଭୂମ ଅଞ୍ଚଳକୁ ଉତ୍କଳ କଂଗ୍ରେସର ଅନ୍ତର୍ଭୁକ୍ତ କରି କାର୍ଯ୍ୟ କରିବାରେ ବିହାରର ରାଜେନ୍ଦ୍ର ପ୍ରସାଦ ଆଦି ଯେଉଁମାନେ ବାଧାଦେଉଥିଲେ, ସେହିମାନେ ଏଥିରେ ବି ଅଗ୍ରଣୀ ହୋଇଗଲେ । ମୟୂରଭଞ୍ଜ ଅନ୍ୟ ସମସ୍ତଙ୍କ ସହ ଓଡ଼ିଶା ମିଶ୍ରଣରେ ସମ୍ମତ ହୋଇ ନଥିବାରୁ ତାର ବାହାନା ନେଇ ସରେଇକଳା ଓ ଖରସୁଆଁକୁ ଓଡ଼ିଶାରୁ ବାଦ୍ ଦିଆଯାଇ ବିହାର ସହିତ ମିଶାଗଲା । ଏକଥା ମଧ୍ୟ ସ୍ୱୀକାର କରାଯିବ, ପ୍ରାଥମିକ ଅବସ୍ଥାରେ ଏ ବିବାଦବେଳେ ହରେକୃଷ୍ଣ ମହତାବ ଏବଂ ପରେ ୧୯୫୬ ରେ ଯେତେବେଳେ ଏହି

ପ୍ରସଙ୍ଗ ଯେଉଁ ଆନ୍ଦୋଳନ ତେଜି ଉଠିଥିଲା, ସେତେବେଳେ ଯଦି ଅନ୍ୟ କଂଗ୍ରେସ ନେତାମାନେ ଆତ୍ମସମର୍ପଣ କରିନଥାଆନ୍ତେ, ତେବେ ଏସବୁ ଓଡ଼ିଆ ଅଞ୍ଚଳ ଯେପରି ଚିରଦିନ ଦୁର୍ଦ୍ଦଶା ଭୋଗୁଚନ୍ତି, ତାହା ରହିନଥାନ୍ତା ।

ମିଶ୍ରଣ ଆନ୍ଦୋଳନର ପ୍ରଖର ଗତିକୁ ରୋକିବା ନିମନ୍ତେ ଏଣେ ପ୍ରଜାମଣ୍ଡଳ ଭିତରେ ବି ଦ୍ୱିମତ ପ୍ରକାଶ ପାଇଲା । କେତେକ ଗଡ଼ଜାତପ୍ରେମୀ ନେତା ନିଜ ନିଜ ଅଞ୍ଚଳର ରକ୍ଷାକବଚ ଏବଂ ବଡ଼ ଅଞ୍ଚଳରେ ମିଶିଯିବା ଦ୍ୱାରା ଆମର ସ୍ୱାର୍ଥରକ୍ଷା ହେବ ନାହିଁ ଏପରି ଏକ ଦୁଆ ଆରମ୍ଭ କରିଦେଇଥିଲେ । କିନ୍ତୁ ସାରଙ୍ଗଧରବାବୁ ଆମମାନଙ୍କ ସାହାଯ୍ୟରେ ମିଶ୍ରଣ ସପକ୍ଷରେ ପ୍ରବଳ ଜନମତ ସୃଷ୍ଟି କରିବାରେ ଲାଗିଲେ । ବିଶେଷଭାବରେ କଟକ ପାଖାପାଖି ଢେଙ୍କାନାଳ, ତାଳଚେର, ଆଠଗଡ଼, ପାଲଲହଡ଼ା, ଆଠମଲ୍ଲିକ, ପୁରୀର ନୟାଗଡ, ରଣପୁର, ପଶ୍ଚିମ ଓଡ଼ିଶାର ବଉଦ, ସୋନପୁର, ବଲାଙ୍ଗୀର ଆଦିରେ ଏହାର ପ୍ରସାର ଲାଭକଲା । ରାଜାମାନେ ଆତଙ୍କିତ ହୋଇ ପଲିଟିକାଲ ଡିପାର୍ଟମେଣ୍ଟକୁ ଲେଖିଲେ । ପଲିଟିକାଲ ଡିପାର୍ଟମେଣ୍ଟ କିପରି ସନ୍ତ୍ରସ୍ତ ହୋଇଯାଇଥିଲେ, ତାହା ସେବକାଳର ରେସିଡେଣ୍ଟ କର୍ଣ୍ଣେଲ ଟଡ଼ଙ୍କର ଓଡ଼ିଶାର ତତ୍କାଳୀନ ଗଭର୍ଣ୍ଣର ସି. ଏମ୍. ତ୍ରିବେଦୀଙ୍କୁ ଆଠଗଡ଼ଠାରୁ ଡିସେମ୍ବର ୪, ୧୯୪୭ରେ ଲେଖିଥିବା ଚିଠିରୁ ଜଣାପଡେ । ଏ ଚିଠିରେ ବିଶେଷଭାବରେ ଆଠଗଡ଼, ନୟାଗଡ଼, ରଣପୁର ଇତ୍ୟାଦି ଆନ୍ଦୋଳନ ବିଷୟ/ଉଲ୍ଲେଖ ଥିଲା ଏବଂ ଏହିସବୁ ଆନ୍ଦୋଳନକୁ ବାହାରୁ ଆର୍ଥିକ ଓ ଅନ୍ୟ ସାହାଯ୍ୟ ଦିଆଯାଉଛି ବୋଲି ଅଭିଯୋଗ ଉଠାଇଲେ । ସେଥିରେ ସେ ଲେଖିଲେ, "ଆପଣ ସାରଙ୍ଗଧର ଦାସଙ୍କୁ ଜାଣନ୍ତି । ମୁଁ ଶୁଣୁଛି ସେ ଓଡ଼ିଶାରେ ଏମ୍. ଏଲ୍. ଏ. ଅଛନ୍ତି । ସେ ସମଗ୍ର ଓଡ଼ିଶା ଓ ଛତିଶଗଡ଼ ରାଜ୍ୟରେ ବୁଲି ସଭା ସମିତି କରୁଛନ୍ତି; ରାଜ୍ୟଗୁଡ଼ିକର ପ୍ରଦେଶ ସହ ସମ୍ପୂର୍ଣ୍ଣ ମିଶ୍ରଣ ଦାବୀ ଏବଂ ରାଜଶାସକମାନଙ୍କର ବିଲୋପ ନିମନ୍ତେ ଲୋକଙ୍କୁ ମତାଉଛନ୍ତି । ସେ ସବୁ ଗଡ଼ଜାତରେ ପ୍ରଜାମଣ୍ଡଳ ସ୍ଥାପନା କରୁଛନ୍ତି ଏବଂ ଓଡ଼ିଶାର ଜଣେ ମନ୍ତ୍ରୀଙ୍କର ପତ୍ନୀ ଶ୍ରୀମତୀ ମାଳତୀ ଚୌଧୁରୀ ରାଜ୍ୟରାଜ୍ୟରେ ବୁଲି ବହୁସଂଖ୍ୟକ ସଭା କରୁଛନ୍ତି ଏବଂ ପ୍ରଜାମଣ୍ଡଳ ଗଠନ ନିମନ୍ତେ ଲୋକଙ୍କୁ ଉତ୍ସାହିତ କରୁଛନ୍ତି ।" କି ମହାପାପ ! (Beginning of the End-161-62)

## ଗଡ଼ଜାତ ମିଶ୍ରଣ

ଏହିରୂପେ ୧୯୪୭ ରୁ ୧୯୪ ପର୍ଯ୍ୟନ୍ତ ଓଡ଼ିଶାର ଗଡ଼ଜାତ ଗୁଡ଼ିକୁ ଓଡ଼ିଶା ପ୍ରଦେଶ ସହ ଏକଶାସନାଧୀନ କରିବା ନିମନ୍ତେ ଆନ୍ଦୋଳନ ତେଜି ଉଠିଲା । ସେତେବେଳକୁ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଭାରତର ହୋମ୍ ଓ ଷ୍ଟେଟ୍ସ୍ ମିନିଷ୍ଟର । ସେ ଓଡ଼ିଶା ଆସିଲେ । ଓଡ଼ିଶାର ମତ ସଂଗ୍ରହ କଲେ, ମିଶ୍ରଣ ସପକ୍ଷରେ ପ୍ରବଳ ଜନମତ ଦେଖିବାକୁ ପାଇଲେ । କେତେକ କଂଗ୍ରେସ ଓ ଗଡ଼ଜାତ ନେତା ମିଶ୍ରଣ ବିରୁଦ୍ଧରେ ମତ ଦେବାରୁ

ସେ ସେମାନଙ୍କୁ ଧରସ୍କାରକଲେ । ଓଡ଼ିଆ ରାଜାମାନଙ୍କୁ ଏକ ସମ୍ମିଳନୀକୁ ଡକାଇ ପରିଷ୍କାର ଜଣାଇଦେଲେ ଯେ -ତୁମମାନଙ୍କ ପକ୍ଷରେ ସ୍ୱାଧୀନଭାବରେ ତିଷ୍ଠି ରହିବା ଅସମ୍ଭବ । ରାଜ୍ୟରେ ଜନଆନ୍ଦୋଳନ ଓ ଅଶାନ୍ତି ଘଟିଲେ ଭାରତ ସରକାର କିମ୍ବା ଓଡ଼ିଶା ସରକାର ସାହାଯ୍ୟ କରିପାରିବେ ନାହିଁ । ପ୍ରଥମେ ରାଜାମାନେ ଟିକିଏ ଇତସ୍ତତଃ ହେଉଥିଲେ । ଯେତେବେଳେ ମିଶ୍ରଣ ଚୁକ୍ତିରେ ଦସ୍ତଖତ ଦେବା କଥା ଉଠିଲା, ଜଣେ ଯୁବକ ରାଜା ଆତ୍ମହତ୍ୟା କରିବାର ପ୍ରସ୍ତାବ କରୁଥିଲେ । ଦେବାଂଶରୁ ଜାତ ମହାରାଜା ନିଜ ହାତରେ ନିଜ ରାଜ୍ୟର ବିଲୋପ କରାଇବାଟା ତାଙ୍କ ପକ୍ଷରେ ଅସହ୍ୟ ହେଲା । କିନ୍ତୁ ପରେ ସେ ଦସ୍ତଖତ କଲେ । ୧୯୪୭ ଡିସେମ୍ବର ୧୩ରେ ସର୍ଦ୍ଦାର ପଟେଲ କଟକ ଆସିଲେ ଏବଂ ୧୪ ତାରିଖରେ ଓଡ଼ିଶାର ରାଜାମାନେ ମିଶ୍ରଣ ଚୁକ୍ତିରେ ଦସ୍ତଖତ କରିଦେଲେ । କେବଳ ମୟୂରଭଞ୍ଜ ରାଜ୍ୟ ଏଥିରେ ଯୋଗଦେଲନାହିଁ । ୧୫ ଦିନ ପରେ ୧୯୪୮ ମସିହା ଜାନୁଆରୀ ପହିଲା ତାରିଖରେ ଏହି ମିଶ୍ରଣ ବାସ୍ତବତାରେ ପରିଣତ ହେଲା ଏବଂ ଓଡ଼ିଶା ପ୍ରାଦେଶିକ ସରକାରରୁ ନିଯୁକ୍ତ ଆଡ଼ମିନିଷ୍ଟ୍ରେଟର୍‌ମାନେ ରାଜାମାନଙ୍କଠାରୁ ଶାସନ କ୍ଷମତାର ଦାୟିତ୍ୱ ନେଲେ । ଏ ସମ୍ପର୍କରେ ଏକ ପ୍ରମୋଦଦାୟକ ଘଟଣା ଏଠାରେ ଉଲ୍ଲେଖ ନ କରି ରହିପାରୁନାହିଁ । କଳାହାଣ୍ଡି ରାଜ୍ୟର ଭବାନୀପାଟଣାରେ ମିଶ୍ରଣ ଉତ୍ସବ ପାଳନରେ ଯୋଗଦେବା ନିମନ୍ତେ ମତେ କଂଗ୍ରେସ କମିଟି ତରଫରୁ ପଠାଯାଇଥିଲା । ମୁଁ ପୂର୍ବଦିନ ଯାଇ କେଶିଙ୍ଗାରେ ପହଞ୍ଚିଲି ଏବଂ ସେଠାରେ ଏକ ସଭା କଲି । ସେଠି ବିରାଟ ହାଟ ହୁଏ । ଶୁଣିବାକୁ ପାଇଲି ଯେ କେଶିଙ୍ଗାରୁ ଭବାନୀପାଟଣା ପର୍ଯ୍ୟନ୍ତ ଯାଇଥିବା ପକ୍କା ସଡ଼କରେ ବଳଦଗାଡ଼ି ଯିବା ବାରଣ; କେବଳ ରାଜାଙ୍କ ମଟରଗାଡ଼ି ସେଥିରେ ଯାଏ । ମୁଁ ଏହା ଶୁଣି ସେଠି ଠିଆ ହୋଇ ବଳଦଗାଡ଼ିବାଲାଙ୍କୁ ଆହ୍ୱାନ କରି କହିଲି—ଏବେ ଆଉ ରାଜଶାସନ ନାହିଁ—ଲୋକଶାସନ ହେଲାଣି—ଲୋକେ ବଳଦ ଶଗଡ଼ ଆଦି ପକ୍କା ସଡ଼କରେ ଚଳାନ୍ତୁ, କେହି ବାଧା ଦେଇପାରିବ ନାହିଁ । କି ଉତ୍ସାହ ! ହରିବୋଲ ହୁଳହୁଳି ପକାଇ ହାଟକାମ ଛାଡ଼ି ଲୋକେ ଶଗଡ଼ ଚଳାଇବା ଆରମ୍ଭ କରିଦେଲେ । ଦାସତ୍ୱମୋଚନରେ ଲୋକଙ୍କ ମନରେ କିଭଳି ପରିବର୍ତ୍ତନ ହୁଏ ଏବଂ ସେମାନେ ଏହାକୁ କିଭଳି ଗ୍ରହଣ କରନ୍ତି, ଏହି ଘଟଣାରୁ ତାର ପ୍ରମାଣ ମିଳିଲା । ରାଜଦରବାର ଏହାଦ୍ୱାରା ନିଜକୁ ଅତ୍ୟନ୍ତ ଅପମାନିତ ବୋଧକଲେ । ତାପରଦିନ ଜାନୁଆରୀ ପହିଲାରେ ମୁଁ ଭବାନୀପାଟଣାରେ ଯେଉଁ ବିରାଟ ସଭାରେ ରାଜାଙ୍କ ରାଜତ୍ୱ ଲୋପ ସାଧନର ଉତ୍ସବ ଘୋଷଣା କଲି, ସେ ସଭାରେ ଏକ ଆଦିବାସୀକୁ ମଦ ପିଆଇ ମୁଁ ଭାଷଣ ଦେଉଥିବାବେଳେ ମୋ ଉପରକୁ ଟାଙ୍ଗିଆ ପକାଇ ହାଣିଦେବାର ଉଦ୍ୟମ ହୋଇଥିଲା । ମାତ୍ର ମୋ ସାଙ୍ଗରେ କଟକରୁ ସ୍ପେଶାଲ ବ୍ରାଞ୍ଚ ପୁଲିସ ରିପୋର୍ଟର ଯାଇଥାନ୍ତି । ସେ ଏହାର ସୁରାକ୍ ପାଇଲେ ଏବଂ ଉକ୍ତ ବ୍ୟକ୍ତି ଏକ ପାଣ୍ଟିସ୍ଥାନରୁ ମତେ ମାରିବା ନିମନ୍ତେ ନିଜକୁ ପ୍ରସ୍ତୁତ କରୁଥିବାବେଳେ ତାକୁ ଗିରଫ କରିନେଇଗଲେ ଏବଂ ମୁଁ ରକ୍ଷା ପାଇଗଲି । ମୁଁ ଏ ବିଷୟରେ ପ୍ରଥମେ କିଛି ଜାଣିପାରି ନଥିଲି—ସଭାରେ ମଧ୍ୟ ସେପରି କିଛି ବିଶୃଙ୍ଖଳା ନ ଥିଲା । ସଭା ଶେଷରେ ପୁଲିସ ମତେ ଏ କଥା ଜଣାଇଲେ ।

ସବୁ ଷ୍ଟେଟ ମିଶିଗଲା—ମାତ୍ର କେବଳ ମୟୂରଭଞ୍ଜ ରହିଗଲା । ମୟୂରଭଞ୍ଜ ମହାରାଜା ଆଗରୁ ଏକ ସ୍ୱାୟତ୍ତଶାସନ ଘୋଷଣା କରିଦେଲେ ଏବଂ ଶ୍ରୀ ଶରତ ଚନ୍ଦ୍ର ଦାସଙ୍କ ନେତୃତ୍ୱରେ ସେଠାରେ ଏକ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ଏ ପ୍ରଜାମଣ୍ଡଳ-ମନ୍ତ୍ରୀମଣ୍ଡଳ ବି ମିଶ୍ରଣର ବିରୋଧ କଲା ଏବଂ ରାଜାଙ୍କ ଅଧୀନରେ ରାଜ୍ୟ ରହିବା ସପକ୍ଷରେ ମତ ଦେଲା । ମୟୂରଭଞ୍ଜ କାହିଁକି ରହିଗଲା, ସେ ସଂପର୍କରେ କହିବାକୁ ଯାଇ ସର୍ଦ୍ଦାର ପଟେଲ କହିଲେ—ମୁଁ ଯେତେବେଳେ ଓଡ଼ିଶା ଯାଇଥିଲି, ସେତେବେଳେ ମୟୂରଭଞ୍ଜର ଶାସକ ମତେ ଆସି କହିଲେ ଯେ ସେ ପୂର୍ଣ୍ଣ ସ୍ୱାୟତ୍ତଶାସନ ଦେଇ ସାରିଛନ୍ତି ଏବଂ ସେମାନଙ୍କ ସମ୍ମତି ନ ମିଳିଲେ ସେ ମିଶ୍ରଣ କାଗଜରେ ଦସ୍ତଖତ କରିପାରିବେ ନାହିଁ ।"

## ମୟୂରଭଞ୍ଜ ଓଡ଼ିଶାରେ ମିଶିଲା

ଆମେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ପୁନରୁଦ୍ଧାର କରିସାରିଥାଉ । ମୟୂରଭଞ୍ଜ ଷ୍ଟେଟରେ ଆମର ଏକ ବିଧିବଦ୍ଧ ଶାଖା ଗଠନ କରାଯାଇଥାଏ । ଆମେ ସ୍ଥିର କଲୁ ମୟୂରଭଞ୍ଜ, ସରେଇକଳା ଓ ଖରସୁଆଁର ମିଶ୍ରଣ ଲାଗି ଆନ୍ଦୋଳନ ଜାରି ରଖିବା ନିମନ୍ତେ । ମୁଁ ସରେଇକଳା ଖରସୁଆଁକୁ ଗଲି । ଖୁବ୍ ଜନସମର୍ଥନ ମିଳିଲା । ବିହାର ପାର୍ଟି ସହ କଥାବାର୍ତ୍ତା କଲି । ଏଥିଲାଗି ଆମ ସହ ସହଯୋଗ କରିବା ନିମନ୍ତେ ସେମାନଙ୍କର କୌଣସି ଆପତ୍ତି ନଥିଲେ ସୁଦ୍ଧା, ଗ୍ରେଟନାଗପୁର ଅଞ୍ଚଳରେ କୌଣସି ସଂଗଠନ ନଥିବାରୁ ଏତେ ଦୂରରୁ କିଛି କରିବା ସମ୍ଭବ ହେଲାନାହିଁ । ପ୍ରଦେଶ ବାହାରେ ଓ ଦୂରରେ ଏହି ଅଞ୍ଚଳ ରହିଥିବାରୁ ଆମ ପକ୍ଷରେ ସେଠି ସ୍ଥାୟୀଭାବରେ କିଛି ଆନ୍ଦୋଳନ କରି ହେଲା ନାହିଁ । କିନ୍ତୁ ମୟୂରଭଞ୍ଜରେ ଆମେ ଜୋର୍ ଦେବା ନିମନ୍ତେ ସ୍ଥିର କଲୁ । ଏହା କଷ୍ଟସାଧ୍ୟ ଥିଲା ମଧ୍ୟ । ଆଗରୁ ମୟୂରଭଞ୍ଜ ପାର୍ଟିର ସେକ୍ରେଟେରି ଗିରୀଶ ରାୟ ଖୁବ୍ ସାହସୀ ଥିଲେ, ମାତ୍ର ରାଜା ଓ ପ୍ରଜାମଣ୍ଡଳ ଶକ୍ତି ଏକାଠି ମିଳିଯାଇଥିବାରୁ ଶିକ୍ଷିତ ମହଲରୁ କୌଣସି ବିଶେଷ ସମର୍ଥନ ତାଙ୍କୁ ମିଳୁନଥିଲା । ବାହାରୁ ପ୍ରକାଶ୍ୟରେ କେହି ଯିବାକୁ ଚାହୁଁଥିଲେ ମଧ୍ୟ ଏପରି ବ୍ୟବସ୍ଥା ଯୋଗୁଁ ଯିବା ପ୍ରାୟ ଅସମ୍ଭବ ହୋଇପଡ଼ିଥିଲା । ବାଲେଶ୍ୱରରୁ ଖଣ୍ଡିଏ ବସ୍ ଚାଲୁଥାଏ । କିଛି ନିଷେଧାଜ୍ଞା ନ ଥିଲେ ସୁଦ୍ଧା ଏମିତି ପରିସ୍ଥିତି ଥିଲା ଯେ ଯିବା କଠିନ ହୋଇପଡ଼ୁଥିଲା ।

ଟ୍ରେନ୍‌ରେ ମଧ୍ୟ ଯିବାରେ ନାନାଦି ଅସୁବିଧା ଥିଲା । ତଥାପି ସ୍ଥିର କରାଗଲା ଯେ ମୋ ଲାଗି ଏକ ୩ ଦିନିଆ ପ୍ରୋଗ୍ରାମ୍ ହେବ ଏବଂ ମିଶ୍ରଣ ଲାଗି ସେଥିରେ ଆନ୍ଦୋଳନ କରାଯିବ । ଏହି ପ୍ରୋଗ୍ରାମ ୧୯୪୮ ଜାନୁଆରୀ ୨୩ରୁ ୨୬ ପର୍ଯ୍ୟନ୍ତ ଧାର୍ଯ୍ୟ ହେଲା । ପ୍ରଥମ ସଭା ଥିଲା କପ୍ତିପଦାରେ । ଏଥିଭିତରେ ଗୋଟାଏ ଗୁଜବ ପ୍ରଚାରିତ ହେଲା ଏବଂ ପ୍ରଜାମଣ୍ଡଳ ମନ୍ତ୍ରୀମଣ୍ଡଳ ସେଥିରେ ବିଶ୍ୱାସ କଲେ ଯେ ମୁଁ ସୋସଲିଷ୍ଟମାନଙ୍କୁ ଧରି ଅସ୍ତ୍ର ଶସ୍ତ୍ର ନେଇ ଯାଉଛି ମୟୂରଭଞ୍ଜକୁ ଜବରଦସ୍ତ ମିଶାଇ ଦେବା ନିମନ୍ତେ । ତେଣୁ ମୟୂରଭଞ୍ଜର ସବୁ ପ୍ରବେଶ ଦ୍ୱାରରେ ଜଗୁଆଳି ରହିଗଲେ ମତେ ରୋକିବା ନିମନ୍ତେ । ମୁଁ କିନ୍ତୁ ଆମର ପରମ ସାଥୀ

ଗୌରଚନ୍ଦ୍ର ଦାସଙ୍କ ସହ ବାଲେଶ୍ୱରରୁ ଏକ କଂଟ୍ରାକ୍ଟରଙ୍କ ଟ୍ରକ୍‌ରେ ମାଲଗିର ଦେଇ ଯାଇ କପ୍ତିପଦାରେ ପହଞ୍ଚିଗଲି । ପହଞ୍ଚି ଦେଖେତ ଶହ ଶହ ସ୍ତ୍ରୀ ପୁରୁଷ କଳାପତାକା ଧରି ବୁଲୁଛନ୍ତି । ମୁଁ ଏକ ସ୍ଥାନରେ ଚୁପ୍ ହୋଇ ବସିଥାଏ । ମତେ ବହୁ ଲୋକ ଚହ୍ନି ନ ଥାନ୍ତି ମଧ୍ୟ । ମୁହଁଅନ୍ଧାର ହେବାରୁ ଗିରିଶ ରାୟ ଆସି ପହଞ୍ଚିଲେ ଏବଂ ସିଧାସଳଖ ଆମେ ସଭା ସ୍ଥଳକୁ ଗଲୁ । କଳାପତାକାଧାରୀ ନିରସ୍ତ ହେଲେ । ସଭାରେ ବହୁ ସଂଖ୍ୟାରେ ଆଦିବାସୀ ନରନାରୀ ଉପସ୍ଥିତ ଥାଆନ୍ତି ଏବଂ ସେମାନେ ରୀତି ଅନୁସାରେ ମତେ ଅଭିନନ୍ଦନ କଲେ ଏବଂ ସଭାକାର୍ଯ୍ୟ ଆରମ୍ଭ ହେଲା । ସଭାକୁ ଭଣ୍ଡୁର କରିବା ନିମନ୍ତେ ସୋନାରାମ୍ ସୋରେନ୍‌ଙ୍କ (ଯେ କି ପରେ ଓଡ଼ିଶାରେ ମନ୍ତ୍ରୀ ହୋଇଥିଲେ) ନେତୃତ୍ୱରେ ଦଳଦଳ ହୋଇ ଆଦିବାସୀ ସ୍ତ୍ରୀ ପୁରୁଷ ସଭାରେ ପ୍ରବେଶ କରି "ଦ୍ୱିବେଦୀ ଫେରିଯାଅ", "ଆମ କଥା ଆମେ ବୁଝିବୁ" ଧ୍ୱନିମାନ ଦେଉଥାନ୍ତି । କିନ୍ତୁ ଲୋକେ ଆମକୁ ଯିବାଲାଗି ପଥଦେଲେ; ସଭାକାର୍ଯ୍ୟ ଚାଲିଲା ଏବଂ ମିଶ୍ରଣ ସପକ୍ଷରେ ପ୍ରବଳ ଜନମତ ପ୍ରକାଶ ପାଇଲା । ଏହା ଦେଖି ପରବର୍ତ୍ତୀ ସଭାଲାଗି ସେମାନେ କୌଶଳ ବଦଳାଇଲେ । କପ୍ତିପଦାରେ ଆମକୁ ରହିବାକୁ ଦିଆଗଲା ନାହିଁ । ଶଗଡ଼ ଗାଡ଼ି ବି ମିଳିଲା ନାହିଁ । ବାଟରେ ବାଘଭୟ ବି ଥାଏ । ତାକୁ ପରୁଆ ନ କରି ସାଇକେଲ ପଛରେ ବସି ମୁଁ ଓ ଗୌରବାବୁ ଯାଇ ଗିରିଶ ରାୟଙ୍କ ଘରେ ଜୟପୁରରେ ରାତି କଟାଇଲୁ । ଆମର ଦ୍ୱିତୀୟ ସଭା ଥାଏ ଖ୍ରିମଦାଠାରେ । ସେଠାରେ ପ୍ରଜାମଣ୍ଡଳ ସରକାର ପକ୍ଷରୁ ଏକ ସମାନ୍ତରାଳ ସଭା ଘୋଷଣା କରାଗଲା ଏବଂ ରାସ୍ତାରେ ପୁଲିସ ରଖାଗଲା ଯେପରି ଲୋକେ ଆମ ସଭାକୁ ନ ଆସନ୍ତି । ଏଣେ କଳାପତାକା ଧରି ଶିକ୍ଷିତ ଯୁବକ, ଓକିଲ ଓ ଛାତ୍ରମାନେ ରାସ୍ତାରେ ଛିଡ଼ାରହିଲେ ମୋତେ ରୋକିବା ନିମନ୍ତେ । ମୁଁ ଏକ ଶଗଡ଼ ଗାଡ଼ିରେ ଯାଉଥାଏ । ସାଙ୍ଗରେ ଥିବା ଲୋକେ ଭୟ କଲେ—ମୋ ଜୀବନ ପ୍ରତି ବିପଦ ଆସିପାରେ । ମୁଁ ଶଗଡ଼ ଗାଡ଼ି ଛାଡ଼ି ଓହ୍ଲାଇପଡ଼ି କଳାପତାକାଧାରୀଙ୍କ ପାଖରେ ପହଞ୍ଚି ନମସ୍କାର କରି ତାଙ୍କ ଭିତର ଦେଇ ଦ୍ରୁତଗତିରେ ଅତିକ୍ରମ କରି ଆସିଲି । ସେମାନେ ଅପ୍ରତିଭ ହୋଇଗଲେ । ଭାବିଥିଲେ ମୋ ସହିତ ଧସ୍ତାଧସ୍ତି ହେବ —ଏପରି ଏକ ପରିସ୍ଥିତି ପ୍ରତି ତିଆରି ନ ଥିଲେ ।

ସବୁଠୁଁ ମଜାର କଥା ହେଉଛି ସେଥିମଧ୍ୟରୁ କେତେକ ପତାକା ଫୋପାଡ଼ି ଦେଇ ମୋତେ ନମସ୍କାର କରିବାକୁ ଲାଗିଲେ । କିନ୍ତୁ ଆମେ ଖ୍ରିମଦାରେ ଭଲ ସଭା କରି ପାରିଲୁ ନାହିଁ । ପୁଲିସ ଗ୍ରାମବାସୀଙ୍କୁ ଘେରିଯାଇଥିଲେ । ଶୀତଦିନ ରାତିରେ ରହିବାକୁ ଜାଗା ମିଳିଲା ନାହିଁ । ଏକ ଖୋଲା ଟ୍ରଙ୍କିରେ ବାଟଗଡ଼ ଜାଳି ଆମେ ରାତି କଟାଇଲୁ । ତୃତୀୟଦିନ ଆମର ବାରିପଦା ଯାତ୍ରା । ସେଠାରେ କିନ୍ତୁ ବିରାଟ ଆୟୋଜନ । ଛଉନାଚ ଆଦି ଅଣାଇ ବିରାଟ ସଭାର ଆୟୋଜନ । ଦିନସାରା ଦଳକୁ ଦଳ ଛାତ୍ର, ବଣିକ, ମହିଳା, ଯୁବକ, ଆଦିବାସୀ ବିଭିନ୍ନ ସମ୍ପ୍ରଦାୟ ଶୋଭାଯାତ୍ରା କରି ମୋର ବାସସ୍ଥାନ ସାମନାରେ "ଦ୍ୱିବେଦୀ ଫେରିଯାଅ" ଧ୍ୱନି ଦେଇ ବୁଲିଥାଆନ୍ତି । ବାରିପଦାବାସୀ ନିଜକୁ ଚିହ୍ନା କରିବା ଯେପରି ଏକ ଜାତୀୟ

କର୍ତ୍ତବ୍ୟ ବୋଲି ବିଶ୍ବାସ କରିଆସୁଥିଲେ । ମୋ ପଛରେ ନୁହେଁ, ପ୍ରଜାମଣ୍ଡଳ ସରକାର ପଛରେ ବିପୁଳ ସମର୍ଥନ ରହିଛି ଏହା ଦେଖାଇବା ଥିଲା ସେମାନଙ୍କର ଉଦ୍ଦେଶ୍ୟ । ବିଶେଷତଃ ଛାତ୍ର, ଯୁବକ ଓ ଶିକ୍ଷିତ ମହଲର ଉତ୍ସାହ ଦେଖି ମୁଁ ଚକିତ ହେଲି । ତଥାପି ଆମେ ମଧୁବନ ପଡ଼ିଆରେ ଗୋଟିଏ ଗଛମୂଳେ ସଭା ଆରମ୍ଭ କଲୁ । କିଛି ଲୋକ ଜୁଟିଲେ । ଆମ ସଭାକୁ ଭଣ୍ଡୁର କରିବା ନିମନ୍ତେ ଦଳେ ଛାତ୍ର ଆସି ଗୋଳମାଳ କଲେ । ମୁଁ ତାଙ୍କଠୁ କଳାପତାକା ନେଇ ବେକରେ ପକାଇ କହିଲି—ଓଡ଼ିଶାର ଏ ଅଞ୍ଚଳକୁ ମିଶାଇବାର ଯଥାର୍ଥତା ଯେତେବେଳେ ବୁଝାଇ ପାରିନାହିଁ, ଏହା ମୁଁ ପିନ୍ଧିବା ଉଚିତ । ଏଥିରେ ସେମାନେ ଟିକିଏ ଶିଥିଳ ହେଲେ; ମାତ୍ର ମୁଁ ପୁଣି ଭାଷଣ ଦେବାରୁ ଭୀଷଣ ଗଣ୍ଡଗୋଳ ଆରମ୍ଭ କଲେ । ମୁଁ ଧମକ ଦେଇ କହିଲି—ମୁଁ ଏଠୁ ଗଲେ ଭାରତ ସରକାରଙ୍କୁ ଲେଖିବି—ମୟୂରଭଞ୍ଜରେ ବ୍ୟକ୍ତି ସ୍ୱାଧୀନତା ନାହିଁ—ସେମାନେ ହସ୍ତକ୍ଷେପ କରନ୍ତୁ । ଏଥିରେ ସେମାନଙ୍କ ମନରେ ଛନକା ପଶିଲା । ନେତାମାନେ ଆସି ଛାତ୍ରମାନଙ୍କୁ ଫେରିଯିବାକୁ ଅନୁରୋଧ କଲେ—ଗଣ୍ଡଗୋଳ ବନ୍ଦ ହେଲା । କିନ୍ତୁ ଏପରି ଏକ ସରଗରମ ବାୟୁମଣ୍ଡଳ ସୃଷ୍ଟି ହେଲା ଯେ ସରକାରୀ ସଭାରୁ ହଜାର ହଜାର ଲୋକ ପଳାଇଆସି ମୋ ଭାଷଣ ଶୁଣିଲେ । ଆମ କାର୍ଯ୍ୟର ସମାପ୍ତି ହେଲା । ସେହିଦିନ ରାତି ବସ୍‌ରେ ମୁଁ ଫେରିଆସିଲି । ମାତ୍ର ଆମର ଏ ଯାତ୍ରା ଅତି ସଫଳ ହେଲା । ଜନମତର ଚାପରେ ପୁଣି ମୟୂରଭଞ୍ଜ ବି ଓଡ଼ିଶାରେ ମିଶିଗଲା । ଓଡ଼ିଶାରୁ ଗଡ଼ଜାତ ଶାସନ ଲୋପ ପାଇଲା । ଏକ ବିଶାଳ ଉତ୍କଳ ଜନ୍ମଲାଭ କଲା । ଏଥିଲାଗି ସାରା ଓଡ଼ିଆ ଜାତି ସାରଙ୍ଗଧର ଦାସଙ୍କ ପାଖରେ ଋଣୀ ହୋଇ ରହିବ । ମୋର ଆଉ ଏକ ଶୁଭ ହେଲା—ସେଠିକା ପ୍ରଜାମଣ୍ଡଳ ନେତାମାନେ ସୋସଲିଷ୍ଟ ପାର୍ଟିରେ ଯୋଗ ଦେଲେ ।



## ୪ । ସୋସଲିଷ୍ଟ ଆନ୍ଦୋଳନର ପ୍ରସାର

### କମ୍ୟୁନିଷ୍ଟଙ୍କ ଷଡ଼ଯନ୍ତ୍ର

ଓଡ଼ିଶାରେ ଗଡ଼ଜାତ ଆନ୍ଦୋଳନ ଭିତରେ ହିଁ କମ୍ୟୁନିଷ୍ଟ ପାର୍ଟିର ଯେ ସଂଗଠନ କରିବାର ଉଦ୍ୟମ ଚାଲିଥିଲା, ତାହା ଜଣାପଡ଼ିଗଲା । ବିଶେଷଭାବରେ କମ୍ୟୁନିଷ୍ଟ ନେତା ପି.ସି. ଯୋଶୀ ଢେଙ୍କାନାଳ ତାଳଚେର ଆଦି ପରିଦର୍ଶନରେ ଆସିଲେ ଏବଂ କମ୍ୟୁନିଷ୍ଟଗ୍ରୁପଙ୍କ ସହ ଗୁପ୍ତ ମନ୍ତ୍ରଣା କଲେ । କିଛି ଦିନ ପରେ ଭଗବତୀ ପାଣିଗ୍ରାହୀ ବମ୍ବେ ଯାଇ ଏ ବିଷୟରେ ଯୋଶୀଙ୍କ ସହ ମନ୍ତ୍ରଣା କରି ଫେରିଲେ । ୧୯୩୯ ରେ ରାମକୃଷ୍ଣ ପତିଙ୍କ ସଭାପତିତ୍ୱରେ କଟକରେ ଯେଉଁ ଓଡ଼ିଶା ଯୁବକ ସମ୍ମିଳନୀ ହେଲା, ସେଠିକବେଳେ କମ୍ୟୁନିଷ୍ଟ ପାର୍ଟି ଗଠନ ବିଷୟରେ ନିଷ୍ପତ୍ତି ନିଆଗଲା । ତତ୍ପର ବର୍ଷ କମ୍ୟୁନିଷ୍ଟ ପାର୍ଟି ଓଡ଼ିଶାରେ ଗଠିତ ହେଲା । ତାପରେ ଓଡ଼ିଶାର କମ୍ୟୁନିଷ୍ଟ ନେତା ସବୁ ଷଡ଼ଯନ୍ତ୍ର ମକଦମାରେ ଗିରଫ ହୋଇଗଲେ ।

ଇଉନାଇଟେଡ଼ ଫ୍ରଣ୍ଟ ନାମରେ ସେମାନେ କୃଷକ, ଶ୍ରମିକ ଓ ଛାତ୍ର ସଂଗଠନ ଆଦିରେ ନିଜର ପ୍ରଭାବ ବିସ୍ତାର କରିବାର ଉଦ୍ୟମ କଲେ । ଏଥିଲାଗି କଂଗ୍ରେସ ସୋସଲିଷ୍ଟ ପାର୍ଟି ନେତୃବୃନ୍ଦଙ୍କ ଭିତରେ ବେଶ୍ ମତଭେଦ ଦେଖାଦେଲା । ଏହାର ମୂଳରେ ଥିଲା କମ୍ୟୁନିଷ୍ଟଙ୍କ ମତଲବ ବିଷୟରେ ସନ୍ଦେହ । କମ୍ୟୁନିଷ୍ଟ ପାର୍ଟି ଜାତୀୟ ଆନ୍ଦୋଳନର ବିରୋଧ କରିଥିଲା ଏବଂ ପରେ ଇଂରେଜ ସରକାର ଏହାକୁ ବେଆଇନ କରିଦେଇଥିଲା । ଏଠା କମ୍ୟୁନିଷ୍ଟ ପାର୍ଟି ରୁଷର ଅନୁଗାମୀ ହେଲେ ସୁଦ୍ଧା ଗ୍ରେଟ୍ ବ୍ରିଟେନ୍‌ର କମ୍ୟୁନିଷ୍ଟଙ୍କ ନିର୍ଦ୍ଦେଶରେ ପରିଚାଳିତ ହେଉଥିଲା । ରଜନୀ ପାମିଦତ୍ତ ଏବଂ ବ୍ରାଡ଼ଲେ ତହିଁର ନେତା ଥିଲେ ଏବଂ ସେହିମାନେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପରିଚାଳନା କରୁଥିଲେ । ମିଳିତ ଫ୍ରଣ୍ଟ କରି କାର୍ଯ୍ୟ କରିବାର ନୀତି କମ୍ୟୁନିଷ୍ଟ ଇଣ୍ଟରନେସନାଲ ଗ୍ରହଣ କଲା ଏବଂ ତାହାକୁ କାର୍ଯ୍ୟକାରୀ କରିବା ନିମନ୍ତେ ଭାରତରେ କଂଗ୍ରେସ ସୋସଲିଷ୍ଟ ପାର୍ଟି ଜରିଆରେ କଂଗ୍ରେସରେ ପ୍ରବେଶ କରିବାର ପନ୍ଥା ସ୍ଥିର କରାଗଲା । ସେହି ଅନୁସାରେ କଂଗ୍ରେସ ସୋସଲିଷ୍ଟ ପାର୍ଟିକୁ ସମାଜ-ବାଦୀ ଏଜେଣ୍ଟ ବୋଲି ଆଗରୁ କମ୍ୟୁନିଷ୍ଟମାନେ ଯେଉଁ ସମାଲୋଚନା କରୁଥିଲେ, ସେ ସ୍ୱର ବଦଳାଇ ମିଳାମିଶି କାର୍ଯ୍ୟ କରିବାର ଭାବ ଦେଖାଇଲେ । ଏଣେ କଂଗ୍ରେସ ସୋସଲିଷ୍ଟ ପାର୍ଟି ମଧ୍ୟ ମାର୍କସବାଦ ଗ୍ରହଣ କରୁଛି ବୋଲି ଘୋଷଣା କରିଥିଲା ଏବଂ ସମାଜବାଦୀ ଏକତା ଏହାର ଲକ୍ଷ୍ୟ ଥିଲା । ତେଣୁ ଜୟପ୍ରକାଶ ନାରାୟଣ ଓ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ

ନେତୃତ୍ୱରେ କମ୍ୟୁନିଷ୍ଟଙ୍କ ସହ ମିଳିତ ଫ୍ରଣ୍ଟ ଏବଂ ବ୍ୟକ୍ତିଗତ ଭାବରେ ସେମାନଙ୍କୁ ପାର୍ଟିର ସଭ୍ୟ ଭାବରେ ନେଇ କାର୍ଯ୍ୟ କରିବାର ସିଦ୍ଧାନ୍ତ ନିଆଗଲା । ସି.ଏସ.ପି. (କଂଗ୍ରେସ ସୋସିଆଲିଷ୍ଟ) ପାର୍ଟି ଗୃହୀତ ଏଭଳି କାର୍ଯ୍ୟ ଫଳରେ କ୍ରମେ ସମସ୍ତେ ମିଶି ଗୋଟିଏ ବିରାଟ ଦଳରେ ପରିଣତ ହୋଇଯିବେ । କିନ୍ତୁ କମ୍ୟୁନିଷ୍ଟଙ୍କର କୌଶଳ ହେଲା ଏହା ଭିତରେ ପଶି ଏହାକୁ ଭାଙ୍ଗିବା । କମ୍ୟୁନିଷ୍ଟମାନେ ଖାଲି ସଭ୍ୟ ହିସାବରେ ପଶିଲେ ନାହିଁ, ପାର୍ଟିରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କଲେ । ପାର୍ଟିର ସମର୍ଥନ ପାଇ କଂଗ୍ରେସ କମିଟିମାନଙ୍କରେ ପ୍ରବେଶ କରିପାରିଲେ । ଅନ୍ୟାନ୍ୟ ଫ୍ରଣ୍ଟ ସଂଗଠନଗୁଡ଼ିକରେ ମଧ୍ୟ ସର୍ବେସ୍ୱ ହୋଇ ଉଠିଲେ । ଓଡ଼ିଶାରେ ଯେମିତି ଗୋଷ୍ଠୀବାଦ ଆରମ୍ଭ କଥା ଆଗରୁ ଉଲ୍ଲେଖ କରିଛି, ସେମିତି ଉଣା ଅଧିକେ ସବୁ ସ୍ଥାନରୁ ସେମାନଙ୍କ କାର୍ଯ୍ୟକଳାପ ବିରୁଦ୍ଧରେ ରିପୋର୍ଟମାନ ଆସିଲା । ୧୯୩୮ ସେପ୍ଟେମ୍ବର ମାସରେ "ସି. ଏସ. ପି ବିରୁଦ୍ଧରେ କମ୍ୟୁନିଷ୍ଟଙ୍କ ଷଡ଼ଯନ୍ତ୍ର" କ୍ଷୁଦ୍ର ପୁସ୍ତିକାଟି ପ୍ରକାଶିତ ନ ହେବା ପର୍ଯ୍ୟନ୍ତ ବିଷୟଟିକୁ କେହି ଗୁରୁତ୍ୱ ଦେଉ ନ ଥିଲେ । ଏହା ଥିଲା କମ୍ୟୁନିଷ୍ଟ ପାର୍ଟିର ୧୯୩୮ ମସିହା ମେ ୯ ତାରିଖରେ ପଠାଇଥିବା ଏକ ଗୁପ୍ତ ସର୍କୁଲାର । ସେଥିରେ କେଉଁ ପ୍ରଦେଶରେ କି ନୀତି ଅନୁସୃତ ହେବ ଏବଂ କେଉଁ ବ୍ୟକ୍ତି-ବିଶେଷଙ୍କ ପ୍ରତି କିଭଳି ମନୋଭାବ ରଖିବା ଠିକ୍ ହେବ, ଏହା ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଥିଲା । ଏହା ଫଳରେ ପାର୍ଟି ଭିତରେ ଏକ ସନ୍ଦେହର ବାତାବରଣ ସୃଷ୍ଟି ହୋଇଗଲା । କିନ୍ତୁ ଜୟପ୍ରକାଶ ନାରାୟଣଙ୍କ ଯୋଗୁ କମ୍ୟୁନିଷ୍ଟଙ୍କ କାର୍ଯ୍ୟର ନିନ୍ଦା ସୁଦ୍ଧା କରାଗଲା ନାହିଁ । ପାର୍ଟି ଭିତରେ କମ୍ୟୁନିଷ୍ଟଙ୍କୁ କାର୍ଯ୍ୟ କରିବାକୁ ସବୁ ସୁବିଧା ଦିଆଗଲା । ଦକ୍ଷିଣରେ କେରଳ, ତାମିଲନାଡୁ, ଆନ୍ଧ୍ର ଆଦିରେ ସେମାନେ କର୍ମକର୍ତ୍ତା ହେଲେ ଏବଂ ପରେ ଯେତେବେଳେ କମ୍ୟୁନିଷ୍ଟଙ୍କ ସହ ସଂପର୍କ ତୁଟାଇ ଦିଆଗଲା ସେତେବେଳେ ପ୍ରାୟ ସାରା ଦକ୍ଷିଣର କଂଗ୍ରେସ ସୋସିଆଲିଷ୍ଟ ପାର୍ଟି କମ୍ୟୁନିଷ୍ଟ ପାର୍ଟିରେ ପରିଣତ ହୋଇଗଲା । ସେଇଥିଯୋଗୁଁ ଦକ୍ଷିଣ ଅଞ୍ଚଳରେ ସୋସିଆଲିଷ୍ଟ ପାର୍ଟି ବରାବର ଦୁର୍ବଳ ହୋଇ ରହିଗଲା । ଗୋଷ୍ଠୀବାଦ ବୃଦ୍ଧି ପାଇ ବହୁସ୍ଥାନରେ ପାର୍ଟି ଭିତରେ କନ୍ଦଳ ସୃଷ୍ଟି ହେଲା । ବମ୍ବେ ଓ ଆଉ କେତେକ ସ୍ଥଳରେ ସୋଲ୍ ବାଟଲିଓ୍ୱାଲାଙ୍କ ପରି ପ୍ରସିଦ୍ଧ କର୍ମକର୍ତ୍ତାଙ୍କୁ ପାର୍ଟି ବିରୋଧୀ କାର୍ଯ୍ୟ ନିମନ୍ତେ ଦାୟୀ କରାଗଲା । ଆମ ଓଡ଼ିଶାରେ ଭଗବତୀ ପାଣିଗ୍ରାହୀଙ୍କୁ ପାର୍ଟିର ସାଧାରଣ ସଂପାଦକ କରାଯାଇଥିଲା । ନବକୃଷ୍ଣ ଚୌଧୁରୀ ଅଧିକ ପରିମାଣରେ କଂଗ୍ରେସର କାର୍ଯ୍ୟରେ ବ୍ୟସ୍ତ ରହୁଥିବାରୁ ନିଜ ଗୋଷ୍ଠୀର ସଂଖ୍ୟା ବୃଦ୍ଧି କରିବା ନିମନ୍ତେ ସେମାନଙ୍କୁ ମଉକା ମିଳିଗଲା । ଏହିସବୁ କାରଣରୁ ପାର୍ଟି ଦୁର୍ବଳ ହେବାକୁ ଲାଗିଲା । ଏହାର ପ୍ରତିବାଦ ସ୍ୱରୂପ କେନ୍ଦ୍ର କମିଟିରୁ ମିନୁ ମସାନୀ, ୟୁସୁଫ୍ ମେହେରାଲୀ, ଅଶୋକ ମେହେଟା ଓ ରାମ ମନୋହର ଲୋହିଆ ଇସ୍ତଫା ଦେଇ କମ୍ୟୁନିଷ୍ଟଙ୍କ ସହ ଥିବା ମିଳିତ ଫ୍ରଣ୍ଟ ଭାଙ୍ଗିବା ନିମନ୍ତେ ଜୋର୍ ଦେଲେ । ଆମେ ଓଡ଼ିଶାରେ ଗୌରଚନ୍ଦ୍ର ଦାସ, ଗୌରାଙ୍ଗ ଚରଣ ଦାସ, ମନମୋହନ ଚୌଧୁରୀ ଓ ମୁଁ ମଧ୍ୟ ପ୍ରାଦେଶିକ କାର୍ଯ୍ୟକାରୀ ସମିତିରୁ ଇସ୍ତଫା ଦେଇଦେଲୁ । ଅନ୍ୟାନ୍ୟ

ଯାହା ଘଟୁଥାଉ ନା କାହିଁକି, ଓଡ଼ିଶାରେ ପାର୍ଟିର କାର୍ଯ୍ୟ ପ୍ରାୟ ଅଚଳ ହୋଇଗଲା । ସନ୍ଦେହ ଓ ଅବିଶ୍ୱାସର ବାୟୁମଣ୍ଡଳ ଭିତରେ କିଛି କରିବା ଏକ ପ୍ରକାର ଅସମ୍ଭବ ଥିଲା ।

## କମ୍ୟୁନିଷ୍ଟ ପାର୍ଟିର ବହିଷ୍କାର

ଶେଷକୁ ୧୯୪୦ ମାର୍ଚ୍ଚ ମାସରେ କମ୍ୟୁନିଷ୍ଟ ପାର୍ଟି ଲୋକଙ୍କୁ ପାର୍ଟିରୁ ବହିଷ୍କାର କରି ଦିଆଗଲା । ଜେ. ପି. ସେହି ସନ୍ଧାନରେ ଓଡ଼ିଶା ଆସିଲେ । ନବବାବୁ ଏଠାରେ ପାର୍ଟିର ସଷ୍ଟା ଥିଲେ ଏବଂ ସେ କମ୍ୟୁନିଷ୍ଟ ବନ୍ଧୁମାନଙ୍କୁ ବଡ଼ ଶ୍ରଦ୍ଧା କରୁଥିଲେ । ଅନ୍ୟ ପ୍ରଦେଶ ପରି ସେ କମ୍ୟୁନିଷ୍ଟଙ୍କୁ ପାର୍ଟିରୁ ବାହାରକରିବା କାର୍ଯ୍ୟ କରିବାଲାଗି ବଡ଼ ଅନିଚ୍ଛୁକ । କମ୍ୟୁନିଷ୍ଟ ସାଥୀଙ୍କ ଭିତରୁ ଅଧିକାଂଶଙ୍କୁ ସେ ରାଜନୀତି ଭିତରକୁ ଆଣିଥିଲେ; ସେମାନେ ଅଗୋଚରରେ ଏଭଳି ଆଚରଣ କରିବା ତାଙ୍କ ପକ୍ଷରେ ବ୍ୟଥାଦାୟକ ହେଲା । ଏହା ଛଡ଼ା କମ୍ୟୁନିଷ୍ଟମାନେ ପାର୍ଟିର କାର୍ଯ୍ୟଭାର ନେଇ ଗୋଷ୍ଠୀବିବାଦ କରିବାଦ୍ୱାରା ଯେଉଁ କଂଗ୍ରେସ କର୍ମୀମାନେ ପାର୍ଟି ପ୍ରତି ଆକୃଷ୍ଟ ହେଉଥିଲେ ଏବଂ ପାର୍ଟି କାର୍ଯ୍ୟରେ ସହଯୋଗ କରୁଥିଲେ, ସେମାନେ କ୍ରମେ ଅପସରିଗଲେ । ଜୟପ୍ରକାଶ ସେତେବେଳେ ଆସି ୩ ଦିନ କାଳ ଓଡ଼ିଶାରେ ରହିଲେ, ବିଭିନ୍ନ ଲୋକଙ୍କ ସହ ବ୍ୟକ୍ତିଗତ ଭାବରେ କଥାବାର୍ତ୍ତା କଲେ । ଶେଷକୁ ନବବାବୁ ମୋତେ ଏଠାରେ ପାର୍ଟି ସଂଗଠନର ଭାର ଦେବା ନିମନ୍ତେ ତାଙ୍କୁ ପରାମର୍ଶ ଦେଲେ । ଜେ ପି. ତାହା ଆନନ୍ଦରେ ଗ୍ରହଣ କଲେ । ମାତ୍ର ମୁଁ ଏଠାରେ ଇଉନାଇଟେଡ୍ ପ୍ରେସ୍‌ର କଟକ ଶାଖାର ସମ୍ପାଦକ ହୋଇଥାଏ । ପାର୍ଟିର ସଂଗଠନ ଶାଖାସବୁ ଏକଡ଼ସେକଡ଼ ହୋଇଯାଇଥାଏ । କାଗଜପତ୍ରରେ ମୋର ନାମ ରହିଲା । କେବେ ଜେ.ପି.ଙ୍କ ପାଖରୁ କିଛି ଚିଠି ଆଦି ଆସିଲେ ମୁଁ ନବବାବୁଙ୍କୁ ପଚାରି ଉତ୍ତର ଦେଇଦେଉଥିଲି । ମାତ୍ର ବିଶେଷ କିଛି କାର୍ଯ୍ୟ ହୋଇପାରିନଥିଲା ।

କମ୍ୟୁନିଷ୍ଟ ଇଣ୍ଟରନେସନାଲର ମସ୍କୋ ବୈଠକରେ ୧୯୩୫ ମସିହାରେ ସାରା ପୃଥିବୀରେ କମ୍ୟୁନିଷ୍ଟମାନେ ଇଉନାଇଟେଡ୍ ଫ୍ରଣ୍ଟ ଗଢ଼ି କାର୍ଯ୍ୟ କରିବାର ସିଦ୍ଧାନ୍ତ ନିଆଯାଇଥିଲା । ୧୯୩୫ ରୁ ୧୯୩୯ ପର୍ଯ୍ୟନ୍ତ ଏହି ନୀତି ଅନୁସରଣ କରାଗଲା । ଆଗରୁ ଏ ବିଷୟ ଉଲ୍ଲେଖ କରିଛି—ଆଉ ଥରେ ଏ ପ୍ରସଙ୍ଗ ପୁନରାବୃତ୍ତି କରିବା ଉଚିତ ମନେକରୁଛି । କାରଣ ମୋ ନିଜ ବିଚାରରେ ଏହି ଭ୍ରମାତ୍ମକ ନୀତି ଭାରତରେ ସୋସଲିଷ୍ଟ ପାର୍ଟିର ଅଭିବୃଦ୍ଧିରେ ଘୋର ଅନ୍ତରାୟ ହୋଇଥିଲା । ଜେ. ପି. କହିଲେ—"ମିଳିତ ଫ୍ରଣ୍ଟର ଉଦ୍ଦେଶ୍ୟ ହେଉଛି ଯେଉଁସବୁ ଗ୍ରୁପ ଓ ବ୍ୟକ୍ତିବିଶେଷ ମାର୍କସ୍‌ବାଦରେ ବିଶ୍ୱାସ ରଖୁଛନ୍ତି, ସେ ସମସ୍ତଙ୍କୁ ଏକ ପାର୍ଟି ଅଧୀନକୁ ଏକତ୍ର କରି ଆଣିବା"; କିନ୍ତୁ ପାମିଦତ୍ତ ଓ ବ୍ରାଡ଼ଲେ ଯେଉଁ ନିର୍ଦ୍ଦେଶ ପଠାଇଥିଲେ, ସେଥିରେ ଲେଖାଥିଲା, କମ୍ୟୁନିଷ୍ଟଙ୍କର କଂଗ୍ରେସ ଓ ଜାତୀୟତାବାଦୀ ଶକ୍ତି ସହ ମିଳନ ଘଟିବାରେ ସି. ଏସ୍. ପି. ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ରୂପେ କାର୍ଯ୍ୟ କରିବ । ତେଣୁ ସେଥିରେ ପଶି କାର୍ଯ୍ୟକର୍ମ ଇତ୍ୟାଦିରେ ମୁଖ୍ୟଭାଗ ନେବା ଉଚିତ । ଦୁଇଟି ଦୃଷ୍ଟିଭଙ୍ଗୀ ସମ୍ପୂର୍ଣ୍ଣ ଅଲଗା । କମ୍ୟୁନିଷ୍ଟ ଓ ସୋସଲିଷ୍ଟ କମ୍ୟୁନିଷ୍ଟମାନେ ଦୁର୍ବଳ ହେବାବେଳେ ଏପରି

ଅନ୍ୟ ପାର୍ଟି ସହ ସହଯୋଗ ବିଷୟ ଉଠାନ୍ତି ଏବଂ ମିଳିତ ଫ୍ରଣ୍ଟ କରି ଅନ୍ୟ ଦଳକୁ ଦୁର୍ବଳ କରନ୍ତି ନିଜକୁ ଶକ୍ତିଶାଳୀ କରନ୍ତି । କାରଣ କମ୍ୟୁନିଷ୍ଟ ପାର୍ଟି ଗଣତନ୍ତ୍ରରେ ବିଶ୍ୱାସ ରଖେ ନାହିଁ କିମ୍ବା ଗଣତାନ୍ତ୍ରିକ ପନ୍ଥାରେ କ୍ଷମତା ହାସଲ ସମ୍ଭବ ବୋଲି ସ୍ୱୀକାର କରେ ନାହିଁ । କାରଣ ସେମାନେ ପାର୍ଟିରେ ଅଧିନାୟକତ୍ୱ ସ୍ଥାପନା କରିବାକୁ ଚାହାଁନ୍ତି, ତାହା ଗଣତାନ୍ତ୍ରିକ ପନ୍ଥାରେ ହୋଇପାରିବ ନାହିଁ । ତାହାଛଡ଼ା ଆମ ଦେଶରେ ଆଉ ଏକ ସ୍ୱତନ୍ତ୍ର ପରିସ୍ଥିତି । ଆମର ଥିଲା ମୁଖ୍ୟତଃ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଜାତୀୟବାଦୀ ସଂଗ୍ରାମ; ଏହି ସଂଗ୍ରାମକୁ ମୂଳ ବୋଲି ଧରିଥିବାରୁ ସୋସାଲିଷ୍ଟ ପାର୍ଟି କଂଗ୍ରେସର ଏକ ଅଙ୍ଗରୂପେ ରହିବା ନିମନ୍ତେ ଏହାର ନାମକରଣ କଂଗ୍ରେସ ସୋସଲିଷ୍ଟ ପାର୍ଟି ରଖିଥିଲା—କୌଣସି ଆନ୍ତର୍ଜାତିକ ସ୍ୱାର୍ଥ କିମ୍ବା ଆନୁଗତ୍ୟ ଏହାକୁ ଅନ୍ୟଥା କରିପାରିଲା ନାହିଁ । ମାତ୍ର କମ୍ୟୁନିଷ୍ଟ ପାର୍ଟି ଆନ୍ତର୍ଜାତୀୟ କମ୍ୟୁନିଷ୍ଟ ପାର୍ଟିର ଶାଖା ହୋଇଥିବାରୁ କମ୍ୟୁନିଷ୍ଟ ଆନ୍ତର୍ଜାତିକ ସ୍ୱାର୍ଥକୁ ଦୃଷ୍ଟିପଥରେ ରଖି ତାଙ୍କର ନୀତି ଓ କାର୍ଯ୍ୟକ୍ରମ ଅନୁସରଣ କରାଯାଉଥିଲା ।

୧୯୩୯ ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଘୋଷଣା ପରେ ଏହାର ନିର୍ଦ୍ଦିଷ୍ଟ ପ୍ରମାଣ ମିଳିଗଲା । ଏ ଯୁଦ୍ଧ ଘୋଷଣାର ପ୍ରାଥମିକ ଅବସ୍ଥାରେ ରୁଷ ବ୍ରିଟିଶବିରୋଧୀ ଥିଲା, ଜର୍ମାନୀର ହିଟଲର ଫାସିଷ୍ଟ ଶକ୍ତି ସହ ସେମାନଙ୍କର ଅନାକ୍ରମଣ ଚୁକ୍ତି ହୋଇଯାଇଥିଲା । ତେଣୁ କମ୍ୟୁନିଷ୍ଟମାନେ ଏହାକୁ ଏକ ସାମ୍ରାଜ୍ୟବାଦୀ ଯୁଦ୍ଧ ବୋଲି ଆଖ୍ୟା ଦେଉଥିଲେ । ଏକ ଫାସିଷ୍ଟ ଶକ୍ତି ବିରୁଦ୍ଧରେ ଲଢ଼ାଇ ଚାଲୁଥିବାବେଳେ ଜାତୀୟ କଂଗ୍ରେସ ହଠାତ୍ ବ୍ରିଟିଶ ସରକାର ବିରୁଦ୍ଧରେ ଗଣସଂଗ୍ରାମ ଆରମ୍ଭ ନକରି ସ୍ୱାଧୀନତା ଘୋଷଣା ଦାବୀ କଲା ଏବଂ ଯୁଦ୍ଧ ପ୍ରତି ଅସହଯୋଗ କରିବା ନିମନ୍ତେ ଦେଶରେ ଏକ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ ହେଲା । ଏଥିଲାଗି କମ୍ୟୁନିଷ୍ଟ ପାର୍ଟି ମହାତ୍ମା ଗାନ୍ଧୀ ଓ ଜାତୀୟ କଂଗ୍ରେସର କଟୁ ସମାଲୋଚନା କରିଥିଲା । ମାତ୍ର ୧୯୪୨ ରେ ଯେତେବେଳେ ଭାରତ ଛାଡ଼ ଆନ୍ଦୋଳନ ଆରମ୍ଭ ହୋଇଗଲା, ସେତେବେଳକୁ ହିଟଲର ରୁଷ ବିରୁଦ୍ଧରେ ଆକ୍ରମଣ କରିବାହେତୁ ବ୍ରିଟିଶ ସରକାର ସହିତ ରୁଷର ବନ୍ଧୁତା ଜମିଲା ଏବଂ ଏହି ଯୁଦ୍ଧକୁ "ଜନ ଯୁଦ୍ଧ" ( People's War ) ବୋଲି ଆଖ୍ୟା ଦେଲା । ଭାରତର କମ୍ୟୁନିଷ୍ଟମାନେ ଆମର ଜାତୀୟ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ "ଭାରତ ଛାଡ଼" ଆନ୍ଦୋଳନର ବିରୋଧ କଲେ ଏବଂ ବ୍ରିଟିଶ ସରକାର ସହିତ ସହଯୋଗ କଲେ । ମହାତ୍ମା ଗାନ୍ଧୀ ଓ ନେତାଜୀ ସୁଭାଷ ବୋଷ ଆଦିଙ୍କୁ ସେମାନେ "ଫାସିଷ୍ଟ ଦଲାଲ" ବୋଲି କହିବାରେ କୁଣ୍ଠା କରିନଥିଲେ । ଇତିହାସ ପୃଷ୍ଠା ଅଧ୍ୟୟନ କଲେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିକୁ କେବେହେଲେ ଜାତୀୟ ଶକ୍ତି ରୂପେ ବା ଜାତୀୟ ସ୍ୱାର୍ଥ ସେମାନଙ୍କର ପରମ ସ୍ୱାର୍ଥ ବୋଲି କୁହାଯାଇ ପାରିବ ନାହିଁ । ଦେଶର ପରିସ୍ଥିତି ବଦଳିଛି, କମ୍ୟୁନିଷ୍ଟଙ୍କ ଭିତରେ ବହୁ ବିଭାଜନ ହୋଇଯାଇଛି । ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଗଣତାନ୍ତ୍ରିକ ନିର୍ବାଚନରେ ଭାଗ ନେଇ ପାର୍ଲିଆମେଣ୍ଟ ଓ ଆସେମ୍ବ୍ଲିମାନଙ୍କରେ ସ୍ଥାନ ଦଖଲ କରିଛି — କେତେକ ରାଜ୍ୟରେ ସରକାର ଗଠନ କରିଛି ବା ଅନ୍ୟମାନଙ୍କ ସହ ମିଶି ସରକାରରେ

ଅଂଶୀଦାର ହୋଇ କାର୍ଯ୍ୟ କରୁଛି । କମ୍ୟୁନିଷ୍ଟ ପାର୍ଟିରୁ ଭାଙ୍ଗି ଯାଇ ମାର୍କସବାଦୀ କମ୍ୟୁନିଷ୍ଟ ପାର୍ଟି, ନାକ୍ସାଲବାଦୀ ଏବଂ ଏହିପରି ଯେତେ ପାର୍ଟି ହୋଇଛି ସେମାନଙ୍କର ମତଗତରେ ହୁଏତ ସାମାନ୍ୟ ପରିବର୍ତ୍ତନ ଲକ୍ଷିତ ହୋଇଛି, ମାତ୍ର ଭାରତୀୟ କମ୍ୟୁନିଷ୍ଟ ପାର୍ଟି (C.P.I.) ପୂର୍ବପରି ମୋସ୍କୋ ଏବଂ ରୁଷର ଅନୁଗତ ହୋଇ ରହିଛି । ଏହାର ନୀତିରେ କାଳକୁ ଅନାଇ କିଛି ପରିବର୍ତ୍ତନ ହୋଇଥାଇପାରେ, ମାତ୍ର ରୁଷ ପ୍ରତି ଆନୁଗତ୍ୟ ଅକ୍ଷୁଣ୍ଣ ରହିଛି ଏବଂ କମିଣ୍ଟର୍ନ ଭାଙ୍ଗିଗଲା ପରେ ଏମାନେ ମୁଖ୍ୟତଃ ରୁଷ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ପରିଚାଳିତ ହେଉଛନ୍ତି ।

ଏହିସବୁ କାରଣରୁ ୧୯୦୦ ମସିହାରୁ କମ୍ୟୁନିଷ୍ଟ ପାର୍ଟି ସହ କଂଗ୍ରେସ-ସୋସଲିଷ୍ଟ ପାର୍ଟିର ସମସ୍ତ ସମ୍ପର୍କ ଛିନ୍ନ ହୋଇଯାଇଥିଲା । ଶେଷକୁ ବାମପନ୍ଥୀ ଏକତା ବିଷୟରେ ଜୟପ୍ରକାଶ ନାରାୟଣ ଏକ ଗ୍ରେଟ ପୁସ୍ତିକାରେ ଲେଖିଲେ—ଆମର ଅତୀତର ଅଭିଜ୍ଞତା ହେଉଛି, କଂଗ୍ରେସ ସୋସଲିଷ୍ଟ ପାର୍ଟି ଆଗ୍ରହ ସହକାରେ ବାମପନ୍ଥୀ ଓ ସୋସଲିଷ୍ଟ ଗୋଷ୍ଠୀଙ୍କ ପାଇଁ ନିଜର ଦ୍ୱାର ଉନ୍ମୁକ୍ତ ରଖିଲା ଏବଂ ସେମାନଙ୍କ ପ୍ରତି ବନ୍ଧୁତ୍ୱପୂର୍ଣ୍ଣ ସହଯୋଗ କାମନା କଲା, କିନ୍ତୁ ସେମାନେ ଏହାକୁ ତାଙ୍କ ନିଜର ପ୍ରଭାବ ବିସ୍ତାର କରିବା, ସଭ୍ୟ ସଂଗ୍ରହ କରିବା, ଗୋଷ୍ଠୀଗଠନ, "ଭିତରେ ରହି ମାରିବା" ଆଦି କାର୍ଯ୍ୟ ଓ ଅନ୍ୟସବୁ କୌଶଳ ପ୍ରୟୋଗର ଏକ ପରମ ସୁଯୋଗ ବୋଲି ବିଚାରିଲେ । ଏହାହିଁ ସେମାନେ ପୃଥିବୀର ସବୁ ଦେଶରେ ବାମପନ୍ଥୀ ଏକତା ନାମରେ କରିଛନ୍ତି । ମୋର ତଥାକଥିତ ବାମପନ୍ଥୀ ଏକତାରେ ବିଶ୍ୱାସ ନାହିଁ ଏବଂ ମୁଁ ଆଉ ସେଭଳି ପରୀକ୍ଷା ଭିତରେ ପଶିବାକୁ ଚାହେଁନା ।" ଜୟପ୍ରକାଶ ଏପରି ନିର୍ଦ୍ଦିଷ୍ଟ ଘୋଷଣା କଲା ପରେ ସୋସଲିଷ୍ଟ ପାର୍ଟି ଭିତରେ ଯେଉଁ ଆଭ୍ୟନ୍ତରୀଣ କଳହ ଓ ମତଭେଦ ଏଥିଯୋଗୁଁ ଉପୁଜିଥିଲା, ତାହା ଦୂର ହୋଇଗଲା ।

ଓଡ଼ିଶାରେ ମତେ ସୋସଲିଷ୍ଟ ପାର୍ଟିର କାର୍ଯ୍ୟଭାର ଅର୍ପଣ କରାଯାଇଥିଲେ ସୁଦ୍ଧା, ଏବଂ ନିଖିଳ ଭାରତ ସ୍ତରରେ କମ୍ୟୁନିଷ୍ଟ ପାର୍ଟିଠାରୁ ସମ୍ପର୍କ ଛିନ୍ନ ହୋଇ ଯାଇଥିଲେ ମଧ୍ୟ, ଓଡ଼ିଶାରେ ଯେତେବେଳେ ଭଗବତୀ ପାଣିଗ୍ରାହୀ ଓ ଅନ୍ୟ କେତେଜଣଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର ମକଦ୍ଦମା କରାଗଲା, ମକଦ୍ଦମା ଲଢ଼ିବାଲାଗି ତଦ୍‌ବିରରେ ଆମେ ସମସ୍ତେ ଲାଗିଲୁ । ମୁଁ ଓ ଭାରତ ସେବକ ସମାଜର ଶ୍ରୀ ଶ୍ୟାମସୁନ୍ଦର ମିଶ୍ର ଏଥିଲାଗି ଘର ଘର ବୁଲି ଚାନ୍ଦା ସଂଗ୍ରହ କରିଥିଲୁ । କିନ୍ତୁ ୧୯୪୨ ମସିହାରେ ମୁଁ ଯେତେବେଳେ ଗୋପନରେ ପୁଲିସର ଦୃଷ୍ଟିର ଅନ୍ତରାଳରେ ରହି ଓଡ଼ିଶାରେ ଅଗଷ୍ଟ ବିପ୍ଲବର ସଂଗଠନ କଲି ଏବଂ ବ୍ରିଟିଶ ସରକାର ମୋର ଗିରଫ ଲାଗି ପୁରସ୍କାର ଘୋଷଣାକଲା, ସେଥିରେ କମ୍ୟୁନିଷ୍ଟ ପାର୍ଟିର ଲୋକେ ପୁଲିସକୁ ସନ୍ଧାନ ଦେଲେ ।

## ସୋସଲିଷ୍ଟ କମ୍ୟୁନିଷ୍ଟ ବିବାଦ

ସୋସଲିଷ୍ଟ କମ୍ୟୁନିଷ୍ଟ ପ୍ରତିଯୋଗିତା ବା ବିବାଦ କିଛି ନୂଆ ନୁହେଁ । ପୃଥିବୀରେ ସର୍ବତ୍ର ହୋଇଛି ଏବଂ ଏବେବି ରହିଛି । ଭାରତବର୍ଷରେ ଏ ବିବାଦ କିନ୍ତୁ ଅଦ୍ଭୁତ ପ୍ରକାରର । ଆଗରୁ

କହିଛନ୍ତି କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ମଧ୍ୟ ମାର୍କସବାଦରେ ବିଶ୍ୱାସ କରୁଥିଲା ଏବଂ ମାର୍କସ ପନ୍ଥାରେ ବିଶ୍ୱାସ କରୁଥିବା ସବୁ ସୋସିଆଲିଷ୍ଟ ଓ ବ୍ୟକ୍ତିବିଶେଷଙ୍କୁ ଏକାଠି କରିବାଲାଗି ଐକାନ୍ତିକ ଉଦ୍ୟମ କରୁଥିଲା । ଭାରତର କେତେକ ସୋସିଆଲିଷ୍ଟ ଇଉରୋପର ସୋସିଆଲିଷ୍ଟଙ୍କ ପରି ବିପ୍ଳବର ବିରୋଧୀ ନ ଥିଲେ ଏବଂ ଗାନ୍ଧିଜୀଙ୍କ ସକ୍ରିୟ ଅହିଂସାରେ ବିଶ୍ୱାସ କରୁଥିଲେ ସୁଦ୍ଧା ହିଂସାକୁ ପୂରାପୂରି ପରିତ୍ୟାଗ କରି କେବଳ ବୈଧାନିକ ଓ ସମ୍ବିଧାନସମ୍ମତ ପନ୍ଥାର ପରିପୋଷକ ନ ଥିଲେ । ୧୯୪୨ ଭାରତ ଛାଡ଼ ଆନ୍ଦୋଳନକୁ ବାସ୍ତବିକ ଏକ ବୈପ୍ଳବିକ ରୂପ ସୋସିଆଲିଷ୍ଟମାନେହିଁ ଦେଇଥିଲେ । ଶ୍ରେଣୀ ସଂଘର୍ଷର କେବଳ ପକ୍ଷପାତି ନଥିଲେ, ଏ ଦେଶରେ ସଂଗଠିତ କୃଷକ ଆନ୍ଦୋଳନକୁ ସୋସିଆଲିଷ୍ଟମାନେହିଁ ଶ୍ରେଣୀସଂଘର୍ଷ ଭିତ୍ତିରେ ନିଖିଳ ଭାରତ ସ୍ତରରେ ବ୍ୟାପକ ରୂପ ଦେଇଥିଲେ । ତେଣୁ ସିଦ୍ଧାନ୍ତ ଦୃଷ୍ଟିରୁ କମ୍ୟୁନିଷ୍ଟଙ୍କ ପକ୍ଷରେ ସୋସିଆଲିଷ୍ଟଙ୍କ ବିରୁଦ୍ଧରେ କୌଣସି ବଳିଷ୍ଠ ଯୁକ୍ତି ନଥିଲା । ପ୍ରକୃତ ବିବାଦ ହେଲା ଜାତୀୟତାବାଦକୁ ନେଇ । ସୋସିଆଲିଷ୍ଟ ପାର୍ଟି ଜାତୀୟ ସ୍ୱାଧୀନତା ଓ ଜାତୀୟ ମର୍ଯ୍ୟାଦା ହାସଲକୁ ମୂଳମନ୍ତ୍ର କରିବାରୁ ଏବଂ ଜାତୀୟବାଦୀ ଶକ୍ତିକୁ ଅଗ୍ରଗାମୀ ଭୂମିକା ଦେବାକୁ ଉଦ୍ୟମ କରିବାରୁ କମ୍ୟୁନିଷ୍ଟ ପାର୍ଟିର ଅଭ୍ୟୁଦୟ ଓ ପ୍ରଭାବ ବାଧାପ୍ରାପ୍ତ ହେଲା । ତେଣୁ କମ୍ୟୁନିଷ୍ଟମାନେ ସୋସିଆଲିଷ୍ଟଙ୍କୁ ପରମ ଶତ୍ରୁ ବୋଲି ଜ୍ଞାନ କଲେ । ଦେଶ ବିଭାଜନ କରିବାର ଯେଉଁ ଷଡ଼ଯନ୍ତ୍ର ବ୍ରିଟିଶ ସରକାରର ପ୍ରରୋଚନାରେ ଏମ.ଏ. ଜିନ୍ନାଙ୍କ ନେତୃତ୍ୱରେ ଏ ଦେଶରେ କରାଗଲା, କମ୍ୟୁନିଷ୍ଟ ପାର୍ଟି ସେଥିରେ ପୃଷ୍ଠ ସମର୍ଥନ ଜଣାଇଲା । ଭାରତ ଓ ପାକିସ୍ଥାନ ବିଭାଜନରେ ରାଜଗୋପାଳାଚାରୀ ଯେଉଁ ଆଭିମୁଖ୍ୟ ନେଲେ, କମ୍ୟୁନିଷ୍ଟ ପାର୍ଟି ତଦନୁରୂପ ଭୂମିକା ନେଇଥିଲା, ଯଦିଓ ଦୁହିଙ୍କ ରାଜନୈତିକ ଦୃଷ୍ଟିକୋଣ ଭିନ୍ନ ଏବଂ ଦୁହେଁ ପରସ୍ପରର ଉତ୍କଟ ବିରୋଧୀ । ରାଜଗୋପାଳାଚାରୀ ପରି ଜୀବନରେ କମ୍ୟୁନିଷ୍ଟହିଁ ଦେଶର ପହିଲା ନମ୍ବର ଶତ୍ରୁ ବୋଲି ଘୋଷଣା କଲେ ଏବଂ କଂଗ୍ରେସ ଦଳ କମ୍ୟୁନିଜମ୍‌କୁ ପ୍ରୋତ୍ସାହନ ଦେଉଛି ବୋଲି ଅଭିଯୋଗ କରି "ସ୍ୱତନ୍ତ୍ର ଦଳ" ନାମରେ ଏକ ଗଣତାନ୍ତ୍ରିକ ବିରୋଧୀ ଦଳର ସ୍ଥାପନା କରିଥିଲେ ।

୧୯୩୬ ରୁ ୧୯୪୭ ପର୍ଯ୍ୟନ୍ତ ସୋସିଆଲିଷ୍ଟ ଆନ୍ଦୋଳନର ଗତି ପ୍ରଖର ହୋଇପାରିଲା ନାହିଁ । ରାଜନୀତିକ ଘଟଣାବଳୀ ସେହିଭଳି ପରିସ୍ଥିତି ସୃଷ୍ଟି କଲା । ସାରା ଭାରତରେ ୧୯୩୫ ଭାରତ ଶାସନ ବିଧାନ ଅନୁସାରେ ସୀମିତ ଭୋଟାଧିକାର ଥାଇ ପ୍ରାଦେଶିକ ବ୍ୟବସ୍ଥା-ସଭାଗୁଡ଼ିକର ଯେଉଁ ନିର୍ବାଚନ ହେଲା, ତାହା ଥିଲା ବ୍ରିଟିଶ ସାମ୍ରାଜ୍ୟବାଦ ଶକ୍ତି ବିରୁଦ୍ଧରେ ଏବଂ କଂଗ୍ରେସର ଜାତୀୟ ଆନ୍ଦୋଳନ ସପକ୍ଷରେ କେତେ ଜନମତ ରହିଛି ତାହାର ଏକ ପରୀକ୍ଷା କହିଲେ ଚଳେ । କଂଗ୍ରେସ ଭିତରେ ଯେଉଁ ସୋସିଆଲିଷ୍ଟମାନେ ନିଜ ନିଜ ପ୍ରଦେଶରେ କଂଗ୍ରେସ କମିଟିକୁ ପ୍ରଭାବିତ କରିପାରିଥିଲେ, ସେମାନଙ୍କ ଭିତରୁ କେତେକ କଂଗ୍ରେସ ପ୍ରାର୍ଥୀରୂପେ ମନୋନୀତ ହେଲେ । ଭାରତ ଶାସନବିଧାନକୁ ଭିତରୁ ଭାଙ୍ଗିବାହିଁ କଂଗ୍ରେସ ନିର୍ବାଚନ ଇସ୍ତାହାରର ଉଦ୍ଦେଶ୍ୟ ବୋଲି ଘୋଷିତ ହେଲା । ୧୯୩୪ ରେ ପ୍ରଥମ ସୋସିଆଲିଷ୍ଟ ସମାବେଶରେ ସେତେବେଳର କେନ୍ଦ୍ର ବ୍ୟବସ୍ଥାସଭା ନିର୍ବାଚନର ବିରୋଧ

କରାଯାଇଥିଲା; କାରଣ ସେତେବେଳେ ବିଚାର କରାଗଲା ଯେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ପ୍ରତ୍ୟକ୍ଷ ସଂଗ୍ରାମ ଚାଲୁଥିବାବେଳେ ଏପରି ବ୍ୟବସ୍ଥାସଭା-ପ୍ରବେଶ କାର୍ଯ୍ୟକ୍ରମ ତୀବ୍ର ବିରୋଧୀ ମନୋଭାବକୁ ଊଣା କରିଦେବ। କିନ୍ତୁ ଏତେବେଳକୁ ପରିସ୍ଥିତି ଭିନ୍ନ ଥିଲା। ପ୍ରତ୍ୟକ୍ଷ ସଂଗ୍ରାମ ଅର୍ଥାତ୍ ସତ୍ୟାଗ୍ରହ ସ୍ଥଗିତ ରଖାଯାଇଥାଏ। ଗାନ୍ଧିଜୀ ତାଙ୍କର ୧୧ ଦଫା ରଚନାତ୍ମକ କାର୍ଯ୍ୟ ଉପରେ ଜୋର୍ ଦେଉଥାନ୍ତି ଏବଂ ବମ୍ବେ କଂଗ୍ରେସ ଅଧିବେଶନରେ ନିଖିଳ ଭାରତ ଚରଖା ସଂଘ ସାଙ୍ଗକୁ ଅଖିଳ ଭାରତ ଗ୍ରାମୋଦ୍ୟୋଗ ସଂଘ ଓ ହିନ୍ଦୁସ୍ଥାନୀ ତାଲିମ୍ ସଂଘ ସୃଷ୍ଟି କରାଯାଇ ସେ ଦିଗରେ କାର୍ଯ୍ୟକୁ ତ୍ୱରାନ୍ୱିତ କରିବାର ପ୍ରଯତ୍ନ ହେଲା। ତେଣୁ କଂଗ୍ରେସ ଭିତରେ ରାଜନୀତିକ ଦିଗଟିକୁ ଶକ୍ତିଶାଳୀ କରିବାର ଆବଶ୍ୟକତା ପଡ଼ିଲା। ବାହାରେ କୃଷକ, ଛାତ୍ର ଓ ଶ୍ରମିକ ଆନ୍ଦୋଳନ ସହ କଂଗ୍ରେସ ରାଜନୀତିକ କାର୍ଯ୍ୟରେ ତତ୍ପର ହେବା ନିମନ୍ତେ ସ୍ଥିର କରାଗଲା।

## ଭୂସଂସ୍କାର ଦିଗରେ ଅଗ୍ରଗତି

୧୯୩୮ରେ ସି. ଏସ୍. ପି.ର ଲାହୋର ସମ୍ମିଳନୀରେ ସ୍ଥିର କରାଗଲା ଯେ କଂଗ୍ରେସ ମନ୍ତ୍ରୀମଣ୍ଡଳକୁ ଅଡ଼ୁଆରେ ପକାଇବା ବା ସେମାନଙ୍କ ଲାଗି କୌଣସି ଅସୁବିଧା ସୃଷ୍ଟି କରିବା ଭଳି ପରିସ୍ଥିତି ସୃଷ୍ଟି କରାଯିବ ନାହିଁ—କଂଗ୍ରେସ ନିର୍ବାଚନ ଇସ୍ତାହାରକୁ କାର୍ଯ୍ୟକାରୀ କରିବାରେ ସାହାଯ୍ୟ କରାଯିବ। ଏପରି ନୀତି ମୂଳରେ ବୋଧହୁଏ ଏଥିଭିତରେ ଜବାହାରଲାଲ ନେହରୁଙ୍କ ସଭାପତିତ୍ୱରେ ଯେଉଁସବୁ ନୂତନ ପରିବର୍ତ୍ତନ ଦେଖା ଦେଇଥିଲା ତାହାର ସୁଯୋଗ ନେବା ନିମନ୍ତେ ସୋସଲିଷ୍ଟମାନେ ଚେଷ୍ଟିତ ହେଲେ। ଜବାହାରଲାଲ ନେହରୁ, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଜୟପ୍ରକାଶ ନାରାୟଣ ଓ ଅଚ୍ୟୁତ ପଟ୍ଟବର୍ଦ୍ଧନଙ୍କୁ କଂଗ୍ରେସ କାର୍ଯ୍ୟକାରୀ ସମିତିର ସଦସ୍ୟ ରୂପେ ମନୋନୀତ କଲେ ଏବଂ ଏକ ଗଣ-ସଂଯୋଗ କମିଟି ଗଠନ କରାଯାଇ କୃଷକ, ଶ୍ରମିକ ଓ ଅନ୍ୟ ଶ୍ରେଣୀମାନଙ୍କ ସହ ଘନିଷ୍ଠ ସମ୍ପର୍କ ସ୍ଥାପନ କରିବାର ପରିକଳ୍ପନା କରାଗଲା। ତାହାଛଡ଼ା ଏକ ବ୍ୟାପକ ଭୂସଂସ୍କାର ପ୍ରୋଗ୍ରାମ ୧୯୩୭ ରେ ଫୈଜପୁର କଂଗ୍ରେସ ଅଧିବେଶନରେ ଗୃହୀତ ହୋଇଥିଲା। ଏହି କମିଟିର ଚେୟାରମ୍ୟାନ ଥିଲେ ପ୍ରସିଦ୍ଧ ଗାନ୍ଧୀ ଅର୍ଥନୀତିଜ୍ଞ ଜେ. ସି. କୁମାରପ୍ପା। ଏଥିର ଏକ ବିଶେଷ ସୁପାରିଶ ଥିଲା ଯେ କୃଷି ପ୍ରକ୍ରିୟାରେ ବ୍ୟକ୍ତିଗତ ଭାବରେ କୌଣସି ନା କୌଣସି ପ୍ରକାରେ ଅଂଶ ଗ୍ରହଣ କରୁଥିବା ଲୋକଙ୍କୁହିଁ ଭୂମିର ମାଲିକାନା ସ୍ୱତ୍ୱ ମିଳିବା ଉଚିତ। ଏହା ଏକ ବୈପ୍ଳବିକ ପଦକ୍ଷେପ। ସ୍ୱାଧୀନତା ପ୍ରାପ୍ତିର ୨୪ ବର୍ଷ ପରେ ବି ଭୂମି ଉପରେ ବଡ଼ ଜମି ମାଲିକଙ୍କର କର୍ତ୍ତୃତ୍ୱ ରହିଛି—Tiller of the soil ଅର୍ଥାତ୍ ଚାଷ କରୁଥିବା ଲୋକ ହାତକୁ ଜମି ଯିବା ସ୍ୱପ୍ନ ହୋଇ ରହିଛି। କଂଗ୍ରେସ ତ ବରାବର ଏକ୍ରପ୍ରକାର ନିରବଚ୍ଛିନ୍ନ ଭାବରେ ଦେଶର ଶାସନ କରୁଛି; ଅନ୍ୟ ପାର୍ଟିମାନେ କ୍ଷଣକାଳ ଲାଗି ଶାସନ ଗାଦିରେ ବସିଥିଲେ ମଧ୍ୟ ଭୂସଂସ୍କାର ବିଷୟରେ

ଏହି ପ୍ରାଥମିକ ନୀତିଟିକୁ ମୂଳ କରି ଭୂସଂସ୍କାର ଆଇନ ପ୍ରଣୟନ ବା କାର୍ଯ୍ୟକାରୀ ହୋଇ-ପାରିଲା ନାହିଁ । ପଞ୍ଚବାର୍ଷିକ ଯୋଜନା ଓ ଅନ୍ୟାନ୍ୟ ଅର୍ଥନୀତିକ ପ୍ରୋଗ୍ରାମରେ ଏହାକୁ ଅଗ୍ରାଧିକାର ଦେବା କଥା ସ୍ୱୀକାର କରାଯାଉଛି, ମାତ୍ର କାର୍ଯ୍ୟରେ ହେଉନାହିଁ । ମୋର ଏ ବିଷୟରେ ନିର୍ଦ୍ଦିଷ୍ଟ ମତ ହେଉଛି ଯେ, ସବୁ ରାଜନୀତିକ ଦଳ ଏବଂ ଅମଲାତନ୍ତ୍ର ଭିତରେ ନ୍ୟସ୍ତସ୍ୱାର୍ଥ ଭୂମ୍ୟଧିକାରୀମାନଙ୍କର ଅଖଣ୍ଡ ପ୍ରଭାବ ରହିଛି । ରାଜନୀତିକ ଦଳଗୁଡ଼ିକ ସେମାନଙ୍କ ସମର୍ଥନ ଉପରେ ବହୁପରିମାଣରେ ନିର୍ଭର କରୁଛନ୍ତି । ତେଣୁ ସେମାନଙ୍କ ସ୍ୱାର୍ଥରେ ଆଞ୍ଚ ଲଗିଲାପରି ଆମୂଳ ଭୂବ୍ୟବସ୍ଥାର ପରିବର୍ତ୍ତନର କେହି ପକ୍ଷପାତୀ ନୁହନ୍ତି । ବର୍ତ୍ତମାନର ଆର୍ଥନୀତିକ ବ୍ୟବସ୍ଥା ଥିବା ପର୍ଯ୍ୟନ୍ତ ଏହା କେବେହେ ହୋଇପାରିବ ନାହିଁ । କିନ୍ତୁ ଶ୍ରେଷ୍ଠ ରୂପରେ କୌଣସି ରାଜନୀତିକ ଦଳ ଏ ଦିଗ ପ୍ରତି ଗୁରୁତ୍ୱ ଦେଉନାହାନ୍ତି । ଏପରିକି କମ୍ୟୁନିଷ୍ଟ ପାର୍ଟିମାନେ ଯେଉଁ କୃଷକ ସଂଗଠନ କରୁଛନ୍ତି, ତହିଁରେ ଅନ୍ୟ ପ୍ରାସଙ୍ଗିକ ଦାବୀ କରାଯାଉଛି ଯେ, ଏ ମୌଳିକ ଦାବୀ ଲାଗି ଏକ ସଂଘର୍ଷମୂଳକ ପନ୍ଥା ଧରିବାକୁ କେହି ପ୍ରସ୍ତୁତ ନୁହନ୍ତି । ଶତକଡ଼ା ୮୫ ଲୋକ ଗ୍ରାମରେ ବାସ କରୁଛନ୍ତି ଏବଂ କୃଷି ଉପରେ ସେମାନେ ସମ୍ପୂର୍ଣ୍ଣରୂପେ ନିର୍ଭରଶୀଳ । ଦରିଦ୍ର ଲୋକେ ଏବେ ସୁଦ୍ଧା ଭୂମିପତିଙ୍କ ଉପରେ ନିର୍ଭରଶୀଳ ଏବଂ ସେମାନେ ଗ୍ରାମର ଅର୍ଥନୀତି ଓ ରାଜନୀତିକୁ ନିଜ ଆୟତ୍ତରେ ରଖିଛନ୍ତି । ବିନୋବାବାବେଙ୍କ ଭୂଦାନ ଆନ୍ଦୋଳନ ଏପରି ମୁଣ୍ଡଭାରି ଭୂବ୍ୟବସ୍ଥାକୁ କ୍ରାନ୍ତିଦ୍ୱାରା ଭାଙ୍ଗିଦେବ ବୋଲି ଏକଦା ଆଶା କରାଯାଉଥିଲା; ମାତ୍ର ସେ ଆନ୍ଦୋଳନ ବ୍ୟର୍ଥ ହୋଇଛି । ତାର ସ୍ରଷ୍ଟା ବିନୋବାବାବେ ଏକ ଗାନ୍ଧୀପନ୍ଥୀ କ୍ରାନ୍ତିକାରୀ ହେବା ପରିବର୍ତ୍ତେ ପ୍ରତିଷ୍ଠିତ ବ୍ୟବସ୍ଥା ଓ ଶାସନର ପ୍ରଧାନ ସମର୍ଥକ ହୋଇ ରହିଛନ୍ତି ।

ଯାହାହେଉ ସି. ଏସ୍. ପି. ଆଶା କରିଥିଲା ସହଯୋଗମୂଳକ ମନୋବୃତ୍ତି ନେଇ କଂଗ୍ରେସ ମନ୍ତ୍ରୀମଣ୍ଡଳ ସହ ସହଯୋଗ ଏବଂ ଏ କାର୍ଯ୍ୟଲାଗି ତାଙ୍କୁ ମଜବୁତ କରିବା ଫଳରେ ହୁଏତ ସାମାଜିକ, ଆର୍ଥନୀତିକ ପରିବର୍ତ୍ତନ ଲାଗି କିଛି ବାଟ ଫିଟିବ । ମାତ୍ର ଏ ଉଦ୍ୟମରେ ବିପରୀତ ଫଳ ହେଲା । ସ୍ଥାନେ ସ୍ଥାନେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଓ ସି.ଏସ.ପି.ର ଗଠିତ କୃଷକ ଆନ୍ଦୋଳନ ସହ ସଂଘର୍ଷ ଜାତ ହେଲା । ବିହାର ପ୍ରଦେଶରେ ବିଶେଷଭାବରେ ଏହି ସଂଘର୍ଷ ଅତି ତୀବ୍ର ହେଲା ଏବଂ ଡକ୍ଟର ରାଜେନ୍ଦ୍ର ପ୍ରସାଦ ଇତ୍ୟାଦି ଜମିଦାରପକ୍ଷଙ୍କୁ ସମର୍ଥନ କଲେ ଏବଂ ସ୍ୱାମୀ ସହଜାନନ୍ଦ ସରସ୍ୱତୀ ଓ ଜୟପ୍ରକାଶ ନାରାୟଣ ପ୍ରକାଶ୍ୟ ବିରୋଧୀ ଭୂମିକାରେ ଅବତୀର୍ଣ୍ଣ ହେଲେ । ଏପରି ହେଲା ଯେ ବିହାରୀ ଚାଷୀଙ୍କ ଭିତରେ ସ୍ଲୋଗାନ୍ ହେଲା—"ମାଲଗୁଜାରୀ ଲେଗେ କୈସେ, ଡଣ୍ଡା ହମାରା ଜିନ୍ଦାବାଦ" । ଅର୍ଥାତ୍ ଚାଷୀ କହିଲେ—ଯେ ପର୍ଯ୍ୟନ୍ତ ଆମ ହାତରେ ଲାଠି ରହିଛି, ଆମଠାରୁ କେହି ଖଜଣା ଆଦାୟ କରିପାରିବେ ନାହିଁ । ଜୟପ୍ରକାଶ ନାରାୟଣ ଏହି ଦ୍ୱନ୍ଦ୍ୱରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଓ ନେତୃବୃନ୍ଦ ଜମିଦାରପକ୍ଷ ନେଉଥିବାର ପ୍ରତିବାଦ କରି କଂଗ୍ରେସ କାର୍ଯ୍ୟକାରୀ ସମିତିର ସଭ୍ୟପଦ ତ୍ୟାଗ କଲେ । ସି. ଏସ. ପି. ଦ୍ୱାରା ସଙ୍ଗଠିତ କିସାନ ସଭାଗୁଡ଼ିକ ଶକ୍ତିଶାଳୀ ହୋଇଉଠିଲା ଏବଂ କଂଗ୍ରେସ

କର୍ତ୍ତୃପକ୍ଷଙ୍କର ଏହା ଏକ ଚକ୍ରାନ୍ତ କାରଣ ହୋଇଥିଲା । ଶେଷକୁ ୧୯୩୮ ମସିହାରେ ହରିପୁରାଠାରେ କଂଗ୍ରେସ ଏ ସମ୍ପର୍କରେ ଏକ ବିଧିବଦ୍ଧ ପ୍ରସ୍ତାବ ଗ୍ରହଣ କରି ଘୋଷଣା କଲା ଯେ କୃଷକମାନଙ୍କର ନିଜର ସଙ୍ଗଠନ ଅଧିକାରକୁ କଂଗ୍ରେସ ସ୍ୱୀକାର କରୁଛି; କିନ୍ତୁ କିସାନ୍ ସଭାଗୁଡ଼ିକ କଂଗ୍ରେସର ଘୋଷିତ ନୀତି ଅନୁକୂଳ ହେଉ ନ ଥିବାରୁ ସେଥିସହ କଂଗ୍ରେସ ଲୋକେ ସମ୍ପର୍କ ରଖିପାରିବେ ନାହିଁ । ସେଥିରେ ଆହୁରି ମଧ୍ୟ ପ୍ରଦେଶ କଂଗ୍ରେସ କମିଟିଗୁଡ଼ିକୁ ନିର୍ଦ୍ଦେଶ ଦିଆଗଲା ଯେ ଯେଉଁ କଂଗ୍ରେସ ଲୋକେ ଏଭଳି କାର୍ଯ୍ୟ କରୁଛନ୍ତି ସେମାନଙ୍କ ପ୍ରତି ଉଚିତ ଶାସ୍ତି ବିଧାନ କରାଯାଉ । ଅର୍ଥାତ୍ କଂଗ୍ରେସ ଦାବୀ କଲା ଯେ କଂଗ୍ରେସ କମିଟିର ଆନୁକୂଲ୍ୟରେ କୃଷକ ଆନ୍ଦୋଳନ କରାଯାଇପାରିବ—ଅନ୍ୟଥା ନୁହେଁ ।

ସ୍ୱାମୀ ସହଜାନନ୍ଦ ସରସ୍ୱତୀଙ୍କୁ କଂଗ୍ରେସରୁ ବାହାର କରିଦିଆଗଲା । ଜୟପ୍ରକାଶ ଓ ସୋସଲିଷ୍ଟମାନେ ତାଙ୍କୁ ପୂର୍ଣ୍ଣ ସମର୍ଥନ ଦେଲେ । ଏହି ସମୟରେ ଜୟପ୍ରକାଶ ଓ ସ୍ୱାମୀ ସହଜାନନ୍ଦ ସରସ୍ୱତୀ ଓଡ଼ିଶା ଆସିଥିଲେ ଏବଂ ଏଠାରେ ସେମାନଙ୍କୁ ସମ୍ବର୍ଦ୍ଧନା ଓ ସମର୍ଥନ ମିଳିଥିଲା । କିନ୍ତୁ ଆମକୁ ଓଡ଼ିଶାରେ ଏପରି କିଛି ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ି ନଥିଲା । ଆମ କୃଷି ଆନ୍ଦୋଳନର ମୁଖ୍ୟ ଦାବୀ ପ୍ରଜାସ୍ୱତ୍ୱ ଆଇନର ସଂଶୋଧନ, ଗଛମାଛରେ ପ୍ରଜାର ଅଧିକାର ଆଦିକୁ ସରକାର ସ୍ୱୀକାର କରିଗଲା ଏବଂ ଆମେ ସବୁ ପ୍ରଦେଶ ଓ ଜିଲ୍ଲା କଂଗ୍ରେସ କମିଟି ଗୁଡ଼ିକରେ କର୍ମକର୍ତ୍ତା ହୋଇ ରହିଥିଲୁ ।

## ରାଷ୍ଟ୍ରପତି ସୁଭାଷଚନ୍ଦ୍ର

ଏହିଭିତରେ ୧୯୩୮ ମସିହାରେ ଗୁଜରାଟର ହରିପୁରରେ ଯେଉଁ କଂଗ୍ରେସ ଅଧିବେଶନ ହେଲା, ସେଥିରେ ନେତାଜୀ ସୁଭାଷଚନ୍ଦ୍ର ବୋଷ ରାଷ୍ଟ୍ରପତି ହେଲେ । ସେତେବେଳେ କଂଗ୍ରେସ ସଭାପତିଙ୍କୁହିଁ ରାଷ୍ଟ୍ରପତି କୁହାଯାଉଥିଲା । ନୂତନ ସମ୍ବିଧାନ ପ୍ରଚଳନ ହେଲା ପରେ ଯାଇ ଦେଶରେ ନିର୍ବାଚିତ ରାଷ୍ଟ୍ରପତି ପଦ ପ୍ରତିଷ୍ଠିତ ହେଲା । ସୁଭାଷବାବୁ ବହୁ ଆଗରୁ ସଭାପତି ହୋଇପାରିଥାଆନ୍ତେ; ମାତ୍ର ପୂର୍ବରୁ ଗାନ୍ଧୀ-ଶିବିରରେ ତାଙ୍କୁ ଉଚିତ ସ୍ଥାନ ମିଳୁନଥିଲା । ତାଙ୍କର ସଭାପତି ହେବାରେ ବଙ୍ଗଳା ଓ ପୂର୍ବଭାରତରେ ଏବଂ ଯୁବକ ଶ୍ରେଣୀରେ ଆନନ୍ଦ ଖେଳିଗଲା । ସୁଭାଷବାବୁଙ୍କ ରାଜନୈତିକ ଦୃଷ୍ଟିକୋଣ ଗାନ୍ଧୀ ଓ ଜବାହାରଲାଲଙ୍କଠାରୁ ସ୍ୱତନ୍ତ୍ର ବୋଲି ଧରାଯାଉଥିଲା ଏବଂ ସେ ଜବାହାରଲାଲ ନେହରୁଙ୍କ ଅପେକ୍ଷା ଅଧିକ ସାହସୀ ଓ ସ୍ପଷ୍ଟବାଦୀ ଥିଲେ । ସୋସଲିଷ୍ଟ ପାର୍ଟି ମଧ୍ୟ ସୁଭାଷବାବୁଙ୍କୁ ସମର୍ଥନ ଦେଲା । ଗାନ୍ଧିଜୀଙ୍କ ସମର୍ଥନରେ ସୁଭାଷବାବୁ ନିର୍ବାଚିତ ହେଲେ । ଆଉ କୌଣସି ପ୍ରତିଦ୍ୱନ୍ଦ୍ୱିତା ହୋଇ ନ ଥିଲା । କିନ୍ତୁ ସୁଭାଷବାବୁ କଂଗ୍ରେସର ନୀତି ଓ କାର୍ଯ୍ୟକ୍ରମରେ କିଛି ପରିବର୍ତ୍ତନ ଆଣି ପାରିଲେ ନାହିଁ । ସର୍ଦ୍ଦାର ପଟେଲ ଆଦି କଂଗ୍ରେସର ଅସଲ କର୍ଣ୍ଣଧାରମାନେ ମଧ୍ୟ ସନ୍ତୁଷ୍ଟ ହେଲେ ନାହିଁ । କେତେକ ଘଟଣାରେ ଗାନ୍ଧିଜୀ ମଧ୍ୟ ସୁଭାଷବାବୁଙ୍କୁ ପୂର୍ଣ୍ଣ ବିଶ୍ୱାସ କରି ପାରି ନ ଥିଲେ । କେତେକ ପ୍ରଦେଶରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଭିତରେ ଯେ ମତଭେଦ

ଦେଖାଦେଲା, ସେଥିରେ ମଧ୍ୟ ସୁଭାଷବାବୁ ଓ ସର୍ଦ୍ଦାର ପଟେଲ ଭିନ୍ନ ଦୃଷ୍ଟିକୋଣ ରଖିଲେ । ଏହି ବର୍ଷକ ଭିତରେ ସି. ଏସ. ପି. ପ୍ରଭୃତି କୃଷକ ସଭା ଓ କେତେକ ପ୍ରଦେଶର ମନ୍ତ୍ରୀମଣ୍ଡଳ ଭିତରେ ଯେ ବିବାଦ ଉପୁଜିଲା, ସେଥିରେ ମଧ୍ୟ ମନ୍ତ୍ରୀମଣ୍ଡଳ ଗୁଡ଼ିକ ସୁଭାଷବାବୁଙ୍କୁ ନ ପଚାରି ସର୍ଦ୍ଦାର ପଟେଲଙ୍କ ପ୍ରତ୍ୟକ୍ଷ ନିର୍ଦ୍ଦେଶରେ କାମ କରୁଥିଲେ । ସର୍ଦ୍ଦାର ପଟେଲ କଂଗ୍ରେସ ପାର୍ଲିଆମେଣ୍ଟାରୀ ବୋର୍ଡ଼ର ଅଧ୍ୟକ୍ଷ ଥାଆନ୍ତି । କିନ୍ତୁ ସୁଭାଷବାବୁ କଂଗ୍ରେସ ସଭାପତି ହେବାରେ ଓଡ଼ିଶାର ଏକ ଲାଭ ହେଲା । ସୁଭାଷବାବୁ କଟକରେ ଜନ୍ମ ହୋଇଥିଲେ ଏବଂ ମାଟ୍ରିକ ପର୍ଯ୍ୟନ୍ତ ପାଠ କଟକରେ ହିଁ ପଢ଼ିଥିଲେ । ତାଙ୍କ ପିତା ଜାନକୀନାଥ ବୋଷ ୧୮ ବର୍ଷ କାଳ କଟକରେ ସରକାରୀ ଓକିଲ ଥିଲେ । ତେଣୁ ଓଡ଼ିଶା ପ୍ରତି ନିଜର ମମତା ପ୍ରଦର୍ଶନ ସ୍ୱରୂପ ସେ ହରେକୃଷ୍ଣ ମହତାବଙ୍କୁ କଂଗ୍ରେସ କାର୍ଯ୍ୟକାରୀ ସମିତିକୁ ମନୋନୟନ କଲେ । ଏହା ପୂର୍ବରୁ ଓଡ଼ିଶାର କେହି ଏଭଳି ସ୍ଥାନକୁ ଯାଇ ପାରି ନ ଥିଲେ । ସେତେବେଳର ରାଜନୀତିକ ପରିବେଶରେ ଏହାକୁ ଏକ ଅତି ଉଚ୍ଚ ଆସନ ବୋଲି ଜ୍ଞାନ କରାଯାଉଥିଲା । କେବଳ ୧୯୩୧ ମସିହାରେ କରାଚୀ କଂଗ୍ରେସରେ ଗୋପବନ୍ଧୁ ଚୌଧୁରୀଙ୍କୁ ନିମନ୍ତ୍ରିତ ସଦସ୍ୟ କରି ନିଆଯାଇଥିଲା । କିନ୍ତୁ ଓଡ଼ିଶାରେ ନୀଳକଣ୍ଠବାବୁଙ୍କ ପ୍ରଭାବରେ ଥିବା କଂଗ୍ରେସ ଲୋକେ ସୁଭାଷବାବୁଙ୍କର କାର୍ଯ୍ୟକୁ ପସନ୍ଦ କଲେ ନାହିଁ । ସୁଭାଷବାବୁଙ୍କୁ ଏଥିଲାଗି କିପରି ମୂଲ୍ୟ ଦେବାକୁ ପଡ଼ିଲା, ତାହା ପରବର୍ତ୍ତୀ ଘଟଣାରୁ ପ୍ରମାଣିତ ହେବ ।

୧୯୩୮ ମସିହାଟି ଦ୍ୱିତୀୟ ମହାସମରର ଆରମ୍ଭର ପୂର୍ବକାଳ । ତେଣୁ ଏ ବର୍ଷଟିରେ ଆନ୍ତର୍ଜାତିକ କ୍ଷେତ୍ରରେ ଓ ଆମ ଦେଶ ଭିତରେ ନାନା ପ୍ରକାର ରାଜନୀତିକ ଘଟଣାବଳୀର ସୂତ୍ରପାତ ହେଲା । ଭାରତ ସହ କେତେକ ଗୁପ୍ତ ମନ୍ତ୍ରଣା ବି ଚାଲିଥିଲା । ସେଥିରେ ଆଗାଖାଁ ବହୁ ପରିମାଣରେ ଦୂତ ଭଳି କାମ କରୁଥିଲେ । ବ୍ରିଟିଶ ସରକାର ନିଶ୍ଚିତଭାବରେ ତାଙ୍କ ସାମ୍ରାଜ୍ୟ ଅଧୀନରେ ଥିବା ସବୁ ଉପନିବେଶ ଦେଶଗୁଡ଼ିକରେ ଗୋଟାଏ ପ୍ରକାର ରାଜନୀତିକ ବୁଝାମଣା କରିବାଲାଗି ଉଦ୍ୟମ ଚଳାଇଥିଲେ । ଆମ ଦେଶରେ କଂଗ୍ରେସ ଥିଲା ଏକମାତ୍ର ଜାତୀୟବାଦୀ ରାଜନୀତିକ ସଂଗଠନ ଏବଂ ଗାନ୍ଧିଜୀ ତାର ଥିଲେ ନେତା । ଏହି ସମୟରେ ଗାନ୍ଧିଜୀ 'ହରିଜନ'ରେ କେତେକ ପ୍ରବନ୍ଧ ଲେଖି ସ୍ପଷ୍ଟ କରିଦେଇଥିଲେ ଯେ ସତ୍ୟାଗ୍ରହର ନୀତି ଅନୁସାରେ ଶତ୍ରୁପକ୍ଷ ସହିତ ସବୁବେଳେ ଆପୋଷ ମୀମାଂସା କରିବା ନିମନ୍ତେ ମନ ଖୋଲା ରଖିବା ଉଚିତ । ଭିତରେ ଭିତରେ କଣସବୁ ଚାଲିଥିଲା, ଆମମାନଙ୍କ ପକ୍ଷରେ ଜାଣିବାର ସୁଯୋଗ ନଥିଲା । ମାତ୍ର କଂଗ୍ରେସ ସଭାପତି ସୁଭାଷ ବୋଷ ଏବଂ ମହାତ୍ମା ଗାନ୍ଧୀ ଓ ତାଙ୍କ ସହଯୋଗୀଙ୍କ ମଧ୍ୟରେ କିଛି ଗୁରୁତର ମତଭେଦ ଯେ ସୃଷ୍ଟି ହୋଇଛି, ଏହା ରାଜନୀତିକ କ୍ଷେତ୍ରରେ କିଛି ଅଛପା ନଥିଲା । ଏହା କ୍ରମେ ଏକ ଘୋର ସନ୍ଦେହର ବାୟୁମଣ୍ଡଳ ସୃଷ୍ଟିକଲା ଏବଂ ଇଂରେଜ ସରକାର ସହିତ ଗୋଟାଏ ସାଲିସ ହେବାର ସମ୍ଭାବନା ରହିଛି ବୋଲି ପ୍ରଚାରିତହେଲା । ବାମପନ୍ଥୀ ଶକ୍ତିଗୁଡ଼ିକ ଏହି ବିଷୟ ନେଇ କଂଗ୍ରେସର ଘୋର ସମାଲୋଚନା କଲେ । କଂଗ୍ରେସ କାର୍ଯ୍ୟକାରୀ ସମିତିକୁ ଏଥିଲାଗି ଏକ ପ୍ରସ୍ତାବ କରି ସମାଲୋଚନାର ଦୃଢ଼

ଜବାବ ଦିଆଗଲା । କଂଗ୍ରେସ ସଭାପତି ଆଉ ଥରେ ସୁଭାଷବାବୁ ପ୍ରକାଶ୍ୟରେ ଘୋଷଣା କଲେ ଯେ, କୌଣସି ପ୍ରକାର ଭିତରେ ସାଲିସର ଉଦ୍ୟମକୁ ଘୋର ବିରୋଧ କରାଯିବ । ଏହାପରେ ଯାହା ଭିତରେ ଭିତରେ ଚାଲିଥିଲା ତାହା ପ୍ରକାଶ୍ୟକୁ ଆସିଗଲା । ମହାତ୍ମାଗାନ୍ଧୀ କିନ୍ତୁ ଏତିକିବେଳେ ଏକ ଲେଖାରେ ତାଙ୍କ ନିଜ କଥା ପରିଷ୍କାର କରିଦେଲେ । ସେ ଲେଖିଲେ—

"କାର୍ଯ୍ୟକାରୀ ସମିତି ସଦସ୍ୟମାନଙ୍କର ମତ ଯାହା ହେଉ ପଛକେ ମୁଁ ସୁଭାଷବାବୁଙ୍କ ଅଭିଯୋଗକୁ ସ୍ୱୀକାର କରୁଛି । ଯଦି ସମ୍ମାନ ସହକାରେ ହୋଇପାରିବ, ତେବେ ବ୍ରିଟିଶଙ୍କ ସହ ମିଳାମିଶା କରିବା ନିମନ୍ତେ ମୁଁ ଆଗ୍ରହୀ ।"

## ସଂଘର୍ଷ

ଏହା ଲେଖିଦେଲା ପରେ ରାଜନୀତିକ ଦ୍ୱନ୍ଦ୍ୱ ପଦାକୁ ଆସିଲା । ସେତେବେଳକୁ କଂଗ୍ରେସ ସଭାପତି ଭାବରେ ସୁଭାଷବାବୁଙ୍କ କାର୍ଯ୍ୟକାଳ ପୂରି ଆସୁଥିଲା । ଠିକ୍ ତା' ପୂର୍ବରୁ କଂଗ୍ରେସ କାର୍ଯ୍ୟକାରୀ ସମିତିର ସଦସ୍ୟମାନେ ଇସ୍ତଫା ଦେଲେ । ଜବାହାରଲାଲ ନେହରୁ ସମସ୍ତଙ୍କ ସାଙ୍ଗରେ ଯୋଗ ନଦେଇ ଅଲଗା ରହିଲେ । ତାଙ୍କର ଯୁକ୍ତି ଥିଲା ଯେ ମୁଁ ସାମ୍ରାଜ୍ୟବାଦୀ ଶକ୍ତିକୁ ବିଭକ୍ତ କରିବାର ପକ୍ଷପାତୀ ନୁହେଁ । ଏତେବେଳେ ସୁଭାଷବାବୁଙ୍କ ପକ୍ଷ ଆଶା କରୁଥିଲେ ଯେ ଯେହେତୁ ହରେକୃଷ୍ଣ ମହତାବଙ୍କୁ ସେ କାର୍ଯ୍ୟକାରୀ ସମିତିକୁ ମନୋନୀତ କରିଛନ୍ତି ସେ ତାଙ୍କୁ ସମର୍ଥନ ଦେବେ । ମାତ୍ର ମହତାବ ବି ଇସ୍ତଫା ଦେଲେ ଏବଂ ପୂରାପୂରି ସର୍ଦ୍ଦାର ପଟେଲଙ୍କ ପକ୍ଷକୁ ଆଉଜିଗଲେ । ଜବାହାରଲାଲ ଯେଉଁ ମଧ୍ୟମ ପନ୍ଥା ଧରିଥିଲେ, ମହତାବ ତାହା ବି କଲେ ନାହିଁ । କଂଗ୍ରେସ ଭିତରେ ଏକ ସଙ୍କଟଜନକ ଅବସ୍ଥା ସୃଷ୍ଟି ହେଲା । ଆସନ୍ତା ବର୍ଷ ଅର୍ଥାତ୍ ୧୯୩୯ ମସିହା ତ୍ରିପୁରୀ କଂଗ୍ରେସ ଅଧିବେଶନ ଲାଗି ଡକ୍ଟର ପଟ୍ଟାଭି ସୀତାରାମାୟାଙ୍କୁ କଂଗ୍ରେସ ସଭାପତି ପଦପାଇଁ ପ୍ରାର୍ଥୀ କରାଗଲା । ସୁଭାଷବାବୁ ତହିଁରେ ଏକମତ ନ ହୋଇ ନିଜେ ପ୍ରାର୍ଥୀ ହେଲେ—କଂଗ୍ରେସ ଇତିହାସରେ ନୂତନ ପରମ୍ପରା ସୃଷ୍ଟି କଲେ । ମହାତ୍ମା ଗାନ୍ଧୀଙ୍କ ସମର୍ଥନ ନ ପାଇ ବା ତାଙ୍କ ଇଚ୍ଛା ବିରୁଦ୍ଧରେ ଗାନ୍ଧୀଯୁଗ ଆରମ୍ଭ ବେଳୁ କେହି ପ୍ରାୟ କଂଗ୍ରେସ ସଭାପତି ହୋଇ ପାରୁ ନ ଥିଲେ । ଏହା ବାସ୍ତବିକ ଗାନ୍ଧୀ- ନେତୃତ୍ୱ ପ୍ରତି ହେଲା ଏକ ଚ୍ୟାଲେଞ୍ଜ । ତେଣୁ କଂଗ୍ରେସର ସମଗ୍ର ନେତୃତ୍ୱ ଲାଗିପଡ଼ିଲେ ଡକ୍ଟର ପଟ୍ଟାଭିଙ୍କୁ ଜିତାଇବା ଲାଗି । ସୁଭାଷବାବୁ ଘୋଷଣା କଲେ ମୁଁ ଗାନ୍ଧୀଜୀଙ୍କ ବିରୋଧୀ ନୁହେଁ କିମ୍ବା ଗାନ୍ଧିଜୀଙ୍କ ବିରୁଦ୍ଧରେ ଲଢ଼ାଇ କରୁନାହିଁ । କଂଗ୍ରେସ ନେତୃବୃନ୍ଦ ବ୍ରିଟିଶ ସରକାର ସହ ଯେପରି ଅପୋଷ ମିଳାମିଶା କରିବାର ଉଦ୍ୟମ କରୁଛନ୍ତି, ମୁଁ ତାର ବିରୋଧ କରୁଛି ଏବଂ ଏ ସମ୍ପର୍କରେ କଂଗ୍ରେସ ପ୍ରତିନିଧିଙ୍କର ସ୍ପଷ୍ଟ ମତ ପ୍ରକାଶିତ ହେବା ଦରକାର" । ସୁଭାଷବାବୁ ଏପରି ଏକ ପଦକ୍ଷେପ ନେବେ ବୋଲି କେହି ଆଶା କରୁ ନଥିଲେ, ମାତ୍ର ଏକ ନୀତିଗତ ପ୍ରଶ୍ନ ଉଠାଇବାରୁ ତାଙ୍କପ୍ରତି ଅଧିକ ସମର୍ଥନ ମିଳିଲା । ସମସ୍ତ ବାମପନ୍ଥୀ ଶକ୍ତି ତାଙ୍କ ପଛରେ ଛିଡ଼ାହୋଇଗଲେ ।

ସୁଭାଷବାବୁ ଆହୁରି ମଧ୍ୟ କହିଲେ ଯେ ଯଦି ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ପରି ଜଣେ ସାମ୍ୟବାଦ ବିରୋଧୀ ଓ ସାମ୍ରାଜ୍ୟବାଦ ବିରୋଧୀ ବ୍ୟକ୍ତିଙ୍କୁ କଂଗ୍ରେସର ସଭାପତି କରିବାଲାଗି ସମସ୍ତେ ସମ୍ମତ ହୋଇଯାଆନ୍ତି, ତେବେ ସେ ନିଜ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେବେ । କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ସୁଭାଷବାବୁଙ୍କୁ ପୂର୍ଣ୍ଣ ସମର୍ଥନ ଦେଲା ।

ଆମେ ଓଡ଼ିଶାରେ ମଧ୍ୟ ଲାଗି ପଡ଼ିଲୁ; କିନ୍ତୁ ଏଠାରେ ଏକ ବିଚିତ୍ର ପରିସ୍ଥିତି ଘଟିଥିଲା । ସୁଭାଷବାବୁଙ୍କ ପକ୍ଷ ଓଡ଼ିଶାରୁ ବିପୁଳ ସମର୍ଥନ ପାଇବାର ଆଶା ରଖିଥିଲେ । ସୁଭାଷବାବୁଙ୍କ ନିଜ ଜନ୍ମସ୍ଥାନ କଟକ ଗୃହଟି କଂଗ୍ରେସ କମିଟିକୁ ଦାନ କରିଦିଆଯାଇଥାଏ, ସେଠାରେ ପ୍ରାଦେଶିକ କଂଗ୍ରେସ କମିଟିର ଅଫିସ ଥାଏ । ଓଡ଼ିଶାର ଜଣେ ଲୋକଙ୍କୁ ସେ ପ୍ରଥମଥରଲାଗି କଂଗ୍ରେସ କାର୍ଯ୍ୟକାରୀ ସମିତିରେ ସ୍ଥାନ ଦେଇଥାଆନ୍ତି । ମାତ୍ର ତାଙ୍କର ଏହି ଶେଷୋକ୍ତ କାର୍ଯ୍ୟଟି ତାଙ୍କର କାଳହେଲା । ମହତାବଙ୍କୁ ନେବାଯୋଗୁଁ ନୀଳକଣ୍ଠବାବୁଙ୍କ ଗୋଷ୍ଠୀ କ୍ରୁଦ୍ଧ ହେଲେ; ସେମାନଙ୍କ ପଛରେ ବହୁମତ ଥିଲା । ସେମାନେ କିଛି ଖୁବ୍ ବେଶୀ ଗାନ୍ଧୀ ଭକ୍ତ ନ ଥିଲେ ଏବଂ ଆନ୍ଧ୍ର-ଓଡ଼ିଶା ସୀମା-ବିବାଦ ଯୋଗୁଁ ସେମାନେ ଡକ୍ଟର ପଟ୍ଟାଭିଙ୍କୁ ସମର୍ଥନ କରିବାଲାଗି ବିଶେଷ ଆଗ୍ରହୀ ନ ଥିଲେ । ଆମେ ସବୁ ତାଙ୍କୁ ସୁଭାଷବାବୁଙ୍କ ଆଡ଼କୁ ଟାଣିବା ନିମନ୍ତେ ପ୍ରବର୍ତ୍ତାଇବାକୁ ଚେଷ୍ଟା କଲୁ । ମହତାବ ସୁଭାଷବାବୁଙ୍କୁ ଏପରି ଏକ ସଙ୍ଗୀନ ମୁହୂର୍ତ୍ତରେ ଛାଡ଼ିଦେଇଥାଆନ୍ତି; ତଥାପି ସୁଭାଷବାବୁ ନିର୍ବାଚିତ ହେଲେ । ନୀଳକଣ୍ଠବାବୁଙ୍କ ଗୋଷ୍ଠୀ ପ୍ରତି ଯେ ଉତ୍ତମ ବିଚାର କରିବେ ଏ ପଥଆଉ ସେମାନଙ୍କର ହେଲା ନାହିଁ । ସେମାନେ ସମସ୍ତେ ଦଳବଦ୍ଧ ହୋଇ ଡକ୍ଟର ପଟ୍ଟାଭିଙ୍କୁ ଭୋଟ ଦେଲେ । ଓଡ଼ିଶାରୁ ଡକ୍ଟର ପଟ୍ଟାଭି ପାଇଲେ ୯୯ ଏବଂ ସୁଭାଷବାବୁଙ୍କୁ ମିଳିଲା ୪୭ । ଅବଶ୍ୟ ଏହି ନିର୍ବାଚନରେ ସାରା ଭାରତରେ ସୁଭାଷଚନ୍ଦ୍ର ବୋଷ ଗାନ୍ଧିଜୀଙ୍କ ସମର୍ଥିତ ପ୍ରାର୍ଥୀ ଡକ୍ଟର ପଟ୍ଟାଭି ସୀତାରାମାୟାଙ୍କୁ ପରାସ୍ତ କରି ନିର୍ବାଚିତ ହେଲେ । ଗାନ୍ଧିଜୀ ଏକ ବିବୃତି ଦେଇ କହିଲେ ଯେ "ପଟ୍ଟାଭିଙ୍କ ପରାଜୟ ହେଉଛି ମୋର ପରାଜୟ ।"

## ନେତାଜୀଙ୍କ ସହ ସାକ୍ଷାତ

କିନ୍ତୁ ଓଡ଼ିଶାରେ ଏ ବିପର୍ଯ୍ୟୟ ସୁଭାଷବାବୁଙ୍କ ମନରେ ଦାରୁଣ ଦୁଃଖ ଦେଲା । ଭୋଟ ପରେ ନେତାଜୀଙ୍କର ଜଣେ ବିଶ୍ୱସ୍ତ ସାଥି ମେଜର ସତ୍ୟଗୁପ୍ତ ମତେ କଲିକତା ନେଇଗଲେ ନେତାଜୀଙ୍କ ସହ ସାକ୍ଷାତ୍ କରାଇବା ନିମନ୍ତେ । ମୁଁ ଯାଇ ତାଙ୍କ ଏଲଗିନ୍ ରୋଡ଼ ବାସଭବନରେ ପହଞ୍ଚିଲି । ତାଙ୍କ ବଡ଼ପୁଅର ଅମିୟନାଥ ବୋଷ ସେଠାରେ ଥାଆନ୍ତି । ନେତାଜୀ ଅସୁସ୍ଥ ଥାଆନ୍ତି; ଜ୍ୱର ରହିଥାଏ ଏବଂ ବିଛଣାରୁ ଉଠିବା ନିମନ୍ତେ ଡାକ୍ତରମାନେ ବାରଣ କରିଥାଆନ୍ତି; କିନ୍ତୁ ସେହି ଅସୁସ୍ଥ ଅବସ୍ଥା ଭିତରେହିଁ ସେ ନିଜର ନିର୍ବାଚନର ପରିଚାଳନା କରିଥିଲେ ଏବଂ ସ୍ୱାସ୍ଥ୍ୟ ଫେରି ପାଇବା ନିମନ୍ତେ ବହୁତ ସମୟ ଲାଗିଗଲା । ନେତାଜୀ ମୋ ଠାରୁ ସବୁକଥା ଶୁଣିଲାବେଳେ ତାଙ୍କ ଆଖିରୁ ଲୁହ ଗଡ଼ିପଡ଼ିଲା ।

ମହାତ୍ମାଙ୍କ କଥା ଉଲ୍ଲେଖ କରି କହିଲେ, "ସେ ଏପରି ଅପ୍ରିୟ ବୋଲି ମୋର ଧାରଣା ନ ଥିଲା । ତାଙ୍କ୍ର ନେଇଥିବା ଯୋଗୁଁ ମୋର ଏ ଦୁର୍ବିପାକ ଘଟିଲା । ଓଡ଼ିଶା ମୋ ବିରୁଦ୍ଧରେ ଯିବ ଏହା କି କେହି କେବେ କଳ୍ପନା କରିପାରିବ ।" ଓଡ଼ିଶାରୁ ଉପରି ବେଶି ପ୍ରତିନିଧି ତ୍ରିପୁରୀ କଂଗ୍ରେସରେ ଯୋଗ ଦେଇପାରିବେ ତାର ଚେଷ୍ଟା କରିବା ନିମନ୍ତେ ମତେ କହି ସେ ନବବାବୁଙ୍କୁ ଡକାଇ ପଠାଇଲେ ଏବଂ ନବବାବୁ କଲିକତା ଯାଇ ନେତାଜୀଙ୍କ ସାଙ୍ଗରେ ସ୍ପେଶାଲ ଟ୍ରେନ୍‌ରେ ତ୍ରିପୁରୀ ଗଲେ । ଆମେ ସବୁ ମଧ୍ୟ ବହୁ-ସଂଖ୍ୟାରେ ତ୍ରିପୁରୀ ଗଲୁ ।

ତ୍ରିପୁରୀଠାରେ ଯାହାସବୁ ଘଟିଗଲା, ସେଥିରେ ସୋସଲିଷ୍ଟ ପାର୍ଟି ଏକ ଧକ୍କା ପାଇଲା ବୋଲି ମୋର ବିଶ୍ୱାସ । ନେତାଜୀଙ୍କ ବିଜୟକୁ କଂଗ୍ରେସ ନେତୃବୃନ୍ଦ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲେ । କୌଣସି ପ୍ରକାର ସମାଧାନ ମଧ୍ୟ ସମ୍ଭବ ହେଲା ନାହିଁ । ଜବାହାରଲାଲ ନେହରୁ ସୁଭାଷବାବୁଙ୍କ ସଭାପତିତ୍ୱରେ ସାଧାରଣ ସମ୍ପାଦକ ହୋଇ କାର୍ଯ୍ୟ କରିବା ପ୍ରସ୍ତାବରେ ମଧ୍ୟ ରାଜିନାମା ହୋଇ ପାରିଲା ନାହିଁ । ନେତାଜୀ ଅସୁସ୍ଥ ଅବସ୍ଥାରେ ତ୍ରିପୁରୀ ଗଲେ, ମାତ୍ର ଅଧିବେଶନରେ କେବଳ ବିଧିରକ୍ଷା ନିମନ୍ତେ କିଛି ସମୟ ଉପସ୍ଥିତ ରହିଥିଲେ, ନଚେତ୍ ସାରା ଅଧିବେଶନର କାର୍ଯ୍ୟ ତାଙ୍କ ତରଫରୁ ମୌଲାନା ଅବୁଲ କଲମ ଆଜାଦ ଚଳାଇଥିଲେ ।

ଏଠାରେ ଦୁଇଟି ସମସ୍ୟା ବିକଟ ଆକାର ଧାରଣ କଲା । (୧) ଗାନ୍ଧୀଜୀଙ୍କ ଅନୁଗାମୀମାନେ ତାଙ୍କ ନେତୃତ୍ୱ ପୁଣି କଂଗ୍ରେସରେ ପ୍ରତିଷ୍ଠା କରିବା ନିମନ୍ତେ ବଦ୍ଧପରିକର ହେଲେ; (୨) ଦେଶର ଭବିଷ୍ୟତ ରାଜନୀତିକ ନୀତି ଓ କାର୍ଯ୍ୟକ୍ରମ କେଉଁଆଡ଼କୁ ଗତି କରିବ ଏହା ନେଇ ଏକ ଘୋର ସନ୍ଦେହର ବାତାବରଣ ସୃଷ୍ଟି ହେଲା । ଦୁଇ ପକ୍ଷ ଏହି ଦୁଇଟି ବିଷୟରେ କୌଣସି ସମାଧାନର ପକ୍ଷପାତୀ ନ ଥିଲାପରି ଅବସ୍ଥା ଉପୁଜିଥିଲା । ଶେଷକୁ ନେତୃମଣ୍ଡଳୀ ପାଖରୁ ଏକ ପ୍ରସ୍ତାବ ଆସିଲା ଯେ କଂଗ୍ରେସ ସଭାପତି ଆସନ୍ତା ବର୍ଷର କାର୍ଯ୍ୟକାରୀ ସମିତି ମହାତ୍ମା ଗାନ୍ଧୀଙ୍କ ପରାମର୍ଶକ୍ରମେ ଗଠନକରିବେ । ଏହା କାର୍ଯ୍ୟକାରୀ ହେବା ଅର୍ଥ ଏକପ୍ରକାର କଂଗ୍ରେସ ସଭାପତିଙ୍କୁ ପଙ୍ଗୁ କରିଦେବା । ଏପରି କରିବା ମୂଳରେ 'ଥିଲା ନେତାଜୀଙ୍କର ଭବିଷ୍ୟତ ରାଜନୀତିକ ଆଭିମୁଖ୍ୟ ପ୍ରତି ସନ୍ଦେହ । ଏହି ବିଷୟରେ ପରସ୍ପର ଭିତରେ ଥିବା ସନ୍ଦେହ ଦୂର କରିବା ନିମନ୍ତ୍ର ଉଦ୍ୟମ ହୋଇଥିଲା । ମାତ୍ର କଂଗ୍ରେସ କର୍ତ୍ତୃପକ୍ଷ ବ୍ରିଟିଶ ସରକାର ସହିତ ସାଲିସ କରିବେ ବୋଲି ସନ୍ଦେହ ଥିବାରୁ ଶରତ୍‌ଚନ୍ଦ୍ର ବୋଷ ଦାବୀ କଲେ ଯେ ବ୍ରିଟିଶ ସରକାରକୁ ଏକ ଛ'ମାସିଆ ଚରମପତ୍ର ଦିଆଯାଉ । ଏହା ମଧ୍ୟ ସୁଭାଷବାବୁଙ୍କ ମତ ବୋଲି ପରିଷ୍କାର ରୂପେ ଜଣାପଡ଼ିଥିଲା । ଅନ୍ୟ ପକ୍ଷରୁ ଯୁକ୍ତି ଥିଲା— ଏପରି ଚରମପତ୍ର ଦାଖଲର ଉପଯୁକ୍ତ ସମୟ ଆସିନାହିଁ । କଂଗ୍ରେସର ସତ୍ୟାଗ୍ରହ ନୀତି ଅନୁସାରେ ଆଗ ଦାବୀ ଉପସ୍ଥାପିତ କରାଯାଏ ଏବଂ ତାହା ପୂରଣ ନ ହେଲେ ସରକାରକୁ ବିଧିବଦ୍ଧ ନୋଟିସ ଦେଇ ପ୍ରତ୍ୟକ୍ଷ ସଂଗ୍ରାମ ବା ସେହିଭଳି କର୍ମପନ୍ଥା ଗ୍ରହଣ କରାଯାଏ ଏବଂ

ପ୍ରସ୍ତୁତ ମଧ୍ୟ କରାଯାଇଥାଏ । ଏ କ୍ଷେତ୍ରରେ ସେପରି କିଛୁ କରାଯାଇ ନାହିଁ । ସୋସଲିଷ୍ଟମାନେ ଏହି ଦ୍ୱନ୍ଦ୍ୱକୁ ଏଡ଼ାଇବା ନିମନ୍ତେ ଏକ ଜାତୀୟ ଦାବୀ (National Demand) ର ଚିଠା ପ୍ରସ୍ତାବ ଦେଲେ । ସେଥିରେ କେତେକ ଅଂଶ ଉଚ୍ଚ କଂଗ୍ରେସ ନେତାମାନେ ଗ୍ରହଣ କଲେ ନାହିଁ । ପରେ ଗାନ୍ଧୀଜୀଙ୍କ ସମ୍ମତିରେ ଗୋଟାଏ ସଂଶୋଧିତ ଚିଠା କରାଗଲା । ତହିଁକି ଶରତ୍ ବୋଷଙ୍କର ଦ୍ୱିମତ ନ ଥିଲା । ମାତ୍ର ସେ ଜିଦ୍ ଧରିଲେ ଯେ ଜାତୀୟ ଦାବୀ ପ୍ରସ୍ତାବ ସହି ଏହି ଦାବୀଗୁଡ଼ିକ ଗ୍ରହଣ କରିବା ନିମନ୍ତେ ଛଅମାସିଆ ଚରମପତ୍ର ଦିଆଯାଉ । ଏଥିରେ କୌଣସି ଆପୋଷ ମୀମାଂସା ହେଲା ନାହିଁ ।

## ବିଭେଦ ସୃଷ୍ଟିର ଅଙ୍କୁର

ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ ପ୍ରସ୍ତାବ ଆଣିଲେ ଯେ ଆସନ୍ତା ବର୍ଷ ଲାଗି କଂଗ୍ରେସ କାର୍ଯ୍ୟକାରୀ ସମିତି ଗଠନ ମହାତ୍ମା ଗାନ୍ଧୀଙ୍କ ପରାମର୍ଶକ୍ରମେ କଂଗ୍ରେସ ସଭାପତି କରିବେ ଏବଂ ଏହି ପ୍ରସ୍ତାବ ଗୃହୀତ ହୋଇଗଲା । ଏହା ପ୍ରକାରାନ୍ତରେ କଂଗ୍ରେସ ସଭାପତିଙ୍କ ପ୍ରତି ଅବିଶ୍ୱାସ ପ୍ରସ୍ତାବ । ଜୟପ୍ରକାଶ ନାରାୟଣ କଂଗ୍ରେସ ସୋସଲିଷ୍ଟ ପାର୍ଟି ପକ୍ଷରୁ ସଭାମଞ୍ଚରୁ ଉଠି ଘୋଷଣା କଲେ ଯେ ଏଭଳି ଏକ ପ୍ରସ୍ତାବରେ ଜାତୀୟ ଶକ୍ତି ଭିତରେ ବିଭେଦ ସୃଷ୍ଟିର ଅଙ୍କୁର ରହିଛି ଏବଂ ଦେଶ ଏକ ବଡ଼ ବିପଦର ସମ୍ମୁଖୀନ ହେବାକୁ ଯାଉଥିବାବେଳେ ଜାତୀୟ ଐକ୍ୟ ଭଙ୍ଗ ହେଲାଭଳି କାର୍ଯ୍ୟକୁ ସୋସଲିଷ୍ଟମାନେ ସମର୍ଥନ କରି ନ ପାରନ୍ତି । ଏ କଥା ଘୋଷଣା କରି ପ୍ରସ୍ତାବରେ ଭୋଟ ନିଆହେଲାବେଳେ ନିରପେକ୍ଷ ରହିବା ନିମନ୍ତେ ସେ ସୋସଲିଷ୍ଟ ଡେଲିଗେଟ୍‌ମାନଙ୍କୁ ନିର୍ଦ୍ଦେଶ ଦେଲେ । ଆମେ ସବୁ ସୁଭାଷବାବୁଙ୍କୁ ଜିତାଇଥିବାରୁ ବହୁସଂଖ୍ୟାରେ ଉପସ୍ଥିତ ଥିଲୁ—ଏକ ପ୍ରକାର ତାଙ୍କର ମୁଖ୍ୟ ସମର୍ଥକ ଥିଲୁ । କାରଣ କଂଗ୍ରେସ ଭିତରେ ଆଉ କୌଣସି ଗୋଷ୍ଠୀ ଏପରି ସଙ୍ଗଠିତ ନ ଥିଲେ । ଆମେ ନୀରବ ହେବା ଫଳରେ ପ୍ରସ୍ତାବଟି ପାସ୍ ହୋଇଗଲା । ଏହା ଫଳରେ ନେତାଜୀଙ୍କ ସମର୍ଥକ ଓ ଅନ୍ୟ ମହଲରେ ସୋସଲିଷ୍ଟ ପାର୍ଟି ପ୍ରତି ଏକ ସନ୍ଦେହ ସୃଷ୍ଟି ହେଲା ଏବଂ ଜୟପ୍ରକାଶ ଉଚ୍ଚ କଂଗ୍ରେସ ନେତୃବୃନ୍ଦଙ୍କ ପାଖରେ ଆତ୍ମସମର୍ପଣ କରିଗଲେ ବୋଲି ତାଙ୍କ ପ୍ରତି ଆକ୍ଷେପ କରାଗଲା । ଏ ସମ୍ପର୍କରେ ମୋର ପ୍ରତ୍ୟକ୍ଷ ଅଭିଜ୍ଞତା ରହିଛି । ସେହି କାରଣରୁ ପଶ୍ଚିମବଙ୍ଗରେ ସୋସଲିଷ୍ଟ ଆନ୍ଦୋଳନ ବରାବର ଦୁର୍ବଳ ହୋଇ ରହିଲା ଏବଂ ଆଗେଇ ପାରିଲା ନାହିଁ । ସୁଭାଷବାବୁଙ୍କୁ ପରେ କଂଗ୍ରେସର ପ୍ରାଥମିକ ସଭ୍ୟ ପଦରୁ ବହିଷ୍କାର କରାଯିବାରେ ସେ ଯେଉଁ ବାମପନ୍ଥୀ ଏକୀକରଣ ଧ୍ୱନି ଦେଲେ ସେଥିରେ କଂଗ୍ରେସ ସୋସଲିଷ୍ଟ ପାର୍ଟି ଯୋଗ ନ ଦେବାରୁ ସି. ଏସ୍. ପି. ବିରୁଦ୍ଧରେ ଆହୁରି କ୍ରୋଧ ଓ ବିରକ୍ତି ଭାବ ବୃଦ୍ଧି ପାଇଲା । ଏଥିଯୋଗୁଁ ପୂର୍ବାଞ୍ଚଳରେ ସୋସଲିଷ୍ଟ ସଙ୍ଗଠନ ପ୍ରତି ଖୁବ୍ ଧକ୍‌କା ଲାଗିଲା ।

ଏହି ତ୍ରିପୁରୀ କଂଗ୍ରେସ ଅଧିବେଶନରେ ଜୟପ୍ରକାଶ ନାରାୟଣଙ୍କ ଦ୍ୱାରା ଆଗତ "ଜାତୀୟ ଦାବୀ" ପ୍ରସ୍ତାବ ଗୃହୀତ ହୋଇଗଲା; କିନ୍ତୁ ଶରତ୍ ବୋଷ ଯେଉଁ ଚରମପତ୍ର ମୂଳକ ପ୍ରସ୍ତାବ

ଆଣିଥିଲେ, ତାହା କାଟ ଖାଇଗଲା । ସୁଭାଷବାବୁଙ୍କର କଂଗ୍ରେସରୁ ଅଲଗା ହୋଇଯିବାର ସୂତ୍ରପାତ ଏଇଠାରୁ ଆରମ୍ଭ ହୋଇଥିଲା କହିଲେ ଚଳେ । କଂଗ୍ରେସ ସୋସଲିଷ୍ଟ ପାର୍ଟି ଯେଉଁ କାରଣରୁ ପଣ୍ଡିତ ପନ୍ଥଙ୍କ ପ୍ରସ୍ତାବ ସମ୍ବନ୍ଧରେ ନିରପେକ୍ଷ ରହିଲା ତାହାର ଉଦ୍ଦେଶ୍ୟ ବି ବ୍ୟର୍ଥ ହେଲା । କାରଣ ଜୟପ୍ରକାଶ ନାରାୟଣ ତାଙ୍କ ବିବୃତିରେ ଉଲ୍ଲେଖକଲେ—

"ଆମ ପାର୍ଟି ଶ୍ରୀ ସୁଭାଷଚନ୍ଦ୍ର ବୋଷଙ୍କ ସପକ୍ଷରେ ଭୋଟ ଦେଇଥିଲା । ଆମେ ମୂଳରୁ କହିରଖିଥିଲୁ ଯେ ଏହି ଭୋଟ ଦେବାର ଅର୍ଥ ନୁହେ ଦକ୍ଷିଣପନ୍ଥୀ ଓ ବାମପନ୍ଥୀଙ୍କ ଭିତରର ସମସ୍ୟା ସମାଧାନ । ଆମେ ଡକ୍ଟର ପଟ୍ଟାଭିଙ୍କ ଅପେକ୍ଷା ଶ୍ରୀ ସୁଭାଷଚନ୍ଦ୍ର ବୋଷଙ୍କୁ ଅଧିକ ପସନ୍ଦ କରୁଥିବାରୁ ତାଙ୍କୁ ଭୋଟ ଦେଲୁ । ସେତେବେଳେ ଆମେ ଆଦୌ କଳ୍ପନା କରିନଥିଲୁ ଯେ ଏହା ଶେଷକୁ କଂଗ୍ରେସ ଭିତରେ ବିଭାଜନର ଏକ କାରଣ ହେବ । ଆମ ପାର୍ଟି କେବେ ବିବାଦରେ ଯୋଗ ଦେଇ ନାହିଁ କି ଦେବ ନାହିଁ । ମୋର ବିଶ୍ୱାସ ଏମିତି ବିବାଦକୁ ଏଡ଼ାଇ ଦିଆଯାଇ ପାରିଥାନ୍ତା । ଏହା ରୋକିବା ଲାଗି ଆମେ ପାରୁପର୍ଯ୍ୟନ୍ତ ଚେଷ୍ଟାକଲୁ । ଆମେ ବିଫଳ ହେଲୁ – ହତାଶ ହେଲୁ ।"

ଏଭଳି ସ୍ପଷ୍ଟ ଉକ୍ତି ସତ୍ତ୍ୱେ ସୁଭାଷବାବୁଙ୍କ ପକ୍ଷ ଯେ କଂଗ୍ରେସ ସୋସଲିଷ୍ଟ ପାର୍ଟି ଓ ଜୟପ୍ରକାଶଙ୍କ ପ୍ରତି ଏକ ଅଶ୍ରଦ୍ଧା ମନୋଭାବ ପୋଷଣ କଲେ, ଏହା ଦୁର୍ଭାଗ୍ୟର କଥା ।

୧୯୪୦ ବେଳକୁ ସୁଭାଷବାବୁ ଫରୱାର୍ଡ଼ ବ୍ଲକ ଗଠନ କରି ସାରିଲେଣି ଏବଂ ରାମଗଡ଼ଠାରେ ଏକ "ଆପୋଷ ବିରୋଧୀ ସମ୍ମିଳନୀ" **(Anti Compromise Conference)** ମଧ୍ୟ ସଂଗଠିତ କଲେ । ଜୟପ୍ରକାଶ ନାରାୟଣ ସେତେବେଳକୁ ଗିରଫ ହୋଇ ଦେଓଲି **(Deoli)** ଜେଲରେ ଅଟକବନ୍ଦୀ ଥାଆନ୍ତି । ସେ ଜେଲ ଭିତରୁ ସେତେବେଳକାର ଯୁଦ୍ଧ ଓ ଅନ୍ୟ ପରିସ୍ଥିତିକୁ ଲକ୍ଷ୍ୟ ରଖି କଂଗ୍ରେସ ଏକ ପ୍ରସ୍ତାବ ଧାର୍ଯ୍ୟ କରିବା ନିମନ୍ତେ ଲେଖିପଠାଇଥିଲେ । ସେଥିରେ ଶେଷ ସଂଗ୍ରାମ କରିବା ନିମନ୍ତେ ଆହ୍ୱାନ ଓ ଗଣପରିଷଦ **(Constituent Assembly)** ଡାକିବା ନିମନ୍ତେ ସିଦ୍ଧାନ୍ତ କରିବା-ଲାଗି କୁହାହୋଇଥିଲା । ଜୟପ୍ରକାଶ ଏ ପତ୍ରଟି ମହାତ୍ମାଗାନ୍ଧୀଙ୍କ ନିକଟକୁ ପଠାଇ କଂଗ୍ରେସ କାର୍ଯ୍ୟକାରୀ ସମିତିରେ ଉପସ୍ଥାପନ କରିବା ନିମନ୍ତେ ଅନୁରୋଧ କରିଥିଲେ । ମାତ୍ର କଂଗ୍ରେସ କାର୍ଯ୍ୟକାରୀ ସମିତି ଏହା ଗ୍ରହଣ କଲା ନାହିଁ । ତେଣୁ ଗାନ୍ଧୀଜୀ "ଜୟପ୍ରକାଶଙ୍କ ଚିତ୍ର" **(Jayaprakash's Picture)** ବୋଲି ଉକ୍ତ ଚିଠିଟିକୁ "ହରିଜନ" କାଗଜରେ ପ୍ରକାଶ କରିଦେଇ ସେଥିର ଅଧିକାଂଶ ବିଷୟରେ ସେ ସମ୍ମତ ବୋଲି ଲେଖିଲେ । ଏଥିରୁ ସ୍ପଷ୍ଟ ଯେ କଂଗ୍ରେସ ସୋସଲିଷ୍ଟ ପାର୍ଟି ସୁଭାଷବାବୁଙ୍କ ପରି ଦେଶକୁ ଏକ ଗଣସଂଗ୍ରାମ ଲାଗି ପ୍ରସ୍ତୁତ କରିବାକୁ ଗୃହୁଁ ଥିଲା ।

## ସୁଭାଷବାବୁଙ୍କ ଆଭିମୁଖ୍ୟ

ସୁଭାଷବାବୁ ଫରୱାର୍ଡ଼ ବ୍ଲକ ସଙ୍ଗଠନରେ ଓଡ଼ିଶା ଗସ୍ତରେ ଆସିଲେ । ସେତେବେଳକୁ ନୀଳକଣ୍ଠବାବୁ, ଦିବାକର ପଟ୍ଟନାୟକ ଓ ଯଦୁମଣି ମଙ୍ଗରାଜ ଆଦି ତାଙ୍କ ସହ ଯୋଗ

ଦେଇ ସାରିଥାଆନ୍ତି ଏବଂ ସେହିମାନେହିଁ ତାଙ୍କର ଗସ୍ତ ବ୍ୟବସ୍ଥା କରିଥିଲେ । ଗୋଦାବରୀଶ ମିଶ୍ରଙ୍କର ଏଥିପ୍ରତି ସହାନୁଭୂତି ରହିଥିଲା; ମାତ୍ର ସେ ସଭ୍ୟ ରୂପେ ଯୋଗ ଦେଇ ନ ଥିଲେ । ଏହି ସମୟରେ କଟକରେ ଓକିଲ ସୁଧାଂଶୁ ମୁଖାର୍ଜିଙ୍କ ଘରେ ସୁଭାଷବାବୁ ରହିଥାଆନ୍ତି । ମୋର ବନ୍ଧୁ ମୋହିତ ମୈତ୍ରଙ୍କ ଜରିଆରେ ସେ ମତେ ଡକାଇ ପଠାଇଲେ ଏବଂ ମୁଁ ତାଙ୍କ ସହ ନିଭୃତରେ କିଛି ସମୟ ଆଲୋଚନା କଲି । ଶେଷକୁ ଲିଖିତ ଆକାରରେ ୪ଟି ପ୍ରଶ୍ନ ମଧ୍ୟ ପଚାରିଲି ଏବଂ ନିଜ ହାତରେ ମୋ ନୋଟ୍‌ବୁକ୍‌ରେ ତାର ଉତ୍ତର ସେ ଇଂରେଜୀରେ ଲେଖିଦେଇଥିଲେ । ମୁଁ ମୁଖ୍ୟତଃ ତାଙ୍କୁ ଅନୁରୋଧ କରିଥିଲି ଯେ କଂଗ୍ରେସ ସୋସଲିଷ୍ଟ ପାର୍ଟିରେ ଯୋଗ ନ ଦେଇ ସ୍ୱତନ୍ତ୍ର ଏକ ଫରୱାର୍ଡ଼ ବ୍ଲକ୍ ଗଠନ କାହିଁକି କରୁଛନ୍ତି ?

ନେତାଜୀ କହିଲେ—ସେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ମୌଳିକ ନୀତି ସହ ଏକମତ । ମାତ୍ର ଅବଶେଷରେ କ୍ଷମତା ହାସଲ କରିବା ନିମନ୍ତେ ଏକ ନିର୍ଦ୍ଦିଷ୍ଟ ଯୋଜନା ଯେ କୌଣସି ପାର୍ଟିର ରହିବା ଦରକାର । ଆଧୁନିକ ରାଜନୀତିକ ଦଳଗୁଡ଼ିକର ସେପରି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଥାଏ । ଗାନ୍ଧୀ ଆନ୍ଦୋଳନର ସବୁଠାରୁ ବଡ ଦୁର୍ବଳତା ହେଉଛି—ସେପରି କିଛି ଯୋଜନା ନାହିଁ—ଯାହା କି ନେତା ଥାଆନ୍ତୁ ବା ନ ଥାଆନ୍ତୁ କାର୍ଯ୍ୟକାରୀ ହୋଇପାରିବ । କଂଗ୍ରେସକୁ ଗାନ୍ଧୀଜୀଙ୍କ 'ଅନ୍ତରର ବାଣୀ'କୁ ହିଁ ଅପେକ୍ଷା କରିବାକୁ ପଡ଼ିବ । ଗାନ୍ଧୀଜୀ ଭାରତ ରାଜନୀତିରେ ୧୯୨୦ ମସିହା'ରୁ ଅତି ଉଲ୍ଲେଖଯୋଗ୍ୟ ଅଂଶ ଗ୍ରହଣ କରିଛନ୍ତି; କିନ୍ତୁ ଏବେ ବେଳ ଆସିଛି, ସେ ହୁଏତ ଏକ ନୂତନ ଯୋଜନା ବା ନୂତନ ଆଦର୍ଶବାଦ ବାହାରକରିବେ, ନଚେତ୍ ଏକ ପ୍ରତିକ୍ରିୟାଶୀଳ ହୋଇଯିବେ । ଗାନ୍ଧୀବାଦ ପ୍ରଥମ ପଦକ୍ଷେପ ନ ନେଲେ ସୋସଲିଷ୍ଟମାନେ ତାଙ୍କ ସହ ପ୍ରତ୍ୟକ୍ଷ ବିରୋଧରେ ଲିପ୍ତ ହେବାଲାଗି ପ୍ରସ୍ତୁତ ବୋଲି ମୋର ବିଶ୍ୱାସ ହେଉନାହିଁ । ତାଙ୍କ ଭିତରେ କେତେକ ନେତୃସ୍ଥାନୀୟ ବ୍ୟକ୍ତି ରହିଛନ୍ତି ଯେଉଁମାନେ ଗାନ୍ଧୀଜୀଙ୍କ ପାଖରେ ପୂର୍ଣ୍ଣ ଆତ୍ମସମର୍ପଣ କରିବା ଭଳି ବ୍ୟକ୍ତି । କିନ୍ତୁ କ୍ଷମତା ହାସଲ କରିବା ନିମନ୍ତେ, ଭୁଲ ହେଉ ବା ଠିକ୍ ହେଉ, ମୋର ଏକ ନିର୍ଦ୍ଦିଷ୍ଟ ସଂଗ୍ରାମ ଯୋଜନା ରହିଛି । ତେଣୁ ମତେ ଏକ ସ୍ୱତନ୍ତ୍ର ସଂଗଠନ ଛିଡ଼ା କରାଇବା ଦରକାର ହେଉଛି ।

ଏହା ଶୁଣିଲା ପରେ, ନେତାଜୀଙ୍କ ମନ ଭିତରେ ଯେ କୌଣସିମତେ ଜାତୀୟ ସ୍ୱାଧୀନତା ହାସଲ କରିବା ନିମନ୍ତେ ଯେ ପ୍ରବଳ ପିପାସା ରହିଛି ଏବଂ ସେଥିଲାଗି କିଛି ବୈପ୍ଳବିକ ପନ୍ଥା ଅବଲମ୍ବନ କରିବା ଲାଗି ସେ ଯେ ବ୍ୟାକୁଳ – ଏ ବିଷୟରେ ମୋ ମନରେ ଆଉ କୌଣସି ସନ୍ଦେହ ରହିନଥିଲା । ଫରୱାର୍ଡ଼ ବ୍ଲକର ସବୁ ଲୋକଙ୍କ ଭିତରେ ହୁଏତ ଏଭଳି ଦୂରଦୃଷ୍ଟି ନ ଥିବ । ଭାରତର ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ନେତାଜୀ ଯେ ଜ୍ୱଳନ୍ତ ଦେଶପ୍ରେମୀ, ବିପ୍ଳବୀ, ସାହସୀ ଏବଂ ବାସ୍ତବବାଦୀ ରାଜନୀତିଜ୍ଞ ଏହା କେହି ଅସ୍ୱୀକାର କରିନପାରନ୍ତି । ମୋ ନିଜ ମତରେ ଜବାହାରଲାଲ ଓ ସୁଭାଷବୋଷ ଦୁଇଟି ସମ୍ପୂର୍ଣ୍ଣ ଭିନ୍ନ ଚରିତ୍ର ଏବଂ ନେତାଜୀଙ୍କର ବୀରତ୍ୱ ଓ ସାହସ ଜବାହାରଲାଲ୍‌ଙ୍କଠି ଦେଖାଯାଏ

ନାହିଁ । କଂଗ୍ରେସ ସୋସଲିଷ୍ଟ ପାର୍ଟିର କେତେକ ବିଷୟରେ ନେତାଜୀଙ୍କ ସହ ମତଭେଦ ରହିଥିଲେ ସୁଦ୍ଧା ନେତାଜୀଙ୍କ ଚରମ ତ୍ୟାଗ, ସ୍ପଷ୍ଟବାଦିତା ଏବଂ ଜାତୀୟ ସ୍ୱାଧୀନତା ଲାଗି ଅପୂର୍ବ ସଂଗଠନ ଶକ୍ତି ପ୍ରତି ବରାବର ସମ୍ମାନ, ଶ୍ରଦ୍ଧା ଓ ଭକ୍ତି ଦେଖାଇ ଆସିଛି । ବନ୍ଧୁତା ରହିଥିଲା—ବିରୋଧ ନୁହେଁ ।

ମୋ ନିଜ ଅଭିଜ୍ଞତାରୁ ଏକ ବିଷୟ ଏଠାରେ ଉଲ୍ଲେଖ କରିବା ଅପ୍ରାସଙ୍ଗିକ ହେବନାହିଁ । ମୁଁ ଯେତେବେଳେ ୧୯୪୨ ଅଗଷ୍ଟ ବିପ୍ଳବ ବେଳେ ଗୋପନ ନିବାସରେ ଲୁଚି ରହି ଓଡ଼ିଶାରେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ ଲାଗି ସଂଗଠନ କରୁଥିଲି, ସେତେବେଳକୁ ନେତାଜୀ ଥିଲେ ସିଙ୍ଗାପୁର ବା ଜାପାନ ପାଖରେ । ବର୍ମାକୁ ଆସିବାର ବ୍ୟବସ୍ଥା ହେଉଥାଏ—କାରଣ ବ୍ରିଟିଶ ସେଠାରୁ ପୂରାପୂରି ବହିଷ୍କୃତ ହୋଇ ନ ଥାନ୍ତି । ନେତାଜୀ କିନ୍ତୁ କପରି ଯୋଗସୂତ୍ର ଭାରତ ସାଙ୍ଗରେ ରଖିଥିଲେ କେଜାଣି ମୋର ଗୁପ୍ତ-ସ୍ଥାନରେ ମୁଁ ନେତାଜୀଙ୍କର ଏକ ସନ୍ଦେଶ ପାଇଲି । କିଭଳି ଢଙ୍ଗରେ ଆନ୍ଦୋଳନକୁ ଅଧିକ ବୈପ୍ଳବିକ କରିବାକୁ ହେବ, ସେ ବିଷୟରେ ସେ କିଛି ସୂଚନା ଦେଇଥିଲେ । ମୁଁ କାଳେ ସେ ସନ୍ଦେଶକୁ ବିଶ୍ୱାସ କରିପାରିବି ନାହିଁ ସେଥିଲାଗି ନେତାଜୀ ନିଜ ହାତରେ ଗୋଟିଏ କାଗଜରେ ମୋ ନାମ ଲେଖିଦେଇଥିଲେ । ମୁଁ ତାଙ୍କ ହସ୍ତାକ୍ଷର ସହ ପରିଚିତ ଥିଲି, ତେଣୁ ଏହା ବୁଝିବାରେ ମୋ ପକ୍ଷରେ କୌଣସି ଅସୁବିଧା ରହିଲା ନାହିଁ । ଭାରତ ସ୍ୱାଧୀନତା ଲାଭ କଲା ପରେ ଯଦି ବାସ୍ତବିକ ନେତାଜୀ ଥାଆନ୍ତେ ବା ଆସିପାରିଥାଆନ୍ତେ, ତେବେ ଭାରତର ସ୍ୱାଧୀନତା ପରବର୍ତ୍ତୀ କାଳ ଅଧିକ ଉଜ୍ଜ୍ୱଳ ହୋଇ ପାରିଥାଆନ୍ତା, ଏଥିରେ ତିଳେହେଲେ ସନ୍ଦେହ ନାହିଁ ।

ଯୁଦ୍ଧକାଳୀନ ପରିସ୍ଥିତି ହେବାରୁ ସୋସଲିଷ୍ଟ ପାର୍ଟି ଗାନ୍ଧୀଜୀଙ୍କ ନେତୃତ୍ୱ ଉପରେ ଅଧିକ ନିର୍ଭର କଲା । ଯୁଦ୍ଧ ଲାଗିଥିବା ବେଳେ ଓ ୧୯୪୨ ସଂଗ୍ରାମ ଆରମ୍ଭ ପୂର୍ବରୁ ଗାନ୍ଧୀଜୀ 'ହରିଜନ' କାଗଜରେ ଯେପରି ଲେଖାମାନ ପ୍ରକାଶ କଲେ, ସେଥିରୁ ସ୍ପଷ୍ଟ ଜଣାପଡ଼ୁଥିଲା ଯେ ସେ ତାଙ୍କ ଅହିଂସା ସଂଗ୍ରାମର ଚରମ ପରୀକ୍ଷା ଲାଗି ଅସ୍ଥିର । ଯୁଦ୍ଧ ଘୋଷଣା ହେବା ଦିନରୁ ସେ କଂଗ୍ରେସର ନେତୃତ୍ୱରେ ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଦେଶକୁ ଏକ ନିର୍ଦ୍ଦିଷ୍ଟ ଢଗରେ ପରିଚାଳନା କରିବାକୁ ଆରମ୍ଭ କଲେ । ବ୍ରିଟିଶ ସରକାରକୁ ପରୀକ୍ଷାରେ ପକାଇବା ନିମନ୍ତେ ଯୁଦ୍ଧର ଉଦ୍ଦେଶ୍ୟ ଘୋଷଣା କରିବା ପାଇଁ କଂଗ୍ରେସ ଦାବୀ କଲା । ଯୁଦ୍ଧରେ ସାହାଯ୍ୟ କରିବା ନ କରିବା ପ୍ରଶ୍ନ ତାହାରି ଉପରେ ନିର୍ଭର କରୁଥିଲା । ଏଣେ ସକଳ ପ୍ରକାର ସାମ୍ରାଜ୍ୟବାଦ ଓ ଫାସିଷ୍ଟବାଦର ବିରୋଧୀ ବୋଲି କଂଗ୍ରେସ ନିଜକୁ ଘୋଷଣା କରିଥିଲା । ବାସ୍ତବିକ ଦ୍ୱିତୀୟ ମହାସମରରେ ଏକ ବୁଦ୍ଧିର ଜଞ୍ଜାଳ ସୃଷ୍ଟି ହୋଇଗଲା । ଏକ ପକ୍ଷରେ ସାମ୍ରାଜ୍ୟବାଦ, ଅନ୍ୟ ପକ୍ଷରେ ଫାସିଷ୍ଟବାଦ—କେଉଁଟି ଦୁନିଆର ବଡ଼ ଶତ୍ରୁ, ଏହା ଭାବ ସ୍ଥିର କଲାବେଳକୁ ରାଜନୀତିକ ନେତାମାନଙ୍କ ଭିତରେ ବୁଦ୍ଧିଭେଦ ଜାତହେଲା । ଭାରତ ପରି ପରାଧୀନ ଦେଶରେ ଏହା ଏକ ବିରାଟ ସମସ୍ୟା ରୂପେ ଉଭାହେଲା ।

## ଫାସିଜିମ୍ ଯୋଗୁ ବାଉଳା

ଫାସିଷ୍ଟବାଦର ଭୟାବହତା ଏମିତ ପ୍ରକଟିତ ହେଲା ଯେ କଂଗ୍ରେସ ନେତାମାନଙ୍କ ମଧ୍ୟରେ ବି ବୁଦ୍ଧିଭେଦ ଜାତହେଲା । ପଣ୍ଡିତ ନେହରୁ ଓ ମୌଲାନା ଆଜାଦଙ୍କ ନେତୃତ୍ୱରେ କଂଗ୍ରେସ ନେତୃମଣ୍ଡଳୀ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ସହ ଏହି ମଉକାରେ ଦର କଷାକଷି ଆରମ୍ଭ କଲେ । ଗୋଟିଏ ପ୍ରବଳ ମତ ହେଲା ଯେ ବ୍ରିଟିଶ ସରକାର ଯଦି ଜାତୀୟ ସରକାର ଗଠନ କରିବାର ମଉକା ଦିଅନ୍ତି, ତେବେ କଂଗ୍ରେସ ଯୁଦ୍ଧରେ ତାଙ୍କୁ ସାହାଯ୍ୟ କରିପାରେ । ବ୍ରିଟିଶ ସରକାର ସହ କ୍ରମେ ଅସହଯୋଗ କରିବାର ପ୍ରଥମ ସୋପାନ ସ୍ୱରୂପ ସବୁ ପ୍ରଦେଶରେ ଗଠିତ କଂଗ୍ରେସ ସରକାରଗୁଡ଼ିକ ପ୍ରତିବାଦ ରୂପେ ଇସ୍ତଫା ଦେଇ ସାରିଥିଲେ । ତାହା ପରେ ନିଖିଳ ଭାରତ କଂଗ୍ରେସ କମିଟିର ପୁନାଠାରେ ଏକ ବୈଠକରେ ଏପରି ଏକ ପ୍ରସ୍ତାବ ପାସ୍ ହୋଇଗଲା । ମୁଁ ଏହି ବୈଠକରେ ଯୋଗ ଦେଇଥିଲି । ସେତେବେଳକୁ ଜୟପ୍ରକାଶ ନାରାୟଣ ଜେଲରେ ବନ୍ଦୀ । ଆମେ ସୋସଲିଷ୍ଟ ଯେତେକ ଥିଲୁ, ଏହାକୁ ସମର୍ଥନ କରିପାରିଲୁ ନାହିଁ । ରାଜଗୋପାଳାଚାରୀ ଥିଲେ ଏହି ମତର ପୃଷ୍ଠପୋଷକ ଏବଂ ସେ ନିଖିଳ ଭାରତ କଂଗ୍ରେସ କମିଟିରେ ପ୍ରସ୍ତାବ ଆଗତ କରି ବଳିଷ୍ଠ ଯୁକ୍ତି ବାଢ଼ିଲେ । କଂଗ୍ରେସ କାର୍ଯ୍ୟକାରୀ ସମିତିରେ ଗାନ୍ଧୀଜୀ ଏହାର ବିରୋଧ କରିଥିଲେ; ମାତ୍ର ଅଧିକାଂଶ ମତ ଏ ଏ ଦିଗରେ ଯିବାରୁ ସେ ଆଉ ନିଖିଳ ଭାରତ କଂଗ୍ରେସ କମିଟିରେ ଯୋଗ ଦେଲେ ନାହିଁ । ଗାନ୍ଧୀଜୀଙ୍କ ନେତୃତ୍ୱରୁ କଂଗ୍ରେସ ବଞ୍ଚିତ ହେଲା । ଫାସିଷ୍ଟବାଦ ହେଉ ବା ସମ୍ରାଜ୍ୟବାଦ ହେଉ, ଆମର ସ୍ୱାଧୀନତା ଦୃଷ୍ଟିରୁ କିଛି ବାଛବିଚାର କରିବାର ନାହିଁ । ଗାନ୍ଧୀଜୀଙ୍କର ଆଉ ଏକ ଦୃଷ୍ଟିକୋଣ ହେଲା—ହିଂସାର ଲଢ଼ାଇରେ ଭାରତ କପରି ତାର ଧନ ଜୀବନ ଅର୍ପଣ କରିବ ଏବଂ ଜଣେ ଅହିଂସପ୍ରେମୀ ହିସାବରେ ମହାତ୍ମାଜୀ କିଭଳି ବା ଏପରି କାର୍ଯ୍ୟରେ ସହଯୋଗ କରନ୍ତେ ! ଯୁଦ୍ଧ ଲାଗିବା ପରେ ସୋସଲିଷ୍ଟ ପାର୍ଟିର ସ୍ୱତନ୍ତ୍ର ହୋଇ ଆଉ କିଛି କାର୍ଯ୍ୟ ନ ଥିଲା କହିଲେ ଚଳେ । ବରଂ ଆମେ ସବୁ କୃଷକ, ଛାତ୍ର ଓ ଶ୍ରମିକ ଆନ୍ଦୋଳନକୁ ଅଧିକ ସଂଗଠିତ କରି ବିପ୍ଲବମୁଖୀ କରାଇଲୁ । ଗାନ୍ଧୀଜୀଙ୍କ ମତର ଅଧିକ ସମଥକ ହେଲୁ । ତାହା ଛଡ଼ା ଦେଶର ଯାହା ପରିସ୍ଥିତି, ସେଥିରେ ଗାନ୍ଧିଜୀଙ୍କ ନେତୃତ୍ୱ ବିନା କୌଣସି ସଂଗ୍ରାମ ସମ୍ଭବ ହୋଇ ନଥାନ୍ତା । କଂଗ୍ରେସର ଗାନ୍ଧୀଜୀଙ୍କ ଇଚ୍ଛା ବିପରୀତ ଆଭିମୁଖ୍ୟ ଯୋଗୁଁ ବାସ୍ତବିକ ଗଣବିପ୍ଲବ କିଛିଦିନ ପଛେଇଗଲା । ମୋର ବ୍ୟକ୍ତିଗତ ମତ ହେଉଛି, ବ୍ରିଟିଶ ସରକାର ଯେଉଁଭଳି ପରିସ୍ଥିତିରେ ପଡ଼ିଥିଲା, ସେତେବେଳେ ଯଦି ମହାତ୍ମା ଗାନ୍ଧୀଙ୍କ ପଥ କ୍ଷଣକାଳ ଲାଗି ହେଲେ ସୁଦ୍ଧା କଂଗ୍ରେସ ଗ୍ରହଣ କରିନଥାନ୍ତା, ତେବେ ସ୍ୱାଧୀନତାର ଇତିହାସ ଭିନ୍ନ ରୂପ ନେଇଥାଆନ୍ତା । ଦେଶ ସ୍ୱାଧୀନ ହେଲାବେଳକୁ ଯେମିତି ଭାଗ ଭାଗ ହେଲା, ସେପରି ପରିସ୍ଥିତି ଆଉ ଉପୁଜି ନଥାନ୍ତା । କଂଗ୍ରେସ ଦର କଷାକଷିରେ ନିଯୁକ୍ତ ହେବାରୁ ବ୍ରିଟିଶ ସରକାର ତାଙ୍କର ପୂର୍ବ ଚାଲ କୌଶଳ ଖେଳଲେ—ମୁସଲମାନ ଓ ଅନ୍ୟ ସଂପ୍ରଦାୟଙ୍କ କଥା ଉଠାଇଲେ । ଏହି ବିଷବୃକ୍ଷ ଚିର ଦିନ ଲାଗି ବଞ୍ଚିରହିଲା । ପରବର୍ତ୍ତୀ କାଳରେ ଯେତେବେଳେ ସ୍ୱାଧୀନତା

ନିମନ୍ତେ ବିଚାର ଆଲୋଚନା ଚାଲିଲା, ସେଥିରେ ବାଧ୍ୟ ହୋଇ ଭାରତ ଓ ପାକିସ୍ତାନ ବିଭାଜନରେ କଂଗ୍ରେସ ନେତୃମଣ୍ଡଳୀ ସମ୍ମତ ହୋଇଗଲେ । କିନ୍ତୁ ଏଠାରେ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି, ୧୯୪୨ରେ ଯେତେବେଳେ 'ଭାରତ ଛାଡ଼' ଆନ୍ଦୋଳନର ଡ଼ାକରା ଦିଆଗଲା, ଆନ୍ଦୋଳନ ଭିତରେ ଦେଶରେ ବ୍ରିଟିଶ ସରକାରର ବହୁ ଚେଷ୍ଟା ସତ୍ତ୍ୱେ ଗୋଟିଏ ହେଲେ ହିନ୍ଦୁ ମୁସଲମାନ ସଂପ୍ରଦାୟିକ ବିବାଦ ଘଟିନଥିଲା । ସବୁ ଶ୍ରେଣୀର ଜନତା ଏକଜୁଟ ହୋଇ ବ୍ରିଟିଶ ସରକାର ବିରୁଦ୍ଧରେ ଆନ୍ଦୋଳନରେ ଅଂଶ ଗ୍ରହଣ କରିଥିଲେ ।

ଯାହାହେଉ କଂଗ୍ରେସ ଗାନ୍ଧୀଜୀଙ୍କ ନେତୃତ୍ୱକୁ ଛାଡ଼ି ଯେଉଁ ଉଦ୍ୟମ କରିଥିଲା, ସେଥିରେ ସଫଳ ହେଲା ନାହିଁ । କଂଗ୍ରେସ ଭିତରେ ପ୍ରତ୍ୟକ୍ଷ ସଂଗ୍ରାମ ଆରମ୍ଭ କରିବା ନିମନ୍ତେ ପ୍ରବଳ ଜନମତ ସୃଷ୍ଟି ହେଲା । ଗାନ୍ଧୀଜୀ ମଧ୍ୟ 'ହରିଜନ' କାଗଜରେ ଦୃଢ଼ ମତ ବ୍ୟକ୍ତ କଲେ । ବ୍ରିଟିଶ ସରକାର ମଧ୍ୟ ବୁଝିଥିଲା ଯେ ଗାନ୍ଧୀଜୀଙ୍କୁ ସମ୍ମତ କରାଇ ନ ପାରିଲେ କୌଣସି ସମାଧାନ ସମ୍ଭବ ହୋଇପାରିବ ନାହିଁ । ତେଣୁ କଂଗ୍ରେସ ନେତାମାନେ ବାଧ୍ୟ ହୋଇ ପୁଣି ଗାନ୍ଧୀଜୀଙ୍କ ପାଖକୁ ଲେଉଟିଲେ । ଏହା ପରଠାରୁ ଆରମ୍ଭ ହେଲା ଏକ ନୂତନ ପର୍ବ । ଏହାକୁ ଇଂରେଜ ବିରୁଦ୍ଧରେ ଶେଷ ସଂଗ୍ରାମର ଅସ୍ପୃମାରମ୍ଭ ହେଲା ବୋଲି କହିବାକୁ ହେବ ।

ଗାନ୍ଧୀଜୀ ଏହାର ପ୍ରଥମ ସୋପାନ ରୂପେ ସ୍ଥିର କଲେ ଏବଂ କଂଗ୍ରେସ ପ୍ରସ୍ତାବ ଗ୍ରହଣ କଲା ଯେ, ବ୍ରିଟିଶ ଯୁଦ୍ଧରେ ସହଯୋଗ ଦେବା କଂଗ୍ରେସ ପକ୍ଷରେ ସମ୍ଭବ ନୁହେଁ । ମାତ୍ର ତାହା ସଙ୍ଗେ ସଙ୍ଗେ ଫାସିଷ୍ଟବାଦକୁ ମଧ୍ୟ ପ୍ରୋତ୍ସାହନ ବା ବ୍ରିଟିଶ ସରକାର ଯେଉଁଭଳି ବିପଦରେ ପଡ଼ିଛି, ସେତିକିବେଳେ ଫାଇଦା ଉଠାଇବା ଉଚିତ ବିବେଚିତ କାର୍ଯ୍ୟ ହେବ ନାହିଁ । ଗାନ୍ଧୀଜୀ କହିଲେ, ମୋ ଅହିଂସା ମତେ ଏହା ଶିଖାଉ ନାହିଁ; ମାତ୍ର ତାହା ସଙ୍ଗେ ସଙ୍ଗେ ବ୍ରିଟିଶର ଯୁଦ୍ଧ ଉଦ୍ୟମରେ ସାହାଯ୍ୟ କରିବା ପାପ ବୋଲି ବିଚାର କରୁଛି । ତେଣୁ ସେ ଏକ ନୂତନ ଧରଣର ସତ୍ୟାଗ୍ରହ ସଂଗ୍ରାମ ଆରମ୍ଭ କଲେ । କଂଗ୍ରେସ ଗଣସଂଗ୍ରାମର ଆହ୍ୱାନ ଦେଲା ନାହିଁ । ମହାତ୍ମା ଗାନ୍ଧୀଙ୍କ ହାତରେ ସବୁ କଥା ଛାଡ଼ିଦିଆଗଲା । ମହାତ୍ମା ଗାନ୍ଧୀ ସ୍ଥିରକଲେ ଯେ କଂଗ୍ରେସ ଆଇନ ଅମାନ୍ୟର ଡାକରା ଦେଉନାହିଁ, କିନ୍ତୁ ବ୍ରିଟିଶ ଯୁଦ୍ଧକୁ ଧନ ଜନ ସାହାଯ୍ୟ ନଦେବା ନିମନ୍ତେ କଂଗ୍ରେସ ଲୋକେ ଅହିଂସ ଉପାୟରେ ଦେଶବାସୀଙ୍କି ବୁଝାଇବେ । ସେଥିଲାଗି କଂଗ୍ରେସ ତରଫରୁ ସତ୍ୟାଗ୍ରହୀ ସଂଗୃହୀତ ହେବେ ଏବଂ ସବୁ ତାଲିକା ଗାନ୍ଧୀଜୀଙ୍କ ପାଖକୁ ଯିବ । ଗାନ୍ଧୀଜୀ ଯେଉଁ ସତ୍ୟାଗ୍ରହୀଙ୍କୁ ମନୋନୀତ କରିବେ,. କେବଳ ସେ ହିଁ ସତ୍ୟାଗ୍ରହ କରିପାରିବେ । ସେ ସତ୍ୟାଗ୍ରହର ସ୍ୱରୂପ ହେଲା—ସତ୍ୟାଗ୍ରହୀମାନେ ବ୍ୟକ୍ତିଗତ ଭାବରେ ପାଦରେ ଚାଲି ଚାଲି ଯୁଦ୍ଧ ବିରୋଧୀ ଧ୍ୱନି ଦେବ ଏବଂ ବ୍ରିଟିଶ ସରକାରକୁ ଧନ ଜନ କୌଣସି ପ୍ରକାର ସାହାଯ୍ୟ ନ ଦେବା ଲାଗି ନିବେଦନ କରିବ । ଏହାକୁ ଏକ ଆଧ୍ୟାତ୍ମିକ ଲଢ଼ାଇ କୁହାଯାଇପାରେ । ସାଧାରଣ-ଭାବରେ ଏହା ବ୍ୟକ୍ତିଗତ ସତ୍ୟାଗ୍ରହ ରୂପରେ ଜଣା । ଏହି ସତ୍ୟାଗ୍ରହ ଲାଗି ଗାନ୍ଧୀଜୀ ବିନୋବାଭାବେଙ୍କୁ ପ୍ରଥମ ସତ୍ୟାଗ୍ରହୀ ଏବଂ ପଣ୍ଡିତ ଜବାହାରଲାଲଙ୍କୁ ଦ୍ୱିତୀୟ ସତ୍ୟାଗ୍ରହୀ ରୂପେ ବାଛିଲେ । ମୁଁ ସେତେବେଳକୁ କଟକ ଜିଲ୍ଲା କଂଗ୍ରେସ କମିଟିର ସମ୍ପାଦକ ଥାଏ ।

ଯେଉଁମାନେ ସତ୍ୟାଗ୍ରହୀ ଶ୍ରେଣୀଭୁକ୍ତ ହେବେ, ତାଙ୍କୁ ଏକ ଶପଥପତ୍ର ଦିଆଯାଉଥିଲା, ତହିଁରେ ସେମାନେ ଦସ୍ତଖତ କରୁଥିଲେ । ତାହାଛଡ଼ା ଗାନ୍ଧୀଜୀଙ୍କର କେତେକ ନିର୍ଦ୍ଦେଶ କଂଗ୍ରେସ କମିଟି ଗୁଡ଼ିକ ପାଖକୁ ଆସିଥାଏ । ସେ ନିର୍ଦ୍ଦେଶନାମା ବ୍ରିଟିଶ ସରକାର ହାତରେ ପଡ଼ିବ ନାହିଁ ବୋଲି ବିଶେଷ ଦୂତଙ୍କ ସାହାଯ୍ୟରେ ବିଭିନ୍ନ କଂଗ୍ରେସ କମିଟିକୁ ପଠାଯାଇଥାଏ ।

ଏହି ବ୍ୟକ୍ତିଗତ ସତ୍ୟାଗ୍ରହରେ ଯେ ଇଂରେଜ ସରକାର ଦୋହଲିଯିବ, ଏପରି ଆଶା କରିବା ବୃଥା । କମ୍ୟୁନିଷ୍ଟମାନେ ଏହି ଆନ୍ଦୋଳନକୁ ପରିହାସ କରୁଥିଲେ ଏବଂ କଲିକତାର ଷ୍ଟେଟ୍‌ସମାନ୍ କାଗଜ ସତ୍ୟାଗ୍ରହୀଙ୍କ ଗିରଫ ସମ୍ବାଦକୁ 'Cranx's Corner' ବା ବିକୃତ ମସ୍ତିଷ୍କର କାର୍ଯ୍ୟ ବୋଲି ହେଡିଙ୍ଗ ଦେଇ ଛପାଉଥିଲା । ଏଥିରେ ଇଂରେଜ ସରକାର ଦେଶରୁ ହଟିଯିବ ଏପରି ଧାରଣା ଗାନ୍ଧୀଜୀଙ୍କର ବା ସତ୍ୟାଗ୍ରହୀଙ୍କର ବି ନ ଥିଲା । ମାତ୍ର ବ୍ରିଟିଶ ସରକାର ବିରୋଧରେ ଜନମତ ଜାଗ୍ରତ କରାଇବା ଏବଂ ସତ୍ୟାଗ୍ରହୀ ଓ ଲୋକଙ୍କ ଭିତରେ ପ୍ରତିରୋଧ ଶକ୍ତି ଜୀବିତ ରଖିବା ହିଁ ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଆମେରିକା ଓ ଚୀନ ପ୍ରଭୃତି ଦେଶ ଯେଉଁଗୁଡ଼ିକ ଇଂରେଜଙ୍କ ସହ ମେଣ୍ଟ ବାନ୍ଧିଥିଲେ, ସେମାନେ ମଧ୍ୟ ଏହାର ଭିତରି ଉଦ୍ଦେଶ୍ୟ ଉପଲବ୍ଧି କଲେ । ଭାରତ ପରାଧୀନ ଥିବାରୁ ଲୋକେ ଯେ ଯୁଦ୍ଧରେ ସାହାଯ୍ୟ କରିବା ନିମନ୍ତେ ଆଗ୍ରହୀ ହେଉନାହାନ୍ତି ଏହା ଜାଣି ପାରିଲେ । ବିଶ୍ୱ ଜନମତ ଭାରତ ବିରୁଦ୍ଧରେ ଗଲା ନାହିଁ ଏହି ଆନ୍ଦୋଳନ ଯୋଗୁଁ ।

ବ୍ରିଟିଶ ସରକାର ଏଥିରେ ତାର ଶକ୍ତିହାନି ଘଟିବାର ଆଶଙ୍କା କରୁ ନଥିଲା; ମାତ୍ର ନୈତିକ ଦୃଷ୍ଟିରୁ ଦୁର୍ବଳ ହେଉଥିବା ଅନୁଭୂତ ହେଲା । ସତ୍ୟାଗ୍ରହୀଙ୍କୁ ଗିରଫ କରାଗଲା । ବିନୋବା ଭାବେଙ୍କ ପରେ ଜବାହାରଲାଲଜୀ ମଧ୍ୟ ଗିରଫ ହେଲେ ଏବଂ ଗୋରଖପୁର (ଉତ୍ତର ପ୍ରଦେଶ) କୋର୍ଟରେ ବିଚାର କରାଯାଇ ତାଙ୍କୁ ଚାରି ବର୍ଷ ସଶ୍ରମ କାରାଦଣ୍ଡ ମିଳିଲା । କୋର୍ଟରେ ଏକ ବିବୃତି ଦେଇ ଜବାହାରଲାଲଜୀ କହିଲେ—

“ସରକାର ବିରୁଦ୍ଧରେ କିଛି ଅପରାଧ କରିଥିବା ଯୋଗୁଁ ଆପଣଙ୍କ ଇଜଲାସରେ ଜଣେ ବ୍ୟକ୍ତି ହିସାବରେ ବିଚାରଲାଗି ମୁଁ ଏଠି ଉପସ୍ଥିତ ହୋଇଛି । ଆପଣ ହେଉଛନ୍ତି ସରକାରର ପ୍ରତୀକ; କିନ୍ତୁ ମୁଁ ଜଣେ ବ୍ୟକ୍ତିବିଶେଷ କେବଳ ନୁହେଁ, ମୁଁ ପ୍ରଚଳିତ ଆନ୍ଦୋଳନ ତଥା ଭାରତର ଜାତୀୟତାବାଦର ପ୍ରତୀକ । ଆମେ ପ୍ରତିଜ୍ଞାବଦ୍ଧ, ବ୍ରିଟିଶ ସାମ୍ରାଜ୍ୟବାଦୀ କବଳରୁ ମୁକ୍ତ ହେବୁ ଏବଂ ଭାରତର ସ୍ୱାଧୀନତା ହାସଲ କରିବୁ । ଆପଣ କେବଳ ମୋର ବିଚାର କରୁ ନାହାନ୍ତି କିମ୍ବା ମତେ ଶାସ୍ତି ଦେବାକୁ ଯାଉନାହାନ୍ତି, ମାତ୍ର ଲକ୍ଷ ଲକ୍ଷ କୋଟି କୋଟି ଭାରତବାସୀଙ୍କ ବିରୁଦ୍ଧରେ ଯାଉଛନ୍ତି । ଆପଣଙ୍କ କଥା ତ ଛାଡ଼ନ୍ତୁ, ଗୋଟାଏ ବିରାଟ ସାମ୍ରାଜ୍ୟ ପକ୍ଷରେ ମଧ୍ୟ ଏହା ଏକ ଦୁଃସାହସିକ କାର୍ଯ୍ୟ । ଦେଖାଯାଉଛି ଯେପରି ମୁଁ ଆପଣଙ୍କ ପାଖରେ ବିଚାର ଲାଗି ଛିଡ଼ାହୋଇଛି ସତ; ମାତ୍ର ପ୍ରକୃତରେ ବ୍ରିଟିଶ ସାମ୍ରାଜ୍ୟହିଁ ବିଶ୍ୱଦରବାରର କାଠ ଅଡ଼ାରେ ଠିଆହୋଇଛି । ଆଜି ବିଶ୍ୱରେ ଯେଭଳି ପ୍ରଭାବଶାଳୀ

ଶକ୍ତ କାର୍ଯ୍ୟ କରୁଛନ୍ତି, ତାହାଁ ଆଗରେ ଆଇନ କଚେରୀ ଅତି ତୁଚ୍ଛ । ସ୍ୱାଧୀନତା, ଖାଦ୍ୟ ଓ ବସ୍ତ୍ର ଲାଗି କୋଟି କୋଟି ଜନମାନସ ଆଜି ଆନ୍ଦୋଳିତ ଏବଂ ସେମାନେ ନୂତନ ଇତିହାସ ରଚନା କରୁଛନ୍ତି । ଏ ବିଷୟରଦ୍ୱାରା ଓ ଏହାର ପରବର୍ତ୍ତୀକାଳରେ ମୋର କଣ ହେବ ଏହା ଅତି ଗୌଣ ମାମୁଲି ବିଷୟ । ବ୍ୟକ୍ତିବିଶେଷଙ୍କର କିଛି ହେବା ନ ହେବାରେ କିଛି ଯାଏ ଆସେ ନାହିଁ; ଲୋକ ଆସେ ଓ ଚାଲିଯାଏ; ମୋର ଯେତେବେଳେ ବେଳ ଆସିଯିବ, ମୁଁ ମଧ୍ୟ ଯିବି । ଭାରତରେ ବ୍ରିଟିଶ କର୍ତ୍ତୃପକ୍ଷଙ୍କଦ୍ୱାରା ମୁଁ ଏଥିପୂର୍ବରୁ ସାତଥର ଦଣ୍ଡିତ ହୋଇଛି ଓ ଶାସ୍ତି ପାଇଛି । ଜେଲ ପ୍ରାଚୀର ଭିତରେ ମୋ ଜୀବନର ବହୁବର୍ଷ କଟିଛି । ୮।୯ ବର୍ଷ କମ୍ବା ଆଉ କେତେ ଅଧିକ ବର୍ଷ ଜେଲଜୀବନକୁ ମୋର ପରୁଆ ନାହିଁ । କିନ୍ତୁ ଭାରତର ଭାଗ୍ୟ କଅଣ ହେବ, ଭାରତର ଅଗଣିତ ନରନାରୀ ପୁତ୍ରକନ୍ୟାଙ୍କ କପାଳରେ କଣ ଘଟୁଛି, ତାହା କିଛି ସାଧାରଣ ମାମୁଲି ବିଚାର୍ଯ୍ୟ ବିଷୟ ନୁହେଁ । ବ୍ରିଟିଶ ସରକାର ଅତୀତରେ ଏତେ କାଳ ସେମାନଙ୍କୁ ଶୋଷଣ କରି ଆସିଛି; ସେ ଯଦି ଭାବୁଥାଏ ସେମାନଙ୍କ ଇଚ୍ଛା ବିରୁଦ୍ଧରେ ଯେମିତି ଏତେ କାଳ ସେମାନଙ୍କ ଜୀବନ ଯେନ ଖେଳ ଖେଳିଛି ଏବଂ ଶୋଷଣ କରିଆସିଛି, ସେମିତି ଚିରଦିନ କରିପାରିବ, ତେବେ ବଡ଼ ଭ୍ରମ ପ୍ରମାଦରେ ସରକାର ପଡ଼ିଛି । ଲୋକଙ୍କର ବର୍ତ୍ତମାନର ମତିଗତିକି ଏହା ଆଦୌ ବୁଝି ପାରୁନାହିଁ ଏବଂ ଇତିହାସରୁ ଏହାଙ୍କୁ କୌଣସି ଶିକ୍ଷା ମିଳିନାହିଁ ।"

## ୧୯୪୦ରେ ମୋର ପୁଣି ଗିରଫ

ଆମେ ନିର୍ଦ୍ଦେଶ ପାଇଲୁ ନେହରୁଙ୍କର ବିଚାରାଳୟର ବିବୃତିକୁ ଘରଆଡ଼େ ବାଣ୍ଟିବା ନିମନ୍ତେ । ସରକାରୀ କଟକଣା ଯୋଗୁଁ କେହି ଛପାଇବାକୁ ପ୍ରସ୍ତୁତ ନ ଥିଲେ । ମୁଁ ତାର ଓଡ଼ିଆ ଅନୁବାଦ କଲି ଏବଂ ଲୁଚାଇ କଟକ ସଦର ଲୋକାଲ ବୋର୍ଡ଼ ଅଫିସରେ ଆମେ ଏହାକୁ ଲିଥୋ କରି ଆଣିଲୁ । ପୁଲିସଙ୍କୁ କୌଣସି ପ୍ରକାରେ ସନ୍ଧାନ ମିଳିଗଲା । ମୁଁ ସନ୍ଧ୍ୟାରେ ସ୍ୱରାଜ ଆଶ୍ରମରେ ପହଞ୍ଚିଲାବେଳକୁ ପୁଲିସ ଇନ୍‌ସପେକ୍ଟର ଗୌରକୃଷ୍ଣ ମହାନ୍ତି ଆଉ କେତେକ ଅଫିସରଙ୍କୁ ଧରି ଜିଲା କଂଗ୍ରେସ ଅଫିସ ଖାନତଲାସ କରିବା ଲାଗି ପହଞ୍ଚିଥାନ୍ତି । ଘରର ଚାବି ମୋର ସହକାରୀ ଗୋବିନ୍ଦଚନ୍ଦ୍ର ମହାନ୍ତି ପାଖରେ ଥାଏ; ମାତ୍ର ମୁଁ ପହଞ୍ଚିଲା ପରେ ଘର ଖୋଲା ହେଲା । ସବୁ ସାଇକ୍ଲୋଷ୍ଟାଇଲ ଛପା ସେଠି ଜମା ହୋ'ଇଥାଏ, ତା'ହା ସେମାନେ ପାଇଲେ; ତଥାପି ଘରର ଅନ୍ୟ ଅଂଶସବୁ ତଲାସ କରିବାକୁ ଲାଗିଲେ । ସତ୍ୟାଗ୍ରହୀଙ୍କୁ ଗାନ୍ଧୀଜୀଙ୍କର ଯେଉଁ ନିର୍ଦ୍ଦେଶନାମା ଆସିଥାଏ, ମୁଁ ତାକୁ ଲୁଚାଇ ମୋ ବସିବା ସପ ତଳେ ରଖିଥିଲି । ପୁଲିସ ନେଇଗଲେ ବଡ଼ ଅଡୁଆ ହେବ ଭାବି ଆଉ କେଉଁଥି ପାଇଁ ଏତେ ତଲସି ହେଉଛି ବୋଲି ପଚାରିବାରୁ ସେମାନେ ଏହାର ଅନୁବାଦ ମୂଳଲେଖା ଚାହାନ୍ତି ବୋଲି କହିଲେ । ମୁଁ ତାହା କାଢି ଦେଇଦେବାରୁ ସେମାନେ ଆଉ ତଲାସ କଲେ ନାହିଁ । ମାତ୍ର ବେଆଇନ କାଗଜ ସାଇତି ରଖିଥିବା

ଅପରାଧରେ ଗୋବିନ୍ଦଙ୍କୁ ଏବଂ ଇଂରେଜୀରୁ ଅନୁବାଦ କରିଥିବା ଅପରାଧରେ ମତେ ସେହିଠାରେ ଗିରଫ କରି ନେଇଗଲେ । ପୁଲିସ ଇନ୍‌ସପେକ୍ଟର ନବବାବୁଙ୍କର ଆତ୍ମୀୟ ହୋଇଥିବାରୁ ମୁଁ ବିଶ୍ୱାସ କରିଥିଲି ତାଙ୍କର ଲେଡ଼ା ଜିନିଷ ପାଇଗଲେ ସେମାନେ ହୁଏତ ଗ୍ରୁଲିଯିବେ । ମାତ୍ର ହାୟ ! ମୁଁ ଯେ କାଗଜଟି ହାତକୁ ବଢ଼ାଇଦେଲି, ସେଥିରେ ମୁଁ ଅନୁବାଦକାରୀ ବୋଲି ପ୍ରତ୍ୟକ୍ଷ ପ୍ରମାଣ ହୋଇଗଲି । ପୁଲିସଙ୍କ ପାଖରେ ଦୟା ବା ଆତ୍ମୀୟତାର ବିଚାର ନ ଥାଏ । ଅବଶ୍ୟ ୧୯୩୦ ଲବଣ ଆଇନ ଅମାନ୍ୟ ବେଳେ ମୋର ସମ୍ମୁଖ ଲକ୍ଷ୍ମଣ ମିଶ୍ରଙ୍କ ପରି ପୁଲିସ ଅଫିସରମାନେ ଖାନତଲାସ କରିବାର ଥିଲେ ଆଗରୁ ଖବର ଦେଉଥିଲେ ଓ ଆମେ ଦରକାରୀ ଜିନିଷ ଅନ୍ୟ ସ୍ଥାନକୁ ନେଇଯାଉଥିଲୁ । ୧୯୪୦ ବେଳକୁ ପୁଲିସର ମନୋଭାବ ବିପରୀତ ଦିଗ ଧରିଥିଲା । ସବୁ ପୁଲିସ ଅଫିସରଙ୍କ ଭିତରେ ଆନ୍ଦୋଳନ ପ୍ରତି ସହାନୁଭୂତି ନଥିଲା । ଏହି ଅଭିଯୋଗରେ ବିଚାର ହୋଇ ମୁଁ ଏକବର୍ଷ ସଶ୍ରମ କାରାଦଣ୍ଡ ଏବଂ ୫୦୦ ଟଙ୍କା ଜୋରିମାନା ନ ଦେଲେ ଆଉ ୪ ମାସ ସଜା ଭୋଗିବାର ଆଦେଶ ହେଲା । ଏହି କାରାଦଣ୍ଡ ମୁଁ କଟକ ଓ ବ୍ରହ୍ମପୁର ଜେଲରେ ଭୋଗକଲି ।

## ଯୁଦ୍ଧର ଘନଘଟା

ଏଥିଭିତରେ ଯୁଦ୍ଧର ଘନଘଟା ଘୋଟିଗଲାଣି । ଭାରତର ପଡ଼ୋଶୀ ଅଞ୍ଚଳ ବ୍ରହ୍ମଦେଶ ପର୍ଯ୍ୟନ୍ତ ଯୁଦ୍ଧ ବ୍ୟାପିଯାଇଥାଏ । ବିଶ୍ୱକ୍ଷେତ୍ରରେ ଦୁଇଟି ବିବଦମାନ ଶକ୍ତି ବାଣ୍ଟି ହୋଇ ଯାଇଥାଆନ୍ତି । ଏକ ପକ୍ଷରେ ଆମେରିକା, ଇଂଲଣ୍ଡ ଓ ସୋଭିଏଟ୍ ରୁଷ—ଏହାଙ୍କୁ ମିତ୍ରପକ୍ଷ ବୋଲି କୁହାଯାଉଥିଲା; ଅନ୍ୟପକ୍ଷରେ ଇଟାଲୀ, ଜର୍ମାନୀ ଓ ଜାପାନ ଏହାଙ୍କୁ ଶତ୍ରୁପକ୍ଷ ବୋଲି ଆଖ୍ୟା ଦିଆଗଲା । ଆମ ପକ୍ଷରେ କେହି ମିତ୍ର ନୁହନ୍ତି କେହି ଶତ୍ରୁ ନୁହନ୍ତି—ଆମେ ଆମର ସ୍ୱାଧୀନତା ଚାହୁଁ । ସୁଭାଷବାବୁ ଏତିକିବେଳେ ଛଦ୍ମବେଶରେ ଭାରତ ଛାଡ଼ି ପଳାୟନ କଲେ ଏବଂ ଶତ୍ରୁପକ୍ଷ ବୋଲି ଯାହାଙ୍କୁ କୁହାଯାଇଛି ସେହି ଜର୍ମାନୀ ଜାପାନ ସାଙ୍ଗରେ ହାତ ମିଶାଇ ଭାରତର ସ୍ୱାଧୀନତା ଲଢ଼ାଇ ସେଠାରେ ଆରମ୍ଭ କରିଦେଲେ । ସେ ଘୋଷଣା କଲେ ଏବଂ ବିଶ୍ୱାସ କରୁଥିଲେ, ଆମର ଜାତୀୟ ସ୍ୱାଧୀନତା ଦୃଷ୍ଟିରୁ ଆମ ଶତ୍ରୁର ମିତ୍ର ଆମର ଶତ୍ରୁ ଏବଂ ଆମ ଶତ୍ରୁର ଶତ୍ରୁହିଁ ଆମର ମିତ୍ର ବା ସହାୟକ ହୋଇପାରିବ । ତେଣୁ ଜର୍ମାନୀ ଜାପାନ ସହଯୋଗରେ ବନ୍ଦୀଥିବା ଭାରତୀୟ ସୈନ୍ୟ ଓ ଅନ୍ୟ ଭାରତୀୟଙ୍କୁ ଏକତ୍ର କରି ନେତାଜୀ ଆଜାଦ ହିନ୍ଦ ଫୌଜ ଗଠନ କଲେ ଏବଂ ସେମାନେ ବର୍ମାଆଡ଼ୁ ଭାରତରେ ପ୍ରବେଶ କରି ମଣିପୁର ରାଜ୍ୟ ଭିତରେ ଆମର ତିରଙ୍ଗା ଧ୍ୱଜା ଉତ୍ତୋଳନ କରିପାରିଥିଲେ ।

୧୯୪୦ରେ ଏ ଯେଉଁ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ ହୋଇଥିଲା ତାହାହିଁ କାଳକ୍ରମେ ଗଣ ବିପ୍ଲବରେ ପରିଣତ ହୋଇଯାଇଥାଆନ୍ତା । ମାତ୍ର ବ୍ରିଟିଶ ସରକାର କେବଳ ସତ୍ୟାଗ୍ରହୀଙ୍କୁ ଗିରଫ କରିବା ବ୍ୟତୀତ ଅନ୍ୟ କୌଣସି କଠିନ ଦମନମୂଳକ ପନ୍ଥା ପ୍ରୟୋଗ

କଲା ନାହିଁ । ଯେଉଁଭଳି ସଙ୍କଟମୟ ପରିସ୍ଥିତି, ସେଥିରେ ଭାରତର ପରିସ୍ଥିତିକୁ ଆଉ ଜଟିଳ କରିବା ଲାଗି ସେ ଇଚ୍ଛା କରୁ ନଥିଲେ । ଏଣେ ଭାରତର ଜାତୀୟ ନେତାମାନେ ବି ଫାସିଷ୍ଟବିରୋଧୀ ବୋଲି ତାର ସୁଯୋଗ ନେଇ ତାଙ୍କ ମନକୁ କୋହଳ କରିଦେବା ନିମନ୍ତେ ନାନା କୂଟନୀତିକ କୌଶଳ ପ୍ରୟୋଗ ହୋଇଗଲା । କଂଗ୍ରେସକୁ ବେଆଇନ କରାଗଲା ନାହିଁ । ବହୁ ସ୍ଥାନରେ ସମ୍ମିଳିତ ମନ୍ତ୍ରୀମଣ୍ଡଳ ଗଠନ କରାଯାଇ ତଥାକଥିତ ଲୋକପ୍ରତିନିଧି ଶାସନ ଚାଲୁଥିବାର ଏକ ପ୍ରହସନ ଚାଲିଲା । କମ୍ୟୁନିଷ୍ଟ, ମୁସ୍‌ଲିମ୍ ଲିଗ, ଏପରିକି ରାଜଗୋପାଳାଚାରୀ ପ୍ରମୁଖଙ୍କ ସମର୍ଥନରେ ବ୍ରିଟିଶ ସରକାର ଜାତୀୟ ଶକ୍ତିକୁ ଦୁର୍ବଳ କରିବା ନିମନ୍ତେ ଉଦ୍ୟମ କଲା ।

୧୯୪୨ ଜାନୁୟାରୀ ବେଳକୁ ମୁଁ ବ୍ରହ୍ମପୁର ଜେଲରୁ ମୁକ୍ତିଲାଭ କରି ଆସିଲି । ସେତେବେଳକୁ ବାହାରେ ବିଷମ ପରିସ୍ଥିତି । ଜାପାନ ପାଖରୁ ମିତ୍ରଶକ୍ତି ପୂର୍ବ ଏସିଆ ଭୂଖଣ୍ଡରୁ ପ୍ରାୟ ବିତାଡ଼ିତ ହେଉଥାଆନ୍ତି । ଓଡ଼ିଶାର କଂଗ୍ରେସ ଲୋକେ ଗଠନମୂଳକ କାର୍ଯ୍ୟରେ ଲିପ୍ତ ଥାଆନ୍ତି କିମ୍ବା ନୀରବ ରହିଥାଆନ୍ତି—କେଉଁଠି କେବେ ସରକାରୀ ଦମନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥାଆନ୍ତି । ଜାପାନ ଓ ଜର୍ମାନୀର ପଞ୍ଚମବାହିନୀ ଆମର କେତେକ ସ୍ଥାନରେ ଖୁବ୍ ସକ୍ରିୟ ହୋଇପଡ଼ିବାର ଆଶଙ୍କା ଦେଖାଯାଉଥାଏ । ଏ ସମ୍ବାଦ ସବୁ ଗାନ୍ଧୀଜୀ ପାଉଥାଆନ୍ତି । ଗଞ୍ଜାମ-ଫୁଲବାଣୀ ଜିଲ୍ଲାର ବାଲିଗୁଡ଼ା ନିର୍ବାଚନମଣ୍ଡଳୀର ଉପନିର୍ବାଚନରେ କଂଗ୍ରେସବିରୋଧୀ ପ୍ରାର୍ଥୀଙ୍କ ତରଫରୁ ପ୍ରକାଶ୍ୟ ଭାବରେ ପ୍ରଚାରକରାଗଲା—ଯେ ନେତାଜୀଙ୍କର ଜାପାନ ସହ ସମ୍ପର୍କ ରହିଛି ଏବଂ ସେଠାରୁ ସେନା ଆସି ପହଞ୍ଚିବେ । ଓଡ଼ିଶାରେ ସରକାରୀ ଅଫିସର, ଜମିଦାର ଓ ଗଡ଼ଜାତ ରାଜାମାନଙ୍କ ଭିତରେ ଜାପାନୀ ପକ୍ଷ ପ୍ରତି ଏକ ସ୍ୱାଭାବିକ ସମର୍ଥନ ରହିଥିବା ପରି ମନେହେଉଥାଏ । ଜର୍ମାନୀ ଓ ହିଟଲର ବହୁ ଦୂରରେ—ମାତ୍ର ଜାପାନ ଆମ ଏସିଆ ମହାଦେଶର ଏବଂ ସେମାନେ ବ୍ରିଟିଶକୁ ହଟାଇ ପାରୁଛନ୍ତି ବୋଲି ଏକ ସମ୍ମାନଭୂତି ଲୋକଙ୍କ ମନରେ ଜାଗ୍ରତହେଉଥାଏ ।

## ଜାପାନ ପ୍ରତି ମନୋଭାବ

ଏଥିଭିତରେ ୧୯୪୨ ମସିହାରେ ବଙ୍ଗୋପସାଗରର ଓଡ଼ିଶା ଉପକୂଳରେ ଏକ ଚମକ-ପ୍ରଦ ଘଟଣା ଘଟିଗଲା । କଳିଙ୍ଗ ଉପକୂଳରେ କେତେକ ବ୍ରିଟିଶ ବାଣିଜ୍ୟପୋତ ସାଗରରେ ଯାତ୍ରା କରୁଥିବାବେଳେ ଜାପାନୀ ବୁଡ଼ାଜାହାଜ ବାହିନୀ ଅସି ତାକୁ ଆକ୍ରମଣ କଲା ଏବଂ ବୁଡ଼ାଇ ଧ୍ୱଂସ କରିଦେଲା । ଇଂରେଜ ପକ୍ଷ ଏ ଉପକୂଳରେ ସେପରି ଶକ୍ତିଶାଳୀ ପ୍ରତିରକ୍ଷା ବ୍ୟବସ୍ଥା କରିନଥାନ୍ତି । ତେଣୁ ଚାରିଆଡ଼େ ଆତଙ୍କ ଖେଳିଗଲା ଏବଂ ଏହି ଅରକ୍ଷିତ ଅଞ୍ଚଳ ଦେଇ ଜାପାନ ଓଡ଼ିଶାରେ ପ୍ରବେଶ କରିବା ଆସନ୍ନ ପ୍ରାୟ ମନେହେଲା । କଟକଠାରେ ଓଡ଼ିଶା ପ୍ରଦେଶର ହେଡ଼କ୍ୱାର୍ଟର ରହିଥାଏ । କଟକକୁ ବିପଦସଙ୍କୁଳ ବିଚାରି ଇଂରେଜ ସରକାର ସରକାରୀ ଦପ୍ତର ଓ ଅନ୍ୟ ସମସ୍ତ କାଗଜପତ୍ର ସମ୍ବଲପୁରକୁ ଉଠାଇନେଲେ । ଏହା ଫଳରେ

ଲୋକଙ୍କ ଭିତରେ କଭଳି ଆତଙ୍କ ସୃଷ୍ଟି ହୋଇଥିବ ସହଜରେ ଅନୁମାନ କରାଯାଇପାରିବ । ବାଣିଜ୍ୟପୋତରୁ ଭସିଆସିଥିବା ମୂଲ୍ୟବାନ ଜିନିଷପତ୍ର ମଧ୍ୟ ଲୋକେ ଧରି ମହା ଖୁସି । ଯେଉଁ ଇଂରେଜ ଆମକୁ ଶୋଷଣ କରି ନେଉଛି, ତାର ଜିନିଷପତ୍ର ଆମର ହସ୍ତଗତ ହୋଇଛି— ଲୋକେ ଆନନ୍ଦରେ ଗୀତ ଗାଇ ନାଚିଲେ । ଯେପରି ମନେହେଲା ଜାପାନ ପଶି ଆସିଲେ ଲୋକେ ତାଙ୍କୁ ଆନନ୍ଦରେ ବରଣ କରିନେବେ । ବ୍ରିଟିଶ ସରକାର ପ୍ରତି କପରି ଓ କେତେଦୂର ଘୃଣା ଲୋକଙ୍କ ମନରେ ରହିଥାଏ, ଏଥିରୁ ତାହା ବୁଝାପଡ଼ିବ । ତେଣୁ ଆମ କଂଗ୍ରେସ ଲୋକଙ୍କ ଭିତରେ ଭାବନା ପଡ଼ିଲା—ସତକୁସତ ଜାପାନ ଯଦି ଆସେ ଆମେ କ'ଣ କରିବା ? କିଛି ନିର୍ଦ୍ଦିଷ୍ଟ ବୁଦ୍ଧି ବାହାର ହୁଏ ନଥାଏ । ଏ ସମ୍ବନ୍ଧରେ ଗାନ୍ଧୀଜୀଙ୍କର ପରାମର୍ଶ ନେବା ଲୋଡ଼ାହେଲା ।

ମାତ୍ର ଗାନ୍ଧୀଜୀ ତ ସେବାଗ୍ରାମରେ—ତାଙ୍କ ସହ ସମ୍ପର୍କ ସ୍ଥାପନ କଷ୍ଟସାଧ୍ୟ । ପ୍ରକାଶ୍ୟରେ କେହି ଗଲେ ଗିରଫ ହୋଇଯିବାର ପୂର୍ଣ୍ଣ ସମ୍ଭାବନା ଥାଏ । ତେଣୁ ମୁଁ ଏକ ଉପାୟ ବାହାରକରି ଇଉନାଇଟେଡ୍ ପ୍ରେସ୍‌ର ଅଫିସ ସମ୍ବଲପୁରକୁ ସ୍ଥାନାନ୍ତର କରିବା ଆଳରେ ସମ୍ବଲପୁର ଯାତ୍ରାକଲି । ପୁଲିସର ଏଥିରେ ବିଶେଷ ସନ୍ଦେହର କାରଣ ନଥିଲା । ସେଠାରୁ କୌଶଳକ୍ରମେ ବସ୍, ଟ୍ରକ୍ ଏ ଟ୍ରେନ୍ ଦ୍ୱାରା ମୁଁ ଯାଇ ସେବାଗ୍ରାମରେ ପହଞ୍ଚି ମହାତ୍ମା ଗାନ୍ଧୀଙ୍କୁ ଭେଟିଲି । ମହାତ୍ମାଗାନ୍ଧୀ ମୋ ଠାରୁ ସବୁ ବିବରଣୀ ଶୁଣିଲେ ଏବଂ ଜାପାନର ଆକ୍ରମଣ ଓ ବାଲିଗୁଡ଼ା ଉପକୂଳରେ ଯେଉଁ ପ୍ରଚାର କଥା ପୂର୍ବରୁ ଉଲ୍ଲେଖ କରିଛି, ସେ ସମ୍ବନ୍ଧରେ ଭାଇସରାୟଙ୍କୁ ଅବଗତ କରାଇବା ନିମନ୍ତେ ରାଜକୁମାରୀ ଅମୃତ କାଉରଙ୍କୁ ମୋରି ଆଗରେ କହିଲେ । ଏଥିରୁ ମୁଁ ଅନ୍ତତଃ ଜାଣିପାରିଲି, ମହାତ୍ମା ଗାନ୍ଧୀ କପରି ଜାପାନୀ ପ୍ରଚାର ବିଷୟରେ ବ୍ରିଟିଶ ସରକାର ସହ ସମ୍ପର୍କ ରଖିଥାଆନ୍ତି । ଇଂରେଜ ସରକାର ପ୍ରତି ତାଙ୍କର ଦୃଢ଼ ବିରୋଧ ଓ ଯୁଦ୍ଧରେ ଅସହଯୋଗ ମନୋବୃତ୍ତି ସତ୍ତ୍ୱେ ସେ ଫାସିଷ୍ଟଶକ୍ତିର ଆଗମନକୁ ପସନ୍ଦ କରୁ ନଥିଲେ । ମୋଠାରୁ ସବୁକଥା ଶୁଣି ମହାତ୍ମାଜୀ ମତେ କହିଲେ—କଂଗ୍ରେସ ଲୋକଙ୍କୁ କହିଦେବ ଜାପାନ ମାଡ଼ି ଆସିଲେ ସେମାନେ ଅହିଂସ ପ୍ରତିରୋଧ କରିବେ—କଦାପି ଆତ୍ମସମର୍ପଣ କରିବେ ନାହିଁ । ଜାପାନୀମାନଙ୍କୁ କହିବେ— ଆମେ ବି ଇଂରେଜୀ ଶାସନକୁ ତଡ଼ି ସ୍ୱାଧୀନତା ହାସଲ କରିବାକୁ ଚାହୁଁ । ଇଂରେଜଙ୍କୁ ତୁମେ ଯଦି ତଡ଼ିଦେଇପାରିଲ, ତେବେ ଏ ଦେଶ ଆମ ହାତରେ ଛାଡ଼ି ଚାଲିଯାଅ । ଆମେ ତୁମ ପାଖରେ ଆତ୍ମସମର୍ପଣ କରି ପାରିବୁ ନାହିଁ କମ୍ବା ଏ ଦେଶକୁ ତୁମ ହାତରେ ଛାଡ଼ି ଦେଇ ପାରିବୁ ନାହିଁ । ଏତଦ୍ୱାରା କଂଗ୍ରେସଲୋକଙ୍କୁ ଯଦି ପ୍ରାଣବଳି ଦେବାକୁ ପଡ଼େ, ତାହା ଆନନ୍ଦରେ ବରଣ କରିବେ । ମତେ ଆହୁରି ମଧ୍ୟ କହିଲେ—ଯଦି କେହି ଡରୁଆ ଦୁର୍ବଳ କଂଗ୍ରେସଜନ ଥାଆନ୍ତି, ତେବେ ସେମାନଙ୍କୁ ମୋ ପାଖକୁ ପଠାଇଦେବ—ମୁଁ ସେବା-ଗ୍ରାମରେ ଆଶ୍ରୟ ଦେବି; କିନ୍ତୁ କଂଗ୍ରେସ ଲୋକ ଜାପାନୀଙ୍କ ପାଖରେ ଜଣେ ହେଲେ ଆତ୍ମ-ସମର୍ପଣ କରିବା ଏକ କଳଙ୍କମୟ କାର୍ଯ୍ୟ ହେବ ।

ସାଗ ସନ୍ତ୍ୟାଦି ଗାନ୍ଧୀଜୀଙ୍କ ସନ୍ନତ ରହିଲ ଏବଂ ତାଙ୍କ ନିର୍ଦ୍ଦେଶ ଅନୁସାରେ ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗଦେଲି। କସ୍ତୁରବାଙ୍କର ଶରୀର ଅସୁସ୍ଥ ଥାଏ । ଗାନ୍ଧୀଜୀ ମତେ ଡାକିନେଲେ, ତାଙ୍କ ନିଜ ତତ୍ତ୍ୱାବଧାନରେ କସ୍ତୁରବାଙ୍କୁ ଓ ମତେ ତାଙ୍କ ପାଖରେ ବସାଇ ଖୁଆଇଲେ ଏବଂ ଖାଦ୍ୟର ଦ୍ରବ୍ୟଗୁଣ ମଧ୍ୟ ବୁଝାଉଥିଲେ ।

ମୋ ପରି ଏକ ସାଧାରଣ କର୍ମୀ ପ୍ରତି ତାଙ୍କର ଦୟା ଓ ସ୍ନେହରେ ମୁଁ ଅଭିଭୂତ ହୋଇପଡ଼ିଲି । ପୁଣି ସେ ରାଜକୁମାରୀ ଅମୃତକୋଉରଙ୍କ ଉପସ୍ଥିତିରେ ମୋର କେତେକ ପ୍ରଶ୍ନର ଜବାବ ଦେବା ନିମନ୍ତେ ବି ସମୟ ଧାର୍ଯ୍ୟ କଲେ । ଏହି ପ୍ରଶ୍ନଗୁଡ଼ିକ ଓ ତାର ଜବାବ ସବୁ ଅମୃତକାଉର ନୋଟ୍ ରଖିଲେ—ମୁଁ ମଧ୍ୟ ଜବାବଗୁଡ଼ିକ ମୋ ନୋଟ୍‌ବୁକ୍‌ରେ ଟିପି ଆଣିଲି । ଏହି ପ୍ରଶ୍ନୋତ୍ତରରୁ ମୁଁ ଗାନ୍ଧୀଜୀଙ୍କର ମନ କିପରି ବିପ୍ଳବ ଆଡ଼କୁ ଯାଉଛି ତାର ଏକ ଆଭାସ ପାଇଲି । ଏହା ୧୯୪୨ ଅଗଷ୍ଟ ବିପ୍ଳବ ଆରମ୍ଭ ହେବାର ଅଳ୍ପ କେତେ ମାସ ପୂର୍ବର ଘଟଣା । ମୁଁ ପଚାରିଲି—ଯେପରି ଜଣାପଡ଼ୁଛି ଜାପାନୀ ଆସିଗଲେ ତାଙ୍କ ପାଖରେ ଗଡ଼ଜାତ ରାଜାମାନେ ଆତ୍ମସମର୍ପଣ କରିବା ନିମନ୍ତେ ପ୍ରସ୍ତୁତ ହେଉଛନ୍ତି । ଏହା ଘଟିବା ପୂର୍ବରୁ ପ୍ରଜାମଣ୍ଡଳଗୁଡ଼ିକ ଯଦି ରାଜଦରବାର ଦଖଲ କରିନିଅନ୍ତି, ଏହା ଦୋଷାବହ କାର୍ଯ୍ୟ ହେବ କି ? ବର୍ମା ପ୍ରଭୃତି ଅଞ୍ଚଳ ବ୍ରିଟିଶ ଛାଡ଼ିଗଲାବେଳେ ସେ ଅଞ୍ଚଳର ସବୁ ଯେପରି ପୋଡ଼ି ଜାଳି ଦେଇଗଲେ—ଧରନ୍ତୁ କଳିଙ୍ଗ ଅଞ୍ଚଳରେ ଜାପାନୀ ପ୍ରବେଶ ବେଳେ ସେପରି ଧାନ ଅମାର ପ୍ରଭୃତି ଧ୍ୱଂସ କରିଦିଆଯାଇପାରେ । ଧାନ ଅମାରକୁ ଦେଖା ନେଇ ଗ୍ରାମବାସୀ ଚିନ୍ତିତ ଚଳନ୍ତି । ତେଣୁ ଲୋକେ ଯଦି ଏହା ଘଟିବା ପୂର୍ବରୁ ଧାନ ଅମାର ଦଖଲ କରି ବାଣ୍ଟିନିଅନ୍ତି, ଆପଣ ଏଭଳି କାର୍ଯ୍ୟକୁ ସମର୍ଥନ କରିବେ କି ? ଗାନ୍ଧୀଜୀ ମୋର ପ୍ରସ୍ତାବକୁ ସମର୍ଥନ ଜଣାଇନେ ଏବଂ କହିଲେ ଏପରି କାର୍ଯ୍ୟ କଂଗ୍ରେସ ଲୋକଙ୍କ ପକ୍ଷରେ ଏକ ଗୌରବର ବିଷୟ ହେବ—"It will be another feather in the Congress cap"—ଏହା ଥିଲା ତାଙ୍କ କଥା ଯାହା ଆଜି ପର୍ଯ୍ୟନ୍ତ ମୋର ମନେ ଅଛି । ଗାନ୍ଧୀଜୀଙ୍କ ବୈପ୍ଳବିକ ମନ ଏମିତି ଚିନ୍ତା କରୁଥିବାବେଳେ ତାଙ୍କ ଅନୁଚରମାନେ ଯେଭଳି ଅହିଂସାକୁ କଦର୍ଥ କରି ଲୋକଆନ୍ଦୋଳନ ବିରୁଦ୍ଧରେ ଯାଉଥିଲେ, ତାହା ଭାବିଲେ ବିସ୍ମିତ ହେବାକୁ ହୁଏ । ଏଠି ଓଡ଼ିଶାରେ ପ୍ରଜାମଣ୍ଡଳ ଅନ୍ଦୋଳନ ଚାଲୁଥିବାବେଳେ ସେହିପରି ଆଭିମୁଖ୍ୟ ନେଇ ସେମାନେ ସମାଲୋଚନା କରୁଥିଲେ । ସାଧାରଣତଃ ସେମାନଙ୍କଠାରେ ଦୂରଦୃଷ୍ଟିର ଅଭାବ ଥିଲା କିମ୍ବା ସେ ବାଟରେ ଚିନ୍ତା କରିବା ମୁସ୍କିଲ ହେଉଥିଲା । ବିନୋବା ଭାବେଙ୍କ ଚରିତ୍ରରୁ ଏହା ପ୍ରମାଣିତ ହୋଇଗଲା । ଗାନ୍ଧୀଜୀଙ୍କୁ ସେବାଗ୍ରାମରେ ଭେଟିଥିଲାବେଳେ ସେ ମତେ ପରାମର୍ଶ ଦେଲେ ଯେ ତୁମେ ସେବାଗ୍ରାମ ଛାଡ଼ିବା ପୂର୍ବରୁ ବିନୋବାଙ୍କ ସଙ୍ଗେ ଦେଖାକରିଯିବ । ମୋର ତାଙ୍କ ସମ୍ବନ୍ଧରେ ବିଶେଷ କିଛି ଜ୍ଞାନ ନ ଥିଲା—କେବଳ ସେ ପ୍ରଥମ ବ୍ୟକ୍ତିଗତ ସତ୍ୟାଗ୍ରହୀ ହୋଇଥିବାରୁ ଦୁନିଆ ଆଗରେ ପରିଚିତ ହୋଇଥିଲେ । ମୁଁ ପୌନାର ଆଶ୍ରମକୁ ତତ୍ପରଦିନ ସକାଳୁ ଯାଇ

୪୦ ମିନଟ ବିନୋବାଙ୍କ ପାଖରେ କଟାଇଲି । କିଛି ଭଲ ଧାରଣା ନେଇ ଫେରିଲି ନାହିଁ କିମ୍ବା ବେଶି ସମୟ ସେଠି କଟାଇ ପାରିଲି ନାହିଁ । ସେହିଦିନଠୁ ବିନୋବାଙ୍କ ପ୍ରତି ମୋର ସେପରି ଶ୍ରଦ୍ଧା ନ ଥିଲା ।

ଗାନ୍ଧୀଜୀଙ୍କ ମନ ସମୟ ଅନୁସାରେ ଗତି କରୁଥିଲା । ସେ ଲୋକଙ୍କ ନାଡ଼ି ଚିପି ପାରୁଥିଲେ । ଆଗରେ ଯେଉଁ ଅଶାନ୍ତ ଝଡ଼ ବୋହିବ ସେଥିଲାଗି ସତେ କି ତାଙ୍କ ମନ ତୋଫାନୀ ବେଗରେ ଗତି କରୁଥିଲା । "ହରିଜନ" କାଗଜରେ ଆନ୍ତର୍ଜାତିକ ଯୁଦ୍ଧ ସମ୍ବନ୍ଧରେ ଲେଖି ଲେଖି ତହିଁ ସହ ଭାରତ ସମସ୍ୟାକୁ ଏମିତି ଭାବରେ ଆଣି ଯୋଡ଼ିଦେଉଥିଲେ ଯେ ସେଥିରେ ଦେଶର ଦୃଷ୍ଟିକୋଣ ବଦଳି ଯାଉଥିଲା ଏବଂ ଜନମତ ନିର୍ଦ୍ଦିଷ୍ଟ ବାଟରେ ଗତି କରୁଥିଲା । ଫାସିଷ୍ଟବାଦର ଜୋକୁଆ ଡର ହେତୁ ଆମର ଜାତୀୟ ନେତୃବର୍ଗ ଜାତୀୟ ସରକାର ସ୍ଥାପିତ ହେଲେ ବ୍ରିଟିଶ ସରକାର ସହିତ ଯୁଦ୍ଧ ଉଦ୍ୟମରେ ସାହାଯ୍ୟ କରାଯାଇ ପାରିବ ବୋଲି ପ୍ରସ୍ତାବ ଦେଇଥିଲେ । କିନ୍ତୁ ଗାନ୍ଧୀଜୀଙ୍କର ସେଥିରେ ସହଯୋଗ ନଥିବା ହେତୁ ତାହା ସଫଳ ହୋଇ ପାରିଲା ନାହିଁ । ଶେଷକୁ ପୁଣି ଗାନ୍ଧୀଜୀଙ୍କ ପାଖକୁ ଫେରିବାକୁ ପଡ଼ିଲା ।

ଏହା ପରେ ବସେ ସେହି ଐତିହାସିକ ୧୯୪୨ ଅଗଷ୍ଟ ୮ ତାରିଖରେ ବମ୍ବେଠାରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ । ଲୋକମନ ଅସ୍ଥିର, ଚଞ୍ଚଳ, ଉଦ୍‌ବେଗଭରା । ଯୁଦ୍ଧ ବିଭୀଷିକାର ଭୟାବହ ବିବରଣୀ ମନକୁ ବିଚଳିତ କରୁଥିଲା । ଶତ୍ରୁ ଓ ମିତ୍ରପକ୍ଷ ଦୁହେଁ ନିଜ ଆସ୍ଥାନ ଦୃଢ଼ କରିବାରେ ବ୍ୟଗ୍ର । ସାମ୍ରାଜ୍ୟବାଦୀ ଶକ୍ତିଗୁଡ଼ିକ ପାଖରେ କରଗତ ଥିବା ଦେଶଗୁଡ଼ିକ ଯେମିତି କଣ୍ଟକସ୍ୱରୂପ ତାଙ୍କଠି ବିଦ୍ଧ ହୋଇଥାଆନ୍ତି—କଣ୍ଟକ କାଢ଼ିଦେଇ-ଥିଲେ ଲଢ଼େଇ ମଇଦାନରେ ପୂରା ଶକ୍ତି ଓ ଦମ୍ ଲଗାଇପାରନ୍ତେ । ମାତ୍ର ସହଜେ କ'ଣ କିଏ ଛାଡ଼େ ? ଚର୍ଚ୍ଚିଲ କହିଥିଲେ, "ମୁଁ ବ୍ରିଟିଶ ସାମ୍ରାଜ୍ୟବାଦର ବିଲୋପ ସାଧନ ନିମନ୍ତେ ପ୍ରଧାନମନ୍ତ୍ରୀ ହୋଇନାହିଁ ।" ତେଣୁ ମିତ୍ରପକ୍ଷ ଯୁଦ୍ଧରେ ବ୍ରିଟିଶର ଆଭିମୁଖ୍ୟ ହେଲା ବ୍ରିଟିଶ ସାମ୍ରାଜ୍ୟବାଦର ରକ୍ଷା ।

ଗାନ୍ଧୀଜୀଙ୍କର ସେଭଳି ବଳିଷ୍ଠ ଓ ଯୋଗ୍ୟ ନେତୃତ୍ୱର ପରିଚୟ ଏତିକିବେଳେ ମିଳିଲା । ସେ ତାଙ୍କ ଅହିଂସ ଓ ସହିଷ୍ଣୁତା ଗୁଣରେ ନିଜର ସହକର୍ମୀଙ୍କ ଉପରେ କୌଣସି କଥା ଲଦି ଦେଇନଥିଲେ । ଯେତେବେଳେ ବ୍ରିଟିଶ ସରକାରକୁ ପୁଣି ଏକ ସୁଯୋଗ ଦେବା ନିମନ୍ତେ କଂଗ୍ରେସ ନେତୃମଣ୍ଡଳୀ ସ୍ଥିର କଲେ, ସେ ସେଥିରେ ବାଧା ଦେଲେ ନାହିଁ; ବରଂ ଅପସରି ଯାଇ ସେମାନଙ୍କୁ ତାଙ୍କ ବାଟରେ ଯିବାଲାଗି ସୁଯୋଗ ଦେଲେ । ମାତ୍ର ତାହା ଥିଲା ଏକ ବ୍ୟର୍ଥ ପ୍ରଚେଷ୍ଟା । କୌଣସି ସାମ୍ରାଜ୍ୟବାଦୀ ଶକ୍ତି କେବେ ନିତାନ୍ତ ପରିସ୍ଥିତିର ଚାପରେ କ୍ଷମତା ଛାଡ଼େ ନାହିଁ—ଭାରତରେ ଅନ୍ୟଥା କେମିତି ହୋଇଥାନ୍ତା ? ଅହିଂସ ସଂଗ୍ରାମରେ ଲୋକଙ୍କ ସ୍ୱେଚ୍ଛାକୃତ ଯୋଗଦାନ ନ ହେଲେ ଆବଶ୍ୟକୀୟ ତ୍ୟାଗ ଓ କଷ୍ଟ ସହିବା ଲାଗି ପ୍ରେରଣା ଜାତ ହୁଏ ନାହିଁ । ଗାନ୍ଧୀଜୀ ବୋଧହୁଏ ସେଥିଲାଗି ବଡ଼ ସଚେତନ ଥିଲେ ଏବଂ

କଂଗ୍ରେସର ନେତୃମଣ୍ଡଳୀ ନିହାତି ଅବସ୍ଥାଚକ୍ରରେ ନପଡ଼ିଲେ ତାଙ୍କଠାରୁ ସମୁଚିତ ସହଯୋଗ ଓ ଆତ୍ମତ୍ୟାଗ ମିଳିପାରିବ ନାହିଁ ବୋଲି ଜଣାପଡ଼ୁଥିଲେ । ଶେଷ ଏହି କେତେ ବର୍ଷ ଭିତରେ ଫାସିଜିମ୍ ଓ ସ୍ୱାଧୀନତା ମଧ୍ୟରେ ଯେଉଁ ମାନସିକ ଦ୍ୱନ୍ଦ୍ୱ ଗାନ୍ଧୀଜୀଙ୍କ ମନକୁ ଆନ୍ଦୋଳିତ କରୁଥିଲା, ସେପରି ଜଞ୍ଜାଳରୁ ସେମାନଙ୍କୁ ମୁକ୍ତ କରାଇଥିଲେ । ୧୯୪୨ ଅଗଷ୍ଟ ୮ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ବମ୍ବେଠାରେ ହେବାବେଳକୁ ଏକ ବିରାଟ ଝଡ଼ ସୃଷ୍ଟି ହେବାର ପୂର୍ବାଭାସ ଯେପରି ମିଳିସାରିଥିଲା ।

## ୟୁସୁଫ ମେହେରଲୀ

ଜୟପ୍ରକାଶ ନାରାୟଣ ତ ଆଗରୁ ଜେଲ୍ ଭିତରେ ଥିଲେ । କଂଗ୍ରେସ ସୋସଲିଷ୍ଟ ପାର୍ଟି ପୂର୍ଣ୍ଣମାତ୍ରାରେ ଗାନ୍ଧୀଜୀଙ୍କୁ ସମର୍ଥନ ଜଣାଉଥିଲା । ନିଖିଳ ଭାରତ କଂଗ୍ରେସ କମିଟି ବୈଠକ ପୂର୍ବରୁ କଂଗ୍ରେସ ସୋସଲିଷ୍ଟ ପାର୍ଟିର ଏକ କାର୍ଯ୍ୟକାରୀ ସମିତି ବୈଠକ ବମ୍ବେଠାରେ ବସିଥିଲା । ମୁଁ ଓ ମାଳତୀ ଚୌଧୁରୀ ବମ୍ବେ ଗଲୁ—ନବବାବୁ ଯାଇପାରିଲେ ନାହିଁ— ମୋ ହାତରେ ଉତ୍କଳର ନେତାଆଙ୍କ ପାଖକୁ ଏକ ପତ୍ର ଦେଲେ ଏବଂ ପ୍ରତ୍ୟକ୍ଷ ଜନସଂଗ୍ରାମ ଏକମାତ୍ର ପନ୍ଥା ବୋଲି ତାଙ୍କ ମତ ଜଣାଇଦେଲେ । ଆମର ସବୁ ପ୍ରାଥମିକ ବୈଠକ ୟୁସୁଫ ମେହେରଲୀଙ୍କ ଘରେ ବସୁଥିଲା । ସେ ସେତେବେଳକୁ ବମ୍ବେର ମେୟର ଥିଲେ । ଅତି ମିଷ୍ଟଭାଷୀ, ଦକ୍ଷ ଓ ଲୋକପ୍ରିୟ ସାଥୀ । ଆମମାନଙ୍କ ସହ ଯେପରି ମମତା ଓ ଶ୍ରଦ୍ଧା, ସେହିପରି ସରକାରୀ ଉପର ମହଲରେ ତାଙ୍କର ଖୁବ୍ ଗୂଢ଼ ସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା ବମ୍ବେର ମେୟର ହୋଇଥିବା ଯୋଗୁଁ ।

ସୋସଲିଷ୍ଟଙ୍କ ଭିତରେ ୟୁସୁଫ ମେହେରଲୀଙ୍କ ପରି କର୍ମକ୍ଷମ, ସ୍ପଷ୍ଟବାଦୀ, ବାଗ୍ମୀ, ଦରଦୀ, ଲୋକପ୍ରିୟ ଓ ସାହସୀ ସାଥୀ ବିରଳ । ପ୍ରକୃତ ସମାଜବାଦୀ ଆଚରଣ ତାଙ୍କଠି ପ୍ରତିଫଳିତ ହେଉଥିଲା । ଏକ ସମୟରେ ଭାରତୀୟ ଯୁବ ସମାଜର ସେ ଥିଲେ ଅଗ୍ରଗାମୀ ନେତା । ତାଙ୍କର ଶାରୀରିକ ଅସୁସ୍ଥତା ସୋସଲିଷ୍ଟ ଆନ୍ଦୋଳନର ପ୍ରଗତିରେ ଏକ ପ୍ରଧାନ ଅନ୍ତରାୟ ହେଲା । ସେ ମୋର ଅତି ଦରଦୀ ବନ୍ଧୁ ଥିଲେ । ଏକା ମୁଁ କାହିଁକି, ତାଙ୍କ ସହିତ ପରିଚିତ ସବୁ ସୋସଲିଷ୍ଟ ସାଥୀଙ୍କର ତାଙ୍କ ପ୍ରତି ଏହିଭଳି ମନୋଭାବ ନିଶ୍ଚୟ ରହିଥିବ । ଆମେମାନେ ୧୯୪୨ ଆନ୍ଦୋଳନରେ ଜେଲରେ ରହିଲୁ; କିନ୍ତୁ ଭୀଷଣ ବେମାର ଯୋଗୁଁ ମେହେରଲୀ ଖଲାସ ହୋଇଥିଲେ । ମୁଁ କୋରାପୁଟ ଜେଲରେ ନିର୍ଜନ କାରାବାସରେ ରହିଥିଲି । ମତେ କାହାରି ସହ ମିଶିବାକୁ ଦିଆଯାଉ ନଥିଲା କିମ୍ବା 'ହିନ୍ଦୁ' କାଗଜ ଛଡ଼ା ଅନ୍ୟ କୌଣସି ସମ୍ବାଦପତ୍ର ପଢ଼ିବାକୁ ଦିଆଯାଉ ନଥିଲା । ହଠାତ୍ ଦିନେ ଜେଲ କର୍ତ୍ତୃପକ୍ଷ ମତେ ଆଣିଦେଲେ ଏକ ଉର୍ଦ୍ଦୁ-ଇଂରେଜୀ ଡିକ୍ସନାରୀ, ଉର୍ଦ୍ଦୁ ପ୍ରାଇମର ବହି ୨।୪ ଖଣ୍ଡ ଏବଂ ସାକ୍ଷରତା ପ୍ରସାରଲାଗି ବମ୍ବେରୁ ପ୍ରକାଶ ପାଉଥିବା ଏକ ଉର୍ଦ୍ଦୁ ପାକ୍ଷିକ "ରହବର" । ମୁଁ ବିସ୍ମିତ ହୋଇଗଲି । କେଉଁଠୁ କିପରି ଆସିଲା କେହି କିଛି ଜଣାଇଲେ ନାହିଁ—ମାତ୍ର ପୁସ୍ତକ ଖୋଲି ଦେଖିଲି ସେଥିରେ ୟୁସୁଫଙ୍କର ଦସ୍ତଖତ ରହିଥିଲା । ଇଂରେଜ ସରକାର ମତେ ପୁସ୍ତକ ପଢ଼ିବାକୁ ଦେଉ-

ନାହାନ୍ତି ବୋଲି ସେ କିପରି ଜାଣିଲେ ଏବଂ ମୋର କୋରାପୁଟ ଅବସ୍ଥାନ ସଂବାଦ ତାଙ୍କୁ କିପରି ମିଳିଲା, ମୁଁ ପରେ ଆଉ ପଚାରିବା ସୁବିଧା ପାଇ ନାହିଁ । ମୁଁ ସେଥିରେ ଉର୍ଦ୍ଦୁ ଶିଖିବା ନିମନ୍ତେ ଚେଷ୍ଟାରେ ବେଶ୍ ସମୟ କଟାଇପାରିଲି । ପରେ ସଂବାଦ ପାଇଲି ସେ ଏମିତି ଭାରତର ବିଭିନ୍ନ ଜେଲରେ ବନ୍ଦୀ ଥିବା ସାଥିମାନଙ୍କ ପାଇଁ ଯେଉଁ ଜେଲ ଯେଉଁଠି ଯେମିତି ପୁସ୍ତକକୁ ଅନୁମତି ଦେବ ଜାଣି ବହି ଯୋଗାଉଥିଲେ । ନିତାନ୍ତ ଅସୁସ୍ଥ ଅବସ୍ଥାରେ ଶଯ୍ୟାଗତ ରହି ଏପରି କରିବା ଖୁବ୍ କମ୍ ଲୋକଙ୍କ ପକ୍ଷରେ ସମ୍ଭବ । ପରେ ତାଙ୍କର ମୃତ୍ୟୁ ସେହି ଅସୁସ୍ଥତା କାରଣରୁ ଘଟିଲା ଏବଂ ଭାରତୀୟ ସମାଜବାଦୀ ଆନ୍ଦୋଳନର ଏକ ପ୍ରଧାନ ଖୁଣ୍ଟ ଖସି ପଡ଼ିଲା । ବମ୍ବେର ସାଥିମାନେ ତାଙ୍କର ସ୍ମୃତି ଜାଗରୂକ ରଖିବା ନିମନ୍ତେ "ୟୁସୁଫ୍ ମେହେରଅଲ୍ଲୀ ସେଣ୍ଟର" ନାମକ ଶିକ୍ଷା ଓ ସାଂସ୍କୃତିକ କେନ୍ଦ୍ର ସ୍ଥାପନ କରି ଏକ ମହତ୍ କାର୍ଯ୍ୟ କରିଛନ୍ତି ।

ଆମ ବୈଠକରେ ସ୍ଥିର କରାଗଲା ପ୍ରତ୍ୟକ୍ଷ ସଂଗ୍ରାମ ମୂଳକ ପ୍ରସ୍ତାବକୁ ସମର୍ଥନ କରାଯିବ ଏବଂ ଗାନ୍ଧୀଜୀଙ୍କ ନେତୃତ୍ୱ ଦିଆଯିବ । କମ୍ୟୁନିଷ୍ଟମାନେ ସେତେବେଳକୁ କଂଗ୍ରେସ କମିଟିର ମେମ୍ବର ଥିଲେ । ତାଙ୍କର ଚକ୍ରାନ୍ତକୁ ପଣ୍ଡ କରିବା ନିମନ୍ତେ ଗାନ୍ଧୀଜୀଙ୍କ ନେତୃତ୍ୱହିଁ ଆବଶ୍ୟକ ଏବଂ ଏହା ଲୋକମନରେ ବୁଦ୍ଧିଭେଦ ସୃଷ୍ଟି କରିବାର ଚାଲକୁ ପଦାରେ ପକାଇଦେବ । ମୋର ଯେତେଦୂର ସ୍ମରଣ ରହିଛି, ଏହି ବୈଠକରେ ମିନୁ ମସାନୀ, ଅଶୋକ ମେହେତା, ଅଚ୍ୟୁତ ପଟ୍ଟବର୍ଦ୍ଧନ, ରାମନନ୍ଦନ ମିଶ୍ର, ଏନ୍. ଜି. ଗୋରେ, ଏସ୍. ଏମ୍ ଜୋଶୀ, ମଣୀନ୍ଦ୍ରଜିନ ହ୍ୟାରିସ, ପୁରୁଷୋତ୍ତମ ତ୍ରିକମ୍ ଦାସ, ଗଙ୍ଗା ଶରଣ ସିଂ, ପି. ୱାଇ ଦେଶପାଣ୍ଡେ, ମାସ-କାରିନ୍ସ, ଜେ. ବି. ମେନନ୍, କେ. କେ. ମେନନ୍, ପୂର୍ଣ୍ଣିମା ବାନାର୍ଜି, ମୁନସି ଅହମଦ୍ ଦୀନ୍, ଶିବନାଥ ବାନାର୍ଜୀ ପ୍ରମୁଖ ଉପସ୍ଥିତ ଥାଆନ୍ତି । ଆଚାର୍ଯ୍ୟ ନରେନ୍ଦ୍ର ଦେବ ସେବାଗ୍ରାମରେ ଗାନ୍ଧୀଜୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହି ଚିକିତ୍ସିତ ହେଉଥାଆନ୍ତି । ସେ ଏ ବୈଠକକୁ ଆସିପାରିଥିଲେ କି ନା ମୋର ସ୍ପଷ୍ଟ ଧାରଣା ନାହିଁ । ମାତ୍ର ତାଙ୍କ ମତ ଜଣାଥିଲା । ୟୁସୁଫ ମେହେରଅଲ୍ଲୀ ଗାନ୍ଧୀଜୀଙ୍କ ସହ ପ୍ରତ୍ୟକ୍ଷ ସଂପର୍କ ରଖିଥିଲେ—ଉଚ୍ଚ ସରକାରୀ ମହଲର ମନ୍ତ୍ରଣା ସମ୍ବନ୍ଧରେ ଯାହା ସଂବାଦ ପାଉଥିଲେ, ଗାନ୍ଧୀଜୀଙ୍କୁ ଜଣାଉଥିଲେ । ତାଙ୍କୁ ସୂଚନା ମିଳିଥିଲା ଯେ ସଂଘର୍ଷ ଅବଶ୍ୟମ୍ଭାବୀ । ନିଖିଳ ଭାରତ କଂଗ୍ରେସ କମିଟି ସଭ୍ୟମାନଙ୍କ ଭିତରେ ଆହୁରି ଆଗ୍ରହ ସୃଷ୍ଟି କରିବା ନିମନ୍ତେ ସେ 'ହରିଜନ'ର ବିଭିନ୍ନ ସଂଖ୍ୟାରୁ ଲେଖା ସଂଗ୍ରହ କରି ' Quit India" (ଭାରତ ଛାଡ଼) ନାମକ ଏକଟଙ୍କା ମୂଲ୍ୟର ଏକ ପୁସ୍ତିକା ଛପାଇଲେ । ଆମ ସମସ୍ତଙ୍କର ଉଦ୍ୟମ ଥାଏ କେମିତି ସବୁ ନିଖିଳ ଭାରତ କଂଗ୍ରେସ କମିଟି ସଭ୍ୟଙ୍କ ହାତରେ ଗୋଟିଏ ଲେଖାଁ କପି ପହଞ୍ଚାଇବା । ସେହି ବୈଠକରେ ଏହା ମଧ୍ୟ ପ୍ରକାଶ ପାଇଲା ଯେ ଆମକୁ କେତେ ଘଣ୍ଟା ଭିତରେ ଅନିଶ୍ଚିତତା ସୃଷ୍ଟି ହୋଇ ଯାଇ ପାରେ । ତେଣୁ ନିଖିଳ ଭାରତ କଂଗ୍ରେସ କମିଟି ବୈଠକ ଯେତେ ରାତିରେ ସରୁ ପଛକେ, ଆମେ ପୁଣି ମେହେରଅଲ୍ଲୀଙ୍କ ଘରେ ଏକାଠି ହେବା ।

---

## ୪ । ଭାରତ ଛାଡ଼ ଆନ୍ଦୋଳନ

ଏଭଳି ସବୁ ସୂଚନା ପାଇ ମୁଁ ଓ ମାଳତୀ ଚୌଧୁରୀ ହରେକୃଷ୍ଣ ମହତାବଙ୍କ ପାଖକୁ ଗଲୁ ଗାନ୍ଧୀଜୀ ଇତ୍ୟାଦି କେମିତି ଚିନ୍ତା କରୁଛନ୍ତି, ସେ ବିଷୟରେ କାଲେ କଂଗ୍ରେସ କାର୍ଯ୍ୟକାରୀ ସମିତି ବା ଅନ୍ୟତ୍ର ଆଲୋଚନା ହୋଇଥିବ, ତାହାର ସୂଚନା ପାଇବା ନିମନ୍ତେ । ପରିସ୍ଥିତି ହୁଏତ ଆମକୁ ବାଧ୍ୟ କରିପାରେ କୌଣସି ଗୁପ୍ତ ସଙ୍ଗଠନ କରିବା ନିମନ୍ତେ । ମହତାବବାବୁ ଆମ କଥାକୁ ପସନ୍ଦ କଲେ ନାହିଁ ଏବଂ ଏକପ୍ରକାର ଭର୍ତ୍ସନା କଲେ କହିଲେ ହେବ । ଯାହାସବୁ ଯେ ନିଷ୍ପତ୍ତି ହେବ ସେ ହୁଏତ ସେପରି ଖୁବୁ ନ ଥିଲେ ।

### କର ବା ମର ପ୍ରସ୍ତାବ ପାସ୍

ସନ୍ଧ୍ୟାବେଳେ ନିଖିଳ ଭାରତ କଂଗ୍ରେସ କମିଟି ବୈଠକରେ ବହୁ ଆଲୋଚନା ପରେ 'ଭାରତ ଛାଡ଼' ପ୍ରସ୍ତାବ ପାସ୍ ହୋଇଗଲା । ଗାନ୍ଧୀଜୀ ପରିଷ୍କାର ଘୋଷଣା କଲେ—ପଛକେ ଭାରତୀୟ ଡକାୟତ ହାତରେ ଦେଶ ଗ୍ରାସିତ ହଉ—ମାତ୍ର ଇଂରେଜଙ୍କୁ ଆମେ ଆଉ ବରଦାସ୍ତ କରିବୁ ନାହିଁ—ଏହି ମୁହୂର୍ତ୍ତରୁ ବ୍ରିଟିଶ ତୁମେ ବିଦାୟ ନିଅ । ଇଂଲଣ୍ଡର ମାଗ୍ନାକାର୍ଟା ପରି ଭାରତର ଅନ୍ତିମ ସ୍ୱାଧୀନତା ଲଢ଼ାଇର ବ୍ରିଟିଶ ସରକାରକୁ ଏହା ଏକ ନିର୍ଭୁଲ ଶେଷ ଆହ୍ୱାନ—ଆମେ ହୁଏତ ସ୍ୱାଧୀନତା ହାସଲ କରିବୁ ନଚେତ୍ ମରିବୁ । ଗାନ୍ଧୀଜୀ କହିଲେ, "Do or die"—କର ବା ମର । ଆହୁରି ମଧ୍ୟ କହିଲେ, ମୁଁ ସାଙ୍ଗେ ସାଙ୍ଗେ ଲଢ଼ାଇ ଡାକରା ଦେଉନାହିଁ । ଭାଇସ୍‌ରାୟଙ୍କ ସହ ଶେଷ ସାକ୍ଷାତର ଉଦ୍ୟମ କରିବ । ସତ୍ୟାଗ୍ରହୀ ସର୍ବଦା ଶତ୍ରୁପକ୍ଷକୁ ସୁଯୋଗ ଦେବାକୁ ଚାହେଁ ; ତାର ଅସୁବିଧା ଓ ଦୁର୍ବିପାକର ସୁବିଧା ଉଠାଇବା ସତ୍ୟାଗ୍ରହୀର କାର୍ଯ୍ୟ ନୁହେଁ । କେବଳ କେତେକ କମ୍ୟୁନିଷ୍ଟ ସଦସ୍ୟଙ୍କ ଛଡ଼ା ସମସ୍ତେ ପ୍ରସ୍ତାବ ସପକ୍ଷରେ ଭୋଟ ଦେଲେ ଏବଂ ଗାନ୍ଧୀଜୀଙ୍କ ହାତରେ ସମସ୍ତ କ୍ଷମତା ଅର୍ପଣ କରାଗଲା ।

ମିଟିଂ ସରୁ ନ ସରୁଣୁ ଆମକୁ ଖବର ହେଲା ପୁଣି ୟୁସୁଫ ମେହେରଲୀଙ୍କ ଘରକୁ ଯିବା ନିମନ୍ତେ । ସେଠି ଆଉ କିଛି ବିଚାର ହେବାର ନ ଥିଲା । ମେହେରଲୀ କହିଲେ ଆଜି ରାତି ଭିତରେ ଯାହା ହେବାର ହୋଇଯିବ । ଆମ ଭିତରୁ କେତେକଙ୍କୁ ପ୍ରଥମ ଦଫାରେ ହିଁ ଗିରଫ ହେବାକୁ ପଡ଼ିବ, କାରଣ ଅହିଂସ ସଂଗ୍ରାମରେ ନେତୃସ୍ଥାନୀୟ ଲୋକେ ପ୍ରଥମରୁ ଆଗୁଆ ନ ହେଲେ ନିରାଶା ଭାବ ଆସିବ । ତେଣୁ କିଏ କିଏ ଜେଲ୍ ଯିବା ଉଚିତ, ସେମାନଙ୍କ ନାମ ଉଠାଇଲେ । ତା'ପରେ ଯେଉଁମାନେ ବାହାରେ ରହିବେ ସେମାନେ କିଭଳି ଗୁପ୍ତ ସଙ୍ଗଠନ କରିବେ ଓ କେନ୍ଦ୍ର ଅଫିସ ସହ ସମ୍ପର୍କ ରଖିବେ ଏ ବିଷୟରେ ମଧ୍ୟ କିଛି ବିଚାର

ହେଲା । ଆମେ ମୋଟାମୋଟି ଗିରଫ ନ ହୋଇ ଗୋପନୀୟ ଭାବରେ ସାରା ଦେଶରେ ଆନ୍ଦୋଳନ ଜାରି ରଖିବାର ସିଦ୍ଧାନ୍ତ ସେଇଠି କରି ଆସିଲୁ । ସମସ୍ତେ ଅନୁଭବ କଲୁ—ଏ ଲଢେଇ ହେବ ଶେଷ ଲଢେଇ ଏବଂ ଏଥର ଇଂରେଜ ଶାସନକୁ ହଟାଇବାର ମଉକା ହରାଇବା ଉଚିତ ନୁହେଁ । ଏତକରେ ଆମେ ଯେତେ ଶୀଘ୍ର ସମ୍ଭବ ସେଠୁ ଯେ ଯାହା ଆଡ଼େ ବିଦାୟ ନେଲୁ—ମୁଁ ଓଡ଼ିଶାରେ ପୁଲିସ ଦୃଷ୍ଟିର ଅନ୍ତରାଳରେ ରହି ଆନ୍ଦୋଳନ ଚଳାଇବା କଥା ସ୍ଥିର ହେଲା ।

## 'କର ବା ମର'

ତପରଦିନ ସକାଳୁ ବିରଲାଭବନରେ ଆମର ଗାନ୍ଧୀଜୀଙ୍କୁ ଭେଟିବାର କାର୍ଯ୍ୟକ୍ରମ ରହିଥିଲା । ଏଥିରୁ ବୁଝାଯିବ ଯେ ଗାନ୍ଧୀଜୀ ମଧ୍ୟ ହଠାତ୍ ଗିରଫ ହେବାର ଆଶଙ୍କା ବୋଧହୁଏ କରୁ ନ ଥିଲେ । ନିଖିଳ ଭାରତ କଂଗ୍ରେସ କମିଟିର ଆଉ କେତେକ ସଭ୍ୟଙ୍କ ସହ ଆମେ ଏକ ହୋଟେଲରେ ରହୁଥିଲୁ । ସକାଳୁ ନିର୍ଦ୍ଧାରିତ ସମୟରେ ବସ୍ ଆସିବାରୁ ଆମେ ବାହାରିଲୁ ବିରଲାଭବନ । ଟେଲିଫୋନ୍, ଇଲେକ୍‌ଟ୍ରିକ୍ ଆଦି କଟା ହୋଇ ଯାଇଥିବାରୁ ଗିରଫ ଆଦି ସମ୍ବାଦ ଆମକୁ ଜଣା ନ ଥାଏ । ବେଶିଦୂର ଯିବା ସମ୍ଭବ ହେଲା ନାହିଁ । ରାସ୍ତାରେ ଲୋକେ ଗାଡ଼ି ଅଟକାଇଲେ—ଦୋକାନ ବଜାର ବନ୍ଦ । ଗାନ୍ଧୀଜୀ ଆମରଣ ଅନଶନ କରିଛନ୍ତି ଏବଂ ଗିରଫ ହୋଇ ଯାଇଛନ୍ତି ବୋଲି ପ୍ରଚାର ହେଲା । ଆମେ ବସ୍‌ରୁ ଓହ୍ଲାଇ ଚାଲି ଚାଲି ବିରଲାଭବନରେ ପହଞ୍ଚିଲା ବେଳକୁ ଗାନ୍ଧୀଜୀ ରାତିରୁ ଗିରଫ ହୋଇ ଯାଇଥିଲେ—କେବଳ ତାଙ୍କ ସେକ୍ରେଟେରୀ ପିଆରେଲାଲ ଥାଆନ୍ତି । ସେ ଆମ ହାତକୁ ଖଣ୍ଡିଏ ଷ୍ଟେନ୍‌ସିଲ୍ ଟାଇପ୍ ହୋଇଥିବା କାଗଜ ବଢାଇଦେଲେ । ତାକୁ ପ୍ରାୟ ମୁଖସ୍ଥ କରିଥିଲି—ମାତ୍ର ୬/୭ ଧାଡ଼ି । ତାର ମର୍ମ ହେଲା—"ସରକାରକୁ ଅଚଳ କର । ଆମେ ଆଜଠୁଁ ସ୍ୱାଧୀନ । ନିଜେ ନିଜର ନେତା ହୁଅ । କର ବା ମର ।" ଏତକରେ ସାରା ବିପ୍ଳବର ମର୍ମ ଓ ସ୍ଲୋଗାନ ରହିଥିଲା । ଆମେ ବିଚାରିଲୁ ଗାନ୍ଧୀଜୀ ଏତକ ଲେଖି ରଖିଯାଇଥିଲେ । ସାଙ୍ଗେ ସାଙ୍ଗେ ବାହାରି ଆସିଲୁ । ମୁଁ ସେହି ବମ୍ବେରୁ ଏହାର ଓଡ଼ିଆ ଅନୁବାଦ କରି ସବୁ ଜିଲା କଂଗ୍ରେସ କମିଟି ଠିକଣାରେ ଓଡ଼ିଶାକୁ ପଠାଇଦେଲି । ସବୁଠିଁ ତାହା ପହଞ୍ଚିଥିଲା କି ନାହିଁ ମତେ ଜଣାନାହିଁ । ତେବେ ପରେ ଶୁଣିଲି କୋରାପୁଟରେ ଲକ୍ଷ୍ମଣ ନାୟକ ବିଦ୍ରୋହ କଲେ । ସେ ଏହିପରି ଚିଠାଉ ଆସିଥିବାର ସଂବାଦ ପାଇ ଆଉ ରାଜସରକାର ମାନିବୁ ନାହିଁ ଗାନ୍ଧୀ ରାଜା ହୋଇଗଲେ ବୋଲି ଘୋଷଣା କଲେ । ଏ ଚିଠିରେ ମୁଁ କାହାର ନାମ ଲେଖି ନ ଥିଲି—କେବଳ ଉପରେ ଲେଖିଦେଇଥିଲି—"କର ବା ମର" ।

ବମ୍ବେଠାରେ କଂଗ୍ରେସ କାର୍ଯ୍ୟକାରୀ ସମିତି ସଭ୍ୟଙ୍କୁ ଗିରଫ କରି ନେଇଗଲେ । ମାତ୍ର ପ୍ରାଦେଶିକ ନେତାମାନଙ୍କୁ ତାଙ୍କ ନିଜ ନିଜ ସ୍ଥାନରେ ପହଞ୍ଚିଲା ମାତ୍ରେ ଗିରଫ କରାଯାଉଥିଲା । ୧୯୪୨ ଭାରତ ଛାଡ଼ ଆନ୍ଦୋଳନରେ ମୋର କାର୍ଯ୍ୟ ସମ୍ବନ୍ଧରେ ମୁଁ "ଅଗଷ୍ଟ ବିପ୍ଳବ" ନାମକ ଏକ ପୁସ୍ତକ ଲେଖିସାରିଛି ଏବଂ ତାହା "ଗ୍ରନ୍ଥ ମନ୍ଦିର" କଟକଙ୍କ

ଦ୍ୱାରା ପ୍ରକାଶିତ ହୋଇଛି—ତାହାର ବିଶେଷ ଉଲ୍ଲେଖର ଏଠାରେ ପ୍ରୟୋଜନୀୟତା ନାହିଁ। ସାରା ଭାରତରେ କେମିତି କଭଳି ଏ ବିପ୍ଳବ ବ୍ୟାପିଲା ଏବଂ ତାର ପରବର୍ତ୍ତୀ ଘଟଣାବଳୀ ସମ୍ବନ୍ଧରେ ବହୁ ପୁସ୍ତକ, ଅଧ୍ୟୟନ ଓ ଗବେଷଣା ବିଭିନ୍ନ ଭାଷାରେ ପ୍ରକାଶ ପାଇସାରିଛି। ସେଗୁଡ଼ିକର ପୁନରାବୃତ୍ତି ଅନାବଶ୍ୟକ। କିଞ୍ଚିତ୍ ଆଭାସ ମାତ୍ର ଦେଉଛି।

ଯେତେବେଳେ ସ୍ଥିର ହେଲା ମୁଁ ଓ ମାଳତୀ ଦେବୀ ଓଡ଼ିଶା ଫେରିବୁ—ମାଳତୀ ଦେବୀ ଗୋପନରେ ରହିବା ସମ୍ଭବ ନୁହେଁ—ସେ ପହଞ୍ଚି ଗୋଟାଏ କିଛି ପ୍ରକାଶ୍ୟ ସଭା ଇତ୍ୟାଦିରେ ଭାଗ ନେଇ ଗିରଫ ହେବେ ଏବଂ ମତେ ଅନ୍ତରାଳରେ ରହି ଭାରତ ଛାଡ଼ ଆନ୍ଦୋଳନର ଗୁପ୍ତ ସଙ୍ଗଠନ ଚଳାଇବାକୁ ପଡ଼ିବ। ମୋ ଦେହରେ ସତେ କି ବିଜୁଳି ବେଗରେ ଶକ୍ତି ପ୍ରବେଶ କଲା। ବ୍ରିଟିଶ ସହିତ ଶେଷ ସଂଗ୍ରାମ—ଓଡ଼ିଶାରେ ମୁଁ ହେବି ତାହାର ସଙ୍ଗଠକ! ପୁଣି ହିଂସାର ନୁହେଁ, ଶାନ୍ତିପୂର୍ଣ୍ଣ ବିଦ୍ରୋହ! ଏହା ଏକ ଚ୍ୟାଲେଞ୍ଜ—ମହାତ୍ମା ଗାନ୍ଧୀ କହିଯାଇଛନ୍ତି ପ୍ରତ୍ୟେକ ସତ୍ୟାଗ୍ରହୀ ନିଜେ ନିଜର ନେତା ହେବେ। ମୁଁ ନେତା ହେବି ଏବଂ ବିପ୍ଳବ ଚାଳନା କରିବି ଏପରି ଏକ ଭାବ ମୋ ମନରେ ଖେଳିଲା। କି ଧରଣର କାମ କରିବାକୁ ହେବ, ସେଥିଲାଗି କିଛି ନିର୍ଦ୍ଦେଶ କେହି ଦେଇ ନ ଥିଲେ କିମ୍ବା ସଙ୍ଗଠନ କରିବା ନିମନ୍ତେ କିଛି ଆର୍ଥିକ ସାହାଯ୍ୟ ବି ମିଳିନଥିଲା।

## ବମ୍ବେରୁ ଭୁବନେଶ୍ୱର

ପ୍ରଥମ କଥା ହେଲା ବମ୍ବେରୁ କେମିତି ଲୁଚି ଆସିବୁ। ବମ୍ବେରେ କିଛି ଅସୁବିଧା ନ ଥିଲା। ଅଗଷ୍ଟ ୯ ରାତିରେ ବମ୍ବେ ମେଲ୍ ଧରିଲୁ। ଖଡ଼ଗପୁର ଦେଇ ଆସିଲେ କଟକ ଷ୍ଟେସନରେ ଗିରଫ ସୁନିଶ୍ଚିତ। ଆଗରୁ ଭାରତ ରକ୍ଷା ଆଇନ ବଳରେ ଆମ ନାମରେ ୱାରେଣ୍ଟ ବାହାରିସାରିଥିଲା। ବମ୍ବେ ଫେରନ୍ତା ପ୍ରାଦେଶିକ ନେତାମାନଙ୍କୁ ତାଙ୍କ ପ୍ରଦେଶର ରାଜଧାନୀରେ ପହଞ୍ଚିବା ମାତ୍ରେ ଗିରଫ କରାଯାଉଥିଲା। ଆମେ ନିଜ ଚକ୍ଷୁରେ ତାହା ଆସିଲାବେଳେ ଦେଖିଥିଲୁ। ତେଣୁ ଯାତ୍ରାପଥ ବଦଳାଇ ରାୟପୁର ଭିଜୟନଗରମ୍ ଦେଇ ମୁଁ ଓ ମାଳତୀ ଦେବୀ ଆସିଥିଲୁ। ଭିଜୟନଗରମ୍‌ରେ ବହୁ ସମୟ ଅପେକ୍ଷା କରିବାକୁ ପଡ଼େ ମାନ୍ଦ୍ରାଜ ମେଲ୍ ଧରିବା ଲାଗି। ଏହି ଅବସରରେ ମୁଁ ସହର ଭିତରକୁ ଯାଇ ଖଦୀଭଣ୍ଡାରରୁ ଏପରି ମାଛିଆରଙ୍ଗର ଲୁଙ୍ଗି ଓ ଗାମୁଛା କିଣିଲି ଯାହା ପିନ୍ଧିଲେ ଅତି ମଫସଲିଆ ମଇଳାପିନ୍ଧା ଲୋକ ପରି ଦେଖାଯିବି। ଅତି ରୋମାଞ୍ଚକର ପରିସ୍ଥିତି ଭିତରେ ଆମେ ରାତି ଅଧରେ ଭୁବନେଶ୍ୱରରେ ଓହ୍ଲାଇ ଷ୍ଟେସନରେ ଥିବା ପୁଲିସ ଇନସପେକ୍ଟରର ଆଖିରେ ଧୂଳି ଦେଇ ଭୁବନେଶ୍ୱରରେ ରାତି ଯାପନ କଲୁ। ସେତେବେଳକୁ ଭୁବନେଶ୍ୱର ଏକ ଛୋଟ ଷ୍ଟେସନ—ଅଳ୍ପ କେତୋଟି ବଳଦଗାଡ଼ି ଓ ଖଣ୍ଡିଏ ମାତ୍ର ରିକ୍ସା ଥାଏ। ବଙ୍ଗାଳୀ ଯାତ୍ରୀଭାବରେ ଆମେ ବଳଦଗାଡ଼ିରେ ବସି ସହର ଭିତରକୁ ଚାଲିଗଲୁ। ସାରା ଦିନଟା କଟାଇବା ମୁସ୍କିଲ ହେଲା—ପୁଲିସର ତତ୍ପରତା ଜଣାପଡ଼ିଚାଲିଲା। ମାଳତୀ ଦେବୀଙ୍କୁ ତୁରନ୍ତ

ଅନ୍ୟ ସ୍ଥାନକୁ ପଠାଇ ଦିଆଗଲା; ମାତ୍ର ମୁଁ କିଛି ଲୋକଙ୍କ ସହ ସମ୍ପର୍କ ସ୍ଥାପନ କରିବା ନିମନ୍ତେ ରହିଗଲି । କଟକକୁ ମଧ୍ୟ ଖବର ଯିବା ଦରକାର । ଭୁବନେଶ୍ୱରର ଜଣେ କଂଗ୍ରେସ ଲୋକଙ୍କ ସହ କଥାବାର୍ତ୍ତା କରି ଫେରିଲାବେଳକୁ ମୋର ପରିଚିତ କେତେକ ପୁଲିସ ଅଫିସରଙ୍କ ମୁହାଁମୁହିଁ ହୋଇଗଲି । ମାତ୍ର ମୋତେ ରକ୍ଷାକଲା ମୋର ମାଣ୍ଡିଆ ଲୁଙ୍ଗି ଓ ଗାମୁଛା । ମୁଁ କେଦାରଗୌରୀରେ ଗାଧୋଇ ତାକୁ ପିନ୍ଧି ଆସୁଥାଏ—ପୁଲିସ ଅଫିସରଙ୍କ ପକ୍ଷରେ ଚିହ୍ନିବା ମୁସ୍କିଲ ହେଲା । ବାଟରେ ହାବୁଡ଼ିଲା ଏକ ଚୌକିଦାର ଯିଏ କି ମୋର ଖଦଡ଼ବସ୍ତ୍ର ଚିହ୍ନିପାରି ବାଟ ଓଗାଳିଲା । ମାତ୍ର 'ମୁଁ ବ୍ରାହ୍ମଣ ଗାଧୋଇ ଆସୁଛି, ତୁ କଣ୍ଟରା ମତେ ଛୁଇଁଦେଉଛୁ' ବୋଲି ଭେଳିକି ଦେଖାଇ ତାକୁ ଏକ ବ୍ରହ୍ମଚାପୁଡ଼ା ମାରି ମୁଁ ଦୌଡ଼ି ପଳାଇଲି । ଲୋକ ଜମା ହେବାବେଳକୁ ମୁଁ ଛୁ' । ଚୌକିଦାର ମୋର କିଛି ବର୍ଣ୍ଣନା ଦେଇପାରିଲା ନାହିଁ ।

ଭୁବନେଶ୍ୱରରେ ଆଉ ରହିବା ନିରାପଦ ନ ଭାବି ମୁଁ ବଡ଼ଭୋରୁ ଚାଲି ଚାଲି ବାଲିଅନ୍ତା ବାଟେ କଟକ ଅଭିମୁଖେ ଗଲି । କାଠଯୋଡ଼ି ନଦୀ ବଢ଼ିଥିଲା; ଯୁଦ୍ଧ ହେତୁ ପୋଲ ଉପରେ ମିଲିଟାରୀ ପହରା ରହିଥିଲେ । ଅନ୍ଧାର ରାତି; ବିଜୁଳି ଚମକୁଥିଲା । ନଦୀର ସ୍ରୋତ ପ୍ରଖର—ଦୁଇକୂଳକୁ ପାଣି ଉଛୁଳି ଯେପରି ଗର୍ଜନ କରୁଥିଲା । କେମିତି ଯିବା ! ପୋଲ ଉପରକୁ ଯାଇ ହଠାତ୍ ପୁଲିସ୍‌କୁ ତଳକୁ ଠେଲିଦେଇ ଯାଇହୁଅନ୍ତା—ମାତ୍ର ଆରପାଖରେ ବି ପୁଲିସ ଜଗୁଆଳି ଅଛନ୍ତି । ଏଠି ସଂଘର୍ଷରେ ହୁଏତ ଧରାପଡ଼ିଯିବୁ କିମ୍ବା ଗୁଳି ହୋଇଯାଇପାରେ । ତେଣୁ କାଠଯୋଡ଼ି ରେଳପୋଲ ତଳକୁ କୁଣ୍ଡାଗୋଳ ଘାଟ ଯେଉଁଠି ଏବେ ମଧୁପାଟଣା ହୋଇଛି ଆମେ ଆସି ସେଇଠି ପହଞ୍ଚିଲୁ ଏକ ହୋଲି କାଠୁଆ ଡଙ୍ଗାରେ । ସେ କାଠୁଆଟି ଦୁଇପାଖକୁ ଝୁଙ୍କି ଯାଉଥିଲା; ମଝିରେ ମଝିରେ ସେଥିରେ ପାଣି ପଶିଯାଉଥିଲା—ସର୍ବଦା ବୁଡ଼ିଯିବାର ଆଶଙ୍କା ଥିଲା; ମାତ୍ର ଆମକୁ ଟିକିଏ ଭୟ ଲାଗୁଥିଲେ ବି ମନରେ ସାହସ ଓ ଦମ୍ଭ ଥିଲା । ମାଳତୀ ଦେବୀ ନଦୀର ଗର୍ଜନ ସାଙ୍ଗକୁ ଗାଇଲେ କବି ନଜରୁଲଙ୍କର "ଦୁର୍ଗମଗିରି କାନ୍ତାର ମରୁ ଦୁସ୍ତର ପାରାବାର ହେ, ଲଙ୍ଘିତେ ହବେ ରାତ୍ରି ନିଶୀଥେ ଯାତ୍ରୀରା ହୁସିଆର ।" ନଦୀ ପାରହୋଇ କଟକରେ ପ୍ରବେଶ କଲୁ । ମାଳତୀ ଦେବୀ ତାଙ୍କ ଘରକୁ ଗଲେ ଏବଂ ତତ୍ପରଦିନ ଗିରଫ ହୋଇଗଲେ ।

## ଗୁପ୍ତ ସଂଗଠନ

ମୁଁ ମୋର ଗୁପ୍ତ ସଂଗଠନ କରିବା ନିମନ୍ତେ ଏକ ଅତି ଆପଣାର ବନ୍ଧୁ ଯେ କି ମତେ ଯେତେ ବିପଦ ପଡ଼ିଲେ ବି ପୁଲିସ ପାଖରେ ଧରାଇ ଦେବେ ନାହିଁ, ତାଙ୍କରି ଘରେ ଯାଇ ପହଞ୍ଚିଲି ଏବଂ ତାଙ୍କରି ଜରିଆରେ କେତେକ ଜଣାଶୁଣା ବନ୍ଧୁଙ୍କୁ ଡକାଇଲି । ଶେଷକୁ କଟକ ଅଲିସାବଜାରର ନନ୍ଦ ସାହୁଙ୍କ ଘରେ ଓଡ଼ିଶାର ଅଗଷ୍ଟ ବିପ୍ଳବର କେନ୍ଦ୍ର ଅଫିସ ସ୍ଥାପିତ ହେଲା । ମୁଁ ସେହିଠାରେ ରହି ଓଡ଼ିଶାର କାର୍ଯ୍ୟକୁ ପରିଚାଳନା କଲି । ମୁଁ ଯେତେବେଳେ ଅବଶେଷରେ ଗିରଫ ହେଲି, ସେଥିରେ ମୋ ସହିତ

ସଂପୃକ୍ତ ହୋଇଥିବା ପ୍ରାୟ ୮୭ ଜଣଙ୍କୁ ବିଭିନ୍ନ ସ୍ଥାନରୁ ଗିରଫ କରାଗଲା । ମତେ ପ୍ରଥମେ ଯିଏ ଘରେ ସ୍ଥାନ ଦେଇଥିଲେ ସେହି ଉଦୟନାଥ ରଥ ଏବଂ ନନ୍ଦସାହୁ ବି ଅଟକବନ୍ଦୀ ହେଲେ । ତାଙ୍କର ବ୍ୟବସାୟ ଓ ବ୍ୟକ୍ତିଗତ ଭାବରେ ପ୍ରଭୂତ କ୍ଷତି ହେଲା । ମାତ୍ର ମୋ ଲାଗି ସେମାନେ ଆନନ୍ଦରେ ଏହା ସହିଲେ—ଆହା ! ସେ ଦିଜଣ ଆଉ ଇହଜଗତରେ ନାହାନ୍ତି; ଦେଶ ସ୍ୱାଧୀନ ହେଲା ପରେ ସେମାନେ ପ୍ରାଣତ୍ୟାଗ କଲେ ।

ଅତି ଅଳ୍ପ ସମୟ ଭିତରେ ଓଡ଼ିଶାରେ ଗୁପ୍ତଆଡ୍ଡେ ସମ୍ପର୍କ ସ୍ଥାପନ କରିବା ସମ୍ଭବ ହେଲା । ମୋ କେନ୍ଦ୍ରରୁ ବୁଲେଟିନ୍ ଆଦି ନିୟମିତ ବାହାରିଲା । ବିଭିନ୍ନ ସ୍ଥାନରେ ଲୋକେ ସ୍ୱତଃ-ପ୍ରବୃତ୍ତ ହୋଇ ଏବଂ ଅନେକ ସ୍ଥାନରେ ବୁଲେଟିନ୍ ଜରିଆରେ ନିର୍ଦ୍ଦେଶ ପାଇ ବ୍ରିଟିଶ ସରକାରକୁ ଲୋପ କରିବା ନିମନ୍ତେ ଯାବତୀୟ ଭଙ୍ଗାରୁଜା, ସରକାରୀ କଚେରୀ ଦଖଲ, ଥାନା ପୋଡ଼ା, ତାରକଟା, ଟ୍ରେନ୍ ଟଳାଇବା ଆଦି କାର୍ଯ୍ୟ ଗୋଟିକ ପରେ ଗୋଟିଏ ଆରମ୍ଭ ହୋଇଗଲା । ଯୁବକ ଓ ଛାତ୍ର ବାହାରିପଡ଼ିଲେ ଏବଂ ନିର୍ଦ୍ଦେଶ ନେଇ କାର୍ଯ୍ୟ କରିବାକୁ ଲାଗିଲେ । ମୁଁ ନାନାବେଶରେ ଛଦ୍ମ ପୋଷାକ ପିନ୍ଧି ବିଭିନ୍ନ ସ୍ଥାନକୁ ଯାଉଥାଏ । ଏହା କରିବାକୁ ବାଧ୍ୟ ହେଉଥିଲି ବିପଦକୁ ବରଣ କରି—କାରଣ ଖର୍ଚ୍ଚ କିଛି ଦରକାର ହେଉଥିଲା । ଉପର ସହିତ ସଂପର୍କ ସ୍ଥାପିତ ହୋଇ ପାରି ନଥିଲା—ନିଜେ ନଗଲେ ବନ୍ଧୁଙ୍କ ଠାରୁ ଚନ୍ଦା ମିଳିବା ମୁସ୍କିଲ ଥିଲା । କିନ୍ତୁ ଯାହାହେଉ ପଇସା ଅଭାବରୁ କୌଣସି କାର୍ଯ୍ୟ ବନ୍ଦ ହୋଇନଥିଲା । ବରଂ ବିଧିବଦ୍ଧଭାବରେ ସଙ୍ଗଠିତ ହେଲାଭଳି ଓଡ଼ିଶାର ଗୁପ୍ତଆଡ୍ଡେ ନିଆଁ ହୁହୁ ହୋଇ ଜଳିଉଠିଲା ।

## ଲୁଚିଛପା କାର୍ଯ୍ୟ

ଅନ୍ତରାଳରେ ଲୁଚି କାର୍ଯ୍ୟ କରୁଥିବାବେଳେ କେବେ ଶୋଇପାରୁଥିଲି ବୋଲି ମନେ ହେଉନାହିଁ । ସର୍ବଦା ଏକ ଉଦ୍‌ବେଗ ଓ ଉତ୍‌କଣ୍ଠା ଭିତରେ ଦିନ କାଟୁଥାଏ । ଦିନଭିତରେ ନନ୍ଦସାହୁଙ୍କ ପୁଅ ମଥୁରା ଥରେ ବା ଦିଥର ଆସୁଥିଲା; ମାତ୍ର ବିଶେଷ କେହି ଯା'ଆସ କରନ୍ତି ନାହିଁ—ଯେ ଭେଟନ୍ତି ସନ୍ଧ୍ୟା ପରେ । କେବଳ ରେଭେନ୍‌ସା କଲେଜର ୪ର୍ଥ ବାର୍ଷିକ ଛାତ୍ର ବାଙ୍କବିହାରୀ ଦାସ ଦିନ ବୁଡ଼ିଗଲାବେଳକୁ କଲେଜ ଲେଉଟା ଆସନ୍ତି ଚିଠିଗୁଡ଼ିକରେ ତାଙ୍କ ନିଜ ହାତରେ ଠିକଣା ଲେଖି ତାହି ଡାକଘରେ ପକାଇବା ନିମନ୍ତେ । କୌଣସି ଅତି ଗୋପନୀୟ କାର୍ଯ୍ୟ ଥିଲେ ସେ ଚୁପ୍‌ଚାପ୍ କରନ୍ତି । ତାଙ୍କୁ ଆଉ କିଛି କାମ ଦିଆଯାଇ ନଥିଲା—ଯେମିତି ତାଙ୍କ ପ୍ରତି ସନ୍ଦେହ ନହୁଏ । ସେହିପରି ରାଧାନାଥ ପଣ୍ଡିତ, ବିଶ୍ୱନାଥ ପଣ୍ଡିତ, ପଣ୍ଡିତ ବନମାଳୀ ମିଶ୍ର, ସଚ୍ଚିଦାନନ୍ଦ ମିଶ୍ର ପ୍ରଭୃତି ଗୁପ୍ତ ସଂଗଠନର ବିଭିନ୍ନ ବିଭାଗର କାର୍ଯ୍ୟଭାର ନେଇଥାନ୍ତି । ମାତ୍ର କେହି କେବେ ଏକାଠି ଆସନ୍ତି ନାହିଁ କିମ୍ବା କାହାର କି କାର୍ଯ୍ୟ ସମସ୍ତେ ଜାଣିନଥାନ୍ତି । ଓଡ଼ିଶା ସରକାର ବିଚଳିତ ହୋଇପଡ଼ିଲା ଗିରଫ କରିବା ନିମନ୍ତେ । କଟକରେ ନାହିଁ ବୋଲି ପୁଲିସ ମନରେ ପ୍ରତୀତି ଜନ୍ମାଇବା

ନିମନ୍ତେ ମୋ ହାତଲେଖା ଖୋଲ ଚିଠି ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ ଡାକରେ ପକାଯାଉଥିଲା । ସେଥିରୁ ଜଣାପଡ଼ିବ ଯେ ମୁଁ ଗୃହଆଡ଼େ ଗସ୍ତ କରୁଛି । ଏହି ସମୟରେ ଜଣେ ହିମାଳୟ ବାବାଙ୍କ ସହ ପରିଚୟ ଘଟିଲା—ତାଙ୍କ ପାଖକୁ ବହୁ ପଦସ୍ଥ ପୁଲିସ କର୍ମଚାରୀ ଓ ଅନ୍ୟମାନେ ଆସନ୍ତି । ସେ ମୋ ବିଷୟରେ ଏପରି କଥାମାନ ପ୍ରଚାର କଲେ ଯେ କଟକରେ ଥିବାଭଳି ସନ୍ଦେହ ଆଉ ରହୁନଥାଏ । ଏପରି ରହଣି ଭିତରେ ଆମର ସାଥୀ ବିହାରର ରାମନନ୍ଦନ ମିଶ୍ର ଗୋପନରେ ଆସି ମତେ ଭେଟିଥିଲେ ଏବଂ ପୂର୍ବଭାରତକୁ ଯାଉଥିବା ଫୌଜୀ ରେଲଗାଡ଼ିଗୁଡ଼ିକୁ କିପରି ଓଲଟାଇ ଦିଆଯିବ ସେ ସଂପର୍କରେ ତାଙ୍କ ସହିତ ଚର୍ଚ୍ଚାର ଯୋଜନା ହୋଇଥିଲା । ମୋର ସନ୍ଧାନ ପୁଲିସ ପାଇଲେ ନାହିଁ ମାତ୍ର ରାମନନ୍ଦନଙ୍କୁ ମଙ୍ଗଳାବାଗରେ ଗିରଫ କରିନେଲେ ।

ରାମନନ୍ଦନ ମିଶ୍ର ହେଲେ ବିହାର ରାଜ୍ୟର ଦରଭଙ୍ଗା ଜିଲ୍ଲାର ଏକ ବଡ଼ ଜମିଦାର ପରିବାରର । ସେ ସୋସଲିଷ୍ଟ ଆନ୍ଦୋଳନ ସହ ମୂଳରୁ ସଂପୃକ୍ତ ଥିଲେ ଏବଂ ୧୯୪୨ର ଭାରତ ଛାଡ଼ ଆନ୍ଦୋଳନବେଳେ ଲୁଚିଛପି ଭାରତର ପୂର୍ବାଞ୍ଚଳ ରାଜ୍ୟମାନଙ୍କରେ ଗୁପ୍ତ ସଙ୍ଗଠନର ଦାୟିତ୍ୱ ନେଇଥିଲେ । ସେହି ସନ୍ଧାନରେ କଟକ ଆସିଥିଲେ ଓ ଗିରଫ ହେଲେ । ଓଡ଼ିଶାରେ ଭଞ୍ଜନଗର ଓ ବ୍ରହ୍ମପୁର ଜେଲରେ କିଛିଦିନ ରଖାଯିବା ପରେ ତାଙ୍କୁ ହଜାରିବାଗ ପଠାଯାଇଥିଲା । ୧୯୪୩ରେ ଜୟପ୍ରକାଶ ନାରାୟଣଙ୍କ ସହ ସେ ହଜାରିବାଗ ଜେଲରୁ ପଳାୟନ କରି ନେପାଳରେ ରହି ସଶସ୍ତ୍ର ବିଦ୍ରୋହର ଯୋଗାଡ଼ରେ ଥିଲେ; ୧୯୪୬ରେ ଜେଲମୁକ୍ତ ପରେ ଦେଶରେ ସୋସଲିଷ୍ଟ ସଂଗଠନରେ ମୁଖ୍ୟ ଭାଗ ନେଇଥିଲେ ଏବଂ ନିଖିଳ ଭାରତ କିସାନ ସଭାର ସାଧାରଣ ସଂପାଦକ ରୂପେ ସେ କୃଷକ ଆନ୍ଦୋଳନକୁ ଜୀବନ୍ତ କରିପାରିଥିଲେ । ଓଡ଼ିଶାରେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ପୁନର୍ଗଠନରେ ତାଙ୍କର ବିଶେଷ ହାତ ଥିଲା । ୧୯୫୨ ସାଧାରଣ ନିର୍ବାଚନ ପରେ ସେ ସୋସଲିଷ୍ଟ ପାର୍ଟି ଓ ରାଜନୀତି କାର୍ଯ୍ୟରୁ ନିଜକୁ ଅନ୍ତର କରିନେଇଛନ୍ତି ଏବଂ ଧାର୍ମିକ କାର୍ଯ୍ୟରେ ସଂପୂର୍ଣ୍ଣ ରୂପେ ଲିପ୍ତ ରହିଛନ୍ତି ।

ରାମନନ୍ଦନ ଜେଲଗଲାପରେ ଆମର କଲିକତାର ଗୋପନ କେନ୍ଦ୍ର ସହ ସମ୍ପର୍କ ସ୍ଥାପିତ ହେଲା । ଗାନ୍ଧୀବାଦୀ ଅନ୍ନଦା ଚୌଧୁରୀ ତାହା ପରିଚାଳନା କରୁଥିଲେ । କଲିକତାର କଲେଜ ରୋଡ଼ରେ "ଅଭୟାଶ୍ରମ ଖଦୀଭଣ୍ଡାର" ଥାଏ । ସେଠିକି ମୋର ଲୋକ ଯାଇ ଚିହ୍ନ ସ୍ଥାନରେ କାଳଦାଗ ଥିବା ଏକ ମୋଡ଼ା ସୂତା ଲୁଗା କିଣିବାବେଳେ ଦେଖାଇଲେ, ସେମାନେ ଠାବରୁ ଜାଣିଥିଲେ ଏବଂ ଗୁପ୍ତ ସଙ୍ଗଠନ ସହ ସମ୍ପର୍କ କରାଇ ଦେଉଥିଲେ । ସେତେବେଳକୁ କେନ୍ଦ୍ରସ୍ତରରେ ରାମମନୋହର ଲୋହିଆ, ଅରୁଣା ଆସଫ ଅଲ୍ଲୀ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ସୁଚେତା କ୍ରିପାଲାନୀ, ଆର୍. ଆର୍. ଦିବାକର, ଉଷା ମେହେତା, ଅନ୍ନଦା ଚୌଧୁରୀ ଏବଂ ବହୁ ଗାନ୍ଧୀବାଦୀ ଓ ସାମାଜବାଦୀ ବନ୍ଧୁ ଏକ ସୁଦୃଢ଼ ନିଖିଳ ଭାରତ ଗୋପନ ସଙ୍ଗଠନ କରିସାରିଥିଲେ । କେନ୍ଦ୍ରରୁ ବୁଲେଟିନ୍ ଓ ରିପୋର୍ଟ ଆଦି ଦିଆଯାଉଥିଲା

ଚାଲିଲା । ଆମର ଏକ ଯୋଜନା ଥିଲା ଆଗା ଖାଁ ପ୍ରାସାଦକୁ ଘେରାଉ କରି ସେଠାରୁ ଗାନ୍ଧୀଜୀଙ୍କୁ ମୁକୁଳାଇ ଆଣିବା । ତାହା ହୋଇପାରିଲା ନାହିଁ—ହୋଇଥିଲେ ବି ଗାନ୍ଧୀଜୀ କେତେଦୂର ଏଭଳି କାର୍ଯ୍ୟକୁ ପସନ୍ଦ କରିଥାଆନ୍ତେ କହିହେଉନାହିଁ । ଓଡ଼ିଶାରେ ତ୍ରିଶୀ ଅଧିକେ ପ୍ରାୟ ପ୍ରତ୍ୟେକ ଜିଲ୍ଲା କେନ୍ଦ୍ରରେ ମୁଁ ସଂଗଠନ କରିସାରିଥିଲି । କିଛିଦିନ ପରେ ମୋର ବାମ ଦକ୍ଷିଣ ହାତ ଭାବରେ କାର୍ଯ୍ୟ କରୁଥିବା ବାଙ୍କବିହାରୀ ଦାସ ଓ ସଚ୍ଚିଦାନନ୍ଦ ମିଶ୍ର ଆଦି ଗିରଫ ହୋଇଗଲେ । ସଚ୍ଚିଙ୍କ ପାଖରୁ ମୋର ହାତଲେଖା ଚିଠା ଚିଠି ଧରାପଡ଼ିଲା । ପୁଲିସ ନିଃସନ୍ଦେହ ହୋଇଗଲା ଯେ ମୁଁ କଟକରେ ରହି ତାଙ୍କୁ ଭୁଆଁ ବୁଲାଉଥିଲି । ସେଥିରେ ପୁଣି ଖୋର୍ଦ୍ଧାରୁ ଗୋଟିଏ ଭିନ୍ନ ତାରିଖ ଦେଇ ଯେଉଁ ପୋଷ୍ଟକାର୍ଡ଼ଟି ପଠାଇବା ଲାଗି ଜଣେ ସାଥିଙ୍କ ଦେଇଥିଲି, ସେ ତାହା ନେଇ ଚୁଡ଼ଙ୍ଗପଟ୍ଟାଙ୍କ ଡାକଘରେ ଭୁଲରେ ପକାଇଦେଇଥିଲା—ତହିଁରୁ ମୋ ଚାଲି ଧରାପଡ଼ିଗଲା ।

ଇଂରେଜ ସରକାର ଜାଣିପାରିଲା ଯେ ମୁଁ ନିଶ୍ଚିତଭାବରେ କେଉଁଠି ଲୁଚି ରହିଛି । କଟକ ସହରରେ ଘରଅଧିଆ ମୋର ରହିଥିବା ସ୍ଥାନ ଭାବି ଘେରାଉ କରନ୍ତି—ନ ପାଇ ନିରାଶ ହୁଅନ୍ତି । ଶେଷକୁ ମତେ ପଳାତକ abeconder) ବୋଲି ଘୋଷଣା କରାଗଲା । ମୁଁ ଧରା ନ ଦେଲେ ମୋର ସ୍ଥାବର ଅସ୍ଥାବର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରାଯିବ ବୋଲି ସରକାରୀ ଗେଜେଟରେ ବିଜ୍ଞପ୍ତି ପ୍ରକାଶପାଇଲା । ମୋର ସମ୍ବାଦ ଦେଇ ଦେଲେ ବଡ ଧରଣର ପୁରସ୍କାର ନଗଦ ଟଙ୍କା ଆକାରରେ ମିଳିବ ବୋଲି କଟକ ସହରରେ ନାଗରା ଦ୍ୱାରା ପ୍ରଚାର କରାଗଲା ଏବଂ ସରକାରୀ ଘୋଷଣା ପ୍ରକାଶ ପାଇଲା । ବାସ୍ତବିକ ଏ ସବୁ ଆମପରି ବ୍ୟକ୍ତିଙ୍କ ପକ୍ଷରେ ଏକ ଅଗ୍ନିପରୀକ୍ଷାର ମୁହୂର୍ତ୍ତ ।

ଆମ ବାହାରବେଳେ ପୁଲିସର ସେ ଧରା ଚିଠି ଦେଖିବାକୁ ପାଇଲି । ସେଥିରେ ସେତେବେଳକାର ସ୍ପେଶାଲ ବ୍ରାଞ୍ଚ ଏସ୍. ପି. ରେନର୍ ସାହେବ ମୁଁ କଟକରେ ରହିଥିଲି, ଅଥଚ ମତେ ଏତେକାଳ ଧରିପାରୁ ନଥିଲେ ବୋଲି ପୁଲିସ ଅଫିସରଙ୍କୁ ବଡ଼ ତିରସ୍କାର କରିଥିଲେ । ଗୁଆଡ଼ୁ ମୋତେ ଚୁନ୍ଧିଦେବା ହେତୁ ସ୍ଥିର କରିଥିଲି ସେହିଦିନ ରାତିରେ କଲିକତା ଚାଲିଯିବି ଏବଂ ସେଠାରୁ କାର୍ଯ୍ୟ ପରିଚାଳନା କରିବି । ମାତ୍ର ଯେଉଁଦିନ ଠିକ୍ ଯିବାର କଥା, ସେହିଦିନ ଦ୍ୱିପହରେ ପୁଲିସ ଆସି ମୋର ଗୋପନୀୟ ସ୍ଥାନରେ ଆକ୍ରମଣ କରି ମତେ ଗିରଫ କଲେ । ମୁଁ ଅସ୍ତ୍ରଶସ୍ତ୍ର ସଜ୍ଜିତ ହୋଇ ରହିଛି ଭାବି ସେ ବହୁ ସଶସ୍ତ୍ର ପୁଲିସ ଧରି ଆସିଥିଲେ ଏବଂ ମତେ ବନ୍ଧୁକ ଆଦି ଦେଖାଇଲେ । ଦିନବେଳା ପାଖରେ କେହି ନଥିଲେ—କେବଳ ଢେଙ୍କାନାଳରୁ ରାଜନୀତିକ ପଳାତକ ନବଘନ ଜେନାଙ୍କ ବ୍ୟତୀତ । କଥୋ ମେସିନ ଓ ମତେ ପାଇ ଓଡ଼ିଶା ସରକାର ଆଶ୍ୱସ୍ତ ହେଲେ । ଗିରଫ କଲାବେଳେ ରେନର୍ ସାହେବଙ୍କ ସହ ମୋର ବଚସା ହେଲା । ମୁଁ କୌଣସି ସଂଘର୍ଷ ଲାଗି ବ୍ୟବସ୍ଥା କରି ନ ଥିଲି । ତେଣୁ ମତେ ଗିରଫ କରିବାରେ ତାଙ୍କର କୌଣସି ଅସୁବିଧା ହେଲା ନାହିଁ । ଅବଶ୍ୟ ହାତକଡ଼ି ପକାଇଲେ ଏବଂ ସଶସ୍ତ୍ର ପ୍ରହରୀ ମତେ ଜଗି ରହିଲେ;

କିନ୍ତୁ ମୋ ପ୍ରତି କିଛି ବଳପ୍ରୟୋଗ କରାଯାଇ ନଥିଲା । କେବଳ ଦିଲ୍ଲୀରୁ ଇଂରେଜ ସରକାରଙ୍କ ଗୁଇନ୍ଦା ବିଭାଗର ଜଣେ ଉଚ୍ଚପଦସ୍ଥ ଅଫିସର ମତେ ତିନି ଘଣ୍ଟା କାଳ ଗୋଟିଏ ଷ୍ଟୁଲ ଉପରେ ସିଧା ବସାଇ ଡରାଇ ଧମକାଇ ପୁଣି ଫୁସୁଲାଇ ନାନା ପ୍ରଶ୍ନ ପଚାରୁଥିଲେ— କେବଳ ଜାଣିବା ନିମନ୍ତେ ମୁଁ ଗାନ୍ଧୀଜୀଙ୍କଠାରୁ କିଛି ନିର୍ଦ୍ଦେଶ ମୌଖିକ ବା ଲିଖିତ ଆକାରରେ ପାଇଥିଲି କି ନାହିଁ । ସେତେବେଳେ ବ୍ରିଟିଶ ପାର୍ଲିଅମେଣ୍ଟରେ ବ୍ରିଟିଶ ସରକାର ବଡ଼ ଅଡୁଆ ଅବସ୍ଥାରେ ପଡିଥିଲେ । ଲେବର ପାର୍ଟି ଅଭିଯୋଗ ଉଠାଇଥିଲା ମହାତ୍ମା ଗାନ୍ଧୀ ତ ଏ ସଂଗ୍ରାମ ଆରମ୍ଭ କରିନଥିଲେ କିମ୍ବା କିଛି ନିର୍ଦ୍ଦେଶ ଦେଇ ନ ଥିଲେ, ସେମାନଙ୍କୁ କାହିଁକି ଗିରଫ କରାଗଲା ? କ୍ରୋଧାନ୍ୱିତ ହୋଇ ଲୋକେ ମାତିଲେ । ଦୋଷ ଇଂରେଜ ସରକାରର । ଏହାକୁ ଖଣ୍ଡନ କରିବା ନିମନ୍ତେ ସେମାନେ ମହାତ୍ମା ଗାନ୍ଧୀଙ୍କୁ ସଂପୃକ୍ତ କରିବା ପାଇଁ ତଥ୍ୟ ଖୋଜୁଥାନ୍ତି । ବ୍ରିଟିଶ ପାର୍ଲିଆମେଣ୍ଟର ଏହି ପ୍ରଶ୍ନୋତ୍ତର ମୁଁ ସମ୍ବାଦପତ୍ରରେ ପଢ଼ିଥିଲି । ଉକ୍ତ ଅଫିସରଙ୍କର ସକଳ ଚେଷ୍ଟା ବ୍ୟର୍ଥ ହେଲା । ମତେ ପୁଲିସ ଲକ୍ଅପ୍‌ରୁ ଜେଲକୁ ପଠାଗଲା ଏବଂ ଚେତିକି ଆରମ୍ଭ ହେଲା ମୋର ଦୀର୍ଘ ଜେଲ ଜୀବନର ଅଭୁଲା କାହାଣୀ ।

ମୋର କାର୍ଯ୍ୟ ସମ୍ବନ୍ଧରେ ଓଡ଼ିଶା ସରକାରର ସିଆଇଡ଼ି ବିଭାଗ (ସ୍ପେସାଲ ସେକ୍‌ସନ)ରୁ ଭାରତ ସରକାରଙ୍କ ହୋମ୍ ସେକ୍ରେଟେରୀ ଇ. କଭର୍ଣ୍ଣ୍ ସ୍ମିଥ୍ ସି.ଏସ୍.ଅଇ., ସି.ଆଇ.ଇ. ଆଇ. ସି. ଏସ୍.ଙ୍କ ୧୯୪୨ ଅକ୍ଟୋବର ମାସ ପ୍ରଥମାର୍ଦ୍ଧ ଇଣ୍ଟେଲିଜେନ୍‌ସ ରିପୋର୍ଟରେ ନିମ୍ନ ମତେ ଲେଖାଅଛି । ଏହି ଚିଠି ଡ଼ି· ଓ· ନମ୍ବର ୩୭୬୨ ସି, କଟକ, ୧୯୪୨ ଅକ୍ଟୋବର ୨୧ ରେ ପଠାଯାଇଥିଲା ।

ରାଜନୀତିକ ପରିସ୍ଥିତି ସମ୍ବନ୍ଧରେ ସେଥିରେ ଲେଖାଅଛି—

"ସାଧାରଣ ପରିସ୍ଥିତିର ଉନ୍ନତି ଲକ୍ଷ୍ୟ କରାଯାଉଛି, ତଥାପି ସରକାରୀ କର୍ମଚାରୀଙ୍କ ପ୍ରତି ଧମକପୂର୍ଣ୍ଣ ଚିଠି ଓ କେତେକ ଧମକପୂର୍ଣ୍ଣ ଲିଫ୍‌ଲେଟ୍ ପ୍ରଚାର ହେବାର ପ୍ରମାଣ ମିଳୁଛି । ଓଡ଼ିଶା ଆସେମ୍ବ୍ଲିର ସ୍ପିକର୍ ନନ୍ଦକିଶୋର ଦାସଙ୍କୁ ଭାରତରକ୍ଷା ଆଇନର ୨୬ ଦଫା ଅନୁସାରେ ଗିରଫ କରାଗଲାଣି । ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ଗିରଫ ଏକ ଅତି ଗୁରୁତ୍ୱପୂର୍ଣ୍ଣ ସଫଳତା । ସେ ଜଣେ ପ୍ରମୁଖ କଂଗ୍ରେସ ସୋସଲିଷ୍ଟ ଏବଂ ନିଖିଳ ଭାରତ କଂଗ୍ରେସ କମିଟିର ସଦସ୍ୟ । ସେ ତାଙ୍କର କଟକର ଗୋପନୀୟ ବାସସ୍ଥଳୀରେ ରହି କଂଗ୍ରେସ ବୁଲେଟିନ୍‌ମାନ ପ୍ରସ୍ତୁତ କରୁଥିବାବେଳେ ପୁଲିସ ତାଙ୍କୁ ଗିରଫ କଲା । ଅଗଷ୍ଟ ମାସର ପ୍ରଥମ ସପ୍ତାହରେ ତାଙ୍କୁ ଅଟକ ରଖିବା ନିମନ୍ତେ ଭାରତରକ୍ଷା ଆଇନର ୨୬ ଦଫା ଅନୁସାରେ ଏକ ଆଦେଶନାମା ଜାରିକରାଯାଇଥିଲା । ମାତ୍ର ବମ୍ବେରୁ ଫେରି ସେ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ । ଏ କଥା ନିଶ୍ଚିତ ଭାବରେ ବୁଝାପଡ଼ିଲା ଯେ ସେ ଓଡ଼ିଶାରେ ହିଂସା ଓ ଷଡ଼ଯନ୍ତ୍ରମୂଳକ କାର୍ଯ୍ୟସବୁ ସଂଗଠନ କରୁଛନ୍ତି; କିନ୍ତୁ ତାଙ୍କର ଗତିବିଧିର

କିଛି ହେଲେ ସନ୍ଧାନ ମିଳିପାରୁନଥିଲା । ଆଶା କରାଯାଉଛି, ତାଙ୍କର ଗିରଫଦାରୀ ପରେ ପରିସ୍ଥିତିରେ କିଛି ଉନ୍ନତି ଘଟିବ ।”

ଅର୍ଥନୀତିକ ସ୍ଥିତି ବିଷୟରେ ଏଥିରେ ଲେଖାଅଛି—

“ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କଠାରୁ ଜବତ କରାଯାଇଥିବା କେତେକ କାଗଜପତ୍ରରୁ ଦେଖାଯାଉଛି ଯେ ସେ ଗ୍ରାମବାସୀମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି, ସେମାନଙ୍କ ପାଖରେ ଥିବା ପଇସି ଦୋପଇସି ଆଦି ଶ୍ରେଷ୍ଠ ଶ୍ରେଷ୍ଠ ନଗଦ ମୁଦ୍ରାକୁ ହସ୍ତାନ୍ତର ନ କରିବା ନିମନ୍ତେ । ଅଧିକନ୍ତୁ ମଧ୍ୟ ସମ୍ବାଦ ମିଳୁଛି, ଏହି ମୁଦ୍ରାସବୁ ଖାଲି ଗଚ୍ଛିତ କରି ରଖା ଯାଇନାହିଁ, ସେଗୁଡ଼ିକୁ ତରଳାଇ ଧାତୁରେ ପରିଣତ କରାଗଲାଣି । ଏ ସମ୍ପର୍କରେ ନିର୍ଦ୍ଦିଷ୍ଟ ସମ୍ବାଦ ପାଇବା ନିମନ୍ତେ ତଦନ୍ତ କରାଯାଉଛି ।”

( ଏହା **National Archives** ରୁ ସଂଗୃହୀତ)

## ଶାସ୍ତି ପାଇଲେ ଗର୍ବିତ ହେବୁ

ମୋ ମନରେ ନିଜ ଲାଗି ତିଳେହେଲେ ପରୁଆ ନ ଥାଏ । ମୁଁ ‘କର ବା ମର’ ପଣ ନେଇଥିଲି । ନିମରିପାରିଲେ ମୋର କିଛି ଗୌରବ ହେବ ନାହିଁ ବୋଲି ସବୁବେଳେ ବିଚାରୁଥାଏ । ସେଇଥିପାଇଁ ଆମେ ଯେତେବେଳେ ଗିରଫ ହେଲୁ, ଆମକୁ ବ୍ରିଟିଶ ସରକାର ଓଡ଼ିଶା ଷଡ଼ଯନ୍ତ୍ର ମକଦ୍ଦମାରେ ପକାଇଲା । ହତ୍ୟା, ଘରପୋଡ଼ି, ଡକାୟତି ଓ ଲୁଣ୍ଠନ ଆଦି ସବୁ ଦଫାରେ ଅଭିଯୁକ୍ତ କରାଗଲା । ଆଇ.ସି.ଏସ୍ ଜଜ୍ ମାହେର ସାହେବ ସ୍ପେସାଲ ଜଜ୍ ରୂପେ ନିଯୁକ୍ତ ହେଲେ ଆମର ବିଚାର ନିମନ୍ତେ । ମୋତେ ଫାଶୀ ହୋଇଯିବ – ଏହି ଆଶଙ୍କାରେ ମୋର ଆତ୍ମୀୟସ୍ୱଜନ ମକଦ୍ଦମା ଲଢ଼ିବାର ଆୟୋଜନ କଲେ । ମାତ୍ର ମୁଁ ଓ ମୋ ସହିତ ଅଭିଯୁକ୍ତ ହୋଇଥିବା ଅନ୍ୟ ୧୪ ଜଣ ସାଥୀ ସ୍ଥିର କଲୁ ମକଦ୍ଦମା ଲଢ଼ିବା ନିରର୍ଥକ । ବ୍ରିଟିଶ ସରକାରଠାରୁ ଆମେ କେଉଁଥି ନ୍ୟାୟ ଆଶା କରିବା ! ଆମର ଆତ୍ମୀୟସ୍ୱଜନଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ଆମେ ମକଦ୍ଦମା ନ ଲଢ଼ିବା ନିମନ୍ତେ ସ୍ଥିର କଲୁ । ମୁଁ କଚେରୀରେ ଛିଡ଼ାହୋଇ ଏକ ବିବୃତି ଦେଇ କହିଲି – “ଆମର ବ୍ରିଟିଶ ନ୍ୟାୟାଳୟରେ ବିଶ୍ୱାସ ନାହିଁ ଏବଂ ତାଙ୍କଦ୍ୱାରା ନିଯୁକ୍ତ ଆଇ.ସି.ଏସ୍ ବିଚାରପତିଠାରୁ ଆମେ ନ୍ୟାୟ ପାଇବୁ ବୋଲି ଆଶା କରି ନାହୁଁ । ଆମେ ଆମର ଜ୍ଞାତସାରରେ ଇଂରେଜ ଶାସନର ବିଲୋପ ଲାଗି କାର୍ଯ୍ୟ କରିଛୁ ଏବଂ ଇଂରେଜ ଏ ଦେଶରୁ ବିଦାୟ ନ ନେବା ପର୍ଯ୍ୟନ୍ତ କରୁଥିବୁ । ତେଣୁ ବିଚାରର କୌଣସି ଆବଶ୍ୟକତା ନାହିଁ । ପିଙ୍ଗଳ କୋର୍ଡ଼ର ଦଫାଗୁଡ଼ିକରେ ବ୍ୟବସ୍ଥା ଥିବା ସର୍ବୋଚ୍ଚ ଶାସ୍ତି ବିଧାନ ଆମକୁ ଦିଆଗଲେ ଆମେ ଗର୍ବ ଅନୁଭବ କରିବୁ ।” ଏହା ଦମ୍ଭୋକ୍ତି ନୁହେଁ, ଆମ ଭିତରେ ଦେଶପ୍ରୀତିର ଯେଉଁ ବହ୍ନି ଜଳୁଥିଲା, ଏହା ଥିଲା ତାହାରି ଲେଲିହାନ ଶିଖା । ସତ କହୁଛି,

ଫାଶୀ ଆଦି ହୋଇଯିବାର ଯେଉଁ ଆତଙ୍କମୟ ପରିସ୍ଥିତି ସୃଷ୍ଟି ହୋଇଥିଲା, ଏପରି ବକ୍ତୃତା ଦେଲା ପରେ ମୋ ମନ କେତେପରି ଉଶ୍ଵାସ ହୋଇଗଲା । ଭାବିଲି ଯେଉଁଥିଲାଗି ମୁଁ ଲୁଚିଛପି ଇଂରେଜ ଶାସନ ବିରୁଦ୍ଧରେ ସଂଗ୍ରାମ କରିଥିଲି ତାହା ସାର୍ଥକ ହେବ ଏବଂ ମତେ ଫାଶୀ ମିଳିବ । ଆମର ଭାରତୀୟ ପୁଲିସ ଅଫିସର ମିଛ ସତ ମିଶାଇ ସବୁ ଉପାଦାନ ଯୋଗାଇ ଦେଇଥିଲେ । ଆମ ମନ ହୃଦୟ ଯିବା ହାଲୁକା ହୋଇଗଲା, ଆମର ଆତ୍ମୀୟସ୍ଵଜନ ଓ ବାହାରର ଅଗଣିତ ଶୁଭେଚ୍ଛୁଙ୍କ ଭିତରେ ଭାଲେଣି ପଡ଼ିଗଲା । ସେମାନେ ଆତଙ୍କିତ ହେଲେ, ଉଦ୍‌ବେଗ ଉତ୍କଣ୍ଠା ବଢ଼ିଲା । ମତେ ନେତା ହିସାବରେ ନିଶ୍ଚୟ ଯେ ଫାଶୀ ହେବ, ତାହା ସମସ୍ତେ ଏକପ୍ରକାର ଧରିନେଇଥିଲେ ।

ମାତ୍ର ଆଇରିଶ୍ ଜଜ୍ ସାହେବଙ୍କ ମନରେ ଏହା ଏକ ଭିନ୍ନ ପ୍ରତିକ୍ରିୟା ସୃଷ୍ଟିକଲା । ସେ ଆଇରିଶ୍ ସ୍ଵାଧୀନତା ଲଢ଼ାଇ ଓ ସେ ଦେଶର ସ୍ଵାଧୀନତାପ୍ରେମୀ ବୀରଙ୍କର ମନୋଭାବ ସହ ପରିଚିତ ଥିଲେ—ତେଣୁ ବଡ଼ ଦୋଟାଇରେ ପଡ଼ିଲେ । ସରକାରୀ ଓକିଲଙ୍କ ଜରିଆରେ ମତେ ପ୍ରବର୍ତ୍ତାଇବାକୁ ଚେଷ୍ଟାକଲେ—ମୁଁ ଯେପରି ପୁଣି ସମ୍ମତ ହୁଏ ମକଦ୍ଦମା ଲଢ଼ିବା ନିମନ୍ତେ । ନାନାଭାବରେ ଅନୁନୟ ବିନୟ ଚାଲିଲା । ମୁଁ କିନ୍ତୁ ମୋ ସିଦ୍ଧାନ୍ତରେ ଅଟଳ ରହିଲି । ଆମ ବିରୁଦ୍ଧରେ ଯେତେ ଅଭିଯୋଗ ହୋଇଥିଲା, ସେଥିରୁ କେତେକର ପ୍ରତ୍ୟକ୍ଷ ପ୍ରମାଣ ରହିଥିଲା ଏବଂ ଅନ୍ୟ କେତେକ ଥିଲା ମିଥ୍ୟା ମନଗଢ଼ା ପ୍ରମାଣ—ଯାହା କରିବାରେ ପୁଲିସ ବଡ଼ ସିଦ୍ଧହସ୍ତ ଥିଲେ । ଆମେ ଯଦି ବିରୋଧରେ ସାକ୍ଷ୍ୟ ଆଦି ଦେଇ ଅପ୍ରମାଣ କରିବାର ଚେଷ୍ଟା କରିଥାଆନ୍ତୁ, ତାଙ୍କ ପକ୍ଷରେ ବୋଧହୁଏ ସହଜ ହୋଇଥାଆନ୍ତା—ଏଣୁ ତେଣୁ ସାକ୍ଷୀଙ୍କି ଧମକ ଦେଖାଇ ମିଥ୍ୟାକୁ ଆପାତତଃ ବିଶ୍ଵାସଯୋଗ୍ୟ ଅବସ୍ଥାରେ ପକାଇ-ଦେବା ନିମନ୍ତେ । ବିଚାରବେଳେ ଏକ ସରକାରୀ ପକ୍ଷ ସାକ୍ଷୀ ଠିକ୍ ସତ୍ୟ କହିଲା ଏବଂ ପୁଲିସ ବକ୍ତୃତାଠାରୁ ତାର ସାକ୍ଷ୍ୟରେ ଟିକିଏ ଅମେଳ ଘଟିବାରୁ ତାକୁ ଦଣ୍ଡିତ କରାଯିବାର ଧମକ ପ୍ରକାଶ୍ୟ କୋର୍ଟରେ ଦିଆଗଲା । ମୋର ମନେହୁଏ, ପୁଲିସ ସେଭଳି ସୁବିଧାରୁ ବଞ୍ଚିତ ହେଲେ । ବିଚାରପତି ମଧ୍ୟ ଏକତରଫା ସାକ୍ଷ୍ୟ ଉପରେ ଆମକୁ କିଭଳି ମୃତ୍ୟୁଦଣ୍ଡ ପରି ଶାସ୍ତି ଦେଇ ପାରନ୍ତେ ! ଫଳରେ ଆମେ ସବୁ ସେଭଳି ଶାସ୍ତିରୁ ବାହି ପାଇଗଲୁ । ମତେ ୭ ବର୍ଷ ସଶ୍ରମ କାରାଦଣ୍ଡ ଓ ମୋର ଅନ୍ୟ ସାଥିମାନଙ୍କୁ ୪ବର୍ଷ ଲେଖାଏଁ ସଶ୍ରମ କାରାଦଣ୍ଡ ମିଳିଲା । ବିଚାରପତି ମାହେର ତାଙ୍କର ରାୟରେ ମୋର ଚରମ ଦେଶପ୍ରେମ ଓ ବୁଦ୍ଧି ବିଚକ୍ଷଣତାର ଭୂରିଭୂରି ପ୍ରଶଂସା କଲେ ।

## ସରକାରଙ୍କ ମନରେ କୋକୁଆ ଭୟ

କଟକ ଜେଲ ଭିତରେ ବିଶେଷ ଜଗୁଆଳି ଓ କଟକଣା ଭିତରେ ମୋତେ ରଖାଗଲା ସିନା, ମାତ୍ର କିଛି ହାତକଡ଼ି ଆଦି ଦିଆ ହୋଇ ନଥିଲା । ମୋ ବିଷୟରେ ଏକ କୋକୁଆ ଭୟ ସରକାର ମନରେ ପ୍ରବେଶ କରିଥାଏ । ତେଣୁ କେତେବେଳେ କ'ଣ ହେବ, ମୁଁ ପଳାଇଯିବି,

ନଚେତ୍ ଜେଲ ଭିତରେ ବିଦ୍ରୋହ ହୋଇଯିବ ଏହିଭଳି ଆଶଙ୍କାରେ ମତେ ସମସ୍ତଙ୍କଠୁଁ ଅଲଗା ରଖି ସ୍ୱତନ୍ତ୍ର ପ୍ରହରୀ ଜଗାଉଥାନ୍ତି । କଟକ ଜେଲରେ ଥିବା ପର୍ଯ୍ୟନ୍ତ କେବଳ ବେଳେବେଳେ ଅନ୍ୟ ରାଜବନ୍ଦୀଙ୍କ ସହ ମିଶିବା ଲାଗି ସ୍ୱତନ୍ତ୍ର । ମୁଁ ଏହି କଟକଣାର ପୂର୍ଣ୍ଣ ସୁଯୋଗ ନେଲି । ମୋ ପାଖରେ ଯେଉଁ ସ୍ୱତନ୍ତ୍ର ପ୍ରହରୀ ରଖାଯାଇଥାଏ, ସେ ଜେଲ କର୍ତ୍ତୃପକ୍ଷଙ୍କର ପୂର୍ଣ୍ଣ ବିଶ୍ୱସ୍ତ । ମୁଁ ତାଙ୍କ ଜରିଆରେ ଚିଠି ଆଦି ପଠାଇ ମୋର ବାହାରେ ଥିବା ଗୁପ୍ତ ସଂଗଠନକୁ ସଞ୍ଚାଳିତ କରିଚାଲି । ଜେଲ ଭିତରେ ଯେଉଁ କ୍ଷଣିକ ସମ୍ପର୍କ ଜେଲ ସାଥିମାନଙ୍କ ସହ ହେଉଥାଏ, ସେଥି ଭିତରୁ ଯେଉଁ ଯୁବକ ଓ ଛାତ୍ରମାନଙ୍କର ଅଳ୍ପ ସଜା ହୋଇଥାଏ, ସେମାନଙ୍କୁ କିଛି ଟ୍ରେନିଂ ଦେଇ ଓ ବାହାରେ ଯାଇ ଗୁପ୍ତ ସଂଗଠନ ଚଳାଇବା ନିମନ୍ତେ ପ୍ରବର୍ତ୍ତାଇଲି । ସମ୍ପୃକ୍ତ ବ୍ୟକ୍ତିମାନଙ୍କୁ ଚିଠି ଆଦି ଦେଉଥିଲି । ପ୍ରକାରାନ୍ତରେ କହିଲେ ଏପରି କଟକଣା ମତେ ପୁଣି ଭିତରେ ଥାଇ ଯୁଦ୍ଧା ସଙ୍ଗଠନକୁ ବଞ୍ଚାଇ ରଖିବାକୁ ଏକ ମଉକା ଦେଲା । ଜେଲ ଭିତରର ସବୁ ବନ୍ଦୀଙ୍କର, ଜେଲ ଅଫିସର ସମସ୍ତ ବିବରଣୀ ପାଇବାର ବ୍ୟବସ୍ଥା ବି କରିଥାଏ । ଆମ କଟକର ନାସିର ବୋଲି ଏକ ନାମଜାଦା ଗୁଣ୍ଡା ଗିରଫ ହୋଇ କଡ଼ା ସଜା ପାଇଥାଏ । ଜେଲ ଭିତରେ ସେ ଥାଏ ଜେଲରଙ୍କର ଅତି ପ୍ରିୟପାତ୍ର । କଏଦୀଙ୍କୁ ଜବତ୍ କରିବା ନିମନ୍ତେ ଜେଲ କର୍ତ୍ତୃପକ୍ଷ ତାକୁ ବ୍ୟବହାର କରନ୍ତି । ତାକୁ ଏକ ହାଲୁକା କାମ ଦିଆଯାଇଥାଏ—ସେ ସବୁ ଓ୍ୱାର୍ଡ଼କୁ ଯିବ—ଲଣ୍ଠନଗୁଡ଼ିକ ଆଣିବ, ସଫା କରିବ, ପୁଣି ତେଲ ଭର୍ତ୍ତିକରି ସେଗୁଡ଼ିକ ଟାଙ୍ଗିଦେଇ ଆସିବ । ଲଣ୍ଠନ ଯେପରି କଏଦୀ ଛୁଇଁ ନ ପାରିବେ ସେଥିଲାଗି ବହୁତ ଉପରେ ତାହା ଟଙ୍ଗାହୋଇ ରହିଥାଏ ଏବଂ ରାତିଯାକ ଜଳୁଥାଏ । ନାସିରର ଅବାରିତ ପ୍ରବେଶ ଥାଏ ପ୍ରତ୍ୟେକ ଓ୍ୱାର୍ଡ଼କୁ ଏବଂ ଜେଲ ଅଫିସକୁ । ମୁଁ ତାହା ସହ ବନ୍ଧୁତା ଜମାଇଲି ଏବଂ ସେ ପ୍ରାୟ ପ୍ରତି ମୁହୂର୍ତ୍ତରେ ଜେଲର ଘଟଣାବଳୀ ମତେ ଜଣାଏ । ହଠାତ୍ ଦିନେ ପ୍ରାୟ ସଞ୍ଜବେଳେ ସେ ଆସି ଖବର ଦେଲା ଯେ ଜଣେ କେହି ଗିରଫ ହୋଇ ଆସିଛନ୍ତି ଏବଂ ମୋ ବିଷୟରେ ଜେଲ ଅଫିସରେ ବଡ଼ ଅଫିସର, ପୁଲିସ ଓ ଜେଲ କର୍ତ୍ତୃପକ୍ଷଙ୍କ ଭିତରେ କଣ ସବୁ କଥାବାର୍ତ୍ତା ଚାଲିଛି । ଗିରଫ ହୋଇଥିବା ବ୍ୟକ୍ତି ପ୍ରିୟନାଥ ଦେଙ୍କୁ ହତ୍ୟା ଆସାମୀ ସେଲ୍ ଭିତରେ ରଖାଯାଇଛି । ତାକୁ ପଠାଇ ଆଉ କେତେକ ତଥ୍ୟ ବି ପାଇଲି । ମୋର ହାତଲେଖା ଚିଠି, ଅରୁଣା ଆସଫ ଅଲୀଙ୍କର ମୋ ପାଖକୁ ଚିଠି ଏବଂ କେତେକ ଦେଆଇନ ବୁଲେଟିନ୍ ଓ ଆଗାମୀ ରାଜପ୍ରାସାଦ ଆକ୍ରମଣ ସମ୍ବନ୍ଧରେ ଯୋଜନା ଇତ୍ୟାଦି କାଗଜପତ୍ର ଧରାପଡ଼ିଛି । ଏହାଦ୍ୱାରା ମୁଁ ଯେ ଜେଲ ଭିତରେ ରହି ଷଡ଼ଯନ୍ତ୍ର ଚଳାଇଛି, ଏହା ଧରାପଡ଼ିଗଲା ଏବଂ ତହିଁପରଦିନ ୨୪ ଘଣ୍ଟା ଭିତରେ ହାତକଡ଼ି ଦେଇ ମୋର ବଦଳି ହୋଇଗଲା କୋରାପୁଟ ଜେଲକୁ ନିର୍ଜନ କାରାବାସ ଭୋଗିବା ନିମନ୍ତେ । ଆଉ କିଛି ଶାସ୍ତି ହେବ ବୋଲି ଆଶଙ୍କା କରୁଥିଲି; ମାତ୍ର ସେଠାରେ ଏକ ନିର୍ଜନ ବନ୍ଦ କୋଠରିରେ ୧୦ ମାସ କାଳ ରହିବା ଛଡ଼ା ଅନ୍ୟ କିଛି ନିର୍ଯ୍ୟାତନା ଭୋଗିବାକୁ ପଡ଼ିନଥିଲା ।

## କୋରାପୁଟ ଜେଲ

ଏହିସବୁ କାରଣରୁ ୧୯୪୨ର ପୂର୍ବ ଜେଲ ଜୀବନ ମତେ କ୍ଳେଶଦାୟକ ହୋଇ ନ ଥାଆନ୍ତା, ମାତ୍ର ଅଣ୍ଡରଗ୍ରାଉଣ୍ଡ ଅବସ୍ଥାରେ ଥିବାବେଳେ ମୋର ସମ୍ପୂର୍ଣ୍ଣ ସ୍ୱାସ୍ଥ୍ୟହାନି ଘଟିଥିଲା । ନାନା ଅସୁବିଧା ଓ ଉତ୍କଣ୍ଠା ଭିତରେ ଦିନ କଟାଇଥିବାରୁ ପେଟ ରୋଗ ଆରମ୍ଭ ହୋଇଥିଲା । କଟକ ଜେଲରେ ଚିକିତ୍ସା ଯୋଗୁଁ କୌଣସି ପ୍ରକାରେ ଉପଶମ ହୋଇଥିଲା ଏବଂ ପରେ ମତେ ଅନ୍ୟ ସାଥିବନ୍ଦୀଙ୍କ ସହିତ ରହିବାଲାଗି ଦିଆଯିବାରୁ ଆନନ୍ଦରେ ଦିନ ବିତାଉଥିଲି; କିନ୍ତୁ ଦଣ୍ଡସ୍ୱରୂପ ମତେ ଯେ କୋରାପୁଟ ପଠାଇ ଦିଆଗଲା ସେହିଠାରେହିଁ ମୋର ଦୁର୍ଦ୍ଦଶା ଆରମ୍ଭ ହୋଇଗଲା । ସେତେବେଳେ କୋରାପୁଟର ଜଳବାୟୁ ସମ୍ପୂର୍ଣ୍ଣ ଅସ୍ୱାସ୍ଥ୍ୟକର—ସେଥିରେ ପୁଣି ସଙ୍ଗୀ ସାଥିହୀନ ନିର୍ଜନ କାରାବାସ । ମନ ଦମ୍ଭ ଥିଲେ ବି ଶରୀର ସହିପାରିଲା ନାହିଁ । କଳାଜ୍ୱର ହେଲା ଏବଂ ପେଟରୋଗ ବଢ଼ି ମୁଁ ପ୍ରାୟ ୪୫ ପାଉଣ୍ଡ କମିଗଲି ଏବଂ ରକ୍ତହୀନତା ଇତ୍ୟାଦି ହେଲା । ଚିକିତ୍ସାର କିଛି ବ୍ୟବସ୍ଥା ନ ଥିଲା । ସେତେବେଳେ ଓଡ଼ିଶାରେ କଟକ ମେଡ଼ିକାଲ ସ୍କୁଲ ଛଡ଼ା ଅନ୍ୟ କେଉଁଠି ଏକ୍ସରେ ନ ଥାଏ ପରୀକ୍ଷା କରିବା ନିମନ୍ତେ । ମୋ ପ୍ରତି ବ୍ରିଟିଶ ସରକାରର ଏତେ କୋପ ଯେ, ଆମର ଜଣେ ଭାରତୀୟ ଡାକ୍ତର ଜଗନ୍ନାଥ ଦାସ କୋରାପୁଟ ଜେଲ୍‌ର ସୁପରିଣ୍ଟେଣ୍ଡେଣ୍ଟ ହିସାବରେ ମୋର ରୋଗ ନିର୍ଣ୍ଣୟ ନିମନ୍ତେ ମତେ କଟକ ପଠାଇବାଲାଗି ସରକାରଙ୍କୁ ଲେଖିବାହେତୁ ହଠାତ୍ ତାଙ୍କର ବଦଳି ଅର୍ଡ଼ର ହୋଇଗଲା; ମାତ୍ର ମୋର ନୁହେଁ । ମୋତେ ତ ବହିପତ୍ର ଦିଆଯାଉ ନ ଥାଏ; ତେବେ କଟକ ଜେଲ୍‌ରେ ଜବାହାରଲାଲଙ୍କ ବିଶ୍ୱଇତିହାସର ଅନୁବାଦ ଖାତାଗୁଡ଼ିକ ଓ ତାହା ସହିତ କେତେକ ଅଲେଖା ଖାତା ଯାହା ମୋ ପାଖରେ ଥିଲା, ତାହା ମତେ ଦିଆଯାଇଥାଏ । ଏହିଭଳି ଅସୁସ୍ଥ ଅବସ୍ଥାରେ ମୋ ମନକୁ କବିତା ପଶିଥିଲା । କିଛି ଗୀତ ବି ଲେଖିଲି । ଗୀତଗୁଡ଼ିକ ହଜି ଯାଇଛି; ଲେଖିଥିଲି—ଗୋଟିଏ ପଦ ମନେପଡ଼ୁଛି—"ଥକି ପଡ଼ିଲୁ କି ? ମୂଲିଆ ଭାଇ, ସ୍ୱରାଜ ପାଇଁ, କରି ଲଢ଼ାଇରେ· · · ·। ଏ ଦେଶେ ପରୀ ତୋହରି ଘର, ବିଦେଶୀ ତୋତେ କରିଛି ପର ରେ·········। ସେହି ଶାସନ, କରିବୁ ନାଶ, ନେଇଛୁ ପଣରେ·········ଥକି ପଡ଼ିଲୁ କି ?" ଏଇଥିରୁ ଅସୁସ୍ଥ ବେଳର ମାନସିକ ଦ୍ୱନ୍ଦ୍ୱର ପରିଚୟ ମିଳେ । ଏହି ସମୟରେ ମୁଁ "ବନ୍ଦୀର ଭାବନା" ବୋଲି ଏକ କାବ୍ୟ ଲେଖିଲି । ମୋର 'ଅଗଷ୍ଟ ବିପ୍ଳବ" ପୁସ୍ତକରେ ତାହା ସନ୍ନିବେଶିତ କରାଯାଇଛି ।

ବ୍ରିଟିଶ ଗଭର୍ଣ୍ଣମେଣ୍ଟ ମତେ ଏ ଦଣ୍ଡ ଦେଇ ମୋ ମନର ବଳ ଭାଙ୍ଗି ପାରିଲା ନାହିଁ । ମୁଁ ଏହିଠି ସିଦ୍ଧାନ୍ତ କଲି ଆଉ ସାମ୍ବାଦିକତା ନ କରି ପୂରା ସମୟ ରାଜନୀତିକ କାର୍ଯ୍ୟରେ ଦେବି ଏବଂ ତାହାହିଁ ଆଜି ଯାଏ କରି ଆସିଛି । ମାତ୍ର ମୋର ଜେଲ ଭିତରେ ଯେ ସ୍ୱାସ୍ଥ୍ୟହାନି ଘଟିଲା, ତାହା ଯଥା ସମ୍ଭବ ଚେଷ୍ଟା ସତ୍ତ୍ୱେ ଆଉ ଫେରି ପାଇଲି ନାହିଁ । ପେଟ

ରୋଗ ସକାଶେ ମୁଁ ଥରେ ମୋର ପେଟ ଅପରେସନ୍ ହୋଇଛୁ ଏବଂ ଦେଶ ଭିତରେ ଓ ବାହାରେ ଚିକିତ୍ସା କରାଇ ସୁଦ୍ଧା ଉପଶମ ହୋଇନାହିଁ । ତାହା ସାଙ୍ଗକୁ ମଧୁମେହ, ଗୃଧ୍ରସି ଏବଂ ଅନ୍ୟ ସ୍ନାୟୁବିକ ରୋଗରେ ମୁଁ ବରାବର ଭୋଗୁଛୁ ।

ମୁଁ ଜେଲ ଭିତରେ ଏକ ନିଭୃତ କୋଣରେ ପଡିରହିଥିବାବେଳେ ରାଜନୀତିକ ପରିସ୍ଥିତିର ବହୁ ପରିବର୍ତ୍ତନ ଘଟିଗଲା । ଯୁଦ୍ଧର ଅବସାନ ଘଟିଲା । ତାହା ପୂର୍ବରୁ ଗାନ୍ଧୀଜୀଙ୍କ ସ୍ୱାସ୍ଥ୍ୟର ଅବନତି ଘଟିବା ହେତୁ ୧୯୪୪ ମସିହା ମଇମାସ ୬ ତାରିଖରେ ଇଂରେଜ ସରକାର ତାଙ୍କୁ ଆଗାଖାଁ ପ୍ରାସାଦରୁ ମୁକ୍ତ କରିଦେଲେ । ରାଜନୀତିକ ଆକାଶରୁ କଳାବଉଦ କ୍ରମେ ଉଭେଇଗଲା ପରି ଲାଗିଲା । କଂଗ୍ରେସ ନେତାମାନେ କ୍ରମେ ମୁକ୍ତିଲାଭ କଲେ । କେନ୍ଦ୍ର ଆସେମ୍ବ୍ଲି ନିର୍ବାଚନରେ କଂଗ୍ରେସ ଭାଗ ନେଲା ଏବଂ ଓଡ଼ିଶାର ଯେଉଁ ଦୁଇଟି ସ୍ଥାନ ଥିଲା ତାହା କଂଗ୍ରେସ ପାଇଲା । ଏହା ପରେ ୧୯୪୬ ମାର୍ଚ୍ଚ ମାସରେ ଓଡ଼ିଶା ଆସେମ୍ବ୍ଲିର ନିର୍ବାଚନ ମଧ୍ୟ ହେଲା । ସେତେବେଳକୁ ଆସେମ୍ବ୍ଲି ସଭ୍ୟ ସଂଖ୍ୟା ଥାଏ ୬୦ । ବିନା ପ୍ରତିଦ୍ୱନ୍ଦ୍ୱିତାରେ କଂଗ୍ରେସ ଅଧିକାଂଶ ସ୍ଥାନ ପାଇଯିବାରୁ ନୂଆ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତହେଲା ।

ସବୁ ରାଜନୀତିକ ବନ୍ଦୀଙ୍କ ମୁକ୍ତି ଘଟିଲା । ଦେଶରେ ନିର୍ବାଚନ ମଧ୍ୟ ହୋଇଗଲା । ଆମ ଓଡ଼ିଶା ଷଡ଼ଯନ୍ତ୍ର ମକଦ୍ଦମାରେ ଦଣ୍ଡିତ ସାଥୀଙ୍କ ଭିତରୁ କେତେଜଣ ଆଗରୁ ଅନ୍ୟ କାରଣରୁ ଖଲାସ ହୋଇଥିଲେ—ମାତ୍ର ଆମ କେତେଜଣଙ୍କୁ ମୁକ୍ତି ଦିଆଗଲା ନାହିଁ କିମ୍ବା ଓଡ଼ିଶାରେ ଯେ ନିର୍ବାଚନ ହୋଇଗଲା ସେଥିରେ ଭାଗ ନେବା ନିମନ୍ତେ ସୁଯୋଗ ମିଳିଲା ନାହିଁ ।

ମହତାବ ମନ୍ତ୍ରୀମଣ୍ଡଳ ଶପଥ ନେବା ଦିନହିଁ ଆମକୁ ମୁକ୍ତ କରିଦେବାର ନିର୍ଦ୍ଦେଶ ଆସିଲା । ସେତେବେଳକୁ ମୁଁ କୋରାପୁଟରୁ ବଦଳି ହୋଇ ଅନ୍ୟ ସାଥୀମାନଙ୍କ ସହ ଆସି କଟକ ଜେଲରେ ଥାଏ । ଏପରି ଖଲାସରେ ମଧ୍ୟ ଏକ ଛୋଟିଆ ଝଡ଼ ସୃଷ୍ଟି ହୋଇଗଲା ଏବଂ ମୋର ମନେହୁଏ, ଏହାହିଁ ହରେକୃଷ୍ଣ ମହତାବଙ୍କ ସହ ମୋର ରାଜନୀତିକ ମତଭେଦର ଆରମ୍ଭ କହିଲେ ଚଳେ । ପରବର୍ତ୍ତୀ ଯାହାସବୁ ବିବାଦ ତାଙ୍କ ସହ ହେଲା ଏଇଥିରୁ ଉଦ୍ଭବ ବୋଲି ମୋର ଅନୁମାନ । ମୁଁ ଅନ୍ୟମାନଙ୍କ ଭଳି ଜେଲରୁ ଶୀଘ୍ର ବାହାରିଯିବା ନିମନ୍ତେ ବ୍ୟଗ୍ର ନ ଥିଲି କିମ୍ବା ବାହାରେ ମୋର ପିତାମାତା ଆଦି ମୋ ଉପରେ ନିର୍ଭରଶୀଳ ନ ଥିଲେ ଯେ ମୁଁ ଆଉ କିଛିଦିନ ଜେଲ ଭିତରେ ରହିଲେ ସେମାନଙ୍କର କିଛି ଅଧିକ କ୍ଷତି ଘଟନ୍ତା । ଜେଲମୁକ୍ତି ଆଦେଶ ମତେ ଜେଲ କର୍ତ୍ତୃପକ୍ଷ ଜଣାଇଲେ ସୁଦ୍ଧା ସମସ୍ତ ରାଜବନ୍ଦୀ ଖଲାସ ନ ହେବା ପର୍ଯ୍ୟନ୍ତ ମୁଁ ଜେଲରୁ ବାହାରିବାକୁ ଅସମ୍ମତ ହେଲି । ମୋର ବକ୍ତବ୍ୟ ହେଲା ଯେ ପୂର୍ବ ଅଭିଜ୍ଞତାରୁ ଦେଖାଯାଇଛି ଅତି ଗୁରୁତର ଅପରାଧରେ ବହୁବର୍ଷ କାରାଦଣ୍ଡ ହୋଇଥିବା ରାଜବନ୍ଦୀମାନଙ୍କ ମୁକ୍ତିରେ ବିଳମ୍ବ ଓ ଅସୁବିଧା ଘଟେ । ଓଡ଼ିଶାରେ ଯାହା ଘଟିଛି, ସେଥିଲାଗି ମୋର ନୈତିକ ଦାୟିତ୍ୱ ରହିଛି । ତେଣୁ ଜଣେହେଲେ ବନ୍ଦୀ ରହିଥିବା ପର୍ଯ୍ୟନ୍ତ ମୁଁ ଯିବା ପ୍ରଶ୍ନ ଉଠୁନାହିଁ । ଜେଲ କର୍ତ୍ତୃପକ୍ଷ ମହା ଜଞ୍ଜାଳରେ ପଡ଼ିଲେ ।

ସଂଖ୍ୟା ହୋଇଯାଇଥିଲା; ସେମାନେ ମତେ ଭିତରେ ଆଉ ରଖିପାରନ୍ତେନାହିଁ; ଏଣେ ବାହାରେ ଶହ ଶହ ଲୋକ ଜମା ହୋଇଥିଲେ ମତେ ପାଛୋଟି ନେବା ନିମନ୍ତେ । ମତେ ଖଲାସ କରାଯିବାରେ ବିଳମ୍ବ ଦେଖି ସେମାନେ ମଧ୍ୟ ଜେଲ କର୍ତ୍ତୃପକ୍ଷଙ୍କୁ ଅସ୍ତବ୍ୟସ୍ତ କରିପକାଉଥିଲେ । ଜେଲ୍ କର୍ତ୍ତୃପକ୍ଷ ଉପରକୁ ସମ୍ବାଦ ଦିଅନ୍ତେ ମହତାବଙ୍କ ତରଫରୁ ହରି ପଟ୍ଟନାୟକ ଆସିଲେ ମତେ ପ୍ରବର୍ତ୍ତାଇବା ନିମନ୍ତେ, ମହତାବଙ୍କ ଅନୁରୋଧରେ । ମୁଁ ତାଙ୍କୁ ସଫା କହିଦେଲି—"ମନ୍ତ୍ରୀମଣ୍ଡଳ ସିନା ଗାଦି ପାଇଲା, ବ୍ରିଟିଶ ଗଭର୍ଣ୍ଣର ଏବଂ ଇଂରେଜ ଚିଫ୍ ସେନେଟେରୀ ରହିଛନ୍ତି; ସେମାନେ ଯେ ମନ୍ତ୍ରୀଙ୍କର ସବୁ ନିଷ୍ପତ୍ତି ମାନିବେ ସେପରି କିଛି କଥା ନାହିଁ । ତେଣୁ ମହତାବଙ୍କ ପ୍ରତିଶ୍ରୁତି ଯଥେଷ୍ଟ ନୁହେଁ । ମତେ ଯଦି ଚିଫ୍ ସେକ୍ରେଟେରୀ ଜଣାଇବେ ଯେ ସମସ୍ତଙ୍କୁ ଖଲାସ କରିଦେବାର ଅର୍ଡର ହୋଇଛି ତେବେ ମୁଁ ଜେଲ୍ ଛାଡ଼ିବି ।" ଏପରି ଜିଦ୍ ଧରିବାରୁ ଶେଷରେ ଚିଫ୍ ସେକ୍ରେଟେରୀ ଟେଲିଫୋନ୍‌ରେ ମତେ ଏକଥା ଜଣାଇଲେ ଏବଂ ମୁଁ ମୁକ୍ତ ଆକାଶକୁ ପ୍ରାୟ ୩ ବର୍ଷ ୯ ମାସ ପରେ ଆସିଲି । ଏକ ବିରାଟ ଶୋଭାଯାତ୍ରାରେ ବନ୍ଧୁମାନେ ସହର ପରିକ୍ରମା କରି ମତେ ସ୍ୱରାଜ ଆଶ୍ରମକୁ ନେଇଆସିଲେ; ହରେକୃଷ୍ଣ ମହତାବ ସେଇଠି ରହୁଥିଲେ । ସେ ଆସିଲେ ନାହିଁ କି ଅନ୍ୟ ବନ୍ଧୁଙ୍କ ସହ ମୋର ସମ୍ବର୍ଦ୍ଧନାରେ ଯୋଗ ଦେଲେ ନାହିଁ । ତତ୍ପର ଦିନ ଗୌରୀଶଙ୍କର ପାର୍କରେ ସାଧାରଣ ସଭାରେ ମତେ ସମ୍ବର୍ଦ୍ଧନା ଦିଆଗଲା ଏବଂ ଏକ ଥଳୀ ଭେଟି ମିଳିଲା । ମତେ ଦେଖିବା ଓ ମୋ ଭାଷଣ ଶୁଣିବାଲାଗି ପ୍ରବଳ ଜନଭିଡ଼ । କଂଗ୍ରେସ ଲୋକେ ଖୁବ୍ ଆଗ୍ରହୀ ଓ ଖୁସି । ଏହି ସଭାରେ ମୁଁ ଘୋଷଣା କଲି ଯେ ବ୍ରିଟିଶ ଗଭର୍ଣ୍ଣର ଆମ ଦେଶ ଶାସନର ମୁଖ୍ୟ ହୋଇ ରହିଥିବା ପର୍ଯ୍ୟନ୍ତ ସଂଗ୍ରାମ ଜାରି ରହିବ । ଆମେ ଜେଲରୁ ମୁକ୍ତିଲଭିଲୁ ସତ୍ୟ, ମାତ୍ର ଦେଶ ଏବେ ସୁଦ୍ଧା ବ୍ରିଟିଶ କବଳରେ ରହିଛି, ତାହାରୁ ମୁକ୍ତି ଲଭି ନାହିଁ, ତେଣୁ ସଂଗ୍ରାମୀମାନଙ୍କର ଶାନ୍ତିନାହିଁ କି ଆରାମ ନାହିଁ । ଜେଲରୁ ଖଲାସ ହେବା ଏବଂ ବାହାରେ ଆସି ଗଭର୍ଣ୍ଣର ବିରୋଧରେ ଏପରି କହିବାଟା ବୋଧହୁଏ ମହତାବଙ୍କୁ ସୁଖ ଲାଗିଲା ନାହିଁ । ଖବର ପାଇଲି ସେ ଖୁବ୍ ଚିଡ଼ିଗଲେ । ନୂତନ ହୋଇ ମୁଖ୍ୟ ଶାସକ ହୋଇଥିଲେ; କୌଣସି ପ୍ରକାର ତାଙ୍କୁ ସୁହାଇଲା ଭଳି କଥା ନ ହେଲେ ସେ ପସନ୍ଦ କରନ୍ତି ନାହିଁ । ସେଇ କାରଣରୁ ବୋଧହୁଏ ତତ୍ପର ଦିନ ମୋର ସମ୍ବର୍ଦ୍ଧନା ଲାଗି ରଘୁନାଥପୁରରେ ହୋଇଥିବା ସଭାକୁ ଯିବା ନିମନ୍ତେ ଆଗରୁ ସମ୍ମତି ଦେଇ ସୁଦ୍ଧା ସେ ଗଲେ ନାହିଁ, ନିତ୍ୟାନନ୍ଦ କାନୁନ୍‌ଗୋ ଓ ମାଳତୀ ଚୌଧୁରୀ ଏ ସଭାରେ ଯୋଗଦେଲେ ।

## ବାହାର ପରିସ୍ଥିତି

ଏତେ କାଳ ପରେ ପଦାକୁ ଆସିଲି । ଏଥିଭିତରେ ଘଟିଥିବା ରାଜନୀତିକ ବିଷୟ ସହିତ ସମ୍ପୃକ୍ତ ହୋଇ ନ ଥିଲି କିମ୍ବା କଂଗ୍ରେସ ଲୋକଙ୍କ ମତିଗତି ବିଷୟରେ ମୋର କିଛି ଜ୍ଞାନ ନଥିଲା । ମନ୍ତ୍ରୀ, ମେମ୍ବର ହେଲା ପରେ ଏବଂ କଂଗ୍ରେସ ସରକାର ଗଠିତ ହେବା ପରେ

ନିଶ୍ଚିତ ଭାବରେ ସେମାନଙ୍କ ଭିତରେ ଏକ ସ୍ୱସ୍ତି ଭାବ ବିରାଜୁଥିଲା । ଏଣେ ନବବାବୁ ମନ୍ତ୍ରୀ-ମଣ୍ଡଳରେ ଯୋଗ ଦେଇସାରିଥିଲେ । ମୁଁ ଜେଲ ଭିତରେ ଥିବାବେଳେ କଂଗ୍ରେସ ପ୍ରାର୍ଥୀ ନିର୍ବାଚନରେ କେତେକ ଅବାଞ୍ଛିତ ବ୍ୟକ୍ତିଙ୍କୁ ମନୋନୟନ କରାଯାଉଛି ବୋଲି ସମ୍ବାଦ ପାଇ ନବବାବୁଙ୍କୁ ଏକ ଦୀର୍ଘପତ୍ର ଦେଇଥିଲି । ସେଥିରେ ଲେଖିଥିଲି—ଏଭଳି ବ୍ୟକ୍ତିମାନଙ୍କ ଅନୁପ୍ରବେଶ ସଂଗ୍ରାମୀ ମନୋଭାବକୁ କ୍ଷୁଣ୍ଣ କରିବ; ସେ ସେଥିପ୍ରତି ସତର୍କ ରହି ୧୯୪୨ ବିପ୍ଳବରେ ବାହାରିଥିବା ଯୁବସମ୍ପ୍ରଦାୟଙ୍କୁ ନେତୃତ୍ୱ ଦେବାଲାଗି ବାହାରେ ରହିବା ଉଚିତ । କିଏ କୁଆଡ଼େ ଛିନ୍ନଛତର ହୋଇଛନ୍ତି; ମୋର ନିଜର ବି କିଛି ଠିକଣା ନ ଥାଏ; କଣ କରାଯିବ ଏହା ପୈଇଁ ନାନା କଳ୍ପନା ଜଳ୍ପନା କରୁଥାଏ । ଏତିକିବେଳେ ଜୟପ୍ରକାଶ ନାରାୟଣଙ୍କଠାରୁ ଏକ ତାର ପାଇଲି ତାଙ୍କୁ ଯାଇ ପାଟନାରେ ଭେଟିବା ନିମନ୍ତେ । ପାଟନାଠାରେ ସେ ବିହାରର ମୁଖ୍ୟ ସୋସଲିଷ୍ଟ ଓ ଅଗଷ୍ଟବିପ୍ଳବୀମାନଙ୍କର ଏକ ବୈଠକ ଡକାଇଥାନ୍ତି ଭବିଷ୍ୟତ କର୍ମପନ୍ଥା ସମ୍ବନ୍ଧରେ ବିଚାର କରିବା ନିମନ୍ତେ । ମୁଁ ତାଙ୍କ ବୈଠକରେ ଯୋଗଦେଲି । ପୁନର୍ବାର କଂଗ୍ରେସ ସୋସଲିଷ୍ଟ ପାର୍ଟିକୁ ଗଠନ କରାଯିବ ନା ଅଗଷ୍ଟ ବିପ୍ଳବ ଯୋଗୁଁ ଜୟପ୍ରକାଶଙ୍କ ପରି ଆମର ଯେଉଁ ସାଥିମାନେ ଜାତୀୟ ବୀର ହୋଇଛନ୍ତି, ତାର ସୁଯୋଗ ନେଇ ବ୍ୟାପକ କ୍ଷେତ୍ରରେ କଂଗ୍ରେସ ଭିତରେ ଅଭିଯାନ କରି କଂଗ୍ରେସକୁ ଅଧିକ ଉଗ୍ରପନ୍ଥା ଦିଗକୁ ନେବା ନିମନ୍ତେ ଚେଷ୍ଟା କରାଯିବ—କିଛି ସ୍ଥିର ସିଦ୍ଧାନ୍ତରେ ପହଞ୍ଚି ପାରିଲେ ନାହିଁ । ମୁଁ ଫେରିଆସିଲି । ସ୍ଥିର ହେଲା ଜେ. ପି. ପୁଣି ସାରା ଭାରତର ସାଥିଙ୍କୁ ବମ୍ବେଠାକୁ ଡକାଇବେ ଏବଂ ସେଠାରେ ସବୁ କଥା ସ୍ଥିର କରାଯିବ ।

ମୁଁ ଏଠାକୁ ଫେରିଆସି କେତେଜଣ ପୁରୁଣା ସାଥିଙ୍କୁ ନବବାବୁଙ୍କ ଘରକୁ ଡ଼କାଇଲି । ନବବାବୁ ସେଥିରେ ଯୋଗ ଦେଲେ ନାହିଁ କିମ୍ବା କିଛି ମତ ଦେଲେ ନାହିଁ । ମାଳତୀ ଚୌଧୁରୀ ଓ ଗୌରାଙ୍ଗ ଚରଣ ଦାସ ପୁରୁଣା ସାଥିଙ୍କ ଭିତରୁ ଉପସ୍ଥିତ ଥିଲେ । ପାର୍ଟି ପୁନର୍ବାର ଗଠନ ସପକ୍ଷରେ ମତ ଦେଲେ ନାହିଁ; ମୁଁ ମଧ୍ୟ ଉପରେ ଅନିଶ୍ଚୟତା ଦେଖି କିଛି ସ୍ଥିର କରିପାରିଲି ନାହିଁ । ମୋଟାମୋଟି ରୂପେ ଧାର୍ଯ୍ୟ ହେଲା ଯେ କଂଗ୍ରେସ ସଂଗଠନ କାର୍ଯ୍ୟରେ ସମସ୍ତେ ଲାଗିବେ ।

କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହେବାରେ ଓଡ଼ିଶାରେ ହରେକୃଷ୍ଣ ମହତାବଙ୍କ ନେତୃତ୍ୱ ପ୍ରତିଷ୍ଠିତ ହେଲା ଏବଂ ସେ ତାକୁ ସୁଦୃଢ଼ କରିବା ନିମନ୍ତେ ଯଥାସମ୍ଭବ ଅନବରତ ଚେଷ୍ଟା କଲେ । କୌଣସି ବିରୋଧ ପ୍ରତିବାଦ ଏପରିକି ଭିନ୍ନମତ ସହିବାଭଳି ଧୈର୍ଯ୍ୟ ତାଙ୍କର ନଥାଏ । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ନୂତନ ନିର୍ବାଚନ ଆସିଲା । ମନ୍ତ୍ରୀମଣ୍ଡଳର ସମର୍ଥକଙ୍କ ପକ୍ଷରୁ ବିଶ୍ୱନାଥ ଦାସଙ୍କୁ ସଭାପତି କରାଯିବାର ପ୍ରସ୍ତାବ ହେଲା । ସେ ନିର୍ବାଚନ ମକଦ୍ଦମାରେ ପ୍ରାର୍ଥୀ ହେବାକୁ ଅଯୋଗ୍ୟ ବୋଲି ଘୋଷିତ ହୋଇଥିବାରୁ ନିର୍ବାଚନ ଲଢ଼ି ନ ଥିଲେ ଏବଂ ତାଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ମନ୍ତ୍ରୀପକ୍ଷ ଏହା କରୁଥିଲେ । ମାତ୍ର କଂଗ୍ରେସ ଭିତରର ଯୁବଗୋଷ୍ଠୀ ତାଙ୍କୁ ନିର୍ବାଚନରେ ପରାସ୍ତ କରିଦେଲେ ଏବଂ ଶ୍ରୀମତୀ ମାଳତୀ ଚୌଧୁରୀ

ନିର୍ବାଚିତ ହେଲେ । ମୁଁ ପ୍ରାଦେଶିକ କଂଗ୍ରେସ କମିଟିର ସାଧାରଣ ସମ୍ପାଦକ ଭାବରେ ମନୋନୀତ ହେଲି । କଂଗ୍ରେସ କାର୍ଯ୍ୟକୁ ପୁନର୍ଗଠିତ କରି ଏକ ନିର୍ଦ୍ଦିଷ୍ଟ ଧାରାରେ ପକାଇବାର ଉଦ୍ୟମ ହେଲା ।

ଦୀର୍ଘଦିନ କାରାବାସ ଓ ତାହା ପରେ ନିର୍ବାଚନ ଓ ମନ୍ତ୍ରୀମଣ୍ଡଳ ଆଦି ଗଠିତ ହେବା ଯୋଗୁଁ କଂଗ୍ରେସ ସଂଗଠନ ସେପରି ସକ୍ରିୟ ହୋଇ ରହି ନ ଥିଲା । ଜିଲ୍ଲା ଓ ଅନ୍ୟ ସ୍ତରରେ ଏହାକୁ ନୂତନ ଜୀବନ ଦେବାକୁ ହେବ । କଂଗ୍ରେସ ପଛ ମଧ୍ୟ ଦେଶରେ ପ୍ରବଳ ସମର୍ଥନ ଓ ସହଯୋଗ ରହିଥିଲା । ଓଡ଼ିଶାର ପ୍ରତିଷ୍ଠିତ ନେତୃମଣ୍ଡଳୀ ପ୍ରାୟ ବିଧାନସଭା ବା ମନ୍ତ୍ରୀପରିଷଦରେ ରହିସାରିଥିଲେ । ତେଣୁ ମୁଁ ଭାବିଲି ଯୁବଗୋଷ୍ଠୀଙ୍କ କଂଗ୍ରେସର ସଂଗଠନ କାର୍ଯ୍ୟରେ ଲଗାଇବ । ଓଡ଼ିଶାରେ ନିର୍ବାଚନରେ କଂଗ୍ରେସ ସଂଖ୍ୟାଧିକ ସ୍ଥାନ ହାସଲ କରିଥିଲା; ମାତ୍ର ଶ୍ରମିକମାନଙ୍କ ଲାଗି ନିର୍ଦ୍ଦିଷ୍ଟ ଥିବା ଏକ ଆସନଟି କଂଗ୍ରେସ ହରାଇ-ଥିଲା; ସେଥିରୁ କମ୍ୟୁନିଷ୍ଟ ବୈଦ୍ୟନାଥ ରଥ ନିର୍ବାଚିତ ହୋଇ ଆସିଥିଲେ । ଶ୍ରମିକ କ୍ଷେତ୍ରରେ କଂଗ୍ରେସର ପ୍ରବେଶ ନ ଥିଲା କହିଲେ ଚଳେ ।

ମୋର ସମସ୍ତ ସମୟ ଦେଇ ମୁଁ କଂଗ୍ରେସର ପୁନର୍ଗଠନ କାର୍ଯ୍ୟରେ ଲାଗିପଡ଼ିଲି । ଯୁବକ, ଛାତ୍ର, ଗଡ଼ଜାତ ଓ ଶ୍ରମିକବିଭାଗ ଆଦି ଖୋଲାଗଲା ଏବଂ ନୂତନ ଯୁବକମାନଙ୍କୁ ଏହାର ଦାୟିତ୍ୱ ଦିଆଗଲା । ଅଠଗଡ଼ର ଶ୍ରୀ ରାଧାନାଥ ରଥଙ୍କ ଭାଇ ଶ୍ରୀ ବିଶ୍ୱନାଥ ରଥଙ୍କୁ ଗଡ଼ଜାତ ବିଭାଗର ଦାୟିତ୍ୱ ଦିଆଗଲା ଏବଂ କଲିକତାରେ ଶ୍ରମିକ ସଂଗଠନରେ ଅଭିଜ୍ଞ ଶ୍ରୀ ରବୀନ୍ଦ୍ର ମୋହନ ଦାସଙ୍କୁ ଟ୍ରେଡ଼ ଇଉନିୟନ ଗଠନ କରିବାର ଭାର ଦିଆଗଲା । ଅଳ୍ପ ଦିନ ଭିତରେ ସେ ଶ୍ରମିକ କ୍ଷେତ୍ରରେ କଂଗ୍ରେସର ନେତୃତ୍ୱ ମାନିଲାପରି ଦୃଢ଼ ଟ୍ରେଡ଼ ୟୁନିୟନ୍‌ମାନ ଗଠନ କଲେ । ମୁଁ ଓଡ଼ିଶାର ଚାରିଆଡ଼େ ବ୍ୟାପକ ଗସ୍ତ କଲି ଏବଂ କଂଗ୍ରେସ ଲୋକଙ୍କଠାରୁ ଖୁବ୍ ସାହାଯ୍ୟ ସମର୍ଥନ ମିଳିଲା । କଂଗ୍ରେସର କାର୍ଯ୍ୟାବଳୀ ପ୍ରଚାର ଉଦ୍ଦେଶ୍ୟରେ 'କଂଗ୍ରେସ ବାର୍ତ୍ତା' ନାମକ ଏକ ବୁଲେଟିନ କଂଗ୍ରେସ କମିଟି ତରଫରୁ ପ୍ରକାଶିତ ହେଲା ।

ମହତାବଙ୍କ ସରକାର ପୂରାପୂରି ଅସହଯୋଗ ମନୋବୃତ୍ତି ଦେଖାଇଲେ । ଏପରିକି ମୁଁ ସେକ୍ରେଟାରି ଥିବା ପର୍ଯ୍ୟନ୍ତ ବ୍ରିଟିଶ ସରକାର କଂଗ୍ରେସର ଯେ ପାଣ୍ଠି ଆଗରୁ ଜବତ କରିଥିଲା, ତାହା ଆମକୁ ଫେରାଇ ଦିଆଗଲା ନାହିଁ । ସରକାରୀ ପକ୍ଷର ପୂର୍ଣ୍ଣ ଅସହଯୋଗ ସତ୍ତ୍ୱେ ଏକ ଉପନିର୍ବାଚନ ଲଢ଼ାଇ କରିବାକୁ ପଡ଼ିଲା ।

ଆଉ କେତେକ ଘଟଣାରେ ସରକାର ଓ କଂଗ୍ରେସ କମିଟି ମଧ୍ୟରେ ପ୍ରକାଶ୍ୟ ବିବାଦ ଲାଗିଗଲା । ସେଥିରୁ ତିନି ଗୋଟି ଘଟଣା ଉଲ୍ଲେଖଯୋଗ୍ୟ ।

(୧) ପ୍ରାଦେଶିକ କଂଗ୍ରେସ କମିଟିର ସାଧାରଣ ସମ୍ପାଦକ ଭାବରେ ମୁଁ ଗଞ୍ଜାମ ଜିଲ୍ଲାର ସୋରଡ଼ା ଅଞ୍ଚଳ ଗସ୍ତରେ ଯାଇଥିଲି । ସେଠାରେ ଏକ ସାଧାରଣ ସଭାରେ ଆଦିବାସୀ-ମାନେ ଆପତ୍ତି କଲେ ଯେ ଓଡ଼ିଶା ଗଭର୍ଣ୍ଣର ଚନ୍ଦୁଲାଲ ତ୍ରିବେଦୀଙ୍କ ଗସ୍ତ ଉପଲକ୍ଷେ

କୁଳୁଡ଼ା ଛେଲ ଅଦ ରସଦ ଯୋଗାଇବା ନିମନ୍ତେ ସେମାନଙ୍କ ଉପରେ ପରୁଆନା ଜାରି କରାହୋଇଥିଲା । ତହିଁରୁ ଗୋଟିଏ ଦୁଇଟି ମୋର ହସ୍ତଗତ ହେଲା । ମୁଁ ଏକ ବକ୍ତୃତା ଦେଲି—ଏହା ଏକ ଅଶୋଭନୀୟ କାର୍ଯ୍ୟ ଏବଂ ଏହାର କେମାନ ଉଦ୍ଦେଶ୍ୟ ବ୍ରିଟିଶ ସରକାରର କର୍ତ୍ତୃତ୍ୱ ଜାହିର କରାଇବା । ଗଭର୍ଣ୍ଣରଙ୍କ ପରିଦର୍ଶନ ପୂର୍ବରୁ ଏପରି ଆଦାୟ ବନ୍ଦ ନ ହେଲେ ଓ ପରୁଆନା ପ୍ରତ୍ୟାହାର ନକରାଗଲେ ପରିଦର୍ଶନ ବର୍ଜନ କରାଯିବାର ଘୋଷଣା କଲି । ଗଭର୍ଣ୍ଣର ନିବେଦୀ ବକ୍ତୃତାଟିର ଗୁରୁତ୍ୱ ବୁଝି ତାଙ୍କ ଗସ୍ତ ବନ୍ଦ କଲେ ଏବଂ ଓଡ଼ିଶା ସରକାରକୁ ଲେଖିଲେ ଯେ ଏଣିକି ଗସ୍ତରେ ଗଲାବେଳେ ସେ ନିଜର ରସଦ ସାଙ୍ଗରେ ନେଇ ଯିବେ—ପୁରୁଣା ନିୟମାନୁସାରେ ଲୋକଙ୍କଠାରୁ ଆଦାୟ କରାଯିବ ନାହିଁ ।

କିନ୍ତୁ ମହତାବବାବୁ ବାସ୍ତବରେ ମୁଁ ଏତଦ୍ୱାରା ତାଙ୍କୁ ଅଡ଼ୁଆରେ ପକାଇଦେଲି । ସେ ଗଭର୍ଣ୍ଣର ତ୍ରିବେଦୀଙ୍କ ସହ ମିଳାମିଶା ତାଙ୍କୁ ଖୁସିରେ ରଖି କାର୍ଯ୍ୟ ନିର୍ବାହ କରୁଥିଲେ; ତହିଁରେ ବ୍ୟାଘାତ ଘଟିଲା । ଏକ ସରକାରୀ ପ୍ରେସ୍ ନୋଟରେ ମୋ ବକ୍ତୃତାକୁ "ଦାୟିତ୍ୱହୀନ" ବୋଲି କୁହାହେଲା ।

ମୁଁ ଏହାର ପ୍ରତିବାଦ କରି ବକ୍ତୃତା ଦେଲି ଯେ, ମନ୍ତ୍ରୀମଣ୍ଡଳ ହେଉଛି କଂଗ୍ରେସ କମିଟି ଦ୍ୱାରା ଗଠିତ—କଂଗ୍ରେସ କମିଟିକୁ ଦାୟିତ୍ୱହୀନ କହିବାକୁ ସରକାରର ଅଧିକାର ନାହିଁ । ମୋ ବକ୍ତୃତା ସତ୍ୟ କି ମିଥ୍ୟା ସରକାର କହିପାରେ ।

(୨) ଏହି ଘଟଣାର ପ୍ରକାଶ୍ୟ ବିବାଦ ନ କରି ଏତାଦୃଶ କାର୍ଯ୍ୟ ଦୋଷାବହ ବୋଲି ମୁଁ ନିଖିଳ ଭାରତ କଂଗ୍ରେସ କମିଟିକୁ ଲେଖିଲି—ସେମାନେ ପ୍ରଧାନମନ୍ତ୍ରୀ ମହତାବଙ୍କୁ ଲେଖିବାରୁ ସେ ଏ ପ୍ରସଙ୍ଗକୁ ଏଡ଼ାଇଦେଇ ଦିଲ୍ଲୀ ଯିବା ପଥରେ କଲିକତାରେ ବକ୍ତୃତା ଦେଲେ ଯେ କଂଗ୍ରେସ କମିଟିର ସହଯୋଗ ପାଉନଥିବାରୁ ସେ ଇସ୍ତଫା ଦେବାକୁ ଇଚ୍ଛା କରୁଛନ୍ତି । ପ୍ରକାରାନ୍ତରେ ଏହା ଥିଲା ମତେ ତଡ଼ିବା ନିମନ୍ତେ ଏକ ଚକ୍ରାନ୍ତ । ମହତାବଙ୍କ ବକ୍ତୃତା ମୂଲ୍ୟହୀନ ଏବଂ ପ୍ରାଦେଶିକ କଂଗ୍ରେସ କମିଟି ସରକାର ସହ ପୂର୍ଣ୍ଣ ସହଯୋଗ କରୁଛି ବୋଲି ମୁଁ ଦର୍ଶାଇଲି ଏବଂ କହିଲି ମହତାବବାବୁ ବୋଧହୁଏ କଂଗ୍ରେସ ଆସେମ୍ବ୍ଲି ଦଳର ପୂର୍ଣ୍ଣ ସମର୍ଥନ ପାଇବା ଲାଗି ସମର୍ଥ ହେଉନାହାନ୍ତି । ନିଖିଳ ଭାରତ କଂଗ୍ରେସ କମିଟିର ସାଧାରଣ ସମ୍ପାଦକ ଶଙ୍କର ରାଓ ଦେଓ ଆସି ସବୁଆଡ଼ୁ ଶୁଣି ପ୍ରକାଶ୍ୟ ବିବାଦ ଅସୁନ୍ଦର ବୋଲି ମନ୍ତବ୍ୟ ଦେବାରୁ ମହତାବଙ୍କ କ୍ରୋଧ ଆହୁରି ବଢିଗଲା । ସେ ତେଣୁ କଂଗ୍ରେସ ଆସେମ୍ବ୍ଲି ଦଳର ଏକ ବୈଠକ ଡକାଇ ତହିଁରେ ତାଙ୍କ ପ୍ରତି ପୂର୍ଣ୍ଣ ଆସ୍ଥା ପ୍ରସ୍ତାବ ଗୃହୀତ କରାଇଲେ ଏବଂ ତାହା ସଙ୍ଗେ ସଙ୍ଗେ ଆସେମ୍ବ୍ଲିର କଂଗ୍ରେସର ମୁଖ୍ୟନେତାମାନେ ଉଠିଗଲେ ଓ ସେମାନେ କଂଗ୍ରେସ କାର୍ଯ୍ୟରେ ଅଧିକ ସକ୍ରିୟ ଭାଗ ନେବା ନିମନ୍ତେ ନିବେଦନ କଲେ ।

(୩) ଭଦ୍ରକରେ ଏକ ସାଂପ୍ରଦାୟିକ ଦଙ୍ଗା ଉପୁଜିଲା ଏବଂ ପୁଲିସ ତରଫରୁ ଗୁଳି ହେଲା । ଏହା କଂଗ୍ରେସର ଘୋଷିତ ନୀତିର ଖିଲାପ ବୋଲି ଏକ ସାଧାରଣ ସଭାରେ ମୁଁ ପ୍ରାଦେଶିକ

କଂଗ୍ରେସର ସମ୍ପାଦକ ରୂପେ ଏବଂ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିହାରୀ କଟକ ଜିଲ୍ଲା କଂଗ୍ରେସ କମିଟିର ସଭାପତି ରୂପେ ଦୃଢ ପ୍ରତିବାଦ ଜ୍ଞାପନ କଲୁ । ସ୍ଥାନୀୟ ତଦନ୍ତ ନିମନ୍ତେ ମୁଁ ଭଦ୍ରକ ଗଲି ଓ ସେଠାରେ ତଥ୍ୟ ସଂଗ୍ରହ ପରେ ସମସ୍ତ କଂଗ୍ରେସ ଲୋକଙ୍କୁ ବସାଇ ସ୍ଥିର କରାଗଲା ଯେ ଗୁଳି କରିବା ଅନ୍ୟାୟ ହୋଇଛି ଏବଂ ଏହାର ବେସରକାରୀ ତଦନ୍ତ ଲୋଡା । ସେଠିକା ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀପତି ନନ୍ଦ ଏହାର ସୂଚନା ପାଇଲେ—ସେ ଗୁପ୍ତ ରିପୋର୍ଟ କରିଦେଲେ ଯେ ମୁଁ କଂଗ୍ରେସ ଲୋକଙ୍କ ସାଙ୍ଗରେ ଷଡଯନ୍ତ୍ର କରୁଥିଲି—ଏହି ଘଟଣାକୁ କେନ୍ଦ୍ର କରି ମହତାବଙ୍କୁ ତଡି ନବକୃଷ୍ଣ ଚୌଧୁରୀଙ୍କୁ ମୁଖ୍ୟମନ୍ତ୍ରୀ କରାଇବା ନିମନ୍ତେ । ମୁଁ କଟକ ଫେରି କାର୍ଯ୍ୟକାରୀ ସମିତି ଡକାଇଲି ମୋ ରିପୋର୍ଟ ବିଚାର କରିବା ନିମନ୍ତେ ଏବଂ ମହତାବବାବୁଙ୍କୁ ବି ନିମନ୍ତ୍ରଣ କରାଗଲା । ମାତ୍ର ସେ ସଭାକୁ ଆସି ଏଥିରେ କୌଣସି ମତ ଦେବେ ନାହିଁ କିମ୍ବା ଯୋଗ ଦେବେ ନାହିଁ ବୋଲି କହି ଚାଲିଗଲେ । କଂଗ୍ରେସ କମିଟି ବେସରକାରୀ ତଦନ୍ତ ଦାବୀ କରି ପ୍ରସ୍ତାବ ଗ୍ରହଣ କରିବାରୁ ତାଙ୍କର କ୍ରୋଧ ବଢିଗଲା ।

କ୍ରୋଧାନ୍ୱିତ ହୋଇ "ରାଷ୍ଟ୍ର ସେବକ ସମିତି" ନାମକ ଏକ ସଂଗଠନ ହରେକୃଷ୍ଣ ମହତାବ ସ୍ଥାପନା କଲେ ଏବଂ ତହିଁରୁ ବିଭିନ୍ନ ଜିଲ୍ଲାରେ ବେତନ ଭୋଗୀ କର୍ମୀ ନିଯୁକ୍ତ କରାଗଲା—ଅଥଚ କଂଗ୍ରେସ ପାଣ୍ଠି ବୃଦ୍ଧି କରିବା ନିମନ୍ତେ ସାହାଯ୍ୟ କରାଗଲା ନାହିଁ ।

ଆମେ ତ ଆଗରୁ କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠନ କରିସାରିଥାଉ—ଏଥିଭିତରେ ଜୟପ୍ରକାଶ ନାରାୟଣ ସୋସଲିଷ୍ଟମାନେ କଂଗ୍ରେସ ଭିତରେ ଥାଇ କିଭଳି କାର୍ଯ୍ୟ କରିବେ ସେ ସଂପର୍କରେ ଏକ ପ୍ରବନ୍ଧ ସମ୍ବାଦପତ୍ରମାନଙ୍କରେ ପ୍ରକାଶକଲେ । ତାକୁ କଦର୍ଥ କରି ହରେକୃଷ୍ଣ ମହତାବ ଏକ ପତ୍ରରେ ଲେଖିଲେ—

"ଜୟପ୍ରକାଶ ନାରାୟଣ ଏଥିଭିତରେ କେତେକ ପ୍ରବନ୍ଧ ଲେଖିଛନ୍ତି । ସେଗୁଡିକ ଅମୃତ ବଜାର ପତ୍ରିକାର ଏଲାହାବାଦ ସଂସ୍କରଣରେ ଜାନୁୟାରୀ ୧୬ ତାରିଖ ସଂଖ୍ୟାରେ ପ୍ରକାଶିତ ହୋଇଛି । ସେଥିରୁ ପରିଷ୍କାର ହେଉଛି ଯେ କଂଗ୍ରେସ ସମାଜବାଦୀ ଦଳ ତାହାର କାର୍ଯ୍ୟ-କଳାପ କେବଳ କଂଗ୍ରେସ ସଂଗଠନ ମଧ୍ୟରେ ଆବଦ୍ଧ ରଖିନାହିଁ—କିନ୍ତୁ ତାହା ବାହାରେ ବି କାର୍ଯ୍ୟ କରିବ । ଜୟପ୍ରକାଶ ନାରାୟଣ ଏହା ମଧ୍ୟ ପରିଷ୍କାର କରି ଦେଇଛନ୍ତି ଯେ ଯେତେଦିନ ପର୍ଯ୍ୟନ୍ତ କଂଗ୍ରେସ ସୋସଲିଷ୍ଟ ପାର୍ଟିକି ସୁହାଇବ ସେତେଦିନ କଂଗ୍ରେସ ଭିତରେ କାର୍ଯ୍ୟ କରିବ—ମାତ୍ର ସୋସଲିଷ୍ଟ ପାର୍ଟିର କାର୍ଯ୍ୟକ୍ରମ ଅନୁସାରେ କଂଗ୍ରେସ କାର୍ଯ୍ୟ ନ କଲେ ଏହା କଂଗ୍ରେସ ତ୍ୟାଗ କରିବ । କଂଗ୍ରେସ ଭିତରେ ବହୁଲୋକ ଅଛନ୍ତି ଯେଉଁମାନେ ସବୁ ପ୍ରକାର ପରିସ୍ଥିତିରେ ଏବଂ କଂଗ୍ରେସ ଯାହା ପ୍ରୋଗ୍ରାମ୍ ନେଉ ପଛକେ, କଂଗ୍ରେସ ଭିତରେହିଁ ରହିବେ । ବର୍ତ୍ତମାନ ମୋର ମନେହେଉଛି ସମୟ ଆସିଲାଣି—ଯେଉଁମାନେ କେବଳ କଂଗ୍ରେସରେ ରହିବାକୁ ଚାହାନ୍ତି ସେମାନେ ଚିନ୍ତା କରନ୍ତୁ—ଯେଉଁ

ଲୋକସବୁ କଂଗ୍ରେସ ଭିତରେ ଗୋଟିଏ ଗୋଡ଼ ଓ ବାହାରେ ଅନ୍ୟ ଏକ ଗୋଡ଼ ରଖିଛନ୍ତି, ସେମାନଙ୍କ ହାତରେ କଂଗ୍ରେସ ସଂଗଠନ ଗ୍ରୁଡ଼ିଦେବା ଉଚିତ ହେବ କି ନାହିଁ ।"

ସମ୍ପାଦିକା ମାଳତୀ ଚୌଧୁରୀ ତ କଂଗ୍ରେସ ସୋସଲିଷ୍ଟ ପାର୍ଟିରେ ଯୋଗ ଦେଇନଥିଲେ— କେବଳ ମତେ ଲକ୍ଷ୍ୟ କରି ସଂପାଦକ ପଦରୁ ତଡ଼ିବା ଉଦ୍ଦେଶ୍ୟରେ ଏହି ପତ୍ର ଲେଖା ହୋଇଥିଲା । ଏହି ଚିଠି ଉପରେ ମନ୍ତବ୍ୟ କରି "ଜନତା" ଇଂରେଜୀ ସାପ୍ତାହିକ ଫେବୃୟାରୀ ୨୩ ସଂଖ୍ୟାରେ ଲେଖିଲା—"ଓଡ଼ିଶାରେ ଭିନ୍ନ ପନ୍ଥା ଧରିଗଲାଣି । ହରେକୃଷ୍ଣ ମହତାବ ଜଣେ ରକ୍ଷଣଶୀଳ ବ୍ୟକ୍ତି—ସେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ବୃଦ୍ଧିକୁ ସହ୍ୟ କରି ପାରୁନାହାନ୍ତି । ଏବେ ଏକ ପତ୍ରରେ ତାଙ୍କର ନିତାନ୍ତ ପ୍ରତିକ୍ରିୟାଶୀଳ ମତର ପରିଚୟ ଦେଇଛନ୍ତି ।" ଏହି ଚିଠି ପାଇବା ପରେ ମୁଁ ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ଡକାଇଲି । ମୁଁ ଭାବିଲି ଏପରି କ୍ଷମତା ଦଳାଦଳିରେ ବୃଥା ଶକ୍ତି କ୍ଷୟ ହେଉଛି । କଂଗ୍ରେସ କମିଟିର ସଂପାଦକ ପଦରୁ ଇସ୍ତଫା ଦେଲି ଏବଂ ଇସ୍ତଫାପତ୍ର ପାଠ କରି ପ୍ରାଦେଶିକ କଂଗ୍ରେସ କମିଟି ଆଗରେ କହିଲି, "ମୁଁ ସାମ୍ୟବାଦର ଆଦର୍ଶ ଗ୍ରହଣ କରେ । ସେ ଢଙ୍ଗରେ ସଂଗଠିତ କାର୍ଯ୍ୟ ନ କରି ଲୁଚି କଂଗ୍ରେସ ମହଲରେ ସର୍ବଦା ସନ୍ଦେହ ଓ ଅବିଶ୍ୱାସ ସୃଷ୍ଟି କରିବା ଠିକ୍ ନୁହେଁ । ତେଣୁ ବରଂ ଏହାକୁ ସଂଗଠିତ ରୂପ ଦେଇ କଂଗ୍ରେସ କର୍ମକର୍ତ୍ତା ପଦରୁ ଅନ୍ତର ହୋଇ କାର୍ଯ୍ୟ କରିବା ଦ୍ୱାରା ଆମେ ସାଧାରଣ କଂଗ୍ରେସ ଲୋକଙ୍କର ଅଧିକ ସାହାଯ୍ୟ ଓ ସହାନୁଭୂତି ପାଇପାରିବୁ ।" ଆହୁରି ମଧ୍ୟ କହିଥିଲି—"କଂଗ୍ରେସ କାର୍ଯ୍ୟରେ କୌଣସି ଦୁରଭିସନ୍ଧି ମୋର କେବେ ନ ଥିଲା ବା ନାହିଁ—ତାହା ମୋର କାର୍ଯ୍ୟ ପ୍ରମାଣ କରିଦେବ । କଂଗ୍ରେସରେହିଁ ଯୋଗଦେଇ ମୁଁ ରାଜନୀତିକ କ୍ଷେତ୍ରକୁ ଆସିଛି । କଂଗ୍ରେସ ଛଡ଼ା ମୋର ଅନ୍ୟ ଆନୁଗତ୍ୟ ନାହିଁ ।" ଉଦ୍ୟମ ହେଲା ମୋର ଇସ୍ତଫା ଗ୍ରହଣ କରାଯାଇ ମାଳତୀ ଦେବୀଙ୍କୁ ସମ୍ପାଦିକା କରି ରଖିବା ନିମନ୍ତେ; ମାତ୍ର ସେ କାହା ଫାନ୍ଦରେ ନ ପଡ଼ି ବାହାରିଆସିଲେ ।

ଏହି ସମୟରେ ମୁଁ ଜୟପ୍ରକାଶ ନାରାୟଣଙ୍କୁ ଏକ ଦୀର୍ଘପତ୍ର ଲେଖି ମୋର ନିଜ ଅଭିଜ୍ଞତାରୁ କଂଗ୍ରେସ ସୋସଲିଷ୍ଟଙ୍କ ପକ୍ଷରେ କଂଗ୍ରେସର କର୍ମକର୍ତ୍ତା ହୋଇ ରହିବା ଉଚିତ ହେବ ନାହିଁ ବୋଲି ଜଣାଇଲି । ଏ ଚିଠି ଲେଖାହୋଇଥିଲା ୧-୯-୧୯୪୬ରେ । ମୁଁ ପ୍ରାଦେଶିକ କଂଗ୍ରେସ କମିଟିର ସଂପାଦକ ଥାଇ ଲେଖିଥିଲି "ଆମେ ବିଶ୍ୱାସ କରୁଛେ ଯେ କଂଗ୍ରେସକୁ ମଜବୁତ କରିବାକୁ ହେବ ଏବଂ ସେଥିଲାଗି ପ୍ରାଣପଣେ ଲାଗିଛେ । ଏପରିକି ଆମେ ଅନ୍ୟ ସକଳ କାର୍ଯ୍ୟକୁ ଗୌଣ ବୋଲି ଧରିଛେ । ଏ ସବୁ ସତ୍ତ୍ୱେ କଂଗ୍ରେସ ନେତୃବୃନ୍ଦଙ୍କର ଅଭିଯୋଗ ଯେ କଂଗ୍ରେସ ସୋସଲିଷ୍ଟ ପାର୍ଟି କଂଗ୍ରେସକୁ ଦୁର୍ବଳ କରୁଛି । ଆମେ ଜାଣୁ ଆମେ ଯାହା କରୁଛେ ତାହା ଠିକ୍ ଏବଂ ଆଶା କରୁଛୁ ଯେ ଅବଶେଷରେ କଂଗ୍ରେସ ଲୋକେ ଆମ ଆନ୍ତରିକତାରେ ଆସ୍ଥା ସ୍ଥାପନ କରିବେ ଏବଂ ଆମକୁ ସମର୍ଥନ ଦେବେ । ମାତ୍ର ଆମର ଅଭିଜ୍ଞତା ହେଲାଣି ଭିନ୍ନ ପ୍ରକାର । କଂଗ୍ରେସ ନେତୃତ୍ୱ ଦୃଢ଼ଭାବରେ

ପ୍ରତିଷ୍ଠିତ । ଗାନ୍ଧୀଜୀ ଓ ଜବାହାରଲାଲଙ୍କର ପ୍ରଭାବ ଏତେ ଅଧିକ ଯେ ତାଙ୍କର ଠିକଏ ବିପରୀତ ମନୋଭାବର ଭିତରେ କଂଗ୍ରେସ ଲୋକେ ଆମ ସହ ମିଳାମିଶା କରିବାକୁ ବି ଆସୁନାହାନ୍ତି । ଖୋଲା ମନରେ ବିଚାର କରିବାର ବାୟୁମଣ୍ଡଳ ନାହିଁ । ସର୍ଦ୍ଦାର ପଟେଲ ବି ଏକ ଗୋଷ୍ଠୀ ଗଠନ କରିଛନ୍ତି; ମାତ୍ର ତାଙ୍କ ଭିତରେ ଓ ଆମ ଭିତରେ ପ୍ରଭେଦ ହେଉଛି—ସେ ଗାନ୍ଧୀ ନାମ ଧରି ଚାଲିଛନ୍ତି—ତାଙ୍କୁ କେହି ପ୍ରଶ୍ନ କରୁନାହିଁ । ମହତାବ ବି ଓଡ଼ିଶାରେ ସେମିତି ଗୋଷ୍ଠୀ ଗଢ଼ିଲେଣି । ଆମେ ଗାନ୍ଧୀଜୀଙ୍କ ସହ ଆମର ମତଭେଦକୁ ଛପାଇ ନ ରଖି ଖୋଲା ଭାବରେ କହିବାରୁ ଆମର ଆନୁଗତ୍ୟକୁ ସନ୍ଦେହ କରାଯାଉଛି । ଏପରି ଅବସ୍ଥାରେ କଂଗ୍ରେସ ଅନୁଷ୍ଠାନ ଭିତରେ ଆମେ ପଛକେ ରହିଥିବା, ତହିଁର କର୍ମକର୍ତ୍ତା ହେବା ଉଚିତ ନୁହେଁ ।”

ଜୟପ୍ରକାଶଙ୍କୁ ଏକଥା ଜଣାଇ ଦେଇ ଏଠାରେ କଂଗ୍ରେସ ସୋସିଆଲିଷ୍ଟ ପାର୍ଟିର ପୁନର୍ଗଠନ କଲି । ଅତି ସୁଖର କଥା ଯେ କେତେକ ପୁରାତନ କଂଗ୍ରେସ ସାଥୀ ଏବଂ ୧୯୪୨ ରେ ମୋ ସହିତ ଆସିଥିବା ଯୁବଶକ୍ତି ଏହି ନୂତନ ଦଳ ଗଠନର ମୂଳପିଣ୍ଡ ହେଲେ ।

ଏଥିଭିତରେ ବମ୍ବେଠାରେ ୟୁସୁଫ ମେହେରଅଲୀଙ୍କ ଘରେ ଏକ ବାଧ୍ୟବାଧ ବୈଠକ ବସିଲା । ଜବାହାରଲାଲ ନେହରୁ ଅନୁରୋଧ ଜଣାଇଥିଲେ ଡକ୍ଟର ରାମମନୋହର ଲୋହିଆଙ୍କୁ କଂଗ୍ରେସର ଜେନେରାଲ ସେକ୍ରେଟାରୀ ଭାବରେ ମନୋନୀତ କରିବା ନିମନ୍ତେ । ମାତ୍ର କେହି କଂଗ୍ରେସର କୌଣସି ପଦବୀ ନେବେ ନାହିଁ ବୋଲି ସିଦ୍ଧାନ୍ତ ହେବାରୁ ଲୋହିଆ ତାଙ୍କ ଅନିଚ୍ଛା ଜଣାଇଦେଲେ । ସାରା ଭାରତରେ ପୁଣି କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ନୂତନ ଉତ୍ସାହରେ ସଙ୍ଗଠିତ ରୂପେ କାର୍ଯ୍ୟ ଆରମ୍ଭ କରିଦେଲା ।

ଏଣେ ରାଜନୀତିକ ପରିବେଶରେ ବହୁ ଦ୍ରୁତ ପରିବର୍ତ୍ତନ ଘଟିଲା । ସିମଲା କଥାବାର୍ତ୍ତା ଚାଲିବା ପରେ ସରକାରୀ ମନୋଭାବ ମଧ୍ୟ ଟିକିଏ ପରିବର୍ତ୍ତନ ହେଲାପରି କାର୍ଯ୍ୟରେ ଦେଖାଦେଲା । ପଣ୍ଡିତ ଜବାହାରଲାଲ ନେହରୁଙ୍କ ନେତୃତ୍ୱରେ ମୁସଲିମ୍ ଲିଗ୍ ଓ କଂଗ୍ରେସ ପ୍ରତିନିଧିଙ୍କୁ ନେଇ ଗଠନ କରାଯାଇଥିବା ନୂତନ କେନ୍ଦ୍ର ପ୍ରଶାସନିକ କାର୍ଯ୍ୟନିର୍ବାହିକା ପରିଷଦ ପୂର୍ବରୁ ଗୋଟିଏ ଦୁଇଟି ଘଟଣା ଉଲ୍ଲେଖ କରିଦେବି । ଗୋଟିଏ ମୋର ନିଜର ଅଭିଜ୍ଞତା, ଦ୍ୱିତୀୟରେ ହରେକୃଷ୍ଣ ମହତାବଙ୍କ କାର୍ଯ୍ୟକଳାପ । ସିମଲା କଥାବାର୍ତ୍ତା ପ୍ରାୟ ଶେଷହେବାବେଳକୁ ସାର ହଥର୍ଣ୍ଣ ଲୁଇ ଓଡ଼ିଶାର ଗଭର୍ଣ୍ଣର ଥାଆନ୍ତି । ମୁଁ କୋରାପୁଟ ଜେଲରେ ନିର୍ଜନ କାରାବାସ ଭୋଗକରୁଥାଏ ଏକ ନିଭୃତ ସେଲ ଭିତରେ । ହଠାତ୍ ଜେଲ ପରିଦର୍ଶନକୁ ସେ ଗଲେ ଓ ମୋ ନିବାସସ୍ଥଳରେ ଯାଇ ପହଞ୍ଚିଲେ । ସାଙ୍ଗରେ ସବୁ ବଡ଼ କର୍ମଚାରୀ, ଗୋଟା ଜିଲା ମାଜିଷ୍ଟ୍ରେଟ ଓ ଏସ୍. ପି., ଆଇ.ଜି. ମଧ୍ୟ ଥାଆନ୍ତି । ମତେ ଯାଇ ପଚାରିଲେ, “ଓହୋ ! ତୁମେ ଏଠି ? କୁଟିଆ ।” ମୁଁ ମୋର କ୍ରୋଧ ସମ୍ଭାଳି ପାରିଲି ନାହିଁ । ମୋର ସ୍ୱାସ୍ଥ୍ୟ ନଷ୍ଟହୋଇଯାଇଥିଲା, ଖୁବ୍ ଭୋଗିଥିଲି, ରକ୍ତବାନ୍ତି କରିଥିଲି, ୪୫ ପାଉଣ୍ଡ

କମିଯାଇଥିଲା । ମୁଁ ବିରକ୍ତ ହୋଇ ବଡ଼ ରୁକ୍ଷ ଭାଷାରେ ଜବାବ ଦେଲି "You have made a great discovery." ଅହୋ, କେତେ ବଡ଼ ଆବିଷ୍କାର କଲ ! ତୁମେ ମତେ ଏଠି ବନ୍ଦୀ କରି ଏକୁଟିଆ ରଖିଛ । ସାଙ୍ଗସାଥୀ ଦିଆଯାଉନାହିଁ । ଅସୁସ୍ଥତା ପରୀକ୍ଷା କରିବା ନିମନ୍ତେ କଟକ ବି ପଠାଯାଉନାହିଁ । ବ୍ରିଟିଶ ସରକାରର ମତେ ମାରିଦେବା ନିମନ୍ତେ ଚେଷ୍ଟା । ଆଉ ତୁମେ କିଛି ଜାଣନାହିଁ !

ଲୁଇ ଏ ଜବାବ ପାଇ ଟିକିଏ ନିସ୍ତବ୍ଧ ହୋଇଗଲେ । ଗୋରା ଏସ୍. ପି. ଓ ମାଜିଷ୍ଟ୍ରେଟ୍ ତମତମ ହୋଇ ମୋ ଉପରକୁ ହାତ ଉଠାନ୍ତି କି ନଉଠାନ୍ତି ।

ଏମିତି ସମୟରେ ମୁଁ କହିଲି—ଜେଲ୍ ହସ୍‌ପିଟାଲ୍‌କୁ ଯାଇ ମୋର ସ୍ୱାସ୍ଥ୍ୟର ବିବରଣୀ ଦେଖ । ଏକ୍ସ-ରେ ଲାଗି ମତେ କଟକ ପଠାଇବା ପ୍ରସ୍ତାବକୁ ଖାଲି ପ୍ରତ୍ୟାଖ୍ୟାନ କରାଗଲା ନାହିଁ—ଯେଉଁ ଜେଲ୍ ସୁପରିଣ୍ଟେଣ୍ଡେଣ୍ଟ ମୋ ଅବସ୍ଥା ଦେଖି ଏପରି ସୁପାରିଶ କରିଥିଲେ ତାଙ୍କର ବଦଳି ହୋଇଗଲା ସିନା ମୋର ବଦଳି ହେଲା ନାହିଁ ।

ସାର୍ ହାଥର୍ଣ୍ଣ ଲୁଇ ସେଠୁ ଫେରିବାର ୨୪ ଘଣ୍ଟା ଭିତରେ ମୋର କଟକ ହସ୍‌ପିଟାଲ୍‌କୁ ବନ୍ଦୀ ହିସାବରେ ବଦଳି ହେଲା ଏବଂ ସ୍ୱାସ୍ଥ୍ୟ ପରୀକ୍ଷା କରାଗଲା । ରାଜନୀତିକ ଅବସ୍ଥା ପରିବର୍ତ୍ତନର ଆଭାସର ଏହା ଏକ ଦୃଷ୍ଟାନ୍ତ । କଂଗ୍ରେସ କର୍ତ୍ତୃପକ୍ଷଙ୍କର ପ୍ରଭାବ ସରକାର ଉପରେ ନିର୍ଦ୍ଦିଷ୍ଟ ଭାବରେ ପ୍ରତିପାଦିତ ହେଲା ।

ଦ୍ୱିତୀୟ ଘଟଣାଟି ହେଉଛି ଆହୁରି ରାଜନୀତିକ ତାତ୍ପର୍ଯ୍ୟପୂର୍ଣ୍ଣ । ହରେକୃଷ୍ଣ ମହତାବ ସେତେବେଳକୁ ଓଡ଼ିଶାର ପ୍ରଧାନମନ୍ତ୍ରୀ । ଭାରତରେ ଅନ୍ତର୍ବର୍ତ୍ତୀ ସରକାର ଗଠନ ନିମନ୍ତେ କ୍ଷେତ୍ର ପ୍ରସ୍ତୁତ । ଲର୍ଡ଼ ଓ୍ୱାଭେଲ୍‌ଙ୍କୁ ଦୁଇ ତରଫରୁ ତାଲିକା ଦିଆଗଲା । କଂଗ୍ରେସ ତରଫରୁ ନାମ ତାଲିକାରେ ଶରତ୍ ବୋଷଙ୍କ ନାମ ଥିଲା । ତାଙ୍କୁ ବାଦ୍ ଦେଇ ହରେକୃଷ୍ଣ ମହତାବଙ୍କ ନାମ ସରକାର ତରଫରୁ ଘୋଷଣା କରାଗଲା ।

ସର୍ଦ୍ଦାର ପଟେଲ ପାର୍ଲିଆମେଣ୍ଟାରୀ ବୋର୍ଡ଼ର ଚେୟାରମ୍ୟାନ୍ ଥିଲେ । ଏହା କଂଗ୍ରେସର ଆଭ୍ୟନ୍ତରୀଣ ବ୍ୟାପାରରେ ଅଯଥା ହସ୍ତକ୍ଷେପ ବୋଲି ଆକ୍ଷେପ କରି ଏ ନାମ ତାଲିକା କଂଗ୍ରେସ ଗ୍ରହଣ କରି ନ ପାରେ ବୋଲି ସର୍ଦ୍ଦାର ପଟେଲ ଧମକ ଦେଲେ ।

ସ୍ୱରାଜ୍ୟ ଆଶ୍ରମରେ ମହତାବଙ୍କ କୋଠିରେ ମୁଁ ତାଙ୍କ ପାଖରେ ବସିଥିଲି; ହଠାତ୍ ସର୍ଦ୍ଦାରଙ୍କର ଟେଲିଫୋନ୍ ଆସିଲା । ନିର୍ଦ୍ଦେଶ ହେଲା—କଂଗ୍ରେସର ଶୃଙ୍ଖଳାରକ୍ଷା ଦୃଷ୍ଟିରୁ ତୁମେ ସାଙ୍ଗେ ସାଙ୍ଗେ ଏଥିରୁ ଇସ୍ତଫା ଦିଅ । ମହତାବ ମଧ୍ୟ ଏକ ଶୃଙ୍ଖଳିତ କଂଗ୍ରେସ ଲୋକ ହିସାବରେ ଏଥିରୁ ପଦତ୍ୟାଗ କଲେ । କଂଗ୍ରେସର ମର୍ଯ୍ୟାଦା ରକ୍ଷା ହେଲା ।

କଂଗ୍ରେସର ସମ୍ମତ ତାଲିକାକୁ ହିଁ ଗ୍ରହଣ କରିବା ନିମନ୍ତେ ବ୍ରିଟିଶ ସରକାର ବାଧ୍ୟହେଲା ।

କ୍ଷମତା ହାତକୁ ପୂର୍ବ ନ ଆସୁଣୁ କଂଗ୍ରେସ ଲୋକେ କିପରି ପଦବୀ ପାଇବାଲାଗି ବ୍ୟାକୁଳ ହୁଅନ୍ତି ଏବଂ କଂଗ୍ରେସ କର୍ମକର୍ତ୍ତାଙ୍କ ଅଗୋଚରରେ କାରସାଦି କରିପାରନ୍ତି, ଏହା ଥିଲା ତାହାର ଏକ ନମୁନା ।

## କ୍ଷମତା ଲୋଭରେ କଣ ନକରନ୍ତି ?

ଏହି ଲୋଭରେ ହରେକୃଷ୍ଣ ମହତାବ ଯେପରି କାର୍ଯ୍ୟ କଲେ, ତାହାକୁ ଦେଶଦ୍ରୋହ ଛଡ଼ା ଆଉ କିଛି କୁହାଯାଇ ନ ପାରେ । ସର୍ଦ୍ଦାର ପଟେଲଙ୍କ ନିର୍ଦ୍ଦେଶ ମାନି ସେ ଓ୍ୱାଭେଲଙ୍କ ପ୍ରସ୍ତାବିତ ନାମ ତାଲିକାରୁ ତାଙ୍କ ନାମ କାଟିଦେବା ନିମନ୍ତେ ଓ୍ୱାଭେଲଙ୍କୁ ଲେଖିଲେ । ମାତ୍ର ଦେଶରେ କଂଗ୍ରେସର ଏତେ ମାତବର ଲୋକ ଥାଇ ଲର୍ଡ଼ ଓ୍ୱାଭେଲ କାହିଁକି ଓ କିପରି ମହତାବଙ୍କୁ ବାଛିଲେ, ସେ କଥାର କୌଣସି ତଦନ୍ତ କଂଗ୍ରେସ କର୍ତ୍ତୃପକ୍ଷ କରିନଥିଲେ । ମହତାବ ଏମିତି କଣ କରିଥିଲେ ଯେ ଓ୍ୱାଭେଲଙ୍କର ତାଙ୍କ ପ୍ରତି ଏତେ ପ୍ରୀତି ଉପୁଜିଲା—ଏ ରହସ୍ୟ ସିନା କେହି ବାହାର କରିନଥିଲେ—ଏବେ ଏହାର ଅସଲ କାରଣଟି ଲର୍ଡ଼ ଓ୍ୱାଭେଲଙ୍କ ଲେଖାରୁ ପ୍ରକାଶ ପାଇଯାଇଛି ।

'Transfer of Power' ନାମକ ଯେଉଁ ପୁସ୍ତକ ବ୍ରିଟେନରେ ପ୍ରକାଶ ପାଇଛି, ସେଥିରେ 'ଓ୍ୱାଭେଲ ପେପର୍ସ' ନାମରେ ଲର୍ଡ଼ ଓ୍ୱାଭେଲ ଗଭର୍ଣ୍ଣର ଜେନେରାଲ ଥିବାବେଳେ ଯେଉଁସବୁ ଗୁପ୍ତ ପତ୍ର ଇଂଲଣ୍ଡର ରାଜାଙ୍କୁ ଲେଖିଥିଲେ, ତାହାର ଅବିକଳ ନକଲ ପ୍ରକାଶିତ ହୋଇଛି । ସେଗୁଡ଼ିକ ସମ୍ପୂର୍ଣ୍ଣ ରୂପେ ଉଦ୍ଧାର କରିବା ସମ୍ଭବ ନୁହେଁ । ତେବେ ଆବଶ୍ୟକୀୟ ଅଂଶର ଓଡ଼ିଆ ଅନୁବାଦ ନ କରି ମୂଳ ଇଂରେଜୀ ଲେଖା ନିମ୍ନରେ ଉଦ୍ଧାର କରିଦେଉଛି ।

ଏଥିରୁ ଦେଖାଯିବ ଯେ ଲର୍ଡ଼ ଓ୍ୱାଭେଲ ମହାତ୍ମା ଗାନ୍ଧୀ, ପଣ୍ଡିତ ନେହରୁ ଓ କଂଗ୍ରେସର ବଡ଼ ବଡ଼ ନେତାଙ୍କୁ ଅତି ତୁଚ୍ଛ ବୋଲି ଲେଖିଛନ୍ତି । କ୍ୟାବିନେଟ୍ ମିସନ୍‌ର ପ୍ରସ୍ତାବ ଗ୍ରହଣ କରାଯିବ କି ନାହିଁ, ସେ ସମ୍ବନ୍ଧରେ ଖୁବ୍ ଆଲୋଚନା ଚାଲିଥିଲା । ବିଭିନ୍ନ କଂଗ୍ରେସ ନେତା ଲର୍ଡ଼ ଓ୍ୱାଭେଲଙ୍କ ସହ ସାକ୍ଷାତ୍ କରୁଥିଲେ । ସେହି ସଂକ୍ରାନ୍ତରେ ସେତେବେଳର କଂଗ୍ରେସ ପ୍ରଧାନମନ୍ତ୍ରୀ (ମୁଖ୍ୟମନ୍ତ୍ରୀ) ଉତ୍ତର ପ୍ରଦେଶର ଗୋବିନ୍ଦ ବଲ୍ଲଭ ପନ୍ଥ, ମଧ୍ୟପ୍ରଦେଶର ରବି ଶଙ୍କର ଶୁକ୍ଳ ଓ ଓଡ଼ିଶାର ହରେକୃଷ୍ଣ ମହତାବ ଲର୍ଡ଼ ଓ୍ୱାଭେଲଙ୍କ ସହ ୧୯୪୬ ଏପ୍ରିଲରେ ସାକ୍ଷାତ୍ କରିଥିଲେ ।

କଂଗ୍ରେସ ମୁଖ୍ୟମନ୍ତ୍ରୀମାନଙ୍କ ସହ ସାକ୍ଷାତକାର ବିଷୟରେ ଲର୍ଡ ଓ୍ୱାଭେଲ ହରେକୃଷ୍ଣ ମହତାବଙ୍କ ସମ୍ବନ୍ଧରେ ଏପ୍ରିଲ୍ ୬ ତାରିଖରେ ଉଲ୍ଲେଖ କରିଛନ୍ତି ଯେ "Mahatab is not impressing." ଏପରି ହୀନ ମନ୍ତବ୍ୟ ମହତାବଙ୍କ ସମ୍ପର୍କରେ ଲିପିବଦ୍ଧ କରି ମେ ମାସ ବେଳକୁ ଓ୍ୱାଭେଲ ତାଙ୍କ ମତ ବଦଳାଇଲେ କାହିଁକି ? ଲର୍ଡ ଓ୍ୱାଭେଲ୍ ତାଙ୍କ କାଗଜରେ ୧୯୪୬ ମସିହା ମେ ୨୨ ତାରିଖରେ ଲିପିବଦ୍ଧ କରିଛନ୍ତି :

"This morning after lunch, I saw Mahatab, Premier of Orissa about his proposed conference with the Orissa States. He is a reasonable and rather attractive person, who is in the Congress Working Committee and he told me that the Congress had decided to accept the scheme."

ଏଇଠି ରହସ୍ୟ ଉଦ୍‌ଘାଟିତ ହୋଇଯାଇଛି । ମିଶନ ପ୍ରସ୍ତାବକୁ କଂଗ୍ରେସ ଗ୍ରହଣ କରିବ କି ନାହିଁ, ଏହା ପେଥିକ ଲରେନ୍ସ ଓ କ୍ୟାବିନେଟ୍ ମିସନ୍ ମହା ଗୋଳକଧନ୍ଦାରେ ପଡ଼ିଥିଲେ । ଓ୍ୱାଭେଲଙ୍କ ଚିଠିପତ୍ରରୁ ଇଙ୍ଗିତ ମିଳୁଛି ଯେ ମହାତ୍ମା ଗାନ୍ଧୀ ଏହାର ବିରୋଧ କରିଥିବା ଯୋଗୁଁ ତାଙ୍କ ମନରେ ଆଶଙ୍କା ଥିଲା ଯେ ଏହା ଗୃହୀତ ହେବ ନାହିଁ । ଯଦି ନ ହୁଏ, ତେବେ କି ଉପାୟ ଅବଲମ୍ବନ କରାଯିବ, ଏହା ପେଥିକ ମଧ୍ୟ ଭାବିଲେଣି ପଡ଼ିଥିଲା । କଂଗ୍ରେସ ଏଣେ ପ୍ରସ୍ତାବଟି ମୋଟାମୋଟି ଗ୍ରହଣଯୋଗ୍ୟ ବୋଲି ସ୍ଥିର କରିଥିଲେ ସୁଦ୍ଧା କୌଣସି କାରଣରୁ ତାଙ୍କ ମତାମତ ଗୁପ୍ତ ରଖିଥିଲେ । ଏହା ବ୍ରିଟିଶ ପକ୍ଷକୁ ଆହୁରି ଅଡ଼ୁଆରେ ପକାଇଥିଲା । ମାତ୍ର ମହତାବ ଓ୍ୱାଭେଲଙ୍କୁ ଏକୁଟିଆ ସାକ୍ଷାତ୍ କରି କଂଗ୍ରେସ କାର୍ଯ୍ୟକାରୀ ସମିତିର ଭିତର ଗୁପ୍ତକଥା ଜଣାଇଦେଲେ । ସୁତରାଂ ଯେଉଁ ମହତାବଙ୍କୁ ଲର୍ଡ ଓ୍ୱାଭେଲ୍ ଏପ୍ରିଲ ମାସରେ ଏତେ ତାଚ୍ଛଲ୍ୟ କରି ଲେଖିଥିଲେ, ମେ ମାସ ବେଳକୁ ତାହା ସମ୍ପୂର୍ଣ୍ଣ ବଦଳିଗଲା ଏବଂ ଶେଷରେ କଂଗ୍ରେସ ତାଲିକାରେ ତାଙ୍କ ନାମ ନ ଥିଲେ ସୁଦ୍ଧା ଶରତ୍ ବୋଷଙ୍କ ନାମ ବଦଳରେ ମହତାବଙ୍କ ନାମ ରଖିବାକୁ ସାହସ କରିଥିଲେ ।

ଲର୍ଡ ଓ୍ୱାଭେଲ୍ ମହାତ୍ମା ଗାନ୍ଧୀ, କଂଗ୍ରେସ କାର୍ଯ୍ୟକାରୀ ସମିତିର ସଭ୍ୟ ଓ ମହତାବ ଆଦିଙ୍କ ସମ୍ବନ୍ଧରେ Viceregal Lodge, Simlaରୁ ଇଂଲଣ୍ଡର ରାଜାଙ୍କ ପାଖକୁ ୧୯୪୬ ଜୁଲାଇ ୮ ତାରିଖରେ ଯେଉଁ ମନ୍ତବ୍ୟ ପଠାଇଥିଲେ, ସେଥିରୁ ତଳଲିଖିତ ଦୁଇଟି ଅନୁଚ୍ଛେଦ ପାଠକଲେ, ସବୁକଥା ଜଣାପଡ଼ିଯିବ ।

ଲର୍ଡ଼ ୱାଭେଲ ଲେଖିଛନ୍ତି :

"I have seen much of Nehru and cannot help liking him. He is sincere, intelligent, and personally courageous. But he is unbalanced—witness his ploy in Kashmir and also lacks the political courage to stand up to Gandhi when he knows he is wrong."

He again writes.

"The rest of the Congress Working Committee are poor stuff, except that possibly one of the younger ones, Mahatab, Premier of Orissa, who is earnest and likeable —may in time, become a capable administrator."

[ Transfer of Power, Vol. VII, P. 1093 ]

## ୭ । କଂଗ୍ରେସ ତ୍ୟାଗର ପୂର୍ବ ଘଟଣା

ମୋଟ ମୋଟି ଭାବରେ କଂଗ୍ରେସ ତାର ପୂର୍ବ ଢଙ୍ଗକୁ ଫେରିଲା ଏବଂ ଲୋକଗଠନ ଭୂମିକାରୁ କ୍ଷମତା କବଳରେ ସଙ୍ଗଠନ ଭିତରେ ଅଭିଳାଷୀ କଂଗ୍ରେସ ବ୍ୟକ୍ତିଙ୍କ ଭିତରେ ବେଶୀ ପରିମାଣରେ ଆଗ୍ରହ ଓ ପ୍ରତିଯୋଗିତାର ଭାବ ଫେରିଆସିଲା । କଂଗ୍ରେସ ସୋସଲିଷ୍ଟ ପାର୍ଟିର ପୁନର୍ଗଠନର ଆବଶ୍ୟକତା ବିଷୟ ଉଲ୍ଲେଖ କରି ଜୟପ୍ରକାଶ ନାରାୟଣ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଆହ୍ୱାନ କରି ଏକ ପତ୍ର ଲେଖିଲେ । ସେଥିରେ ସେ ଲେଖିଥିଲେ — "ବର୍ତ୍ତମାନ କଂଗ୍ରେସର ଘୋଷିତ ନୀତି ନୁହେଁ ସଂଗ୍ରାମ କରିବା କିମ୍ବା ସଂଗ୍ରାମ ଲାଗି ପ୍ରସ୍ତୁତ କରିବା । ଏହା ଆଳସ୍ୟ ଓ ବୈଧାନିକତାର ନୀତି ବରଂ ଅନୁସରଣ କଲାଣି । ଏପରି ଅବସ୍ଥାରେ ଆମେ ଯେଉଁମାନେ ଏବେ ବି ସଂଗ୍ରାମ ଓ ବୈପ୍ଳବିକ କାର୍ଯ୍ୟରେ ବିଶ୍ୱାସ କରୁଛୁ, ଆମ ପକ୍ଷରେ କଂଗ୍ରେସ ନାମରେ କାର୍ଯ୍ୟ କରିବା ସମ୍ଭବ ହେବନାହିଁ ।"

ଆଗରୁ ଲେଖିଛି, କଂଗ୍ରେସର ଆଉ କର୍ମକର୍ତ୍ତା ହୋଇ ରହି କାର୍ଯ୍ୟ କରିବା ଠିକ୍ ହେବ ନାହିଁ ବୋଲି ମୁଁ ମୋ ଚିଠିରେ ଜୟପ୍ରକାଶଙ୍କୁ ଜଣାଇଥିଲି । ଉପର ମହଲରେ ମଧ୍ୟ ହେହିଭଳି ଚିନ୍ତା କ୍ରମେ ପ୍ରବେଶ କରୁଥିଲା । ଏହିକବେଳେ ଏଲାହାବାଦରେ ପ୍ରାଦେଶିକ କଂଗ୍ରେସ ସେକ୍ରେଟାରୀ ମାନଙ୍କର ସମ୍ମିଳନୀରେ ମୁଁ ଯୋଗ ଦେଇ ସେଠାରୁ କାନପୁର ଗଲି । ଅଗଷ୍ଟ ବିପ୍ଳବର ମୁକ୍ତି ପରେ କାନପୁରଠାରେ ପ୍ରଥମ ଥର ଲାଗି ପୁଣି କଂଗ୍ରେସ ସୋସଲିଷ୍ଟପାର୍ଟିର ଏକ ବାର୍ଷିକ ଅଧିବେଶନ ବସିଥାଏ । ଆଚାର୍ଯ୍ୟ ନରେନ୍ଦ୍ର ଦେବ ଏହାର ସଭାପତି ହୋଇଥାଆନ୍ତି । ୧୯୪୭ ମାର୍ଚ୍ଚ ପହିଲା ଓ ଦୁଇ ତାରିଖରେ ଏହି ସମ୍ମିଳନୀ ବସିଲା । ଏଠାରେ କଂଗ୍ରେସ ସୋସଲିଷ୍ଟ ପାର୍ଟି କ୍ରମେ ସ୍ୱାଧୀନ ପାର୍ଟି ହିସାବରେ କାର୍ଯ୍ୟ କରିବାର ପ୍ରଥମ ସୂଚନା ଦିଆଗଲା । କାନପୁର ସମ୍ମିଳନୀରେ ସ୍ଥିର କରାଗଲା ଯେ ବ୍ରିଟିଶ କ୍ୟାବିନେଟ ମିସନ୍ ୧୯୪୬ ମେ ୧୬ ତାରିଖରେ କରିଥିବା ଘୋଷଣା ଦୁରଭିସନ୍ଧିମୂଳକ । ୧୯୪୮ରେ ଦେଶକୁ ଖଣ୍ଡ ଖଣ୍ଡ କରିବାର ବୀଜ ବପନ କରାଯିବ । ୧୯୪୮ ଜୁନ ଶେଷ ସୁଦ୍ଧା ବ୍ରିଟିଶ ସରକାର କ୍ରମେ କ୍ଷମତା ହସ୍ତାନ୍ତର କରି ଚାଲିଯିବ ବୋଲି ଯେଉଁ ଘୋଷଣା ପ୍ରକାଶ ପାଇଛି, ସେ ଦୃଷ୍ଟିରୁ ଦେଶରେ ଏକତା ଓ ସଂଗ୍ରାମକୁ ଦୃଢ଼ୀଭୂତ କରିବାର ଆବଶ୍ୟକତା ହେଲାଣି । ତେଣୁ କାନପୁରରେ ବ୍ରିଟିଶ ସରକାରକୁ ଆହ୍ୱାନ ଦିଆଗଲା ଯେ ସେମାନେ ସମସ୍ତ କ୍ଷମତା ଅନ୍ତର୍ବର୍ତ୍ତୀ ସରକାରକୁ ସମର୍ପିଦେଇ ଚାଲିଯାଆନ୍ତୁ ଏବଂ ଭାରତବର୍ଷର ଆଉ କୌଣସି ଅଂଶରେ ଅନ୍ୟ କାହାର ଆଧିପତ୍ୟ ନରହୁ । ଏପରି ପ୍ରସ୍ତାବ ପାସ୍ କରିବାବେଳେ ସନ୍ଦେହ ପ୍ରକାଶ ପାଇଥିଲା ଯେ ଦେଶୀୟ ରାଜ୍ୟମାନଙ୍କୁ ହୁଏତ ସାର୍ବଭୌମ କ୍ଷମତା ଦେଇ ଦିଆଯିବ । ପାକିସ୍ତାନ ଗଠନ ସମସ୍ୟା ଅପେକ୍ଷା ଏହା ଅତି ସ୍ପଷ୍ଟ ପରି ଜଣା ପଡ଼ୁଥିଲା ।

ଅନ୍ତର୍ବର୍ତ୍ତୀ ସରକାରରେ କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍ ଉଭୟେ ଯୋଗଦେଇଥିଲେ । ତେଣୁ ସେ ଜନପଦ ଆଡ଼କୁ କେହି ବେଶି ଦୃଷ୍ଟି ନଥିଲେ । ମାତ୍ର ସୋସଲିଷ୍ଟ ମହଲ ସ୍ପଷ୍ଟ ରୂପେ ଅନୁଭବ କରୁଥିଲେ ଯେ କଂଗ୍ରେସ ନେତୃବୃନ୍ଦ ଯେଉଁଭଳି ଗୋଟିକ ପରେ ଗୋଟିଏ ଘଟଣାରେ ଇଂରେଜ ସରକାର ସହ ହାତ ମିଳାଇବାକୁ ଆରମ୍ଭ କରିଛନ୍ତି, ସେଥିରେ ସେମାନେ ଆଉ ସଂଗ୍ରାମର ବାଟ ଧରିବେ ନାହିଁ ଏବଂ ଗାନ୍ଧୀଜୀଙ୍କ ନେତୃତ୍ୱର ବନ୍ଧନ ହୁଏତ ବେଶିଦିନ ରଖିବେ ନାହିଁ । ଏହି ଆଶଙ୍କାର ବଶବର୍ତ୍ତୀ ହୋଇ ଏଠାରେ କଂଗ୍ରେସ ସୋସଲିଷ୍ଟ ପାର୍ଟି ସ୍ୱାଧୀନ ଭାବରେ ଦେଶରେ କୃଷକ, ଶ୍ରମିକ, ଯୁବକ ଓ ଦେଶୀୟ ରାଜ୍ୟର ପ୍ରଜା ସଂଗଠନ ନିମନ୍ତେ ସ୍ଥିର କଲା । ଏସବୁ ଶ୍ରେଣୀର ଲୋକ ଅଧିକ ସଂଖ୍ୟାରେ ଯେପରି ସୋସଲିଷ୍ଟ ଆନ୍ଦୋଳନ ସହ ସକ୍ରିୟ ଭାବରେ ସଂପୃକ୍ତ ହେବେ, ସେଥିନିମନ୍ତେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ନାମ ପରିବର୍ତ୍ତନ କରାଯାଇ ଏହା ସୋସଲିଷ୍ଟ ପାର୍ଟି ବୋଲି ରଖାଗଲା; ଅର୍ଥାତ୍ କଂଗ୍ରେସର ପ୍ରାଥମିକ ସଭ୍ୟ ନ ହୋଇ ମଧ୍ୟ ଜଣେ ସୋସଲିଷ୍ଟ ପାର୍ଟିର ସଭ୍ୟ ହୋଇପାରିବ । ଏଣିକି କଂଗ୍ରେସ ବାହାରର ଲୋକଙ୍କ ପକ୍ଷରେ ସୋସଲିଷ୍ଟ ପାର୍ଟିରେ ଯୋଗଦାନର ବାଟ ଖୋଲିଗଲା । ଦେଶୀୟ ରାଜ୍ୟରେ କଂଗ୍ରେସ କମିଟି ସିଧାସଳଖ ସଂଗଠନ ଶାଖା ଖୋଲିବାରେ ବାଧା ଥିଲା । କଂଗ୍ରେସ କଟକଣା ଭିତରୁ ବାହାରି ଆସିଥିବା ହେତୁ ସୋସଲିଷ୍ଟ ପାର୍ଟି ପକ୍ଷରେ ଗଡ଼ଜାତ ରାଜ୍ୟମାନଙ୍କରେ ଶାଖା ସ୍ଥାପନର ସୁବିଧା ହେଲା ।

## ଶାସକ ବିଧାୟକ ସଭା ବୟକଟ୍

ଏହା ସଙ୍ଗେ ସଙ୍ଗେ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନିଆଗଲା ଯେ କୌଣସି ସୋସଲିଷ୍ଟ ଶାସନବିଧାୟକ ସଭାକୁ ନିର୍ବାଚିତ ହେବେ ନାହିଁ । ବ୍ରିଟିଶ ସରକାର ଘୋଷିତ ଶାସନ ବିଧାୟକ ସଭାରେ ପ୍ରକୃତ କ୍ଷମତା ହସ୍ତାନ୍ତର ହୋଇପାରିବ ନାହିଁ ଏବଂ ପୁଣି ଥରେ ସଂଗ୍ରାମ କରିବାକୁ ପଡ଼ିବ ବୋଲି ବିଚାର ଏଥିରେ ପ୍ରବେଶ ନ କରିବା ନିମନ୍ତେ ସ୍ଥିର କରାଗଲା । ୧୯୩୬-୩୭ରେ କଂଗ୍ରେସ ମନ୍ତ୍ରୀମଣ୍ଡଳରେ ପ୍ରବେଶ ନ କରିବା ଭଳି ଏହା ଆଉ ଏକ ନିଷ୍ପତ୍ତି । ସେତେବେଳେ ପରିସ୍ଥିତି ଭିନ୍ନ ଥିଲା । ମାତ୍ର ଆମେ ଏଥିରେ ଯୋଗ ନ ଦେଇ ସ୍ୱାଧୀନ ଦେଶର ସମ୍ବିଧାନ ଗଠନର ପ୍ରକ୍ରିୟାରୁ ଅଲଗା ରହିଗଲୁ । ଆମେ ସବୁ ସେଠିକି ଯାଇଥିଲେ, ଜୟପ୍ରକାଶ, ଆଚାର୍ଯ୍ୟ ନରେନ୍ଦ୍ର ଦେବ ଓ ଡକ୍ଟର ଲୋହିଆଙ୍କ ପରି ବ୍ୟକ୍ତିମାନେ ସେଠାରେ ଜାତୀୟ ମଞ୍ଚରେ ଖୁବ୍ ପ୍ରଭାବ ପକାଇପାରିଥାନ୍ତେ; ଅମ୍ଭମାନଙ୍କ ଭିତରୁ ଅନେକଙ୍କର ସେଠିକି ଯିବାର ଏକ ମଉକା ମଧ୍ୟ ରହିଥିଲା । ସୋସଲିଷ୍ଟଙ୍କ ଭିତରୁ କେବଳ ସାରଙ୍ଗଧର ଦାସ ଓ ଦାମୋଦର ସ୍ୱରୂପ ସେଠ୍ ଉଭୟରେ ମେମ୍ବର ରହିଥିଲେ । ସାରଙ୍ଗଧର ଦାସ ଓଡ଼ିଶା ଗଡ଼ଜାତ ପ୍ରଜାଙ୍କର ପ୍ରତିନିଧି ହିସାବରେ ନିର୍ବାଚିତ ହେଲେ ଏବଂ ଦାମୋଦର ସ୍ୱରୂପ ସେଠ ନିର୍ଦ୍ଦେଶ ପାଇବା ଆଗରୁ ନିର୍ବାଚିତ ହୋଇଯାଇଥିଲେ ବୋଲି ତାଙ୍କୁ ଆଉ ଇସ୍ତଫା ଦେବା ନିମନ୍ତେ କୁହାଗଲା ନାହିଁ । ପରେ ସୋସଲିଷ୍ଟ ପାର୍ଟି ଏକ ନୂତନ ସମ୍ବିଧାନ ପ୍ରସ୍ତୁତ କରିଥିଲା; ମୁଁ ଏ ସମ୍ବିଧାନ ପ୍ରଣୟନ କମିଟିର ଜଣେ ସଭ୍ୟ ବି ଥିଲି । ଉପରୋକ୍ତ ଦୁଇ ସଭ୍ୟଙ୍କ ଜରିଆରେ ରଚିତ ସଂବିଧାନର ଭିତ୍ତିରେ କିଛି ସଂଶୋଧନ ଦିଆଗଲା ।

ମାତ୍ର ତାହା ବିଶେଷ କିଛି ଅଗ୍ରସର ହୋଇ ପାରିଲା ନାହିଁ । ସୋସିଆଲିଷ୍ଟମାନେ ଏକ ବଡ଼ ସୁଯୋଗରୁ ବଞ୍ଚିତ ହୋଇ ରହିଗଲେ ।

କ୍ରମେ ଦେଶର ପରିସ୍ଥିତିରେ ଦ୍ରୁତ ପରିବର୍ତ୍ତନ ହେଲା । ଅନ୍ତର୍ବର୍ତ୍ତୀ ସରକାର ଥାଇ ସୁଦ୍ଧା ସାଂପ୍ରଦାୟିକ ଦଙ୍ଗା ବୃଦ୍ଧି ପାଇଲା । ଅସଂଖ୍ୟ ଧନଜନ ନାଶ ଘଟିଲା । ଏହା ସବୁ ଥିଲା ବ୍ରିଟିଶ ସାମ୍ରାଜ୍ୟବାଦର ନାଟ । ଶାନ୍ତିପୂର୍ଣ୍ଣ ଭାବରେ କ୍ଷମତା ହସ୍ତାନ୍ତର କରିବାର ପନ୍ଥା ଗ୍ରହଣ କରାଗଲା; ମାତ୍ର ଦେଶରେ ଯେମିତି ଅଶାନ୍ତିର ମଞ୍ଜି ବରାବର ଗୁଡ଼ିଆଡ଼େ ବୁଣାହୁଏ, ଅଙ୍କୁରିତ ହୁଏ ଏବଂ ସର୍ବନାଶ ଘଟେ ସେମାନେ ଏହି ଖେଳ ଖେଳିଲେ । କେନ୍ଦ୍ରର ଅନ୍ତର୍ବର୍ତ୍ତୀ ଶାସନ ପକ୍ଷରେ ଦେଶର ଏ ବିକଟ ଅବସ୍ଥାକୁ ସମ୍ଭାଳିବା ମୁସ୍କିଲ ହେଲା । ଥରେ କ୍ଷମତାକୁ ଆସିଗଲେ ଯାହା ହୁଏ, ଆଉ ସେ ବାଟ ଛାଡ଼ିବାକୁ କଂଗ୍ରେସ ନେତୃମଣ୍ଡଳୀ ପ୍ରସ୍ତୁତ ନଥିଲେ । ଦେଶର ବିଭାଜନ ଲାଗି ଜିନ୍ନାଙ୍କ ଆନ୍ଦୋଳନ ଆହୁରି ତେଜିଲା । ଗାନ୍ଧୀଜୀ ଏହାକୁ ରୋକିବା ନିମନ୍ତେ ଯଥାସମ୍ଭବ ଚେଷ୍ଟାକଲେ; ମାତ୍ର ତାଙ୍କର ସକଳ ଚେଷ୍ଟା ବ୍ୟର୍ଥ ହେଲା; ଏପରିକି ତାଙ୍କ ଅନୁଚର କଂଗ୍ରେସ ନେତୃମଣ୍ଡଳୀ ତାଙ୍କ ପରାମର୍ଶ ମାନିବାକୁ ଅସ୍ୱୀକାର କଲେ । ସେମାନଙ୍କର ଯୁକ୍ତି ହେଲା ଏ ସାଂପ୍ରଦାୟିକ ବିବାଦ ଏଭଳି ଆକାର ଧାରଣ କଲାଣି ଏବଂ ବିଭିନ୍ନ ସଂପ୍ରଦାୟ ଭିତରେ ଏ ବିଷ ଏପରି ପ୍ରବେଶ କରିଛି, ସେଥିରେ ଦୁହିଁଙ୍କି ଶାନ୍ତିପଥକୁ ଆଣି ଦେଶ ଚଳାଇବା ଆଉ ସମ୍ଭବ ନୁହେଁ—ଦେଶ ଶେଷକୁ ପୁଣି ପୂର୍ବପରି ପରାଧୀନ ହୋଇ ରହିଯିବ—ତେଣୁ ବିଭାଜନ ପଛକେ ଶ୍ରେୟ, ପରାଧୀନ ହୋଇ ଆଉ ରହିହେବ ନାହିଁ । ବ୍ରିଟିଶ ସରକାର ତାର କୂଟକୌଶଳରେ ସମର୍ଥ ହେଲା । ଭାରତ ଓ ପାକିସ୍ତାନ ଏହି ଦୁଇଭାଗରେ ଦେଶ ବିଭକ୍ତ ହେବାର ପ୍ରସ୍ତାବ ଆସିଲା । ଏଭଳି ପ୍ରସ୍ତାବକୁ ଗୃହୀତ କରାଇବାରେ ସେବର ଭାଇସରାୟ ଲର୍ଡ଼ ମାଉଣ୍ଟବାଟେନ୍‌ଙ୍କର ଖୁବ୍ ହାତ ଥିଲା । ଲର୍ଡ ଓ୍ୱାଭେଲ୍‌ଙ୍କ ବଦଳରେ ସେ ଭାଇସ୍‌ରାୟ ହୋଇ ଆସିଲେ । ଲେଡ଼ି ମାଉଣ୍ଟବାଟେନ୍ ମଧ୍ୟ ପଣ୍ଡିତ ନେହେରୁଙ୍କୁ ଏ ଦିଗରେ ଖୁବ୍ ପ୍ରବର୍ତ୍ତାଇ ପାରିଥିଲେ । ଦିଲ୍ଲୀଠାରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ବସିଲା । ଗାନ୍ଧୀଜୀଙ୍କର ବିରୋଧ ସତ୍ତ୍ୱେ କଂଗ୍ରେସ ନେତୃମଣ୍ଡଳି ଦେଶର ବିଭାଜନରେ ସମ୍ମତ ହେଲା ଏବଂ ତାକୁ ସମର୍ଥନ କରି ପ୍ରସ୍ତାବ ଧାର୍ଯ୍ୟ ହୋଇଗଲା । ସୋସିଆଲିଷ୍ଟ ପାର୍ଟି ଏ ପ୍ରସ୍ତାବର ଘୋର ବିରୋଧ କରିଥିଲା । ଆମେ ସବୁ ଯେ ନିଖିଳ ଭାରତ କଂଗ୍ରେସ କମିଟି ବୈଠକରେ ଯୋଗ ଦେଇଥିଲୁ, ଏହା ବିରୋଧରେ ଭୋଟ ଦେଲୁ । ଗାନ୍ଧୀଜୀ ନିଜେ ଶକ୍ତ ବିରୋଧ କରିବା ସଙ୍ଗେ ସଙ୍ଗେ କହିଲେ ଯେ ସେ ଏହାର କେବେ ସମର୍ଥକ ହୋଇ ପାରିବେ ନାହିଁ କିମ୍ବା କଂଗ୍ରେସ ନେତାମାନଙ୍କର ବାଟରେ ଅଡ଼ୁଆ ସୃଷ୍ଟି କରିବେ ନାହିଁ । ସେ ଦିଲ୍ଲୀ ଏବଂ କଂଗ୍ରେସ ରାଜନୀତିର ଅନ୍ୟ କାର୍ଯ୍ୟରୁ ସମସ୍ତ ସଂପର୍କ ତୁଟାଇ ସାଂପ୍ରଦାୟିକ ବିଦ୍ୱେଷ ଲାଗିଥିବା ନୋଆଖାଲି ଓ ଅନ୍ୟ ଅଞ୍ଚଳରେ ପଦଯାତ୍ରା କରି ସାଂପ୍ରଦାୟିକ ସଦ୍‌ଭାବ ଫେରାଇ ଆଣିବା କାର୍ଯ୍ୟରେ ବ୍ୟାପୃତ ରହିଲେ । ଶେଷରେ ୧୯୪୭ ଅଗଷ୍ଟ ୧୫ ତାରିଖରେ ଭାରତରେ କଂଗ୍ରେସ ନେତୃମଣ୍ଡଳୀ

ହାତରେ ଯେଉଁ ଖଣ୍ଡିତ ଭାରତ ସମର୍ପଣ କରିଦିଆଗଲା, ଗାନ୍ଧୀଜୀ ସେ ଉତ୍ସବକୁ ବର୍ଜନ କରି ବହୁ ଦୂର ଅଭ୍ୟନ୍ତରରେ ବିଭିନ୍ନ ସଂପ୍ରଦାୟ ଭିତରେ ସଂହତି ଓ ସଦ୍‌ଭାବ ପ୍ରତିଷ୍ଠା କରୁଥିଲେ ।

## ଜାତୀୟ କାର୍ଯ୍ୟନିର୍ବାହିକାର ସଦସ୍ୟତା

କାନପୁରଠାରେ ମୁଁ ସୋସଲିଷ୍ଟ ପାର୍ଟିର ଜାତୀୟ କାର୍ଯ୍ୟନିର୍ବାହିକା ପରିଷଦକୁ ନିର୍ବାଚିତ ହେଲି । ସେହିଦିନୁ ମୁଁ ୧୯୭୧ ଅଗଷ୍ଟ ମାସରେ ଇସ୍ତଫା ନ ଦେବା ପର୍ଯ୍ୟନ୍ତ ବରାବର କର୍ମକର୍ତ୍ତା ହୋଇ ରହିଥିଲି । ୪ । ୫ ବର୍ଷ ଡ଼େପୁଟି ଚେୟାରମ୍ୟାନ୍ ଥିଲି ଏବଂ ୮ ବର୍ଷ ପାର୍ଲିମେଣ୍ଟରେ ପ୍ରଜାସୋସଲିଷ୍ଟ ଦଳର ନେତା ହୋଇ ରହିଲି ।

କାନପୁରରେ ନିର୍ବାଚିତ କମିଟିର ବୈଠକ ଦେଶ ବିଭାଜନ ହେବା ପରେ ୧୯୪୭ ମସିହା ଅଗଷ୍ଟ ୨୯, ୩୦ ଓ ୩୧ ତାରିଖରେ ନାଗପୁରଠାରେ ବସିଲା । ମୁଁ ତହିଁରେ ଯୋଗ ଦେଇଥିଲି । ଦେଶରେ ଯାହା ସବୁ ଘଟିଗଲା, ସେଥିରେ କଂଗ୍ରେସ ସହିତ କିଭଳି ସଂପର୍କ ରଖାଯିବ, ଏହା ଯେକ ଯାର୍ଘବିଗ୍ରହ ହେଲା । ଅଧିକାଂଶଙ୍କ ମତ ହେଲା କଂଗ୍ରେସ ଭିତରେ ଆଉ ରହିବା ଉଚିତ ନୁହେଁ । ମୋର ସେ ବେଳର ରଖିଥିବା ନୋଟ୍‌ରୁ ଦେଖୁଛି ଆଗୃର୍ଯ୍ୟ ନରେନ୍ଦ୍ର ଦେବ ଶେଷକୁ ଗୋଟାଏ ବାଟ ବାହାର କଲେ । ସେ ସ୍ପଷ୍ଟ କହିଲେ ଯେ କଂଗ୍ରେସ ଦ୍ୱାରା ସମାଜବାଦ ହୋଇପାରିବ ନାହିଁ, ଏ ବିଷୟରେ ମନରେ କୌଣସି ସନ୍ଦେହ ରଖାଯିବା ଉଚିତ ନୁହେଁ । ମାତ୍ର କୌଣସି ମୌଳିକ ସମସ୍ୟା ଯେକ ପାର୍ଥକ୍ୟ ଦେଖାଇ କଂଗ୍ରେସ ତ୍ୟାଗ କରିବା ଠିକ୍ ହେବ —ଅନ୍ୟଥା ଲୋକେ ଭୁଲ ବୁଝିବେ । ତେଣୁ ଏହି ବୈଠକରେ କଂଗ୍ରେସ ସହ ସଂପର୍କ ବିଷୟ ଆଲୋଚନା କରାଯାଇ ପ୍ରସ୍ତାବ ହେଲା ଯେ ସେପ୍‌ଟେମ୍ବର ମାସରେ ହେଉଥିବା ନିଖିଳ ଭାରତ କଂଗ୍ରେସ କମିଟି ବୈଠକରେ ତିନୋଟି ମୌଳିକ ଦାବୀ ଉଠାଯିବ । (୧) ଉଦ୍ଦେଶ୍ୟ ଅର୍ଥାତ୍ ସମାଜବାଦୀ ସମାଜ ସ୍ଥାପନା ଲକ୍ଷ୍ୟ ବୋଲି ଘୋଷଣା କରିବା, (୨) ଯୁବକ, କୃଷକ, ଶ୍ରମିକ ଓ ପେଷାଦାର ମଧ୍ୟବିତ୍ତ ଶ୍ରେଣୀଙ୍କର ସ୍ୱତନ୍ତ୍ର ସଂଗଠନ ଏବଂ(୩)କଂଗ୍ରେସ ସଂଗଠନ ଢାଞ୍ଚାରେ ଏପରି ପରିବର୍ତ୍ତନ ହେବ ଯେପରି ବିଭିନ୍ନ ଶ୍ରେଣୀ ସଂଗଠନର ପ୍ରତିନିଧିତ୍ୱ କଂଗ୍ରେସ ଭିତରେ ରହିପାରିବ । ଏହି ତିନୋଟି ପ୍ରସ୍ତାବ ସମ୍ବନ୍ଧରେ କଂଗ୍ରେସ କମିଟିର ମତିଗତି ବୁଝାପଡ଼ିଲା ପରେ ପୁଣି ଏକ ଖୋଲା ବାର୍ଷିକ ଅଧିବେଶନରେ ହିଁ ଏ ସଂପର୍କରେ ନିଷ୍ପତ୍ତି କରାହେବ । ଏଥିରୁ ଦେଖାଯିବ ମୋଟାମୋଟି କାନପୁର ପରଠାରୁ କଂଗ୍ରେସ ସହ ସଂପର୍କ ଛେଦର ପ୍ରକ୍ରିୟା ଆରମ୍ଭ ହେଲା ଏବଂ ୧୯୪୭ ଅଗଷ୍ଟ ୧୫ରେ ଦେଶ ଭାରତ ଓ ପାକିସ୍ତାନ ଦୁଇଭାଗରେ ବିଭକ୍ତ ହୋଇଗଲା ପରେ ବିଖଣ୍ଡିତ ଭାରତରେ କଂଗ୍ରେସ ସରକାର ଗଠିତ ହେବାପରେ ଆଉ କଂଗ୍ରେସ ଭିତରେ ରହି କାର୍ଯ୍ୟ କରିବାର ସ୍ପୃହା ସୋସଲିଷ୍ଟମାନଙ୍କର ରହିଲା ନାହିଁ । ଏଥି ପୂର୍ବରୁ ଆହୁରି ଏକ ଘଟଣା ଏ ମନୋଭାବକୁ ଦୃଢ଼ କରିବାରେ ସାହାଯ୍ୟ କଲା ।

ଭାରତ ଓ ପାକିସ୍ତାନ ବିଭାଜନ ଏବଂ ୧୯୪୨ ଆନ୍ଦୋଳନ ଯୋଗୁଁ ସୋସଲିଷ୍ଟମାନେ ଗାନ୍ଧୀଜୀଙ୍କର ନିକଟତର ହୋଇପାରିଲେ ଏବଂ ନାନା ରାଜନୀତିକ ସମସ୍ୟା ସମ୍ବନ୍ଧରେ ଗାନ୍ଧୀଜୀଙ୍କ ସହ ସୋସଲିଷ୍ଟଙ୍କର ମେଳ ଦେଖାଦେଲା । ଅନ୍ତର୍ବର୍ତ୍ତୀ ସରକାର ଗଠନ ପରେ କଂଗ୍ରେସରେ ଏକ ସଙ୍କଟ ଉପୁଜିଲା । ଆଚାର୍ଯ୍ୟ କୃପାଲାନୀ ସେତେବେଳକୁ କଂଗ୍ରେସର ସଭାପତି ଥାଆନ୍ତି । ଆଚାର୍ଯ୍ୟ କୃପାଲାନୀ ସରକାର ଗଠନର ବିରୋଧୀ ନଥିଲେ କିମ୍ବା ନିଜେ ନେତା ହେବାକୁ ଗ୍ରହୁଁ ନଥିଲେ । ମାତ୍ର କଂଗ୍ରେସ ସଂଗଠନକୁ ଅବଜ୍ଞା କରିଯାଇ କାର୍ଯ୍ୟ ହେବାରୁ ସେ ତାହାଁର ନୀତିଗତ ବିରୋଧ କଲେ ଏବଂ କଂଗ୍ରେସ ସଭାପତି ପଦରୁ ଇସ୍ତଫା ଦେଇଥିଲେ । କିଏ ସଭାପତି ହେବ ଏଥିଲାଗି ଚିନ୍ତା ପଡ଼ିଲା; କାରଣ କଂଗ୍ରେସର ପ୍ରାୟ ସବୁ ପ୍ରମୁଖ ନେତା କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ଯୋଗଦେଇଥାଆନ୍ତି । ଗାନ୍ଧୀଜୀଙ୍କ ସହ କଂଗ୍ରେସ ନେତାମାନଙ୍କର ବିସ୍ତୃତ ପରାମର୍ଶ ହେଲା । ଗାନ୍ଧୀଜୀ ପ୍ରସ୍ତାବ ଦେଲେ ଯେ ଆଚାର୍ଯ୍ୟ ନରେନ୍ଦ୍ର ଦେବ କିମ୍ବା ଜୟପ୍ରକାଶ ନାରାୟଣଙ୍କୁ ସଭାପତି କରାଯାଉ—ସେମାନେ ବାହାରେ ଅଛନ୍ତି ଏବଂ ସଂଗଠନ କାର୍ଯ୍ୟପ୍ରତି ଅଧିକ ଦୃଷ୍ଟି ଦେଇ ପାରିବେ । ପଣ୍ଡିତ ଜବାହାରଲାଲ ଏ ପ୍ରସ୍ତାବର ବିରୋଧ କଲେ ନାହିଁ କିମ୍ବା ଏହା କରିବା ଉପରେ ଅଧିକ ଜୋର୍ ଦେଲେ ନାହିଁ । କିନ୍ତୁ ସର୍ଦ୍ଦାର ପଟେଲପ୍ରମୁଖ ଏଥିର ଘୋର ବିରୋଧ କଲେ । ବିଭିନ୍ନ ପ୍ରଦେଶରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗୁଡ଼ିକ ରହିଛି ଏବଂ କେନ୍ଦ୍ରରେ ପୁଣି ଅନ୍ତର୍ବର୍ତ୍ତୀ ସରକାର—ଏସବୁର ନିୟନ୍ତ୍ରଣର ଭାର ସୋସଲିଷ୍ଟଙ୍କ ଉପରେ ଗ୍ଭଡ଼ିଦେବାର ସେ ପକ୍ଷପାତୀ ନଥିଲେ । କଂଗ୍ରେସ ନେତୃମଣ୍ଡଳୀଙ୍କ ଭିତରେ ଅଧିକାଂଶହିଁ ପଟେଲଙ୍କ ସମର୍ଥକ ଥିଲେ—ସେମାନେ ଗାନ୍ଧୀଜୀଙ୍କ ପ୍ରସ୍ତାବ ନମାନି ଡକ୍ଟର ରାଜେନ୍ଦ୍ରପ୍ରସାଦଙ୍କୁ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦିଆଇ ଆଣି କଂଗ୍ରେସର ସଭାପତି କରାଇଲେ । ତେଣୁ କଂଗ୍ରେସରେ ଦକ୍ଷିଣ ପନ୍ଥୀଙ୍କ ପ୍ରଭାବ ବୃଦ୍ଧିପାଇଲା । ସୋସଲିଷ୍ଟ ଓ ଅନ୍ୟ ବାମପନ୍ଥୀମାନଙ୍କ ପ୍ରତି କଂଗ୍ରେସର ମନୋଭାବ କ୍ରମେ ଅଧିକ କଠିନ ହେବାକୁ ଲାଗିଲା । ଏସବୁ ଆଲୋଚନାବେଳେ ମୁଁ ଦିଲ୍ଲୀରେ ଥାଏ—ଗାନ୍ଧୀଜୀ, ନେହରୁ ଓ ଅନ୍ୟ ନେତୃମଣ୍ଡଳୀଙ୍କ ଭିତରେ ଯାହାସବୁ ବିଚାର ହୁଏ, ଜୟପ୍ରକାଶ ଆସି ଆମମାନଙ୍କୁ କହୁଥାନ୍ତି । ଅବସ୍ଥା ଏଭଳି ହେଲା ଯେ, କଂଗ୍ରେସ ଭିତରେ କାର୍ଯ୍ୟ କରିବାଲାଗି ନାନା ପ୍ରତିବନ୍ଧକ ଏବଂ କଟକଣା ବିଭିନ୍ନ ପ୍ରଦେଶରେ ସୃଷ୍ଟି କରାଗଲା, ଏପରିକି ସୋସଲିଷ୍ଟମାନେ ଯେପରି ନିଖିଳ ଭାରତ କଂଗ୍ରେସ କମିଟିକୁ ବେଶୀ ସଂଖ୍ୟାରେ ନିର୍ବାଚିତ ନ ହୁଅନ୍ତି, ତାହା ଦେଖିବା ନିମନ୍ତେ ସବୁ ପ୍ରଦେଶକୁ ସେମାନଙ୍କ ତରଫରୁ ସତର୍କ କରିଦିଆଗଲା । ମୁଁ କିନ୍ତୁ ବରାବର ନିର୍ବାଚିତ ହୋଇପାରୁଥିଲି । ୧୯୪୦ରୁ ୧୯୪୮ ରେ କଂଗ୍ରେସ ତ୍ୟାଗ କରିବା ପର୍ଯ୍ୟନ୍ତ ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟ ହୋଇ ରହିଥିଲି ।

ଏଣେ ଓଡ଼ିଶାରେ ଆମେ କିଭଳି ଅବସ୍ଥାରେ ଥିଲୁ ଏବଂ କିଭଳି ସୋସଲିଷ୍ଟ ପାର୍ଟି ପୁନର୍ଗଠିତ ହେଲା, ତାହା ଓଡ଼ିଶା ସୋସଲିଷ୍ଟ ପାର୍ଟିର ବାଲେଶ୍ୱରଠାରେ ୧୯୪୮ ଏପ୍ରିଲ ୩୦ ଓ ମେ ପହିଲାରେ ହୋଇଥିବା ବାର୍ଷିକ ସମ୍ମିଳନୀରେ ପ୍ରାଦେଶିକ ସମ୍ପାଦକଙ୍କ

ରିପୋର୍ଟରୁ ଜଣାପଡ଼େ । ସେଥିରେ ଲେଖାଅଛି—"କଂଗ୍ରେସ ମନ୍ତ୍ରିତ୍ୱ ଗ୍ରହଣ କରିବା ଫଳରେ କୌଣସି ପ୍ରକାର ସମାଲୋଚନା ସହ୍ୟ କରିବାକୁ ସରକାର ପ୍ରସ୍ତୁତ ନ ଥିଲେ । ଓଡ଼ିଶା ସରକାରର ଯେଉଁମାନେ କର୍ଣ୍ଣଧାର ହେଲେ, ସେମାନେ ଉତ୍କଳ କଂଗ୍ରେସର ପ୍ରଧାନ ନେତା ଥିଲେ । ସରକାରୀ ଆସନରୁ କଂଗ୍ରେସ କମିଟିକୁ ପୂର୍ଣ୍ଣରୂପେ ନିୟନ୍ତ୍ରଣ କରିବାର ଚେଷ୍ଟା ସେମାନଙ୍କ ଭିତରେ ଦେଖାଦେଲା । ଉତ୍କଳ କଂଗ୍ରେସ କମିଟିର ନୂତନ ନିର୍ବାଚନରେ ମନ୍ତ୍ରୀଙ୍କ ମନୋନୀତ ପ୍ରାର୍ଥୀ ସଭାପତି ଓ ସମ୍ପାଦକ ରୂପେ ନିର୍ବାଚିତ ହୋଇ ନପାରିବାରୁ କଂଗ୍ରେସ କମିଟିକୁ ବେଖାତିର କରି ଓ ତାହା ସହିତ ଅସହଯୋଗ କରି ସ୍ୱତନ୍ତ୍ରଭାବରେ କର୍ମୀମାନଙ୍କୁ ଭର୍ତ୍ତି ଆଦି ଦେଇ ଗୋଟାଏ ଦଳ ଗଠନର ଚେଷ୍ଟା ପ୍ରଚ୍ଛନ୍ନ ଭାବରେ ଦେଖାଦେଲା । ସେହି ଦଳର ପ୍ରଧାନ ନେତା ହେଲେ ହରେକୃଷ୍ଣ ମହତାବ । ସେହି ଦଳ 'ପ୍ରଜାତନ୍ତ୍ର' ଅନୁଷ୍ଠାନ ସହ ସଂପୃକ୍ତ ଏବଂ ଉତ୍କଳ କଂଗ୍ରେସକୁ ଆୟତ୍ତ କରି ରଖିଥାଆନ୍ତି । ସୋସଲିଷ୍ଟ ପାର୍ଟି ଗଠିତ ହୋଇନଥିଲେ ସୁଦ୍ଧା ଏବଂ ପୂର୍ବରୁ ସୋସଲିଷ୍ଟ ପାର୍ଟି ସହ ସଂପୃକ୍ତ ଥିବା କଂଗ୍ରେସ କର୍ମୀମାନେ ନିଜର ସମସ୍ତ ସମୟ ଓ ଶକ୍ତି ଦେଇ କେବଳ କଂଗ୍ରେସ ଅନୁଷ୍ଠାନର କାର୍ଯ୍ୟରେ ନିମଗ୍ନ ହେଲେ ସୁଦ୍ଧା ଏକ ସନ୍ଦେହ ଓ ଅବିଶ୍ୱାସର ବାୟୁମଣ୍ଡଳ ସୃଷ୍ଟି କରାଗଲା । ପ୍ରଧାନମନ୍ତ୍ରୀ ମହତାବଙ୍କ ସହ କୌଣସି ପ୍ରକାର ମତଭେଦ ପ୍ରକଟ କରିବା ଯେପରି "କଂଗ୍ରେସଦ୍ରୋହ" ବୋଲି ବିବେଚିତ ହେଲା । କଂଗ୍ରେସ ଭିତରେ ପୂର୍ବପରି କାର୍ଯ୍ୟ କରିବାର ସୁଯୋଗ ଆଉ ନ ଥିଲା । ଅନୁଷ୍ଠାନର ଭାରନେଇ ସୁଦ୍ଧା ତାହା କରିବା ସମ୍ଭବ ହେଲାନାହିଁ । ହୁଏତ ମହତାବବାବୁଙ୍କ କଥାରେ ସମ୍ମତ ହେବ ନଚେତ୍ କଂଗ୍ରେସରୁ ଅଲଗା ହୋଇଯିବାକୁ ପଡ଼ିବ—ଏହି ପରିସ୍ଥିତି କ୍ରମେ ଉପୁଜିଲା । କଂଗ୍ରେସ ଅନୁଷ୍ଠାନର କୌଣସି ସ୍ୱତନ୍ତ୍ର ଅସ୍ତିତ୍ୱ ଥିଲାପରି ମନେହେଲା ନାହିଁ । ଏପରି ଅବସ୍ଥାରେ ସୋସଲିଷ୍ଟ ପାର୍ଟିରେ ପୂର୍ବରୁ ସଂପୃକ୍ତ ଥିବା ଏବଂ ନୂତନ ହୋଇ ସେଥିପ୍ରତି ଆକୃଷ୍ଟ ହୋଇଥିବା କଂଗ୍ରେସ କର୍ମୀଙ୍କ ପକ୍ଷରେ ନିଷ୍ପତ୍ତି କରିବାକୁ ପଡ଼ିଲା—ସେମାନେ ସୋସିଆଲିଜମ୍ ଗ୍ରହଣ କରିବେ ନା କଂଗ୍ରେସ ଗ୍ରହଣ କରିବେ । ଆମେ ଯେଉଁମାନେ ସୋସଲିଷ୍ଟ ପାର୍ଟି ଗଠନ କରିବାକୁ ଇଚ୍ଛୁକ ଥିଲୁ, ସେମାନେ ଏଥିଭିତରେ ମତ ବଦଳାଇ ସାରିଥିଲେ, ପରସ୍ପର ସମ୍ବନ୍ଧ ତୁଟିଯାଇଥିଲା । ତଥାପି ଯେ କେତେଜଣ ରହିଥିଲେ, ସେମାନେ ସ୍ଥିରକଲେ ଯେ ଆମକୁ ଯେ କୌଣସି ପ୍ରତିକୂଳ ଅବସ୍ଥାର ସମ୍ମୁଖୀନ ହୋଇ ସମାଜବାଦ ପ୍ରତିଷ୍ଠା କରିବାକୁ ହେବ—ଉତ୍କଳ କଂଗ୍ରେସ ଭିତରେ ରହି ସମାଜବାଦ ଆଡ଼କୁ ଅଗ୍ରସର ହେବା ଅସମ୍ଭବ । ଏତିକିବେଳକୁ ରାମନନ୍ଦନ ମିଶ୍ର ବିଶ୍ରାମ ନେବା ନିମନ୍ତେ ଓଡ଼ିଶା ଆସିଥିଲେ । ତାଙ୍କ ସହ ଆଲୋଚନା କରି ଏବଂ ଭାରତୀୟ ସମାଜବାଦୀ ଦଳର ଆଦର୍ଶ ଓ କାର୍ଯ୍ୟ ସମ୍ବନ୍ଧରେ ବିଚାର କରି ସାମ୍ୟବାଦୀ ଦଳର ବିଧିବଦ୍ଧ ଶାଖା ଗଠିତ ହେଲା । ଏହି ଦଳର ସମ୍ପାଦକରୂପେ ମୁଁ ନିର୍ବାଚିତ ହେଲି ଏବଂ ପ୍ରାଦେଶିକ କଂଗ୍ରେସ କମିଟି ସମ୍ପାଦକ ପଦରୁ ଇସ୍ତଫା ଦେବାନିମନ୍ତେ ମତେ ନିର୍ଦ୍ଦେଶ ଦିଆଗଲା । ଉତ୍କଳରେ ସୋସଲିଷ୍ଟ ପାର୍ଟିର ପ୍ରତିଷ୍ଠାବେଳୁ ସଂପୃକ୍ତଥିବା କର୍ମୀଙ୍କ ଭିତରୁ ମୁଁ, ଗୌରଚନ୍ଦ୍ର ଦାସ ଓ ରବି

ଘୋଷଙ୍କ ଛଡ଼ା ଆଉ କେହି ଏଥିରେ ଯୋଗଦେଉନଥିଲୁ । ଅବଶ୍ୟ କୃଷକ ସଂଘ ଓ ଗଡ଼ଜାତ ଆନ୍ଦୋଳନ କାର୍ଯ୍ୟରେ ମାଲତୀ ଚୌଧୁରୀ ଓ ଗୌରାଙ୍ଗଚରଣ ଦାସ ବରାବର ସହଯୋଗ କରିଥିଲେ । ପ୍ରାଦେଶିକ କଂଗ୍ରେସ ସଂପାଦକ ପଦରୁ ମୁଁ ଅବ୍ୟାହତି ନ ପାଇବା ପର୍ଯ୍ୟନ୍ତ ସ୍ୱତନ୍ତ୍ର ଭାବରେ ଦଳର କାର୍ଯ୍ୟ ଅଗ୍ରସର ହୋଇ ପାରି ନଥିଲା । ୧୯୪୭ ମାର୍ଚ୍ଚ ୧୧ ତାରିଖରେ ମୁଁ କଂଗ୍ରେସ ସଂପାଦକ ପଦରୁ ମୁକ୍ତି ପାଇଲି ଏବଂ ତାହା ପରେ ସୋସଲିଷ୍ଟ ପାର୍ଟିର ପ୍ରାଦେଶିକ ଶାଖା ଅଫିସ ଓଡ଼ିଆବଜାରରେ ସ୍ଥାପିତ ହୋଇ କାର୍ଯ୍ୟ ଚାଲିଲା ।

## କଂଗ୍ରେସ ସଂପାଦକ ପଦରୁ ଇସ୍ତଫା

କଂଗ୍ରେସ ସଂପାଦକ ପଦରୁ ଇସ୍ତଫା ଦେଲି ସିନା, ଆମେ ସବୁ କଂଗ୍ରେସ କର୍ମୀ ଭାବରେ ପୂର୍ବପରି ରହିଥାଉ ଏବଂ କଂଗ୍ରେସ କାର୍ଯ୍ୟ ସହିତ ଯେପରି ସଂପର୍କ ରହିବାର କଥା ତାହା ରଖାଯାଇଥାଏ । କଂଗ୍ରେସ ତରଫରୁ ବି ପାର୍ଟି କାର୍ଯ୍ୟରେ ସେତେବେଳେ ବାଧା ଦିଆଯାଇ ନ ଥିଲା । କୃଷକ ସମ୍ମିଳନୀ ଓ ସେହିପରି କାର୍ଯ୍ୟରେ କଂଗ୍ରେସ କର୍ମୀଙ୍କର ସମର୍ଥନ ମିଳୁଥିଲା ।

ଉତ୍କଳ କଂଗ୍ରେସ ସୋସଲିଷ୍ଟ ପାର୍ଟିର ଯେଉଁ ଶାଖା ୧୯୪୬ ଅକ୍ଟୋବର ୧୮ ତାରିଖରେ ସ୍ଥାପନା କରାଗଲା, ସେଥିରେ ନିମ୍ନଲିଖିତ କର୍ମକର୍ତ୍ତା ରହିଲେ—ସୁରେନ୍ଦ୍ରନାଥ ଦ୍ୱିବେଦୀ ସାଧାରଣ ସଂପାଦକ, ରବୀନ୍ଦ୍ରମୋହନ ଦାସ—ଅସ୍ଥାୟୀ ସାଧାରଣ ସଂପାଦକ, ବାଙ୍କବିହାରୀ ଦାସ ସଂଗଠନ ସଂପାଦକ, ଗୌରଚନ୍ଦ୍ର ଦାସ, ରବି ଘୋଷ ଓ ନିଶାମଣି ଖୁଣ୍ଟିଆ--ସଭ୍ୟ । ଏହି ହେଲା ପ୍ରାଥମିକ କାର୍ଯ୍ୟନିର୍ବାହକ ସମିତି । ସେତେବେଳକୁ ପାର୍ଟିର ମୋଟ ସଭ୍ୟ ସଂଖ୍ୟା ଥିଲା ୨୫ । ଏହାର କାରଣ କଂଗ୍ରେସ ପରି ଯେ କୌଣସି ଲୋକ ସଭ୍ୟଚାନ୍ଦା ଦେଲେ ତାଙ୍କୁ ସଭ୍ୟରୂପେ ଗ୍ରହଣ କରାଯାଉ ନ ଥିଲା । ସଭ୍ୟ ସଂଗ୍ରହରେ କଟକଣା ଥିଲା— ସୋସଲିଷ୍ଟ ଆଚରଣ ଓ ନିୟମକୁ ଗ୍ରହଣ କରିବା ଆବଶ୍ୟକ ପଡ଼ୁଥିଲା । ପ୍ରଥମେ ଅସ୍ଥାୟୀ ଭାବରେ ଗ୍ରହଣ କରାଯାଉଥିଲା; କିଛିଦିନ ପରେ ପାର୍ଟିର ଯାଞ୍ଚ କମିଟି ତାଙ୍କ କାର୍ଯ୍ୟକଳାପ ଓ ଅନ୍ୟ ବିଷୟ ବିଚାରକୁ ନେଇ ସ୍ଥାୟୀ ସଭ୍ୟରୂପେ ଗ୍ରହଣ କରୁଥିଲା ।

ସୋସଲିଷ୍ଟ ପାର୍ଟିର ପୁନର୍ଗଠନକୁ ମୁଁ ଏକ ଚ୍ୟାଲେଞ୍ଜରୂପେ ଗ୍ରହଣ କଲି । ମହତାବଗୋଷ୍ଠୀ ସମ୍ବାଦପତ୍ର ଜରିଆରେ ଓ ନାନାଭାବରେ କୁତ୍ସାରଟନା କଲେ; ତାଚ୍ଛଲ୍ୟ କରି କହିଲେ-ଏହାର ମୁଣ୍ଡ ଅନ୍ୟତ୍ର, ବମ୍ବେରେ ଗଣ୍ଡି ଶୁଖି ଝୁଲୁଛି; ଏଠି ସୋସଲିଷ୍ଟ ପାର୍ଟି ବୋଲି ଯାହା ବୋଲଉଛି ତାହା ଏକ ପୁଚ୍ଛହୀନ ଲାଙ୍ଗୁଡ଼ । ଏହାର ଅର୍ଥ ଓଡ଼ିଶାରେ ଏହାର କୌଣସି ଅସ୍ତିତ୍ୱ ନାହିଁ କିମ୍ବା ଏହା ଉଠେଇ ପାରିବ ନାହିଁ । ଆମେ ବି ବିଷମ ଜଞ୍ଜାଳର ସମ୍ମୁଖୀନ ହେଲୁ । ଆର୍ଥିକ ସମ୍ବଳ ନ ଥାଏ ବିଧିବଦ୍ଧ ଅଫିସ ଖୋଲି କାର୍ଯ୍ୟ ଆରମ୍ଭ କରିବା ନିମନ୍ତେ । ଘରଟିଏ ବି ପାଇବା ମୁସ୍କିଲ ହେଲା । ମହତାବଙ୍କ ବିରୋଧ ଯୋଗୁଁ ଯେଉଁ କଂଗ୍ରେସ ଲୋକଙ୍କର ମୋ ପ୍ରତି ଆନ୍ତରିକତା ଥିଲା, ସେମାନେ ମୁହଁରେ ସହାନୁଭୂତିଶୀଳ ଥିଲେ

ମୁକ୍ତ ଅନ୍ୟ କୌଣସି ପ୍ରକାର ସାହାଯ୍ୟ କରିବାଲାଗି ପ୍ରସ୍ତୁତ ହେଉ ନ ଥିଲେ; କେନ୍ଦ୍ରରୁ ମଧ୍ୟ କିଛି ଆର୍ଥିକ ସାହାଯ୍ୟ ମିଳିବାର ବ୍ୟବସ୍ଥା ନ ଥିଲା । ପୁରୁଣା ପ୍ରଭାବଶାଳୀ ସାଥୀ ପ୍ରାୟ ଚାଲିଯାଇଥାଆନ୍ତି । ଏକ ପ୍ରତିକୂଳ ପରିସ୍ଥିତି ଭିତରେ ଆମକୁ ଛିଡ଼ା ହେବାକୁ ହେବ । ୧୯୪୨ ଭାରତ ଛାଡ଼ ଆନ୍ଦୋଳନରେ ଗୁପ୍ତ ସଂଗଠନ ଆରମ୍ଭ କରିବା ପୂର୍ବରୁ ମୁଁ ଯେପରି ପ୍ରଥମେ ଏକୁଟିଆ ଅନ୍ଧାର ରାତିରେ ବିଜୁଳି ଚମକ ଭିତରେ କଟକ ସହରରେ ପ୍ରବେଶ କରି କୌଣସି ପ୍ରକାରେ ରାତି ଯାପନ ଲାଗି ଏକ ଆଶ୍ରୟସ୍ଥଳ ଯୋଗାଡ଼ କରିଥିଲି, ମତେ ପୁଣି ସେମିତି କରିବାକୁ ହେବ ବୋଲି ମୁଁ ଅନୁଭବ କଲି ।

## ସୋସଲିଷ୍ଟ ଆନ୍ଦୋଳନ

କିନ୍ତୁ ଧନ ଓ ସମ୍ବଳର ଅଭାବରୁ କେବେ କୌଣସି ଭଲ କାମ ଅଟକେ ନାହିଁ— ଓଡ଼ିଶାରେ ସୋସଲିଷ୍ଟ ଆନ୍ଦୋଳନକୁ କେହି ରୋକି ପାରିଲେ ନାହିଁ । ଏ ଯେଉଁ ୨୫ ଜଣ ସାଥୀ ନୂଆ ଦଳର ମୂଳଦୁଆ ପକାଇଲେ ସେମାନେ ଆମର ପ୍ରକୃତ ସମ୍ବଳ ହେଲେ । ଏକ ନୂତନ ଆନ୍ଦୋଳନର ଓ ଆଦର୍ଶର ବାହକରୂପେ ସେମାନେ ମନରେ ଅଦମ୍ୟ ଜିଗୀଷା ଓ ସାହସ ନେଇ ଲାଗିପଡ଼ିଲେ । ରାଜନୈତିକ ଆଦର୍ଶ ଓ ଲକ୍ଷ୍ୟ ସମ୍ବନ୍ଧରେ ମଧ୍ୟ ତାଙ୍କର ଧାରଣା ସ୍ପଷ୍ଟ ହୋଇଥାଏ । କାନପୁର ଅଧିବେଶନରେ ମାର୍କସବାଦ ନେଇ ଯେଉଁ ଦ୍ୱନ୍ଦ୍ୱ ରହିଥିଲା ଏବଂ କମ୍ୟୁନିଷ୍ଟ ସୋସଲିଷ୍ଟଙ୍କ ଭିତରେ କିଏ କେତେ ଅଗ୍ରଗାମୀ ଏହା ନେଇ ଯେଉଁସବୁ ବିବାଦ ପୂର୍ବେ ପାର୍ଟି ଲୋକଙ୍କ ଭିତରେ ନାନା ବୁଦ୍ଧିଭେଦ ସୃଷ୍ଟି କରିଥିଲା, ତାହା ଦୂର ହୋଇଗଲା । କମ୍ୟୁନିଷ୍ଟ ପାର୍ଟି ପ୍ରକୃତ ମାର୍କସବାଦ ସ୍ଥାପନା ଦିଗରେ କାର୍ଯ୍ୟ କରୁନାହିଁ—ଏହା ଏକଛତ୍ରବାଦୀ ଅଧିନାୟକତ୍ୱ ('otalitarian Communism) ସ୍ଥାପନା କରିବାକୁ ଚାହୁଁଛି । ସୋସଲିଷ୍ଟ ପାର୍ଟିର ଏଥିସହ କୌଣସି ସାମଞ୍ଜସ୍ୟ ନାହିଁ । ତେଣୁ ସୋସଲିଷ୍ଟ ପାର୍ଟି ତାର ସମାଜବାଦୀ ଲକ୍ଷ୍ୟର ନାମକରଣ କଲା 'ଗଣତାନ୍ତ୍ରିକ ସମାଜବାଦ' । କାନପୁର ସମ୍ମିଳନୀରେ ଯେଉଁ ନୀତି ନିର୍ଦ୍ଧାରଣ ବିବୃତି ପ୍ରକାଶ ପାଇଲା, ସେଥିରେ ଏ ବିଷୟଟି ବଡ଼ ପ୍ରାଞ୍ଜଳ ଓ ବିଶଦଭାବରେ ଆଲୋଚିତ ହୋଇଥିଲା । ମାର୍କସବାଦୀ ଆଚାର୍ଯ୍ୟ ନରେନ୍ଦ୍ରଦେବଙ୍କର ଛାପ ଏଥିରେ ବିଶେଷ ଭାବରେ ଦେଖିବାକୁ ମିଳେ । ଆମେ ସବୁ ଜାତୀୟ ଜୀବନବାହିକା ସମିତିରେ ଆଲୋଚନାବେଳେ ଯେତେବେଳେ ଦ୍ୱନ୍ଦ୍ୱ ଭିତରେ ପଡ଼ିଯାଉ, ସେତେବେଳେ ଆଚାର୍ଯ୍ୟଜୀ ନିଜର ଅସାଧାରଣ ବିଚକ୍ଷଣ ବିଶ୍ଳେଷଣ ଦ୍ୱାରା ସମାଧାନ ବାହାର କରନ୍ତି । ମୋର ମନେହୁଏ, କାନପୁରରେ ଯେଉଁ ଗଣତାନ୍ତ୍ରିକ ସମାଜବାଦର ମୂଳସୂତ୍ର ବାହାରକରାଗଲା, ତାହା ପୃଥିବୀର ମାର୍କସବାଦ ଓ ସୋସଲିଷ୍ଟ ଆନ୍ଦୋଳନର ସ୍ପଷ୍ଟୀକରଣ ଦିଗରେ ଏକ ଅପୂର୍ବ ଅବଦାନ । ଏହି ପରିପ୍ରେକ୍ଷୀରେ 'ଆମେ କଣ ଚାହୁଁ' ବୋଲି ଉତ୍କଳ ସୋସଲିଷ୍ଟ ପାର୍ଟିର ଏକ ପୁସ୍ତିକା ପ୍ରକାଶ ପାଇଲା । ସେଥିରେ ମୁଁ ଲେଖିଥିଲି—"ଆମେ ଯେଉଁ 'କୃଷକ ମଜଦୁର ରାଜ୍ୟ' ଚାହୁଁ, ତାର ପ୍ରଥମ

କାର୍ଯ୍ୟସ୍ୱରୂପ ଭାରତର ସବୁ ଅଞ୍ଚଳରୁ ଇଂରେଜ ସରକାର ୧୯୪୮ ଜୁନ ଭିତରେ ଯେପରି ନିଶ୍ଚୟ ଯାଏ, ସେଥିଲାଗି ଜବରଦସ୍ତ ସଂଗଠନ ଲୋଡ଼ା । ଖାଲି ଏତିକିରେ ହେବ ନାହିଁ— ୧୯୪୮ ଜୁନ ମାସରେ ଇଂରେଜ ସରକାରର ଅସ୍ତିତ୍ୱ ଲୋପ ସଙ୍ଗେ ସଙ୍ଗେ ଆମେ ଚାହୁଁ ଜମିଦାର ବଦଳରେ ଗ୍ରାମର କୃଷକ ପଞ୍ଚାୟତ ଜମିସବୁ ଦଖଲ କରିନେଉ, କଳ କାରଖାନାର ଶ୍ରମିକମାନେ ମାଲିକଠାରୁ ଅଧିକାର ଛଡ଼ାଇ ନେଇ କାରଖାନାଗୁଡ଼ିକର ମାଲିକ ହୁଅନ୍ତୁ ଏବଂ ଗଡ଼ଜାତ ପ୍ରଜାମାନେ ରାଜମାନଙ୍କ ଲୋପ କରି ଗଡ଼ଜାତଗୁଡ଼ିକର ଶାସନ ଅଧିକାରୀ ହୁଅନ୍ତୁ । ଏତିକି ଆମ ଆଗରେ ଜରୁରୀ ପ୍ରଶ୍ନ ଏବଂ ୧୯୪ ଜୁନ୍ ଭିତରେ ଏତିକି ହାସଲ ହୋଇପାରିଲେ ସମାଜବାଦ ଭିତ୍ତିରେ ଭବିଷ୍ୟତ ସମାଜ ଗଠନର ବାଟ ସହଜ ହୋଇଯିବ ।"

ଏଥିରୁ ବୁଝାପଡ଼ୁଛି ଯେ, ସୋସଲିଷ୍ଟମାନେ ପ୍ରକୃତ ଲୋକଙ୍କ ହାତକୁ କ୍ଷମତା ଆସିବା ନିମନ୍ତେ ଆହୁରି ଏକ ଜନବିପ୍ଳବର କଳ୍ପନା କରିଥିଲେ । ସେଥିନିମନ୍ତେ ଶାସନବିଧାୟକ ସଭାକୁ ବର୍ଜ୍ଜନ କରାଗଲା । କଂଗ୍ରେସ ନ ଛାଡ଼ି ଖୁଦ୍ କଂଗ୍ରେସ ଅନୁଷ୍ଠାନ ବାହାରେ ନାନା ଜନସଂଗଠନ କରିବା ନିମନ୍ତେ ସୋସଲିଷ୍ଟମାନେ ଲାଗିପଡ଼ିଲେ ।

## 'କୃଷକ'ର ପୁନର୍ଜୀବନ

ଆମେ ଓଡ଼ିଶାରେ ପାର୍ଟି ଗଠନ ସଙ୍ଗେ ସଙ୍ଗେ 'କୃଷକ ପ୍ରେସ' ନାମକ ଏକ ଛୋଟ ଛାପାଖାନା ବସାଇଲୁ । ୧୯୪୨ ଆନ୍ଦୋଳନ ପୂର୍ବରୁ ବନ୍ଦ ହୋଇଥିବା "କୃଷକ" ସାପ୍ତାହିକ ପତ୍ରିକୁ ପୁଣି ପ୍ରକାଶ କରାଗଲା । ଅସ୍ଥାୟୀ କୃଷକ ସଂଘ ସ୍ଥାପନା କରାଯାଇ ସ୍ଥାନେ ସ୍ଥାନେ ଚାଷୀ ସମ୍ମିଳନୀ କରାଗଲା । ଭାଗଚାଷ ସମସ୍ୟାକୁ ମୁଖ୍ୟଭାବରେ ସୋସଲିଷ୍ଟ ପାର୍ଟି ହାତକୁ ନେବାରୁ ଓଡ଼ିଶାର ଚାଷୀଆଡ଼େ ଅଦ୍ଭୁତ ଜାଗରଣ ଦେଖାଦେଲା ଏବଂ ଓଡ଼ିଶାର ସବୁ ଜିଲ୍ଲାରୁ, ଏପରିକି ସମ୍ବଲପୁର ଓ କୋରାପୁଟର ଗୁଡ଼ାଏ ଦୂର ସୁଦୂର ଅଞ୍ଚଳରୁ, ସୋସଲିଷ୍ଟ ପାର୍ଟିକୁ ଡାକରା ଆସିଲା କୃଷକ ସଂଗଠନ କରିବା ନିମନ୍ତେ । ତାହାର ଜରିଆରେ ନୂଆ ନୂଆ ଯୁବକ ମଧ୍ୟ ସୋସଲିଷ୍ଟ ପାର୍ଟିର ମେମ୍ବର ହେବାକୁ ଆଗ୍ରହ ପ୍ରକାଶ କଲେ ।

ଆଗରୁ ଗଡ଼ଜାତ ପ୍ରଜା ଆନ୍ଦୋଳନ ଶ୍ରୀ ସାରଙ୍ଗଧର ଦାସଙ୍କ ନେତୃତ୍ୱରେ ଚାଲୁଥିଲା । ମଝିରେ ରାଜନୀତିକ ଲଢ଼ାଇ ଯୋଗୁ ତାହା ମାନ୍ଦା ହୋଇପଡ଼ିଥିଲା । ନୂତନ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେବାରେ ସେ ଆନ୍ଦୋଳନ ପୁଣି ତେଜି ଉଠିଲା । ଓଡ଼ିଶାର ସୋସଲିଷ୍ଟମାନେ ସାରଙ୍ଗଧର ଦାସଙ୍କୁ ପୂର୍ଣ୍ଣ ସମର୍ଥନ ଓ ସହଯୋଗ ଦେଲେ । ମୁଁ ନିଜେ ବହୁ ଗଡ଼ଜାତ ଅଞ୍ଚଳ ଗସ୍ତ କଲି । "କୃଷକ" ପତ୍ରିକା ଚାଷୀ ଓ ଗଡ଼ଜାତ ପ୍ରଜା ଆନ୍ଦୋଳନର ମୁଖପତ୍ର ରୂପେ କାର୍ଯ୍ୟ କଲା ।

## ସମାଜବାଦୀ ଯୁବକ ସଭା

ଏହି ସମୟ ଭିତରେ "ସମାଜବାଦୀ ଯୁବକ ସଭା" ଗ୍ରୁପ ଯୁବକ ସଂଗଠନରେ ବ୍ରତୀ ହୋଇଗଲା । ଲୋକସେବାଦଳ ନାମକ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସ୍ଥାପିତ ହୋଇ ଯୁବକମାନଙ୍କୁ ଡ୍ରିଲ୍ ଓ ଅନ୍ୟାନ୍ୟ କସରତ୍ ଇତ୍ୟାଦିର ଶିକ୍ଷା ଦିଆଗଲା । ମୁଁ ପ୍ରଦେଶ କଂଗ୍ରେସ କମିଟିର ସମ୍ପାଦକ ଥିବାବେଳେ ଯେଉଁମାନେ ଶ୍ରମିକ ସଂଗଠନ ଆରମ୍ଭ କରିଥିଲେ, ସେମାନେ ସୋସଲିଷ୍ଟ ପାର୍ଟିକୁ ଚାଲିଆସିବାରୁ ଓଡ଼ିଶାର ବଡ଼ ବଡ଼ ଶିଳ୍ପ, କାରଖାନା ଏବଂ ସହରମାନଙ୍କରେ ରହିଥିବା ଅନ୍ୟ ପେଷାଦାର ଶ୍ରେଣୀଙ୍କୁ ଟ୍ରେଡ୍ ଇଉନିୟନ୍ ଭିତରେ ସଙ୍ଗଠିତ କରାଗଲା ।

## ଜନ ସଂସ୍କୃତି ସଂଘ

ପାର୍ଟିର ଉଦ୍ୟମରେ "ଜନ ସଂସ୍କୃତି ସଂଘ" ନାମକ ଏକ ସାଂସ୍କୃତିକ ସଂସ୍ଥା ଗଠନ କରାଯାଇ ସମାଜବାଦୀ ସଂସ୍କୃତି ଓ ଜାତୀୟଭାବ ପ୍ରସାରର ଉଦ୍ୟମ ହେଲା । ଏହାର ଆନୁକୂଲ୍ୟରେ ସଙ୍ଗୀତ ଅନୁଷ୍ଠାନ ଓ ଶ୍ରୀ ମନୋରଞ୍ଜନ ଦାସଙ୍କ ଲିଖିତ "ଅଗଷ୍ଟ ନ" ନାଟକଟି ସୋସଲିଷ୍ଟ ସାଥୀମାନଙ୍କଦ୍ୱାରା ଓଡ଼ିଶାର ବିଭିନ୍ନ ସହରରେ ଅଭିନୀତ ହେଲା । ମୋଟ ଉପରେ କହିବାକୁ ଗଲେ, ଓଡ଼ିଶାର ସାମାଜିକ,ଆର୍ଥିକ, ସାଂସ୍କୃତିକ ଓ ରାଜନୈତିକ ଜୀବନର ପ୍ରତ୍ୟେକ ସ୍ତରରେ ସୋସଲିଷ୍ଟ ଭାବଧାରାର ପ୍ରଚାର ନିମନ୍ତେ ସୋସଲିଷ୍ଟ ସାଥୀମାନେ ଲାଗିପଡ଼ିଲେ ଏବଂ ଏସବୁକୁ ଏକ ଆନୁଷ୍ଠାନିକ ରୂପ ପ୍ରଦାନ କଲେ । କୃଷକ ପ୍ରେସ ଓ ପତ୍ରିକା ଏହି ନବ ସଂସ୍କୃତିର କେନ୍ଦ୍ରସ୍ଥଳ ହେଲା ।

ଏହିରୂପେ କଂଗ୍ରେସ ତ୍ୟାଗ କରିବା ପୂର୍ବରୁ ବା ଅଳ୍ପଦିନ ଭିତରେ ସୋସଲିଷ୍ଟମାନେ ତାଙ୍କର ଅପୂର୍ବ ସଙ୍ଗଠନ ଶକ୍ତିର ପରିଚୟ ଦେଲେ ଏବଂ ଯେଉଁମାନେ ଏହାକୁ ହେୟଜ୍ଞାନ କରୁଥିଲେ, ସେମାନେ ଆତଙ୍କିତ ହେଲେ । ଓଡ଼ିଶାରେ ଏକ ଶକ୍ତିଶାଳୀ ରାଜନୀତିକ ବିରୋଧ ରୂପରେ ମୁଣ୍ଡ ଟେକିବା ଦେଖି କେତେକ ଆତଙ୍କ ଗଣିଲେ ।

ଆମେ ସବୁ ସ୍ୱାଧୀନତା ସଂଗ୍ରାମରେ ମୁଖ୍ୟ ଭାଗ ନେଇଥିଲୁ । 'ଭାରତ ଛାଡ଼' ଆନ୍ଦୋଳନରେ ସୋସଲିଷ୍ଟଙ୍କର ଅବଦାନକୁ କେହି ଅସ୍ୱୀକାର କରିନାହାନ୍ତି । ଆମର ଜୀବନକାଳ ଭିତରେ ଭାରତୀୟଙ୍କ ହାତକୁ ରାଜନୀତିକ କ୍ଷମତା ହସ୍ତାନ୍ତର ହୋଇପାରିଲା— ଏଥିରେ ଆମର ଲକ୍ଷ୍ୟ ହାସଲ ହୋଇଗଲା ବୋଲି ଅନ୍ୟ କଂଗ୍ରେସ ଲୋକେ ଯେପରି ଉଲ୍ଲାସରେ ମାତି କ୍ଷମତା-ମଦରେ ମତ୍ତ ହୋଇଗଲେ, ସୋସଲିଷ୍ଟମାନେ ଯଦି ସେହିଭଳି ଆଚରଣ ଦେଖାଇଥାନ୍ତେ, ତେବେ ଏ ଦେଶର ଗଣତାନ୍ତ୍ରିକ ଜୀବନ ନୀରସ ଓ ଶୁଷ୍କ ହୋଇ ରହିଯାଇଥାନ୍ତା । ଗାନ୍ଧୀଜୀଙ୍କର ଏତେ ବଡ଼ ବୈପ୍ଳବିକ କାର୍ଯ୍ୟ ତୁଚ୍ଛ ହୋଇଯାଇ-ଥାଆନ୍ତା । ସୋସଲିଷ୍ଟ ପାର୍ଟିର ଲୋକେ କ୍ଷମତା ପଛରେ ନ ଦଉଡ଼ି ଜନବିପ୍ଳବକୁ ଅଧିକ

ଭୂକ୍ତିବନ୍ତ କରିବା ନିମନ୍ତେ ଦୃଢପରିକର ହୋଇ ଲାଗିଲେ ଏବଂ ତାହା ଫଳରେ କଂଗ୍ରେସର ଚିନ୍ତାଧାରା ଏବଂ ସୋସାଲିଷ୍ଟଙ୍କ କର୍ମଧାରା ଭିତରେ ତଫାତ୍ ଦିନକୁ ଦିନ ବୃଦ୍ଧି ପାଇବାକୁ ଲାଗିଲା । ୧୯୪୭ ଅଗଷ୍ଟ ପରବର୍ତ୍ତୀ ଘଟଣାବଳୀ ସତେ କି ସୋସାଲିଷ୍ଟ ବନ୍ଧୁମାନଙ୍କୁ କଂଗ୍ରେସ ଆଡକୁ ଆଉ ନ ଅନାଇବା ଲାଗି ବାଧ୍ୟ କଲା । ୧୯୪୭ରେ ଖାଲି ଦେଶ ସ୍ୱାଧୀନ ହେଲା ନାହିଁ, ଏକ ସ୍ୱାଧୀନ ସମାଜବାଦୀ ଆନ୍ଦୋଳନ ଲାଗି ପଥ ପରିଷ୍କାର ହେବାକୁ ଲାଗିଲା ।



## ୭। ୧୯୪୭—୧୯୪୨

# ଏକ ଯୁଗାନ୍ତକାରୀ ବର୍ଷ

୧୯୪୭ ମସିହାଟି ବାସ୍ତବିକ ଆମ ଦେଶ ପକ୍ଷରେ, ଆମ କଂଗ୍ରେସ ଲୋକଙ୍କ ପକ୍ଷରେ ଏବଂ ସୋସଲିଷ୍ଟ ପାର୍ଟି ଇତିହାସରେ ଏକ ଅତି ଗୁରୁତ୍ୱପୂର୍ଣ୍ଣ ବର୍ଷ । ରାଜନୀତିକ ଜୀବନର ବହୁ ବଡ଼ ବଡ଼ ସିଦ୍ଧାନ୍ତ ଏହି ବର୍ଷଟିରେ ହୋଇଗଲା ।

ଅଗଷ୍ଟ ୧୫ରେ ସ୍ୱାଧୀନତା ଘୋଷିତ ହେଲା; ମାତ୍ର ଏ ସ୍ୱାଧୀନତାର ଯେ କର୍ତ୍ତା ଓ ସ୍ରଷ୍ଟା ସେ ଉତ୍ସବରେ ଯୋଗ ଦେଲେ ନାହିଁ । ସହକର୍ମୀମାନେ ବ୍ରିଟିଶ ସରକାର ସହିତ ମିଳାମିଶା କଥାବାର୍ତ୍ତା ଫଳରେ ଯଦି ସ୍ୱାଧୀନତା ଆଣିପାରନ୍ତି, ସେଥିରେ ମହାତ୍ମା ଗାନ୍ଧୀ ବାଧା ଦେବେ ନାହିଁ ବା ଅନ୍ତରାୟ ହେବେ ନାହିଁ ବୋଲି ଘୋଷଣା କରି ସାରିଥିଲେ । କିନ୍ତୁ ଭାରତ ଓ ପାକିସ୍ତାନ ଦୁଇଟି ଭିନ୍ନ ଦେଶ ହେବା ପ୍ରସ୍ତାବକୁ ସେ କୌଣସି ପ୍ରକାରେ ସ୍ୱୀକାର କରିପାରିନଥିଲେ । କ୍ୟାବିନେଟ ମିସନ୍ ସହ ୧୯୪୬ରେ ଆଲୋଚନାବେଳେ ମହାତ୍ମା ଗାନ୍ଧୀ ଏ ବିଷୟରେ ନିଜର ମନର କଥା ଖୋଲି କହିଥିଲେ । ସେଇଥିଲାଗି ଲର୍ଡ଼ ଓ୍ୱାଭେଲ ଇଂଲଣ୍ଡର ରାଜାଙ୍କ ପାଖକୁ ୧୯୪୬ ଜୁଲାଇ ୮ ତାରିଖରେ ଲେଖିଥିଲେ—
"That old menace Gandhi was the wrecker. I am afraid that further negotiations are likely to be even more difficult".

ସେ ଆହୁରି ପାହୁଣ୍ଡେ ଯାଇ ପୁଣି ଲେଖିଲେ—"The depressing thing is that one should have to handover the control over India to such small men : the mentality of most of them is that of the small lawyer and Bania. I sometimes inclined to cry, like Alice at the end of 'Alice in the Wonderland; "You are only a pack of cards after all". (Wavell Papers—Transfer of India, page 1090-1095.)

ଇଂରେଜ ସରକାର ଆଖିରେ ଗାନ୍ଧୀଜୀ ଥିଲେ ଅସଲ୍ ବିପଦ ଏବଂ ଆମର ଅନ୍ୟ ଜାତୀୟ ନେତାମାନଙ୍କୁ କିପରି ନ୍ୟୂନ ଦୃଷ୍ଟିରେ ଭାଇସରାୟ ଲର୍ଡ଼ ଓ୍ୱାଭେଲ ଦେଖୁଥିଲେ, ଏଥିରୁ ସ୍ପଷ୍ଟ ଜଣାପଡୁଛି । ମହାତ୍ମା ଗାନ୍ଧୀଙ୍କୁ ତାଚ୍ଛଲ୍ୟ କରି ଓ୍ୱାଭେଲ ତାଙ୍କ ଲିଖିତ ପତ୍ରାବଳୀରେ ବହୁ ସ୍ଥାନରେ ଲେଖିଛନ୍ତି । ମାତ୍ର ଲର୍ଡ଼ ମାଉଣ୍ଟବ୍ୟାଟେନ, ଯାହାଙ୍କ ଅମଳରେ ୧୯୪୭ରେ ଦେଶର ସ୍ୱାଧୀନତା ଘୋଷଣା ହେଲା, ସେ କହିଛନ୍ତି – "ମହାତ୍ମା ଗାନ୍ଧୀ କେବେହେଲେ

ଭାରତର ବିଭାଜନ ଚାହୁଁ ନଥିଲେ । ଜିନ୍ନା ଅବିଭକ୍ତ ଭାରତର ଶାସନ କରିବାକୁ ସେ ସମ୍ମତ ଥିଲେ । ଜିନ୍ନାଙ୍କ ମତ ପରିବର୍ତ୍ତନ ନିମନ୍ତେ ସେ ଯଥାସାଧ୍ୟ ଚେଷ୍ଟା କରିଥିଲେ । ମାତ୍ର ଜିନ୍ନା କିପେହେଲେ ଘୁଞ୍ଚିବାକୁ ପ୍ରସ୍ତୁତ ନଥିଲେ । ମହାତ୍ମା ଗାନ୍ଧୀ ଥିଲେ କୋଟି କୋଟି ଲୋକଙ୍କର ଦେବତା ସଦୃଶ । ମୁଁ ତାଙ୍କୁ ଭାରି ଶ୍ରଦ୍ଧା କରୁଥିଲି ।" ଏସବୁ ଦୃଢତା ସତ୍ତ୍ୱେ ଦେଶ ବିଭକ୍ତିକୁ ରୋକା ଯାଇ ପାରିଲା ନାହିଁ । ମହାତ୍ମା ଗାନ୍ଧୀ ଯଦି ମୂଳରୁ ବ୍ରିଟିଶ ସରକାର ସହ ଏପରି ମିଳାମିଶା କଥାବାର୍ତ୍ତା ଲାଗି କଂଗ୍ରେସ ନେତାମାନଙ୍କର ଆଗ୍ରହକୁ ପ୍ରୋତ୍ସାହନ ଦେଇ ନଥାନ୍ତେ, ତେବେ ଭାରତର ଭବିଷ୍ୟତ ଭିନ୍ନ ରୂପ ଧରିଥାଆନ୍ତା । ସୋସାଲିଷ୍ଟମାନେ ଏ ବିଷୟରେ ମନରେ କୌଣସି ଭରସା ରଖି ନ ଥିଲେ । ସେମାନେ କଥାବାର୍ତ୍ତା ଓ ଅନ୍ତର୍ବର୍ତ୍ତୀ ସରକାର ଆଦି ଗଠନର ବିରୋଧ କଲେ । ସରକାରୀ ଗଢା ଶାସନବିଧାୟକ ସଭାଦ୍ୱାରା ଦେଶର ସାର୍ବଭୌମ କ୍ଷମତା ହସ୍ତାନ୍ତର ହୋଇପାରେନା ବୋଲି ମୂଳରୁ ସବୁ ବର୍ଜ୍ଜନ କଲେ । ପୂର୍ଣ୍ଣ କ୍ଷମତା ଲୋକଙ୍କ ହାତକୁ ଆଣିବାକୁ ହେଲେ ଆଉ ଏକ ବିରାଟ ସଂଗ୍ରାମ ଲାଗି ଦେଶକୁ ପ୍ରସ୍ତୁତ କରିବା ନିମନ୍ତେ ସେମାନେ ଆହ୍ୱାନ ଦେଲେ । ସେମାନେ ଜାଣିଥିଲେ ଯେ କଂଗ୍ରେସ ନେତୃମଣ୍ଡଳୀ ଥକିଗଲେଣି । ତାଙ୍କ ମୁହଁରେ କ୍ଷମତାର ସ୍ୱାଦ ଲାଗିଗଲାଣି—ଏଣିକି କ୍ଷମତାପାଗଳ କଂଗ୍ରେସ ନେତୃମଣ୍ଡଳୀ ଆଉ କେବେ ସଂଗ୍ରାମ ଅଭିମୁଖୀ ହେବେ ନାହିଁ । କଂଗ୍ରେସ ପାର୍ଲିଆମେଣ୍ଟାରୀ ପ୍ରୋଗ୍ରାମ ନେଇ ରହିଗଲା । ସେଥିପ୍ରତି ମୂଳରୁ ସତର୍କ ରହିଥିଲେ, ପୁଣି ଏକ ସଂଗ୍ରାମ ଅନିବାର୍ଯ୍ୟ ଥିଲା । ଦେଶ ଏଥିଲାଗି ପ୍ରସ୍ତୁତ ନ ଥିଲା ବୋଲି କହିବା ଭୁଲ ହେବ । ନେତାମାନେ ପ୍ରସ୍ତୁତ ନଥିଲେ । ଏଠି ନେତାଜୀ ସୁଭାଷ ବୋଷଙ୍କ ବାଣୀ ସତ୍ୟ ପ୍ରମାଣିତ ହେଲା । ମହାତ୍ମା ଗାନ୍ଧୀଙ୍କୁ ମଧ୍ୟ ଏମାନେ ଅବଜ୍ଞା କରି ଚାଲିଲେ । ଏହାପରେ ତୁରନ୍ତ ସୋସାଲିଷ୍ଟମାନେ କଂଗ୍ରେସ ନ ଛାଡିଲେ ମଧ୍ୟ କଂଗ୍ରେସ ଦୃଷ୍ଟିକୋଣ ଓ ସୋସାଲିଷ୍ଟଙ୍କ ଦୃଷ୍ଟିଭଙ୍ଗୀ ଭିତରେ ବ୍ୟବଧାନ ସୃଷ୍ଟି ହୋଇଗଲା । କଂଗ୍ରେସ ଭିତରେ ସୋସାଲିଷ୍ଟଙ୍କ ଶକ୍ତି ଅତି ସୀମାବଦ୍ଧ ଥିଲା । କଂଗ୍ରେସର କୌଣସି ନୀତିକୁ କଂଗ୍ରେସ କମିଟିରେ ପକାଇ ବଦଳାଇ ଦେବା ସମ୍ଭବ ନଥିଲା । ମହାତ୍ମା ଗାନ୍ଧୀ ମଧ୍ୟ ଆଉ କଂଗ୍ରେସ ବା ସରକାରୀ କାର୍ଯ୍ୟରେ କିଛି ଆଗ୍ରହ ଦେଖାଇଲେ ନାହିଁ । ଦେଶରେ ଚାଲିଥିବା ସାଂପ୍ରଦାୟିକ ଦଙ୍ଗା ଓ ଅସନ୍ତୋଷକୁ ଦୂର କରିବା ନିମନ୍ତେ ଲାଗିପଡିଥିଲେ । ମହାତ୍ମା ଗାନ୍ଧୀଙ୍କର ଅଭାବ କଂଗ୍ରେସ ଭିତରେ ଅନୁଭୂତ ହେଲା—ସେହି ହିଁ ସବୁ ଗୋଷ୍ଠୀଙ୍କି ସମ୍ଭାଳି ରଖିଥିଲେ ଏବଂ ସୋସାଲିଷ୍ଟମାନେ ରାଜଶକ୍ତି ଉପରେ ନିର୍ଭର ନ କରି ଲୋକଶକ୍ତି ସଂଗଠନରେ ଜୋର୍ ଦେଉଥିବାରୁ ମହାତ୍ମା ଗାନ୍ଧୀ ସୋସାଲିଷ୍ଟଙ୍କୁ ତାଙ୍କର ନିକଟତମ ବୋଲି ବିଚାରକଲେ ।

### କଂଗ୍ରେସ ଓ ସୋସାଲିଷ୍ଟ ଦ୍ୱନ୍ଦ୍ୱ

ଏହି ବର୍ଷ ସ୍ଥାନେ ସ୍ଥାନେ କଂଗ୍ରେସ ଓ ସୋସାଲିଷ୍ଟପାର୍ଟି ଭିତରେ ଦ୍ୱନ୍ଦ୍ୱ ବୃଦ୍ଧି ପାଇଲା । ବିଭିନ୍ନ ଦେଶୀୟ ରାଜ୍ୟର ମିଶ୍ରଣ ଏବଂ କୃଷକ ଆନ୍ଦୋଳନ କାର୍ଯ୍ୟଯୋଗୁଁ

କଂଗ୍ରେସ ସହ ସଂଘର୍ଷ ଓ ମତଭେଦ ଘଟିଲା । ସୋସଲିଷ୍ଟମାନେ ଲୋକସଂଗଠନ ଯେତେ ବଢ଼ାଇଲେ ସେତେ କଂଗ୍ରେସ ଶାସିତ ରାଜ୍ୟ ମନ୍ତ୍ରୀମଣ୍ଡଳ ଗୁଡ଼ିକର ଚକ୍ଷୁଶୂଳ ହେଲେ । ସରକାର ନାନା ଅଡୁଆ ପରିସ୍ଥିତିରେ ପଡୁଥିଲେ । ଓଡ଼ିଶାରେ ନାନା ଅପବାଦ ଦେଇ ସୋସଲିଷ୍ଟ କର୍ମକର୍ତ୍ତାଙ୍କୁ କଂଗ୍ରେସରୁ ତଡ଼ିବା ନିମନ୍ତେ କେମିତି ଉଦ୍ୟମ ହୋଇଥିଲା, ତାହା ଆଗରୁ କୁହାଯାଇଛି । ଓଡ଼ିଶା ଅଧିକେ ଅନ୍ୟ ପ୍ରଦେଶମାନଙ୍କରେ ତଦନୁରୂପ ପରିସ୍ଥିତି ସୃଷ୍ଟିହେଲା । ସୋସଲିଷ୍ଟ ପାର୍ଟି କଂଗ୍ରେସର ରାଜନୀତିକ ନିଷ୍ପତ୍ତିରେ ସନ୍ତୁଷ୍ଟ ନଥିଲା । ତଥାପି ଏହା କଂଗ୍ରେସ ଭିତରେ ହିଁ ରହିଥିଲା ଏବଂ ସମସ୍ତେ କଂଗ୍ରେସ କର୍ମୀଭାବରେ କାର୍ଯ୍ୟ କରୁଥିଲେ । ଅବଶ୍ୟ ୧୯୪୭ ମସିହାରେ କାନପୁର ଅଧିବେଶନରେ କଂଗ୍ରେସର ପ୍ରାଥମିକ ସଦସ୍ୟ ନ ହୋଇ ସୋସଲିଷ୍ଟ ପାର୍ଟିରେ ଯୋଗଦେବାରେ ଆଉ ବାଧା ନଥିଲା । ତେଣୁ ଏଥିଭିତରେ ଯେଉଁମାନେ ଯୋଗଦେଉଥିଲେ, ସେମାନଙ୍କର କଂଗ୍ରେସ ପ୍ରତି ସେପରି ଆନ୍ତରିକତା ନ ରହିବାର କଥା । ସୋସଲିଷ୍ଟ ପାର୍ଟିର ନିଷ୍ପତ୍ତି ଅନୁସାରେ ସେମାନେ କାର୍ଯ୍ୟ କରୁଥିଲେ । ରାଜନୀତିକ ନିଷ୍ପତ୍ତିରେ ସୋସଲିଷ୍ଟ ପାର୍ଟି ପ୍ରକାଶ କଲା ଯେ ଯେପରିଭାବରେ କ୍ଷମତା ହସ୍ତାନ୍ତରର ପ୍ରସ୍ତାବ କରାଯାଇଛି, ତହିଁରେ ଦେଶରେ ଦେଶୀୟ ରାଜ୍ୟଗୁଡ଼ିକ ସ୍ୱତନ୍ତ୍ର ସାର୍ବଭୌମ ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟ ହୋଇ ରହିଯିବ । ବ୍ରିଟିଶ ସରକାର କଳମୁଣି ଦ୍ୱାରା ଦେଶର ଆଭ୍ୟନ୍ତରୀଣ ପରିସ୍ଥିତିକୁ ଜଟିଳ କରି ପକାଇବେ । ତେଣୁ ଦାବୀ ହେଲା ଯେ—ଯେଉଁ ଅନ୍ତର୍ବର୍ତ୍ତୀ ସରକାର କେନ୍ଦ୍ରରେ ସ୍ଥାପିତ ହେଲା, ତାକୁ ହିଁ ସମସ୍ତ କ୍ଷମତା—ଭାରତର ସବୁ ଅଞ୍ଚଳର ଏବଂ ସମସ୍ତ ଅଧିବାସୀଙ୍କର—ଦିଆଯାଉ ଏବଂ ଯେତେ ବ୍ରିଟିଶ ସୈନ୍ୟ ରହିଥିଲେ ସମସ୍ତଙ୍କୁ ଦେଶରୁ ବିଦାୟ ଦିଆଯାଉ । ବ୍ରିଟିଶ ସରକାରର ପୂର୍ବ ଘୋଷଣା ଅନୁସାରେ ୧୯୪୮ ଜୁନ୍ ସୁଦ୍ଧା ଏଭଳି କ୍ଷମତା ହସ୍ତାନ୍ତର ହେଉ, ଯେଉଁଥିରେ ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସନର କୌଣସି ସତ୍ତା ଦେଶରେ ନ ଥିବ । ଏଥିନିମନ୍ତେ ଦେଶୀୟ ରାଜ୍ୟ ଓ ବ୍ରିଟିଶ ଭାରତ ଏପରି ଭେଦକୁ ସ୍ୱୀକାର ନ କରି ଅନ୍ତର୍ବର୍ତ୍ତୀ ସରକାରର ସାରା ଦେଶରେ କର୍ତ୍ତୃତ୍ୱ ପ୍ରସାର ଲାଗି ଏବଂ ଲୋକଙ୍କ ଭିତରେ ଏକତା ପ୍ରତିଷ୍ଠା ନିମନ୍ତେ ସୋସଲିଷ୍ଟ ପାର୍ଟିର ରାଜନୀତିକ ଆନ୍ଦୋଳନ ତେଜୀୟାନ୍ ହେଲା । ଯେନ ତେନ ପ୍ରକାରେଣ ଏବଂ ଯେତିକି ମିଳିଛି ସେତିକି ଜାବୁଡ଼ି ରଖି ଶାସନ କରିବା ନିମନ୍ତେ କଂଗ୍ରେସ ନେତାମାନେ ଅଧୀର ହେଲେ ଏବଂ ସଂଘର୍ଷମୂଳକ ପରିସ୍ଥିତିର ସେମାନେ ବିରୋଧୀ ହେଲେ । କେତେକ ସ୍ଥଳରେ ହୁଏତ ବ୍ୟକ୍ତିଗତ ବିବାଦ ଥିଲା । ମାତ୍ର ମୁଖ୍ୟତଃ ଏହି ରାଜନୈତିକ ମତଭେଦହିଁ ଦ୍ୱନ୍ଦ୍ୱ ସୃଷ୍ଟିର ଅସଲ କାରଣ ହେଲା ।

## କଂଗ୍ରେସର ସ୍ୱରୂପ ବଦଳିଲା

କଂଗ୍ରେସ ଏକ ଜାତୀୟ ଅନୁଷ୍ଠାନ ରୂପେ କାର୍ଯ୍ୟ କରୁଥିଲା ଏବଂ ବ୍ରିଟିଶ ଶାସନ ଲୋପ କରି ସ୍ୱରାଜ୍ୟ ସ୍ଥାପନା ଏହାର ମୁଖ୍ୟ ଲକ୍ଷ୍ୟ ଥିଲା । ସୋସଲିଷ୍ଟମାନେ ବିଶ୍ୱାସ କରୁଥିଲେ

ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସନକୁ ହଟାଇବାକୁ ହେଲେ ଏକ ଜାତୀୟ ଶକ୍ତି ଠିଆହେବା ଉଚିତ । କଂଗ୍ରେସ ସେହିଭଳି ଜାତୀୟ ଶକ୍ତି ହୋଇଥିବାରୁ ସୋସଲିଷ୍ଟମାନେ କଂଗ୍ରେସରେ ରହିଥିଲେ ଏବଂ ଜାତୀୟ ସଂଗ୍ରାମରେ ପୁରା ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଭାରତର ଶେଷ ସ୍ୱାଧୀନତା ଲଢ଼େଇ ୧୯୪୨ ମସିହାର ଭାରତ ଛାଡ଼ ଆନ୍ଦୋଳନରେ ଉଲ୍ଲେଖଯୋଗ୍ୟ ଅଂଶ ଗ୍ରହଣ କରି ଜାତୀୟ ବୀର ଭାବରେ ଦେଶରେ ପୂଜା ପାଇଲେ । ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ପରି କେତେକ ସୋସଲିଷ୍ଟ ନେତା କଂଗ୍ରେସରେ ମହାତ୍ମା ଗାନ୍ଧୀଙ୍କର ଆଗମନବେଳୁ ସେଥିସହ ସଂପୃକ୍ତ ହୋଇ କାର୍ଯ୍ୟ କରୁଥିଲେ । ୧୯୪୭ରେ ଜେଲରୁ ମୁକ୍ତିଲାଭକରି ଅଗଷ୍ଟ ବୀରମାନେ କଂଗ୍ରେସକୁ ଅଧିକ ଶକ୍ତିଶାଳୀ କରିବା ନିମନ୍ତେ ଇଚ୍ଛା ପ୍ରକାଶ କରିଥିଲେ । ସ୍ୱାଧୀନତା ପ୍ରାପ୍ତି ପରେ କିନ୍ତୁ ଅବସ୍ଥା ବଦଳିଗଲା । ଇଂରେଜ ସମୟରେ କଂଗ୍ରେସହିଁ ଜନସାଧାରଣଙ୍କର ଆଶା ଭରସାର ସ୍ଥଳ ହୋଇ ରହିଥିଲା ଏବଂ ଦେଶଲୋକଙ୍କ ଦାବୀ ହାସଲ ଲାଗି ପ୍ରତ୍ୟକ୍ଷ ଭାବରେ ସଂପୃକ୍ତ ହୋଇଥିଲା । ମାତ୍ର ଏବେ ଏହା ସରକାର ସହିତ ସଂପୂର୍ଣ୍ଣରୂପେ ସଂପୃକ୍ତ ହୋଇଗଲା ଏବଂ ଲୋକଙ୍କ ସ୍ୱାର୍ଥରକ୍ଷା ନୁହେଁ, ସରକାର ପକ୍ଷ ସମର୍ଥନ ହିଁ ଏହାର ପ୍ରଧାନ କାର୍ଯ୍ୟ ହେଲା । ସରକାରର ଭୁଲତ୍ରୁଟି ବି କଂଗ୍ରେସ ଦେଖିବାକୁ ପ୍ରସ୍ତୁତ ହେଲା ନାହିଁ । ସରକାରୀ ତ୍ରୁଟି ଦେଖାଇବାରୁ ସୋସଲିଷ୍ଟମାନଙ୍କ ପ୍ରତି କଂଗ୍ରେସ ମନ୍ତ୍ରୀମଣ୍ଡଳ ଗୁଡ଼ିକ ଓ କଂଗ୍ରେସ ନେତୃବୃନ୍ଦ ବୈରିତା ଦେଖାଇଲେ । ଏହାସତ୍ତ୍ୱେ ବି କଂଗ୍ରେସ ଭିତରେ ରହି ଏହାକୁ ଏକ ଲଢ଼ୁଆ ସଂଗଠନ କରିବାର ପ୍ରୟାସ ସୋସଲିଷ୍ଟ ଛାଡ଼ିନଥିଲେ । ୧୯୪୭ରେ ଦେଶର ବିଭାଜନ ପରେ ହୋଇଥିବା ନିଖିଳ ଭାରତ କଂଗ୍ରେସ କମିଟି ବୈଠକରେ କଂଗ୍ରେସର ଲକ୍ଷ୍ୟ ଗଣତାନ୍ତ୍ରିକ ସମାଜବାଦ ପ୍ରତିଷ୍ଠା ବୋଲି ଘୋଷଣା କରିବା ନିମନ୍ତେ ସୋସଲିଷ୍ଟମାନେ ଦାବୀ କରିଥିଲେ; ତାହା ଅଗ୍ରାହ୍ୟ ହେଲା । ଉପରନ୍ତୁ ମହାତ୍ମା ଗାନ୍ଧୀଙ୍କ ମୃତ୍ୟୁର ୨୨ ଦିନ ପରେ ଦିଲ୍ଲୀରେ ନିଖିଳ ଭାରତ କଂଗ୍ରେସ କମିଟିର ଏକ ବୈଠକ ବସି ତହିଁରେ କଂଗ୍ରେସ ଭିତରେ ଆଉ କୌଣସି ସଂଗଠନ ବା ନିର୍ଦ୍ଦିଷ୍ଟ ଗୋଷ୍ଠୀ ଗଠନ ନିଷିଦ୍ଧ କରିଦିଆଗଲା । କଂଗ୍ରେସର ଜାତୀୟ ସ୍ୱରୂପ ବଦଳି ଏହା ଏକ ପାର୍ଟି ବା ଦଳରେ ପରିଣତ ହେଲା । ଏହା ଯେତେବେଳେ ଗୋଟିଏ ଦଳ ହୋଇଗଲା, ଏହାର ନାମ ଓ ପତାକାରେ ବି ପରିବର୍ତ୍ତନ ହେବା ଉଚିତ ଥିଲା । ମହାତ୍ମା ଗାନ୍ଧୀ ମୃତ୍ୟୁର ଠିକ୍ ପ୍ରାକ୍କାଳରେ ଏହାକୁ ଭାଙ୍ଗିଦେଇ ଲୋକସେବକ ସଂଘ ସ୍ଥାପନାର ପରାମର୍ଶ ଦେଇଥିଲେ । କିନ୍ତୁ କଂଗ୍ରେସ ଲୋକେ ଏହା ମାନିଲେ ନାହିଁ । କଂଗ୍ରେସ ଶାସନ ଗ୍ରହଣ କରିବା ପୂର୍ବରୁ ମହାତ୍ମା ଗାନ୍ଧୀଙ୍କୁ ଛାଡ଼ିଥିଲୁ—ଏବେ ତାଙ୍କ କଥାକୁ ଅବଜ୍ଞା କଲୁ ।

ଏହା ହେଲା ପରେ ସୋସଲିଷ୍ଟଙ୍କ ପକ୍ଷରେ ଆଉ କିଛି ଗତି ନ ଥିଲା । ସେମାନେ ସ୍ୱତନ୍ତ୍ର ନିଜର ଗୋଷ୍ଠୀର ବିଲୟ କରି କଂଗ୍ରେସ ଦଳରେ ରହିଯାଇଥାଆନ୍ତେ; ନଚେତ୍ ଶୃଙ୍ଖଳାଭଙ୍ଗ ଦୋଷରେ ବହିଷ୍କୃତ ହୋଇଥାଆନ୍ତେ । ଏପରି ପରିସ୍ଥିତି ବାଧ୍ୟ କରିବାରୁ ଏକ ଆଦର୍ଶ ଓ ଲକ୍ଷ୍ୟ ଲାଗି ଜୀବନଯାକ କଂଗ୍ରେସରେ ରହି କାର୍ଯ୍ୟ କରିଥିବା ସୋସଲିଷ୍ଟମାନଙ୍କୁ କଂଗ୍ରେସ ତ୍ୟାଗ କରି ପୁରୁଣା ସାଥୀଙ୍କ ଛାଡ଼ି ଆସିବାକୁ ପଡ଼ିଲା ।

## କାହିଁକି କଂଗ୍ରେସ ଛାଡ଼ିଲୁ ?

ଆଚାର୍ଯ୍ୟ ନରେନ୍ଦ୍ର ଦେବ କଂଗ୍ରେସ ତ୍ୟାଗ କରିବାର ଯଥାର୍ଥତା ବୁଝାଇ ୧୯୪୮ ନାସିକ ସମ୍ମିଳନୀରେ କହିଲେ, "ମୁଁ ଏ ପର୍ଯ୍ୟନ୍ତ କହିଆସିଥିଲି ଯେ ଆମର କଂଗ୍ରେସ ତ୍ୟାଗ କରିବା ଉଚିତ ନୁହେଁ । ଆଜି କହୁଛି ଆମେ ସମସ୍ତେ କଂଗ୍ରେସ ଛାଡ଼ି ବାହାରକୁ ଚାଲି ଆସିବା ।

କଂଗ୍ରେସ ଛାଡ଼ିବା କିଛି ଆନନ୍ଦର କଥା ନୁହେଁ । ଗତ ୩୦ ବର୍ଷ ହେଲା ମୁଁ ଜଣେ କଂଗ୍ରେସ କର୍ମୀ ହିସାବରେ ମୋର ଏତେ ବର୍ଷର ସଂପର୍କ ତୁଟାଇ ମୁଁ ଆସୁଛି । ମୋର ବହୁ ଉତ୍ତମ ବନ୍ଧୁଙ୍କୁ ବି ଛାଡ଼ିବାକୁ ପଡ଼ୁଛି । ରାଜନୀତି ଏକ ବିଚିତ୍ର ଖେଳ । ରାଜନୀତିରେ ବନ୍ଧୁ, ଶତ୍ରୁ ପାଲଟନ୍ତି । ୧୯୩୪ ମସିହାରୁ ମୁଁ କହିଆସୁଛି କଂଗ୍ରେସ କେବେ ସମାଜବାଦ ପ୍ରାପ୍ତିର ଅସ୍ତ୍ର ହୋଇ ପାରିବ ନାହିଁ ।

ଆମେ କିଛି କଂଗ୍ରେସ ଛାଡ଼ିବାଲାଗି ତତ୍ପର ହେଉ ନଥିଲୁ । କିନ୍ତୁ କଂଗ୍ରେସ ଆମକୁ ବାହାରିଯିବା ଲାଗି ବାଧ୍ୟକଲା । ଏବେ କଂଗ୍ରେସର ନିୟମାବଳୀରେ ଯେ ପରିବର୍ତ୍ତନ କରାଗଲା, ସେଥିରେ ଆମ ପକ୍ଷରେ ଅନ୍ୟ ଉପାୟ ନ ଥିଲା । କଂଗ୍ରେସ ଭିତରେ ଆଉ ଗଣତାନ୍ତ୍ରିକ ପଦ୍ଧତି ରହିଲା ନାହିଁ । ଏପରି ସଂଗଠନ ଭିତରେ ରହିବା ଅସମ୍ଭବ ହୋଇ ପଡ଼ିଲାଣି ।

କଂଗ୍ରେସ ଗୋଟିଏ ଦ୍ୱାରରେ ସୋସଲିଷ୍ଟଙ୍କୁ ଚାଲିଆସିବାକୁ ବାଧ୍ୟ କରୁଛି ଏବଂ ଅନ୍ୟ ଦ୍ୱାରରେ ପୁଞ୍ଜିବାଦୀ ଓ ସଂପ୍ରଦାୟବାଦୀମାନଙ୍କୁ ଭିତରେ ପ୍ରବେଶ କରାଉଛି । କେବଳ ଭଗବାନ ହିଁ ଏଭଳି କଂଗ୍ରେସକୁ ବଞ୍ଚାଇପାରିବେ ।

ଆମେ କିଛି ଭଗ୍ନ ହୃଦୟରେ କଂଗ୍ରେସ ତ୍ୟାଗ କରୁନାହୁଁ । ଆମର ଆଦର୍ଶ ଭିନ୍ନ । ବର୍ତ୍ତମାନ କଂଗ୍ରେସ ସହ ଆଦର୍ଶଗତ ବିଭିନ୍ନତା ଉପୁଜିଲାଣି ।

କଂଗ୍ରେସ ସରକାର କ୍ରମେ ଏକଛତ୍ରବାଦୀ ହେଲେଣି, ତାହାର ବହୁ ସୂଚନା ମିଳିଲାଣି । କଂଗ୍ରେସ ଭିତରେ ଅଧିନାୟକବାଦୀ ମନୋବୃତ୍ତି ପଶିଲାଣି । ଦେଶରେ ଏକ ଗଣତାନ୍ତ୍ରିକ, ମୁକ୍ତ, ନିର୍ଭୀକ ଏବଂ ସ୍ପଷ୍ଟ ବିରୋଧୀ ଦଳର ଆବଶ୍ୟକତା ପଡ଼ିଲାଣି । କେବଳ ସୋସଲିଷ୍ଟ ପାର୍ଟି ହିଁ ଏହି ଦାବୀକୁ ପୂରଣ କରିପାରେ । ଏହା ଏକ ଐତିହାସିକ ଚ୍ୟାଲେଞ୍ଜ ଏବଂ ଆମେ ଏହା ଗ୍ରହଣ କରିବା ।"

## ନାସିକ ସମ୍ମିଳନୀ

ମହାରାଷ୍ଟ୍ର ପ୍ରଦେଶର ନାସିକ୍‌ଠାରେ ହୋଇଥିବା ସୋସଲିଷ୍ଟ ପାର୍ଟିର ଷଷ୍ଠ ଅଧିବେଶନରେ ରାଜନୀତିକ ପରିସ୍ଥିତି ସମ୍ବନ୍ଧରେ ପ୍ରସ୍ତାବ ଆଗତ କରି ଆଚାର୍ଯ୍ୟ ନରେନ୍ଦ୍ର ଦେବ ଉପରୋକ୍ତ ମତ ଦେଇଥିଲେ । ସୋସଲିଷ୍ଟ ପାର୍ଟି ଇତିହାସରେ ନାସିକ ସମ୍ମିଳନୀ ସର୍ବାପେକ୍ଷା ଗୁରୁତ୍ୱ-

ପୂର୍ଣ୍ଣ ଓ ଐତିହାସିକ । କାନପୁରଠାରେ କେବଳ ନାମରୁ "କଂଗ୍ରେସ" ଶବ୍ଦ ହଟାଇ ଦିଆଯାଇଥିଲା; ମାତ୍ର ପାର୍ଟି ସ୍ୱାଧୀନ ପାର୍ଟି ହୋଇନଥିଲା—କଂଗ୍ରେସ ଭିତରେ ହିଁ ରହିଥିଲା । ୧୯୪୭ ମସିହାରେ ଯେଉଁସବୁ ବିରାଟ ରାଜନୀତିକ ପରିବର୍ତ୍ତନ ଘଟିଲା, ତାହାର ବିଚାର ଲାଗି ସାତଥର ଜାତୀୟ କାର୍ଯ୍ୟ ନିର୍ବାହିକା ସମିତିର ବୈଠକ ହୋଇଥିଲା । କଂଗ୍ରେସ ସହିତ ସହଯୋଗ ବା ଅସହଯୋଗ, କଂଗ୍ରେସ ତ୍ୟାଗ କରିବା କି ନାହିଁ, ଏହି ପ୍ରଶ୍ନ ବାରମ୍ବାର ଆଲୋଚିତ ହୋଇଥିଲା । ଶେଷକୁ ନାଗପୁରଠାରେ ୨୯-୮-୪୭ରେ ଜେନେରାଲ୍ କାଉନ୍‌ସିଲର ମଧ୍ୟ ବୈଠକ ହୋଇଥିଲା । ମାତ୍ର କଂଗ୍ରେସ ତ୍ୟାଗ କରିବା ସମ୍ବନ୍ଧରେ ନିଷ୍ପତ୍ତି ନିଆଯାଇନଥିଲା । ନାସିକଠାରେ ଯେଉଁ ବାର୍ଷିକ ସମ୍ମିଳନୀ ୧୯୪୮ ମସିହାରେ ମାର୍ଚ୍ଚ ୧୯ରୁ ୨୧ ପର୍ଯ୍ୟନ୍ତ ହୋଇଥିଲା, ସେଠାରେ କଂଗ୍ରେସ ତ୍ୟାଗ କରିବାର ସିଦ୍ଧାନ୍ତ ନିଆଗଲା । ଏଥିରେ ପୁରୁଷୋତ୍ତମ ତ୍ରିକମ୍ ଦାସ ସଭାପତି ହୋଇଥିଲେ । ଏଥିରେ ୨୬୦ ଜଣ ଡେଲିଗେଟ୍ ଉପସ୍ଥିତ ଥିଲେ ଏବଂ ୧୦୧୬ ସଭ୍ୟ ଦର୍ଶକ ରୂପେ ଯୋଗଦେଇଥିଲେ । ସେତେବେଳକୁ ସୋସଲିଷ୍ଟ ପାର୍ଟିର ସଭ୍ୟ ସଂଖ୍ୟା କମ୍ ଥିଲା । ସଭ୍ୟ ହେବାକୁ ହେଲେ ଦୁଇବର୍ଷ କାଳ ଅସ୍ଥାୟୀ ସଭ୍ୟ ରୂପେ ରହିବାକୁ ପଡ଼ିବ ଏବଂ ପ୍ରତିଦିନ ପାର୍ଟି ଲାଗି ଅନ୍ତତଃ ଦୁଇଘଣ୍ଟା କାର୍ଯ୍ୟ କରିବାର ପ୍ରମାଣପତ୍ର ସ୍ଥାନୀୟ କମିଟିରୁ ଆଣିଲେ କେନ୍ଦ୍ର କମିଟି ପ୍ରାଥମିକ ସଭ୍ୟରୂପେ ଗ୍ରହଣ କରୁଥିଲେ । ତେଣୁ ସଭ୍ୟ ହେବା ଏତେ ସହଜ ନଥିଲା । କଂଗ୍ରେସ, ସି.ପି. ଆଇ, ଆର. ଏସ୍. ଏସ୍, ହିନ୍ଦୁ ମହାସଭା, ମୁସଲିମ ଲିଗ୍, ଅକାଳୀ ଦଳ ଭଳି ୧୦ଟି ଅନୁଷ୍ଠାନର ସଭ୍ୟ ଏବଂ ଉକ୍ତ ଦଳ ଲାଗି କାର୍ଯ୍ୟ କରୁଥିବା ବ୍ୟକ୍ତିଙ୍କୁ ସୋସଲିଷ୍ଟ ପାର୍ଟିରେ ଗ୍ରହଣ କରିବା ନିଷେଧ କରିଦିଆଯାଇଥିଲା । ୧୯୪୭ ଶେଷକୁ ଏବଂ ନାସିକରେ ଯୋଗ ଦେବାବେଳକୁ ଏହି ନୀତି ଅନୁସରଣ କରି ଓଡ଼ିଶାରେ ସଭ୍ୟ ସଂଖ୍ୟା ଥିଲା ୪୧ ଏବଂ ପ୍ରବେସନର ସଭ୍ୟଙ୍କ ସଂଖ୍ୟା ଥିଲା ୬୫ । ଏହି କାରଣ ଯୋଗୁଁ ସୋସଲିଷ୍ଟ ପାର୍ଟିର ଗଠନ ଓ ଆଭିମୁଖ୍ୟ ପରିଷ୍କାର ହୋଇଥିଲା । କଂଗ୍ରେସ ପରି ରକ୍ଷଣଶୀଳ ଓ ପ୍ରଚଳିତ ସମାଜକୁ ବଜାୟ ରଖିବା ଦଳ, କମ୍ୟୁନିଷ୍ଟ ଏକଛତ୍ରବାଦରେ ବିଶ୍ୱାସ କରୁଥିବା ସି· ପି· ଆଇ ଏବଂ ସାଂପ୍ରଦାୟିକ ମନୋଭାବାପନ୍ନ ଆର· ଏସ୍. ଏସ୍, ମୁସଲିମ ଲିଗ୍, ହିନ୍ଦୁ ମହାସଭା ଆଦିର କୌଣସି ସ୍ଥାନ ସୋସଲିଷ୍ଟ ପାର୍ଟିରେ ରହିଲା ନାହିଁ । ଏହାର ଗଣତାନ୍ତ୍ରିକ, ଧର୍ମନିରପେକ୍ଷ ଓ ସମାଜବାଦୀ ସ୍ୱରୂପ ନିର୍ଣ୍ଣିତ ହୋଇଗଲା । ନୂତନ ସ୍ୱାଧୀନ ସମାଜବାଦୀ ଦଳ ହିସାବରେ ଏହାର ପୁନର୍ଜନ୍ମ ହେଲା । ନୂତନ ନିୟମାବଳୀ ପ୍ରଣୟନ ହେଲା ଏବଂ ନୂତନ ପତାକା ମଧ୍ୟ ଗୃହୀତ ହେଲା ।

## ନୂତନ ପାର୍ଟିର ଆଭିମୁଖ୍ୟ

ନୂତନ ପାର୍ଟିର ଜନ୍ମହେଲା । ମାତ୍ର ଏହା କଂଗ୍ରେସ ଓ କମ୍ୟୁନିଷ୍ଟ ପାର୍ଟିଠାରୁ କେଉଁ ଭାବରେ ଭିନ୍ନ – ଏହି ପ୍ରଶ୍ନ ବହୁକାଳ ଲୋକମନକୁ ଆନ୍ଦୋଳିତ କରୁଥିଲା । ଆମେମାନେ ସବୁ ଏତେ କାଳ କଂଗ୍ରେସରେ କାର୍ଯ୍ୟ କରିଥିଲୁ । ଲୋକେ ଆମକୁ କଂଗ୍ରେସ ନେତା ହିସାବରେ ଜାଣିଥିଲେ । କଂଗ୍ରେସଠାରୁ ଆମେ ଭିନ୍ନ ହେଲେ ସୁଦ୍ଧା ବହୁକାଳ ଲାଗିଗଲା ଲୋକଙ୍କ

ମନରେ କଂଗ୍ରେସ ସହ ଆଉ ସମ୍ପର୍କ ନାହିଁ ବୋଲି ବୁଝାଇବାକୁ । ମତେ ତ ଆମ ଅଞ୍ଚଳରେ ମୁଁ ପ୍ରତିଷ୍ଠିତ ସୋସଲିଷ୍ଟ ନେତା ହେବା ପରେ ବୁଢ଼ାମାନେ ଶ୍ରଦ୍ଧା ଓ ପରିହାସରେ କହୁଥିଲେ—'ଏ ଜଣେ ଚମ୍ପୁକୁଟା କଂଗ୍ରେସବାଲା । କଂଗ୍ରେସରେ ଯେତେବେଳେ ଧାନ କୁଟି ଗୁଣ୍ଡ ବାହାରିଲା, ସେତେବେଳକୁ କଂଗ୍ରେସ ଗୁଣ୍ଡ଼ିଲା । କଂଗ୍ରେସ ଚମ୍ପୁ କୁଟୁଥିବା ପର୍ଯ୍ୟନ୍ତ ସେଥିରେ ଥିଲା ।"

ସେହିପରି କମ୍ୟୁନିଷ୍ଟଙ୍କଠାରୁ ସୋସଲିଷ୍ଟମାନେ କିପରି ଫରକ ବା କମ୍ୟୁନିଜମ୍ ଓ ଗଣତାନ୍ତ୍ରିକ ସମାଜବାଦ ଭିତରେ ବାସ୍ତବିକ ସିଦ୍ଧାନ୍ତ ଓ କର୍ମପ୍ରଣାଳୀରେ କିଭଳି ପ୍ରଭେଦ ତାହା ମଧ୍ୟ ପରିଷ୍କାର କରିବାର ଆବଶ୍ୟକତା ପଡ଼ିଲା । ନାସିକ ସମ୍ମିଳନୀରେ ଗୃହୀତ ପ୍ରସ୍ତାବ ମାନଙ୍କରେ ଏବଂ ବିଭିନ୍ନ ନେତାଙ୍କ ଭାଷଣରେ ତାହା ପରିଷ୍କାର କରିଦିଆଯାଇଥିଲା । ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ଭାଷଣର ଯେଉଁ କିୟଦଂଶ ପୂର୍ବରୁ ଦିଆଯାଇଛି ସେଥିରୁ ଏହା ସ୍ପଷ୍ଟ ।

## ସୋସଲିଷ୍ଟ ପାର୍ଟି ଓ କଂଗ୍ରେସ

ଦେଶର ବିଭିନ୍ନ ସମସ୍ୟା ଓ ଆନ୍ତର୍ଜାତିକ ପରିସ୍ଥିତି ସମ୍ବନ୍ଧରେ ନୂତନ ପାର୍ଟିର ଏହି ସମ୍ମିଳନୀରେ କେତେକ ସିଦ୍ଧାନ୍ତ ନିଆଗଲା । ତହିଁରୁ ଗୋଟିଏ ନିଷ୍ପତ୍ତି ହେଲା—"କଂଗ୍ରେସ ତ୍ୟାଗ ।" କଂଗ୍ରେସ ଆଉ ଜାତୀୟ ଫ୍ରଣ୍ଟ ରୂପେ କାର୍ଯ୍ୟ କରୁନାହିଁ ଏବଂ ଏକ ଦଳରେ ପରିଣତ ହୋଇଗଲାଣି—ନିୟମାବଳୀ ପରିବର୍ତ୍ତନ କରିଗଲାଣି ତେଣୁ ସୋସଲିଷ୍ଟ ପାର୍ଟି ଡ଼ାକରି ଦେଲା ଯେ ଏହାର ସଭ୍ୟମାନେ କଂଗ୍ରେସ ତ୍ୟାଗ କରି ଆସନ୍ତୁ ।

ଏହି ବିଷୟରେ ଅମର ମନୋଭାବ ସ୍ପଷ୍ଟ କରି ଜୟପ୍ରକାଶ ନାରାୟଣ କହିଲେ—'ଗାନ୍ଧୀଜୀ ବଞ୍ଚିଥିବାବେଳେ ଲୋକଙ୍କ ସ୍ୱାଧୀନତା ଓ ନାଗରିକ ସ୍ୱାଧୀନତା ରକ୍ଷାର ଏକ ଭରସା ଥିଲା । ତାଙ୍କର ମୃତ୍ୟୁ ପରେ ଏକଛତ୍ରବାଦ ଓ ଅଧିନାୟକବାଦ ପ୍ରବୃତ୍ତିର ବିପଦ ବଢ଼ିଗଲା । ଦେଶରେ କୌଣସି ବିରୋଧୀ ଦଳ ନ ରହିଲେ ଏହି ବିପଦ ଆହୁରି ଘନେଇ ଆସିବ । ସେପରି ବିରୋଧୀ ଦଳ ଏପରି ହେବା ଉଚିତ ଯାହାର ଦେଶପ୍ରୀତି ଓ ଗଣତନ୍ତ୍ରରେ ପୂର୍ଣ୍ଣ ବିଶ୍ୱାସ ରହିଥିବ ।'

ମୋଟ ଉପରେ ଦୁଇଟି ଉଦ୍ଦେଶ୍ୟ ଏଥିରେ ପରିସ୍ଫୁଟ ହେଲା । କଂଗ୍ରେସରେ ନ ରହି ଏକ ସ୍ୱାଧୀନ ଦଳରେ ପରିଣତ ହେବା ଏବଂ ଦ୍ୱିତୀୟରେ ଏକ ଗଣତାନ୍ତ୍ରିକ ବିରୋଧୀ ଦଳ ରୂପେ କାର୍ଯ୍ୟ କରିବା । ନାସିକ ସମ୍ମିଳନୀରେ "କଂଗ୍ରେସ ଓ ସୋସଲିଷ୍ଟ ପାର୍ଟି" ନାମକ ଯେଉଁ ପ୍ରସ୍ତାବ ପାସ ହୋଇଥିଲା, ସେଥିରେ ବିଷୟଟି ଆହୁରି ସ୍ପଷ୍ଟ କରି କୁହାଗଲା—"କଂଗ୍ରେସ ନେତାମାନେ କଂଗ୍ରେସ ସଂଗଠନକୁ ନିଜ ହାତମୁଠାରେ ରଖିବା ପରି ଏକ ଦଳ କରିବାକୁ ଚାହାନ୍ତି । କଂଗ୍ରେସ ସଂଗଠନର ଇତିହାସରେ ପ୍ରଥମ ଥର ଲାଗି ନୂତନ ନିୟମାବଳୀ କରାଯାଇ ତହିଁରେ ସଂଗଠିତ ଗୋଷ୍ଠୀ କାର୍ଯ୍ୟ କରିବା ଲାଗି ବାରଣ କରି-

ଦିଆଗଲା । ଏପରି ଦଳସ୍ୱରୂପ ଗ୍ରହଣ କଲାପରେ ଏହା ଆଉ ଜାତୀୟ ବା ବହୁ ଶ୍ରେଣୀ ସମ୍ପ୍ରଦାୟର ସଂଗଠନ ହୋଇ ରହିଲା ନାହିଁ—ଏହା ଏକ ଶ୍ରେଣୀର ବା ସମ୍ପ୍ରଦାୟର ଦଳ ହୋଇ ରହିଲା । କଂଗ୍ରେସ ଆଗରୁ ସବୁଶ୍ରେଣୀର ସଂଗଠନ ହୋଇ ରହିଥିବାରୁ ଶ୍ରମିକଶ୍ରେଣୀର ସଂଗଠନ ରୂପ ନେଇନଥିଲା । ତେଣୁ ନୂତନ ଘଟ ପରିବର୍ତ୍ତନ ପରେ ଆଉ ଏଥିରେ ସୋସାଲିଷ୍ଟମାନେ ରହିପାରନ୍ତେ ନାହିଁ—ଏତେ କାଳର ସମ୍ପର୍କ ଏତଦ୍ଦ୍ୱାରା ଛିନ୍ନହେଲା । ଯେତେ ସୋସିଆଲିଷ୍ଟ କଂଗ୍ରେସରେ ଥିଲେ ତାଙ୍କୁ ଆହ୍ୱାନ କରାଗଲା କଂଗ୍ରେସ ଛାଡ଼ିଦେବା ନିମନ୍ତେ ।"

ଏହି ନିଷ୍ପତ୍ତି ଯୋଗୁଁ କେବଳ କଂଗ୍ରେସ ସଭ୍ୟପଦ ନୁହେଁ, କଂଗ୍ରେସ ପ୍ରାର୍ଥୀରୂପେ ଯେଉଁମାନେ ବିଧାନସଭା ଓ ସ୍ୱାୟତ୍ତଶାସନ ଆଦିରେ ସଭ୍ୟ ଥିଲେ, ସେମାନେ ମଧ୍ୟ ଇସ୍ତଫା ଦେଲେ । ସୋସଲିଷ୍ଟପାର୍ଟି ଏକ ନୈତିକତା ଓ ମୂଲ୍ୟବୋଧ ରକ୍ଷା କଲା । କଂଗ୍ରେସ ଅନୁଷ୍ଠାନ ଛାଡ଼ିବା ପରେ ଆଉ ସେ ସଂଗଠନ ଜରିଆରେ ନିର୍ବାଚିତ ପଦବୀରେ ରହିବା ଠିକ୍ ନୁହେଁ । ଏହା ରାଜନୀତିରେ ଏକ ସୁସ୍ଥ ପରମ୍ପରା ରକ୍ଷା । ସାଧାରଣତଃ ପଦପଦବୀ ଲାଗି ଲୋକେ ବ୍ୟାକୁଳ ହେଉଥିଲେ । ପଦବୀ ଛାଡ଼ିବା ଲାଗି କୌଣସି ଆଇନଗତ ପ୍ରତିବନ୍ଧକ ନ ଥିଲା । ଏବେ ତ ଦଳବଦଳ ଗୋଟାଏ ପ୍ରହସନରେ ପରିଣତ ହେଲାଣି । ସମସ୍ତପ୍ରକାର ନୈତିକ ମୂଲ୍ୟବୋଧକୁ ଜଳାଞ୍ଜଳିଦେଇ ନିର୍ବାଚିତ ପ୍ରତିନିଧିମାନେ ପ୍ରତିଶ୍ରୁତିକୁ ବେଖାତିର କରି ଏକ ଦଳରୁ ଅନ୍ୟ ଦଳକୁ ଡିଆଁ ମାରୁଛନ୍ତି । କେତେକ ରାଜ୍ୟରେ ଏହି ଦଳବଦଳଯୋଗୁଁ ସରକାର ଭାଙ୍ଗି ପଡ଼ିଲାଣି । ଏ ବ୍ୟାଧି ବ୍ୟାପିଲା ଏବଂ ରାଜନୀତିକ ଦଳଗୁଡ଼ିକ ମଧ୍ୟ ଦଳତ୍ୟାଗୀମାନଙ୍କୁ ଆନନ୍ଦରେ ନିଜ ଦଳରେ ସାମିଲ କରି ଦଳ ବୃଦ୍ଧି କଲେ । ଏହାକୁ ଆଇନଦ୍ୱାରା ରୋକିବାର ଆବଶ୍ୟକତା ପଡ଼ିଲା । ଲୋକସଭାରେ ଏଥିଲାଗି ଏକ ପ୍ରସ୍ତାବ ପାସ୍ ହେଲା ଏବଂ ତଦନୁସାରେ ତତ୍କାଳୀନ ହୋମ୍ ମିନିଷ୍ଟର ଓ୍ୱାଇ. ବି. ଚୌହାନଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠିତ ହେଲା । ସେଥିରେ ଆଇନଜ୍ଞ ଏମ୍. ସି. ଶୀତଲବାଦ, ଦପ୍ତରୀ ଏବଂ ଜୟପ୍ରକାଶ ନାରାୟଣଙ୍କ ପରି ବ୍ୟକ୍ତିମାନେ ସଭ୍ୟ ରହିଥିଲେ । ମୁଁ ବି ତହିଁର ଏକ ସଭ୍ୟ ଥିଲି । ଏଥିରେ କେତେଗୁଡ଼ିଏ କଟକଣା ଜାରି କରିବା ନିମନ୍ତେ ସୁପାରିଶ କରାଗଲା; ମାତ୍ର ସେଗୁଡ଼ିକ ତତ୍କାଳୀନ କଂଗ୍ରେସ ସରକାର ଗ୍ରହଣ କରିବାକୁ ଅସମ୍ମତ ହେଲା । ମୋ ପରି କେତେକ ସଭ୍ୟ ମତ ଦେଲେ ଯେ ଏକ ପାର୍ଟି ଟିକେଟରେ ନିର୍ବାଚିତ ସଦସ୍ୟ ଉକ୍ତ ପାର୍ଟି ଛାଡ଼ି ଅନ୍ୟ ପାର୍ଟିରେ ଯୋଗଦେଲେ ସେ ଆଉ ସେଭଳି ନିର୍ବାଚିତ ସଭ୍ୟପଦରେ ରହିପାରିବେ ନାହିଁ ଏବଂ ଆପେ ଆପେ କଟିଯିବେ, ଏଭଳି ବିଧାନ କରାଯାଉ । ଏ କମିଟିର ସୁପାରିଶଗୁଡ଼ିକ ହେଲା ୧୯୬୯ ମସିହାରେ । ଏଗାର-ବାର ବର୍ଷ ବିତିଗଲେ ସୁଦ୍ଧା ଏବଂ ଏହି ଦଳବଦଳ ବ୍ୟାଧି ଗଣତନ୍ତ୍ର ପକ୍ଷରେ ବିପଜ୍ଜନକ ବୋଲି ସ୍ୱୀକାର କରାଯାଉଥିଲେ ସୁଦ୍ଧା ଏ ସଂକ୍ରାନ୍ତୀୟ ବିଧାନ ଲୋକସଭାରେ ପାସ୍ ହେବାକୁ ନାହିଁ । କଂଗ୍ରେସ ଏବଂ ଅନ୍ୟ ଦଳସବୁ ପ୍ରକାଶ୍ୟ ଓ ଅତି ନିର୍ଲଜ୍ଜଭାବରେ ଏହି

ଭିତରେ ଦଳ ବୃଦ୍ଧି କରିବାରେ ଲାଗିଛନ୍ତି । ଦେଶର ନୈତିକ ଅଧୋଗତି ଓ ରାଜନୀତିରେ ମୂଲ୍ୟବୋଧ ହ୍ରାସ ହେବାର ଏହା ଏକ ପ୍ରଧାନ କାରଣ । ଲୋକଙ୍କୁ ଦେଇଥିବା ପ୍ରତିଶ୍ରୁତିକୁ ମାନି ନ ଚଳିବା ଏକ ବିଶ୍ୱାସଘାତକ କାର୍ଯ୍ୟ । ଆଜିର ପରିସ୍ଥିତି ଦେଖିଲେ ସେତେବେଳେ ସୋସିଆଲିଷ୍ଟ ପାର୍ଟିର ନିର୍ଦ୍ଦେଶରେ ଆଚାର୍ଯ୍ୟ ନରେନ୍ଦ୍ରଦେବଙ୍କ ପରି ବ୍ୟକ୍ତିମାନେ ପଦତ୍ୟାଗ କରି ନଜିର ଏକ ଦୃଷ୍ଟାନ୍ତ ଦେଖାଇଛନ୍ତି । ସୋସିଆଲିଷ୍ଟପାର୍ଟି ଆରମ୍ଭ ହେଉଁ ହେଉଁ ଏକ ସୁସ୍ଥ ପରମ୍ପରା ରକ୍ଷାକଲା । ଓଡ଼ିଶାରେ ଆକୁଳାନନ୍ଦ ବେହେରା ବିନା ଦ୍ୱିଧାରେ ପାର୍ଟି ନିର୍ଦ୍ଦେଶ ମାନି ଏକ ଅତି ଉଚ୍ଚକୋଟୀର ଆଦର୍ଶ ଦେଖାଇଲେ । ପରବର୍ତ୍ତୀ କାଳରେ ସାରଙ୍ଗଧର ଦାସ ମଧ୍ୟ ଯେତେବେଳେ କଂଗ୍ରେସ ତ୍ୟାଗକଲେ, ସେ କଂଗ୍ରେସଦ୍ୱାରା ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିବା ସ୍ଥାନରୁ ବି ଇସ୍ତଫା ଦେଲେ ।

## କମ୍ୟୁନିଜମ୍ ଓ ସୋସିଆଲିଜିମ୍ : ପନ୍ଥା ଭିନ୍ନ

ଲୋକଙ୍କ ମନରୁ କମ୍ୟୁନିଜମ୍ ଓ ଗଣତାନ୍ତ୍ରିକ ସମାଜବାଦ ସମ୍ବନ୍ଧରେ ଭ୍ରମଧାରଣା ଦୂର କରିବା ନିମନ୍ତେ ଏକ ଦୀର୍ଘ ପ୍ରସ୍ତାବ ମଧ୍ୟ ଏଥିରେ ଧାର୍ଯ୍ୟ କରାଗଲା । ଏହାକୁ ସ୍ପଷ୍ଟ କରିବାକୁ ଯାଇ ଜୟପ୍ରକାଶ ନାରାୟଣ କହିଲେ—"ପାଶ୍ଚାତ୍ୟ ଦେଶରେ ଏକ ଦଳ ଭାରି ବିରୋଧୀଦଳକୁ ଅପଦସ୍ଥ କରିବା ନିମନ୍ତେ ମିଥ୍ୟାର ଆଶ୍ରୟ ନେବାଟା ଭୁଲ ବୋଲି ବିଚାରନ୍ତି ନାହିଁ । ନିର୍ବାଚନରେ ବିଜୟ ଲାଭ ନିମନ୍ତେ ଲାଞ୍ଛନା ବ୍ୟକ୍ତିଗତ ପ୍ରୟୋଗ କରିବା ନିମନ୍ତେ କୁଣ୍ଠାବୋଧ କରନ୍ତି ନାହିଁ । କେତେକ ଦଳ ଅଛନ୍ତି, ସେଗୁଡ଼ିକ ମିଥ୍ୟା ଓ ବ୍ୟକ୍ତିଗତ ଅପେକ୍ଷା ଆହୁରି ଆଗକୁ ବି ଯାଆନ୍ତି; ହତ୍ୟା, ଲୁଟ୍ ଓ ପୋଡ଼ାଜଳା ଇତ୍ୟାଦି ରାଜନୀତିକ କୌଶଳର ଏକ ଅଙ୍ଗ ବୋଲି ସେମାନେ ବିଶ୍ୱାସ କରନ୍ତି । ଗତ କେତେ ମାସ ଭିତରେ ଏଭଳି ବହୁ ଘଟଣା ଆମେ ଦେଖିବାକୁ ପାଇଛେ ।

"ଆବହମାନକାଳରୁ କେତେକ ରାଜନୀତିଜ୍ଞ କହିଆସିଛନ୍ତି ରାଜନୀତିରେ ପୁଣି ନୈତିକତା କେଉଁଠୁ ଆସିଲା ? ଅବଶ୍ୟ ପୂର୍ବକାଳରେ ଏଭଳି ଅନୈତିକ କାର୍ଯ୍ୟ ଉପରେଥିବା କେତେକ ଲୋକଙ୍କ ଭିତରେ ସୀମାବଦ୍ଧ ଥିଲା; ସେହିମାନେ ରାଜନୀତି ଖେଳ ଖେଳୁଥିଲେ । ଏଭଳି ନେତା ଓ ମନ୍ତ୍ରୀମାନେ ଯାହା କରୁଥିଲେ ତାହା ସାଧାରଣ ଜନତା ଭିତରେ ପ୍ରବେଶ କରିପାରୁନଥିଲା; କିନ୍ତୁ ଏବେ କମ୍ୟୁନିଷ୍ଟ, ଏକଚ୍ଛତ୍ରବାଦ, ଫାସିଷ୍ଟବାଦ ଏବଂ ନାଜିବାଦ ପ୍ରବର୍ତ୍ତନ ପରେ ଏହି ନୀତି ବ୍ୟାପକରୂପେ ପ୍ରୟୋଗ କରାଗଲାଣି ଏବଂ ସମାଜର ପ୍ରତ୍ୟେକ ବ୍ୟକ୍ତି ଏଥିର ଶିକାର ହେଲେଣି । ଏହା ଫଳରେ ଆମର ସାମାଜିକ ଜୀବନରୁ ନୈତିକ ମୂଲ୍ୟବୋଧ ଲୋପ ପାଇଲାଣି; କେବଳ ରାଜନୀତିକ ଜୀବନ ନୁହେଁ, ପ୍ରତ୍ୟେକ ସ୍ତର, ଏପରିକି ପାରିବାରିକ ଜୀବନ ମଧ୍ୟ ଏଥିରୁ ବାଦ୍ ଯାଇନାହିଁ ।

ରୁଷରେ ଷ୍ଟାଲିନ୍‌ଙ୍କ ପନ୍ଥାର ବିଜୟ ହେବା ପରେ, ସାଧାରଣରେ ବିଶ୍ୱାସ କରାଯାଉଛି ଯେ ମାର୍କସ୍‌ବାଦରେ ନୈତିକ ମୂଲ୍ୟବୋଧର ସ୍ଥାନ ନାହିଁ । କୌଣସି ସୋସିଆଲିଷ୍ଟ ଏ ବିଷୟ

ଉତ୍ଥାପନ କଲେ ତାକୁ ଏକ ପଥଭ୍ରଷ୍ଟ ବ୍ୟକ୍ତି ବୋଲି କୁହାଯାଉଛି । ତେଣୁ ମୁଁ ଏକଥା ପରିଷ୍କାର କରିଦେବାକୁ ଚାହେଁ ଯେ, ମୋର ଦୃଢ଼ବିଶ୍ୱାସ ସମାଜବାଦ ବା ସୋସିଆଲିଜମ୍ ଲକ୍ଷ୍ୟ ପ୍ରାପ୍ତି ନିମନ୍ତେ ଶୁଦ୍ଧ ସାଧନ ବା ଉପାୟ ପ୍ରତି କଠୋର ଦୃଷ୍ଟି ଦେବାକୁ ପଡ଼ିବ । ସମାଜବାଦକୁ ବିଭିନ୍ନ ରୂପେ ଲୋକେ ବୁଝିଛନ୍ତି; କିନ୍ତୁ ଆମେ ସମାଜବାଦ ବୋଇଲେ ବୁଝୁଁ ଏପରି ଏକ ସମାଜ, ଯହିଁରେ ପ୍ରତ୍ୟେକ ବ୍ୟକ୍ତିର ଆବଶ୍ୟକତା ପୂରଣ ହୋଇପାରିବ । ସେ ବ୍ୟକ୍ତି ମଧ୍ୟ ସଂସ୍କୃତିସଂପନ୍ନ ଓ ସଭ୍ୟତାସଂପନ୍ନ ହେବ; ସାହସୀ, ଦୟାଳୁ ଓ ଉଦାର-ହୃଦୟ ପୋଷଣ କରୁଥିବ । ଆମେ ଯେତେବେଳେ ଏଭଳି ଏକ ସୁସ୍ଥ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମାଜବାଦୀ ସମାଜ ସ୍ଥାପନ କରିବାକୁ ଚାହୁଁ, ସେତେବେଳେ ଆମ ମନ ପରିଷ୍କାର ହେବା ଉଚିତ । ମୋ ମନରେ ଆଦୌ ସନ୍ଦେହ ନାହିଁ ଯେ କେତେକ ମାନବିକ ମୂଲ୍ୟବୋଧ ଏବଂ ଆଚରଣ ପଦ୍ଧତି ଅତି ଦୃଢ଼ ନିଷ୍ଠା ସହକାରେ ପାଳିତ ନହେଲେ ଆମେ କେବେହେଁ ଏ ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିବା ନାହିଁ । ସାଧାରଣ ଭାବରେ ଗୋଟାଏ ଧାରଣା ଯେ, ସମାଜରୁ ଯଦି ଶୋଷଣ ଲୋପ ହେଲା, ପ୍ରତ୍ୟେକ ବ୍ୟକ୍ତି ଭଲ ଖାଦ୍ୟ, ପୋଷାକ ଓ ବାସସ୍ଥାନ ପାଇପାରିଲା, ତାହାହେଲେ ଆଉ କିଛି ଲୋଡ଼ା ନାହିଁ । ଉତ୍ତମ ଖାଦ୍ୟ, ପରିଧାନ ଓ ବାସସ୍ଥାନ ପାଉଥିବା ପଶୁସମାଜକୁ କେହି କେବେ ସମାଜବାଦ ବୋଲି କହିନପାରେ ।

ମହାତ୍ମା ଗାନ୍ଧୀ ଆମମାନଙ୍କୁ ବହୁ କଥା ଶିକ୍ଷା ଦେଇଛନ୍ତି । ସେଥିରୁ ସବୁଠାରୁ ବଡ଼ ଶିକ୍ଷା ହେଉଛି ଉତ୍ତମ ସାଧନହିଁ ପ୍ରାପ୍ତି ସଙ୍ଗେ ସମାନ । ମନ୍ଦ ପନ୍ଥାଦ୍ୱାରା ଉତ୍ତମ ସମାଜ ସ୍ଥାପିତ ହୋଇପାରେନା—ଉତ୍ତମ ଲକ୍ଷ୍ୟ ନିମନ୍ତେ ଉତ୍ତମ ଉପାୟ ବା ପନ୍ଥା ଗ୍ରହଣ କରିବାକୁ ପଡ଼ିବ । ଆମ ଭିତରୁ କେତେକଙ୍କର ଏଥିଲାଗି ମନରେ ଟିକିଏ ଦ୍ୱିଧାଭାବ ରହିଥାଇପାରେ; ମାତ୍ର ଏବେ ଆମ ଦେଶରେ ଓ ଦେଶ ବାହାରେ ଯେଉଁସବୁ ଘଟଣାବଳୀ ଘଟିଯାଇଛି, ସେଥିରେ ମୁଁ ଦୃଢ଼ ସିଦ୍ଧାନ୍ତରେ ପହଞ୍ଚିଛି ଯେ ଉତ୍ତମ ସମାଜ ଅର୍ଥାତ୍ ସମାଜବାଦର ଲକ୍ଷ୍ୟସ୍ଥଳରେ ପହଞ୍ଚିବାକୁ ହେଲେ ସତ୍ ପନ୍ଥା ବା ଉତ୍ତମ ଉପାୟ ଆମମାନଙ୍କୁ ଅବଲମ୍ବନ କରିବାକୁ ପଡ଼ିବ—ତା ଛଡ଼ା ଉପାୟ ନାହିଁ । ବୈଦେଶିକ ନୀତି ଏବଂ ଗଣତନ୍ତ୍ର ଯେନି କମ୍ୟୁନିଜମ୍ ଓ ସୋସିଆଲିଜମ୍ ଭିତରେ କିଭଳି ପାର୍ଥକ୍ୟ ରହିଛି, ତାହା କୁହାହୋଇଛି । ମାତ୍ର ନାସିକ ସମ୍ମିଳନୀରେ ସୋସିଆଲିଷ୍ଟ ସତ୍ ଉପାୟ ଉପରେ ଜୋର୍ ଦେବାରୁ ଏହା ଖାଲି ଗାନ୍ଧିଜୀଙ୍କର ନିକଟ ହୋଇ ଆସିଲା ନାହିଁ—ଭାରତୀୟ ଗଣତାନ୍ତ୍ରିକ ସମାଜବାଦର କିଭଳି ଅଗ୍ରଗତି ହେବା ଉଚିତ ସେ ସମ୍ବନ୍ଧରେ ଏକ ସ୍ପଷ୍ଟ ଧାରଣା ଦେଲା ।

### ଗାନ୍ଧିଜୀଙ୍କ ମୃତ୍ୟୁ

ଗାନ୍ଧିଜୀଙ୍କର ମୃତ୍ୟୁ ନ କହି ହତ୍ୟା କହିବା ବୋଧହୁଏ ଠିକ୍ ହେବ । ଗାନ୍ଧିଜୀଙ୍କ ଦେହ-ତ୍ୟାଗ ଘଟିଲା ୧୯୪୮ ମସିହା ଜାନୁୟାରୀ ୩୦ ତାରିଖ ଦିନ । ସେତେବେଳକୁ

ସୋସଲିଷ୍ଟପାର୍ଟି କଂଗ୍ରେସରେ ରହିଥାଏ । ଗାନ୍ଧିଜୀ ଅପସରିଗଲାପରେ ଭାରତରେ ରାଜନୀତିର ଗତି କେମିତି ବଦଳିଗଲା ଏବଂ କଂଗ୍ରେସ କେମିତି ପୂର୍ଣ୍ଣଭାବରେ ଏକ କ୍ଷମତାପ୍ରୟାସୀ ଓ କ୍ଷମତାଭୋଗୀ ଦଳରେ ପରିଣତ ହେଲା, ଏହା ପରବର୍ତ୍ତୀ କାର୍ଯ୍ୟକଳାପରୁ ଜଣାପଡ଼ିଗଲା । ଗାନ୍ଧିଜୀଙ୍କ ହତ୍ୟାରେ ଦେଶ କାହିଁକି ସାରା ଜଗତରେ ଶୋକ-ଉଚ୍ଛ୍ୱାସ ଖେଳିଗଲା । ମୋର ବ୍ୟକ୍ତିଗତ ଜୀବନରେ ଏହା ଆହୁରି ଦୁଃଖଦାୟକ ହେଲା । ୧୯୪୮ ଜାନୁୟାରି ୨୯ରେ ମୋର ବିବାହ ହେଲା ଏବଂ ମୁଁ ଓ ମୋର ସ୍ତ୍ରୀ ତୃତୀୟ ଦିନ ୩୦ ତାରିଖ ସନ୍ଧ୍ୟାରେ କଟକରେ ପହଞ୍ଚିଲୁ । ସାଙ୍ଗେ ସାଙ୍ଗେ ଗାନ୍ଧିଜୀଙ୍କ ତିରୋଧାନର ସମ୍ବାଦ ମିଳିଲା । ମୁଁ ପାଗଳପ୍ରାୟ ହୋଇ ହାତରେ ଥିବା ଦୂବ-ବରକୋଳିପତ୍ର ଫିଙ୍ଗିଦେଇ ଧାଇଁଲି—ଆମର ଘର ଉଜାଣି ବନ୍ଦାପନା ହୋଇପାରିଲା ନାହିଁ କିମ୍ବା ଚତୁର୍ଥୀ ହୋମ ଇତ୍ୟାଦିରେ ମୁଁ ବସିଲି ନାହିଁ । ଗାନ୍ଧିଜୀଙ୍କ ଶ୍ରାଦ୍ଧକ୍ରିୟା ପାଳନ ସମାପ୍ତି ପରେ ଯାହା ହେବାର କରାଗଲା । ଆମ ପରିବାର ଲୋକେ ଏଥିରେ ଏକ ଅଶୁଭ ସୂଚନା ଦେଖିଲେ ଏବଂ ମୋର ସ୍ତ୍ରୀ ଯେ ଅଳ୍ପଦିନ ପରେ ମରିଗଲା, ତହିଁର ଏହା ଏକ କାରଣ ବୋଲି ବୁଢ଼ୀମାନେ କହି ମତେ ଖୁଣ୍ଟା ଦେଲେ ।

## ଗାନ୍ଧିଜୀଙ୍କ ମୃତ୍ୟୁ ପରେ ବିବାଦ

ଗାନ୍ଧିଜୀଙ୍କ ହତ୍ୟା ପରେ ଏକ ରାଜନୀତିକ ଦ୍ୱନ୍ଦ୍ୱ ଆରମ୍ଭ ହୋଇଗଲା । କେତେକଙ୍କର ଦୃଢ଼ମତ ହେଲା ଯେ ଗାନ୍ଧିଜୀଙ୍କ ଉପରେ ଏପରି ବିପଦର ଆଶଙ୍କା ବହୁ ଆଗରୁ ଜଣାପଡ଼ିଥିଲା । ସର୍ଦ୍ଦାର ପଟେଲ ଭାରତ ସରକାରଙ୍କର ସ୍ୱରାଷ୍ଟ୍ର ବିଭାଗ ଦାୟିତ୍ୱରେ ଥାଇ ନିଜ କର୍ତ୍ତବ୍ୟ ନକରିଥିବାରୁ ଏବଂ ଏଥିଲାଗି ଯେଉଁଭଳି ସୁରକ୍ଷା ଓ ସତର୍କତା ଅବଲମ୍ବନ କରିବାର କଥା ତାହା ନ କରିବା ହେତୁ ଗାନ୍ଧିଜୀ ଆତତାୟୀର ଗୁଳିରେ ପ୍ରାଣତ୍ୟାଗ କଲେ । ଏଠାରେ ଉଲ୍ଲେଖଯୋଗ୍ୟ ହେଉଛି ଆମର ସୋସଲିଷ୍ଟପାର୍ଟି କାର୍ଯ୍ୟନିର୍ବାହିକା ସମିତିର ଏକ ଜରୁରୀ ବୈଠକ ୩୧, କୁଇନ୍‌ସଓ୍ୱେ, ଦିଲ୍ଲୀରେ ବସିବା କଥା । ମୁଁ ମୋ 'ହନିମୁନ୍' ଛାଡ଼ି ଦଉଡ଼ିଲି । ଏଠାରେ ଭାରତ ସରକାରଙ୍କ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ଅବହେଳା ଯୋଗୁଁ ଗାନ୍ଧିଜୀଙ୍କ ହତ୍ୟା ଘଟିଲାବୋଲି ପ୍ରସ୍ତାବ ଗୃହୀତ ହେଲା । ଏଥିପୂର୍ବରୁ କୌଣସି ରାଜନୀତିକ ଦଳ ବା ବ୍ୟକ୍ତି ଏପରି ପ୍ରତ୍ୟକ୍ଷ ଆକ୍ରମଣ କରିନଥିଲେ । ସେହି ମର୍ମରେ ଏକ ଅତି ମର୍ମସ୍ପର୍ଶୀ ଅଥଚ ଆକ୍ରମଣାତ୍ମକ ବିବୃତି ଜୟପ୍ରକାଶ ନାରାୟଣ ଦେଲେ ଏବଂ ସର୍ଦ୍ଦାର ପଟେଲଙ୍କୁ ଏଥିଲାଗି ସମ୍ପୂର୍ଣ୍ଣରୂପେ ଦାୟୀ କଲେ । ଏହି ବିବୃତି ମହାଗୋଳମାଳ ସୃଷ୍ଟି କଲା । ଗାନ୍ଧିଜୀଙ୍କ ପ୍ରତି ଦେଶଲୋକଙ୍କର ଯାହା ପ୍ରୀତି ଓ ଭକ୍ତି, ସେଥିରେ ଏହି ବିବୃତିକୁ ଦେଶବାସୀ ଖୁବ୍ ସମର୍ଥନ ଦେବା ହେତୁ ସର୍ଦ୍ଦାର ପଟେଲ, କଂଗ୍ରେସ ଓ ଭାରତ ସରକାର ଏକ ଦୋଦୁଲ୍ୟମାନ ପରିସ୍ଥିତିରେ ପଡ଼ିଗଲେ । ଶେଷକୁ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁଙ୍କୁ ଆଉ ଏକ ବେତାର ବାର୍ତ୍ତାରେ ଦେଶବାସୀଙ୍କୁ ଆଶ୍ୱାସନା ଦେବାକୁ

ପଡ଼ିଲା । ସେ ଜୟପ୍ରକାଶଙ୍କୁ ବିରୋଧକରି ବା ସମାଲୋଚନା କରି କିଛି କହିଥିଲେ ତାର ଭିନ୍ନ ପ୍ରତିକ୍ରିୟା ହୋଇଥାଆନ୍ତା । ଏଣେ ତାଙ୍କର ସହକର୍ମୀ ଉପପ୍ରଧାନମନ୍ତ୍ରୀ ଏବଂ କଂଗ୍ରେସର ଝାଣ୍ଡୁଆ ଖୁମ୍ବ ସର୍ଦ୍ଦାର ପଟେଲଙ୍କୁ ରକ୍ଷା କରିବାକୁ ପଡ଼ିବ । ଏହି ବେତାର ଭାଷଣରେ ଜବାହରଲାଲଜୀ ଯଥାସମ୍ଭବ ସୁରକ୍ଷା ବ୍ୟବସ୍ଥାରେ କୌଣସି ବ୍ୟତିକ୍ରମ ଘଟିନାହିଁ ବୋଲି କହିବା ସଙ୍ଗେ ସଙ୍ଗେ କହିଲେ ସେ ଭବିଷ୍ୟତ ଭାରତର ଭାଗ୍ୟ ନିର୍ଣ୍ଣୟରେ ଜୟପ୍ରକାଶ ଏକ ପ୍ରଧାନ ଅଂଶ ଗ୍ରହଣ କରିବେ । ଆମେ ତାଙ୍କର ଦାୟିତ୍ୱସମ୍ପନ୍ନ ସହଯୋଗ କାମନା କରୁ ଏବଂ ଗାନ୍ଧିଜୀଙ୍କ ବାଣୀକୁ କାର୍ଯ୍ୟକାରୀ କରିବା ନିମନ୍ତେ ପରସ୍ପରର ସାହାଯ୍ୟ ଲୋଡ଼ା । ଏହିଭଳି ବାଣୀ ଶୁଣାଇ କ୍ଷୁବ୍ଧ ଭାରତବାସୀଙ୍କୁ ସେ ଶାନ୍ତ କରାଇଲେ । ମାତ୍ର ମୋ ନିଜ ମତରେ, ଏହି ବିବୃତିଯୋଗୁଁ ସର୍ଦ୍ଦାର ପଟେଲଙ୍କ ସମର୍ଥକମାନେ କଂଗ୍ରେସ ସୋସିଆଲିଷ୍ଟପାର୍ଟି ଓ ଜୟପ୍ରକାଶଙ୍କ ପ୍ରତି ତୀବ୍ର ବିରୋଧଭାବ ପୋଷଣ କଲେ । ସେହି କାରଣରୁ ଗାନ୍ଧିଜୀଙ୍କ ମୃତ୍ୟୁ ପରେ ଦିଲ୍ଲୀରେ ଯେଉଁ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ହେଲା, ତହିଁରେ କଂଗ୍ରେସ ଭିତରେ ଆଉ କୌଣସି ସାଙ୍ଗଠନିକ ଗୋଷ୍ଠୀ କାର୍ଯ୍ୟ କରିପାରିବ ନାହିଁ ବୋଲି ବାରଣ କରିଦିଆଗଲା । ସବୁଠାରୁ ବେଶି ଲକ୍ଷ୍ୟକରିବାର କଥା ହେଲା— ଜବାହରଲାଲ ନିଜକୁ ସୋସିଆଲିଷ୍ଟ ଏବଂ ଆମ ସୋସିଆଲିଷ୍ଟଙ୍କର ପରମବନ୍ଧୁ କହୁଥିଲେ; ଆଚାର୍ଯ୍ୟ ନରେନ୍ଦ୍ରଦେବ ଓ ଜୟପ୍ରକାଶଙ୍କ ସହ ଭାବଗତ ଐକ୍ୟ ରହିଛି ବୋଲି କହୁଥିଲେ —କିନ୍ତୁ ସୋସିଆଲିଷ୍ଟଙ୍କୁ କଂଗ୍ରେସରୁ ବିତାଡ଼ନ କରିବା ପ୍ରସ୍ତାବକୁ ରୋକିଲେ ନାହିଁ କିମ୍ବା ନିଖିଳ ଭାରତ କଂଗ୍ରେସ କମିଟିରେ ନିୟମାବଳୀର ଏଭଳି ପରିବର୍ତ୍ତନର ସେ ବିରୋଧ କରିନଥିଲେ । ମୋର ବିଶ୍ୱାସ ଗାନ୍ଧିଜୀ ଜୀବିତ ଥିଲେ, ଏହା ଆଦୌ ଉତ୍ଥାପିତ ହୋଇନଥାନ୍ତା । ଯାହାହେଉ ଆମର ତୁରନ୍ତ ସେ କଂଗ୍ରେସ ଛାଡ଼ିବାର ଏହା ମୁଖ୍ୟ କାରଣ ।

## ଗାନ୍ଧିଜୀଙ୍କ ମୂଲ୍ୟବୋଧରକ୍ଷା

ସୋସିଆଲିଷ୍ଟପାର୍ଟି ନାସିକ ସମ୍ମିଳନୀରେ ଗାନ୍ଧିଜୀଙ୍କ ମହାପ୍ରୟାଣ ସମ୍ବନ୍ଧରେ ଯେଉଁ ପ୍ରସ୍ତାବ ପାସ୍ କରାଗଲା, ସେଥିରେ କୁହାଗଲା—

"ଦେଶର କୋଟି କୋଟି ଲୋକ ଦେଶବାସୀଙ୍କ ହିତ ନିମନ୍ତେ ଗାନ୍ଧିଜୀ ତାଙ୍କର ବ୍ୟକ୍ତିଗତ ଓ ସାମାଜିକ ଜୀବନ ବିତାଇଗଲେ । ଦରିଦ୍ରତମ ଗ୍ରାମବାସୀ ଏବଂ ପତିତ ସହିତ ନିଜକୁ ମିଶାଇଦେବାଦ୍ୱାରା ଦେଶରେ ଯେଉଁ ନୀତି ପ୍ରଚଳିତ ହୋଇଥିଲା ତାହାର ଏକ କଠିନ ପରୀକ୍ଷା ହୋଇଗଲା ।

ଗାନ୍ଧିଜୀ ଦେଶରେ ଯେଉଁ ନୂତନ ସାମାଜିକ ମୂଲ୍ୟବୋଧ ପ୍ରତିଷ୍ଠିତ କରିବା ନିମନ୍ତେ ଅବିରାମ ଉଦ୍ୟମ ଚଲାଇଥିଲେ, ତହିଁରେ ଏ ଦେଶର ସମାଜବାଦୀ ଆନ୍ଦୋଳନ ଅତ୍ୟନ୍ତ

ଲାଭବାନ୍ ହୋଇପାରିଥିଲା । ସୋସଲିଷ୍ଟପାର୍ଟି ଗାନ୍ଧିଜୀଙ୍କର ଏହି ଅପୂର୍ବ ଅବଦାନକୁ କୃତଜ୍ଞତାସହ ସ୍ୱୀକାର କରୁଛି ଏବଂ ଶପଥ ନେଉଛି ଯେ ଗାନ୍ଧିଜୀ ତାଙ୍କର ଜୀବଦ୍ଦଶା ଭିତରେ ଏବଂ ମୃତ୍ୟୁପରେ ବି ସାମାଜିକ ପ୍ରଗତିର ଯେଉଁସବୁ ନୀତି ରକ୍ଷା ନିମନ୍ତେ କାର୍ଯ୍ୟ କରିଗଲେ, ସୋସଲିଷ୍ଟପାର୍ଟି ସେଥିଲାଗି କାର୍ଯ୍ୟ କରିବ ।"

ଏଭଳି ପ୍ରସ୍ତାବ ହେତୁ ଏକ ସ୍ୱାଧୀନ ସୋସଲିଷ୍ଟପାର୍ଟିର ସ୍ୱାତନ୍ତ୍ର୍ୟ ଫୁଟି ଉଠିଥିଲା । କଂଗ୍ରେସ ଭିତରେ ସୋସଲିଷ୍ଟପାର୍ଟି ୧୪ ବର୍ଷ ରହିଲା । ଆମେ ଗର୍ବ ସହକାରେ ଘୋଷଣା କରିପାରୁ ଯେ ସାଲିସ ଆଡ଼କୁ ଯିବାରେ କଂଗ୍ରେସକୁ ରୋକାଯାଇପାରିଥିଲା; କଂଗ୍ରେସକୁ ଏକ ସଂଗ୍ରାମୀ ଅନୁଷ୍ଠାନ ଭାବରେ ରଖିବାରେ ଆମମାନଙ୍କର ବହୁତ ବଡ଼ ହାତ ଥିଲା । ଆମେ ମଧ୍ୟ କଂଗ୍ରେସ ଭିତରେ ସମାଜବାଦର ସପକ୍ଷ ଏକ ବାୟୁମଣ୍ଡଳ ସୃଷ୍ଟି କରିପାରିଥିଲୁ । ପ୍ରକୃତରେ ସମାଜବାଦୀ ହୁଅନ୍ତୁ ବା ନ ହୁଅନ୍ତୁ, ପରବର୍ତ୍ତୀ କାଳରେ କଂଗ୍ରେସ ଲୋକେ ଯେ ଆପଣାକୁ ସମାଜବାଦୀ କହିବାଲାଗି ବ୍ୟାକୁଳ, ସେଥିରୁ ଆମ କାର୍ଯ୍ୟର ପ୍ରଭାବ ପ୍ରମାଣିତ ହେଲା ।

କଂଗ୍ରେସରୁ ବାହାରିଯିବା ପରେ ସୋସଲିଷ୍ଟପାର୍ଟିର ଦେଶର ବିଭିନ୍ନ ସମସ୍ୟା ବିଷୟରେ ସ୍ୱତନ୍ତ୍ର ମତଗତ ପରିଷ୍କାର କରିବାର କଥା । ପ୍ରଥମରୁ ଏକ ସ୍ପଷ୍ଟ ନୀତି ଘୋଷଣାରେ ଗଣତାନ୍ତ୍ରିକ ସମାଜବାଦ ଓ କମ୍ୟୁନିଷ୍ଟବାଦ ଭିତରେ ପ୍ରଭେଦ ଦର୍ଶାଇ ଦିଆଗଲା ଏବଂ ସଶସ୍ତ୍ର ବିପ୍ଳବ ପରିବର୍ତ୍ତେ ଗାନ୍ଧୀଙ୍କ ଶାନ୍ତିପୂର୍ଣ୍ଣ ନୀତି ଜରିଆରେ ସାମାଜିକ ଆର୍ଥନୀତିକ ବିପ୍ଳବ ସାଧନରେ ବିଶ୍ୱାସ ସ୍ଥାପନ କରିବାଦ୍ୱାରା ଗଣତାନ୍ତ୍ରିକ ସମାଜବାଦରେ ମାର୍କସ ଓ ଗାନ୍ଧିଜୀ ଉଭୟଙ୍କର ପ୍ରଚ୍ଛନ୍ନ ପ୍ରଭାବ ପରିଲକ୍ଷିତ ହେଲା । ୧୯୪୮ ବେଳକୁ ସୋସଲିଷ୍ଟ ପାର୍ଟି ପୂରାପୂରି ମାର୍କସବାଦକୁ ତ୍ୟାଗ କରିନଥିଲା; କିନ୍ତୁ ଆମ ଭିତରେ ଆଚାର୍ଯ୍ୟ ନରେନ୍ଦ୍ରଦେବଙ୍କ ପରି ଯେଉଁ ମାର୍କସପନ୍ଥୀ ଥିଲେ ସେମାନେ ମାର୍କସବାଦ ଓ ଗଣତନ୍ତ୍ର ମଧ୍ୟରେ କୌଣସି ବିରୋଧ ନାହିଁ ବୋଲି ପ୍ରତିପାଦନ କଲେ । କମ୍ୟୁନିଷ୍ଟମାନେ ହିଂସା ଓ ଏକଚ୍ଛତ୍ର ମନୋଭାବ ସହ ମାର୍କସଙ୍କୁ ଜଡ଼ିତକରି ଏହାର କଦର୍ଥ କରିଥିଲେ । ଆଚାର୍ଯ୍ୟ ନରେନ୍ଦ୍ରଦେବ ଏ ସମ୍ପର୍କରେ କହିଲେ, "ମାର୍କସଙ୍କ ବିଚାରଧାରା ଗଣତନ୍ତ୍ରର ବିରୋଧୀ ବୋଲି ଯେଉଁମାନେ କହନ୍ତି, ସେମାନେ ଭୁଲ କହନ୍ତି । ମାର୍କସ ତାଙ୍କ କାଳର ଏକ ମହାନ୍ ମାନବଧର୍ମୀ ଥିଲେ । ମନୁଷ୍ୟ ପକ୍ଷରେ ସ୍ୱାଧୀନ ଭାବରେ ନିଜ ମତ ପ୍ରକାଶକୁ ସେ ଅତି ଅମୂଲ୍ୟ ସମ୍ପଦ ବୋଲି ବିଚାରୁଥିଲେ । ସେ କିଭଳି ବ୍ୟକ୍ତି-ସ୍ୱାଧୀନତା ସପକ୍ଷରେ ଅତି ଭାବପ୍ରଣୋଦିତ ହୋଇ ଯୁକ୍ତି କରୁଥିଲେ, ତାହା ଭଲରୂପେ ଜଣା । ତାଙ୍କ କମ୍ୟୁନିଜମ୍‌ରେ ଗଣତନ୍ତ୍ର ନିଶ୍ଚିତ୍ତ ରହିବ ବୋଲି ସେ ଜୋର୍ ଦେଇ କହୁଥିଲେ ।"

ମାର୍କସଙ୍କଦ୍ୱାରା ସ୍ଥାପିତ କମ୍ୟୁନିଷ୍ଟ ଲିଗର ମୁଖପତ୍ରରୂପେ ଯେଉଁ କମ୍ୟୁନିଷ୍ଟ ପତ୍ରିକା ପ୍ରକାଶ ପାଇଥିଲା, ତହିଁରେ ୧୮୪୭ ମସିହା ସେପ୍ଟେମ୍ବର ସଂଖ୍ୟାରେ ଲେଖାଥିଲା—

"ଯେଉଁ କମ୍ୟୁନିଷ୍ଟମାନେ ବ୍ୟକ୍ତି-ସ୍ୱାଧୀନତାକୁ ଧ୍ୱଂସ କରିଦେବାକୁ ଚାହାଁନ୍ତି, ଯେଉଁମାନେ ଏ ଦୁନିଆଟାକୁ ଏକ ବିଶାଳ ଫୌଜ ବାରିକ୍ ବା ବୃହତ୍ ମଣିଷ ଗଢ଼ିବା କାରଖାନାରେ ପରିଣତ କରିବାକୁ ଚାହାଁନ୍ତି, ଆମେ ସେଭଳି କମ୍ୟୁନିଷ୍ଟ ନୋହୁ । କେତେକ କମ୍ୟୁନିଷ୍ଟ କେବେହେଲେ ବ୍ୟକ୍ତି-ସ୍ୱାଧୀନତା ବିଷୟଟିକୁ ଗ୍ରହଣ କରିବା ନିମନ୍ତେ ପ୍ରସ୍ତୁତ ନୁହନ୍ତି; ସେମାନେ ଏହାକୁ ମଣିଷ ସମାଜରୁ ସମ୍ପୂର୍ଣ୍ଣରୂପେ ଲୋପ କରିଦେବା ନିମନ୍ତେ ବଦ୍ଧପରିକର; କାରଣ ସେମାନଙ୍କ ମତରେ ମାନବସମାଜରେ ସୌହାର୍ଦ୍ଦ୍ୟ ପ୍ରତିଷ୍ଠା କରିବାରେ ବ୍ୟକ୍ତି-ସ୍ୱାଧୀନତା ପ୍ରଧାନ ଅନ୍ତରାୟ । କିନ୍ତୁ ଆମେ ସମାନତା ନିମନ୍ତେ ସ୍ୱାଧୀନତାକୁ ବଳିଦେବାକୁ ଚାହୁଁନା । କାରଣ ଆମେ ଉପଲବ୍ଧି କରୁଛୁ ଯେ ସମଗ୍ର ସମାଜର ମାଲିକାନା (Communal Ownership) ଭିତ୍ତିରେ ପ୍ରତିଷ୍ଠିତ ସମାଜରେ ଯେପରି ପୂର୍ଣ୍ଣ ସ୍ୱାଧୀନତା ବଜାୟ ରହିବ, ଅନ୍ୟ କୌଣସି ପ୍ରକାର ସାମାଜିକ ବ୍ୟବସ୍ଥାରେ ତାହା ସମ୍ଭବ ନୁହେଁ ।

ତେଣୁ ଗଣତାନ୍ତ୍ରିକ ସମାଜବାଦ ନୀତି କମ୍ୟୁନିଷ୍ଟବାଦ ଅପେକ୍ଷା ଯେ ଉତ୍କୃଷ୍ଟ ଓ କାର୍ଯ୍ୟକାରୀ, ଏଥିରେ ସନ୍ଦେହ ନାହିଁ । ସଶସ୍ତ୍ର ବିଦ୍ରୋହ ପନ୍ଥାକୁ ଏହା ପ୍ରତ୍ୟାଖ୍ୟାନ କଲା; ମାତ୍ର ଏଥି ସଙ୍ଗେ ସଙ୍ଗେ ନୂତନ ପାର୍ଟି ମଧ୍ୟ ଏହା ଘୋଷଣା କଲା ଯେ କେବଳ ରାଷ୍ଟ୍ର ବା ସରକାରୀ କ୍ଷମତା ଜରିଆରେ ସମାଜବାଦ ସ୍ଥାପନା ସମ୍ଭବ ନୁହେଁ—ସରକାରୀ ଓ ରାଷ୍ଟ୍ରକ୍ଷମତା ହାସଲ କରିବାକୁ ହେଲେ ଭୋଟ ପ୍ରଥା ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଦେଶର ଅଗଣିତ ଜନସାଧାରଣଙ୍କ ସଙ୍ଗଠନ ବ୍ୟବସ୍ଥାସବୁ ବାହାରେ ଠିଆକରି ତା'ର ଶକ୍ତି ବଳରେ ସରକାର ଓ ରାଷ୍ଟ୍ରର ପରିଚାଳନାକୁ ନିୟନ୍ତ୍ରଣ କରିବାକୁ ପଡ଼ିବ । ଏହା ହେଲା ନୂତନ ସୋସଲିଷ୍ଟପାର୍ଟିର ଲକ୍ଷ୍ୟ, ଚିନ୍ତା ଓ କର୍ମ ପ୍ରଣାଳୀର ମୂଳାଧାର—ଏଥିରେ ଆଉ ସର୍ବହରାର ଅଧିନାୟକତ୍ୱ ସ୍ଥାପନା ପ୍ରଶ୍ନ ମୂଳରୁ ଯାଉଛି—ସେପରି ଅନ୍ତର୍ବର୍ତ୍ତୀ ବ୍ୟବସ୍ଥାର ଆବଶ୍ୟକତା ନାହିଁ । ଭୋଟ ପ୍ରଥା ଏବଂ ଗଣତାନ୍ତ୍ରିକ ସ୍ୱାଧୀନତା ଓ ଅଧିକାର ପ୍ରତ୍ୟେକ ନାଗରିକକୁ ମିଳିଲା ପରେ କେବଳ ବୈଧାନିକ ଉପାୟ ନୁହେଁ, ଗଣତାନ୍ତ୍ରିକ ଲୋକାଧିକାରର ଶକ୍ତି ଜରିଆରେ ସାମାଜିକ ପରିବର୍ତ୍ତନ ଓ ସମାଜବାଦ ପ୍ରତିଷ୍ଠା କରାଯାଇପାରିବ । ଏହି ମୌଳିକ ବିଚାରକୁ ସ୍ମରଣ ରଖିଲେ ପରେ ସୋସଲିଷ୍ଟ ପାର୍ଟିରେ ଯେଉଁଭଳି ପରିବର୍ତ୍ତନ ହୋଇଛି ତାହା ବୁଝିବାରେ କିଛି ଅସୁବିଧା ରହିବନାହିଁ ।

## ବିରୋଧୀଦଳରୂପେ ଦାୟିତ୍ୱ ଓ ଭୂମିକା

ସୋସଲିଷ୍ଟପାର୍ଟି କଂଗ୍ରେସରୁ ବାହାରିଆସି ସ୍ୱାଧୀନ ଦଳରୂପେ କାର୍ଯ୍ୟ କଲା—ଏ ଦେଶରେ ଦୃଢ଼ ଗଣତାନ୍ତ୍ରିକ ବିରୋଧୀଦଳରୂପେ କାର୍ଯ୍ୟ କରିବାର ଦାୟିତ୍ୱ ଆସି ସୋସଲିଷ୍ଟଙ୍କ ଉପରେ ପଡ଼ିଗଲା । ସେ ବିଷୟରେ ଜୟପ୍ରକାଶ ନାରାୟଣ ଲେଖିଲେ—କଂଗ୍ରେସରୁ ବିଚ୍ଛିନ୍ନ

ହେବାର ସିଦ୍ଧାନ୍ତ ନେବା ହେତୁ ଆମ ଉପରେ ଗୁରୁଦାୟିତ୍ୱ ପଡ଼ିଯାଇଗଲା । ଆମେ ଯେଉଁ ନୂତନ କର୍ମପନ୍ଥା ବାଛିନେଲୁ, ସେଥିରେ କେତେକ ମିତ୍ର ଆମକୁ ଅନୁସରଣ କରିବାକୁ ପଡ଼ିବ । ସେ ସମ୍ବନ୍ଧରେ ମୁଁ ଅତି ନମ୍ରତା ସହିତ କେତେକ ମିତ୍ର ବିସ୍ଥାନ କରିବାକୁ ଯାଉଛି । ସେ କହିଲେ—ଆମର ଅନେକ ବନ୍ଧୁ ପାର୍ଟି ରାଜନୀତିରେ ଯେତେ ଆଗ୍ରହୀ ନୁହନ୍ତି, ଆମ ଜାତିର ଭବିଷ୍ୟତ ବିଷୟରେ ଅଧିକ ଚିନ୍ତିତ । କେତେକ ଏହିପରି ବନ୍ଧୁ ମତ ଦିଅନ୍ତି ଯେ ଏକ ଜାତୀୟ ସଂକଟ ମୁହୂର୍ତ୍ତରେ ଏକତ୍ର ହେବା ସିନା, ବିଚ୍ଛେଦ ହେବା ବାଞ୍ଛିତ ନୁହେଁ ।

ଏଭଳି ବନ୍ଧୁମାନଙ୍କୁ ଆମେ ଆଶ୍ୱାସନା ଦେଉଛୁଁ ଏବଂ ତାଙ୍କର ମନର ଆଶଙ୍କା ଦୂର କରିବାକୁ ଚାହୁଁଛୁ । ଆମ ଦେଶରେ ପାର୍ଲିଆମେଣ୍ଟାରୀ ଶାସନ ପ୍ରଚଳିତ ହୋଇନାହିଁ ଏବଂ ସେଥିନିମନ୍ତେ ବିରୋଧୀର କର୍ତ୍ତବ୍ୟ ସମ୍ବନ୍ଧରେ ଆମର ସମ୍ୟକ୍ ଧାରଣା ନାହିଁ । କଂଗ୍ରେସ ଯେମିତି ବ୍ରିଟିଶ ସରକାର ବିରୁଦ୍ଧରେ କାର୍ଯ୍ୟ କରୁଥିଲା, ସେହିଭଳି ବର୍ତ୍ତମାନ ବିରୋଧୀର ସ୍ୱରୂପ ହେବ ବୋଲି କେତେକ ଅନୁମାନ କରନ୍ତି । କଂଗ୍ରେସ ବ୍ରିଟିଶ ସରକାରର ମୂଳୋତ୍ପାଟନ ନିମନ୍ତେ ପ୍ରତ୍ୟକ୍ଷ ସଂଗ୍ରାମ ପନ୍ଥା ଗ୍ରହଣ କରିଥିଲା । କିନ୍ତୁ ଗଣତନ୍ତ୍ରରେ ବିରୋଧୀର ସ୍ୱରୂପ ସେଭଳି ହୋଇନପାରେ । ଏକ ଗଣତାନ୍ତ୍ରିକ ରାଷ୍ଟ୍ରରେ କ୍ଷମତାସୀନଦଳ ଓ ବିରୋଧୀଦଳ ( ଯଦି ଏହା ଏକ ଡେମୋକ୍ରେଟିକ୍ ଦଳ ହୋଇଥାଏ ) ଉଭୟଙ୍କର ରାଷ୍ଟ୍ରପତି ଆନୁଗତ୍ୟ ରହିବ ଏବଂ ଉଭୟେ ଗଣତାନ୍ତ୍ରିକ ପନ୍ଥା ଅବଲମ୍ବନ କରିବେ । ଏକ ଜାତୀୟ ସଂକଟ ଉପୁଜିଲେ ନିଜର ସ୍ୱତନ୍ତ୍ର ସ୍ଥିତି ଓ ସଙ୍ଗଠନକୁ ବଜାୟ ରଖି ଉଭୟ ଦଳ ପୂର୍ବକଥାକୁ ପାସୋରି ଦେଶର ସେବା ନିମନ୍ତେ ହାତ ମିଳାଇବେ ।

ଗଣତନ୍ତ୍ରରେ ବିରୋଧୀ ଦଳ କିଛି ଜାତୀୟତା-ବିରୋଧୀ ନୁହେଁ; ବରଂ ଏହା ସର୍ବଦା ଦେଶର ସମୃଦ୍ଧି ଓ ପ୍ରଗତି ନିମନ୍ତେ କ୍ଷମତାରେ ରହିଥିବା ଦଳ ଅପେକ୍ଷା ଅଧିକ ଉତ୍ତମ ପନ୍ଥା ବାହାରକରେ । ଇଂରେଜ ଅମଳରେ କଂଗ୍ରେସ ବିରୋଧୀ ହେବା ଅର୍ଥ ହେଲା ଜାତୀୟତା ବିରୋଧୀ ହେବା; କାରଣ ବିଦେଶୀ ବିରୁଦ୍ଧରେ କଂଗ୍ରେସ ଥିଲା ଜାତିର ପ୍ରତୀକ । ଆମକୁ ସ୍ୱାଧୀନତା ପରେ ଲୋକଙ୍କ ଭିତରେ ଏ ଚିନ୍ତା ଖେଳାଇବାକୁ ପଡ଼ିବ ଯେ କଂଗ୍ରେସର ବିରୋଧ କରିବା ଅର୍ଥ ଦେଶ ବା ଜାତିର ବିରୋଧ ନୁହେଁ—ବରଂ ଶାସକ ଦଳର କେତେକ ନୀତି ଓ ପନ୍ଥାର ବିରୋଧ ଏବଂ ବିକଳ୍ପ ନୀତି ଦେବା ବିରୋଧୀର କର୍ତ୍ତବ୍ୟ । ଆହୁରି ମଧ୍ୟ କଂଗ୍ରେସର ବିରୋଧୀ ହେବାର ଅର୍ଥ ହେଉଛି ଗଣତାନ୍ତ୍ରିକ ଉପାୟରେ କ୍ଷମତାସୀନ ଦଳକୁ ଗାଦିଚ୍ୟୁତ କରିବା ବିରୋଧୀର ପ୍ରଧାନ କର୍ତ୍ତବ୍ୟ ।

କେହି ଅସ୍ୱୀକାର କରିବେ ନାହିଁ ଯେ ଦେଶରେ ଆଭ୍ୟନ୍ତରୀଣ ସଂକଟ ଉପୁଜିଛି ଏବଂ ବହୁ ଗୁରୁତର ବାହ୍ୟ ସଂକଟ ଆସି ପହଞ୍ଚିଛି ଦେଶରେ । ଏପରି ସଂକଟବେଳେ ଯେଉଁ

ଦଳଗୁଡ଼ିକର ଉଦ୍ଦେଶ୍ୟ ଓ ଆଦର୍ଶରେ ସାମଞ୍ଜସ୍ୟ ରହିଛି, ସେଗୁଡ଼ିକ ଏକାଠି ହୋଇ ଜାତୀୟ ସଙ୍ଗଠନର ସମ୍ମୁଖୀନ ହେବେ । କଂଗ୍ରେସ ଓ ସୋସଲିଷ୍ଟପାର୍ଟି ଭିତରେ ବହୁ କଥାରେ ମେଳ ଅଛି । ଅନ୍ୟ ଦଳଗୁଡ଼ିକ ଅପେକ୍ଷା ଏ ଦୁଇଟିଯାକ ଦଳ ଧର୍ମନିରପେକ୍ଷ ନୀତି ଗ୍ରହଣ କରନ୍ତି । ସୁତରାଂ କଂଗ୍ରେସ ଓ ସୋସଲିଷ୍ଟ ଉଭୟେ ରାଷ୍ଟ୍ର ଓ ଗଣତନ୍ତ୍ରର ରକ୍ଷା ନିମନ୍ତେ ସଂପ୍ରଦାୟବାଦୀ ଓ ପ୍ରତିକ୍ରିୟାବାଦୀଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବେ ଏବଂ ଦୁହେଁ ହାତ ମିଳାଇ କାର୍ଯ୍ୟ କରିବେ ।

## ୧୫ ଅଗଷ୍ଟ ପରେ

ଜୟପ୍ରକାଶ ପୁଣି ଲେଖିଲେ—"୧୫ ଅଗଷ୍ଟ ପରେ ଆମର କାର୍ଯ୍ୟ ହେଉଛି ରଚନାତ୍ମକ । ଆମକୁ ନୂତନ ଭାରତ ଗଢ଼ିବାକୁ ପଡ଼ିବ । ଅନ୍ୟ ପକ୍ଷରେ କମ୍ୟୁନିଷ୍ଟମାନେ କିଛି ଗଠନ କାର୍ଯ୍ୟରେ ଆଗ୍ରହୀ ନୁହନ୍ତି । ସେମାନେ ଗୋଳମାଳ ଓ ବିଶୃଙ୍ଖଳା ସୃଷ୍ଟି କରିବାରେ ବ୍ୟସ୍ତ—ସେଥିରୁ ଫାଇଦା ଉଠାଇ ନିଜ ପାର୍ଟିକୁ ଲୋକପ୍ରିୟ କରିବା ଏବଂ ଭାରତୀୟ ରାଷ୍ଟ୍ରକୁ ଦୁର୍ବଳ କରିବା ହେଲା ସେମାନଙ୍କର ମତଲବ । ଏକ ସୁଦୃଢ଼ ଭାରତ ଯଦି ତୃତୀୟ ଶକ୍ତି ଭିତରେ ଏକ ଶ୍ରେଷ୍ଠସ୍ଥାନ ଦଖଲ କରେ, ତାହା କମ୍ୟୁନିଷ୍ଟଙ୍କ ପକ୍ଷରେ ସୁବିଧାଜନକ ହେବନାହିଁ ଏବଂ ସେଥିଲାଗି ଆମ ଦେଶର ପୁନରୁତ୍‌ଥାନ ଯେପରି ନ ହୁଏ, ସେମାନେ ସକଳପ୍ରକାର କାର୍ଯ୍ୟ କରିବାକୁ କୁଣ୍ଠାବୋଧ କରିବେ ନାହିଁ ।"

## କମ୍ୟୁନିଷ୍ଟଙ୍କ ପ୍ରତି ସତର୍କ ରୁହ

ସେ ଆହୁରି ଲେଖିଲେ—"ଏଥି ଫାଙ୍କାନ୍ତରେ ପୃଥିବୀରେ ଅନ୍ୟତ୍ର ଘଟିଥିଲାପରି ଏଠାରେ ମଧ୍ୟ ଆମ ପାର୍ଟିର ଗଣତାନ୍ତ୍ରିକ ସ୍ଥିତିର ସେମାନେ ସୁଯୋଗ ନେବାଲାଗି ଉଦ୍ୟମ କରିପାରନ୍ତି; ପାର୍ଟି ଭିତରେ ପ୍ରବେଶ କରିପାରନ୍ତି; ନିଜର ଦଲାଲଙ୍କୁ ପାର୍ଟି ଭିତରେ ପ୍ରବେଶ କରାଇ ପାର୍ଟିର ବିଭାଜନ କରାଇ ଅବଶେଷରେ ଏହାକୁ ଧ୍ୱଂସ କରିବା ନିମନ୍ତେ ଉଦ୍ୟମ କରିପାରନ୍ତି । ତୁମେ ସବୁ ଯଦି ଜାଗରୂକ ନ ରୁହ, କୌଣସି ଏକ ସମସ୍ୟାରେ ତାଙ୍କ ସହିତ ମିଳିତ ହେବା ନିମନ୍ତେ ତାଙ୍କର ବିଶେଷ ଅନୁରୋଧର ଖାପଟରେ ପଡ଼ିଯାଅ ଏବଂ ତାଙ୍କୁ ବିଶ୍ୱାସ କର, ତେବେ ପାର୍ଟିର ଧ୍ୱଂସସାଧନ ଲାଗି ତୁମେ ଦ୍ୱାର ଉନ୍ମୁକ୍ତ କରିଦେବ । ତୁମେ ପ୍ରତ୍ୟେକେ ବଡ଼ ସତର୍କ ରହିବା ଉଚିତ ଏବଂ କମ୍ୟୁନିଷ୍ଟ ବିପଦ ପ୍ରତି ଲୋକଙ୍କୁ ସଚେତନ କରିବା ଉଚିତ । ଗୋଟାଏ ପୂର୍ବାଞ୍ଚଳ କମିନ୍‌ଫର୍ମ (Eastern Cominform) ଗଢ଼ାହେବାର ସୂଚନା ମିଳୁଛି । ଏହାଦ୍ୱାରା କମ୍ୟୁନିଷ୍ଟ ବିପଦ ଆହୁରି ଗୁରୁତର ଆକାର ଧରିବ ବୋଲି ବିଚାରିବା ଉଚିତ ।"

ଯେଉଁ ଜୟପ୍ରକାଶ ନିଜେ କମ୍ୟୁନିଷ୍ଟ ଥିଲେ ଏବଂ କଂଗ୍ରେସ ସୋସଲିଷ୍ଟପାର୍ଟି ଗଠନର ପ୍ରାଥମିକ ଅବସ୍ଥାରେ କମ୍ୟୁନିଷ୍ଟପାର୍ଟି ଓ କମ୍ୟୁନିଷ୍ଟଙ୍କ ସହ ବନ୍ଧୁତା ବାନ୍ଧି ପାର୍ଟିର ସ୍ୱାର୍ଥକୁ ବି

ଗୁରୁତ୍ୱ ଦେଇନଥିଲେ, ତାଙ୍କର ଏପରି ବିରୋଧ ମନୋଭାବ, ଖାଲି ଗଣତାନ୍ତ୍ରିକ ଆନ୍ଦୋଳନକୁ ଶକ୍ତିଶାଳୀ କଲା ନାହିଁ, ଭାରତର ସମାଜବାଦୀ ଆନ୍ଦୋଳନ ଓ ଚିନ୍ତାକୁ ଏକ ନୂତନ ଆଭିମୁଖ୍ୟ ଦେଲା । ଏଣିକି ଦେଶରେ ଯେତେ ସଂଗଠିତ ସୋସିଆଲିଷ୍ଟ ଶକ୍ତିର ସୃଷ୍ଟି ହେଲା, ସେଭଳି ସମାଜବାଦୀ ଚରିତ୍ର ସମ୍ବନ୍ଧରେ ଲୋକ ସମ୍ମୁଖରେ ଆଉ କୌଣସି ଗୋଳମାଳିଆ ଧାରଣା ରହିଲା ନାହିଁ । କିଏ ଅଧିକ ମାର୍କସବାଦୀ ଏବଂ କମ୍ୟୁନିଷ୍ଟ ଓ ସୋସିଆଲିଷ୍ଟଙ୍କ ଭିତରେ କଣ ଫରକ୍—ଏ ସବୁ ବିଷୟର ସ୍ପଷ୍ଟୀକରଣ ହୋଇଗଲା । ନୂତନ ପାର୍ଟିର ସ୍ୱାତନ୍ତ୍ର୍ୟ ବଜାୟ ରଖିବାରେ ଏହା ଖୁବ୍ ସାହାଯ୍ୟ କଲା । ଏହି ଦୃଷ୍ଟିରୁ ନାସିକର ନିଷ୍ପତ୍ତି ଏକ ଐତିହାସିକ ନିଷ୍ପତ୍ତି ଏବଂ ଭାରତର ସୋସିଆଲିଷ୍ଟ ଆନ୍ଦୋଳନର ପ୍ରଗତିରେ ଏକ ଯୁଗାନ୍ତକାରୀ ପଦକ୍ଷେପ ।

## ସ୍ୱାଧୀନ ସୋସିଆଲିଷ୍ଟ ଆନ୍ଦୋଳନର ଭିତ୍ତି

ନାସିକ ସମ୍ମିଳନୀରେ କଂଗ୍ରେସ ତ୍ୟାଗ ପରେ ଯେଉଁ ସୋସିଆଲିଷ୍ଟପାର୍ଟି ଗଠିତ ହେଲା, ତାହାର କାର୍ଯ୍ୟନିର୍ବାହିକା ସମିତିକୁ ଭାରତୀୟ ଗଣତାନ୍ତ୍ରିକ ସମାଜବାଦୀ ଆନ୍ଦୋଳନର ମୂଳପିଣ୍ଡ ବୋଲି ଧରାଯିବ । ସେଥିରେ ରହିଲେ—(୧) ଜୟପ୍ରକାଶ ନାରାୟଣ—ସାଧାରଣ ସଂପାଦକ (୨) ପୁରୁଷୋତ୍ତମ ତ୍ରିକମ୍‌ଦାସ-କୋଷାଧ୍ୟକ୍ଷ (୩) ଡକ୍ଟର କେ. ବି. ମେନନ (୪) ଏନ୍ ଜି. ଗୋରେ (୫) ସୁରେଶ ଦେଶାଇ (୬) ପ୍ରେମ ଭସୀନ୍ (୭) ଆଚାର୍ଯ୍ୟ ନରେନ୍ଦ୍ର ଦେବ (୮) ଡକ୍ଟର ରାମମନୋହର ଲୋହିଆ (୯) ଅଶୋକ ମେହଟା (୧୦) ଅଚ୍ୟୁତ ପଟବର୍ଦ୍ଧନ (୧୧) ୟୁସୁଫ ମେହେରଅଲି (୧୨) କମଳାଦେବୀ ଚଟ୍ଟୋପାଧ୍ୟାୟ (୧୩) ଅରୁଣା ଆସଫ ଅଲି (୧୪) ଗଙ୍ଗା ଶରଣ ସିଂହ (୧୫) ରାମନନ୍ଦନ ମିଶ୍ର (୧୬) ମୁନ୍‌ସି ଅହମଦ୍ ଦିନ (୧୭) ମଗନଲାଲ ବାଗଡ଼ି (୧୮) ଶିବନାଥ ବାନର୍ଜୀ (୧୯) ହରେଶ୍ୱର ଗୋସ୍ୱାମୀ (୨୦) ଶ୍ରେଷ୍ଠୁଭାଇ ପୁରାଣୀ (୨୧) ସୁରେନ୍ଦ୍ର ନାଥ ଦ୍ୱିବେଦୀ (୨୨) ନରେନ୍ଦ୍ରନାଥ ଦାସ (୨୩) ମଧୁ ଲିମାୟେ (୨୪) ମଣ୍ଡଳୁର୍ଦ୍ଦିନ ହାରିସ୍ (୨୫) ବି. ପି. ସିହ୍ନା ।

ଅରୁଣା ଆସଫ ଅଲି ନାସିକ ସମ୍ମିଳନୀର ମାତ୍ର କେତେଦିନ ପୂର୍ବରୁ ସୋସିଆଲିଷ୍ଟପାର୍ଟିରେ ଯୋଗଦେଇଥିଲେ । ଆମେ ଓଡ଼ିଶାରୁ ବି ବେଶୀ କେହି ଯୋଗ ଦେଇପାରିନଥିଲୁ । କେବଳ ମୁଁ, ରବୀନ୍ଦ୍ର ମୋହନ ଦାସ ଓ ବାଙ୍କବିହାରୀ ଦାସ ଉପସ୍ଥିତ ହୋଇପାରିଥିଲୁ । ନାସିକ ସମ୍ମିଳନୀର ଠିକ୍ ପ୍ରାକ୍‌କାଳରେ ଏକ ବିଷାଦପୂର୍ଣ୍ଣ ଘଟଣା ଯୋଗୁଁ ବ୍ୟକ୍ତିଗତ-ଭାବରେ ଆମ ସମସ୍ତଙ୍କ ମନରେ ଘୋର ଦୁଃଖ ହେଲା ।

## ବିନାୟକର ଅସ୍ୱାଭାବିକ ମୃତ୍ୟୁ

ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀଙ୍କର ଏକମାତ୍ର ପୁତ୍ର ବିନାୟକ, ଡାକନାମ କାଲୁର ଆକସ୍ମିକ ଆତ୍ମହତ୍ୟା ଆମ ସମସ୍ତଙ୍କୁ ଦୁଃଖସାଗରରେ ଭସାଇଦେଲା । ମୋର

ବ୍ୟକ୍ତିଗତ ସଂପର୍କ ଛଡ଼ା କାଳୁ ସୋସଲିଷ୍ଟପାର୍ଟିର କାର୍ଯ୍ୟରେ ବଡ଼ ଉତ୍ସାହ ସହକାରେ ଲାଗିଯାଇଥିଲା । ବାପା ମାଆ କଂଗ୍ରେସରେ ଏବଂ ନବବାବୁ ପୁଣି ମନ୍ତ୍ରୀ । କାଳୁ ରେଭେନ୍‌ସା କଲେଜର ପ୍ରଥମ ବାର୍ଷିକ ବିଜ୍ଞାନ ଛାତ୍ର; ବୟସ ମୋଟେ ସତର । ଏ ସବୁକୁ ପଛୁଆନକରି ସେ ଆମ ସହିତ ସଂପୂର୍ଣ୍ଣଭାବରେ ଜଡ଼ିତ ହୋଇଗଲା ଏବଂ କଟକ ସହରରେ ସାଇକେଲରେ ବୁଲି 'କୃଷକ' ବିକ୍ରୟ କରୁଥିଲା । କଟକରେ ସୋସଲିଷ୍ଟପାର୍ଟି ଉଦ୍ୟମରେ ଯେଉଁ ମେହେନ୍ତର ସଂଘ ଗଠନ କରାଗଲା ତହିଁର ସେ ଥିଲା ଜଣେ ପ୍ରଧାନ ଉଦ୍ୟୋକ୍ତା । ଛାତ୍ର ଓ ଯୁବକମାନଙ୍କୁ ପାର୍ଟି ଭିତରକୁ ଟାଣିଆଣିବାରେ ସେ ଖୁବ୍ ପାରଦର୍ଶିତା ଦେଖାଇଲା । ତା ଆଗରେ ଏକ ଉଜ୍ଜ୍ୱଳ ଭବିଷ୍ୟତ ରହିଥିଲା—ସେଥିଲାଗି ସେ ବୋଧହୁଏ ପ୍ରସ୍ତୁତ ହେଉଥିଲା । ମାତ୍ର ତାର ମୃତ୍ୟୁ ଆମ ଉପରେ ଏକ ଧକ୍‌କା ଆଣି ପହଞ୍ଚାଇଲା । ଅନେକ ସାଥି ମ୍ରିୟମାଣ ହୋଇପଡ଼ିଲେ । ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀଙ୍କର ମନର ଅବସ୍ଥା ସହଜେ ଅନୁମେୟ । ନବକୃଷ୍ଣ ଚୌଧୁରୀ ଓଡ଼ିଶା ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଇ ଏକପ୍ରକାର ସକ୍ରିୟ ରାଜନୀତିରୁ ଅପସରିଗଲେ ।

## ଓଡ଼ିଶାର ପରିସ୍ଥିତି

ମାର୍ଚ୍ଚ ମାସରେ ନାସିକଠାରେ କଂଗ୍ରେସ ପରିତ୍ୟାଗ କରିବା ନିଷ୍ପତ୍ତି ନିଆଗଲା ଏବଂ ଏପ୍ରିଲ ପହିଲା ବେଳକୁ ସମସ୍ତଙ୍କୁ କଂଗ୍ରେସ ଛାଡ଼ିବା ନିମନ୍ତେ ନିର୍ଦ୍ଦେଶ ଆସିଲା । ଆମେ ତ ୧୯୪୭ ଶେଷ ଆଡ଼କୁ ଏକ ପାର୍ଟି ଠିଆକରି କିଛି କିଛି କାର୍ଯ୍ୟାରମ୍ଭ କରିଥାଉଁ, ମାତ୍ର କଂଗ୍ରେସ ଛାଡ଼ି ଚାଲିଆସିବା କଥାଟି ବହୁତଙ୍କୁ ଚିନ୍ତାରେ ପକାଇଦେଲା । ଅବଶ୍ୟ ବିଶ୍ୱନାଥ ପଣ୍ଡିତ, ବାଙ୍କବିହାରୀ ଦାସ, ନିଶାମଣି ଖୁଣ୍ଟିଆ, ଅନିଲ କୁମାର ଘୋଷ ପ୍ରଭୃତି ଯେଉଁମାନେ ୧୯୪୨ ସଂଗ୍ରାମ ଭିତର ଦେଇ ଆସିଥିଲେ, ସେମାନଙ୍କର କଂଗ୍ରେସ ପ୍ରତି ଏତେ ମାୟା ବଢ଼ିନଥିବ; ମାତ୍ର ଆମେସବୁ—ଯଥା ମୁଁ, ରବୀନ୍ଦ୍ରମୋହନ ଦାସ, ଗୌରଚନ୍ଦ୍ର ଦାସ, ଆକୁଳାନନ୍ଦ ବେହେରା, ରବି ଘୋଷ, ଲୋକନାଥ ରାୟ ଓ ପ୍ୟାରମୋହନ ଦାସ, ନରସିଂହ ମହାନ୍ତି ଆଦି ଯେଉଁମାନେ ୧୭/୧୮ ବର୍ଷରୁ ବେଶିକାଳ କଂଗ୍ରେସକୁ ପ୍ରାୟ ଆମର ଘରକରିଥିଲୁ, ଜେଲ ଭୋଗିଥିଲୁ, ବନ୍ଧୁ ସାଙ୍ଗସାଥି ପରିଚିତ ବନ୍ଧନ ବାନ୍ଧିଥିଲୁ, ତାଙ୍କ ପକ୍ଷରେ ସେଥିରୁ ସଂପର୍କ ସଂପୂର୍ଣ୍ଣରୂପେ ତୁଟାଇଦେବା ଏକ କଷ୍ଟଦାୟକ ବିଷୟ ଥିଲା । ବ୍ୟକ୍ତିଗତ ଭାବରେ ମୋର ପୁଣି ସବୁ ଅନିଶ୍ଚିତ ଅବସ୍ଥାରେ ଥାଏ । ଅଳ୍ପ କେତେମାସ ଆଗରୁ ବିବାହ କରିଥାଏ; ମାତ୍ର ନିଜର ବାସ ବା ଅନ୍ନସଂସ୍ଥାନର କିଛି ବ୍ୟବସ୍ଥା କରିପାରିନଥାଏ । ମାମୁଁ ପଣ୍ଡିତ ଆକୁଳ ମିଶ୍ରଙ୍କ ଉପରେ ପୂରା ନିର୍ଭରଶୀଳ । ବିବାହପରେ ଆଉ ସେପରି ବୋଝ ହୋଇ ରହିବା ଠିକ୍ ନୁହେଁ; ନିଜର କିଛି ସ୍ୱାଧୀନ ଉପାର୍ଜନ ବ୍ୟବସ୍ଥା କରିବା ଉଚିତ—ଏହା ଆମେ ଦୁହେଁ ଚିନ୍ତା କରୁଥିଲୁ ଏବଂ କିଛି ଉପାୟ ବାହାରିବ ବୋଲି ଆଶା କରୁଥିଲୁ । ମାତ୍ର ପୁଣି ବିରାଟ ଅନିଶ୍ଚୟତା ଭିତରେ ପ୍ରବେଶ

କରିବାକୁ ପଡ଼ିଲା । ଏତେ ବଡ଼ ଏକ ରାଜନୀତିକ ସିଦ୍ଧାନ୍ତକୁ କାର୍ଯ୍ୟକାରୀ କରିବାର ମୁଖ୍ୟ ଦାୟିତ୍ୱ ପୁଣି ମୋର—ମୁଁ ଅନ୍ୟ ବିଷୟ ଦେଖିବାକୁ ଫୁରୁସତ୍ କେଉଁଠୁ ପାଇବ ? ପ୍ରାଦେଶିକ ପାର୍ଟି ହାତରେ କିଛି ପାଣ୍ଠି ନ ଥାଏ କିମ୍ବା କେନ୍ଦ୍ର ପାର୍ଟି ତରଫରୁ କିଛି ପାରିଶ୍ରମିକ ଦେବାର ବ୍ୟବସ୍ଥା ନଥାଏ । ସବୁ ପାଣ୍ଠି ସଂଗ୍ରହ କରିବାକୁ ପଡୁଥିଲା—ସେଥିରୁ ପୁଣି ବ୍ୟକ୍ତିଗତ ଖର୍ଚ୍ଚ ହୋଇପାରନ୍ତା କେମିତି ! ଏସବୁ କଥା ଭାବିବାକୁ ଫୁରୁସତ୍ ମିଳିଲା ନାହିଁ—ଆମେ କଂଗ୍ରେସ ଛାଡ଼ିଲୁ, ପୁରୁଣା ସାଥି ସମସ୍ତେ ପୁଣି ଏକ ନୂଆ ଡଙ୍ଗା ବାହିବାକୁ ଅଣ୍ଟା ଭିଡ଼ିଲୁ । ମୋର ସ୍ତ୍ରୀ ଗୀରୁ ତ ଏକ କଂଗ୍ରେସ ପରିବାରରୁ ଆସିଥିଲା—ମୋର ଶାଶୁ ଶଶୁର ଉଭୟେ ଜେଲଯାତ୍ରୀ—ତେଣୁ ଗୀରୁ ମୋର ସିଦ୍ଧାନ୍ତକୁ କିପରି ଗ୍ରହଣ କରିବ ଏହା ଯେମିତି ମୋ ମନରେ ଟିକିଏ ଭାବନା ପଶିଥିଲା । ଗୀରୁ କିନ୍ତୁ ମୋ କାର୍ଯ୍ୟରେ ପୂରା ସମର୍ଥନ ଜଣାଇଲା ଏବଂ କଟକ ଗୌରୀଶଙ୍କର ପାର୍କରେ ଆମେ କଂଗ୍ରେସ ତ୍ୟାଗ ଓ ସ୍ୱାଧୀନ ସୋସଲିଷ୍ଟ ପାର୍ଟିର ଘୋଷଣା ନିମନ୍ତେ ଯେ ସଭା କରିଥିଲୁ ସେଥିରେ ମଧ୍ୟ ଆସି ଯୋଗଦେଇଥିଲା । କିନ୍ତୁ ଏକ ରାଜନୀତିକ ଆଦର୍ଶ ପ୍ରାପ୍ତି ଲାଗି ଏମାନେ ସମସ୍ତେ ତ୍ୟାଗ କରିବାକୁ ପ୍ରସ୍ତୁତ ହୋଇ ବାହାରିଲେ । ଏତେବେଳେ, ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ଭାଷାରେ —ବନସ୍ତରେ ବୁଲିବା ଲାଗି ପ୍ରସ୍ତୁତ ହୋଇ ଯେଉଁ କେତେଜଣ ଓଡ଼ିଶାରେ ସୋସଲିଷ୍ଟ ପାର୍ଟିର ନୂତନ ମୂଳଦୁଆ ସ୍ଥାପନା କଲେ ସେମାନେ ଓଡ଼ିଶାରେ ସମାଜବାଦୀ ଆନ୍ଦୋଳନର ହେଲେ ମୂଳକର୍ତ୍ତା ।

ଆମର କଂଗ୍ରେସ ତ୍ୟାଗ ସତେ କି ଏ ନୂତନ ଯୁଗର ଆହ୍ୱାନ ପରି ହେଲା । ଅତି ଅଳ୍ପ କେତେମାସ ଭିତରେ ସୋସଲିଷ୍ଟ ପାର୍ଟି ସାରା ପ୍ରଦେଶରେ ମୁଣ୍ଡ ଟେକିଲା—ଛାତ୍ର ଯୁବଶକ୍ତି ବହୁଳଭାବରେ ଏଥିପ୍ରତି ଆକୃଷ୍ଟ ହେଲେ । ମୋର ତ ମନେହେଉଛି ଏହାର ଏକ ଐତିହାସିକ ଆବଶ୍ୟକତା ରହିଥିଲା । କଂଗ୍ରେସ ସଙ୍ଗଠନ ଯେପରି କ୍ଷମତା ପିପାସୁଙ୍କ ହାତରେ ରହିଗଲା, ଯୁବ ଛାତ୍ରଶକ୍ତି ସେଥିରେ ସେପରି ଆଗ୍ରହୀ ହୋଇପାରିଲେ ନାହିଁ; ଅଧିକାଂଶ ଜାତୀୟ ସ୍ରୋତରେ ନ ରହି ହୁଏତ କମ୍ୟୁନିଷ୍ଟ ବା ଅନ୍ୟ ଦଳଗୁଡ଼ିକୁ ଚାଲି ଯାଇଥାଆନ୍ତେ । ନୂତନ ଲୋକଙ୍କ ପ୍ରବେଶ ଓ ଆଗ୍ରହ ଦେଖି ମୋର ଉତ୍ସାହ ବଢ଼ିଲା । କୃଷକ, ଶ୍ରମିକ, ଯୁବକ, ଛାତ୍ର ଓ ସାଂସ୍କୃତିକ ସବୁ ଦିଗରେ ଆମ କାର୍ଯ୍ୟର ପ୍ରସାର ଘଟିଲା । ନୂତନ ସାଥିମାନଙ୍କୁ ନୂଆ ନୂଆ ଦାୟିତ୍ୱ ଦିଆଗଲା । ମୁଁ ମୋର ଦୀର୍ଘ ରାଜନୀତିକ ଅଭିଜ୍ଞତାରୁ କହିବି ନୂତନ ଯୁବକମାନଙ୍କୁ ଦାୟିତ୍ୱ ଦେବାରେ କାର୍ଯ୍ୟର କ୍ଷତି ନହୋଇ ଲାଭ । ଯେଉଁଠି ଅନ୍ୟ କେହି କୌଣସି ପଦବୀରେ ରହିଗଲେ ତାର ପ୍ରଭାବ ବୃଦ୍ଧି ପାଇବ ଏବଂ ସେ ପୁଣି ମୁଖ୍ୟନେତାଙ୍କୁ ଚ୍ୟାଲେଞ୍ଜ କରିବାର ଆଶଙ୍କା ଥାଏ, ସେଠାରେ ନାନା ବାଧା ପ୍ରତିବନ୍ଧକ ରଖାଯାଏ । ନେତୃତ୍ୱ ଲାଗି ବିବାଦ ହୁଏ । ମୁଁ କିନ୍ତୁ ଦେଖିଲି, ଏପରି ଦାୟିତ୍ୱ ବଣ୍ଟନ ଫଳରେ ମୋ ପ୍ରତି ଆମର ଅନ୍ୟ ସାଥିମାନଙ୍କର ଶ୍ରଦ୍ଧା, ଭକ୍ତି ଓ ଆଦର ବୃଦ୍ଧି ପାଇଲା । ମୁଁ ପ୍ରାଦେଶିକ କଂଗ୍ରେସ କମିଟିର ସଂପାଦକ ଭାବରେ ଏକ

ପ୍ରାଦେଶିକ ସ୍ତରର କର୍ମୀ ଭାବରେ ଖ୍ୟାତ ଲଭିଥିବାରୁ ପ୍ରଦେଶ ସାରା ଗସ୍ତ କରି ନୂଆ ନୂଆ ଲୋକଙ୍କ ସହ ସମ୍ପର୍କ ସ୍ଥାପନ କରିବା ଏବଂ ସେମାନଙ୍କୁ ପାର୍ଟି ଭିତରକୁ ଟାଣିଆଣିବାରେ ସାହାଯ୍ୟ କଲା । ପ୍ରଦେଶର ଯେ କୌଣସି ବଡ଼ ସମସ୍ୟାରେ ମୁଁ ନିଜେ ଯାଇ ଜଡ଼ିତ ହୋଇପାରୁଥିଲି ଏବଂ ପ୍ରେସ ବିବୃତି ଆଦି ଦେଉଥିଲି । ତହୁଁ କେବଳ ଯେଉଁ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଆମର ଶ୍ରେଣୀ ସଙ୍ଗଠନ ଆଦି ହେଉଥିଲା, ତାହା ଅପେକ୍ଷା ବ୍ୟାପକ କ୍ଷେତ୍ରରେ ଏକ ପ୍ରାଦେଶିକ ରାଜନୀତିକ ଦଳ ହିସାବରେ ପ୍ରତିଷ୍ଠା ଲଭିବାରେ ସାହାଯ୍ୟ କଲା । ଆମେ ଆଉ କଂଗ୍ରେସର ଆଭ୍ୟନ୍ତରୀଣ ବିବାଦରେ ସଂପୃକ୍ତ ହେଲୁ ନାହିଁ ଏବଂ କଂଗ୍ରେସର ନୀତିଗତ ଓ ମନ୍ତ୍ରୀମଣ୍ଡଳର ଦୋଷାବହ କାର୍ଯ୍ୟର ତୀବ୍ର ସମାଲୋଚନା କଲୁ । ଉଦାହରଣ ସ୍ୱରୂପ, କଂଗ୍ରେସ ଜମିଦାରୀ ଉଚ୍ଛେଦ ଲାଗି ନିଷ୍ପତ୍ତି ନେଇଥାଏ; ମାତ୍ର ଏଠିକା ପ୍ରଧାନମନ୍ତ୍ରୀ ମହତାବ ସେ କାର୍ଯ୍ୟଟି ହେଲାକଲେ ଏବଂ ନାନାପ୍ରକାର ପେନ୍ସ ପୂରାଇ ଗୃହୀଙ୍କ ସ୍ୱାର୍ଥହାନି ହେବାଭଳି ବ୍ୟବସ୍ଥା ଖଞ୍ଜିଦେଲେ । ସୋସଲିଷ୍ଟ ପାର୍ଟି ତରଫରୁ ସଙ୍ଗେ ସଙ୍ଗେ ପ୍ରଦେଶ ସାରା ଏହାର ପ୍ରତିବାଦ ସଙ୍ଗଠନ କରାଗଲା ଏବଂ ମୋ ଲିଖିତ 'ମହତାବଙ୍କ ଜମିଦାରୀ ରକ୍ଷା ଯୋଜନା' ପୁସ୍ତିକାଟିର ବହୁଳ ପ୍ରଚାର ହେଲା । ଆମର ଭାଗଚାଷୀ ଓ କୃଷକ ଆନ୍ଦୋଳନ ବେଶ୍ ଜମି ଆସିଥାଏ, ଏହା ତାହାର ପ୍ରସାରରେ ଖୁବ୍ ସାହାଯ୍ୟ କଲା । ଯେଉଁ ସବୁ ଜିଲ୍ଲାରେ ଆମ ପକ୍ଷରେ ପାର୍ଟି ସଙ୍ଗଠନ ଆରମ୍ଭ କରିବା କଷ୍ଟକର ହେଉଥିଲା, ସେଠାରେ କୃଷକ ଆନ୍ଦୋଳନ ଜରିଆରେ ପ୍ରବେଶ କରାଯାଇ ପାରିଲା । ହୀରାକୁଦ ଜଳଯୋଜନା ଓ ଅନ୍ୟ-କେତେକ ବ୍ୟାପାରରେ ଓଡ଼ିଶା ସରକାରର ଦୁର୍ବଳତା ଓଡ଼ିଶା ଲୋକଙ୍କ ମନରେ ଧକ୍କା ପହଞ୍ଚାଇଥିଲା । ସେତେବେଳେ ମୁଁ ସେ ସବୁ ଅଞ୍ଚଳ ନିଜେ ଗସ୍ତ କରି ସବୁ ତଥ୍ୟ ଲୋକଙ୍କ ନଜରକୁ ଆଣିବାରେ ଜନମତର ପ୍ରଭାବ ଓଡ଼ିଶା ସରକାର ଉପରେ ପଡ଼ିଲା ଏବଂ ସରକାର ଅନେକ ବିଷୟ ସୁଧାରିବାକୁ ବାଧ୍ୟହେଲା ।

ପାର୍ଟିର ପ୍ରସାର ଓ କାର୍ଯ୍ୟ ସମ୍ବନ୍ଧରେ ପୁଣି ପରେ ଆଲୋଚିତ ହେବ । କିନ୍ତୁ ଏ ପ୍ରାଥମିକ ଅବସ୍ଥାରେ ଯେଉଁ ଯୁବକମାନେ ଆସି ଓଡ଼ିଶାରେ ସୋସଲିଷ୍ଟ ଆନ୍ଦୋଳନକୁ ପରିପୁଷ୍ଟ କଲେ, ସେମାନଙ୍କ ଭିତରୁ କେତେକଙ୍କ ନାମୋଲ୍ଲେଖ ନକରି ରହିପାରୁନାହିଁ । ସମସ୍ତଙ୍କର ନାମ ତ ଲେଖିହେବ ନାହିଁ ଏବଂ ସବୁ ନାମ ବି ମୋର ସ୍ମରଣ ହେଉନାହିଁ । ତହିଁ ଭିତରୁ କେତେକ ଭିନ୍ନ ରାଜନୀତିକ ଦଳ ନୁହେଁ, ଅନ୍ୟ କ୍ଷେତ୍ରରେ ବି ଯାଇ ରହିଗଲେଣି— ରାଜନୀତିରୁ ସମ୍ପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇଗଲେଣି । ପରବର୍ତ୍ତୀ କାଳରେ ଯେଉଁମାନେ ଆସିଲେ ତାଙ୍କ କଥା କହୁନାହିଁ—୧୯୪୮ରେ ଆମେ କଂଗ୍ରେସ ଛାଡ଼ିଲା ବେଳକୁ ପୁରୀର ଡାକ୍ତର ବସନ୍ତକୁମାର ନନ୍ଦଙ୍କ ପରି ଅଭିଜ୍ଞ ଓ ପୁରୁଖା ଲୋକଙ୍କ ବ୍ୟତୀତ ଯେଉଁ ଯୁବକ ଓ ଛାତ୍ରମାନେ ପ୍ରାୟ ସମସ୍ତ ସମୟ ଦେଇ ଓଡ଼ିଶାର ସମାଜବାଦୀମାନଙ୍କୁ ପୁଷ୍ଟ କରିଥିଲେ ସେମାନେ ହେଲେ ପ୍ରଦୀପ୍ତ କିଶୋର ଦାସ, ରାଜକିଶୋର ସାମନ୍ତରାୟ, ଧୂଳୀଶ୍ୱର ବରିହା, ରବି ରାୟ, ଗୋବିନ୍ଦ ଦାସ, କିଶାନ୍ ପଟ୍ଟନାୟକ, ଦେବୀପ୍ରସନ୍ନ ପଟ୍ଟନାୟକ, ବିଶ୍ୱନାଥ ସାହୁ, ଗିରୀଶ ଚନ୍ଦ୍ର ରାୟ,

ବସନ୍ତ କୁମାର ସାହୁ, ଗଣନାଥ ପ୍ରଧାନ, ପ୍ରଦେଶୀ ନାୟକ, ସୁଦର୍ଶନ ତ୍ରିପାଠୀ, ନରସିଂହ ମିଶ୍ର, ଶରତଚନ୍ଦ୍ର ପାଣିଗ୍ରାହୀ, ହନୁମାନ ପ୍ରସାଦ ପାଣିଗ୍ରାହୀ, ନିତ୍ୟାନନ୍ଦ ପଣ୍ଡା, ରାଜେନ୍ଦ୍ର ଦଣ୍ଡସେନା, ନିହାର ଘୋଷ, ଉତ୍ସବଚରଣ ଜେନା, ବୈଷ୍ଣବ ଚରଣ ନାୟକ, ଶ୍ୟାମଳୀ ଲହଡ଼ି, କୁଳମଣି ମହାପାତ୍ର, ସହଦେବ ମିଶ୍ର, ଗୋବିନ୍ଦ ମିଶ୍ର, ନାରାୟଣ ସାହୁ, ବନମାଳୀ ମହାରଣା, ତାରିଣୀ ଚରଣ ପଟ୍ଟନାୟକ, ମଦନମୋହନ ସାହୁ, ଦୟାନିଧି ମହାପାତ୍ର, ବିପ୍ରଚରଣ ଷଡ଼ଙ୍ଗୀ, କଣ୍ଢେଇ ଚରଣ ମଲ୍ଲିକ୍, ବାବୁଲାଲ ଦୋଷୀ, ଭଗବତ ପ୍ରସାଦ ମହାନ୍ତି, ଡାକ୍ତର ସଦ୍ଭେକ କାନୁନ୍‌ଗୋ । ରାଜକିଶୋର ସାମନ୍ତରାୟଙ୍କର ପ୍ରକୃତ ନାମ ହେଉଛି ବ୍ରଜେନ୍ଦ୍ର ସାମନ୍ତରାୟ । ସେ ଓଡ଼ିଶା ସରକାରଙ୍କ ଶିକ୍ଷାବିଭାଗରେ ଚାକିରି କରୁଥିବା ଅବସ୍ଥାରେ ଲୁକ୍କାୟିତ ଭାବରେ ପାର୍ଟି ଅଫିସରେ କାର୍ଯ୍ୟ କରୁଥିବାରୁ ତାଙ୍କ ନାମ ବଦଳାଇ ଦିଆଯାଇଥିଲା । ପରେ ସେ ଚାକିରିରୁ ଏକ ଧର୍ମଘଟ ସଂକ୍ରାନ୍ତରେ ବରଖାସ୍ତ ହେଲେ, କିନ୍ତୁ ଏହି ନାମଟି ତାଙ୍କର ରହିଗଲା । ଦେବୀପ୍ରସନ୍ନ ପଟ୍ଟନାୟକ ଛାତ୍ରାବସ୍ଥାରେ ବି ୧୯୪୯ରେ ସାଲେପୁରଠାରେ ଯେଉଁ ପାର୍ଟି ସମ୍ମିଳନୀ ହୋଇଥିଲା ସେଥିରେ ପ୍ରାଦେଶିକ କାର୍ଯ୍ୟକାରୀ ସମିତିକୁ ନିର୍ବାଚିତ ହୋଇଥିଲେ । ସେ ଏବେ ମହୀଶୂରସ୍ଥ ଭାରତ ସରକାରଙ୍କ ସ୍ଥାପିତ ଭାରତୀୟ ଭାଷା ବିଜ୍ଞାନ ପରିଷଦର ମୁଖ୍ୟ ଡିରେକ୍ଟର୍ । ଗୋବିନ୍ଦ ଦାସ ଯେ କିଛିଦିନ 'କୃଷକ'ର ସହସଂପାଦକ ଥିଲେ ଏବେ ଓଡ଼ିଶାର ଆଡ୍‌ଭୋକେଟ୍ ଜେନେରାଲ୍ ହୋଇଥିଲେ ।

ସାରା ଭାରତରେ ଯେପରି ପାର୍ଟି ସଂଗଠନର ପ୍ରସାର ନିମନ୍ତେ ସମସ୍ତେ ଲାଗିପଡ଼ିଲେ, ସେହିଭଳି ଆମର ଓଡ଼ିଶାର ସାଥୀମାନେ ସାମାଜିକ ଓ ସାଂସ୍କୃତିକ ସ୍ତରରେ ଏବଂ ରାଜନୀତିକ ସ୍ତରରେ ସୋସଲିଜିମ ପ୍ରଚାରରେ ଲାଗିଗଲେ । ୧୯୪୭-୪୮ ଭିତରେ ମୁଖ୍ୟ ହେଲା ଚାଷୀ ଆନ୍ଦୋଳନ ଏବଂ ଗଡ଼ଜାତ ପ୍ରଜା ଆନ୍ଦୋଳନ । ୧୯୪୮ରେ ଗଡ଼ଜାତର ମିଶ୍ରଣକୁ ଗୋଟାଏ ବଡ଼ ବିଜୟ ବୋଲି ବିଚାରିଲୁ । ଉପର ସ୍ତରରେ ଯେ ଯାହା କରିବାର ବାହାଦୁରି ନେବାକୁ ଚେଷ୍ଟା କରିଥାଆନ୍ତୁ ପଛକେ, ଜନଆନ୍ଦୋଳନ ସ୍ତରରେ ଓଡ଼ିଶାରେ ଗଡ଼ଜାତର ମିଶ୍ରଣର ଶ୍ରେୟ ନିଶ୍ଚିତଭାବରେ ଶ୍ରୀ ସାରଙ୍ଗଧର ଦାସ ଓ ସୋସଲିଷ୍ଟମାନଙ୍କର । ଏହି କାର୍ଯ୍ୟରେ କୃଷକ ଏକ ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିଥିଲା । ପ୍ରେସ ଆକ୍ଟ ଏବଂ ଅନ୍ୟାନ୍ୟ ଆଇନ୍ କଟକଣାକୁ ପରୁଆ ନ କରି ନିର୍ଭୟରେ ଗଡଜାତ-କାହାଣୀ ପ୍ରକାଶ କଲା ଏବଂ 'ଲଣ୍ଡା ଦେହୁରୀ' ନାମରେ ସାରଙ୍ଗଧର ଦାସଙ୍କର·ଏ ସଂପର୍କୀୟ ଲେଖାଗୁଡ଼ିକ ଲୋକଙ୍କ ମନ ଆକର୍ଷଣ କରିଥିଲା ।

ବୃହତ୍ତର ଉତ୍କଳ ଗଠନରେ ମଧ୍ୟ ଆମେ ଆମର ଯଥାଶକ୍ତି କର୍ତ୍ତବ୍ୟ କରିଛୁ । ବିହାରକୁ ଦାନ କରାଯାଇଥିବା ଷଢ଼େଇକଳା ଖରସୁଆଁକୁ ମୁଁ ଯାଇ କେବଳ ବଡ଼ ବଡ଼ ସଭାସମିତି କରିନଥିଲି, ମୟୂରଭଞ୍ଜ ମିଶ୍ରଣ ଲାଗି ସୋସଲିଷ୍ଟମାନେ ମୁଖ୍ୟତଃ ଦାୟୀ ବୋଲି କହିବାଟା କିଛି ଅତିରଞ୍ଜିତ ହେବ ନାହିଁ । ମୟୂରଭଞ୍ଜରେ କିଭଳି ଆନ୍ଦୋଳନ ହୋଇଥିଲା, ପୂର୍ବରୁ ବର୍ଣ୍ଣନା କରାଯାଇଛି ।

ସୋସଲିଷ୍ଟ ପାର୍ଟିର ବଧିବଦ୍ଧ ସଂଗଠନ ସେଠାରେ କରାଗଲା ଏବଂ ୧୯୪୮ ମସିହା ଜୁଲାଇ ୧୫ ତାରିଖରେ ମୟୂରଭଞ୍ଜରେ ଉତ୍କଳ ସୋସଲିଷ୍ଟ ପାର୍ଟିର କାର୍ଯ୍ୟକାରୀ ସମିତିର ଏକ ବୈଠକ ବସିଥିଲା । ସେଥିରେ ଅନ୍ୟ ଅନେକ ପ୍ରସ୍ତାବ ଭିତରେ ମୟୂରଭଞ୍ଜ ପରିସ୍ଥିତି ସମ୍ବନ୍ଧରେ କୁହାହେଲା—"ସୋସଲିଷ୍ଟ ପାର୍ଟିର କାର୍ଯ୍ୟକାରୀ କମିଟି ମୟୂରଭଞ୍ଜର ତଥାକଥିତ ପ୍ରଜା ସରକାରଙ୍କ ଏକଛତ୍ର ଶାସନର ଘୋର ନିନ୍ଦା କରୁଛି ଏବଂ ମୟୂରଭଞ୍ଜବାସୀଙ୍କୁ ଆହ୍ୱାନ କରୁଛି ଯେ, ସେମାନେ ସଂଗଠିତ ହୋଇ ସରକାରଙ୍କ ବ୍ୟାପକ ଜୁଲମର ବିରୋଧ କରନ୍ତୁ । ନାଗରିକ ସ୍ୱାଧୀନତା ରକ୍ଷା ପାଇଁ ସୋସଲିଷ୍ଟ ପାର୍ଟି ଯେଉଁ ସଂଗଠିତ କାର୍ଯ୍ୟ କରୁଛି, ତାକୁ ସମର୍ଥନ ଓ ସାହାଯ୍ୟ କରନ୍ତୁ ।"

୧୯୪୯ରେ ମୟୂରଭଞ୍ଜ ଓଡ଼ିଶାରେ ମିଶିବା ପର୍ଯ୍ୟନ୍ତ ଶରତ୍‌ଚନ୍ଦ୍ର ଦାସଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ ସରକାର ସେଠି ଚାଲିଥିଲା ଏବଂ ପ୍ରସନ୍ନ କୁମାର ଦାସ, ହରିହର ମହାନ୍ତି, ଭକ୍ତ ଚରଣ ମହାନ୍ତି, ଗୌରମୋହନ ମହାପାତ୍ର, ସାଳକ ସରେନ୍, ପୂର୍ଣ୍ଣଚନ୍ଦ୍ର ମହାନ୍ତି, ପୂର୍ଣ୍ଣ ହାଂସଦା ଏସବୁ ତାଙ୍କ ସହିତ ଥାଆନ୍ତି । ମିଶ୍ରଣ ପରେ ଏମାନେ ଆଉ କଂଗ୍ରେସକୁ ନଯାଇ ମୋ ସହିତ ଦୀର୍ଘ କଥାବାର୍ତ୍ତା ପରେ ସୋସଲିଷ୍ଟ ପାର୍ଟିରେ ଯୋଗଦେଲେ ଏବଂ ବହୁବର୍ଷ ଆନ୍ଦୋଳନର ଅଗ୍ରଭାଗରେ ଉକ୍ତ ଜିଲ୍ଲାରେ କାର୍ଯ୍ୟ କରିଥିଲେ; ସେମାନଙ୍କ ମଧ୍ୟରୁ କେତେକ ସୋସଲିଷ୍ଟ ପ୍ରାର୍ଥୀ ଭାବରେ ବିଧାନସଭାର ସଦସ୍ୟ ବି ହୋଇଥିଲେ । ଶରତ୍‌ଚନ୍ଦ୍ର ଦାସ ମଧ୍ୟ ବଡ଼ ସହାନୁଭୂତିସଂପନ୍ନ ଥିଲେ ଏବଂ ୧୯୪୯ରେ ଯେତେବେଳେ ଜୟପ୍ରକାଶ ନାରାୟଣଙ୍କର ଓଡ଼ିଶାର ଗୁରିଆଡ଼େ ଗସ୍ତ ପଡ଼ିଲା, ସେତେବେଳେ ବାରିପଦାରେ ଗଠିତ ଅଭ୍ୟର୍ଥନା ସମିତିର ସଭାପତି ଥିଲେ ଶ୍ରୀ ଶରତ୍‌ଚନ୍ଦ୍ର ଦାସ ।

## ୧୯୪୮ ଅଗଷ୍ଟ ଦିବସ ପ୍ରତି ମନୋଭାବ

୧୯୪୮ରେ ସ୍ୱାଧୀନତାର ଏକବର୍ଷ ପୂର୍ତ୍ତି ନିମନ୍ତେ ଉତ୍ସବ ପାଳିତ ହେଲା । ସେତେବେଳର ପରିସ୍ଥିତି ସମ୍ବନ୍ଧରେ ସୋସଲିଷ୍ଟପାର୍ଟିର ପର୍ଯ୍ୟାଲୋଚନା 'କୃଷକ'ରେ ପ୍ରକାଶିତ ନିମ୍ନଲିଖିତ ସଂପାଦକୀୟରୁ ବୁଝାପଡ଼ିବ । 'ଏଇଥିପାଇଁ କଣ ସ୍ୱାଧୀନତା' ଶିରୋନାମାରେ ମୁଁ ଲେଖିଥିଲି—

୧୯୪୭ ଅଗଷ୍ଟ ପନ୍ଦରରୁ ୧୯୪୮ ଅଗଷ୍ଟ ପନ୍ଦର—ପୂରା ଏକବର୍ଷ । ସ୍ୱାଧୀନ ହେଲା ଭାରତ; ଆମେ ସମସ୍ତେ ସ୍ୱାଧୀନ ନାଗରିକ । କିନ୍ତୁ ଆଜି କାହିଁ ବର୍ଷକ ତଳର ସେ ଉତ୍ସାହ ଆନନ୍ଦ ଉନ୍ମାଦନା—କାହିଁ ପୁରପଲ୍ଲୀ ଗୁରିଆଡ଼େ ଉତ୍ସବ ! ସରକାରୀ ହୁକୁମନାମା ବାହାରିଛି—କଂଗ୍ରେସ ସଭାପତି ନିବେଦନ କରିଛନ୍ତି—ଅଗଷ୍ଟ ପନ୍ଦରରେ ସ୍ୱାଧୀନତା ମିଳିଥିଲା—ସେ ଦିବସ ପାଳିବାକୁ ହେବ, ଲୋକଙ୍କୁ ଚେତାଇବାକୁ ହେବ; ସେଥିପାଇଁ

ଗୃହଆଡ଼େ ସଭାସମିତିର ଯୋଗାଡ଼—ହାକିମ ହୁକୁମା ମିଳାମିଶି ବାଧ୍ୟରକ୍ଷା ଲାଗି କରିବେ । କିନ୍ତୁ ଜନସାଧାରଣଙ୍କର ସେ ପ୍ରାଣପୂର୍ଣ୍ଣ ସହଯୋଗ ବା ଉତ୍ସାହ ଏଥିରେ ନାହିଁ କାହିଁକି ? ବର୍ଷକ ଭିତରେ କି ବିରାଟ ପରିବର୍ତ୍ତନ !

ଏହାର କାରଣ କଣ ? ଇଂରେଜ ଯାଇ ବି ଯାଇନାହିଁ । ପାକିସ୍ଥାନ ଓ ହାଇଦ୍ରାବାଦରେ ଇଂରେଜ ଆଡ୍‌ଡା ଜମାଇଛୁ । ଭାରତ ଏବେ ସୁଦ୍ଧା ଇଂରେଜ ରାଜ୍ୟ-ଗୋଷ୍ଠୀରେ ରହିଛୁ । ପୂର୍ଣ୍ଣରୂପେ ସଂପର୍କ ତୁଟାଇବା କଥା କଳ୍ପିତ କରାଯାଉନାହିଁ । ପଣ୍ଡିତ ଜବାହରଲାଲ ଡୋମିନିୟନ ମନ୍ତ୍ରୀସମ୍ମିଳନୀରେ ଯୋଗଦେବାର ଆଶା ରଖିଛନ୍ତି । ଦେଶୀ ବଡ଼ଲାଟ୍ ରାଜଗୋପାଳାଚାରୀଙ୍କୁ ବ୍ରିଟିଶ ସମ୍ରାଟ ପାଖରେ ଅନୁଗତ ବୋଲି ସ୍ୱୀକାର କରିବାକୁ ପଡ଼ୁଛି । ଆମେ ସ୍ୱାଧୀନ ହୋଇ ସୁଦ୍ଧା ଭାରତୀୟ ପ୍ରଜା ନୋହୁ, ବ୍ରିଟିଶ ପ୍ରଜା ହୋଇ ରହିଛୁ । ଏହି ସ୍ୱାଧୀନତା ଲାଗି କଣ ଆମେ ଲଢ଼ାଇ କରିଥିଲେ ?

ବର୍ଷକ ଭିତରେ କଂଗ୍ରେସ ହାତକୁ ଶାସନ ଆସି, ହୋଇଛି—ଦେଶପିତା ମହାତ୍ମାଗାନ୍ଧୀଙ୍କ ହତ୍ୟା, ସାଂପ୍ରଦାୟିକ କଳହରେ ଲକ୍ଷ ଲକ୍ଷ ଲୋକଙ୍କର ହତ୍ୟାକାଣ୍ଡ, ଲକ୍ଷ ଲକ୍ଷ ଶରଣାର୍ଥୀ ପଥର ଭିକାରି, ହାଇଦ୍ରାବାଦର ନିଜାମ ପୁଷ୍ଟିତ ରଜାକାରଙ୍କ ନଗ୍ନ ନୃତ୍ୟ ଏବଂ ତାହାର ଦମନଲାଗି ଭାରତ ସରକାରର ଅକ୍ଷମତା, ପୁଞ୍ଜିପତିଙ୍କି ବଞ୍ଚାଇ ରଖିବାଲାଗି ବଜେଟ, ଦଶବର୍ଷ ପର୍ଯ୍ୟନ୍ତ ଶୋଷଣ ଓ ଲୁଟ କରିବାଲାଗି ପୁଞ୍ଜିପତିମାନଙ୍କୁ ପଟ୍ଟା, ଚୋରାବଜାର, ଲାଞ୍ଚମିଛ ଓ ଜୁଆଚୋରି ଲାଗି ମୁକ୍ତ ବ୍ୟବସ୍ଥା, ଶ୍ରମିକର ଶ୍ରେଣୀ-ସଙ୍ଗଠନରେ ବାଧା ଓ ଦମନ, ପୂର୍ବ ପ୍ରତିଶ୍ରୁତି ଭୁଲି ଜମିଦାରୀ ଓ ରାଜାରାଜୁଡ଼ା ସାଆନ୍ତମାନଙ୍କର ଅଧିକାର ଲୋପ କରିବା ନିମନ୍ତେ ଅକ୍ଷମଣୀୟ ଅବହେଳା, ନାଗରିକ ସ୍ୱାଧୀନତା ଉପରେ ହସ୍ତକ୍ଷେପ, ଅର୍ଡିନାନ୍‌ସ ଓ ନିରାପତ୍ତା ଆଇନ ଜାରି, ଯୁକ୍ତପ୍ରଦେଶ ନିର୍ବାଚନ ପରେ ବିରୋଧୀ ରାଜନୀତିକ ଦଳର ଦମନ ନିମନ୍ତେ ଫାସିଷ୍ଟ ନୀତିର ପ୍ରୟୋଗ ଏବଂ ଗୃହଆଡ଼େ ଭୟ ଓ ଆତଙ୍କର ପ୍ରସାର—ଏକବର୍ଷ କଂଗ୍ରେସ ଶାସନରେ ଏହା ଦେଶର ଲାଭ ।

ଭାରତର ଗରିବ ଜନତା ଏବେ ବି ସେମିତି ଭୋକରେ ମରୁଛି । ପିନ୍ଧିବାକୁ ନାହିଁ, ବେମାରିକି ଔଷଧ ନାହିଁ, ପିଲାକୁ ପଢ଼ାଇବାର ବ୍ୟବସ୍ଥା ନାହିଁ । ଗାଁରେ ଜମିଦାର, ଟାଉଟର ଓ ସମାଜପତିର ଜୁଲମ ବଢ଼ିଛି । ସହରରେ କୋଟିପତିର ଶୋଷଣ ଜାରିରହିଛି । ଧନୀ ସଦର୍ପରେ ଉପହାସ କରୁଛି । ଗରିବ ଆଡ଼କୁ ଅନାଇ କହୁଛି—"ଆନନ୍ଦରେ ନାଚୁଥିଲୁ, ଇଂରେଜ ଗଲେ, କଂଗ୍ରେସ ଆସିଲା, ଜମିଦାରୀ ଯିବ, ପୁଞ୍ଜିପତି ନାଶହେବ, ରାଜା ଲୋପ ହେବ, ଚୋର୍‌ବେପାରୀ ଫାଶୀପାଇବ, ସମାଜଦ୍ରୋହୀ ଜେଲ ଯିବ—ଆଉ ତମେ କୃଷକ ମଜଦୁର ଖଟିଖିଆ ଶ୍ରେଣୀ ହେବ ଏ ରାଜ୍ୟର ମାଲିକ । ଭୁଲିଯାଇଥିଲ ଆମର ଶକ୍ତି ! ଦେଖ ମାଲିକ କିଏ ?

ଆଜି ଇଂରେଜ ଗଲା ପରେ ଶାସନ କରୁଛନ୍ତି ଆମେ ଧନୀ ଏବଂ ଆମ ସାଥିରେ ଭାଗ ବସିଛନ୍ତି ଏବଂ ଭାବ ବାନ୍ଧିଛନ୍ତି ତମେର କଂଗ୍ରେସ । ଗରିବ ଦେଖୁଛି କେତେ ନିରଟ ସତ୍ୟ । ସେଥିଲାଗି ମନରେ ଆନନ୍ଦ ନାହିଁ । ସ୍ୱାଧୀନତା ଦିବସ ପାଳନ କଥା କହିଲାବେଳେ ଦେଶର ଗାଁଗହଳି, ବଣଜଙ୍ଗଲ, କାରଖାନା, ସହର ଚାରିଆଡ଼ୁ ଚିତ୍କାର ଉଠୁଛି— ଦେଶ ତ ସ୍ୱାଧୀନ ହେଲା, ପୁଣି ଆମର ଏ ଦୁର୍ଦ୍ଦଶା କାହିଁକି ? ସ୍ୱାଧୀନତା ଆମ ଦେଶର ମୁଷ୍ଟିମେୟ ଲୋକଙ୍କ ହାତରେ ପଡ଼ିଗଲା କି ?

ଆଜି ପ୍ରକୃତ ସ୍ୱାଧୀନତା ବିପଦରେ ପଡ଼ିଛି । କଂଗ୍ରେସ ଦିନକୁଦିନ ଧନୀ ଅମୀରଙ୍କ ହାତକୁ ଚାଲିଯାଉଛି । ଫାସିଜିମ୍ ମତ ଗ୍ରହଣ କରୁଛି । ଗଣତନ୍ତ୍ର ରକ୍ଷା କରିବାକୁ ପଡ଼ିବ, ଦେଶରୁ ଦରିଦ୍ରତା ଲୋପ କରିବାକୁ ହେବ । ସାମ୍ୟବାଦ ପ୍ରତିଷ୍ଠା କରିବାକୁ ହେବ ।

କଂଗ୍ରେସ ଗାନ୍ଧିଙ୍କି ଭୁଲିଛି, ଗାନ୍ଧିଜୀଙ୍କ ଚାଷୀମୂଲିଆ ରାଜକୁ ଭୁଲିଯାଇଛି ।

ଚାଷୀମୂଲିଆ ରାଜ ଗଢ଼ିବାଲାଗି, ପ୍ରକୃତ ସ୍ୱାଧୀନତା ପାଇବା ଲାଗି ଆମକୁ ପୁଣି ଲଢ଼ାଇ କରିବାକୁ ପଡ଼ିବ । କଂଗ୍ରେସ ଓ ଧନୀଙ୍କ ମେଣ୍ଟ ଭାଙ୍ଗିବାକୁ ପଡ଼ିବ । ତେବେ ଯାଇ ଆମର ମୁକ୍ତି ।

୧୯୪୮ ମସିହା ଅଗଷ୍ଟମାସ ବେଳକୁ ଦେଶର ବାସ୍ତବ ଚିତ୍ରର ଏକ ଝଲକ ଏଥିରେ ଦିଆଯାଇଛି ଏବଂ ଏହି ଦୃଷ୍ଟିକୋଣ ଘେନ ସୋସଲିଷ୍ଟ ପାର୍ଟି ଓଡ଼ିଶାରେ ତାର କାର୍ଯ୍ୟ ଆରମ୍ଭ କରିଥିଲା । 'କୃଷକ' ସେତେବେଳକୁ ସୋସଲିଷ୍ଟ ପାର୍ଟିର ମୁଖପତ୍ର ରୂପେ କାର୍ଯ୍ୟ କଲାଣି ।

## ସାରଙ୍ଗଧର ଦାସଙ୍କ ଇସ୍ତଫା

ଗଡ଼ଜାତ ମିଶ୍ରଣ ପରେ ଏକ ଅସ୍ଥାୟୀ ଗଡ଼ଜାତ ଆସେମ୍ବ୍ଲି ଗଠିତ ହେଲା ଏବଂ ସେଥିରେ ୩ ଜଣ ମନ୍ତ୍ରୀ ରହିଲେ । ଓଡ଼ିଶାର ଅନ୍ୟ ଅଞ୍ଚଳର ତ ନିର୍ବାଚନ ହୋଇ ବିଧିବଦ୍ଧ ଆସେମ୍ବ୍ଲି ଓ ମନ୍ତ୍ରିମଣ୍ଡଳ କାର୍ଯ୍ୟ କରୁଥିଲା । ପୁଣି ଏ ଅଞ୍ଚଳ ଯେ ମିଶିଲା, ଏହାର ପ୍ରତିନିଧିତ୍ୱ କେମିତି ହେବ ? ତେଣୁ ନିର୍ବାଚନ ନକରାଯାଇ ଶାସନରେ ସଂଶ୍ଳିଷ୍ଟ ହେବା ନିମନ୍ତେ ଏପରି ଏକ କ୍ଷଣକାଳସ୍ଥାୟୀ ବ୍ୟବସ୍ଥା ଖଞ୍ଜାହେଲା । ମନ୍ତ୍ରୀ ଓ ମେମ୍ବର ସବୁ ମନୋନୀତ ହେଲେ । ଗଡ଼ଜାତ ଲୋକଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଏହା ଥିଲା ଏକ ଫିକର । ଗଡ଼ଜାତ ପ୍ରଜାଙ୍କର ତ କିଛି ହେଲାନାହିଁ; ଯେଉଁ ଗଡ଼ଜାତମାନେ କିଛି ନପାଇ ହୁଏତ ଅଶାନ୍ତିର ମଞ୍ଜି ବୁଣି-ଥାଆନ୍ତେ, ତାଙ୍କ ମୁହଁରେ ଏ ଲାଲଚ ଲଗାଇ ଗୁଡ଼ିଦିଆଗଲା । ଶ୍ରୀ ସାରଙ୍ଗଧର ଦାସଙ୍କୁ ଏପରି ସଖିକଣ୍ଢେଇ ମନ୍ତ୍ରିମଣ୍ଡଳର ମୁଖ୍ୟ ହେବା ନିମନ୍ତେ ଅନୁରୋଧ କରାଗଲା । ମାତ୍ର ସେ ଏ ଫାନ୍ଦରେ ପଡ଼ିଲେ ନାହିଁ—କୌଣସି ଦାୟିତ୍ୱ ନେବାକୁ ଅସ୍ୱୀକାର କରିଦେଲେ । ବାସ୍ତବିକ ନାମକୁ ଯିନା ଏ ଆସେମ୍ବ୍ଲି ଗଠିତ ହେଲା—ଗଡ଼ଜାତ ଇଲାକାର ପ୍ରକୃତ ଶାସକ ହେଲେ

ରାଜାଙ୍କ ବଦଳରେ ଜଣେ ଜଣେ ଉଚ୍ଚ ସରକାରୀ କର୍ମଚାରୀ । ସେମାନେ ଶାସକ ହିସାବରେ ପ୍ରତିଷ୍ଠା କର୍ତ୍ତୃତ୍ୱ ପାଇଲେ । ଏକ ଅନ୍ଧାରମୂଳକ—ଯାହାରେ କୌଣସି ବିଧିବଦ୍ଧ ଶାସନ ସହ ଲୋକ ପରିଚିତ ନ ଥିଲେ, କିଛିତ ପରିମାଣରେ ସ୍ୱାଧୀନତା ପାଉଥିଲେ—ସେଠାରେ ଏହି ଶାସକ-ମାନେ ଲୋକଙ୍କର ସ୍ୱାଭାବିକ ଦୈନନ୍ଦିନ କାର୍ଯ୍ୟବିଧିରେ ଘୋର କଟକଣା ଜାରିକରି ଆପଣାର ପ୍ରଭୁତ୍ୱ ବିସ୍ତାର କରିବାକୁ ଆରମ୍ଭକଲେ । ବାସ୍ତବ କ୍ଷେତ୍ରରେ ସେମାନେ ଯେଉଁ ଶୋଷଣ ଓ କଷଣରେ ପେଷି ହୋଇ ଦବିଯାଇଥିଲେ, ସେ ଅବସ୍ଥାର ଉନ୍ନତି ନିମନ୍ତେ କୌଣସି ନିଶ୍ଚିତ ପଦକ୍ଷେପ ନିଆଗଲାନାହିଁ ଏବଂ ଏଭଳି ଶାସନକୁ ଲୋକେ ଆପଣାର ବୋଲି ଗ୍ରହଣ କଲେ ନାହିଁ । ଫଳସ୍ୱରୂପ ଯେଉଁ ରାଜାମାନେ ଗାଦିଚ୍ୟୁତ ହୋଇଥିଲେ ଏବଂ ଯେଉଁମାନେ ଅତ୍ୟାଚାରର ଅବତାର ରୂପେ ଲୋକଙ୍କର ଘୃଣ୍ୟ ହୋଇଥିଲେ, ସେମାନଙ୍କୁ ଏପରି କୁଶାସନ ଯୋଗୁଁ ଲୋକେ ଝୁରିବାକୁ ଆରମ୍ଭକଲେ ଏବଂ ୧୯୫୨ରେ ଯେଉଁ ସାଧାରଣ ନିର୍ବାଚନ ଆରମ୍ଭ ହେଲା ସେଥିରେ ଯେତେ ରାଜା ମହାରାଜା ଓଡ଼ିଶା ବିଧାନସଭାକୁ ତାଙ୍କ ଇଲାକାରୁ ପ୍ରାର୍ଥୀ ହେଲେ, ସେମାନେ କଂଗ୍ରେସକୁ ପରାଜିତ କରି ବହୁସଂଖ୍ୟାରେ ନିର୍ବାଚିତ ହୋଇପାରିଲେ ।

ସାରଙ୍ଗଧରବାବୁ ଏପରି କାର୍ଯ୍ୟରେ ସଂପୃକ୍ତ ହୋଇ ନିଜକୁ ହରାଇବାକୁ ଚାହିଁଲେ ନାହିଁ । ସେ କହିଲେ, "ମୁଁ ପୁଣି ଲୋକଙ୍କ ଭିତରେ ପଶି ତାଙ୍କର ସେବା କରିବି—ସେଥିନିମନ୍ତେ ମୁଁ ବିଳାସ ସୁଖସମ୍ଭୋଗ ତ୍ୟାଗ କରି ସାଧାରଣ ସେବା କାର୍ଯ୍ୟରେ ଯୋଗ ଦେଇଥିଲି ।"

ସାରଙ୍ଗଧରବାବୁଙ୍କୁ ପ୍ରବର୍ତ୍ତାଇବା ନିମନ୍ତେ ବହୁ ଚେଷ୍ଟା ହେଲା । ତାଙ୍କୁ ଓଡ଼ିଶା ପବ୍ଲିକ୍ ସର୍ଭିସ କମିସନ୍‌ର ଚେୟାରମାନ୍ ପଦବୀ ଯାଚିଗଲା—ତଥାପି ସେ ନାସ୍ତି ଜଣାଇ ଆଦିବାସୀ ହରିଜନଙ୍କ ଭିତରେ କାର୍ଯ୍ୟ କରିବା ନିମନ୍ତେ ମାଳତୀ ଚୌଧୁରୀଙ୍କ ସହିତ ମିଶି ଏକ 'ନବଜୀବନ ମଣ୍ଡଳ'ର ସ୍ଥାପନା କଲେ । ଏହି ଅନୁଷ୍ଠାନ ଏବେ ବି ରହିଛି ଏବଂ ମାଳତୀ ଦେବୀଙ୍କ ନେତୃତ୍ୱରେ ଓଡ଼ିଶାର ଆଦିବାସୀ ହରିଜନଙ୍କ ଭିତରେ କାର୍ଯ୍ୟ କରୁଛି ।

ସାରଙ୍ଗଧରବାବୁ ତତ୍କାଳୀନ ନେତୃବର୍ଗଙ୍କର ବୋଲକରା ହେବା ଲୋକ ନୁହନ୍ତି । ସେଥିନିମନ୍ତେ ତାଙ୍କ ପ୍ରତି ଏକପ୍ରକାର ବିଶ୍ୱାସଘାତକତା କରାଗଲା । ସେ ଓଡ଼ିଶା ଆସେମ୍ବ୍ଲିର ସଭ୍ୟପଦ ଲାଗି ପ୍ରାର୍ଥୀ ହେଉନଥିଲେ କିମ୍ବା ତାଙ୍କର ସେଥିଲାଗି ଆଗ୍ରହ ନଥିଲା । ଦେଶର ନୂତନ ଗଠନରେ ତାଙ୍କ ପରି ଭାରତର ଜଣେ ଅଦ୍ୱିତୀୟ ବିଶେଷଜ୍ଞଙ୍କର ଲୋଡ଼ା ଅଛି ବୋଲି କଂଗ୍ରେସ କମିଟି ଏକ ପ୍ରସ୍ତାବ ପାସ୍ କରି ତାଙ୍କୁ ଅନୁରୋଧ କରନ୍ତେ ସେ କଂଗ୍ରେସ ପ୍ରାର୍ଥୀରୂପେ ଓଡ଼ିଶା ବିଧାନସଭାକୁ ତଳ୍ଚେର ଏରସମା ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହେଲେ

ଏବଂ ଜୟଲାଭ କଲେ । କିନ୍ତୁ ନିର୍ବାଚନ ପରେ ତାଙ୍କୁ ନୂତନ ମନ୍ତ୍ରୀସଭାରେ ନିଆଗଲା ନାହିଁ କିମ୍ବା ଯୋଜନା କମିସନ ଆଦିରେ ସମ୍ପୃକ୍ତ କରାଗଲା ନାହିଁ; ଏପରିକି ଶାସନବିଧାୟକ ସଂସ୍ଥାକୁ ଓଡ଼ିଶାରୁ ଯେଉଁ ନଅଜଣ ନିର୍ବାଚିତ ହେଲେ, ସେଥିରେ ତାଙ୍କୁ ସଭ୍ୟ କରାଗଲା ନାହିଁ । ପରେ ଯେତେବେଳେ ଭାରତର ରାଜନ୍ୟମଣ୍ଡଳୀ ସହ ଚୁକ୍ତି ହୋଇ ଶାସନବିଧାୟକ ସଭାକୁ ରାଜାପକ୍ଷ ଓ ପ୍ରଜାପକ୍ଷରୁ ସମାନ ସଂଖ୍ୟକ ପ୍ରତିନିଧି ଯିବା ସ୍ୱୀକୃତ ହେଲା, ସେତେବେଳେ ଓଡ଼ିଶା ଗଡ଼ଜାତ ପ୍ରଜାଙ୍କ ଭାଗରେ ପଡ଼ିଥିବା ଦୁଇଟି ସ୍ଥାନ ଲାଗି ପ୍ରଜାମଣ୍ଡଳ ପ୍ରତିଯୋଗିତା କଲା ଏବଂ ସେଥିରୁ ଗୋଟିଏ ସ୍ଥାନରେ ସାରଙ୍ଗଧରବାବୁ ଜୟଯୁକ୍ତ ହୋଇ ଶାସନବିଧାୟକ-ସଭାର ସଭ୍ୟ ହେଲେ । ଏଣେ ବିଧାନସଭାରେ ସେ କଂଗ୍ରେସ ସଦସ୍ୟ ରହିଥାଆନ୍ତି । ସେ ଅତି ସରଳ, ନିଷ୍ଠାବାନ୍ ଓ କର୍ତ୍ତବ୍ୟପରାୟଣ ବ୍ୟକ୍ତି ଥିଲେ । ତାଙ୍କ ଉପରେ ଏକ ନୈତିକ ଦାୟିତ୍ୱ ରହିଛି ବୋଲି ଭାବି ସାରଙ୍ଗଧରବାବୁ ବିଧାନସଭା ସଭ୍ୟ ପଦରୁ ୧୯୪୯ ମସିହା ମଇ ୪ ତାରିଖରେ ଇସ୍ତଫା ଦେଇଥିଲେ ଏବଂ କଂଗ୍ରେସରୁ ମଧ୍ୟ ବିଦାୟ ନେଲେ । ପରେ କେତେ ମାସ ପରେ ସେ ସୋସିଆଲିଷ୍ଟ ପାର୍ଟିରେ ଯୋଗଦେଇଥିଲେ ।

## ପ୍ରଥମ ନିର୍ବାଚନ ଲଢ଼େଇ

ସାରଙ୍ଗଧରବାବୁ ଇସ୍ତଫା ଦେବା ଫଳରେ ତିର୍ତ୍ତୋଲ-ଏରସମା ନିର୍ବାଚନମଣ୍ଡଳୀ ସ୍ଥାନଟି ଖାଲିପଡ଼ିଲା । ଆମ ଭିତରେ ଚର୍ଚ୍ଚା ହେଲା—ଆମେ ନିର୍ବାଚନ ଲଢ଼ାଇରେ ପଶିବା କି ନାହିଁ । ସେତେବେଳକୁ ନୂତନ ସମ୍ବିଧାନ ହୋଇନଥିଲା । ସୀମାବଦ୍ଧ ଭୋଟର—ଏତେ ବଡ଼ ଅଞ୍ଚଳ, ଅଥଚ ଭୋଟରଙ୍କ ସଂଖ୍ୟା ମୋଟେ ୧୬୯୦୦ । ବଡ଼ ଚାଷୀ ଓ ମଧ୍ୟବିତ୍ତ ଶ୍ରେଣୀ ହିଁ ସଂଖ୍ୟାରେ ବେଶି । ନିର୍ବାଚନ ଲାଗି ଯେଉଁଭଳି ଆର୍ଥିକ ସମ୍ବଳ ଦରକାର ତାହା ଆମ ପାଖରେ ନଥିଲା । କିନ୍ତୁ ଏ ଅଞ୍ଚଳରେ, ବିଶେଷଭାବରେ ତିର୍ତ୍ତୋଲରେ, କୃଷକଙ୍କ ସମସ୍ୟା ନେଇ କିଛି ଲଢ଼ାଇ ହୋଇଥିଲା । ଆଞ୍ଚଳିକ ନାନା ସମସ୍ୟା ସମ୍ବନ୍ଧରେ ସ୍ଥାନୀୟ ସୋସିଆଲିଷ୍ଟ ପାର୍ଟି ନିଶାମଣି ଖୁଣ୍ଟିଆଙ୍କ ନେତୃତ୍ୱରେ ସଂଗଠିତ ହୋଇଥିଲା । ଆମେ ବିଚାର କଲୁ, ସୋସିଆଲିଷ୍ଟ ପାର୍ଟିର ବାର୍ତ୍ତା ପ୍ରଚାର ନିମନ୍ତେ ଏହା ଏକ ଉତ୍ତମ ମାଧ୍ୟମ—ଆମର ବି ପ୍ରଥମ ପରୀକ୍ଷା ହେବ । ଏହା ବିଚାରକରି ଉପନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବା ନିମନ୍ତେ ସ୍ଥିର କରାଗଲା ଏବଂ ନିଶାମଣି ଖୁଣ୍ଟିଆଙ୍କୁ ପ୍ରାର୍ଥୀ କରାଗଲା ।

କଂଗ୍ରେସ ସହ ପ୍ରଥମ ସଂଗଠିତ ବିରୋଧ । ଆମେ ଲଢ଼ି ନ ଥିଲେ କଂଗ୍ରେସ ହୁଏତ ବିନା ପ୍ରତିଦ୍ୱନ୍ଦ୍ୱିତାରେ ଜିତିଯାଇଥାନ୍ତା । ଆମର ଯାହା ଧନର ଅଭାବ ଥିଲା, ଆମେ ତାହା ସଂଗଠନରେ ପୂରଣ କଲୁ । ସାରା ପ୍ରଦେଶର ଯେତେ ସୋସିଆଲିଷ୍ଟ ଯେଉଁଠି ଥିଲେ, ସମସ୍ତଙ୍କି ନିର୍ଦ୍ଦେଶ ଦିଆଗଲା ଏବଂ ପ୍ରାୟ ସବୁଅଞ୍ଚଳରୁ ମୁଖ୍ୟକର୍ମୀମାନେ ଆସି ନିର୍ବାଚନମଣ୍ଡଳୀର ବିଭିନ୍ନ

ଅଞ୍ଚଳର ଦାୟିତ୍ୱ ନେଇଗଲେ । ସେମାନେ ନିଜ ନିଜର ଖର୍ଚ୍ଚ ସାଙ୍ଗରେ ନେଇଆସିଥିଲେ ଏବଂ ଯେଉଁ ଅଞ୍ଚଳରେ ରହିଲେ, ସେଠାରେ ମାଗିଯାଚି ସଂଗଠନ ଓ ପ୍ରଚାର କାର୍ଯ୍ୟ ତୁଲାଇଲେ । ଲୋକଙ୍କଠାରୁ ଖୁବ୍ ସମର୍ଥନ ମିଳିଲା—ଉତ୍ସାହ ଦେଖାଗଲା । ଆମେ ସବୁ କଂଗ୍ରେସରୁ ଅଲଗା ଏହା ବୁଝାଇବା ନିମନ୍ତେ ସମୟ ଲାଗିଲା । କିନ୍ତୁ କଂଗ୍ରେସ ସହ ଆମର ଯେ ନୀତିଗତ ଭେଦ ଓ କଂଗ୍ରେସ କ୍ରମେ ଧନୀ ଜମିଦାରଙ୍କ ସ୍ୱାର୍ଥରକ୍ଷା ନିମନ୍ତେ କାର୍ଯ୍ୟ କରୁଥିଲା, ଏହା ଲୋକସମ୍ମୁଖରେ ରଖିବାଦ୍ୱାରା କଂଗ୍ରେସ ପ୍ରତି ବିରୋଧ ବୃଦ୍ଧି ପାଇଲା । ମାତ୍ର ଲୋକଙ୍କ ଭିତରେ ସରକାରୀ ଭୟ ପୂରାପୂରି ରହିଥାଏ ଏବଂ ଅନେକ କ୍ଷୁଦ୍ର କ୍ଷୁଦ୍ର ଅଭାବ ନିମନ୍ତେ ଲୋକେ ସରକାର ଉପରେ ନିର୍ଭର କରୁଥାଆନ୍ତି । ଆମର ପ୍ରଚାରର କ୍ରମେ ପ୍ରଭାବ ଲକ୍ଷିତ ହେଲା । କଂଗ୍ରେସ ତରଫରୁ ନାନାପ୍ରକାର କଦର୍ଥ ପ୍ରଚାର ଚାଲିଲା—ଯେପରିକି—ସୋସଲିଷ୍ଟ ଅର୍ଥ ହେଉଛି ରକ୍ତ ଶୋଷକ; ନାଲିରଙ୍ଗର ପତାକା ତାହାର ସଂକେତ—ଏହା ରୁଷିଆରୁ ଆମଦାନୀ, ଆମ ଦେଶର ପତାକା ନୁହେଁ । ତନ୍ମଧ୍ୟରୁ ମାରାତ୍ମକ ପ୍ରଚାର ହେଲା ସୋସଲିଷ୍ଟ ସମସ୍ତଙ୍କୁ ସମାନ କରିଦେବ—ଖାଦ୍ୟପେୟ ସମାନ ଭାବରେ ବଣ୍ଟନ ହେବ; ଜମିବାଡ଼ି କାହାରି ହାତରେ ରହିବ ନାହିଁ ଇତ୍ୟାଦି । ବିଶେଷତଃ ଜମି କଥାଟି ଲୋକଙ୍କର ଏକ ଭାବପ୍ରବଣ ସମସ୍ୟା—ଏହା ଛଡ଼େଇ ନିଆଯିବାର ପ୍ରଚାରରେ ଜମିଦାର ଓ ବଡ଼ ଗୃହୀ-ମାନେ ଆତଙ୍କିତ ହେଲେ । 'ଲଙ୍ଗଳ ଯାହାର ଭୂମି ତାହାର' ଧ୍ୱନି ସୋସଲିଷ୍ଟଙ୍କ ତରଫରୁ ଦିଆଯାଉଥିଲା । ଗ୍ରାମର ପ୍ରଭାବଶାଳୀ ବ୍ୟକ୍ତି ଥିଲେ ଜମିଦାର ଓ ବଡ଼ ଗୃହୀ; ସେମାନେ ଆମ ବିରୁଦ୍ଧରେ ସନ୍ଦିଗ୍ଧ ହୋଇଗଲେ । ସରକାରୀ କଳର ପୂର୍ଣ୍ଣ ଉପଯୋଗ କରାଗଲା । ପ୍ରକାଶ୍ୟଭାବରେ ସରକାରୀ କର୍ମଚାରୀମାନେ ଲୋକଙ୍କୁ ପ୍ରଲୋଭନ ଦେଖାଇଲେ ଏବଂ ସୋସଲିଷ୍ଟ କର୍ମୀମାନଙ୍କୁ ସ୍ଥାନେ ସ୍ଥାନେ ଧମକ ଓ ମାଡ଼ ଆଦି ଦିଆଗଲା । ସରକାରୀ କଳର ପ୍ରୟୋଗରେ ଅବସ୍ଥା ବଦଳିଗଲା । ସେତେବେଳେ ୫ ଦିନ କାଳ ଭୋଟ ନିଆହେଉଥିଲା । ଯାନବାହନରେ ଭୋଟର ଆଣିବା ବେଆଇନ ଥିଲେ ସୁଦ୍ଧା ପ୍ରତ୍ୟକ୍ଷଭାବରେ ସରକାରୀ ଯାନମାନଙ୍କରେ ଭୋଟର ବୁହାହେଲା । ଅନ୍ୟ ପକ୍ଷରେ ଆମ ତରଫରୁ ଭୋଟର ମେଳବାନ୍ଧି ଶୋଭାଯାତ୍ରା କରି ଗ୍ରାମରୁ ଆସୁଥିଲେ ଭୋଟଗ୍ରହଣ ସ୍ଥଳକୁ ।

ଶ୍ରୀ ସାରଙ୍ଗଧର ଦାସ ଇସ୍ତଫା ଦେଇଥିଲେ; ଶାସନବିଧାୟକ ସଭାର ସଦସ୍ୟ ଥିଲେ । ସୋସଲିଷ୍ଟ ପାର୍ଟିରେ ଯୋଗ ନ ଦେଇ ବି ସୋସଲିଷ୍ଟ ପାର୍ଟି ପ୍ରାର୍ଥୀଙ୍କ ସମର୍ଥନ ଜଣାଇଥିଲେ । ଶେଷକୁ ଭୋଟଗଣତିରେ ଦେଖାଗଲା କଂଗ୍ରେସ ପ୍ରାର୍ଥୀ ହିଁ ଜୟଯୁକ୍ତ ହେଲେ । ମୋଟ ଭୋଟ ପଡ଼ିଥିଲା—୯୫୬୮ : କଂଗ୍ରେସ ପ୍ରାର୍ଥୀ ପାଇଲେ—୫୭୩୮ ଏବଂ ସୋସଲିଷ୍ଟ ପ୍ରାର୍ଥୀ ୩୭୬୧ । ୬୯ଟି ଭୋଟ ଅକାମୀ ହେଲା । ଶତକଡ଼ା ୪୦ ଭୋଟ ସୋସଲିଷ୍ଟଙ୍କୁ ମିଳିବା ଏକ ଗୌରବର କଥା । କଂଗ୍ରେସବାଲା ଜିତିଲେ ସିନା, ସୋସଲିଷ୍ଟଙ୍କର ଏପରି ସମର୍ଥନ ଦେଖି ସେମାନଙ୍କ ମନରେ ଛନକା ପଶିଲା । ସେତିକିବେଳୁ ଏହି ଅଞ୍ଚଳ ସୋସଲିଷ୍ଟ ପାର୍ଟିର ଏକ ଦୁର୍ଗରେ ପରିଣତ ହେଲା ଏବଂ ପରବର୍ତ୍ତୀ କାଳରେ

୧୯୫୬ ଓ ୧୯୫୭ର ସାଧାରଣ ନିର୍ବାଚନରେ ସୋସଲିଷ୍ଟ ପ୍ରାର୍ଥୀହିଁ ଜୟଯୁକ୍ତ ହୋଇ ଆସିପାରିଲେ ।

ଏହା ପରେ ୧୯୫୧।୫୨ର ସାଧାରଣ ସାବାଳକ ଭୋଟ ପୂର୍ବରୁ କଟକ ଜିଲାର ଆଳି ପଟାମୁଣ୍ଡାଇରେ ପୁଣି ଏକ ଉପନିର୍ବାଚନର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏଥିରେ ବିଧାନସଭା ନିମନ୍ତେ ଆମ ତରଫରୁ ପ୍ରାର୍ଥୀ ହୋଇଥିଲେ ଡାକ୍ତର ରାମଚନ୍ଦ୍ର ସୁତାର । ଏତେବେଳକୁ ଓଡ଼ିଶା ସରକାରଙ୍କର ଏକ ଲୋକସଂପର୍କ ବିଭାଗ ଖୋଲାଯାଇଥିଲା । ସେମାନେ ପ୍ରକାଶ୍ୟରେ ଏଥିରେ ଭାଗନେଲେ । ଆଜିକାଲି ପାର୍ଟିମାନଙ୍କୁ ଯେପରି ସଂକେତ ଦିଆଯାଉଛି, ସେପରି ପ୍ରଥା ନଥିଲା । ବାକ୍ସ ଥାଏ ଏବଂ ବିଭିନ୍ନ ରଙ୍ଗର ବାକ୍ସ ପ୍ରାର୍ଥୀଙ୍କୁ ଦିଆଯାଉଥିଲା । ଏ ଉପନିର୍ବାଚନରେ ମଧ୍ୟ ସୋସଲିଷ୍ଟ ପାର୍ଟି ପରାଜିତହେଲା ।

## ପାଟନାଠାରେ ନୂତନ ସମ୍ବିଧାନ

କଂଗ୍ରେସ ଛାଡ଼ି ସ୍ୱତନ୍ତ୍ର ହେବା ପରେ ମହାରାଷ୍ଟ୍ରର ମହାବଳେଶ୍ୱରଠାରେ ସୋସଲିଷ୍ଟ ପାର୍ଟିର ଏକ ସ୍ୱତନ୍ତ୍ର ଶିବିର କରାଗଲା ଏବଂ ଜାତୀୟ କାର୍ଯ୍ୟକାରୀ ପରିଷଦର ସମସ୍ତ ସଭ୍ୟ ଏବଂ ଅନ୍ୟ କେତେଜଣ ଆମେ ଏକାଠି ୧୫ ଦିନ ରହି ଦେଶର ବିଭିନ୍ନ ସମସ୍ୟା ସମ୍ବନ୍ଧରେ ବିଚାର ପରାମର୍ଶ କଲୁ ଏବଂ ଏହିଠାରେ ସ୍ଥିର କରାଗଲା ଯେ ସୋସଲିଷ୍ଟ ପାର୍ଟିର ଆଉ ସୀମିତ ସଭ୍ୟ ନରଖି ସଭ୍ୟ ଗ୍ରହଣ ଖୋଲା କରିଦେବା ଉଚିତ । ସେଥି ନିମନ୍ତେ ବିହାରର ପାଟନାଠାରେ ସୋସଲିଷ୍ଟ ପାର୍ଟିର ସପ୍ତମ ଅଧିବେଶନ ବସିଲା । ଏଥିରେ ଆଚାର୍ଯ୍ୟ ନରେନ୍ଦ୍ର ଦେବ ସଭାପତି ହୋଇଥିଲେ । ୧୯୪୯ ମସିହା ମାର୍ଚ୍ଚ ୭ରୁ ୧୦ ପର୍ଯ୍ୟନ୍ତ ଗାନ୍ଧି ମଇଦାନଟରେ ଏ ଅଧିବେଶନ ବସିଥିଲା । କଂଗ୍ରେସ ଛାଡ଼ିବା ପରେ ଏହା ପ୍ରଥମ ଅଧିବେଶନ । ଏଥିରେ ୫୮୮ ଜଣ ପ୍ରତିନିଧି ଏବଂ ୧୭୭୫ ସଭ୍ୟ-ଦର୍ଶକ ଯୋଗ ଦେଇଥିଲେ । ଏଥିରେ ପ୍ରଧାନ ଆଲୋଚ୍ୟ ବିଷୟ ହେଲା କିପରି ସୋସଲିଷ୍ଟ ପାର୍ଟିକୁ ଏକ ଜନସାଧାରଣଙ୍କ ଦଳରେ ପରିଣତ କରିବାକୁ ହେବ ଏବଂ ସଭ୍ୟ କଟକଣା ଉଠାଇଦେବାକୁ ହେବ । ଏ ସମ୍ପର୍କରେ ମହାବଳେଶ୍ୱରରେ ଆମର ଯେଉଁ ଆଲୋଚନା ହୋଇଥିଲା, ସେହି ଭିତ୍ତିରେ ଏକ ନୂତନ ଶାସନବିଧାନ ସଂକଳନ କରାଗଲା ଓ ଗୃହୀତ ହେଲା । ସ୍ଥାୟୀ ଅସ୍ଥାୟୀ ସଭ୍ୟ ତାରତମ୍ୟ ହଟାଇ ଦିଆଗଲା । ପାର୍ଟିର ଲକ୍ଷ୍ୟ ଉଦ୍ଦେଶ୍ୟକୁ ଗ୍ରହଣ କରୁଥିବା ଯେ କୌଣସି ବ୍ୟକ୍ତି ପାର୍ଟିର ବାର୍ଷିକ ଚାନ୍ଦା ଦେଲେ ସଭ୍ୟ ହୋଇପାରିଲା । ତାହାଛଡ଼ା ବ୍ରିଟିଶ ଲେବର ପାର୍ଟି ପରି ଏକ ସମ୍ବନ୍ଧିତ ସଭ୍ୟପଦ ପ୍ରବର୍ତ୍ତନ କରାଗଲା, ଅର୍ଥାତ୍ ବ୍ୟକ୍ତିଗତ ସଭ୍ୟ ବ୍ୟତୀତ କୃଷକ ସଂଘ, ଟ୍ରେଡ ଇଉନିୟନ, ବୃତ୍ତିଜୀବୀ ଓ ବୁଦ୍ଧିଜୀବୀଙ୍କ ସଂଘ ବା ସମିତି, ତଦ୍ରୂପ ଶ୍ରେଣୀ ସଂଗଠନ ସବୁ ଆନୁଷ୍ଠାନିକ ଭାବରେ ଯୋଗ ଦେଇପାରିବେ । ଏହି ପ୍ରଥାଟି କଂଗ୍ରେସରେ ଚଳାଇବା ନିମନ୍ତେ ଆମ ତରଫରୁ ଉଦ୍ୟମ ହୋଇଥିଲା; ମାତ୍ର ତାହା ପ୍ରତ୍ୟାଖ୍ୟାତ ହୋଇଗଲା । କେବଳ ବ୍ୟକ୍ତିଗତ ସଭ୍ୟ ରହିଲେ ଅନ୍ୟ ଅବାଞ୍ଛିତ ବ୍ୟକ୍ତି ବା

ନ୍ୟସ୍ତ ସ୍ୱାର୍ଥସଂପନ୍ନ ଗୋଷ୍ଠୀ ସଭ୍ୟ ସଂଖ୍ୟା ବଢ଼ାଇ ପାର୍ଟିକୁ ନିଜ ଅକ୍ତିଆରରେ ରଖିବାର ଆଶଙ୍କା ରହିଥାଏ ଏବଂ ଏହା ହୋଇପାରିଲେ ନିଜ ସ୍ୱାର୍ଥରକ୍ଷାହେଲା ପରି ପାର୍ଟି ଗୃହୀତ ହେବାରେ ପ୍ରଭାବ ପକାଇପାରନ୍ତି । ତାହା ସହିତ ଶ୍ରେଣୀ ସଂଗଠନଗୁଡ଼ିକ ସାଂଗଠନିକ ରୂପେ ସନ୍ନିବେଶିତ ହୋଇଥିଲେ ସେମାନେ ନିଜ ଶ୍ରେଣୀର ସ୍ୱାର୍ଥକୁ ଜଗିପାରିବେ । ଏହା ଏକ ନୂତନ ପଦକ୍ଷେପ । ଏଥିରେ ଗଣସଂଗଠନଗୁଡ଼ିକ ସହ ପାର୍ଟିର ଯୋଗାଯୋଗ ଘନିଷ୍ଠତର ହୁଏ ଏବଂ ସେପରି ସଂଗଠନଗୁଡ଼ିକ ଭିତରେ ରାଜନୀତିକ ଚେତନା ପଶେ । ଆଗରୁ କହିଛି, ସର୍ବସାଧାରଣଙ୍କ ପାଇଁ ସିନା ପାର୍ଟିର ଦୁଆର ମେଲାହୋଇଗଲା; କିନ୍ତୁ ନିର୍ଦ୍ଦିଷ୍ଟଭାବରେ କଂଗ୍ରେସ, ସି.ପି.ଆଇ. କିମ୍ବା ସାଂପ୍ରଦାୟିକ ଅନୁଷ୍ଠାନ ସହିତ ସଂପୃକ୍ତ ବ୍ୟକ୍ତିଙ୍କୁ ସଭ୍ୟରୂପେ ଗ୍ରହଣ କରାଯିବାକୁ ନିଷେଧ କରାଯାଇଥିଲା । ଏହି ସମ୍ମିଳନୀରେ ଅନ୍ୟାନ୍ୟ ଅନେକ ପ୍ରସ୍ତାବ ଭିତରେ ଆଗେଇ ଚାଲ'' ନାମକ ଏକ ପ୍ରସ୍ତାବ ଡକ୍ଟର ରାମମନୋହର ଲୋହିଆ ଆଗତ କରିଥିଲେ । ଏହା ଏକପ୍ରକାର ନିର୍ଦ୍ଦିଷ୍ଟ ସମୟ ଅର୍ଥାତ୍ ଏକବର୍ଷ ଭିତରେ ପାର୍ଟି କିପରି ସଂଗଠନମୂଳକ ଓ ସଂଘର୍ଷଜନକ କାର୍ଯ୍ୟରେ ହାତଦେବ ତାହାର କାର୍ଯ୍ୟସୂଚୀ । ସମାଜବାଦୀ ଏକତା ଦୃଷ୍ଟିରୁ ମଧ୍ୟ ଏହି ସମ୍ମିଳନୀରେ ବଲ୍‌ସେଭିକ ଲେନିନ୍‌ବାଦୀଦଳ ସୋସଲିଷ୍ଟପାର୍ଟିରେ ମିଶିଗଲେ । ଛୋଟ ଛୋଟ ସୋସଲିଷ୍ଟ ପାର୍ଟି ଆଉ ସ୍ୱତନ୍ତ୍ର ନରହି ଏକ ବୃହତ୍ ସୋସଲିଷ୍ଟ ପାର୍ଟି ଗଠନ ନିମନ୍ତେ ମନକଲେ ଏବଂ ଜୟପ୍ରକାଶ ନାରାୟଣଙ୍କ ସହ ଆଲୋଚନା ଆରମ୍ଭ କଲେ ।

ଏହିଠାରେ ପାର୍ଟିର ଲକ୍ଷ୍ୟ ଭାରତରେ ଗଣତାନ୍ତ୍ରିକ ସମାଜବାଦୀ ସମାଜ ସ୍ଥାପନା ବୋଲି ଘୋଷଣା କରାଗଲା ଏବଂ ଜାତୀୟ କାର୍ଯ୍ୟନିର୍ବାହିକା ସମିତିରେ ଅନ୍ତତଃ ୨୫ ଜଣ ସଭ୍ୟ ଏବଂ ଜଣେ ଚେୟାରମ୍ୟାନ୍ ରହିବା ଧାର୍ଯ୍ୟହେଲା । ଆଗରୁ ସୋସଲିଷ୍ଟ ପାର୍ଟିରେ କେବଳ ସାଧାରଣ ସମ୍ପାଦକ ରହୁଥିଲେ—କୌଣସି ଚେୟାରମ୍ୟାନ୍ ପଦବୀ ନଥିଲା । ଏହି ସମ୍ମିଳନୀରେ ୟୁସୁଫ୍ ମେହେରାଲି ସଭାପତି ହେବା ନିମନ୍ତେ ଆଗରୁ ସ୍ଥିରହୋଇଥିଲା; ମାତ୍ର ସେ ଅସୁସ୍ଥ ହୋଇ ପଡ଼ିବାରୁ ଆସିପାରିନଥିଲେ । ତାଙ୍କୁ ସ୍ଥିର କରାଯାଇଥିଲା ୧୯୫୦ରେ ମାନ୍ଦ୍ରାଜରେ ଯେଉଁ ଅଧିବେଶନ ହେବ ତହିଁରେ ସେ ସଭାପତିତ୍ୱ କରିବେ; ମାତ୍ର ଅତ୍ୟନ୍ତ ଦୁଃଖ ହେଲା ଯେ ମାନ୍ଦ୍ରାଜ ସମ୍ମିଳନୀ ପୂର୍ବରୁ ତାଙ୍କର ମୃତ୍ୟୁ ୧୯୫୦ ମସିହାରେ ହିଁ ହୋଇଗଲା । ସୋସଲିଷ୍ଟ ଆନ୍ଦୋଳନର ଜଣେ ପ୍ରଧାନ ପ୍ରବର୍ତ୍ତକ ଓ କର୍ଣ୍ଣଧାର ଅନ୍ତର ହୋଇଯିବାର ଏକ ଅପୂରଣୀୟ କ୍ଷତି ସାଧିତହେଲା ।

## ଓଡ଼ିଶା ପାର୍ଟିର ଦ୍ୱିତୀୟ ଅଧିବେଶନ

ନାସିକ ପରେ ଆମେ ବାଲେଶ୍ୱରରେ ସୋସଲିଷ୍ଟ ପାର୍ଟିର ପ୍ରଥମ ପ୍ରାଦେଶିକ ସମ୍ମିଳନୀ କରିଥିଲୁ । ଦ୍ୱିତୀୟ ସମ୍ମିଳନୀ ହେଲା କଟକ ଜିଲାର ସାଲେପୁରଠାରେ । ମେ ମାସର ପ୍ରଥମ ସପ୍ତାହରେ ଏ ସମ୍ମିଳନୀ ହେଲା । ମଫସଲ ଅଞ୍ଚଳରେ ଏପରି ଏକ ସମ୍ମିଳନୀ ସଂପୂର୍ଣ୍ଣ ନୂଆ; ଆୟୋଜନ ମଧ୍ୟ କଷ୍ଟସାଧ୍ୟ । କିନ୍ତୁ ଆକୁଳାନନ୍ଦ ବେହେରା ଓ ଅନିଲ କୁମାର ଘୋଷ

ଲାଗିପଡ଼ି ସବୁ ବ୍ୟବସ୍ଥା କରିଥିଲେ ଏବଂ ତାଙ୍କୁ ଆୟୋଜନରେ ସାହାଯ୍ୟ କରିବା ନିମନ୍ତେ ବୈକୁଣ୍ଠନାଥ ମହାନ୍ତି, ଶରତ୍‌କୁମାରୀ ଦେବୀ ଓ ଶ୍ୟାମଳ ଲାହିଡ଼ି ଆଦି ଯାଇଥିଲେ । ଏପରି ଜନସମାଗମ ଓ ପ୍ରକାଶ୍ୟରେ ଦେଶର ସମସ୍ୟା ସମ୍ପର୍କରେ ବିସ୍ତୃତ ଆଲୋଚନା ଗ୍ରାମ୍ୟ ଅଞ୍ଚଳରେ ନୂଆ ଚେତନା ଆଣିଦେଲା । ପରେ ସାଲେପୁର ସୋସଲିଷ୍ଟ ପାର୍ଟିର ଏକ ଅତି ସମର୍ଥକ ଅଞ୍ଚଳ ରୂପେ ବହୁବର୍ଷ ପର୍ଯ୍ୟନ୍ତ ରହିଥିଲା ।

ଏହି ସମ୍ମିଳନୀରେ ଜୟପ୍ରକାଶ ନାରାୟଣ ସଭାପତି ହେବାର ଥିଲା; ମାତ୍ର ସେ ଅସୁସ୍ଥ ହେବାରୁ ଆସି ପାରିଲେ ନାହିଁ । ବିହାରର ସାଥି ବସାୱାନ୍ ସିଂ ଏଥିରେ ସଭାପତିତ୍ୱ କରିଥିଲେ । ବର୍ଷକ ଭିତରେ ଓଡ଼ିଶା ପାର୍ଟିର କିଭଳି ଅଗ୍ରଗତି ହୋଇଥିଲା, ତାହା ପ୍ରାଦେଶିକ ସଂପାଦକ ଭାବରେ ମୋର ରିପୋର୍ଟରୁ ଜଣାପଡ଼େ । ମୁଁ ଲେଖିଥିଲି—"ଆମ ଉପରେ ଗୁରୁଦାୟିତ୍ୱ ଆସି ପଡ଼ିଛି । ଏକବର୍ଷ ଭିତରେ ଆମର ସଭ୍ୟସଂଖ୍ୟା ବୃଦ୍ଧି ପାଇଛି । ଗତ ବାର୍ଷିକ ସମ୍ମିଳନୀ ବେଳକୁ ମୋଟ ସଭ୍ୟ ସଂଖ୍ୟା ଥିଲା ୧୬୫ ଏବଂ ବର୍ତ୍ତମାନ ୫୦୦ରୁ ଅଧିକ ହୋଇଛି । ଏହା ଛଡ଼ା ଶ୍ରମିକ ସଙ୍ଘରେ ସୋସଲିଷ୍ଟ ପାର୍ଟି ପ୍ରଭାବରେ ପ୍ରାୟ ୧୫ ହଜାର ଏବଂ କୃଷକ ସଙ୍ଘରେ ପ୍ରାୟ ଆଠ ହଜାର ସଭ୍ୟ ହୋଇଛନ୍ତି । ପ୍ରଦେଶର ସବୁ ଜିଲାରେ ଆମର ଶାଖା ଗଠିତ ହୋଇପାରିନାହିଁ । ଗଞ୍ଜାମ, କୋରାପୁଟ, ପୁରୀ, ସୋନପୁର, ନୟାଗଡ଼, ତାଳଚେର, ହିନ୍ଦୋଳ ଓ ସମ୍ବଲପୁର ଆଦିରେ ନୂତନ ଶାଖା ସ୍ଥାପିତ ହୋଇଛି । ପୂର୍ବରୁ ସଂଗଠନ ରହିଥିବା ଜିଲାମାନଙ୍କରେ କେତେକ ସ୍ଥାନରେ ଥାନା ୟୁନିଟ୍‌ମାନ ଗଠନ କରାଯାଇଛି ।"

## ଅର୍ଥାଭାବ କିପରି ମେଣ୍ଟିବ ?

ସୋସଲିଷ୍ଟ ପାର୍ଟିର ଅଗ୍ରଗତିରେ ଏକ ପ୍ରଧାନ ଅନ୍ତରାୟ ହେଲା ଅର୍ଥାଭାବ । ପୂର୍ବରୁ ଏହି ପୁସ୍ତକରେ ମୁଁ ଦର୍ଶାଇଛି ୧୯୩୪ ମସିହାରେ କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠନ ବେଳେ କେମିତି ମାସିକ ପାଞ୍ଚଟଙ୍କା ଚାନ୍ଦା ଦେବାର ଅକ୍ଷମତା ଦର୍ଶାଇ ନବକୃଷ୍ଣ ଚୌଧୁରୀ ଇସ୍ତଫା ଦେଇଥିଲେ । କଂଗ୍ରେସ ସୋସଲିଷ୍ଟ ପାର୍ଟି, ସୋସଲିଷ୍ଟ ପାର୍ଟି ଓ ପ୍ରଜା ସୋସଲିଷ୍ଟ ପାର୍ଟି ନାମରେ ଏକ ଅପପ୍ରଚାର ବରାବର କରାଯାଉଥିଲା ଯେ ଏହା ଆମେରିକାରୁ ଧନ ପାଉଥିଲା । ବିଶେଷତଃ କମ୍ୟୁନିଷ୍ଟ ପାର୍ଟି ଏବଂ କଂଗ୍ରେସର କମ୍ୟୁନିଷ୍ଟ ସମର୍ଥକଗୋଷ୍ଠୀ ଏପରି ଅପବାଦ ଲଗାନ୍ତି । ଏପରିକି ୧୯୫୬ ସାଧାରଣ ନିର୍ବାଚନ ପ୍ରଚାରବେଳେ ଜବାହରଲାଲଙ୍କ ନିର୍ବାଚନମଣ୍ଡଳୀରେ ସୋସଲିଷ୍ଟଙ୍କର ତୀବ୍ର ବିରୋଧର ସମ୍ମୁଖୀନ ହୋଇ ଇନ୍ଦିରାଗାନ୍ଧୀ ଏପରି ଅଭିଯୋଗ ଉଠାଇଥିଲେ—ଅବଶ୍ୟ ସେତେବେଳକୁ ସେ ଏପରି କିଛି ଖ୍ୟାତନାମା ହୋଇ ନ ଥିଲେ ଏବଂ ତାଙ୍କ ଅଭିଯୋଗକୁ ବାଳିକାସୁଲଭ ଚପଳତା ବୋଲି ସମ୍ବାଦପତ୍ରମାନେ ପରିହାସ କରିଥିଲେ । ସାରା ସୋସଲିଷ୍ଟ ଆନ୍ଦୋଳନ କୌଣସି ବିଦେଶୀ ବା ଦେଶୀ ଧନୀ ପୁଞ୍ଜିପତିଙ୍କର କେବେହେଲେ ସହାନୁଭୂତି ପାଇନାହିଁ ଏବଂ ବରାବର ସେମାନଙ୍କର

ଦ୍ରୁତ ବର୍ଦ୍ଧିତ ସମ୍ମୁଖୀନ ହୋଇଥିଲା । ନିଖିଳ ଭାରତ ସ୍ତରରେ ଏକ ମଜବୁତ ଅଫିସ୍ ରଖିବା ଧନ ଅଭାବରୁ ସମ୍ଭବ ହେଉନଥିଲା । ଆମେ ଓଡ଼ିଶାରେ ପୁଣି ଯେଉଁମାନେ ସମସ୍ତ ସମୟ ଦେଇ କାର୍ଯ୍ୟ କରୁଥିଲୁ ସେମାନଙ୍କର ଆପଣାର କିଛି ସମ୍ବଳ ନ ଥିଲା । ପାର୍ଟିର ନୂତନ ବିଧାନ ପ୍ରଣୟନରେ ପ୍ରତି ଇଉନିଟ୍‌ରେ ଜଣେ ସମସ୍ତ ସମୟ ଦେଇ କାର୍ଯ୍ୟ କରିବା କର୍ମୀ ନିଯୁକ୍ତିର ପ୍ରଶ୍ନ ଉଠିଲା । ପାରିଶ୍ରମିକ କିଛି ଅନ୍ତତଃ ନ ପାଇଲେ ସେମାନେ କିପରି କାର୍ଯ୍ୟ କରନ୍ତେ ! ସମସ୍ତେ ପ୍ରାଦେଶିକ ପାର୍ଟିକୁ ଅନାଇ ରହୁଥିଲେ । ପ୍ରାଦେଶିକ ପାର୍ଟି ସମ୍ବଳହୀନ । ଏହି କଥାକୁ ଲକ୍ଷ୍ୟକରି ମୁଁ ପ୍ରାଦେଶିକ ସଂପାଦକ ଭାବରେ ୧୯୪୯ରେ ସାଲେପୁର ସମ୍ମିଳନୀରେ କହିଥିଲି—"ଆଜି ମୁଖ୍ୟତଃ ଏଥିଲାଗି ପ୍ରାଦେଶିକ ପାର୍ଟି ଉପରେ ସମସ୍ତେ ନିର୍ଭର କରିବାରୁ କାମ ଆଗେଇ ପାରୁନାହିଁ ଏବଂ କ୍ରମେ ପାର୍ଟିର ଯେପରି ପ୍ରସାର ହେଉଛି ସେଥିରେ ଏହା ଏକାବେଳକେ ଅସମ୍ଭବ । ଏହିପରି ଅବସ୍ଥା ଯଦି ରହେ, ତେବେ ପାର୍ଟି ହୁଏତ ଅଚଳ ହୋଇଯିବ, ନଚେତ୍ ଆମକୁ ଅବାଞ୍ଛନୀୟ ଲୋକଙ୍କର ଦ୍ୱାରସ୍ଥ ହେବାକୁ ପଡ଼ିବ । ମୋର କ୍ଷୁଦ୍ର ବିଗ୍ଭରରେ କଂଗ୍ରେସର ନୈତିକ ଅଧୋଗତିର ଏହା ଗୋଟିଏ କାରଣ । ସେଥିପାଇଁ ଆମକୁ ସତର୍କ ରହିବାକୁ ପଡ଼ିବ । ଆମର ଏକମାତ୍ର ସମ୍ବଳ ହେଉଛନ୍ତି ଦେଶର ଗରିବ ଶ୍ରେଣୀ ଏବଂ ସେମାନଙ୍କ ପ୍ରଦତ୍ତ ଯତ୍‌ସାମାନ୍ୟ ଚାନ୍ଦା । ମାତ୍ର ଏହି କାର୍ଯ୍ୟ କଷ୍ଟସାଧ୍ୟ ଏବଂ ଆମର ତତ୍ପରତା ଉପରେ ପୂର୍ଣ୍ଣରୂପେ ନିର୍ଭର କରେ । ପ୍ରାଥମିକ ଅବସ୍ଥାରେ ଆମକୁ ଅସୁବିଧା ଭୋଗ କରିବାକୁ ପଡ଼ୁଛି ଓ ପଡ଼ିବ; ମାତ୍ର ପଇସା ନିମନ୍ତେ କୌଣସି ଅନୁଷ୍ଠାନ ବନ୍ଦ ହୋଇଯିବ ବୋଲି ମୁଁ କଳ୍ପନା କରିପାରୁନାହିଁ ।"

## ପାର୍ଟିର ପ୍ରସାର ଓ ସଂଗଠନ

୧୯୪୯ ମସିହାରେ ସୋସଲିଷ୍ଟ ସାଥିମାନେ ଖୁବ୍ କଷ୍ଟ ସହି ସଂଗଠନର ପ୍ରସାର କରିବାରେ ଲାଗିଲେ । କୃଷକ, ଛାତ୍ର, ଯୁବକ ଓ ଶ୍ରମିକ ସଂଗଠନ ବ୍ୟାପକଭାବରେ କରାଗଲା । 'କୃଷକ' ସଂବାଦପତ୍ରକୁ ଅର୍ଦ୍ଧସାପ୍ତାହିକରେ ପରିଣତ କରାଗଲା । ପ୍ରଦେଶର ଗୃହଆଡ଼େ ଭାଗଚାଷ ସମସ୍ୟା ଯେଉଁ ଆନ୍ଦୋଳନମାନ ଲାଗିରହିଲା । ଏହି ଭାଗଚାଷ ସମସ୍ୟା ସହ ପାର୍ଟି ଏପରିଭାବରେ ଜଡ଼ିତ ହୋଇଗଲା ଯେ ବିଭିନ୍ନ ଅଞ୍ଚଳରୁ ଲୋକେ ସ୍ୱତଃପ୍ରବୃତ୍ତ ହୋଇ ପାର୍ଟି ଲୋକଙ୍କ ପାଖରେ ପହଞ୍ଚିଲେ ତାଙ୍କ ଅଞ୍ଚଳରେ କୃଷକ ସଂଗଠନ କରିବା ନିମନ୍ତେ । କୃଷକ ଆନ୍ଦୋଳନ ହେଉଥିଲା ଏବଂ ତାହା ସଙ୍ଗେ ସଙ୍ଗେ ପାର୍ଟି ମେମ୍ବର କରାଯାଇ ସ୍ଥାନୀୟ ଶାଖା ସ୍ଥାପିତ ହୋଇଯାଉଥିଲା ।

## ଜୟପ୍ରକାଶଙ୍କ ବ୍ୟାପକ ଗସ୍ତ

ଜୟପ୍ରକାଶ ନାରାୟଣ ଅକ୍‌ଟୋବର ନଭେମ୍ବରରେ ଦୀର୍ଘ ୧୫ଦିନ ଧରି ଓଡ଼ିଶାର ବିଭିନ୍ନ **ଅଞ୍ଚଳ ଗସ୍ତ କଲେ । ତାହା ପୂର୍ବରୁ ଜାତୀୟ କାର୍ଯ୍ୟକାରୀ ସମିତିର ଏକ ଶିବିର ବାଙ୍ଗାଲୋର**



[ କଟକରେ ଜୟପ୍ରକାଶ ନାରାୟଣ—୧୯୪୯ ]



[ ସସ୍ତ୍ରୀକ ଜୟପ୍ରକାଶ ନାରାୟଣ—କଟକ, ୧୯୪୯ ]



[ ଏକ ଲଞ୍ଚରେ ଜେ. ପି.ଙ୍କ ସହ ସାରଙ୍ଗଧର ଦାସ ଓ ସୁରେନ୍ଦ୍ରନାଥ ଦ୍ୱିବେଦୀ ]



[ କଟକ ନାରୀସଂଘସଦନରେ ପ୍ରଥମ ସୋସଲିଷ୍ଟପାର୍ଟି ସମ୍ମିଳନୀ : ୧୯୪୯ –ମଝିରେ ବସିଛନ୍ତି ଜୟପ୍ରକାଶ ଓ ଦ୍ୱିବେଦୀ ]



[ ଏକ ସାଧାରଣ ସଭାରେ ଦ୍ୱିବେଦୀ ଓ ଜୟପ୍ରକାଶ ]



[ ସାଲେପୁରରେ ସୋସଲିଷ୍ଟ ପାର୍ଟି ସମ୍ମିଳନୀ—ବାମରୁ ଦକ୍ଷିଣ—ଶ୍ରୀମତୀ ଗାୟତ୍ରୀ ଦେବୀ, ଶ୍ରୀମତୀ ଓ ଶ୍ରୀ ବର୍ଦ୍ଧମାନ ସିଂ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ବାବୁଲାଲ ଦୋଷୀ ]



[ ଏସିଆ ପ୍ରଜା ସୋସଲିଷ୍ଟ ପାର୍ଟି ସମ୍ମିଳନୀ, ୧୯୫୫—ଭଲେନୋ (ଇଣ୍ଡୋନେସିଆ), ଧାରଂଧର ଦାସ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଅଷ୍ଟ୍ରେଲିଆ ପ୍ରତିନିଧି ଓ ଝିଅ ଜାନା ]

ଠାରେ ହୋଇଥିଲା । ଏହି ବୈଠକରେ ସୋସଲିଷ୍ଟ ପାର୍ଟି ଚୀନରେ କମ୍ୟୁନିଷ୍ଟ ପାର୍ଟିର ବିଜୟକୁ ସମର୍ଥନ ଜଣାଇଥିଲା ଏବଂ କମ୍ୟୁନିଷ୍ଟ ସରକାର ସ୍ଥାପନାକୁ ସ୍ୱାଗତ କରିଥିଲା । ଭାରତବର୍ଷରେ କୌଣସି ରାଜନୈତିକ ଦଳ ସେତେବେଳକୁ ଏପରି କରିନାହାନ୍ତି । କମ୍ୟୁନିଷ୍ଟ ଚୀନକୁ ଜାତିସଂଘରେ ସ୍ଥାନ ଦେବା ନିମନ୍ତେ ସୋସଲିଷ୍ଟ ପାର୍ଟିର ଆନ୍ଦୋଳନ ଅବ୍ୟାହତ ରହିଥିଲା ।

ଜୟପ୍ରକାଶଙ୍କ ଗସ୍ତର ସୁଯୋଗରେ ଆମେ ପାର୍ଟିକୁ ଓଡ଼ିଶାରେ ପ୍ରତିଷ୍ଠିତ କରିଦେବାକୁ ଚାହୁଁଥିଲୁ । କିଛି କେଉଁଠି ନ ଥିବା ଅବସ୍ଥାରୁ ଏପରି ଏକ ରାଜନୈତିକ ଶକ୍ତି ଠିଆକରିବା ସହଜ ନ ଥିଲା । ମୋ ମନରେ କିନ୍ତୁ ଦୃଢ଼ବିଶ୍ୱାସ ଆସିଯାଇଥିଲା ଯେ ସବୁ ପ୍ରତିକୂଳ ଅବସ୍ଥାକୁ ଅତିକ୍ରମ କରି ଆମେ ଆଗେଇପାରିବୁ ଏବଂ ଯେଉଁମାନେ ଉପହାସ କରି [illegible]ଚ୍ଛଲ୍ୟ କରୁଥିଲେ, ତାଙ୍କୁ ଉଚିତ ଶିକ୍ଷା ଦେବୁ । ଯେପରିଭାବରେ ବିନା କୁଣ୍ଠାରେ ସାଥୀମାନେ କଂଗ୍ରେସରୁ ବାହାରିଆସିଲେ, ଆଗ ପଛକୁ ଅନାଇ ଏବଂ ଯେଉଁ ସଂଖ୍ୟାରେ ଯୁବକ ଓ ଅନ୍ୟମାନେ ଅତି ନିଷ୍ଠାର ସହ ଏଥିରେ ସଂପୃକ୍ତ ହୋଇଗଲେ, ଏକ ଆଶାବାଦୀ [illegible] ମୋ ଆଖି ଆଗରେ ଝଲସି ଉଠିଲା । ମୋର ଏ ବିଶ୍ୱାସ ଆହୁରି ଦୃଢ଼ ହୋଇଗଲା ଜୟପ୍ରକାଶଜୀଙ୍କର ପ୍ରାୟ ୧୭ଦିନର ଗସ୍ତରେ । ଓଡ଼ିଶାର ପ୍ରାୟ ସବୁ ପ୍ରଧାନ ସ୍ଥଳୀ ଏବଂ ଗ୍ରାମାଞ୍ଚଳରେ ଆମର ମୁଖ୍ୟ କର୍ମକେନ୍ଦ୍ରଗୁଡ଼ିକରେ ତାଙ୍କ ପାଇଁ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । [illegible] ଚେଷ୍ଟା ହେଲା ଅଭ୍ୟର୍ଥନା ସମିତିରେ ସମାଜର ପ୍ରତିଷ୍ଠିତ ଓ ସବୁଶ୍ରେଣୀର ଲୋକଙ୍କୁ ସଂପୃକ୍ତ କରିବା ନିମନ୍ତେ । ସୋସଲିଷ୍ଟ ପାର୍ଟି ସହ ସେମାନେ ଆସନ୍ତେ ନାହିଁ; [illegible] ଜୟପ୍ରକାଶଜୀଙ୍କ ଅଭ୍ୟର୍ଥନା ଲାଗି କେହି ମନାକଲେ ନାହିଁ; ଏପରିକି କଟକରେ ଆମେ ଯେଉଁ ସମିତି ଗଢ଼ିଲୁ, ସେଥିରେ କଂଗ୍ରେସ କମିଟିର ବାରଣ ସତ୍ତ୍ୱେ କେହି କେହି ପୁରୁଖା କଂଗ୍ରେସଲୋକେ ବି ଯୋଗଦେଇଥିଲେ । ସବୁଠି ଆମର କର୍ମୀମାନେ ନୂଆ ଲୋକଙ୍କୁ ସଂପୃକ୍ତ କରିବାରେ ସଫଳ ହେଲେ ଏବଂ ଏହା କେବଳ ଅନୁକୂଳ ବାୟୁମଣ୍ଡଳ ସୃଷ୍ଟି କଲା ନାହିଁ—ଜନମହଲରେ ମଧ୍ୟ ପାର୍ଟି ପ୍ରାୟ ଗୃହୀତ ହୋଇଗଲା ।

ପ୍ରତି ସ୍ଥାନରେ କିଛି ଟଙ୍କାଥିଲି ଭେଟିଦେବା ନିମନ୍ତେ ବ୍ୟବସ୍ଥା କରାହୋଇଥିଲା । ପାର୍ଟିର ଯୁବକ-ଯୁବତୀମାନେ ଗୀତ ଗାଇ ପାର୍ଟିର ବାର୍ତ୍ତା ଶୁଣାଇ ଜୟପ୍ରକାଶଙ୍କ ଆଗମନର ପ୍ରାୟ ମାସକ ଆଗରୁ ପ୍ରଦେଶର ଚାରିଆଡ଼େ ତୁମୁଳ ପ୍ରଚାର ଆରମ୍ଭ କଲେ । କଟକରେ ଆମେ ଯେଉଁ 'ଜନ ସଂସ୍କୃତି ସଙ୍ଘ' ସ୍ଥାପନା କରିଥିଲୁ, ବାବୁଲାଲ ଦୋଷୀଙ୍କ ନେତୃତ୍ୱରେ କଲେଜ-ପଢ଼ୁଆ ଝିଅ ପୁଅ ଗଳିକନ୍ଦିରେ ବାଜା ବଜାଇ ଗୀତ ଗାଇ ଲୁଗା ପତାଇ ଚାନ୍ଦା ମାଗିବା ଟା ଏକ ଅପୂର୍ବ ଦୃଶ୍ୟ ହୋଇଥିଲା । କଟକ ସହରର ଚାରିଆଡ଼େ ଲୋକେ ଜୟପ୍ରକାଶ ଓ ସୋସଲିଷ୍ଟ ପାର୍ଟି କଥା ଆଲୋଚନା କରିବାକୁ ଲାଗିଲେ । ଏପରି ଏକ ବାୟୁମଣ୍ଡଳ ସୃଷ୍ଟି ହେଲା ଯେ ଅନେକେ ମୋ ପାଖକୁ ଆସି ଲୁକ୍କାୟିତ ଭାବରେ ଚାନ୍ଦା ଦେଇଗଲେ । ଏହି ଗସ୍ତରେ ମୋଟ ଯେଉଁ ୨୧ ହଜାର ପର୍ଯ୍ୟନ୍ତ ଟଙ୍କା ସଂଗୃହୀତ ହୋଇଥିଲା, ସେଥିରୁ

କେବଳ କଟକର ସଂଗ୍ରହ ଥିଲା ୫ହଜାରରୁ ବେଶି। ତହିଁରୁ ୩ହଜାର ମୁଷ୍ଟିଭିକ୍ଷା ପରି ଜନସଂସ୍କୃତି ସଙ୍ଘ ଦ୍ୱାରା ସଂଗୃହୀତ ହୋଇଥିଲା। ମୋ ମନରେ ପରମ ଆନନ୍ଦ ଯେ ଏହି ଯେଉଁ ଜନ ସଂସ୍କୃତି ସଙ୍ଘର ମୂଳଦୁଆ ପଡ଼ିଥିଲା, ପରେ ସେହିମାନଙ୍କ ଭିତରୁ ବହୁ ଯୁବକ ଓ ଯୁବତୀ ଓଡ଼ିଶାର ଖ୍ୟାତନାମା ଶିଳ୍ପୀରୂପେ ପରିଚିତ ହେଲେ। ବାବୁଲାଲ ଦୋଷୀ ପାର୍ଟି କାର୍ଯ୍ୟରୁ ଅବ୍ୟାହତି ନେଇ ଓଡ଼ିଶାର କଳା-ସଂସ୍କୃତିର ବିକାଶ ନିମନ୍ତେ ସମସ୍ତ ସମୟ ଦେବାର ପଣ ନେଲେ। ମୁଁ ସେଥିରେ ତାଙ୍କୁ ଉତ୍ସାହିତ କଲି ଏବଂ ସବୁମନ୍ତେ ଚେଷ୍ଟା କରି ମୋ ପ୍ରତି ସଦିଚ୍ଛାସଂପନ୍ନ ଓ ସ୍ନେହଶୀଳ ବ୍ୟକ୍ତିଙ୍କୁ ଏଥିଭିତରକୁ ଅଣାଯାଇପାରିଲା। ମୋର ଅନୁରୋଧରେ ଡକ୍ଟର ପ୍ରାଣକୃଷ୍ଣ ପରିଜା ଏହାର ପ୍ରଥମ ସଭାପତି ହୋଇଥିଲେ। ଆଜି କଳାବିକାଶ କେନ୍ଦ୍ର ଓଡ଼ିଶାର କଳାସଂସ୍କୃତି କ୍ଷେତ୍ରରେ ଯାହା କରିପାରିଛି, ତାହା ସର୍ବଜନ-ପ୍ରଶଂସିତ। ଏହାର ପ୍ରେରଣା ଜନସଂସ୍କୃତି ସଙ୍ଘରୁ ମିଳିଥିଲେ ସୁଦ୍ଧା ବାବୁଲାଲ ଦୋଷୀଙ୍କ ତ୍ୟାଗ, ଧୈର୍ଯ୍ୟ ଓ ଅପୂର୍ବ ସଂଗଠନ ଶକ୍ତି ଯୋଗୁଁ ଏଭଳି ବିରାଟ ଅନୁଷ୍ଠାନରୂପେ ଛିଡ଼ା ହୋଇପାରିଲା। ଜୟପ୍ରକାଶଙ୍କ ଗସ୍ତ ଭିତରେ ଓଡ଼ିଶାର ଏକ ନୂତନ ଦିଗର ପଥ ନିର୍ଣ୍ଣୟ ହେଲା ଏବଂ ବାବୁଲାଲ ଦୋଷୀଙ୍କ ପାଖରେ ଓଡ଼ିଶାର କଳାପ୍ରେମୀ ନିଶ୍ଚୟ ଋଣୀ ରହିବେ।

ଜୟପ୍ରକାଶ ଯେଉଁଠିକି ଗଲେ, ଅସମ୍ଭବ ଜନସମାଗମ ହେଲା ଏବଂ ଆମର ସାଥୀମାନେ ଏପରି ନିପୁଣତାସହକାରେ କାର୍ଯ୍ୟ ସଂପାଦନା କଲେ ଯେ କୌଣସି ସ୍ଥାନରେ କିଛି ବ୍ୟତିକ୍ରମ ଘଟିଲା ନାହିଁ ଏବଂ ବିରୋଧୀମାନଙ୍କର ଅପଚେଷ୍ଟା ବିଫଳ ହେଲା। "ହୋ ଆମେ କୃଷୀ ମୂଲିଆ, ଆମେ ଗଢ଼ୁ ଆମ ଦୁନିଆ" ନାଦରେ ଓଡ଼ିଶାର ପୁରପଲ୍ଲୀ ପ୍ରକମ୍ପିତ ହେଲା। ଜୟପ୍ରକାଶ ମଧ୍ୟ ଏ ସବୁ ଆୟୋଜନରେ ଖୁବ୍ ପ୍ରୀତ ହୋଇଥିଲେ। ମୋର ତାଙ୍କ ଭିତରେ ବନ୍ଧୁତା ଏହି ଗସ୍ତ ଭିତରେ ଘନିଷ୍ଠତର ହୋଇଗଲା। ଏହି ୧୯୫୧।୧୭ ଦିନଯାକ ସେ, ତାଙ୍କ ସ୍ତ୍ରୀ ପ୍ରଭାବତୀ ଓ ମୁଁ ପ୍ରାୟ ଅଧିକାଂଶ ସମୟ ଏକାଠି ରହୁଥିଲୁ—ରାଜନୀତିକ ବାର୍ତ୍ତାଳାପ ଛଡ଼ା ବ୍ୟକ୍ତିଗତ ଦୁଃଖସୁଖ-ଚର୍ଚ୍ଚାରେ ଆମେ ପରସ୍ପରକୁ ଭଲଭାବରେ ଜାଣିପାରିଲୁ ଏବଂ ନିକଟତର ହେଲୁ। ପରେ ରାଜନୀତିକ ମତଭେଦ ହୋଇ ସେ ଆମମାନଙ୍କୁ ଛାଡ଼ିଦେଇ ଭୂଦାନରେ ଯୋଗଦେଲେ। ଏଥିରେ ସମସ୍ତେ ଦୁଃଖିତ ଓ ବିଷାଦଗ୍ରସ୍ତ ହେଲେ। ଜୟପ୍ରକାଶଙ୍କ ଉପରେ ପ୍ରଭାବ ପକାଇବାକୁ ଓ ତାଙ୍କୁ ଆମ ଭିତରକୁ ଫେରାଇଆଣିବା ନିମନ୍ତେ ବହୁଚେଷ୍ଟା ହୋଇଛି। କିନ୍ତୁ ମୁଁ ଯେତେବେଳେ ଯାଇଛି, ପ୍ରଭାବତୀ ମତେ ଆଗରୁ ବାରଣ କରି ଦେଉଥିଲେ ଏ ପ୍ରସଙ୍ଗ ନ ଉଠାଇବା ନିମନ୍ତେ। ଜେ: ପି: ପାର୍ଟି ଛାଡ଼ିଲା ପରେ ମୁଁ ତାଙ୍କୁ ବ୍ୟକ୍ତିଗତ ପତ୍ର ଲେଖିଥିଲି—ପ୍ରଭାବତୀ କହିଲେ ସେ ରାତିଟି ସାରା କାନ୍ଦି କାନ୍ଦି କଟାଇଥିଲେ ମୁଁ ମୋର ପ୍ରିୟତମ ସାଥୀମାନଙ୍କୁ କଣ ପଥରେ ଦଗାଦେଲି କି ଏହା କହି। ଜୟପ୍ରକାଶଜୀ ଅତ୍ୟନ୍ତ ଭାବପ୍ରବଣ ଥିଲେ। ମୁଁ ତାଙ୍କର ସ୍ନେହ ଓ ପ୍ରୀତିଭାବ ମୃତ୍ୟୁଦିବସ ପର୍ଯ୍ୟନ୍ତ ପାଇ ଆସିଥିଲି। ଥରେ ଆମେ ସବୁ ବାରଣସୀରେ, ବୋଧହୁଏ ୧୯୭୧ ମସିହା ଅକ୍ଟୋବର ମାସ

ହେବ; ମୁଁ ସେତେବେଳକୁ ସୋସଲିଷ୍ଟ ପାର୍ଟିରୁ ଇସ୍ତଫା ଦେଇସାରିଥିଲି, ନବବାବୁଙ୍କ ନାତୁଣୀ (ଉତ୍ତରାର ଝିଅ ପୁଷ୍ପୁ)ର ବିବାହ ଉପଲକ୍ଷ୍ୟେ ଆମ ସମସ୍ତଙ୍କର ସେଠ ଭେଟ । ଅନ୍ୟମାନଙ୍କ ଭିତରେ ଅଚ୍ୟୁତ ପଟ୍ଟବର୍ଦ୍ଧନ ବି ଥିଲେ । ଏହି ଥିବାବେଳେ ଜୟପ୍ରକାଶଙ୍କର ଜନ୍ମଦିବସ ପଡ଼ିଗଲା । ସମବେତ ସବୁ ବନ୍ଧୁ ତାଙ୍କୁ ସମ୍ବର୍ଦ୍ଧନା ଦେବାକୁ ଗଲେ; ମାତ୍ର କୌଣସି କାରଣରୁ ମୁଁ ଯାଇ ନ ଥିଲି । ତତ୍ପରଦିନ ସକାଳୁ ନିମନ୍ତ୍ରଣ ଆସିଲା ମୁଁ ହରିଜଣଙ୍କ ସହ ଯାଇ ଜଳଖିଆ ଖାଇବା ନିମନ୍ତେ ଏବଂ ମଜାର କଥା ହେଲା ମୁଁ ଡାଏବେଟିସ୍ ବା ମଧୁମେହ ରୋଗୀ ବୋଲି ଜାଣି ସୁଦ୍ଧା ଜୟପ୍ରକାଶ ମୋତେ ମିଠା ଖାଇବାକୁ ଦେଲେ ଏବଂ ନିଜେ ବି ଡାଇବେଟିସ୍ ରୋଗୀ ହୋଇ ଖାଇଲେ । ମୋତେ କହିଲେ, 'ସୁରେନ୍‌ବାବୁ, ଖାଇଏ; ପ୍ରଭା ଘରେମେଁ ବନାଈ ହୈ ।' ସତେକି ପ୍ରଭାବତୀଙ୍କ ହାତ ବାଜିଗଲେ ଆଉ ମିଠାର ପ୍ରକୋପ ରହିଲା ନାହିଁ ! ଜନ୍ମଦିବସ ଉପଲକ୍ଷ୍ୟେ ମୋ ପ୍ରତି ଥିଲା ଏହା ସ୍ନେହର ଏକ ନମୁନା ।

ଜୟପ୍ରକାଶଙ୍କ ଗସ୍ତରେ ଯେଉଁ ଧନ ସଂଗୃହୀତ ହେଲା, ତହିଁର ଅଧିକ ଅଂଶ କୃଷକ ପ୍ରେସରେ ବିନିଯୋଗ କରାଗଲା । ଗ୍ରେଟ ଟ୍ରେଡଲ ମେସିନ୍‌ଟିଏ ଥିଲା । ଏହି ଟଙ୍କାରେ ଭୁବନେଶ୍ୱର ମିଶ୍ରଙ୍କ ସାଙ୍ଗରେ ନେଇ ମୁଁ କଲିକତାରୁ ଏକ ଫ୍ଲାଟ୍ ବେଡ୍ ମେସିନ୍ କିଣି ଆଣିଲି । ଉଦ୍ଦେଶ୍ୟ ଥିଲା ଖାଲି କୃଷକ ପ୍ରେସର ଆୟବୃଦ୍ଧି ନୁହେଁ—ଅର୍ଦ୍ଧ-ସାପ୍ତାହିକରୁ "କୃଷକ"କୁ ଦୈନିକରେ ପରିଣତ କରିବା ନିମନ୍ତେ । ପରେ ଆମେ ଯେତେବେଳେ ପୁରୀରେ ଏକ ସମାଜବାଦୀ ଶିବିରରେ ସବୁ ଏକତ୍ର ହେଲୁ, ସେଠାରେ ସ୍ଥିର କରାଗଲା ଏକ ପବ୍ଲିକ୍ ଲିମିଟେଡ କମ୍ପାନୀ ଗଢ଼ି, ଶେୟାର ବିକି କରି କାଗଜ ବାହାରକରିବା । ଜନଶକ୍ତି ପବ୍ଲିକେସନ ଲିମିଟେଡ୍ ନାମରେ ଏକ କମ୍ପାନୀ ଗଢାହେଲା । ସେଥିରେ ମୁଁ, ସାରଙ୍ଗଧର ଦାସ, ପଣ୍ଡିତ ଆକୁଳ ମିଶ୍ର ଓ ଖଣ୍ଟୁ ସୁନ୍ଦର ଦାସ ଡିରେକ୍‌ଟର ରହିଲୁ । କିଛି ଶେୟାର ବିକ୍ରି କରାଯାଇ ବିଧିବଦ୍ଧ ଅଫିସ ଖୋଲି କାର୍ଯ୍ୟାରମ୍ଭ ହେଲା । ମାତ୍ର ଆମେ ସବୁ ରାଜନୀତିକ କାର୍ଯ୍ୟ ଉପରେ ଏଥିପ୍ରତି ଦୃଷ୍ଟି ଦେଇ ପାରିଲୁ ନାହିଁ । ଅବଶେଷରେ କମ୍ପାନୀଟିକୁ ଭାଙ୍ଗି-ଦେବାକୁ ପଡ଼ିଥିଲା । ସେହିପରି ମୋ ଜୀବନରେ ଆଉ ଏକ ଦୁଃଖ ରହିଗଲା ଯେ ଯେଉଁ କୃଷକ ପ୍ରେସକୁ ଓଡ଼ିଶାର ସମାଜବାଦୀ ଆନ୍ଦୋଳନ ଓ ନବସଂସ୍କୃତିର ପ୍ରାଣକେନ୍ଦ୍ରରୂପେ ଗଢ଼ିବାର ପରିକଳ୍ପନା ମନରେ ଧରି ଆରମ୍ଭ କରାଯାଇଥିଲା, ତାହା ଶେଷକୁ ଉଜୁଡ଼ିଗଲା ।

ଯାହାହେଉ ଜୟପ୍ରକାଶଙ୍କ ବ୍ୟାପକ ଗସ୍ତ ଫଳରେ ଓଡ଼ିଶା ପାର୍ଟି ନୂତନ ବଳ ପାଇଲା ଏବଂ ଆଗକୁ ଯିବା ନିମନ୍ତେ ବହୁତ ପ୍ରେରଣା ମିଳିଲା । ସେତେବେଳକୁ ନିର୍ବାଚନ ହବାର ଏକ ହାଉଆ ବାଜିଥିଲା । ନୂତନ ସଂବିଧାନ ତିଆରି କାର୍ଯ୍ୟ ଚାଲିଥିଲା—ତାହା ଶେଷ ହେବା ସଙ୍ଗେ ସଙ୍ଗେ ଦେଶରେ ସାବାଳକ ଭୋଟ ପ୍ରଥାନୁସାରେ ନିର୍ବାଚନ କରାଯିବାର ବ୍ୟବସ୍ଥା ହେଉଥିଲା । ମାତ୍ର ବର୍ଷକ ତଳେ ପାର୍ଟି କଂଗ୍ରେସ ଛାଡ଼ି ସ୍ୱାଧୀନ ଭାବରେ କାର୍ଯ୍ୟ କରିଥିଲା; ସଂଗଠନର ପ୍ରସାର ପୂରା ହୋଇ ନ ଥିଲା । ନିର୍ବାଚନ ଦାୟିତ୍ୱ ତୁଲାଇପାରିବା

ଭଳି ଶକ୍ତି ଓ ସମ୍ବଳ ପାର୍ଟି ହାତରେ ନ ଥିଲା । ମାତ୍ର ଏହା ସଙ୍ଗେ ସଙ୍ଗେ ଏ କଥା ମଧ୍ୟ ଉପଲବ୍ଧି କରାଯାଉଥିଲା ଯେ ଦେଶରେ ଏକ ଗଣତାନ୍ତ୍ରିକ ବିରୋଧ ଶକ୍ତିର ଆବଶ୍ୟକତା ରହିଥିଲା । କମ୍ୟୁନିଷ୍ଟ ପାର୍ଟି ଛଡ଼ା ଅନ୍ୟ କୌଣସି ସଂଗଠିତ ଦଳ ନ ଥିଲା । ସୋସଲିଷ୍ଟଙ୍କୁ ଏକ ଜାତୀୟ କର୍ତ୍ତବ୍ୟ ଭାବରେ ଏଥିଲାଗି ସଂଗଠିତ ହେବାକୁ ପଡ଼ିଲା । ଦ୍ୱିତୀୟ କଂଗ୍ରେସ ତ୍ୟାଗ କଲାପରେ ନାସିକ ସମ୍ମିଳନୀରେ ବିରୋଧୀ ଦଳ ଭାବରେ ଭୂମିକା ଗ୍ରହଣ କରିବା ନିମନ୍ତେ ପ୍ରସ୍ତାବ ପାସ୍ ହୋଇଥିଲା । ଆମେ ଓଡ଼ିଶାରେ ଆମର କ୍ଷୁଦ୍ର ଉଦ୍ୟମ ଏଥିଲାଗି ଆଗରୁ କରିଦେଲୁ ଏବଂ ମୁଁ ବିଭିନ୍ନ ଜିଲ୍ଲାକୁ ଯାଇ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ସଂପର୍କ ସ୍ଥାପନର ଉଦ୍ୟମ କଲି । ନିର୍ବାଚନ ବିଳମ୍ବ ଥିଲା, ତଥାପି ସେ ବିଷୟରେ ଅନ୍ୟମାନେ କିଭଳି ଚିନ୍ତା କରୁଛନ୍ତି ଏବଂ ଆମ ପ୍ରତି କେତେଦୂର ସମର୍ଥନ ମିଳିପାରିବ, ଏହାର ଏକ କଳନା କରି ନେଉଥିଲି ।

## ୧୯୫୦ରେ ମାନ୍ଦ୍ରାଜ ସମ୍ମିଳନୀ

ଏହା ପରେ ୧୯୫୦ ଜୁଲାଇ ୮ରୁ ୧୨ ପର୍ଯ୍ୟନ୍ତ ସୋସଲିଷ୍ଟ ପାର୍ଟିର ଅଷ୍ଟମ ଅଧିବେଶନ ମାନ୍ଦ୍ରାଜର ୟୁସୁଫ୍ ମେହେରଲ୍ଲୀଙ୍କ ନାମରେ ନାମିତ ମେହେରଲି ନଗରରେ ବସିଲା । ସାଥୀ ମେହେରଲ୍ଲୀଙ୍କର ଏଥିରେ ସଭାପତି ହେବାର ଥିଲା । ଏଥିପୂର୍ବରୁ ବାଙ୍ଗାଲୋରରେ ହୋଇଥିବା ଜେନେରାଲ କାଉନ୍‌ସିଲ ବୈଠକରେ ସେ ସଭାପତିତ୍ୱ କରିଥିଲେ; ମାତ୍ର ତାଙ୍କର ମୃତ୍ୟୁ ହୋଇଯାଇଥିବାରୁ ଅଶୋକ ମେହେଟା ସଭାପତିତ୍ୱ କରିଥିଲେ । ଏହି ସମ୍ମିଳନୀବେଳେ ପାର୍ଟିର ଆହୁରି ଏକ ଦାରୁଣ କ୍ଷତି ହେଲା । ଅଚ୍ୟୁତ ପଟ୍ଟବର୍ଦ୍ଧନ ରାଜନୀତିରୁ ଅପସରିଗଲେ । ଅଚ୍ୟୁତ ଏବେ ବି ବଞ୍ଚିଛନ୍ତି । ଆମ ଭିତରେ ପତ୍ରାଳାପ ରହିଛି । ଅଚ୍ୟୁତ ପଟ୍ଟବର୍ଦ୍ଧନ ଯେପରି ମେଧାବୀ, ବିଚକ୍ଷଣ, ସେହିପରି ନୀତିବାନ୍ ଓ ଦୂରଦୃଷ୍ଟିସମ୍ପନ୍ନ । ପାର୍ଟିର ମୂଳକର୍ତ୍ତାମାନଙ୍କ ଭିତରୁ ସେ ଜଣେ—ବାଗ୍ମୀ ଏବଂ ସୁଲେଖକ । 'ଭାରତ ଛାଡ଼' ଆନ୍ଦୋଳନବେଳେ ଅଲୌକିକ ସାଂଗଠନିକ ପାରଦର୍ଶିତା ଦେଖାଇଥିଲେ । ପାର୍ଟିରେ ଥିବା ପର୍ଯ୍ୟନ୍ତ ସେ ନଗୃହୁଁ ଥିଲେ ସୁଦ୍ଧା ତାଙ୍କୁ ସମ୍ମାନଜନକ ସ୍ଥାନ ଦିଆଯାଉଥିଲା । ଜୟପ୍ରକାଶଙ୍କ ସହିତ ମଧ୍ୟ ତାଙ୍କର ଘନିଷ୍ଠତା ଥିଲା । ସେ ଆଧ୍ୟାତ୍ମିକ ଓ ସାଂସ୍କୃତିକ କାର୍ଯ୍ୟରେ ନିଜର ସମୟ କଟାଇବାକୁ ସ୍ଥିର କରି ପାର୍ଟି ଛାଡ଼ିଦେଲେ । ସେ ଏବେ ବିଖ୍ୟାତ ଦାର୍ଶନିକ କୃଷ୍ଣମୂର୍ତ୍ତିଙ୍କ ସହିତ ସଂପୃକ୍ତ ଏବଂ ଆନନ୍ଦ ବେଦାନ୍ତ ଫାଉଣ୍ଡେସନ ପରିଚାଳିତ ଶିକ୍ଷାନୁଷ୍ଠାନ ଓ ସାଂସ୍କୃତିକ କାର୍ଯ୍ୟ ସହିତ ଘନିଷ୍ଠ ଭାବରେ ଜଡ଼ିତ । କୌଣସି ଅନ୍ୟ କାରଣରୁ ସେ ପାର୍ଟି ଛାଡ଼ିଲେ କି ନାହିଁ, ମୁଁ କେବେ ତାଙ୍କୁ ପଚାରିନାହିଁ କି ଅନ୍ୟ ବନ୍ଧୁଙ୍କଠାରୁ ବୁଝିନାହିଁ । ତେବେ ମୋତେ ଯେତିକି ଖବର ଜଣା, ସେଥିରୁ ଅନୁମାନ, ମହାରାଷ୍ଟ୍ର ପାର୍ଟିରେ ତାଙ୍କ ପ୍ରତି ସହୃଦୟତାର ଅଭାବ ଥିବା ଲକ୍ଷ୍ୟ କରି ସେ ଟିକିଏ ବୀତସ୍ପୃହ ହୋଇପଡ଼ିଥିଲେ । ଦୂରରେ ରହି ସୁଦ୍ଧା ସେ

ପାର୍ଟିର କାର୍ଯ୍ୟକଳାପ ଏବଂ ପୁରୁଣା ସାଥୀମାନଙ୍କର ଖବର-ଅନ୍ତର ରଖନ୍ତି । ସେ ରାଜନୀତିରୁ ଏପରିଭାବରେ ଅପସରିଯିବାଦ୍ୱାରା ଆମ ଦେଶର ରାଜନୀତିକ୍ଷେତ୍ରରୁ ଜଣେ ବଡ଼ ଚିନ୍ତାଶୀଳ କର୍ମଠ ବ୍ୟକ୍ତି ଅନ୍ତର ହୋଇଗଲେ । ସେ ଯୁବକ ଥାଇ ସୁଦ୍ଧା ତାଙ୍କର ଚିନ୍ତା ଓ କର୍ମରେ ପଣ୍ଡିତ ଜବାହରଲାଲ ଏପରି ମୁଗ୍ଧ ହୋଇଥିଲେ ଯେ ୧୯୩୬ରେ ଲକ୍ଷ୍ନୌ କଂଗ୍ରେସର ସଭାପତିରୂପେ ସେ ତାଙ୍କୁ କଂଗ୍ରେସ କାର୍ଯ୍ୟକାରୀ ସମିତିକୁ ମନୋନୀତ କରିଥିଲେ । ସେତେବେଳେ ଭାରତ ରାଜନୀତିରେ ଏହା ଏକ ଅତି ଉଚ୍ଚସ୍ଥାନରୂପେ ବିଚାର କରାଯାଉଥିଲା ।

ମାନ୍ଦ୍ରାଜ ସମ୍ମିଳନୀରେ ୩୮୦ ଜଣ ପ୍ରତିନିଧି ଓ ୭୭୨ ଜଣ ସଭ୍ୟ ଦର୍ଶକ ଉପସ୍ଥିତ ଥିଲେ । ଆମେ ଓଡ଼ିଶାରୁ ବି ୧୨ ଜଣ ଯୋଗଦେଇଥିଲୁ । ମୋ ସ୍ତ୍ରୀ ଗୀତୁ ମଧ୍ୟ ଏ ସମ୍ମିଳନୀରେ ଯୋଗଦେଇଥିଲେ ମୋର କନ୍ୟା ନିହାରବାଳାକୁ ନେଇ । ମୁଁ ମଞ୍ଚଉପରେ ବସିଥିଲି—ଅନ୍ୟନି ଗୀତୁ ଅନ୍ୟ ମହିଳା ପ୍ରତିନିଧିଙ୍କ ସହ ବସିରହିଥିଲି । ମାନି ଝିଅଟା ମୋ ପ୍ରତି ଏତେ ଆସକ୍ତ ଥିଲା ଯେ ସେ ମାଆ ପାଖରୁ ବାପା ବାପା ବୋଲି ପାଟିକରି ଡେଲିଗେଟ୍ ମେଳରେ ଦଉଡ଼ି ମଞ୍ଚଉପରକୁ ଧାଇଁଆସିଲା । ସେହିଦିନୁ ସେ ଆମ ପାର୍ଟି ମହଲରେ ଖୁବ୍ ପରିଚିତ ହୋଇଯାଇଥିଲା ଏବଂ ପ୍ରଭାବତୀ ଦେବୀ ତାକୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ ।

ଏହି ସମ୍ମିଳନୀରେ ଜୟପ୍ରକାଶ ନାରାୟଣ ରାଜନୀତିକ ରିପୋର୍ଟ ଦେଇଥିଲେ ଏବଂ ଲୋହିଆ ଆନ୍ତର୍ଜାତିକ ନୀତି ବିଷୟରେ ତୃତୀୟ ଶିବିର କଥାଟି ଉତ୍ଥାପନ କଲେ । କୋରିଆ ସମସ୍ୟା ଯୋଗ ପାର୍ଟି ଭିତରେ ଟିକିଏ ମତଭେଦ ଦେଖାଦେଇଥିଲା ଏବଂ ମାର୍କସବାଦର ତାତ୍ତ୍ୱିକ ଦିଗରେ କିଛି ବାଦାନୁବାଦ ମଧ୍ୟ ହୋଇଥିଲା । ତେବେ ପାର୍ଟିର ସଭ୍ୟପଦ ସାଧାରଣଙ୍କ ଲାଗି ମୁକ୍ତ ହୋଇଯାଇଥିବାରୁ ଯୁବଶ୍ରେଣୀ ବହୁଳ ସଂଖ୍ୟାରେ ଡେଲିଗେଟ୍ ହୋଇ ଆସିଥିବାର ଦେଖାଗଲା । କୃଷକ ଆନ୍ଦୋଳନ ଭିତରୁ ଗ୍ରାମରେ ବାସକରୁଥିବା ପ୍ରତିନିଧି ବେଶି ଆସିଥାଆନ୍ତି ଏବଂ ଏହା ପାର୍ଟିର ଅଭିବୃଦ୍ଧିରେ ବଡ଼ ସହାୟକ ହେବ ବୋଲି ମୁଁ ବିଚାରକଲି । ମୋର ଅନୁରୋଧରେ ଯେ ନୂତନ କାର୍ଯ୍ୟକାରୀ ସମିତି ଗଠିତ ହେଲା, ତହିଁରେ କିଛି ଯୁବକ ସଦସ୍ୟଙ୍କୁ ନିଆଗଲା । ପାଟନା ସମ୍ମିଳନୀରେ ନୂଆ ନିୟମାବଳୀ ପ୍ରଣୟନ କରାଯାଇ ଚେୟାରମାନ୍ ପଦ ସୃଷ୍ଟି କରାଯାଇଥାଏ । ପାର୍ଟିର ପ୍ରଥମ ଚେୟାରମାନ୍‌ଭାବେ ଆଚାର୍ଯ୍ୟ ନରେନ୍ଦ୍ର ଦେବ ନିର୍ବାଚିତ ହେଲେ । ଅଶୋକ ମେହେଟା ହେଲେ ସାଧାରଣ ସଂପାଦକ । ଆସନ୍ତା ସାଧାରଣ ନିର୍ବାଚନର ଗୁରୁତ୍ୱ ଅନୁଭବ କରି ଜୟପ୍ରକାଶ ନାରାୟଣଙ୍କୁ ପାର୍ଲିମେଣ୍ଟାରୀ ବୋର୍ଡର ଚେୟାରମାନ୍ କରାଗଲା । ଡକ୍ଟର ଲୋହିଆ ହୋଇଥିଲେ ଆନ୍ତର୍ଜାତିକ ନୀତି-ନିର୍ଦ୍ଧାରଣ କମିଟିର ଚେୟାରମାନ୍ । ମୁଁ ବି ପୂର୍ବଥର ପରି ଏଠାରେ କାର୍ଯ୍ୟ-ନିର୍ବାହକା ସମିତିର ସଭ୍ୟରୂପେ ନିର୍ବାଚିତ ହେଲି । ମାନ୍ଦ୍ରାଜ ସମ୍ମିଳନୀରେ ପାର୍ଟିର ଉପର ନେତାମାନଙ୍କ ଭିତରେ ଟିକିଏ ମନୋମାଳିନ୍ୟ

ରହିଥିବା କଥା ଆମ ଭିତରେ କାର୍ଯ୍ୟକାରୀ କମିଟିରେ ଆଲୋଚନାବେଳେ ପଦାକୁ ଜଣାପଡ଼ିଲା । ଲୋହିଆ ଟିକିଏ ଭିନ୍ନ ଢଙ୍ଗ ଦେଖାଇଲେ । ଲୋହିଆ ଓ ଜୟପ୍ରକାଶଙ୍କ ଭିତରେ ଆଗରୁ କୌଣସି କାରଣରୁ ଟିକିଏ ମନ କଷାକଷି ରହିଥିଲା । ଶୁଣିଛି, ଲାହୋର ଦୁର୍ଗରୁ ଖଲାସ ହେବା ସମୟର ଘଟଣା ସହ ଏହାର ସଂପର୍କ ରହିଥିଲା; ପଦାକୁ କିନ୍ତୁ କାହାର ଜାଣିବାର କିଛି ଉପାୟ ନଥିଲା । ନାସିକ ସମ୍ମିଳନୀରେ ଜେନେରାଲ ସେକ୍ରେଟାରୀ କିଏ ହେବ, ଏହା ଯେବେ ଆମ ଭିତରେ ନିଷ୍ପତ୍ତି କରିବାଲାଗି ବସିଲେ ରାତି ପାହିଗଲା । ପ୍ରାୟ ରାତି ୩ଟା ପର୍ଯ୍ୟନ୍ତ ଆଲୋଚନା ଚାଲିଲା । ଶେଷକୁ ଅଶୋକ ମେହେଟା ପ୍ରସ୍ତାବ ଆଣିଲେ ଯେ ଲୋହିଆ ଓ ଜୟପ୍ରକାଶ ଉଭୟଙ୍କୁ ଯୁଗ୍ମ-ସାଧାରଣ ସଂପାଦକ କରାଯାଉ । ଏଥିରେ ଜୟପ୍ରକାଶ ମନ୍ତବ୍ୟ କରି କହିଲେ ଯେ, ଅଶୋକ ଆମ ଭିତରେ ରାଜଗୋପାଳାଚାରୀଙ୍କ ପରି ଧୂର୍ତ୍ତ ହେବାକୁ ଚେଷ୍ଟା କଲଣି । ପାର୍ଟି କଂଗ୍ରେସ ଛାଡ଼ି ସ୍ୱାଧୀନ ଭାବରେ କାର୍ଯ୍ୟ ଆରମ୍ଭ କରିବାକୁ ଯାଉଥିବାବେଳେ ଜୟପ୍ରକାଶ ସାଧାରଣ ସଂପାଦକ ହେବାଟା ଯଥାର୍ଥ ହେବ ଏବଂ ଦେଶ ପକ୍ଷରେ ଗ୍ରହଣୀୟ ହୋଇପାରିବ ବୋଲି ଅନିଚ୍ଛାସତ୍ତ୍ୱେ ଜୟପ୍ରକାଶ ଆମ ସମସ୍ତଙ୍କ ଅନୁରୋଧ ରକ୍ଷା କରି ସଂପାଦକ ଦାୟିତ୍ୱ ତୁଲାଇଥିଲେ । ସେହିଦିନୁ କେବେ ପାର୍ଟିର କେନ୍ଦ୍ର ସ୍ତରରେ ପଦବୀ ନେଇ କୌଣସି ବିବାଦ ଉଠିଥିବାର ମତେ ଜଣାନାହିଁ । ନୀତିଗତ ଓ କାର୍ଯ୍ୟକ୍ରମ ସଂକ୍ରାନ୍ତରେ ତୁମୁଳ ବାଦବିବାଦ ଘଟିଛି । କିନ୍ତୁ ଦାୟିତ୍ୱ ତୁଲାଇବା କାର୍ଯ୍ୟରେ ପ୍ରତିଯୋଗିତା ନ ହୋଇ କାହାର ଉପରେ ସମସ୍ତଙ୍କ ସମ୍ମତିକ୍ରମେ ଭାର ଦିଆଯାଉଥିଲା ଏବଂ ସେ ତଦନୁସାରେ ସାରା ପାର୍ଟିକୁ ସାଙ୍ଗରେ ନେଇ କାର୍ଯ୍ୟ କରୁଥିଲେ । ମାନ୍ଦ୍ରାଜ ସମ୍ମିଳନୀରେ କାର୍ଯ୍ୟବଣ୍ଟନ ବଡ଼ ସୁରୁଖୁରୁରେ ହୋଇଗଲା ।

ଗତ ବର୍ଷଟିରେ ଏକ ଲକ୍ଷ ଅଣଚାଳିଶୀ ହଜାର ପାଞ୍ଚଶହ ସଭ୍ୟ କରିବାର ଲକ୍ଷ୍ୟ ଧାର୍ଯ୍ୟ ହୋଇଥିଲା । ସାରା ଦେଶରେ ୧,୨୮,୬୧୩ ସଭ୍ୟ ସଂଗୃହୀତ ହୋଇଥିଲେ । ଓଡ଼ିଶା ପାଇଁ ଏକହଜାର ରଖାଯାଇଥିଲା; କିନ୍ତୁ ଆମେ ୧,୯୬୨ ଜଣ ସଂଗ୍ରହ କରିପାରିଥିଲୁ । ଏହି ସବୁ ହିସାବରୁ ଦେଖାଯିବ ନିର୍ବାଚନର ଅବ୍ୟବହିତ ପୂର୍ବରୁ ପାର୍ଟି ସାରା ଭାରତରେ ବିରୋଧୀ ଦଳରୂପେ ନିର୍ବାଚନର ସମ୍ମୁଖୀନ ହେବାକୁ ମଧ୍ୟ ପ୍ରସ୍ତୁତ ହୋଇଯାଇଥିଲା ।

## ସାଧାରଣ ନିର୍ବାଚନଲାଗି ପ୍ରସ୍ତୁତ

ମାନ୍ଦ୍ରାଜ ସମ୍ମିଳନୀ ପରେ ପାର୍ଲିମେଣ୍ଟାରୀ ବୋର୍ଡ଼ ବସି ନିର୍ବାଚନରେ କେମିତି ପ୍ରାର୍ଥୀ ନିର୍ବାଚନ କରିବାକୁ ହେବ ଏବଂ ନିର୍ବାଚନମଣ୍ଡଳୀରେ କିଭଳି ସଂଗଠନ କରିବାକୁ ହେବ, ସେ ସମ୍ବନ୍ଧରେ ସ୍ପଷ୍ଟ ନିର୍ଦ୍ଦେଶନା ଦିଆଗଲା । ବିହାରର ରାଞ୍ଚିଠାରେ ପାର୍ଟିର ଜେନେରାଲ କାଉନସିଲ୍ ବୈଠକ ବସି ନିର୍ବାଚନ ଇସ୍ତାହାର ଧାର୍ଯ୍ୟ କରି ଦିଆଗଲା ।

ଏଥିରେ ମୁଖ୍ୟଭାବରେ କୁହାଗଲା ଯେ ଗଣତନ୍ତ୍ରର ବିକାଶ ନିମନ୍ତେ ବିରୋଧୀର ଆବଶ୍ୟକତା ରହିଛି ଏବଂ ସୋସଲିଷ୍ଟ ପାର୍ଟି ନିର୍ବାଚିତ ହେଲେ ଦେଶର ସେ ଅଭାବ ପୂରଣ ହୋଇପାରିବ । ଦେଶରୁ ଅସମାନତା ଓ ଦାରିଦ୍ର୍ୟ ଦୂର କରିବାକୁ ହେଲେ ଅର୍ଥନୀତିକ ଓ ପ୍ରଶାସନିକ କ୍ଷେତ୍ରରେ କେତେକ ମୌଳିକ ପରିବର୍ତ୍ତନ କରାଯିବ ଏବଂ କ୍ଷମତା ପାଇଲେ ପ୍ରଥମ କାର୍ଯ୍ୟ ହେବ କଠୋରହସ୍ତରେ ଲୋକଙ୍କୁ ଶୋଷଣ କରୁଥିବା ବ୍ୟବସ୍ଥାଗୁଡ଼ିକର ସଂପୂର୍ଣ୍ଣ ବିଲୋପୀକରଣ । ଏହି ଇସ୍ତାହାରରେ ପ୍ରଚଳିତ ଶାସନବିଧାନର ଗଣ୍ଡି ଭିତରେ ସମାଜବାଦୀ ଢାଞ୍ଚାରେ ଦେଶର କିପରି ପୁନର୍ଗଠନ କରାଯାଇପାରିବ, ତାହାର ପୂର୍ଣ୍ଣଚିତ୍ର ଦିଆଯାଇଥିଲା ।

## ଲୋକଶିକ୍ଷାର ମାଧ୍ୟମ

ଏକ ପୁଞ୍ଜିବାଦୀ ସମାଜରେ ସୋସଲିଜମ୍‌ର ବାର୍ତ୍ତା ଲୋକଙ୍କ ପାଖରେ ପହଞ୍ଚାଇବା କଷ୍ଟକର । ସଂବାଦପତ୍ର ଓ ଅନ୍ୟ ପ୍ରଚାର ମାଧ୍ୟମ ସରକାର ଓ ପୁଞ୍ଜିପତିଙ୍କ ନିୟନ୍ତ୍ରଣରେ । ଦେଶବ୍ୟାପୀ ସମାଜବାଦର ବାର୍ତ୍ତା ପ୍ରଚାର ସହଜସାଧ୍ୟ ନଥିଲା । ନିର୍ବାଚନରେ ଭାଗ ନେଲେ ପାର୍ଟି ନିଜର ବାର୍ତ୍ତା ପ୍ରଚାର କରିବା ସଙ୍ଗେ ସଙ୍ଗେ ସମାଜବାଦ ବିରୁଦ୍ଧରେ ଅନ୍ୟମାନଙ୍କ ଯୁକ୍ତି ଖଣ୍ଡନ କରିବା ଓ ଲୋକମତକୁ ପ୍ରଭାବିତ କରିବା ସହଜ ହେବ ବୋଲି ଧାରଣା ହେଲା । ମାତ୍ର ଦୁଇବର୍ଷ ହେଲା ସୋସଲିଷ୍ଟ ପାର୍ଟି ଗଠିତ ହୋଇଥିଲା । ପୁରପଲ୍ଲୀରେ ଏହାର ବାର୍ତ୍ତା ପହଞ୍ଚିପାରିନଥିଲା । ସୋସଲିଷ୍ଟ ପାର୍ଟି ସ୍ଥିର କରିଥିଲା ନିର୍ବାଚନରେ ଯୋଗଦେଇ ଏହାର ପୂର୍ଣ୍ଣ ଫାଇଦା ଉଠାଇବ ଏବଂ ଘରେ ଘରେ ସମାଜବାଦର ବାର୍ତ୍ତା ପହଞ୍ଚାଇବ । ତେଣୁ ଯଥାସମ୍ଭବ ଯେତେ ବେଶି ପ୍ରାର୍ଥୀ ଠିଆକରାଯାଇପାରିବ ତାହାର ଉଦ୍ୟମ ଲାଗି ପାର୍ଟି ଇଉନିଟ୍‌ମାନଙ୍କୁ ନିର୍ଦ୍ଦେଶ ଦିଆଗଲା । ପାର୍ଟି ପାଖରେ ଯଥେଷ୍ଟ ସମ୍ବଳ ଓ ସଂଗଠନ ନଥିଲାବେଳେ ଏହା ଏକ ଦୁଃସାହସିକ କାର୍ଯ୍ୟ ।

ଦ୍ୱିତୀୟରେ ଦେଶର ରାଜନୀତି ବାହାରେ ବିଭିନ୍ନ ବୃତ୍ତି କରୁଥିବା ବ୍ୟକ୍ତିମାନଙ୍କୁ ଟାଣି ଆଣି ନିର୍ବାଚନ ରାଜନୀତିରେ ପ୍ରବେଶ କରାଇଲେ ନୂତନ ଲୋକଶକ୍ତି ସୃଷ୍ଟି ହେବ । ପାର୍ଟି ତରଫରୁ ଏପରି ବ୍ୟକ୍ତି ପ୍ରାର୍ଥୀ ହେବା ଦରକାର, ଯେପରିକି ସେମାନେ ନିର୍ବାଚିତ ହେଲେ ଦେଶରେ ସରକାର ଗଠନ ଓ ଶାସନ ଚଳାଇବାଲାଗି ସମର୍ଥ ହେବେ । ଏହି ବିଷୟ ଦୁଇଟିକୁ ଦୃଷ୍ଟିପଥରେ ରଖାଯାଇ ପ୍ରାର୍ଥୀ ନିର୍ବାଚନ ଓ ନିର୍ବାଚନ ସଂଗଠନର ସମସ୍ତ ବ୍ୟବସ୍ଥା କରାଯାଇଥିଲା ।

କେବଳ ଦେଶର ଦଳିତ ଶ୍ରେଣୀଙ୍କ ଦ୍ୱାରା ଗଠିତ ସଂଗଠନ ବ୍ୟତୀତ ଅନ୍ୟ କୌଣସି ରାଜନୀତିକ ଦଳ ସହ ମିଶି ନିର୍ବାଚନ କରିବା ନିଷିଦ୍ଧ କରାଗଲା । କଂଗ୍ରେସ, କମ୍ୟୁନିଷ୍ଟ ପାର୍ଟି ଏବଂ ସାଂପ୍ରଦାୟିକ ଦଳଗୁଡ଼ିକ ସହ କୌଣସି ପ୍ରକାର ସମ୍ପର୍କ ରଖାଗଲା ନାହିଁ—

ସେଗୁଡ଼ିକର ତୀବ୍ର ବିରୋଧ କରିବା ଏବଂ ପରାସ୍ତ କରିବା ହେଲା ସୋସଲିଷ୍ଟ ପାର୍ଟିର ଲକ୍ଷ୍ୟ । ଏହି ନୀତିଗୁଡ଼ିକ ଅନୁସରଣ କରି ନିର୍ବାଚନ ଯୁଦ୍ଧରେ ସୋସଲିଷ୍ଟ ପାର୍ଟି ଅବତରଣ କଲା । ସେଥିନିମନ୍ତେ ବମ୍ବେରେ ଆମ୍ବେଦକରଙ୍କ ସିଡ୍ୟୁଲ କାଷ୍ଟ ଫେଡ଼େରେସନ ଏବଂ ବିହାରରେ ଜୟପାଲ ସିଂହଙ୍କ ନେତୃତ୍ୱରେ ଥିବା ଝାଡ଼ଖଣ୍ଡ ଦଳ ସହିତ ସୋସଲିଷ୍ଟ ପାର୍ଟିର ମେଣ୍ଟ ହୋଇଥିଲା ।

## ଜୟପ୍ରକାଶଙ୍କ ପ୍ରାର୍ଥିତ୍ୱ

ପାର୍ଟି ଯେତେବେଳେ ଦେଶରେ ଏତେ ବଡ଼ ଶାସନ ଅଧିକାର କରିବାର କାର୍ଯ୍ୟକ୍ରମ ନେଇଛି, ସେତେବେଳେ ପାର୍ଟିର ମୁଖ୍ୟ ନେତାମାନେ କେନ୍ଦ୍ରରେ ଏବଂ ପ୍ରଦେଶରେ ପ୍ରାଦେଶିକ ନେତାମାନେ ପ୍ରତିଯୋଗିତା କରିବା ଉଚିତ । ଏହା ଯେନ ପାର୍ଟି ଭିତରେ ବିଶୃଙ୍ଖଳା । ଉଚ୍ଚ ନେତାଙ୍କ ଭିତରୁ ଆଚାର୍ଯ୍ୟ ନରେନ୍ଦ୍ର ଦେବ ଅସୁସ୍ଥତା ହେତୁ ପାର୍ଲିମେଣ୍ଟ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବା ନିମନ୍ତେ ଅସମର୍ଥ ଥିଲେ । ଅଚ୍ୟୁତ ପଟବର୍ଦ୍ଧନ ରାଜନୀତିରୁ ବିଦାୟ ନେଇଥିଲେ । ୟୁସୁଫ ମେହେରଅଲ୍ଲୀଙ୍କର ମୃତ୍ୟୁ ଘଟିଥାଏ । ଏଥିଭିତରେ ଅରୁଣା ଆସଫ ଅଲ୍ଲୀ ମଧ୍ୟ ପାର୍ଟିରୁ ଇସ୍ତଫା ଦେଇଥିଲେ । ସେ ବହୁକାଳ ତାଙ୍କ ସ୍ୱାମୀ ଆସଫ ଅଲ୍ଲୀଙ୍କ ସହ ବିଦେଶରେ ରହିଲେ ଏବଂ ସେଠାରୁ ଫେରି 'ଗଣତାନ୍ତ୍ରିକ ସମାଜବାଦ'ରେ ତାଙ୍କର ବିଶ୍ୱାସ ନାହିଁ ବୋଲି ବିବୃତି ଦେଲେ—ପରେ ଏ ସମ୍ବନ୍ଧରେ ସ୍ପଷ୍ଟୀକରଣ ଦାବୀ କରାଯିବାରୁ ସେ ଇସ୍ତଫା ଦେଲେ; ଅର୍ଥାତ୍ ୧୯୫୧ରେ ପାର୍ଟିର ଯେ ସଭ୍ୟପଦ ପୁନର୍ବାର ଗ୍ରହଣ କରିବାର କଥା, ତାହା କଲେ ନାହିଁ । ତାଙ୍କର ସୋସଲିଷ୍ଟ ପାର୍ଟି ସହିତ ସଂପର୍କ ଅତି ଅଳ୍ପ କାଳ ମାତ୍ର ଥିଲା । ୧୯୪୮ ମସିହାରେ କଂଗ୍ରେସ ଛାଡ଼ି ସୋସଲିଷ୍ଟ ପାର୍ଟି ଗଠିତ ହେବାବେଳେ ସେ ଏଥିରେ ସାମିଲ ହୋଇଥିଲେ; ମାତ୍ର ୨।୩ ବର୍ଷ ନ ପୂରୁଣୁ ବିଦାୟ ନେଇଗଲେ । ଅବଶ୍ୟ କମଳାଦେବୀ ଚଟ୍ଟୋପାଧ୍ୟାୟ ସେତେବେଳକୁ ପାର୍ଟିରେ ରହିଥିଲେ ଏବଂ ବମ୍ବେ ସହରରେ ଏକ ନିର୍ବାଚନ ମଣ୍ଡଳୀରେ ଲୋକସଭା ନିମନ୍ତେ ସେ ପ୍ରାର୍ଥୀ ହୋଇଥିଲେ । ବାକୀ ରହିଗଲେ ଜୟପ୍ରକାଶ ନାରାୟଣ, ରାମମନୋହର ଲୋହିଆ ଏବଂ ଅଶୋକ ମେହେଟା । ଏ ତିନି ନେତା ନିର୍ବାଚନରେ ପ୍ରାର୍ଥୀ ହୋଇଗଲେ ନିର୍ବାଚନ ପ୍ରଚାର ଓ ସଂଗଠନରେ ସାହାଯ୍ୟ କରିବାକୁ କେହି ରହିବ ନାହିଁ । ତେଣେ ପୁଣି ପ୍ରସିଦ୍ଧ ନେତାମାନେ ପ୍ରତିଦ୍ୱନ୍ଦ୍ୱିତା ନ କଲେ ଲୋକଙ୍କ ଭିତରେ ପୂର୍ଣ୍ଣ ଆସ୍ଥା ଆସିବ ନାହିଁ । ଏହା ଏକ ପ୍ରଧାନ ଦ୍ୱନ୍ଦ୍ୱର ବିଷୟ ହେଲା । ସୋସଲିଷ୍ଟ ପାର୍ଟିରେ କିଛି ଜଣଙ୍କ କଥା ବା ପ୍ରାଧାନ୍ୟ ରହୁ ନ ଥିଲା; ତେଣୁ ଏହି ତିନି ନେତା ପ୍ରାର୍ଥୀ ହେବେ କି ନାହିଁ ତାହା ପାର୍ଟିର କାର୍ଯ୍ୟ-ନିର୍ବାହକା ସମିତିର ବିଚାରକୁ ଆସିଲା ଓ ଭୋଟ ନିଆଗଲା । କାର୍ଯ୍ୟ-ନିର୍ବାହକା ସମିତିରେ ତ ମୁଁ ମୂଳରୁ ୧୯୪୭ରୁ ଶେଷ ପର୍ଯ୍ୟନ୍ତ ରହିଥିଲି । ବାଦ-ବିସମ୍ବାଦ

ତୀବ୍ର ହେଲେ ସୁଦ୍ଧା କେବେ ଭୋଟ ନିଆ ହୋଇ ନ ଥିଲା । ରାଞ୍ଚିଠାରେ ୧୯୫୧ ମସିହା ଜୁନ ୨୧ରୁ ଜୁଲାଇ ପହିଲା ପର୍ଯ୍ୟନ୍ତ ହୋଇଥିବା ବୈଠକରେ ଏଥିଲାଗି ଭୋଟ ନିଆଗଲା । ୧୫ ଜଣ ସଭ୍ୟ ଉପସ୍ଥିତ ଥିଲେ । ପ୍ରତିଯୋଗିତା କରିବା ସପକ୍ଷରେ ମତ ଦେଲେ—(୧) ଗଙ୍ଗାଶରଣ ସିଂହ, (୨) ଏନ୍. ଜି. ଗୋରେ, (୩) ମହାଦେବ ସିଂହ, (୪) ଶିବନାଥ ବାନର୍ଜି, (୫) ଜଗଦୀଶ ଜୋଶୀ, (୬) ପ୍ରତାପ ଶାହ, (୭) ମଧୁ ଲିମାୟେ ଏବଂ (୮) ଅଶୋକ ମେହଟା । ଏହି ମତ ବିରୋଧରେ ରହିଲେ (୧) ସୁରେନ୍ଦ୍ର ନାଥ ଦ୍ୱିବେଦୀ, (୨) ସ୍ୱାମୀ ଭଗବାନ, (୩) ଚକ୍ରଧର, (୪) ଜୟପ୍ରକାଶ ନାରାୟଣ, (୫) ରାମମନୋହର ଲୋହିଆ, (୬) ପ୍ରେମ ଭାସୀନ ଏବଂ (୭) ରାମାନନ୍ଦ ମିଶ୍ର ।

ଏହି ବୈଠକରେ ଆଚାର୍ଯ୍ୟ ନରେନ୍ଦ୍ର ଦେବ ଉପସ୍ଥିତ ନ ଥିଲେ । ଜୟପ୍ରକାଶ ନାରାୟଣଙ୍କର ପ୍ରାର୍ଥୀ ହେବାର ଅନିଚ୍ଛା ଦୃଷ୍ଟିରୁ ଏବଂ ଏହା ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ହୋଇଥିବାରୁ, ଅନୁପସ୍ଥିତ ସଭ୍ୟମାନଙ୍କର ମତ ଡାକଯୋଗେ ଅଣାଯାଇ ଶେଷ ନିଷ୍ପତ୍ତି କରାଯିବାର ସ୍ଥିର ହେଲା । ମାତ୍ର ପରେ ସେମାନଙ୍କର ମତ ନିର୍ବାଚନରେ ଯୋଗଦେବା ପକ୍ଷରେ ଯିବାରୁ ସମସ୍ତେ ପ୍ରତିଯୋଗିତା କରିବାର କଥା ସ୍ଥିରହେଲା ।

## ଜୟପ୍ରକାଶଙ୍କ ପତ୍ର

ଜୟପ୍ରକାଶ ନାରାୟଣ ମୂଳରୁ ଏଥିପ୍ରତି ଆଗ୍ରହ ଦେଖାଇଲେ ନାହିଁ ଏବଂ ତାଙ୍କୁ ଏଥିରୁ ଅବ୍ୟାହତି ଦେବା ନିମନ୍ତେ ସେ ଏକ ପତ୍ରରେ ସମସ୍ତଙ୍କୁ ନିବେଦନ କଲେ । ୧୯୫୧ ମସିହା ଅଗଷ୍ଟ ୨୮ରେ ଦିଲ୍ଲୀରୁ ସବୁ ମେମ୍ବରମାନଙ୍କୁ ସେ ଲେଖିଲେ—"ମୋ ମତରେ ଏହି ପ୍ରଶ୍ନ ପାର୍ଟିର ଅଭିବୃଦ୍ଧି ଓ ଗଣତାନ୍ତ୍ରିକ ସମାଜବାଦର ଭବିଷ୍ୟତ ଦୃଷ୍ଟିରୁ ଅତି ଗୁରୁତ୍ୱପୂର୍ଣ୍ଣ । ଆମେ ଏ ଦେଶରେ ସମାଜବାଦର ଏକ ତତ୍ତ୍ୱ ଏବଂ ଉପଯୋଗ ପଦ୍ଧତି ବାହାର କରୁଛେ, ଯାହା ପୃଥିବୀର ଅନ୍ୟାନ୍ୟ ପ୍ରଚଳିତ ସମାଜବାଦଠାରୁ ବହୁଭାବରେ ସ୍ୱତନ୍ତ୍ର । ଯେମିତି ଆମ ମତରେ ଗଣତାନ୍ତ୍ରିକ ସମାଜବାଦୀ ସମାଜ କେବଳ ରାଷ୍ଟ୍ରଶକ୍ତି ଓ ରାଷ୍ଟ୍ରର ଆନୁକୂଲ୍ୟରେ ହୋଇପାରିବ ତାହା ନୁହେଁ, ଲୋକଙ୍କର ଉଦ୍ୟମ ଓ ନିରନ୍ତର ଉଦ୍ୟମର ମଧ୍ୟ ପ୍ରୟୋଜନୀୟତା ରହିଛି—ବାସ୍ତବିକ ଦେଖିବାକୁ ଗଲେ ଲୋକଙ୍କ ଉଦ୍ୟମ ଅଧିକ ଗୁରୁତ୍ୱପୂର୍ଣ୍ଣ । ଅନ୍ୟ ଦେଶର ସୋସିଆଲିଜମ୍ ଅପେକ୍ଷା ଆମର ଏହା ଏକ ବଡ଼ ପାର୍ଥକ୍ୟ । ଆମେ ଯେତେବେଳେ ଏଥିରେ ବିଶ୍ୱାସ କରୁ, ସେତେବେଳେ ଲୋକଙ୍କ ଭିତରେ କାର୍ଯ୍ୟ କରିବା ଅପେକ୍ଷା ପାର୍ଲିମେଣ୍ଟାରୀ ବା ସରକାରୀ ସ୍ତରର କାର୍ଯ୍ୟକୁ ଆମେ ଅଧିକ ଗୁରୁତ୍ୱ ନ ଦେବାର କଥା । ଦୁଇଟିଯାକ କାର୍ଯ୍ୟକୁ ଆମେ ଯେତେବେଳେ ସମାନ ଗୁରୁତ୍ୱ ଦେଉଛୁ, ସେପରି ଅବସ୍ଥାରେ ସବୁ ନେତୃସ୍ଥାନୀୟ ବ୍ୟକ୍ତି ପାର୍ଲିମେଣ୍ଟକୁ ଯିବେ କାହିଁକି ? ଜଣେ ବ୍ୟକ୍ତି ବାହାର କାର୍ଯ୍ୟ ଓ ପାର୍ଲିମେଣ୍ଟାରୀ କାର୍ଯ୍ୟ ଉଭୟକୁ ସମାନ ଗୁରୁତ୍ୱସହକାରେ ତୁଲାଇ ପାରିବ ବୋଲି ଭାବିବାଟା ଆତ୍ମପ୍ରବଞ୍ଚନା ଛଡ଼ା ଆଉ କିଛି ନୁହେଁ । ଦୁଇଟିଯାକ କାର୍ଯ୍ୟର

ସମାନ ଗୁରୁତ୍ୱ ରହୁଛି ଏବଂ ଉଭୟ କାର୍ଯ୍ୟ ନିମନ୍ତେ ସମୟ ଓ ଚିନ୍ତନର ପ୍ରୟୋଜନ ଅଛି । ବ୍ୟବସ୍ଥାପକଭାର ସଦସ୍ୟ ( ସରକାରର ମନ୍ତ୍ରୀ ହେଲେ ବି ) ପାର୍ଲିମେଣ୍ଟ ବାହାର କାର୍ଯ୍ୟରେ ଯୋଗଦେଇପାରନ୍ତି; ଯୋଗଦେବା ଉଚିତ ମଧ୍ୟ; କିନ୍ତୁ ତାଙ୍କର ମୁଖ୍ୟ କାର୍ଯ୍ୟ ହେବ ବ୍ୟବସ୍ଥାପକଭା ଭିତରେ । ଯଦି ସବୁ ବଡ଼ ନେତାମାନେ ବ୍ୟବସ୍ଥାପକଭା ଭିତରେ ପଶି-ଯାଆନ୍ତି, ତେବେ ସମାଜବାଦ ଲାଗି ଯେଉଁ ମୂଳଭିତ୍ତି ଗଠନ ଓ ଜନସମର୍ଥନ ଲୋଡ଼ା, ସେ କାର୍ଯ୍ୟ ଗୌଣ ହୋଇ ରହିଯିବ । ଅବଶ୍ୟ ବ୍ୟବସ୍ଥାପକ କାର୍ଯ୍ୟ ସହ କେତେକ ଆନ୍ଦୋଳନାତ୍ମକ କାର୍ଯ୍ୟ କରାଯାଇପାରେ । ଆମେ ଯେତେ ଚେଷ୍ଟା କରୁ ପଛକେ ଆମର କର୍ମୀମହଲରେ ଏପରି କି ଜନସାଧାରଣ କେବେହେଁ ବୁଝିବେ ନାହିଁ ଯେ ପାର୍ଲିମେଣ୍ଟର ବାହାର କାର୍ଯ୍ୟକୁ ଆମେ ଗୁରୁତ୍ୱ ଦେଉଛୁ । ସେପରି ଅବସ୍ଥାରେ ଏ ଦେଶରେ ସମାଜବାଦ ପକ୍ଷରେ ଦୁଇଟି ବିକଳ୍ପ ପନ୍ଥା ରହିବ : (୧) ଉଦାର ମତବାଦୀ ପନ୍ଥା, (୨) ପାର୍ଟି ଡିକ୍‌ଟେଟରଶିପ୍ । ଆମ ଦେଶରେ କିଛି ସ୍ୱିଡ଼େନ୍ ଓ ଗ୍ରେଟ୍ ବ୍ରିଟେନ୍ ପରି ସମାଜବାଦୀ ଆନ୍ଦୋଳନ କୋପରେଟିଭ୍ ଓ ଟ୍ରେଡ଼୍ ଇଉନିୟନ ଭିତ୍ତିକ ହୋଇନାହିଁ । ସେପରି ଲୋକ-ଭିତ୍ତିକ ହୋଇନଥିବାରୁ ଉପରୋକ୍ତ ସୂଚନା ମୁତାବକ ଏହାର ଗତି ହେବାକୁ ହେବ । ତେଣୁ ମୁଁ ଅନୁଭବ କରୁଛି ଯେ ଯଦି ଜାତୀୟ କାର୍ଯ୍ୟନିର୍ବାହକ ସମିତିର ଏ ବିଷୟକ ନିଷ୍ପତ୍ତି କାର୍ଯ୍ୟକାରୀ କରାଯାଏ, ତେବେ ଏ ଦେଶର ଗଣତାନ୍ତ୍ରିକ ସମାଜବାଦର ଭବିଷ୍ୟତର ପ୍ରଭୂତ କ୍ଷତି ହେବ । ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ସମେତ ଅନ୍ୟମାନେ ସପକ୍ଷରେ ଯେଉଁସବୁ ଯୁକ୍ତି ଉତ୍ଥାପନ କରିଛନ୍ତି, ତାହା ମତେ ଜଣା । ତଥାପି ଏହାର ପୁନର୍ବିଚାର ନିମନ୍ତେ ମୁଁ ଅନୁରୋଧ କରୁଛି । ମୋ ମତରେ ଯେଉଁ କାରଣ ଯୋଗୁଁ ମୁଁ ଏହା ବଦଳାଇବାକୁ ବିନତି କରୁଛି, ତାହା ସବୁ ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ।

"ସବୁ ମୁଖ୍ୟଲୋକ ବ୍ୟବସ୍ଥାପକଭା ଭିତରକୁ ନ ଯିବା କଥାରେ ଆପଣ ଯଦି ସମ୍ମତ ହୁଅନ୍ତି, ତେବେ କିଏ ବାହାରେ ରହିବ ଏ ପ୍ରଶ୍ନ ଆସିବ । ମୁଁ କହୁନାହିଁ ଯେ ମୁଁ ହିଁ ଏକମାତ୍ର ଯୋଗ୍ୟ ବ୍ୟକ୍ତି ଏଥିପାଇଁ—କିନ୍ତୁ ମୁଁ ବିଶେଷଭାବରେ ମତେ ଛାଡ଼ିଦେବା ନିମନ୍ତେ ଅନୁରୋଧ ଜଣାଉଛି । କାରଣ (୧) ମୋର ବ୍ୟବସ୍ଥାପକଭା କାର୍ଯ୍ୟ ନିମନ୍ତେ ମୂଳରୁ ଆଗ୍ରହ ନାହିଁ ଏବଂ (୨) ଲୋକଙ୍କ ଭିତରେ କାର୍ଯ୍ୟ କରିବା ନିମନ୍ତେ ମତେ ଛାଡ଼ିଦିଆଯାଉ । ପାର୍ଟିର ହିତ ଦୃଷ୍ଟିରୁ କେଉଁଟା ଶ୍ରେୟସ୍କର ହେବ ଆପଣମାନେ ବିଚାର କରି ଦେଖିବେ ।"

ଏଥିରୁ ସ୍ପଷ୍ଟ ଯେ ସୋସଲିଷ୍ଟ ପାର୍ଟି ଭିତରେ କିପରି ଗଣତନ୍ତ୍ର ରହିଥିଲା । ପାର୍ଟିଲୋକେ ଏପରି ଶୃଙ୍ଖଳାବଦ୍ଧ ନେତାଙ୍କ ପକ୍ଷରେ ମଧ୍ୟ ପାର୍ଟି ନିଷ୍ପତ୍ତିର ବାହାରେ ମନଇଚ୍ଛା କାମ କରିବା ସମ୍ଭବ ନ ଥିଲା ।

ଏହାପରେ ଜୟପ୍ରକାଶଜୀଙ୍କୁ ବ୍ୟବସ୍ଥାପକଭା ଲାଗି ବା ନିର୍ବାଚନରେ ପଶିବାଲାଗି ବାରଣ କରିଦିଆଗଲା—ଅନ୍ୟ ଦୁଇଜଣ ନେତା ଅଶୋକ ମେହେଟା ଓ ରାମ ମନୋହର ଲୋହିଆ

ନିର୍ବାଚନ ଲଢ଼ିବାରେ ବାଧା ନଥିଲା । ଏଇଥିରୁ ବୁଝାଯିବ ଜୟପ୍ରକାଶ ନାରାୟଣ ମୂଳରୁହିଁ କେବଳ ଜନ-ଆନ୍ଦୋଳନକୁ ଓ ବୈପ୍ଳବିକ ପନ୍ଥାକୁ ଅଧିକ ଗୁରୁତ୍ୱ ଦେଉଥିଲେ । ତେଣୁ ପରେ ସେ ଲୋକନାୟକ ହୋଇ ଦେଶରେ ନିର୍ବାଚନ ସଙ୍ଗଠନ କରି ଇନ୍ଦିରା ଗାନ୍ଧୀଙ୍କର ଏକଚ୍ଛତ୍ରବାଦୀ ସରକାରକୁ ତଡ଼ି ଜନତା ପାର୍ଟିର ସରକାର ବସାଇଲେ; ମୋରାରଜୀ ଦେଶାଇଙ୍କି ପ୍ରଧାନମନ୍ତ୍ରୀ କରି ବସାଇଲେ—ମାତ୍ର ନିଜେ ସେଥିରେ ପ୍ରବେଶ କରିନଥିଲେ । ମୋର ସ୍ମରଣ ଅଛି— ଥରେ ୧୯୬୭ ମସିହାରେ ତାଙ୍କୁ ସର୍ବସମ୍ମତିକ୍ରମେ ରାଷ୍ଟ୍ରପତି ନିର୍ବାଚନ କରିବା ନିମନ୍ତେ ଗୋଟାଏ ଖୁବ୍ ଉଦ୍ୟମ ହେଲା । ଜନସଂଘ ବ୍ୟତୀତ ଅନ୍ୟ ସବୁ ଦଳ ଏପରିକି କମ୍ୟୁନିଷ୍ଟ ମଧ୍ୟ ରାଜି ଥିଲେ । ଇନ୍ଦିରା ଗାନ୍ଧୀଙ୍କ ସହ କଥାବାର୍ତ୍ତା କରିବା ନିମନ୍ତେ ମୋ ଉପରେ ଭାର ଦିଆଯାଇଥିଲା । କିନ୍ତୁ ନିଷ୍ପତ୍ତିମୂଳକ ଭାବରେ କଥାବାର୍ତ୍ତା ହେବା ପୂର୍ବରୁ ଜୟପ୍ରକାଶଜୀ ମତେ ଡାକି କହିଲେ—"ମତେ ଏଥିରୁ ଅଲଗା ରଖନ୍ତୁ । ସର୍ବୋଚ୍ଚ ରାଷ୍ଟ୍ର-ଆସନ ଲାଗି ବି ମୋର ମୋହ ନାହିଁ । ଅନ୍ୟ କେହି ମୋର ଭାଷଣ ତିଆରି କରିବ; ତାଙ୍କ କଥାକୁ ମୁଁ ମୋ କଥା ବା ମୋ ସରକାରର କଥା ବୋଲି ପଢ଼ି ଶୁଣାଇବାଟାକୁ ସମ୍ମାନଜନକ ବୋଲି ବିଚାର କରୁନାହିଁ । ତେଣୁ ମତେ ଏଥିରୁ ବାଦ୍ ଦିଆଯାଉ ।" ଆମ ଦେଶରେ କେତେଜଣ ରାଜନୀତିକ ନେତା ଏପରି ପଦପଦବୀ ଲୋଭ ଛାଡ଼ିଛନ୍ତି ବା ତ୍ୟାଗ କରିଛନ୍ତି ?

## ପ୍ରଥମ ସାଧାରଣ ନିର୍ବାଚନର ଫଳାଫଳ

ଏକ ସୁସ୍ଥ ବିରୋଧୀଦଳ ଗଠନର ଆବଶ୍ୟକତା ଉପରେ ଜୋର୍ ଦେଇ ସୋସଲିଷ୍ଟ ପାର୍ଟି ପ୍ରଜାତାନ୍ତ୍ରିକ ଭାରତର ସାବାଳକ ଭୋଟପ୍ରଥାରେ ଘଟିତ ପ୍ରଥମ ସାଧାରଣ ନିର୍ବାଚନରେ ଯୋଗଦେଲା । ଏହା ୨।୩ ବର୍ଷର ପାର୍ଟି ପକ୍ଷରେ ଏକ ଦୁଃସାହସିକ କାର୍ଯ୍ୟ । ପାର୍ଟିର କେତେକ ନେତା ଅବଶ୍ୟ ଜାତୀୟ ସ୍ତରରୂପେ ପରିଚିତ ହୋଇଥିଲେ । ସେମାନଙ୍କର ଲୋକପ୍ରିୟତା ବଢ଼ିଥିଲା । ସୋସଲିଜମ୍ ପ୍ରତି ଲୋକଙ୍କ ଭିତରେ ଆଗ୍ରହ ଜନ୍ମି ଥିଲା ଏବଂ ସୋସଲିଷ୍ଟ ପାର୍ଟି କଂଗ୍ରେସରୁ ସ୍ୱତନ୍ତ୍ର ହେବା ପରେ ଦେଶର ଜାତୀୟ ଯୁବପ୍ରାଣରେ ପାର୍ଟି ପ୍ରତି ଏକ ଅନୁକୂଳ ମନୋଭାବ ସୃଷ୍ଟି ହୋଇଥିଲା ଓ କ୍ରମେ ବହୁପରିମାଣରେ ଯୁବକହିଁ ଏଥିରେ ଯୋଗଦେବାକୁ ଲାଗିଲେ । ଅକ୍ଳାନ୍ତ ପରିଶ୍ରମ ଓ ପ୍ରଗାଢ଼ ଉଦ୍ୟମ ଫଳରେ ଦେଶବ୍ୟାପୀ ଏକ ସୋସଲିଷ୍ଟ ସଙ୍ଗଠନ ଛିଡ଼ାକରାଯାଇପାରିଲା । ମାତ୍ର ସାଧାରଣ ନିର୍ବାଚନ ପରି ଏକ ଗୁରୁଦାୟିତ୍ୱ ତୁଲାଇଲାଭଳି ଦକ୍ଷତା, ଅଭିଜ୍ଞତା, ସଙ୍ଗଠନ ଓ ସମ୍ବଳ ଏହାର ନ ଥିଲା । ନିର୍ବାଚନ ସମ୍ବନ୍ଧରେ ପୂର୍ଣ୍ଣ ଜ୍ଞାନ ନ ଥିବାରୁ ନିର୍ବାଚନ ସଙ୍ଗଠନ ଯେଉଁ ଭାବରେ ହେବାର କଥା ସେପରି ହୋଇପାରି ନ ଥିଲା । ଅବଶ୍ୟ ୧୯୫୦ ଶେଷବେଳକୁ ଏ ଦିଗରେ ପାର୍ଟି ଅବହିତ ହୋଇଥିଲା ଏବଂ ନିର୍ବାଚନ ସଙ୍ଗଠନ ପଦ୍ଧତି ଓ ଅନ୍ୟାନ୍ୟ ପ୍ରକ୍ରିୟା ସମ୍ବନ୍ଧରେ ପାର୍ଟି ଲୋକଙ୍କୁ ଶିକ୍ଷା ଦିଆଯାଇଥିଲା । କିନ୍ତୁ ଏହାକୁ ଦେଶରେ ସୋସଲିଜମ୍‌ର ପ୍ରଚାରର

ଏକ ସୁଯୋଗରୂପେ ଧରାଯାଉଥିବାରୁ ଏବଂ ସରକାର ଗଠନ ଉପରେ ଜୋର୍ ଦିଆନଯାଇ ବିରୋଧଭୂମିକା ପ୍ରାଧାନ୍ୟ ଲାଭ କରିଥିବାରୁ ନିର୍ବାଚନରେ ବିଜୟ ଅପେକ୍ଷା ସଫଳ ପ୍ରଚାର ଦିଗପ୍ରତି ଅଧିକ ଦୃଷ୍ଟି ଦିଆଗଲା । କେତେକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ବିଜୟ ନିମନ୍ତେ ବେଶି ସମ୍ବଳ ଓ ଶକ୍ତି ନ ଖଟାଇ ସାରା ଦେଶରେ ଯେତେ ସମ୍ଭବ ପ୍ରାର୍ଥୀ ଛିଡ଼ାକରାଯାଇ-ପାରିବ, ତାହାର ବ୍ୟବସ୍ଥା ହେଲା । ଅନ୍ୟ ଦଳମାନଙ୍କ ସହ ମଧ୍ୟ କିଛି ବୁଝାମଣା କରାଗଲା ନାହିଁ; କାରଣ ସେତେବେଳେ ଅନ୍ୟ କୌଣସି ବିରୋଧୀ ଜାତୀୟବାଦୀ ଶକ୍ତି ଭାରତୀୟ ସ୍ତରରେ ନ ଥିଲେ । ପରେ ଅବଶ୍ୟ କ୍ଷୁଦ୍ର କ୍ଷୁଦ୍ର ୮୦ରୁ ଅଧିକ ଦଳ ନିର୍ବାଚନ ବେଳକୁ ବାହାରି ଆସିଲେ ଏବଂ ଅଗଣିତ ସ୍ୱାଧୀନ ପ୍ରାର୍ଥୀ ମଧ୍ୟ । କମ୍ୟୁନିଷ୍ଟମାନଙ୍କୁ ଜେଲରୁ ଖଲାସ କରିଦିଆଗଲା ଏବଂ ସେମାନେ ବିଜୟୀ ବୀରଭାବରେ ଲୋକସମ୍ମୁଖକୁ ଆସିଲେ । ଯେଉଁ ନିର୍ଦ୍ଦିଷ୍ଟ ଅଞ୍ଚଳରେ ସେମାନଙ୍କର ପ୍ରଭାବ ଥିଲା ତହିଁରେ ସେମାନେ ସମସ୍ତ ଶକ୍ତି ସଙ୍ଗଠନ ଠୁଳ କରି ଶେଷକୁ ସବୁ ବିରୋଧୀଦଳ ଅପେକ୍ଷା ଅଧିକ ସ୍ଥାନ ପାର୍ଲିମେଣ୍ଟରେ ଲାଭ କଲେ । ଆଚାର୍ଯ୍ୟ କ୍ରିପାଲାନୀଙ୍କ କିଷାନ୍ ମଜଦୁର ପ୍ରଜାପାର୍ଟି ମଧ୍ୟ ନିର୍ବାଚନର ଅବ୍ୟବହିତ ପୂର୍ବରୁ କଂଗ୍ରେସ ତ୍ୟାଗକରି ଏ ଲଢ଼ାଇରେ ଅବତୀର୍ଣ୍ଣ ହେଲେ ଏବଂ ସେମାନେ ଜାତୀୟବାଦୀ ଭୋଟ ବିଣ୍ଟନରେ ଖୁବ୍ ସାହାଯ୍ୟ କଲେ ।

## ପ୍ରତିକୂଳ ପରିସ୍ଥିତି

ଆଉ ଏକ ବଡ଼ ପ୍ରତିକୂଳ ପରିସ୍ଥିତି ହେଲା—ଦେଶଲୋକଙ୍କର ପାରମ୍ପରିକ କଂଗ୍ରେସ-ପ୍ରୀତି । କଂଗ୍ରେସହିଁ ଦେଶଲୋକଙ୍କର ଏକମାତ୍ର ଜାତୀୟ ସଂଗଠନରୂପେ ସ୍ୱାଧୀନତା ହାସଲ କରିଥିଲା ଏବଂ ନୂତନ ସ୍ୱାଧୀନ ସରକାର ସ୍ଥାପିତ ହୋଇଥିଲା । କଂଗ୍ରେସଦଳ ଓ ଜବାହରଲାଲ ନେହରୁଙ୍କ ବ୍ୟତୀତ ଆଉ କେହି ସରକାର ହୋଇ ଦେଶ ଚଳାଇପାରିବ, ଏ ଭରସା ଲୋକଙ୍କର ନ ଥିଲା । କଂଗ୍ରେସ ପ୍ରତି ଦୃଢ ମମତା ଓ ଅନୁରକ୍ତି ରହିଥିଲା ଏବଂ ବିରୋଧ ପ୍ରତି ଆଗ୍ରହ ଜାତ ହୋଇ ନ ଥିଲା । ଏହି ନିର୍ବାଚନ ପ୍ରଚାରବେଳେ ମୁଁ ଓଡ଼ିଶାର ଏକ ନିପଟ ମଫସଲ ଗ୍ରାମରେ ସଭାକରିସାରି ଉଠିଲାବେଳକୁ ଜଣେ ସାଧାରଣ ଗ୍ରାମବାସୀ ହଠାତ୍ ମତେ ପ୍ରଶ୍ନ କଲେ—"ଆପଣଙ୍କ ପାର୍ଟି ଯଦି ସରକାର ଗଢ଼େ, ଦେଶର ବିଦେଶ-ମନ୍ତ୍ରୀ କିଏ ହେବ ? ପଣ୍ଡିତ ନେହରୁଙ୍କୁ ଛାଡ଼ି କିଏ ହୋଇପାରିବ ?" ଜଣେ ବୋଧହୁଏ ବିଶେଷ ପାଠ ପଢ଼ି ନ ଥିବା ଗ୍ରାମବାସୀଙ୍କ ମତରୁ ଜଣାପଡ଼ୁଥିଲା ସାଧାରଣ ଜନମତ କେଉଁଆଡ଼େ ରହିଥିଲା ।

### ଗ୍ରାମାଞ୍ଚଳରେ ସଂପର୍କ ନ ଥିଲା

ଆହୁରି ଏକ ପ୍ରଧାନ ଅସୁବିଧା ଥିଲା ଗାଁଗହଳରେ ପାର୍ଟିର ସେତେବେଳକୁ ସଂଗଠନ ହୋଇପାରିନଥିଲା । ସହରରେ ପ୍ରବଳ ଉତ୍ସାହ ଜାତ ହେଲା ଏବଂ ସୋସଲିଷ୍ଟଙ୍କ ସଭା-

ମାନଙ୍କରେ ବହୁସଂଖ୍ୟାରେ ଲୋକ ଯୋଗଦେଇଥିଲେ । ମାତ୍ର ପ୍ରକୃତ ଭାଗ୍ୟ ନିୟନ୍ତ୍ରଣ ହେଲା ଗ୍ରାମାଞ୍ଚଳର ଭୋଟରମାନଙ୍କ ଦ୍ୱାରା । ସେମାନଙ୍କ ସଂଖ୍ୟା ବହୁତ ଏବଂ ନିର୍ବାଚନରେ ସେମାନଙ୍କୁ ପ୍ରଭାବିତ କରିପାରି ସଂପର୍କ ଓ ସଂଗଠନ ଏହି ଅଳ୍ପଦିନ ଭିତରେ ସୋସଲିଷ୍ଟ ପାର୍ଟି କରିପାରିନଥିଲା ।

## ନିର୍ବାଚନରେ ଜୟ ପରାଜୟ

ଏଭଳି ପରିସ୍ଥିତି ଭିତରେ ଜୟ-ପରାଜୟରେ ଉଲ୍ଲସିତ ବା ହତାଶ ହେବାର ନୁହେଁ । ଏ ନିର୍ବାଚନରେ କେବଳ ଟ୍ରାଭାଙ୍କୋର କୋଚିନରେ ସେଠିକାର ପୁରୁଣା ନେତା ପଟ୍ଟମ୍ ଥାନୁ ପିଲାଇ ତାଙ୍କ ସମର୍ଥକଙ୍କ ସହ ସୋସଲିଷ୍ଟ ପାର୍ଟିରେ ସାମିଲ ହୋଇଥିବାରୁ ଏକ ଅନୁକୂଳ ବାତାବରଣ ସୃଷ୍ଟି ହୋଇଥିଲା ଏବଂ ପ୍ରକାଶ୍ୟ ଭାବରେ ସେଠାରେ ପାର୍ଟି ପ୍ରତି ପ୍ରବଳ ଜନସମର୍ଥନ ଅଭିବ୍ୟକ୍ତ ହୋଇଥିଲା । ତେଣୁ ଅନ୍ତତଃ ସେହି ରାଜ୍ୟରେ ସ୍ୱାଧୀନ ଭାରତର ପ୍ରଥମ ସୋସଲିଷ୍ଟ ସରକାର ଗଠିତ ହେବ ବୋଲି ସମସ୍ତେ ଅନୁମାନ କରୁଥିଲେ ।

ଏ ନିର୍ବାଚନରେ ଲୋକସଭା ନିମନ୍ତେ କଂଗ୍ରେସ ୪୭୯ ସ୍ଥାନରେ ପ୍ରାର୍ଥୀ ଠିଆକରାଇଥିଲା ଏବଂ ଦ୍ୱିତୀୟ ବୃହତ୍ତ ପାର୍ଟି ଭାବରେ ସୋସଲିଷ୍ଟ ପାର୍ଟି ୨୫୫ଟି ସ୍ଥାନରେ ପ୍ରତିଯୋଗିତା କରିଥିଲା । କିନ୍ତୁ ସ୍ଥାନ ପାଇଲାବେଳକୁ କଂଗ୍ରେସ ପାଇଲା ୩୬୪, ସୋସଲିଷ୍ଟ ପାର୍ଟି ପାଇଲା ମୋଟେ ୧୨ଟି । ସେମିତି ଷ୍ଟେଟ ଆସେଂବ୍ଲିମାନଙ୍କରେ କଂଗ୍ରେସ ୩,୨୦୫ ପ୍ରାର୍ଥୀ ଛିଡ଼ାକରାଇ ୨୨୪୭ ସ୍ଥାନ ଦଖଲ କଲାବେଳେବେଳେ ସୋସଲିଷ୍ଟ ପାର୍ଟି ୧୮୦୫ ପ୍ରାର୍ଥୀ ଛିଡ଼ାକରାଇ ପାଇଥିଲେ ମୋଟେ ୧୨୮ । କିନ୍ତୁ ଭୋଟ ପାଇଲାବେଳକୁ କଂଗ୍ରେସ ତଳକୁ ସୋସଲିଷ୍ଟ ପାର୍ଟି ହିଁ ଅଧିକ ଭୋଟ ପାଇଥିଲା--ଷ୍ଟେଟ ଆସେଂବ୍ଲିରେ ୧୦,୧୦୬,୦୩୬ ଏବଂ ଲୋକସଭାରେ ୧୧,୧୨୬,୩୪୪ । ସବୁ ବିରୋଧୀଦଳ ଭିତରେ ଦ୍ୱିତୀୟ ସ୍ଥାନ ପାଇଲା ସତ୍ୟ, ମାତ୍ର ସିଟ୍ ପ୍ରାପ୍ତିରେ କମ୍ୟୁନିଷ୍ଟ ଓ ତାଙ୍କ ସହଯୋଗୀମାନେ ପାର୍ଲିମେଣ୍ଟ ଓ ଆସେଂବ୍ଲିଗୁଡ଼ିକରେ ସୋସଲିଷ୍ଟଙ୍କ ଅପେକ୍ଷା ଅଧା ଭୋଟ ପାଇ ସୁଦ୍ଧା ଅଧିକ ସ୍ଥାନ ଦଖଲ କଲେ ଏବଂ ସ୍ୱାଧୀନ ଭାରତର ପ୍ରଥମ ପାର୍ଲିମେଣ୍ଟରେ କମ୍ୟୁନିଷ୍ଟ ପାର୍ଟି ବିରୋଧୀ ଦଳରୂପେ ସ୍ୱୀକୃତ ହେବାର ଯୋଗ୍ୟତା ହାସଲ କରି ନ ପାରିଥିଲେ ସୁଦ୍ଧା ମୁଖ୍ୟ ବିରୋଧୀ ଗୋଷ୍ଠୀର ସ୍ଥାନ ଦଖଲ କରିପାରିଲା । ନିର୍ବାଚନ ପ୍ରଚାର ଫଳରେ ସୋସଲିଜମ୍‌ର ବାର୍ତ୍ତା ଭାରତର ପୁରପଲ୍ଲୀରେ ପହଞ୍ଚାଯାଇପାରିଲା—ଦେଶଲୋକଙ୍କର କେତେ ମମତା ଓ ସମର୍ଥନ ରହିଛି ତାହା ଜଣାପଡ଼ିଗଲା ଏବଂ ନିର୍ବାଚନ ସଂଗଠନରେ କିଭଳି ନୀତି ଓ କୌଶଳ ପ୍ରୟୋଗର ଅଭାବ ରହିଥିଲା ତାହା ମଧ୍ୟ ଆମେ ସବୁ ଜାଣିପାରିଲୁ ।

## ବିଧାନସଭାରେ ମୋର ପରାଜୟ

ନିଖିଳ ଭାରତ ସ୍ତରରେ ପାର୍ଟି ଯେଉଁଭଳି ସବୁ ସମସ୍ୟାର ସମ୍ମୁଖୀନ ହୋଇଥିଲା, ଓଡ଼ିଶା ପାର୍ଟିକୁ ତତୋଧିକ ଅସୁବିଧା ଭିତରଦେଇ ଯିବାକୁ ପଡ଼ିଥିଲା । ଆମେ ଏକପ୍ରକାର

ସମ୍ବଳହୀନ ଓ ନବୀନ ସଂଗଠନରେ ଏହି ସଂଗ୍ରାମରେ ପ୍ରବେଶ କଲୁ । ନିର୍ଦ୍ଧାନସତ୍ତ୍ୱରେ ସରକାର ଗଢ଼ିବାଲାଗି ନୁହେଁ, ପ୍ରଦେଶ ସାରା କିଭଳି ସୋସଲିଷ୍ଟ ପାର୍ଟିର ବିସ୍ତାର ହୋଇ ପାରିବ, ସେଥି ନିମନ୍ତେ ଅକ୍ଳାନ୍ତ ଚେଷ୍ଟାରେ ଲାଗିପଡ଼ିଲୁ । ଏଥିଲାଗି ସମସ୍ତଙ୍କ ଅପେକ୍ଷା ମତେହିଁ ଅଧିକ ପରିଶ୍ରମ କରିବାକୁ ପଡ଼ିଲା ଏବଂ ପ୍ରଦେଶବ୍ୟାପୀ ସଂଗଠନ ଓ ପ୍ରଚାର ଲାଗି ମୋ ଉପରେ ବେଶି ନିର୍ଭର କରାଯାଉଥିଲା । ପ୍ରଦେଶର ଜନସାଧାରଣଙ୍କ ଭିତରେ ଅନ୍ୟ ସାଥୀମାନଙ୍କ ଅପେକ୍ଷା ମୁଁ ଅଧିକ ପରିଚିତ ଥିଲି ଏବଂ ମୋର ସ୍ୱାଧୀନତା ସଂଗ୍ରାମ ବେଳର ଗୌରବପୂର୍ଣ୍ଣ କାହାଣୀ ଆଗରୁ ଲୋକଙ୍କୁ ଭଲରୂପେ ଜଣାଥିଲା ।

ଓଡ଼ିଶା ଆସେମ୍ବ୍ଲିରେ ସେତେବେଳେ ମୋଟ ସଭ୍ୟସଂଖ୍ୟା ଥିଲା ୧୪୦ । ଆମେ ଖୁବ୍ ଉଦ୍ୟମ କରି ଆସେମ୍ବ୍ଲି ନିମନ୍ତେ ୮୯ ଏବଂ ଲୋକସଭା ପାଇଁ ୫ଟି ପ୍ରାର୍ଥୀ ଛିଡ଼ାକରାଇଲୁ । ସବୁଠାରୁ ଆମ ମନରେ ଉତ୍ସାହ ହେଲା ଯେ ଫୁଲବାଣୀ ବ୍ୟତୀତ ଅନ୍ୟ ସବୁ ଜିଲ୍ଲାରେ ଆମ ପକ୍ଷରେ ପ୍ରତିଯୋଗିତା କରିବା ସମ୍ଭବ ହେଲା । ଆମ ଭିତରୁ ଅଳ୍ପ କେତେ ଜଣଙ୍କ ବ୍ୟତୀତ ମୁଖ୍ୟ ସଭ୍ୟମାନେ ପ୍ରାୟ ସମସ୍ତେ ପ୍ରାର୍ଥୀ ହୋଇଥିଲେ; କିନ୍ତୁ ପାର୍ଟି ବାହାରେ ଓକିଲ, ଡାକ୍ତର, ଶିକ୍ଷକ ଏବଂ ଭିନ୍ନ ବୃତ୍ତିରେ ନିଯୁକ୍ତ ଥିବା କେତେକ ପଦସ୍ଥ ବ୍ୟକ୍ତିଙ୍କୁ ଆମେ ଆମ ଭିତରକୁ ଟାଣିଆଣିପାରିଲୁ । ପ୍ରାର୍ଥୀ ନିର୍ବାଚନ ଏପରି ଢଙ୍ଗରେ କରାଗଲା, ଯେପରି ଓଡ଼ିଶାବାସୀ ଯଦି ସଂଖ୍ୟାଧିକ୍ୟ ଲାଭର ଗୌରବ ଆମକୁ ଦେଇଥାନ୍ତେ, ଆମ ଭିତରେ ପ୍ରାର୍ଥୀ ଥିବା ବ୍ୟକ୍ତିମାନେ ଏକ ଦକ୍ଷ ଓ ସୁଯୋଗ୍ୟ ସରକାର ଗଠନ କରିପାରିଥାଆନ୍ତେ । ଆମ ପାଖରେ ସମ୍ବଳ ନ ଥିଲା । ଆମର ସାଥୀମାନେ ନିଜର ସମ୍ପତ୍ତି-ବାଡ଼ି ବିକି କରି ନିର୍ବାଚନ ଖର୍ଚ୍ଚ କଲେ । ବିଜୟର କୌଣସି ନିଶ୍ଚିତତା ନଥିଲାବେଳେ ସମାଜବାଦ ଲାଗି ଏପରି ତ୍ୟାଗ ଖୁବ୍ ବିରଳ । କେବଳ ସମ୍ବଳ ଓ ନିର୍ବାଚନ ଆୟୋଜନ ଅଭାବରୁ ହିଁ ଅଧିକାଂଶ ସ୍ଥାନରେ ମାତ୍ର ଅଳ୍ପସଂଖ୍ୟକ ଭୋଟ ବ୍ୟବଧାନରେ ଆମ ଲୋକେ ହାରିଗଲେ । ଆମର ପ୍ରାର୍ଥୀ ଏକ ହଜାରରୁ କମ୍ ଭୋଟରେ ୬ଟି ସ୍ଥାନ ଏବଂ ୨୦୦୦ରୁ କମ୍ ଭୋଟରେ ୩ଟି ସ୍ଥାନ ହରାଇଥିଲେ । କେତେକ ପ୍ରାର୍ଥୀଙ୍କ ପକ୍ଷରେ ସିକ୍ୟୁରିଟି ଡିପୋଜିଟ ଟଙ୍କା ଦାଖଲ କରିବାର ସାମର୍ଥ୍ୟ ନ ଥିଲା । ଦୁଇଟି ବିଷୟ, ମୋର ଏହା ୩୦ ବର୍ଷ ତଳର ଘଟଣା ହୋଇଥିଲେ ସୁଦ୍ଧା, ସ୍ମରଣ ଅଛି । କଟକ ଜିଲ୍ଲା ବାଙ୍କୀରେ ଗୋକୁଳାନନ୍ଦ ପ୍ରହରାଜଙ୍କୁ ଏବଂ ମୟୂରଭଞ୍ଜର ବାରିପଦାରେ ଗିରୀଶ ଚନ୍ଦ୍ର ରାୟଙ୍କୁ ପ୍ରାର୍ଥୀରୂପେ ବଛାଗଲା । ସେମାନେ ମତେ ଆସି ଜଣାଇଲେ ଯେ ସିକ୍ୟୁରିଟି ଅର୍ଥ ଯୋଗାଡ଼ କରିବା ସେମାନଙ୍କ ପକ୍ଷରେ ସମ୍ଭବ ହେଉ ନ ଥିବାରୁ ସେମାନେ ପ୍ରାର୍ଥୀତ୍ୱରୁ ଓହରିଯିବାକୁ ଚାହାନ୍ତି । ମୁଁ ବ୍ୟକ୍ତିଗତ ଭାବରେ ଦୁଇ ସ୍ଥାନକୁ ଗଲି । ଗୋକୁଳବାବୁଙ୍କ ଲାଗି ଗ୍ରାମମାନଙ୍କରୁ ଚାଉଳ ସଂଗ୍ରହ କରାଯାଇ ଏବଂ ଗିରୀଶଙ୍କ ଲାଗି ସହର ହୋଇଥିବାରୁ ପାର୍ଟି ସାଥୀ ଓ ସମର୍ଥକମାନଙ୍କୁ ଡାକି ସମସ୍ତଙ୍କଠାରୁ ବାଧ୍ୟତାମୂଳକ ଭାବେ କିଛି ଚାନ୍ଦା କରି ଡିପୋଜିଟ ଟଙ୍କା ସଂଗ୍ରହ କରାଯାଇପାରିଥିଲା । ଗିରୀଶ ରାୟଙ୍କ ବିରୁଦ୍ଧରେ କଂଗ୍ରେସ ପ୍ରାର୍ଥୀ ଥିଲେ ଶେଠ ଘନଶ୍ୟାମ ଦାସ ବିରଲାଙ୍କର ଅତି ପ୍ରିୟ ଲୋକ

ପ୍ରଭାବଶାଳୀ ବ୍ରିଜଲାଲ ବିୟାନି । ସେ ଅଜସ୍ର ଅର୍ଥ ଓ ଯାନବାହନର ବ୍ୟବସ୍ଥା କରିଥିଲେ— ସରକାରୀ ଦଳ ଅନ୍ୟ କଂଗ୍ରେସ ପ୍ରାର୍ଥୀଙ୍କ ପରି ତାଙ୍କୁ ବି ପୂରା ସାହାଯ୍ୟ କରିଥିଲେ; କିନ୍ତୁ ବାରିପଦାରେ ଜନମତ ଏପରି ଗଠିତ ହୋଇଗଲା ଯେ ବିୟାନି ତାଙ୍କର ଅମାନତ ହରାଇଲେ । ଏହି ପ୍ରଥମ ସାଧାରଣ ନିର୍ବାଚନରେ ଗିରିଶ ରାୟଙ୍କ ଛଡ଼ା ପ୍ରସନ୍ନ କୁମାର ଦାଶ, ସାକିଲ ସରେନ୍ ଓ ହରିଚନ୍ଦ୍ର ହାସଦା ମୟୂରଭଞ୍ଜ ଜିଲାରୁ ନିର୍ବାଚିତ ହୋଇ ଆସିଲେ । ସେହିପରି କଟକ ଜିଲାରୁ ନିଶାମଣି ଖୁଣ୍ଟିଆ, ପରମାନନ୍ଦ ମହାନ୍ତି, ଗୋକୁଳାନନ୍ଦ ପ୍ରହରାଜ ଓ ପୁରୀରୁ ଫକିର ଦାସ, ଗଞ୍ଜାମରୁ ବନମାଳୀ ମହାରଣା ଓ ସମ୍ବଲପୁରରୁ ଶ୍ରୀ ମକରଧ୍ୱଜ ପ୍ରଧାନ ସୋସଲିଷ୍ଟ ପ୍ରାର୍ଥୀରୂପେ ଓଡ଼ିଶା ଆସେଂବ୍ଲିକୁ ନିର୍ବାଚିତ ହୋଇ ଆସିଥିଲେ । ଲୋକ-ସଭାକୁ ପ୍ରାର୍ଥୀ ହୋଇଥିବା ପାଞ୍ଚ ଜଣଙ୍କ ଭିତରୁ କେବଳ ସାରଙ୍ଗଧର ଦାସ ନିର୍ବାଚିତ ହୋଇ ପାରିଥିଲେ । ମୁଁ ସାଲେପୁର-ଟାଙ୍ଗି ଦ୍ୱୈତ ନିର୍ବାଚନମଣ୍ଡଳୀରେ ପ୍ରାର୍ଥୀ ହୋଇଥିଲି । ସେତେବେଳେ ରିଜର୍ଭସିଟ ସହିତ ମିଳିତ ନିର୍ବାଚନମଣ୍ଡଳୀ ଥିଲା । କଂଗ୍ରେସ ପ୍ରାର୍ଥୀଙ୍କଠାରୁ ମତେ ପ୍ରାୟ ୭୦୦୦ରୁ କମ୍ ଭୋଟ ମିଳିଥିଲା । ପୋଲିଙ୍ଗ ପୂର୍ବରୁ ମୋର ବିପର୍ଯ୍ୟୟ ଘଟିବ ବୋଲି ମୁଁ ଜାଣିପାରିଥିଲି ଏବଂ ସେହି ଅନୁସାରେ ଜୟପ୍ରକାଶ ନାରାୟଣଙ୍କୁ ଆଗରୁ ଜଣାଇ ଦେଇଥିଲି । କିନ୍ତୁ ଏ ପରାଜୟ ମୋ ମନରେ କିଛି ବିଷାଦ ଭାବ ଆଣି ନ ଥିଲା । ଆମେ ଯେ ଏତେ ପ୍ରାର୍ଥୀ ଛିଡ଼ା କରାଇ ପ୍ରଦେଶବ୍ୟାପୀ ନିର୍ବାଚନ ଲଢିପାରିଲୁ ଏବଂ ୧୦ ଜଣ ସୋସଲିଷ୍ଟ ନିର୍ବାଚିତ ହୋଇ ଆସିଲେ, ଏହା ସୋସଲିଷ୍ଟ ପାର୍ଟିର ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ଦେଲା । ପାର୍ଟି ସାଥୀମାନଙ୍କ ମଧ୍ୟରେ ବି କୌଣସି ନିରାଶାର ଭାବନା ନଥିଲା ।

□□□

## ୮ । ଆଦର୍ଶ ସୋସଲିଷ୍ଟ ପାର୍ଟି

### ରାଜ୍ୟସଭାର ସଭ୍ୟପଦ

ଓଡ଼ିଶା ଆସେମ୍ବ୍ଲି ଓ ଲୋକସଭା ନିର୍ବାଚନ ଶେଷ ହେବା ପରେ ରାଜ୍ୟସଭାର ନିର୍ବାଚନ ଆସିଲା । ଓଡ଼ିଶାରୁ ନଅଜଣ ସଦସ୍ୟ ରାଜ୍ୟସଭାକୁ ନିର୍ବାଚିତ ହେଲେ । ପ୍ରଥମ ଥର ଲାଗି ରାଜ୍ୟସଭା ଗଠିତ ହେଉଥିବାରୁ ପୂର୍ଣ୍ଣସଂଖ୍ୟାର ନିର୍ବାଚନ ଏକ ସାଙ୍ଗରେ କରାଗଲା । ନଚେତ୍ ବିଧାନ ଅନୁସାରେ ପ୍ରତି ଦୁଇବର୍ଷରେ ଏକ-ତୃତୀୟାଂଶ ସଭ୍ୟହିଁ ନିର୍ବାଚିତ ହେଉଥିଲେ—ଦୁଇବର୍ଷପରେ ଏକ-ତୃତୀୟାଂଶ ସଭ୍ୟ ଅବସର ଗ୍ରହଣ କରୁଥିଲେ । ଓଡ଼ିଶା ଆସେମ୍ବ୍ଲିର ୧୪୦ ଜଣ ସଭ୍ୟଙ୍କ ଭିତରୁ ଏ ୯ ଜଣ ନିର୍ବାଚିତ ହେବାର କଥା । ସୋସଲିଷ୍ଟଙ୍କ ସଂଖ୍ୟା ଥାଏ ମୋଟେ ଦଶ—ଅନ୍ତତଃ ୧୫ଟି ଭୋଟର ଆବଶ୍ୟକତା ଥିଲା । ତଥାପି ମୁଁ ପ୍ରାର୍ଥୀ ହେଲି । ପଣ୍ଡିତ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ଦିବାକର ପଟ୍ଟନାୟକ ଓ ରାମଚନ୍ଦ୍ର ମିଶ୍ର ସ୍ୱାଧୀନ ଜନସଂଘ ନାମକ ଏ ସଂଗଠନ ଗଢ଼ି ସେଥିରେ ନିର୍ବାଚିତ ହୋଇ ଆସିଥିଲେ—ସେମାନଙ୍କର ପୂର୍ଣ୍ଣ ସମର୍ଥନ ମତେ ମିଳିଲା ଏବଂ ସ୍ୱାଧୀନ ପ୍ରାର୍ଥୀ ଡକ୍ଟର ପ୍ରାଣକୃଷ୍ଣ ପରିଜା ସମର୍ଥନ କରିବାରୁ ମୋର ବିଜୟ ସୁନିଶ୍ଚିତ ହୋଇଗଲା । ଡକ୍ଟର ପରିଜାଙ୍କୁ ଆମ ପାର୍ଟି ତରଫରୁ କିମ୍ବା ଆମ ପାର୍ଟି ସମର୍ଥନରେ ସ୍ୱାଧୀନଭାବରେ ଲୋକସଭାକୁ ପ୍ରତିଦ୍ୱନ୍ଦ୍ୱିତା କରିବା ନିମନ୍ତେ ମୁଁ ଅନୁରୋଧ କରିଥିଲି । ସେ ସେତେବେଳକୁ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରୋ-ଭାଇସଚେନସଲର୍ ଥିଲେ ଏବଂ ଆଚାର୍ଯ୍ୟ ନରେନ୍ଦ୍ର ଦେବ ଭାଇସ-ଚାନ୍ସେଲର ଥିଲେ । ମୁଁ ବାରାଣସୀ ଯାଇ ତାଙ୍କ ସହ କଥାବାର୍ତ୍ତା କରିଥିଲି । ସେ ମଧ୍ୟ ଆଉ ଦୂରରେ ରହିବାକୁ ଇଚ୍ଛା କରୁ ନ ଥିଲେ । ସେଥିଯୋଗୁଁ ବାରାଣସୀ ଛାଡ଼ିବା ନିମନ୍ତେ ମନସ୍ଥ କରିଥିଲେ । ପରେ ଆସି ସ୍ୱାଧୀନ ପ୍ରାର୍ଥୀ ଭାବରେ ତାଙ୍କ ଜନ୍ମସ୍ଥଳୀ ବାଲିକୁଦା ନିର୍ବାଚନ ମଣ୍ଡଳୀରୁ ବିଧାନସଭା ନିମନ୍ତେ ଲଢ଼େଇ କଲେ । ସେଥିରେ ସେ ପରାସ୍ତକଲେ ଓଡ଼ିଶାର ଜଣେ ଅତି ପୁରାତନ ସମ୍ମାନନୀୟ ନେତା ଭାଗୀରଥି ମହାପାତ୍ରଙ୍କୁ । ଓଡ଼ିଶା ବିଧାନସଭାରେ ସୋସଲିଷ୍ଟ ପାର୍ଟି ଏକ ସ୍ୱତନ୍ତ୍ର ଦଳରୂପେ କାର୍ଯ୍ୟ କଲା । ଏଥର ନେତାରୂପେ ନିର୍ବାଚିତ ହେଲେ ନିଶାମଣି ଖୁଣ୍ଟିଆ । ଆଗରୁ ବ୍ୟବସ୍ଥାସଭାର କୌଣସି ଅଭିଜ୍ଞତା ନ ଥିଲେ ସୁଦ୍ଧା ଆମର ଏ କ୍ଷୁଦ୍ର ଦଳଟି ଜାଗ୍ରତଆର ରହି ବେଶ ଯଶ ଲଭିଲେ ଏବଂ ପାର୍ଟିର ଖ୍ୟାତି ବଢ଼ିଲା ।

### ପାର୍ଟିପ୍ରତି ମମତାର ନିଦର୍ଶନ

ଓଡ଼ିଶା ପାର୍ଟି ସେତେବେଳକୁ ଖୁବ୍ ସୁଦୃଢ଼ ଥାଏ ଏବଂ ପରସ୍ପର ଭିତରେ ଅତ୍ୟନ୍ତ ସୌହାର୍ଦ୍ଦ୍ୟ ରହିଥାଏ । ଯେଉଁମାନେ କହିଲେ, ସେମାନଙ୍କ ମନରେ ଗର୍ବ ବା ଅହମିକା

ନଥିଲା କିମ୍ବା ଯେଉଁମାନେ ହାରିଗଲେ, ସେମାନଙ୍କର ନିଜକୁ ନ୍ୟୂନ ଭାବିବାର କୌଣସି କାରଣ ନ ଥିଲା । ସମସ୍ତଙ୍କ ମିଳିତ ଉଦ୍ୟମ ଯୋଗୁଁ ସବୁ ଘଟିଥିଲା ଏବଂ ସମସ୍ତେ ସମାନ ଭାବରେ ଦୁଃଖସୁଖର ଭାଗୀଦାର । ମୋ ପ୍ରତି ସମସ୍ତଙ୍କର ଅତୁଟ ବିଶ୍ୱାସ ରହିଥିଲା । ବାସ୍ତବିକ ମୁଁ ମୋ ରାଜନୀତିକ ଓ ବ୍ୟକ୍ତିଗତ ଜୀବନରେ ଏହି ସୋସଲିଷ୍ଟ ସାଥୀମାନଙ୍କଠାରୁ ଯେଭଳି ସ୍ନେହ, ଆଦର, ଭକ୍ତି, ଶ୍ରଦ୍ଧା ଓ ଅନୁରକ୍ତି ପାଇଥିଲି, ତାହା ମୋ ଜୀବନରେ ଅମୂଲ୍ୟ ଓ ଅତୁଳ୍ୟ ସଂପଦ ହୋଇ ରହିଲା । ସେମାନଙ୍କ ଯୋଗୁଁ ମୁଁ ଜୀବନର ଦୁଃଖକୁ କେବେ ଦୁଃଖ ବୋଲି ବିଚାର କରିନଥିଲି ଏବଂ ଅତି ନିଦାରୁଣ ବ୍ୟକ୍ତିଗତ ଦୁଃଖ ଓ ବିପଦବେଳେ ବିଚଳିତ ହୋଇନଥିଲି ।

## ଏକ ଆଦର୍ଶ ସୋସଲିଷ୍ଟ ପାର୍ଟି

ଆଗରୁ କ୍ଷମତାକୁ ଆସିଲା ପରେ କଂଗ୍ରେସ ଭିତରେ ଗୋଷ୍ଠୀ ବିବାଦ ବଢ଼ିଲା ଏବଂ ପରସ୍ପର ଭିତରେ ଈର୍ଷା ଓ ହିଂସା ପ୍ରବେଶ କରି ପାର୍ଟିର ଦୁରବସ୍ଥା ଘଟିଥିଲା; ତାହା ମୁଁ ସ୍ୱଚକ୍ଷୁରେ ଦେଖିଥିଲି । ଆମ ଭିତରେ ପରସ୍ପର ପ୍ରତି ଯେଉଁ ଭ୍ରାତୃଭାବର ବନ୍ଧନ ଏବଂ ଏକ ପରିବାର ଭଳି ଚଳିବାର ଧାରା ପ୍ରଚଳିତ ଥିଲା, ତାହା କେମିତି ବଜାୟ ରହିବ ଏହା ହେଲା ମୋର ଚିନ୍ତା । ଦଳେ ଭଲ ଅବସ୍ଥାରେ ରହିଲେ ଅନ୍ୟମାନଙ୍କ ଭିତରେ ମଧ୍ୟ ଗାତ୍ରଦାହ ହେବା ସ୍ୱାଭାବିକ । ଆହୁରି ଏକ ବିବାଦ ପାର୍ଟିଗୁଡ଼ିକରେ ଏଭଳି ପରିସ୍ଥିତିରେ ଉପସ୍ଥିତ ହୋଇ-ଯାଉଥିଲା । ସଂଗଠନ ଓ ବ୍ୟବସ୍ଥା ସଭା—କେଉଁ ପକ୍ଷର ଗୁରୁତ୍ୱ ବେଶି ଏବଂ କିଏ କାହାକୁ ନିୟନ୍ତ୍ରଣ କରିବ—ଏହି ଆଗ୍ରର ପଦ୍ଧତି ଠିକଣା ହୋଇ ନ ପାରିଥିବାରୁ କଂଗ୍ରେସରେ କିଭଳି ତୁମୁଳ କାଣ୍ଡ ଘଟିଗଲା, ସମସ୍ତଙ୍କୁ ଜଣା । ମୁଁ ଏ ବିଷ କିପରି ପାର୍ଟିରେ ପ୍ରବେଶ ନ କରିବ ଏଥିଲାଗି ମନରେ ଚିନ୍ତା କଲି । ଯେଉଁମାନେ ବ୍ୟବସ୍ଥା ସଭାରେ ରହିଲେ, ସେମାନଙ୍କ ନାମ ଆଦି ସଂବାଦପତ୍ର ଜରିଆରେ ଅଧିକ ପ୍ରକାଶ ପାଉଥିଲା । ସେ ଦୃଷ୍ଟିରୁ ଅନ୍ୟଙ୍କ ମନରେ ଈର୍ଷା ବା ପଛରେ ରହିଗଲେ ବୋଲି ଭାବ ଜାତ ହେବା ସ୍ୱାଭାବିକ । ସମସ୍ତେ କିଛି ଦେବତା ନୁହନ୍ତି—ରାଜନୀତିରେ ଯେଉଁମାନେ ଯୋଗ ଦେଇଥିଲେ ବା ଯୋଗ ଦେଇଛନ୍ତି, କିଛି ନିର୍ଲିପ୍ତ ସନ୍ନ୍ୟାସୀ ନୁହନ୍ତି । ଏହିସବୁ ବିଭ୍ରାଟରୁ ପାର୍ଟିକୁ ରକ୍ଷା କରାଯାଇପାରିଥିଲା ।

## ଓଡ଼ିଶା ପାର୍ଟିର ଐତିହାସିକ ସିଦ୍ଧାନ୍ତ

ଓଡ଼ିଶା ପାର୍ଟିର କର୍ମକର୍ତ୍ତା ଓ ବ୍ୟବସ୍ଥାପକଙ୍କର ଏକ ମିଳିତ ବୈଠକ ହୋଇ ତହିଁରେ ରାଜନୀତିକ ପରିସ୍ଥିତି ସବୁଦିଗରୁ ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଚିତ ହେଲା । ସର୍ବସମ୍ମତି-କ୍ରମେ ଏକ ଐତିହାସିକ ସିଦ୍ଧାନ୍ତ ନିଆଗଲା । ତାହା ହେଲା ଯେ ପାର୍ଟି ବ୍ୟବସ୍ଥାପକମାନେ ନିଜର ବେତନ ନିଜେ ନେବେ ନାହିଁ—ସେମାନେ ପାର୍ଟିର କୋଷାଧ୍ୟକ୍ଷଙ୍କୁ କ୍ଷମତାପତ୍ର ଦେବେ ଏବଂ ସେ ଟଙ୍କା ଓଡ଼ିଶା ଆସେଂବ୍ଲିରୁ ପାର୍ଟିର କୋଷାଧ୍ୟକ୍ଷ ଆଣିବେ । ଏହା ପକ୍ଷରେ

ଯୁକ୍ତ ହେଲା ଯେ ଏ ଧନ ଆମର ବ୍ୟକ୍ତିଗତ ଅର୍ଜିତ ଧନ ନ ଥିଲା; ତେଣୁ ଆମର ଏଥିରେ ଅଧିକାର ନ ରହିବା କଥା । ପାର୍ଟିର ସଭ୍ୟରୂପେ ନିର୍ବାଚିତ ହୋଇଥିଲୁ ଏବଂ ନିର୍ବାଚନ ମଣ୍ଡଳୀର ସେବା କରିବାକୁ ସମର୍ଥ ହେବା ନିମନ୍ତେ ବେତନ ବ୍ୟବସ୍ଥା ରହିଥିଲା ବୋଲି ସ୍ୱୀକାର କରିବାକୁ ପଡ଼ିବ । ପାର୍ଟିର ଲୋକ ହିସାବରେ ପାର୍ଟି ନିର୍ବାଚନମଣ୍ଡଳୀର ଦାୟିତ୍ୱ ନେବ ଏବଂ ପାର୍ଟିର କର୍ମୀରୂପେ ବ୍ୟବସ୍ଥାପକମାନେ କାର୍ଯ୍ୟ କରିବେ । ଭାରତର କୌଣସି ରାଜନୀତିକ ଦଳ, ଏପରିକି କମ୍ୟୁନିଷ୍ଟ ଦଳ ବି, ଏପରି କଡ଼ା ଶୃଙ୍ଖଳା ଜାରି କରିପାରିଥିଲା କି ନାହିଁ ସେ ବିଷୟରେ ଘୋର ସଂଦେହ ରହିଛି । ବେତନର କିଛି ପରିମାଣ ପାର୍ଟି ଚାନ୍ଦା-ରୂପେ ନେଇନିଆଯାଏ; ମାତ୍ର ସମସ୍ତ ବେତନ ପାର୍ଟିର କୋଷାଧ୍ୟକ୍ଷ ନେବା ଦୃଷ୍ଟାନ୍ତ ବିରଳ ।

ଆହୁରି ଏକ ବିଶେଷ ଗର୍ବର କଥା ହେଲା ଯେ, କେଉଁ କେଉଁ ସଭ୍ୟଙ୍କର ବ୍ୟକ୍ତିଗତ ଆବଶ୍ୟକତା କେତେ ରହିଥିଲା, ତାହା ମୁଁ ସେମାନଙ୍କ ସହ ଆଲୋଚନା କରି ମାସକୁ ଯେତିକି ଦେବାକୁ ଧାର୍ଯ୍ୟ କରିଦେଲି, ତାହା ହିଁ ସେମାନେ ଆନନ୍ଦରେ ଗ୍ରହଣ କରିଥିଲେ । ଗଞ୍ଜାମର ବନମାଳୀ ମହାରଣାଙ୍କ ସହ କଥାବାର୍ତ୍ତା କରିବା ପୂର୍ବରୁ ସେ ମାସିକ ମୋଟେ ୩୦ ଟଙ୍କା ନେବା କଥା ସ୍ୱେଚ୍ଛାରେ ଜଣାଇଦେଲେ । ସେହିପରି ମେମ୍ବରମାନେ ନିଜ ଦରମାର ସ୍ୱଳ୍ପାଂଶ ନେଉଥିଲେ—ବାକିତକ ପାର୍ଟିଫଣ୍ଡ, ହେଲା ଏବଂ ପାର୍ଟିର ସାଧାରଣ କାର୍ଯ୍ୟରେ ବ୍ୟୟିତ ହେଲା । ଏହି ପ୍ରଥା ଟି ପାର୍ଟିରେ ବହୁକାଳ ଚାଲିଥିଲା । ପରେ ଅବଶ୍ୟ ପାର୍ଟି କର୍ମକର୍ତ୍ତାମାନେ ଏକ ସ୍ୱେଚ୍ଛାକୃତ ପରମ୍ପରାକୁ ବାଧ୍ୟତାମୂଳକ ଏବଂ ତାହା ଯେନ ନାନା ଅଶାନ୍ତିମୂଳକ ବାୟୁମଣ୍ଡଳ ଜାତ କରାଇବାରୁ ଶେଷ କେତେ ବର୍ଷକୁ କୋହଳ ହୋଇଗଲା —ମାତ୍ର ପ୍ରାୟ ୧୫/୨୦ ବର୍ଷକାଳ ଏହି ବ୍ୟବସ୍ଥା ବଡ଼ ସନ୍ତୋଷଜନକ ଭାବରେ ଗତ କଲା । ଏହା ଆମ ପକ୍ଷରେ ଏକ ଗର୍ବର ବିଷୟ ହୋଇ ରହିଥିଲା । ଆଜିକାଲି ଯେଉଁମାନେ ବ୍ୟବସ୍ଥାପକ ହୋଇ ଆସୁଛନ୍ତି, ସେମାନେ ଏସବୁ କଥା ସ୍ୱପ୍ନରେ ସୁଦ୍ଧା କଳ୍ପନା କରିପାରିବେ ନାହିଁ ।

ଏହି ନୀତି ପ୍ରଚଳନ ଯୋଗୁଁ ପାର୍ଟି ଓ ବ୍ୟବସ୍ଥା ସଭା ଦଳ ଭିତରେ ଯେଉଁ ବ୍ୟବଧାନ ସୃଷ୍ଟି ହେବାର ଆଶଙ୍କା ରହିଥିଲା, ତାହା ମଧ୍ୟ ହୋଇ ପାରିଲା ନାହିଁ । କାରଣ ବ୍ୟବସ୍ଥାପକମାନେ ପୂରାପୂରି ପାର୍ଟିର କର୍ତ୍ତୃତ୍ୱାଧୀନରେ କାର୍ଯ୍ୟ କଲେ ।

## ପାର୍ଲିମେଣ୍ଟରେ ଆମର କାର୍ଯ୍ୟ

ମୁଁ ରାଜ୍ୟସଭାକୁ ନିର୍ବାଚିତ ହୋଇପାରିବାରୁ ଆମ ଓଡ଼ିଶା ସୋସଲିଷ୍ଟ ପାର୍ଟି ପକ୍ଷରୁ ଦୁଇଜଣ ପାର୍ଲିମେଣ୍ଟରେ ରହିଲୁ । ମୁଁ ରାଜ୍ୟସଭାରେ ଏବଂ ସାରଙ୍ଗଧର ବାବୁ ଲୋକସଭାରେ । ସାରଙ୍ଗଧରବାବୁଙ୍କର ଆଗରୁ ଅସେମ୍ବ୍ଲି ଓ ଶାସନ ବିଧାୟକ ସଭା ଉଭୟର ଅଭିଜ୍ଞତା ରହିଥିଲା । ମାତ୍ର ମୋ ପକ୍ଷରେ ଏହା ଥିଲା ସଂପୂର୍ଣ୍ଣ ନୂତନ କ୍ଷେତ୍ର ।

ମୁଁ ସେଥିପୂର୍ବରୁ ଜିଲ୍ଲାବୋର୍ଡର ବି ମେମ୍ବର ହୋଇ ନ ଥିଲି କିମ୍ବା କେବେ ସେ ସବୁଥିରେ ପ୍ରାର୍ଥୀ ହୋଇ ନ ଥିଲି । ଜାତୀୟକବି ବୀରକିଶୋରଙ୍କ ଭାଷାରେ—"ଆମେ ହୋଇ ତ ନଥିଲୁ ଦରବାରୀ, ଆମ ହାତରେ ନ ଥିଲା ତରବାରି / ମହାତ୍ମା ଗାନ୍ଧୀଙ୍କ ନାମକୁ ସୁମରି ବଢିଲି ନଈକୁ ହେଲୁ ପାରି ।" ମୁଁ ଥିଲି ଏହି ପର୍ଯ୍ୟାୟର । ମନ ବି ସେ ଦିଗପ୍ରତି ଆକୃଷ୍ଟ ନ ଥିଲା । ଆଧୁନିକ ଦୁନିଆର ଆଦବକାଇଦା ସହ ସେପରି ପରିଚିତ ନଥିଲି । ମାତ୍ର ଆଗରୁ ନିଖିଳଭାରତ ସ୍ତରରେ ପାର୍ଟି କମିଟିଗୁଡ଼ିକରେ ରହିଥିବାରୁ ଏବଂ ପାର୍ଟି ନେତାଙ୍କ ଭିତରୁ ଜଣେ ରୂପେ ସେତେବେଳକୁ ଊଣା ଅଧିକେ ଜଣା ହୋଇ-ସାରିଥିବାରୁ ମୋ ଭିତରେ କିଛି ସଂକୋଚଭାବ ରହି ନ ଥିଲା । ଲୋକସଭାରେ ସାରଙ୍ଗଧର ବାବୁ ସୋସଲିଷ୍ଟ ଦଳର ନେତାର ସମ୍ମାନ ଲାଭ କଲେ ଏବଂ ମୁଁ ଜଣେ ପ୍ରଧାନ ସଭ୍ୟରୂପେ ରାଜ୍ୟସଭାରେ ରହିଲି । ରାଜ୍ୟସଭାରେ ଆମର ସଂଖ୍ୟା ଥିଲା ବହୁତ କମ୍ ।

ମୋ ପକ୍ଷରେ ଆଉରି ଏକ ସମସ୍ୟା ଉପୁଜିଲା—ମୁଁ କେଉଁ ଭାଷାରେ ଭାଷଣ ଦେବି । ଇଂରେଜୀରେ ଅନ୍ୟତ୍ର ଭାଷଣ ଦେଉଥିଲି । ମାତ୍ର ପାର୍ଲିମେଣ୍ଟରେ ଦେବା ଭଳି ଦକ୍ଷତା ମୋର ନ ଥିବା ପରି ମତେ ଲାଗିଲା । ହିନ୍ଦୀ ଯଦିଓ ମୁଁ ଜାଣିଥିଲି, ତହିଁରେ ବି ସେପରି ଦକ୍ଷତା ନଥିଲା । ତାହା ଛଡ଼ା ହିନ୍ଦୀରେ କହିଲେ ଦକ୍ଷିଣାଞ୍ଚଳର ଯେଉଁ ସଭ୍ୟ ଥିଲେ, ସେମାନେ ହିନ୍ଦୀ ବୁଝିପାରିଲେ ନାହିଁ । ସଂବାଦପତ୍ରମାନଙ୍କରେ ହିନ୍ଦୀ ଭାଷଣ ସେତେ ଭଲଭାବରେ ରିପୋର୍ଟ ହେଉନଥିଲା । ଏ ସବୁକୁ ବିଚାରି ମୋର ପ୍ରଥମ ଭାଷଣ ଇଂରେଜୀରେ ଦେଲି । ଏଥିରେ ମତେ ଉତ୍ସାହିତ କରିଥିଲେ ସାରଙ୍ଗଧର ବାବୁ । ଆମେ ସବୁ ନୂଆ ସଦସ୍ୟ —ମୋର ଭାଷଣ ଶେଷ ବେଳକୁ ଡକ୍ଟର କୁଞ୍ଜରୁ ଆସି ମତେ ସାବାସ୍ ଦେଇଗଲେ ।

## ରାଜ୍ୟସଭାରେ ଶପଥଗ୍ରହଣ ଓ ଭାଷଣ

୧୯୫୨ ମସିହା ମଇ ମାସ ୧୩ ତାରିଖରୁ ମୋର ପାର୍ଲିମେଣ୍ଟାରୀ ଜୀବନ ଆରମ୍ଭ ହେଲା । ଏହି ଅବସରରେ ମୁଁ ଶପଥ ଗ୍ରହଣ କଲି । ଏ ଶପଥପତ୍ର ଦୁଇ ପ୍ରକାର ଥାଏ—ଗୋଟିକରେ ଭଗବାନଙ୍କୁ ସାକ୍ଷୀ ରଖି ଏବଂ ଅନ୍ୟଟିରେ ନିଜେ ଶପଥ କରୁଛି ବୋଲି କୁହାଯାଏ । ମୁଁ ଭଗବତ୍‌ବିଶ୍ୱାସୀ ନଥିବାରୁ ଦ୍ୱିତୀୟ ପ୍ରକାରର ଶପଥପତ୍ର ପାଠ କଲି । ତା ପରେ ଲୋକସଭାରେ ସଭ୍ୟରୂପେ ମତେ ଯେ ପୁଣି ଥରେ ଶପଥ ନେବାକୁ ପଡ଼ିଛି, ମୁଁ ବରାବର ସେହି ପ୍ରକାରର କରିଛି । ପାର୍ଲିମେଣ୍ଟର ଆଦବକାଇଦା ଜାଣିବା ଖାଲି ପୁସ୍ତକପାଠରେ ହୋଇପାରେନା । ଆମକୁ ସବୁ ଆଗରୁ ସଂବିଧାନ ବହି ଏବଂ ରାଜ୍ୟସଭାର ନିୟମାବଳୀ ଦିଆଯାଇଥିଲା—ପୁଣି ଅନ୍ୟ ସବୁ ପୁସ୍ତକରେ ସଭ୍ୟମାନଙ୍କର କଣ ଅଧିକାର, କି ସୁବିଧା ମିଳୁଥିଲା ଓ ପାର୍ଲିମେଣ୍ଟରେ ପୂର୍ବରୁ କିଭଳି ସବୁ ରୁଲିଂ ଦିଆ-ଯାଇଥିଲା, ତାହା ଯେତେଦୂର ସମ୍ଭବ, ମୁଁ ପଢି ଯାଇଥିଲି । କିନ୍ତୁ ତାର ପ୍ରୟୋଗ କିପରି ହେବ, ସେ ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ନଥିଲା । କିଛିଦିନ ପ୍ରଶ୍ନୋତ୍ତର ଓ ଅନ୍ୟ କାର୍ଯ୍ୟ ଲକ୍ଷ୍ୟ କଲା ପରେ ହିଁ ନିଜ ଭିତରୁ ଭୟ ବା ସଂକୋଚ ଗଲା—ମନରେ ସାହସ ବଢ଼ିଲା ।

# କୃଷକ ଶ୍ରେଣୀର ଦାବୀ

ମୁଁ ସୋସଲିଷ୍ଟ ଭାବରେ କିପରି ମୋର ଦାବୀ ଉପସ୍ଥାପିତ କରିପାରିବି ଏହା ହେଲା ମୋର ଭାବନା । କମ୍ୟୁନିଷ୍ଟ ପାର୍ଟି ଆମଠାରୁ ବହୁତ ଅଧିକ ସଂଖ୍ୟାରେ ଆସିଥିଲେ ଏବଂ ତାଙ୍କ ଗ୍ରୁପ୍‌ର ନେତା ଥିଲେ ପି. ସୁନ୍ଦରାୟା ଏବଂ ଉପନେତା ଥିଲେ ଭୂପେଶ ଗୁପ୍ତ । ଆମେ ସଂଖ୍ୟାରେ କମ୍ ହେଲେ ସୁଦ୍ଧା ଆମକୁ କାର୍ଯ୍ୟ ଗୁଣରେ ସେ ଅଭାବ ପୂରଣ କରିବାକୁ ପଡ଼ିବ । ରାଜ୍ୟସଭାରେ ରାଷ୍ଟ୍ରପତିଙ୍କ ଅଭିଭାଷଣ ଉପରେ ବିତର୍କ ଆରମ୍ଭ ହେଲା । ଡକ୍‌ଟର ରାଜେନ୍ଦ୍ର ପ୍ରସାଦ ରାଷ୍ଟ୍ରପତି ଭାବରେ ପାର୍ଲିମେଣ୍ଟର ଉଭୟ ଗୃହର ମିଳିତ ବୈଠକରେ ମଇ ମାସ ୧୬ ତାରିଖରେ ଭାଷଣ ଦେଇଥିଲେ । ସେହି ଭାଷଣ ଲାଗି ରାଷ୍ଟ୍ରପତିଙ୍କୁ ଧନ୍ୟବାଦ ଜଣାଇ କଂଗ୍ରେସ ପାର୍ଟି ତରଫରୁ ଦେଓ୍ୱାନ୍ ଚମନ୍‌ଲାଲ ଏକ ପ୍ରସ୍ତାବ ଆଣିଥିଲେ । ମୁଁ ତହିଁରେ ଏକ ସଂଶୋଧନ ନିମ୍ନମତେ ଦେଇଥିଲି :

"But regret that the address does not disclose an integrated land policy to facilitate increased production of food and the elimination of social injustice towards landless peasants and agricultural labourers."

ଏଥିରେ ମୁଁ ପ୍ରଥମେ କୃଷକଙ୍କ ସମସ୍ୟାହିଁ ପାର୍ଲିମେଣ୍ଟରେ ଉଠାଇଲି ଏବଂ ସଂଶୋଧନରେ କହିଲି ଯେ ଦେଶରେ ଖାଦ୍ୟ ଉତ୍ପାଦନ ବୃଦ୍ଧି ନିମନ୍ତେ ଏବଂ ଭୂମିହୀନ ଚାଷୀ ଓ କୃଷିମୂଲିଆମାନଙ୍କ ଉପରେ କରାଯାଉଥିବା ସାମାଜିକ ଅନ୍ୟାୟ ଦୂର କରିବା ନିମନ୍ତେ ସରକାରଙ୍କର କୌଣସି ସମନ୍ୱିତ ଭୂମି-ନୀତି ଏଥିରେ ବର୍ଣ୍ଣନା କରାଯାଇନାହିଁ ।

ମଇ ୧୯ ତାରିଖରେ ମୁଁ ଏ ସଂଶୋଧନ ପେଶ୍ କଲି ଏବଂ ମଇ ୨୦ ତାରିଖରେ ମୋତେ ପ୍ରଥମ ସୁଯୋଗ ମିଳିଲା ପାର୍ଲିମେଣ୍ଟରେ ମୁହଁ ଖୋଲିବା ନିମନ୍ତେ । ମୁଁ କହିଥିଲି— "ସରକାର ଜନସାଧାରଣଙ୍କଠାରୁ ଦୂରେଇଯାଉଛନ୍ତି । ସାମାଜିକ ଓ ଆର୍ଥିକ ସାମ୍ୟ ପ୍ରତିଷ୍ଠା ଲକ୍ଷ୍ୟ ବୋଲି କୁହାଯାଉଥିଲାବେଳେ କାର୍ଯ୍ୟରେ ତାର ବିପରୀତ କରାଯାଉଛି । ସଂବିଧାନରେ ରାଷ୍ଟ୍ର ଯେଉଁସବୁ ନୀତି ନିଶ୍ଚିତଭାବରେ ପାଳନ କରିବାର ନିର୍ଦ୍ଦେଶ ରହିଛି, ତାହାର ଅବମାନନା କରାଯାଉଛି । ସଂବିଧାନର ୩୯ (୧) ଅନୁଚ୍ଛେଦରେ କୁହାହୋଇଛି ଯେ, ଦେଶର ଆର୍ଥନୀତିକ ବ୍ୟବସ୍ଥାକୁ ଏପରି ଢଙ୍ଗରେ ପରିଚାଳନା କରାଯିବ ଯେପରିକି ସଂପଦ କେନ୍ଦ୍ରୀଭୂତ ହେବନାହିଁ ଏବଂ ଉତ୍ପାଦନର ସାଧନ ସାଧାରଣ ସ୍ୱାର୍ଥ ବିରୋଧରେ ନଯାଏ । ଏପରି ସ୍ପଷ୍ଟ ନିର୍ଦ୍ଦେଶନାମା ସତ୍ତ୍ୱେ କାର୍ଯ୍ୟରେ କଣ ହେଉଛି ? ଜମିଦାରୀପ୍ରଥା ଉଠାଇଦିଆଗଲାଣି ବୋଲି କୁହାଯାଉଛି; କିନ୍ତୁ ସରକାର ଜାଣିଶୁଣି ଭୂତପୂର୍ବ ରାଜାରାଜୁଡ଼ା ଶାସକ ଓ ଜମିଦାରମାନଙ୍କ ହାତରେ ହଜାର ହଜାର ଏକର ଜମି ଛାଡ଼ିଦେଇଛନ୍ତି । ସେମାନଙ୍କୁ କ୍ଷତିପୂରଣ ଦେବା ବ୍ୟବସ୍ଥା ହେବା ଫଳରେ ପୁଣି କେତେଜଣଙ୍କ ହାତରେ ଧନ

ଠୁଳ ହେବାର ବାଟ ଫିଟିଛି । ଏପରି ଅବସ୍ଥାରେ ଚାଷୀ ଓ ଶ୍ରମିକ ସରକାରଠାରୁ ସାମାଜିକ ଓ ଆର୍ଥିକ ନ୍ୟାୟ ଆଶା କରିବା ବିଡ଼ମ୍ବନାମାତ୍ର । ଚାଷୀ ଦେଖୁଛି, ସେ ଯେଉଁ ଜମି ଚଷୁଛି ତାହା ତାର ନୁହେଁ କିମ୍ବା ଜମିର ସବୁ ଉତ୍ପାଦନ ସେ ଭୋଗ କରିପାରୁନାହିଁ । ଏଣୁ ଚାଷୀ ମନରେ ଆଦୌ ଆଗ୍ରହ ଜାତହେଉନାହିଁ ।

"ଭୂସମସ୍ୟା ଅତି ଜରୁରୀ ହୋଇପଡ଼ିଛି । ସରକାର ଏ ଦିଗରେ କିଛି ଅଗ୍ରଗାମୀ ପଦକ୍ଷେପ ନେବେ ବୋଲି ଏଥିରେ କିଛି ସୂଚନା ଦିଆଯାଇନାହିଁ । ପ୍ରଥମ ପଞ୍ଚମବାର୍ଷିକ ଯୋଜନାର ଖସଡ଼ା ପ୍ରକାଶ ପାଇଛି । ଆସନ୍ତା ୫ ବର୍ଷ ଭିତରେ ସରକାର ଏହି ଜରୁରୀ ସମସ୍ୟା ସମାଧାନ ଦିଗରେ କଣ କରିବାକୁ ଯାଉଛନ୍ତି ତାହାର ଉଲ୍ଲେଖ ଅଛି । ୧୧ ପୃଷ୍ଠାରେ ଜୋତର ସର୍ବୋଚ୍ଚ ସୀମା ବିଷୟ ଆଲୋଚନା ପ୍ରସଙ୍ଗରେ ଉଲ୍ଲେଖ ଅଛି "ଶ୍ରେଷ୍ଠ ଚାଷୀ ଓ ଭୂମିହୀନ ଶ୍ରମିକମାନେ ଜମି ଦାବୀ କରୁଛନ୍ତି । ଏତେ ଶ୍ରେଣୀଙ୍କ ଭିତରେ ଭୂମିବଣ୍ଟନ ସମସ୍ୟାରେ ବହୁବିଧ ବ୍ୟାବହାରିକ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିବ—ଏଥିରେ ମୌଳିକ ସାମାଜିକ ଦ୍ୱନ୍ଦ୍ୱ ଉପୁଜିବ ।

"ମୌଳିକ ସାମାଜିକ ଦ୍ୱନ୍ଦ୍ୱ' କଥାଟିକୁ ଲକ୍ଷ୍ୟ କରିବାର କଥା । ସରକାର ଦ୍ୱନ୍ଦ୍ୱକୁ ଭୟ କରୁଛନ୍ତି । ସମସ୍ୟାର ସମାଧାନ କରିବାକୁ ହେଲେ ଦ୍ୱନ୍ଦ୍ୱର ସମ୍ମୁଖୀନ ହେବାକୁ ପଡ଼ିବ । ପଳାୟନପନ୍ଥା ସମସ୍ୟା ସମାଧାନ କରିବ ନାହିଁ । ସରକାର ଟାଳଟୁଳ କରିପାରନ୍ତି; ମାତ୍ର ଲୋକେ ଆଉ ଅପେକ୍ଷା କରିବେ ନାହିଁ । ଆଚାର୍ଯ୍ୟ ବିନୋବା ଭାବେ ଭୂମିବଣ୍ଟନ ଦିଗରେ ଯାହା କରୁଛନ୍ତି, ତାହାର ଯାହା ପରିଣତି ହେଉ ପଛକେ, ଏଥିଦ୍ୱାରା ଲୋକଲୋଚନରେ ଏହି ସମସ୍ୟାର ଗୁରୁତ୍ୱ ଉପସ୍ଥାପିତ ହୋଇଛି । ଲୋକେ ସମାଧାନ ପାଇଁ ଆଗେଇଆସିଲେଣି; ସରକାର ଏ ସମସ୍ୟାର ସମାଧାନ କରନ୍ତୁ, ନଚେତ୍ ଏ ଦେଶରେ ତାଙ୍କର ସ୍ଥାନ ରହିବ ନାହିଁ ।

"ସମଗ୍ର ଭୂସମସ୍ୟାର ଏକ ଦିଗ ପ୍ରତି ମୁଁ ଦୃଷ୍ଟି ଆକର୍ଷଣ କରିଛି ଏବଂ ପରାମର୍ଶ ଦେଇଛି, ସରକାର କୃଷକ ପରିବାର ପିଛା ୩୦ ଏକର ସର୍ବୋଚ୍ଚ ସୀମା ଧାର୍ଯ୍ୟ କରନ୍ତୁ । ଏହା ବେଶି ଲୋକଙ୍କୁ ବାଧିବ ନାହିଁ । ଖୁବ୍ ବେଶିହେଲେ ଶତକଡ଼ା ୧୦ ଲୋକଙ୍କୁ ବାଧିବ । କିନ୍ତୁ ଏହି କ୍ଷୁଦ୍ର କାର୍ଯ୍ୟଟିରେ ଲୋକଙ୍କ ଭିତରେ ମନସ୍ତାତ୍ତ୍ୱିକ ପରିବର୍ତ୍ତନ ଆସିଯିବ । ଏଥିରେ କୃଷକ ମନରେ ବଳ ଆସିବ ଏବଂ ସେ ନିଜ ଗୋଡ଼ରେ ଛିଡ଼ାହେବ, ନିଜ ଆଡ଼ୁ ଉଦ୍ୟମ କରିବ, ଏକ ସ୍ୱାଧୀନତାର ଭାବ ତା' ହୃଦୟରେ ଉତ୍ସାହ ଦେବ ଏବଂ ସମୂହ ସ୍ୱାର୍ଥ ଲାଗି କାର୍ଯ୍ୟ କରିବା ନିମନ୍ତେ ଆଗଭର ହୋଇ ଆସିବ । ଆମ ସମାଜର ଭବିଷ୍ୟତ ଲାଗି ଏପରି ବାୟୁମଣ୍ଡଳ ସୃଷ୍ଟି ହେବା ନିତାନ୍ତ ପ୍ରୟୋଜନ । ସରକାର ସର୍ବଦା କହନ୍ତି, ଗଠନାତ୍ମକ ପ୍ରସ୍ତାବ ଦେଲେ ସରକାର ବିଚାର କରିବେ । ମୁଁ ସରକାରଙ୍କୁ ପଚାରୁଛି—ମୋର ଏ ପ୍ରସ୍ତାବ ଗଠନାତ୍ମକ କି ନାହିଁ ? ଜମିର ପୁନର୍ବଣ୍ଟନ ସମ୍ବନ୍ଧରେ ସରକାର ତାଙ୍କର ନୀତି ଏହି ଗୃହରେ ଘୋଷଣା କରନ୍ତୁ ।"

□□□

# ୯ । ନୂତନ ନୀତି ବୟାନ

## ପଞ୍ଚମାଢ଼ୀରେ ବିଶେଷ ଅଧିବେଶନ

ରାଜ୍ୟସଭାରେ ଏହି ଭାଷଣ ଦେବା ପରେପରେ ମୁଁ ସେହିଦିନ ସନ୍ଧ୍ୟାରେ ମଧ୍ୟପ୍ରଦେଶର ପଞ୍ଚମାଢ଼ୀ ଯାତ୍ରାକଲି । ସେଠାରେ ମଇ ୧୩, ୧୪, ୧୫, ୧୬ ଓ ୧୭ ପାଞ୍ଚଦିନ ଧରି ସୋସିଆଲିଷ୍ଟ ପାର୍ଟିର ଏକ ବିଶେଷ ଅଧିବେଶନ ହୋଇଥିଲା । ୧୯୫୦ରେ ମାନ୍ଦ୍ରାଜରେ ଅଷ୍ଟମ ବାର୍ଷିକ ଅଧିବେଶନ ହୋଇଥିଲା—ଏହା ପରେ ନିର୍ବାଚନ ପ୍ରସ୍ତୁତିରେ ପାର୍ଟି ବ୍ୟସ୍ତ ରହିଥିବାରୁ ଆଉ ସମ୍ମିଳନୀ ହୋଇପାରିନଥିଲା । ଏହି ସମ୍ମିଳନୀ ଲାଗି ନୂତନ ଡେଲିଗେଟ୍ ନିର୍ବାଚନ ହୋଇନଥିଲା । ମାନ୍ଦ୍ରାଜକୁ ଯେଉଁମାନେ ପ୍ରତିନିଧି ହୋଇଥିଲେ, ସେହିମାନେ ହିଁ ଏହାର ପ୍ରତିନିଧି ହେଲେ । ଏଥିରେ ୧୭୫ ଡେଲିଗେଟ୍, ୧୫୪ ସହୋଦର ଡେଲିଗେଟ୍ ଏବଂ ୧୧୨ ସଭ୍ୟ ଦର୍ଶକ ଉପସ୍ଥିତ ଥିଲେ । ଓଡ଼ିଶାରୁ ମୁଁ, ସାରଙ୍ଗଧର ଦାସ, ବାବୁଲାଲ ଦୋଷୀ ଓ ପ୍ରଦୀପ୍ତ କିଶୋର ଦାସ ଉପସ୍ଥିତ ଥିଲୁ । ନିର୍ବାଚନର ଫଳ ଅତ୍ୟନ୍ତ ନୈରାଶ୍ୟଜନକ ହେଲା—ପାର୍ଟି ଲୋକଙ୍କ ଭିତରେ ମିଶ୍ରିତ ପ୍ରତିକ୍ରିୟା ହୋଇଥିଲା । ପାର୍ଲିମେଣ୍ଟାରୀ ରାଜନୀତିରେ ସୋସିଆଲିଷ୍ଟ ପାର୍ଟି କେତେଦୂର ସମର୍ଥ ହେବ, ଏହା ନେଇ ପାର୍ଟି ଲୋକଙ୍କ ମନ ଆନ୍ଦୋଳିତ ହେଉଥିଲା ।

ସୋସିଆଲିଷ୍ଟ ପାର୍ଟି ଭାରତରେ ଖାଲି ସ୍ୱାଧୀନ ପାର୍ଟି ରୂପେ ରାଜନୀତି କ୍ଷେତ୍ରରେ ଅବତୀର୍ଣ୍ଣ ହୋଇନଥିଲା—ଗଣତାନ୍ତ୍ରିକ ସମାଜବାଦର ଧ୍ୱନି ମଧ୍ୟ ନୂଆ ଥିଲା । ନିର୍ବାଚନରେ ଦେଖାଗଲା ବିରୋଧୀଦଳର ମୂଳ ଲୋକଙ୍କ ଭିତରେ ସେତେ ପ୍ରବେଶ କରିନଥିଲା । ତାହା ବ୍ୟତୀତ ଏ ସୋସିଆଲିଜିମ କମ୍ୟୁନିଜିମଠାରୁ ବା ମାର୍କସବାଦଠାରୁ କିଭଳି ଫରକ ଏହା ଯେକି ଲୋକଙ୍କ ମନରେ ଖୁବ୍ ଭ୍ରମଧାରଣା ରହିଥିଲା । କମ୍ୟୁନିଷ୍ଟ ପାର୍ଟି ନିର୍ବାଚନରେ ସୋସିଆଲିଷ୍ଟ ପାର୍ଟି ଅପେକ୍ଷା ଭଲ ଫଳ ପାଇବାରୁ ଉପଲବ୍ଧି କରାଗଲା ଯେ ଗଣତାନ୍ତ୍ରିକ ସମାଜବାଦ ବିଷୟରେ ଧାରା ବୟାନରେ କିଛି ତ୍ରୁଟି ରହିଥିଲା କିମ୍ବା ଏହା ଏକ ସଂପୂର୍ଣ୍ଣ ସିଦ୍ଧାନ୍ତ ବୋଲି ଲୋକଙ୍କ ମନରେ ପ୍ରତ୍ୟୟ ଜାତ କରାଇନଥିଲା । ତେଣୁ ନିର୍ବାଚନ ଫଳାଫଳର ପରିପ୍ରେକ୍ଷୀରେ ସୋସିଆଲିଷ୍ଟ ପ୍ରତିନିଧିଙ୍କ ଭିତରେ ଏହାହିଁ ପ୍ରଧାନ ଆଲୋଚ୍ୟ ବିଷୟ ହୋଇଥିଲା । ଏକ ଆଦର୍ଶବାଦୀ ପାର୍ଟିର ଏହାହିଁ ଅସଲ ଚରିତ୍ର । ନିଜର ଦୋଷତ୍ରୁଟି ଓ ଦୁର୍ବଳତା ବିଷୟରେ ଆତ୍ମନିରୀକ୍ଷଣ ହେବା ଉଚିତ । ୧୯୩୪ରେ କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ସ୍ଥାପିତ ହେଲାଦିନୁ ସୋସିଆଲିଜମ୍‌ର ପ୍ରକୃତ ବ୍ୟାଖ୍ୟା ନେଇ ବାଦାନୁବାଦ ଚାଲିଥିଲା । ମାର୍କସୀୟ ଆଦର୍ଶ ସ୍ୱୀକାର କରି ସୁଦ୍ଧା ସୋସିଆଲିଷ୍ଟ ପାର୍ଟି କମ୍ୟୁନିଷ୍ଟ ପାର୍ଟିର ଏକଚ୍ଛତ୍ର ଅଧିନାୟକତ୍ୱକୁ ଅସ୍ୱୀକାର କଲା ଏବଂ ଗଣତାନ୍ତ୍ରିକ ସମାଜବାଦର ନୀତି ଘୋଷଣା କଲା । ୧୯୪୮ରେ

କଂଗ୍ରେସ ତ୍ୟାଗବେଳେ ସ୍ପଷ୍ଟରୂପେ ଘୋଷିତ ହେଲା ଯେ ଉତ୍ତମ ଉପାୟ ଅନୁସରଣ କଲେହିଁ ଉତ୍ତମ ଲକ୍ଷ୍ୟ ହାସଲ ହୋଇପାରିବ । ଯେକୌଣସି ପ୍ରକାରେ ଲକ୍ଷ୍ୟ ହାସଲ ପନ୍ଥାକୁ ପ୍ରତ୍ୟାଖ୍ୟାନ କରିଦିଆଗଲା । ତେଣୁ ଭାରତର ସୋସଲିଜମ୍ ଗାନ୍ଧୀଜୀଙ୍କ ମତରେ ପ୍ରଭାବିତ ହେଲା । ତଥାପି ପାର୍ଟି ଭିତରେ ଏ ସମ୍ପର୍କରେ ବି ନାନାମତ ରହିଥିଲା । ନିର୍ବାଚନର ପରବର୍ତ୍ତୀ ପରିସ୍ଥିତିର ବିଚାର ସଙ୍ଗେ ସଙ୍ଗେ ଗଣତାନ୍ତ୍ରିକ ସମାଜବାଦର ଭିତ୍ତି, ମୌଳିକ ତଥ୍ୟ, ମତ ଓ କାର୍ଯ୍ୟପନ୍ଥା ସମ୍ବନ୍ଧରେ ଏକ ସୁଚିନ୍ତିତ ଓ ସମ୍ପୂର୍ଣ୍ଣ ଚିନ୍ତା ଏହି ବିଶେଷ ଅଧିବେଶନରେ ସ୍ଥିରୀକୃତ ହେଲା ।

## ନୂତନ ତତ୍ତ୍ୱ ବଖ୍ୟାନ

ଆଚାର୍ଯ୍ୟ ନରେନ୍ଦ୍ର ଦେବ ଚୀନ ଗସ୍ତରେ ଯାଇଥିବାରୁ ଡକ୍ଟର ରାମମନୋହର ଲୋହିଆ ଏହି ସମ୍ମିଳନୀରେ ସଭାପତି ହୋଇଥିଲେ । ତା' ପୂର୍ବରୁ ଡକ୍ଟର ଲୋହିଆ ସୋସଲିଷ୍ଟ ପାର୍ଟିର ସିଦ୍ଧାନ୍ତ ସମ୍ବନ୍ଧରେ ଏକ ସୁଚିନ୍ତିତ ଲେଖା ପ୍ରଣୟନ କରିଥିଲେ । ତାହାହିଁ ତାଙ୍କର ସଭାପତି ଅଭିଭାଷଣ ହୋଇଥିଲା ଏବଂ ଏଭଳି ବିଶେଷ ପରିସ୍ଥିତିରେ ସେହି ଅଭିଭାଷଣ ଆଲୋଚନା ନିମନ୍ତେ ରଖାଗଲା । ସାଧାରଣତଃ ସଭାପତିଙ୍କ ଭାଷଣ ଆଲୋଚନା କରାଯାଏ ନାହିଁ । କିନ୍ତୁ ଡକ୍ଟର ଲୋହିଆ ଏକ ମୌଳିକ ତତ୍ତ୍ୱ ବାହାର କଲେ । ଦେଶ ଆଗରେ ଏକ ପାଖରେ ପୁଞ୍ଜିବାଦ, ଅନ୍ୟ ପାଖରେ କମ୍ୟୁନିଷ୍ଟବାଦ—ସତେକି ଏହି ଦୁଇଟି ଚିନ୍ତାଧାରା ଛଡ଼ା ଅନ୍ୟ ଗତି ନାହିଁ । ସୋସଲିଜମ୍ ସିଦ୍ଧାନ୍ତକୁ ବିଚାର କଲା ପରେ ତେଣୁ ଲୋକମନରେ ସାଧାରଣ ଭାବରେ ଧାରଣା ଜନ୍ମେ । ଏହା ହୁଏତ କମ୍ୟୁନିଜମ୍‌କୁ ପୂରାପୂରି ଗ୍ରହଣ କରିବ—ନଚେତ୍ ପୁଞ୍ଜିବାଦ ସାର୍ଥକ ହେବ । ଅନ୍ୟ କୌଣସି ଉପାୟରେ ପୁଞ୍ଜିବାଦର ଧ୍ୱଂସ ହୋଇପାରିବ ନାହିଁ ; ତାହା ନ ହେବା ପର୍ଯ୍ୟନ୍ତ ସୋସଲିଜମ୍ ସ୍ଥାପନ ହୋଇପାରିବ ନାହିଁ । ତେଣୁ ସୋସଲିଜମ୍ ଏକ ସଂସ୍କାରବାଦୀ ତତ୍ତ୍ୱ ହୋଇପାରେ—ବୈପ୍ଳବିକ ପରିବର୍ତ୍ତନର ମାଧ୍ୟମ ହୋଇପାରିବ ନାହିଁ । ଏହି ନୂତନ ବ୍ୟାଖ୍ୟାରେ ଏପରି ଭ୍ରାନ୍ତ ଧାରଣାକୁ ଦୂର କରାଯାଇ ସୋସଲିଜମ କିଭଳି ସମାଜର ସ୍ଥାୟିତ୍ୱ ଓ ପରିବର୍ତ୍ତନ ଦୁଇଟିଯାକ କାର୍ଯ୍ୟ କରିପାରିବ—ପ୍ରଚଳିତ ବ୍ୟବସ୍ଥାକୁ ଦୃଢ଼ କରିବ ନାହିଁ ଅଥଚ ଦେଶରେ ଅରାଜକତା ସୃଷ୍ଟି ନ କରି ପରିବର୍ତ୍ତନ ଆଣିପାରେ, ତାହା ପ୍ରତିପାଦିତ କରାଗଲା । ଏହି ନୂତନ ସୋସଲିଜମ ବ୍ୟାଖ୍ୟାର ମୂଳାଧାର ହେଲା—

(୧) ପୁଞ୍ଜିବାଦ ଓ କମ୍ୟୁନିଷ୍ଟବାଦ ଉଭୟେ କେନ୍ଦ୍ରୀଭୂତ ଶକ୍ତିରେ ବିଶ୍ୱାସୀ, ତଦ୍ଦ୍ୱାରା ସମଗ୍ର ସମାଜର ପରିବର୍ତ୍ତନ ସମ୍ଭବ ନୁହେଁ ।

(୨) ପୁଞ୍ଜିବାଦୀ ବ୍ୟବସ୍ଥା ଓ କମ୍ୟୁନିଷ୍ଟ ବ୍ୟବସ୍ଥା ଏକପ୍ରକାର ଉତ୍ପାଦନ ପ୍ରଣାଳୀ ପ୍ରୟୋଗ କରନ୍ତି । ଫରକ ଭିତରେ ପୁଞ୍ଜିବାଦୀ ବ୍ୟବସ୍ଥାରେ କେତେକ ବ୍ୟକ୍ତି-ବିଶେଷ ବା ଗୋଷ୍ଠୀ ଉପକୃତ ହୁଅନ୍ତି । କମ୍ୟୁନିଷ୍ଟ ବ୍ୟବସ୍ଥାରେ ସମଗ୍ର ସମାଜକୁ ବ୍ୟକ୍ତିଗତ ଧନଲୋଭ

ପନ୍ଥାରୁ ମୁକ୍ତ କରାଗଲେ ସୁଦ୍ଧା ଏକ କେନ୍ଦ୍ରିକ ବ୍ୟବସ୍ଥା ବଶମ୍ବଦ ହୋଇଥିବାରୁ ଏକ ସଂଗଠିତ କେନ୍ଦ୍ରିକ ଶକ୍ତି, ଶ୍ରେଣୀ ବା ପାର୍ଟି ହିଁ ଏହାର ଫଳ ଭୋଗ କରେ---ସମଗ୍ର ସମାଜ ଓ ଜନସାଧାରଣ ଏଥିରେ ବାସ୍ତବିକ ଅର୍ଥନୈତିକ, ରାଜନୈତିକ ଓ ବ୍ୟକ୍ତିଗତ ସ୍ୱାଧୀନତା ଉପଭୋଗ କରିପାରନ୍ତନାହିଁ ।

(୩) ପୃଥିବୀରେ କମ୍ୟୁନିଷ୍ଟ ଶାସିତ ରାଷ୍ଟ୍ର ଏବଂ ତଥାକଥିତ ମୁକ୍ତ ସ୍ୱାଧୀନ ଗଣତାନ୍ତ୍ରିକ ରାଷ୍ଟ୍ରମାନଙ୍କ ଉପସ୍ଥିତି ଅବସ୍ଥା ପର୍ଯ୍ୟାଲୋଚନା କଲେ ଏହା ସ୍ପଷ୍ଟ ପ୍ରତିପାଦିତ ହେବ ଯେ ଏ ଦୁଇଟିଯାକ ବ୍ୟବସ୍ଥାର ଆଧୁନିକ ସମାଜର ପରିବର୍ତ୍ତନ ଏବଂ ଲୋକ-ସ୍ୱାଧୀନତା ଓ ଲୋକ-ସଂସ୍କୃତି ସ୍ଥାପନା ଲାଗି ସମ୍ପୂର୍ଣ୍ଣ ଅକ୍ଷମ । ତେଣୁ ଏ ଦୁଇଟିକୁ ପରିହାର କରିବାକୁ ପଡ଼ିବ ।

(୪) ସୋସିଆଲିଜମ ସୀମିତ ପୁଞ୍ଜିବାଦ (restricted capitalism) ଏବଂ ମିଶ୍ରିତ ଅର୍ଥନୀତି (mixed economy) ସିଦ୍ଧାନ୍ତକୁ ଅସ୍ୱୀକାର କରେ ଏବଂ ଏତଦ୍ୱାରା ସୋସିଆଲିଜମର ମାର୍ଗ ଉନ୍ମୁକ୍ତ ହେବ ବୋଲି ବିଶ୍ୱାସ କରେନା ।

(୫) ସୋସିଆଲିଜମର ରାଜନୀତିକ ଓ ଅର୍ଥନୀତିକ ଉଦ୍ଦେଶ୍ୟ ହେଲା ଏକ ଶ୍ରେଣୀ ନୁହେଁ, ସମଗ୍ର ସମାଜରୁ ପୁଞ୍ଜିବାଦୀ ଓ କେନ୍ଦ୍ରିକ ଅର୍ଥନୈତିକ ଓ ରାଜନୈତିକ ପ୍ରଭାବ ଲୋପ କରି ଏକ ବିକେନ୍ଦ୍ରୀକରଣ ମୁକ୍ତ-ଜନସମାଜ ପ୍ରତିଷ୍ଠା କରିବା ।

ଏହି ବିଷୟକୁ ବୁଝାଇବାକୁ ଯାଇ ସେଥିରେ ଲେଖାଥିଲି "ସମାଜବାଦକୁ ଏପରି ସଂଗ୍ରାମ ଓ ସଂଗଠନର ପନ୍ଥା ବାହାର କରିବାକୁ ପଡ଼ିବ, ଯଦ୍ୱାରା ସବୁଆଡ଼ୁ ପୁଞ୍ଜିବାଦୀ ବ୍ୟବସ୍ଥା ଧ୍ୱଂସହୋଇପାରିବ । ଏହାର ଅର୍ଥନୀତିକ ଲକ୍ଷ୍ୟ ପୂରଣ ଅନୁରୂପ ସଂଗ୍ରାମ ଓ ସଂଗଠନ କରାଯିବ । ଏହା ଆର୍ଥନୀତିକ କ୍ଷେତ୍ରରେ ଏପରି ଏକ ନୂତନ କୌଶଳର ପ୍ରବର୍ତ୍ତନ କରିବ, ଯଦ୍ୱାରା ଏକ ବିଭାଗ, ଏକ ଅଞ୍ଚଳ କେବଳ ନୁହେଁ, ସମାନଭାବରେ ଏକାଭଳିଆ ସମାଜର ପ୍ରତ୍ୟେକ ସ୍ତରରେ ଉନ୍ନତି ପରିଲକ୍ଷିତ ହେବ । ଏହି ତାତ୍କାଳିକ ଆବଶ୍ୟକତା ସମାଜବାଦର ସଂଗ୍ରାମ ଓ ସଂଗଠନରେ ପ୍ରତିଫଳିତ ହେବ ।" (ଉତ୍କଳର ଲୋହିଆଙ୍କ ପଞ୍ଚମାଢ଼ୀ ଭାଷଣ)

## ଉଭୟେ ସମାଜବାଦ ବିରୋଧୀ

"ରକ୍ଷଣଶୀଳତା (Conservatism) ଏବଂ କମ୍ୟୁନିଜମ୍ (Communism) ଉଭୟଙ୍କର ସ୍ୱାର୍ଥ ହେଉଛି ସୋସିଆଲିଜମ୍ ବା ସମାଜବାଦକୁ ବିରୋଧ କରିବା । ରକ୍ଷଣ-ଶୀଳତା ବିଚାର କରେ ଯେ ସମାଜବାଦ ତାର ଗଣତାନ୍ତ୍ରିକ ପ୍ରତିଦ୍ୱନ୍ଦ୍ୱୀ; କମ୍ୟୁନିଜମ୍ କେବଳ ସମଗ୍ର ବିଦ୍ରୋହର ଧମକ ଛଡ଼ା ଆଉ କିଛି କରିପାରେନା । କମ୍ୟୁନିଜମ୍ ଏକ ରକ୍ଷଣଶୀଳ ବ୍ୟବସ୍ଥା ବା ସରକାରର ସ୍ଥିତିକୁ ପସନ୍ଦ କରେ ଏବଂ ସୋସିଆଲିଷ୍ଟ ପାର୍ଟି କ୍ଷମତା ଦଖଲ କରିବାକୁ ପ୍ରାଣପଣେ ଭୟ କରେ । କାରଣ ଦ୍ୱିତୀୟ ଶକ୍ତି କ୍ଷମତାକୁ

ଆସିଲେ ତାର ସମସ୍ତ ବିଦ୍ରୋହର ସମ୍ଭାବନା ମଉଳିଯାଏ । କମ୍ୟୁନିଷ୍ଟ ବିପ୍ଳବ ସଫଳ ନହେବା ପର୍ଯ୍ୟନ୍ତ ପୁଞ୍ଜିବାଦ ହିଁ ନୂତନ ଶକ୍ତି ଆହରଣ କରି ପୁଷ୍ଟ ହେଉଥାଏ ।"

## ଶକ୍ତି ଓ ସଂଗଠନ ହେବ ଭିତ୍ତି

"ଏକ ସୋସିଆଲିଷ୍ଟ ପାର୍ଟି ହାତରେ ଶକ୍ତି ଓ ସଂଗଠନ ଉଭୟ ଯଥେଷ୍ଟ ଭାବରେ ରହିବା ଦରକାର । ଯେତେବେଳେ ସମୟୋପଯୋଗୀ ଆବଶ୍ୟକତା ପଡ଼ିବ, ତାହାର ଉପଯୁକ୍ତ ପ୍ରୟୋଗ ହୋଇପାରିବ । ଏହି ଶକ୍ତି ଓ ସଂଗଠନକୁ ଛିଡ଼ାକରିବା ନିମନ୍ତେ ସମାଜବାଦୀ ପାର୍ଟି ସର୍ବଦା ଲୋକଙ୍କର ମୁଖପାତ୍ର ହେବ, ଲୋକଙ୍କ ବାଞ୍ଛା ପୂରଣ ନିମନ୍ତେ ସଂଗଠନ କରିବ, ଅନ୍ୟାୟର ପ୍ରତିରୋଧ କରୁଥିବ ଏବଂ ପୁନର୍ଗଠନ କାର୍ଯ୍ୟରେ ଧୁରନ୍ଧର ଭାବରେ ଉଭା ହେବ । ଏହା ରଚନାତ୍ମକ କାର୍ଯ୍ୟରେ ଭାଗନେବାକୁ ସର୍ବଦା ପ୍ରସ୍ତୁତ ରହିବ, ଲୋକମତ ଗଠନ କରିବ, ଲୋକଙ୍କ ମତରେ ପ୍ରଭାବିତ ହେବ ଏବଂ ଅନ୍ୟାୟର ପ୍ରତିରୋଧ କରିବ । ସମାଜବାଦର ଦଳ ତିନୋଟି କାର୍ଯ୍ୟ ସଂକେତ ରଖିଛି : (୧) କୋଦାଲ, (୨) ଭୋଟ ଓ (୩) ଜେଲ ।"

ଏହି ତତ୍ତ୍ୱ ଆଲୋଚିତ ହୋଇ ଗଣତାନ୍ତ୍ରିକ ସମାଜବାଦର ଏକ ପୂର୍ଣ୍ଣାଙ୍ଗ ଚିତ୍ର ରଖାଗଲା ଏବଂ ଏହା ଏକପ୍ରକାର ମାର୍କସ୍‌ବାଦ ଛାଡ଼ି ଗାନ୍ଧୀ-ପନ୍ଥାକୁ ଧରିଲା, ସର୍ବୋଦୟ ଓ ସମାଜବାଦ ଭିତରେ ସହଯୋଗ ପ୍ରତିଷ୍ଠାର ଡାକରା ଦିଆଗଲା ଏବଂ ବିନୋବା ଭାବେଙ୍କର ଭୂଦାନ ଆନ୍ଦୋଳନ ପ୍ରତି ନିଷ୍ଠିତଭାବରେ ବନ୍ଧୁଭାବ ଦର୍ଶାଇଲା । ଜୟପ୍ରକାଶଙ୍କ ପରି ମାର୍କସ୍‌ପନ୍ଥୀ ଏହାକୁ ସଂପୂର୍ଣ୍ଣରୂପେ ଗ୍ରହଣ କଲେ ଏବଂ କହିଲେ—"ଆମେ ପାର୍ଟି ଗଠିତ ହେଲା ଦିନୁ ଗଣତାନ୍ତ୍ରିକ ସମାଜବାଦର ଚିତ୍ର, ଏହାର ପନ୍ଥା, କୌଶଳ ଓ ଦର୍ଶନ ସମ୍ବନ୍ଧରେ ପରିଷ୍କାର କରିବାକୁ ଚାହୁଁଛୁ । ଅଭିଜ୍ଞତା ଓ ପ୍ରୟୋଗ ଭିତରେ ନୂତନ ପ୍ରଶ୍ନମାନ ଉଠିଛି ଓ ତହିଁର ଉତ୍ତର ବି ବାହାରିଛି ।"

"ଲୋହିଆଙ୍କର ଭାଷଣରେ ଆମର ଏସବୁ ଉଦ୍ୟମକୁ ସୁନ୍ଦର ଭାବରେ ଉପସ୍ଥାପନ କରାଯାଇଛି । ଆମର ଯେ ନୀତି ଘୋଷଣା ରହିଛି, ତାହା ବହୁ ସ୍ଥାନରେ ଅସଂପୂର୍ଣ୍ଣ ରହିଥିଲା । ସମାଜବାଦର ସଂଗ୍ରାମରେ ଯେଉଁସବୁ ଆଦର୍ଶଗତ ବିଗ୍ରହ ଉଠୁଛି, ସେ ସଂପର୍କରେ କିଛି ସେଥିରେ ଉଲ୍ଲେଖ ନାହିଁ । ଲୋହିଆଙ୍କ ଭାଷଣରେ ଲିଖିତ ବିଷୟ-ଗୁଡ଼ିକ ଆମର ନୀତି ଘୋଷଣାରେ ଯେ ଅଭାବ ରହିଯାଇଥିଲା ତାହା ପୂରଣ କରିଛି । ସେ ଯାହା କହିଛନ୍ତି ସେଥିରେ ମୁଁ ସଂପୂର୍ଣ୍ଣ ଏକମତ । ଅବଶ୍ୟ କହିବାର ଢଙ୍ଗ ଭିନ୍ନ ହୋଇଥାଇପାରେ । ଆମର ଆଦର୍ଶବାଦ ଆମର ଅଭିଜ୍ଞତାରୁ ଉଦ୍ଭବ ହେବ—ଏହାର ସ୍ଥାୟିତ୍ୱ ରହିବ ହିଁ ରହିବ; ମାତ୍ର ଢଙ୍ଗର ପରିବର୍ତ୍ତନ ଘଟିପାରେ ।

ତେଣୁ ପଞ୍ଚମାଢ଼ୀ ଗଣତାନ୍ତ୍ରିକ ସମାଜବାଦର ଏକ ସଂପୂର୍ଣ୍ଣ ଚିତ୍ର, ନୀତି, ଆଦର୍ଶ, ଲକ୍ଷ୍ୟ, କର୍ମପନ୍ଥା ସାଧନର ଉପାୟ ଦେଶ ଆଗରେ ରଖିଲା । ଏକ ନିର୍ଦ୍ଦିଷ୍ଟ ଚିତ୍ର ଓ

ନିରାଶା ବଦଳରେ ନିର୍ବାଚନ ପରେ ଉତ୍ସାହ ନେଇ ସୋସିଆଲିଷ୍ଟ ବନ୍ଧୁମାନେ ଫେରିଲେ । ଏଠାରେ ବି ଯେଉଁ ନୂତନ କର୍ମକର୍ତ୍ତା ନିର୍ବାଚନ କରାଗଲା ତହିଁରେ ଆଚାର୍ଯ୍ୟ ନରେନ୍ଦ୍ର ଦେବ ଚେୟାରମ୍ୟାନ୍ ଓ ଅଶୋକ ମେହେଟା ସାଧାରଣ ସଂପାଦକ ରହିଲେ । ମୁଁ ପୂର୍ବପରି ଜାତୀୟ କାର୍ଯ୍ୟନିର୍ବାହିକା ସମିତିର ସଭ୍ୟ ରହିଲି । ଜୟପ୍ରକାଶ ନାରାୟଣ ପାର୍ଲିମେଣ୍ଟାରୀ ବୋର୍ଡର ଚେୟାରମ୍ୟାନ୍ ହେଲେ ଏବଂ ସାରଙ୍ଗଧର ଦାସ ତହିଁର ଏକ ସଭ୍ୟ ହୋଇ ରହିଲେ । ମାତ୍ର ଏ ଉତ୍ସାହ ଓ ପ୍ରେରଣା ବେଶି ଦିନ ରହିଲା ନାହିଁ କିମ୍ବା ଯେଉଁ ନୂତନ ସୋସିଆଲିଷ୍ଟ ଦର୍ଶନ ଓ ପନ୍ଥା ପ୍ରକାଶ ପାଇଲା, ତାହା ପୂର୍ଣ୍ଣରୂପେ କାର୍ଯ୍ୟକାରୀ କରିବା ନିମନ୍ତେ ସୋସିଆଲିଷ୍ଟ ପାର୍ଟି ସୁଯୋଗ ପାଇଲା ନାହିଁ । ପରବର୍ତ୍ତୀ ଘଟଣାବଳୀ ପୁଣି ବାସ୍ତବ ସୋସିଆଲିଷ୍ଟ ଆନ୍ଦୋଳନକୁ ଏକ ଗୋଲକଧନ୍ଦାରେ ପକାଇଦେଲା । ସଂଗ୍ରାମ ଓ ସଂଗଠନ ଜରିଆରେ ଲୋକଶକ୍ତି ଗଠନର ଯେଉଁ ପଣ ନେଇ ଆମେ ବାହାରିଆସିଲୁ, ତାହା ବଦଳରେ ଆମେ ସମସ୍ତେ ସରକାରୀ କ୍ଷମତା ହାସଲର ପାର୍ଲିମେଣ୍ଟାରୀ ପଦ୍ଧତିର ହିସାବ-କିତାବର ପାଲରେ ପଡ଼ିଗଲୁ । ଏହି ବାଣୀ ଓ ନିର୍ଦ୍ଦେଶ ନେଇ ଦେଶର ସଂଗଠନ ବଳରେ ଶକ୍ତି ଅର୍ଜନକୁ ପ୍ରଧାନତା ନ ଦେଇ ଗଣତନ୍ତ୍ର-ରକ୍ଷା ନାମରେ ଦଳ ଉଣା କରି ଏକ ମଜବୁତ ଗଣତାନ୍ତ୍ରିକ ରାଜନୀତିକ ଶକ୍ତି ଠିଆ କରାଇବା ମୋହରେ ପଡ଼ିଗଲୁ । ଦେଶରେ ଦଳ ବୃଦ୍ଧି ଘଟିଥିଲା ନିର୍ବାଚନ ବେଳେ—ତାହା କେତେଦିନ କେଉଁ ରୂପରେ ରହିଥାଆନ୍ତା କହିବା ମୁସ୍କିଲ; ମାତ୍ର ସେଗୁଡ଼ିକ ସ୍ଥାୟୀଭିତ୍ତିକ ବୋଲି ବିଚାର ଆମ ଭିତରେ ଚର୍ଚ୍ଚା ଚାଲିଲା—ସେଥିଭିତରୁ କେଉଁଗୁଡ଼ିକ ଆମ ଆଦର୍ଶ ଓ କର୍ମପନ୍ଥାର କେତେ ପାଖାପାଖି ଏବଂ ସେମାନଙ୍କୁ ଏକାଠି କରିପାରିଲେ ଆମର ଶକ୍ତି ବୃଦ୍ଧି ହେବ—ଆମେ କଂଗ୍ରେସ ଓ କମ୍ୟୁନିଷ୍ଟ ଉଭୟର ସମ୍ମୁଖୀନ ହୋଇପାରିବୁ ।

## ଗଣତନ୍ତ୍ରର ରକ୍ଷା ଓ କମ୍ୟୁନିଷ୍ଟ ବିରୋଧ

ପଞ୍ଚମାଢ଼ୀରେ ଏପରି ଏକ ନିର୍ଦ୍ଦିଷ୍ଟ ଭିତ୍ତି ବୟାନ ସଙ୍ଗେ ସଙ୍ଗେ ଦେଶରେ ଗଣତାନ୍ତ୍ରିକ ରାଜନୀତିକ ଦଳଗୁଡ଼ିକ ଭିତରେ ଯେ ବିଭାଜନ ଘଟୁଛି ଏବଂ କ୍ଷୁଦ୍ର କ୍ଷୁଦ୍ର ଦଳ ଜାତୀୟବାଦୀ ଶକ୍ତିଗୁଡ଼ିକ ଭାଗ ଭାଗ ହେବା ଯୋଗୁଁ ଶାସକ କଂଗ୍ରେସଦଳ ଅନ୍ୟ ପକ୍ଷରେ କମ୍ୟୁନିଷ୍ଟ ଶକ୍ତି ସୁବିଧା ପାଉଛି ବୋଲି ଏକ ବିଚାର ହେଲା । ଅଶୋକ ମେହେଟା ଦେଶର ନିର୍ବାଚନ ଫଳାଫଳର ପରିଣତି ହିସାବ କରି Political Mind of India ନାମକ ପୁସ୍ତକରେ ଦେଖାଇଲେ, ଦେଶ ସ୍ଥୂଳତଃ ଗଣତାନ୍ତ୍ରିକ ଜାତୀୟବାଦୀ ଶକ୍ତି ପଛରେ ଛିଡ଼ା ହୋଇଛି; ତଥାପି କମ୍ୟୁନିଷ୍ଟ ଶକ୍ତିର ନିର୍ବାଚନ ରାଜନୀତିରେ ସଫଳତା ହେଉଛି । ଏହାକୁ ପ୍ରତିରୋଧ କରିବାକୁ ହେଲେ କଂଗ୍ରେସ ବିରୋଧରେ ରହିଥିବା ଗଣତାନ୍ତ୍ରିକ ବିରୋଧୀ ଶକ୍ତିଗୁଡ଼ିକୁ ଏକତ୍ର କରିବା ଦରକାର । ରାଜନୀତିକ କାର୍ଯ୍ୟ (Political Line) ନାମକ ଯେଉଁ ପ୍ରସ୍ତାବ ଗୃହୀତ ହେଲା, ସେଥିରେ କୁହାଗଲା “ଯଦି ପାର୍ଟିକୁ ସୁଦୃଢ଼ରୂପେ

ଗଠନ କରିବା ଆମର ମୁଖ୍ୟ କର୍ତ୍ତବ୍ୟ, ସାଧାରଣ ନିର୍ବାଚନ ଫଳରେ ଦେଶର ରାଜନୀତିକ ଜୀବନ ଯେ ଖଣ୍ଡ-ବିଖଣ୍ଡିତ ହୋଇ ପଡ଼ିଲାଣି, ତହିଁକି ଆମେ ଆଖି ବାନ୍ଧି ଦେଇପାରିବା ନାହିଁ । ଜାତୀୟ ଐକ୍ୟ ଏବଂ ସାମାଜିକ ପରିବର୍ତ୍ତନ ବଜାୟ ରଖିବାକୁ ହେଲେ ଦେଶରେ ଏ ଯେ ଖଣ୍ଡବିଖଣ୍ଡିତ ରାଜନୀତିକ ଧାରା ଆରମ୍ଭ ହୋଇଛି, ତାକୁ ଅନ୍ତ କରିବାର ଦାୟିତ୍ୱ ମଧ୍ୟ ଆମକୁ ନେବାକୁ ହେବ ।" ଏହାକୁ ଦୃଷ୍ଟିପଥରେ ରଖି କେଉଁ କେଉଁ ଦଳ ଆମର କେତେ ନିକଟ ଏବଂ କାହାର କେତେ ଅଗ୍ରଗାମୀ ଓ କମ୍ୟୁନିଷ୍ଟ ବିରୋଧୀ ଭୂମିକା ଏହାର ହିସାବ-କିତାବ ହେବାକୁ ଲାଗିଲା । ଅଗ୍ରଗାମୀ ଦଳଗୁଡ଼ିକ ଭିତରୁ ଯେଉଁଗୁଡ଼ିକ ସୋସଲିଷ୍ଟ ପାର୍ଟିରେ ମିଶିବାର କଥା ଯଥା : ବଲ୍‌ସେଭିକ୍ ଲେନିନିଷ୍ଟ ପାର୍ଟି ଏବଂ ଆଉ କେତେକ କ୍ଷୁଦ୍ର ଦଳ ସେଗୁଡ଼ିକ ଆଗରୁ ମିଶିସାରିଥିଲେ ।

## କେ.ଏମ୍.ପି.ପି. ଓ ସୋସଲିଷ୍ଟ ପାର୍ଟିର ମିଶ୍ରଣ କିପରି ହେଲା ?

ଏଥିଭିତରୁ ପ୍ରଥମେ ଆଖି ପଡ଼ିଲା କେ. ଏମ. ପି. ପି. ଅର୍ଥାତ୍ ଆଚାର୍ଯ୍ୟ କୃପାଲାନୀଙ୍କ ନେତୃତ୍ୱରେ ଗଠିତ କିଷାନ୍ ମଜ୍‌ଦୁର ପ୍ରଜା ପାର୍ଟି ଉପରେ । ଏହି ପାର୍ଟି ଠିକ୍ ନିର୍ବାଚନ ପୂର୍ବରୁ କଂଗ୍ରେସରୁ ବାହାରିଆସିଥିଲା । ଏଥିରେ ଦେଶର କେତେକ ଦେଶଭକ୍ତ ନେତା ରହିଥିଲେ । ଆଚାର୍ଯ୍ୟ କୃପାଲାନୀ, ସୁଚେତା କୃପାଲାନୀଙ୍କ ବ୍ୟତୀତ ଡକ୍ଟର ପ୍ରଫୁଲ୍ଲ ଘୋଷ, ଟି. ପ୍ରକାଶନ୍, କେ. କେଲପନ୍, କେ. ଆର. କରନ୍ଥ, ମହାମାୟା ପ୍ରସାଦ ସିଂହ, ତ୍ରିଲୋକୀ ସିଂହ, ଡାକ୍ତର ସୁରେଶ ଚନ୍ଦ୍ର ବାନାର୍ଜି ଓ ଟି. ବିଶ୍ୱନାଥନ୍‌ଙ୍କ ପରି ଖ୍ୟାତନାମା ନେତାସବୁ ଯୋଗଦେଇଥିଲେ । ଏମାନଙ୍କ ଭିତରୁ ଟି. ପ୍ରକାଶନ୍ ଦକ୍ଷିଣରେ କମ୍ୟୁନିଷ୍ଟ ପାର୍ଟି ସହ ବନ୍ଧୁତା ବାନ୍ଧି ଇଉନାଇଟେଡ଼ ଡେମୋକ୍ରେଟିକ୍ ଫ୍ରଣ୍ଟ ଗଢ଼ି ନିର୍ବାଚନ ଲଢ଼ି-ଥିବାରୁ ତାଙ୍କ ସହଯୋଗରେ କମ୍ୟୁନିଷ୍ଟ ପାର୍ଟି ଅସାମାନ୍ୟ ସାଫଲ୍ୟ ଲାଭ କରିଥିଲା । ଗତ ନିର୍ବାଚନରେ ଏହି ଦଳ ଲୋକସଭାରେ ୧୦ଟି ଆସନ ଏବଂ ରାଜ୍ୟ ଆସେମ୍ବ୍ଲିମାନଙ୍କରେ ୭୭ଟି ଆସନ ପାଇଥିଲା । ମୋଟାମୋଟି ଏମାନେ ଗାନ୍ଧୀଙ୍କ ଅନୁଚର ହିସାବରେ ଜଣାଥିଲେ ଏବଂ ନେହେରୁଙ୍କ ସହ ନାନା କାରଣରୁ ଅପଡ଼ ହୋଇଥିଲା । ସୋସଲିଷ୍ଟଙ୍କ ପରି ପୂର୍ଣ୍ଣରୂପେ ମାନସିକ ବିଚ୍ଛିନ୍ନତା ଏମାନଙ୍କର କଂଗ୍ରେସରୁ ଘଟି ନ ଥିଲା କିମ୍ବା କଂଗ୍ରେସରେ ଥିଲାବେଳେ ଏମାନେ କିଛି ସୋସଲିଷ୍ଟ ପାର୍ଟି ପ୍ରତି ବିଶେଷ ସହାନୁଭୂତିସଂପନ୍ନ ନଥିଲେ । ମାତ୍ର କେତେକଙ୍କ ସହ; ଯଥା—କୃପାଲାନୀ ପରିବାରଙ୍କ ସହିତ ଡକ୍ଟର ଲୋହିଆଙ୍କର ଉତ୍ତମ ସଂପର୍କ ରହିଥିଲା । ଆମର ପଞ୍ଚମାଢ଼ୀ ସିଦ୍ଧାନ୍ତରେ ଆମେ ସଂପୂର୍ଣ୍ଣ ଗାନ୍ଧୀ ପନ୍ଥା ଆଡ଼କୁ ଝୁଙ୍କ ଦେଖାଇଲା ପରେ ଏହି ପାର୍ଟି ସହ ସାମଞ୍ଜସ୍ୟ ରକ୍ଷା କରିବା ସମ୍ଭବପର ହେଲା । ତେଣୁ ସୋସଲିଷ୍ଟ ନେତାମାନେ; ଯଥା—ଡକ୍ଟର ରାମମନୋହର ଲୋହିଆ, ଜୟପ୍ରକାଶ ନାରାୟଣ ଓ ଅଶୋକ ମେହେଟା ପଞ୍ଚମାଢ଼ୀରୁ ଫେରି ଏଥିରେ ଲାଗି-ପଡ଼ିଲେ । ଏଥିରେ ବେଶି ଉତ୍ସାହୀ ଥିଲେ ଲୋହିଆ । ଜୟପ୍ରକାଶ କର୍ତ୍ତବ୍ୟ କାର୍ଯ୍ୟ ପରି

ଲାଗିଥିଲେ ଏବଂ ଅଶୋକ ମେହେଟାଙ୍କର ଏକାନ୍ତ ଇଚ୍ଛା ଏମାନଙ୍କୁ, ବିଶେଷତଃ ଦକ୍ଷିଣରେ ଟି. ପ୍ରକାଶମ୍ ଆଦିଙ୍କୁ, କମ୍ୟୁନିଷ୍ଟଙ୍କ କବଳରୁ ଉଦ୍ଧାର କରିବା । ଏତିକି ବେଳକୁ ମଧ୍ୟପ୍ରଦେଶର ଚତୁର ରାଜନୀତିଜ୍ଞ ଡ. ପି. ମିଶ୍ର ବି ଆସି ଜୁଟିଗଲେ । ଏହି ସଂକ୍ରାନ୍ତରେ ଯେତେ ଘରୋଇ ଆଲୋଚନା ହୋଇଥିଲା, ମୁଁ ସବୁଥିରେ ପ୍ରାୟ ଉପସ୍ଥିତ ଥିଲି । ଆଚାର୍ଯ୍ୟ ନରେନ୍ଦ୍ର ଦେବ ଚୀନରେ ଥିଲେ । ସେ କେବଳ ପାର୍ଟିର ଚେୟାରମ୍ୟାନ୍ ନ ଥିଲେ, ରାଜ୍ୟସଭାର ସଦସ୍ୟ ବି ଥିଲେ । ଆମର ଏହି ଉନ୍ନତଜଣ ମୁଖ୍ୟନେତା ତାଙ୍କୁ ବି ଅପେକ୍ଷା କଲେନାହିଁ ।

ମୋର ଯେତେଦୂର ସ୍ମରଣ ହେଉଛି ପଞ୍ଚମାଢ଼ୀରେ ଆମେ ସମାଜବାଦର ଯେଉଁ ନୂତନ ଦୃଷ୍ଟିକୋଣ ଓ ନିର୍ଦ୍ଦିଷ୍ଟ ଆଦର୍ଶ ଘୋଷଣା କଲୁ, ସେଥିରେ ଏମାନେ କେତେଦୂର ଏକମତ ସେ ସଂପର୍କରେ ଆଦୌ ବିଗ୍ଭରକୁ ଆସିନଥିଲା । ତାହା ବିସ୍ତୃତ ବା ବିଶଦ ଭାବରେ କରାଯାଇଥିଲେ ଏକଥା ନିଶ୍ଚିତ ଯେ କେ.ଏମ୍.ପି.ପି. ସହିତ ମିଶ୍ରଣ ହୋଇପାରିନଥାନ୍ତା —ଏକାଠି ପାର୍ଲିମେଣ୍ଟାରି ଓ ଅନ୍ୟ କ୍ଷେତ୍ରରେ ମିଶି କାର୍ଯ୍ୟ କରିବାର କିଛି ବାଟ ବାହାରିପାରିଥାଆନ୍ତା । ମାତ୍ର ଦୁଇପକ୍ଷ ନିଜର ଦୁର୍ବଳ ସ୍ଥିତି ବିଷୟରେ ଏତେ ସଚେତନ ଥିଲେ ଯେ ସଂଗଠନ ବଞ୍ଚାଇ ରଖିବାର ବାଟ ଖୋଜୁଥିଲେ । ସୋସିଆଲିଷ୍ଟ ପାର୍ଟିରେ ସୋସିଆଲିଜମ୍ ଦିଗରେ ଯାହା ଯେତେ ବ୍ୟାହତ ହେଉ ପଛକେ, ଏହି ମିଶ୍ରଣ ଫଳରେ ଏଇ ଯେ କଂଗ୍ରେସତ୍ୟାଗୀ ନେତାମାନେ ରୋଷ କରି ବାହାରି ଆସିଥିଲେ, ସେମାନଙ୍କ ଭିତରୁ କେତେକଙ୍କୁ ବିରୋଧୀ ଭୂମିକାରେ ରଖାଯାଇପାରିଲା—କାରଣ ଏପରି ମିଶ୍ରଣର ଅତି ଅଳ୍ପଦିନ ପରେ ଅଧିକାଂଶ ଭିନ୍ନ ରାସ୍ତା ଧରିଲେ କିମ୍ବା ପୁରୁଣା ଘରକୁ ଫେରିଗଲେ ।

## ଆଗେ ମିଳନ ଏବଂ ତୁରନ୍ତ ମିଶ୍ରଣ

ତେଣୁ ଦେଶରେ ରାଜନୀତିକ ଏକୀକରଣ ନିମନ୍ତେ ସୋସିଆଲିଷ୍ଟ ପାର୍ଟି ଓ କେ. ଏମ୍. ପି.ପି ଭିତରେ ଏକାଠି କାର୍ଯ୍ୟ କରିବା ଏବଂ କିଛିଦିନ ପରେ ମିଶ୍ରଣ ନିମନ୍ତେ ବୁଝାମଣା ନେତା-ମାନଙ୍କ ଭିତରେ ହୋଇଗଲା । ଅଶୋକ ମେହେଟା ଏ ସଂକ୍ରାନ୍ତରେ ଅଗଷ୍ଟ ୨୭ ତାରିଖରେ ଏକ ବିବୃତିରେ କହିଲେ—"ଏହି ଦୁଇଦଳ ହଠାତ୍ ଅସ୍ଥାୟୀ ଓ ଅଗ୍ରୁନିକ କିମ୍ବା ସୁବିଧାବାଦ ମନୋବୃତ୍ତି ଯୋଗୁ ଏକାଠି ହେଉନାହାନ୍ତି । ପ୍ରାୟ ୩ମାସ ପର୍ଯ୍ୟନ୍ତ ଦୁଇ ପାର୍ଟିର ଲକ୍ଷ୍ୟ, ନୀତି ଓ କାର୍ଯ୍ୟକ୍ରମ ଯେପରି ବିଗ୍ଭର କରାଯାଇଛି ଏବଂ ଆମ ଭିତରେ ଏକ ସମନ୍ୱିତ ବୁଝାମଣା ହୋଇ-ପାରିଛି । ଏହି ବୁଝାମଣା ଫଳରେ ଆମ ଜାତୀୟତାବାଦୀ ଓ ସୋସିଆଲିଷ୍ଟ ଆନ୍ଦୋଳନର ସର୍ବୋତ୍କୃଷ୍ଟ ମିଳନ ଘଟିନାହିଁ, ଏହା ଅଗ୍ରଗତି କରିବାର ବାଟ ଖୋଲିଲା । ଏଥିରେ ଜାତୀୟତା, ସାମାଜିକ ପରିବର୍ତ୍ତନ ଏବଂ ବ୍ୟକ୍ତି-ସ୍ୱାଧୀନତା ସଂକ୍ରାନ୍ତୀୟ ଲକ୍ଷ୍ୟ ଓ ନୀତି ସମ୍ବନ୍ଧରେ ଅତି ସ୍ପଷ୍ଟ ଘୋଷଣା କରାଯାଇଛି ଏବଂ ଏତଦ୍ୱାରା ଅଧିକ ଏକୀକରଣ ନିମନ୍ତେ ଏକ ଦୃଢ଼ ଭିତ୍ତି ସ୍ଥାପିତ ହେଲା ।"

## ସୋସଲିଷ୍ଟ ପ୍ରଜାପାର୍ଟି ଗଠନ

ଏହି ସଂକ୍ରାନ୍ତରେ ଜୟପ୍ରକାଶ ନାରାୟଣ ଓ ଆଗ୍ୟର୍ଯ୍ୟ କୃପାଳନୀଙ୍କର ଏକ ମିଳିତ ବିବୃତି ପ୍ରକାଶପାଇଲା । ଏଥିରେ ଅଶୋକ ମେହେଟାଙ୍କ ବିବୃତି ଅନୁରୂପ ବିଷୟ ଉଲ୍ଲେଖ କରାଯାଇଥିଲା । ମୌଳିକ ସାମାଜିକ ପରିବର୍ତ୍ତନ ଓ ବ୍ୟକ୍ତିସ୍ୱାଧୀନତା କଥା କୁହାଗଲା; ମାତ୍ର ଗଣତାନ୍ତ୍ରିକ ସମାଜବାଦ ବିଷୟ ଉଲ୍ଲେଖ ସୁଦ୍ଧା ରହିଲା ନାହିଁ । ଏଥିରେ ମିଶ୍ରଣ କଥା ବି ଉଲ୍ଲେଖ ନଥିଲା । ସେମାନେ କହିଲେ, "ଏ ପାର୍ଲିମେଣ୍ଟରେ ଏହି ଦୁଇଦଳର ପ୍ରତିନିଧି-ମାନେ ଅନ୍ୟ ସମଭାବାପନ୍ନ ଦଳଗୁଡିକ ସହିତ ମିଶି ଗୋଟିଏ ସାଧାରଣ ବ୍ଲକ୍ କିମ୍ବା ଏକ ପାର୍ଲିମେଣ୍ଟାରୀ ପାର୍ଟି ଗଠନ କରିବେ ଏବଂ ଏକ ନେତା ଓ ଶୃଙ୍ଖଳା ଅଧୀନରେ କାର୍ଯ୍ୟ କରିବେ ।" ପାର୍ଟିର କାର୍ଯ୍ୟକାରୀ ସମିତି ବସିନଥିଲା ଏବଂ ଆଗ୍ୟର୍ଯ୍ୟ ନରେନ୍ଦ୍ରଦେବ ବି ନଥିଲେ । ତେଣୁ ମିଶ୍ରଣ କରିବା ନିମନ୍ତେ ମୌଖିକ ଆଲୋଚନା ହୋଇଥିଲା ମାତ୍ର; କିନ୍ତୁ ଜୟପ୍ରକାଶ ନାରାୟଣ ପାର୍ଲିମେଣ୍ଟାରୀ ବୋର୍ଡ଼ର ଚେୟାରମ୍ୟାନ୍ ଭାବରେ ଏହି ରାଜିନାମାରେ ସମ୍ମତ ହୋଇଗଲେ । ପାର୍ଟି ସେକ୍ରେଟାରୀ ଅଶୋକ ମେହେଟା ଓ ଆଗ୍ୟର୍ଯ୍ୟ କୃପାଳନୀ ତୁରନ୍ତ ଆଉ ଏକ ବିବୃତି ଦେଇ ପାର୍ଲିମେଣ୍ଟରେ 'ସୋସଲିଷ୍ଟ ପ୍ରଜା ପାର୍ଟି'ର ଘୋଷଣା କଲେ । ସେହି ଅନୁସାରେ ପାର୍ଲିମେଣ୍ଟରେ ଯେଉଁ ନୂତନ ସୋସଲିଷ୍ଟ ପ୍ରଜା ପାର୍ଟି ଗଠିତ ହେଲା, ତହିଁର ନେତା ହେଲେ ସୁଚେତା କୃପାଳନୀ ଏବଂ ଉପନେତା ହେଲେ ସୋସଲିଷ୍ଟ ପାର୍ଟିର ଦଳପତି ସାରଙ୍ଗଧର ଦାସ । ଆମ ସଂଖ୍ୟା କେ. ଏମ୍. ପି. ପି. ଅପେକ୍ଷା ବେଶି ଥିଲେ ସୁଦ୍ଧା ସେମାନଙ୍କୁ ସମ୍ମାନ ଦେଖାଇବାଲାଗି ଏପରି କରାଗଲା ।

## ବାରାଣସୀରେ ଶେଷ ବୈଠକ

ତରବରରେ ନେତାମାନେ ଏ ଯେଉଁ ମିଳନ ଓ ମିଶ୍ରଣ କାର୍ଯ୍ୟରେ ଆଗେଇଗଲେ ଏବଂ ପାର୍ଟିକୁ ଏକପ୍ରକାର ଏଥିରେ ପୂର୍ଣ୍ଣସମର୍ଥନ ରହିଛି ବୋଲି ଧାରଣା ଦେଲେ, ସେଥିରେ ପାର୍ଟି ଭିତରେ ବଡ଼ ଅସନ୍ତୋଷ ଜନ୍ମିଥିଲା । କଥାବାର୍ତ୍ତା କରିବା ଏବଂ ପାର୍ଲିମେଣ୍ଟରେ ଏକ ଦଳ ଗଠନ ଘୋଷଣା କରିବା ଆଗରୁ ବି ଜାତୀୟ କାର୍ଯ୍ୟକାରୀ ସମିତିର ଏକ ବୈଠକ ଡକାଗଲାନାହିଁ । ସାଧାରଣ ସଂପାଦକ ଅଶୋକ ମେହେଟା କହିଲେ, ରାଜନୀତିକ ଶକ୍ତିଗୁଡ଼ିକୁ ଏକୀକରଣ କରିବା ନିମନ୍ତେ ପଞ୍ଚମାଢ଼ୀ ସମ୍ମିଳନୀରେ ପ୍ରସ୍ତାବ ହୋଇଥିଲା—ସେହି ଅନୁସାରେ ଅଗ୍ରସର ହେଲେ ପୁଣି ଥରେ ବୈଠକ ଡକାଇବାର କୌଣସି ଆବଶ୍ୟକତା ନ ଥିଲା । କିନ୍ତୁ ମିଶ୍ରଣ କଥାବାର୍ତ୍ତା ଆଉ ଆଗେଇବ କି ନାହିଁ ଏବଂ ସେ ଦିଗରେ କ'ଣ କରାଯିବ, ସେଥି ନିମନ୍ତେ କାର୍ଯ୍ୟକାରୀ ସମିତିର ବୈଠକ ବସିଥିଲା ବାରାଣସୀରେ ୧୯୫୨ ମସିହା ଅଗଷ୍ଟ ୨୦ରୁ ୨୨ ପର୍ଯ୍ୟନ୍ତ । ଏ ବୈଠକରେ ଆଗ୍ୟର୍ଯ୍ୟ ନରେନ୍ଦ୍ର ଦେବ ସଭାପତି ହୋଇଥିଲେ । କୌଣସି କାରଣରୁ ଜୟପ୍ରକାଶ ନାରାୟଣ ଉପସ୍ଥିତ ନଥିଲେ । କମିଟିର ଆଉ ଏକ

ସିଙ୍କ ଏବଂ ପୋଷିତ ସମାଜବାଦୀ ବଙ୍ଗଳାର ଅଜିତ୍ ରାୟ ମଧ୍ୟ ଅନୁପସ୍ଥିତ ଥିଲେ । ଏହା ମଧ୍ୟ ସୋସଲିଷ୍ଟ ଆନ୍ଦୋଳନର ଏକ ଘାଟି ପାରହେବା ବେଳ; ତେଣୁ ଏଥିରେ ଆଉ ଯେଉଁମାନେ ଉପସ୍ଥିତ ଥିଲେ ତାଙ୍କ ନାମ ଉଲ୍ଲେଖ କରିବା ଠିକ୍ ହେବ । ମେମ୍ବରଙ୍କ ଭିତରୁ ଉପସ୍ଥିତ ଥିଲେ—ଡକ୍ଟର ରାମମନୋହର ଲୋହିଆ, ଅଶୋକ ମେହେଟା, ଏନ୍.ଜି. ଗୋରେ (ମହାରାଷ୍ଟ୍ର), ହରେଶ୍ୱର ଗୋସ୍ୱାମୀ (ଆସାମ), ଜଗଦୀଶ ଦୋଶୀ (ବିନ୍ଧ୍ୟପ୍ରଦେଶ), ମଗନଲାଲ ବାଗଡ଼ି (ମଧ୍ୟପ୍ରଦେଶ), ଶିବନାଥ ବାନର୍ଜି (ପଶ୍ଚିମବଙ୍ଗ), ସୁରେନ୍ଦ୍ର ନାଥ ଦ୍ୱିବେଦୀ (ଓଡ଼ିଶା), ସ୍ୱାମୀ ଭଗବାନ୍ (ଉତ୍ତର ପ୍ରଦେଶ), ପ୍ରତାପ ଶାହ ଓ ମଧୁଲିମାୟେ ବିଶେଷ ନିମନ୍ତ୍ରିତ ଭାବେ ଯୋଗଦେଇଥିଲେ ଏମ୍. ଏସ୍. ଗୋଖଲେ, କେ. କେ. ମେନନ୍, ପିଟର ଆଲଭାରେଶ, ସି. ଜି. କେ. ରେଡ୍ଡି, ସାରଙ୍ଗଧର ଦାସ, ଭି. ଏସ୍. ଦାଣ୍ଡେକର, ଟିକାରାମ ଶାସ୍ତ୍ରୀ, ରାଜନାରାୟଣ, ଫରିଦ୍ ଆନସାରି, କର୍ପୂରୀ ଠାକୁର, ନରେନ୍ ଦାସ ଏବଂ ପ୍ରଫେସର୍ ମୁକୁଟ ବିହାରୀ ଲାଲ ।

## ଲୋହିଆଙ୍କ ମୁଣ୍ଡରେ ଧଳା-କଳା ମିଶ୍ରଣ ହୋଇସାରିଛି

ଅଶୋକ ମେହେଟା, ଆଚାର୍ଯ୍ୟ ଜେ. ବି. କୃପାଲନୀ ଏବଂ ଟି. ପ୍ରକାଶଙ୍କ ସହ ଯାହା କଥାବାର୍ତ୍ତା ହୋଇଥିଲା, ତାର ବିବରଣୀ ପ୍ରଦାନ କଲେ । ଉପସ୍ଥିତ ସଭ୍ୟଙ୍କ ଭିତରୁ ଅଧିକାଂଶଙ୍କ ମନରେ ନାନା ଆଶଙ୍କା ଉପସ୍ଥିତ ହେଲା । କେତେକ ଏହାର ବିରୋଧ କଲେ । ମୁଁ ମଧ୍ୟ ମୋର ମନର ଆଶଙ୍କା ଦର୍ଶାଇ କହିଥିଲି ଯେ ପାର୍ଟି ଆଦର୍ଶବାଦ ଛାଡ଼ି ଅନ୍ୟ ପନ୍ଥା ଏଥିରେ ଧରିଲା । ବିରୋଧ କରିନଥିଲି—ମାତ୍ର ମନର ଭାବ ପ୍ରକାଶ କଲି । ଅନେକ ସଭ୍ୟ ଖୁସି ବା ଉତ୍ସାହିତ ନଥିଲେ । ଆଚାର୍ଯ୍ୟ ନରେନ୍ଦ୍ର ଦେବ ଯେପରି ଢଙ୍ଗରେ ଏହି କାର୍ଯ୍ୟ ତାଙ୍କ ଅନୁପସ୍ଥିତିରେ କରିନଆଗଲା ସେଥିରେ ଅସନ୍ତୋଷ ପ୍ରକାଶ କଲେ—ମାତ୍ର ପାର୍ଟି ଯେତେବେଳେ ଗୋଟିଏ କାମରେ ଆଗେଇଗଲେଣି, ପାର୍ଟିର ଚେୟାରମ୍ୟାନ୍ ଭାବରେ ତାହା କିଭଳି ଠିକ୍ ଭାବରେ କରାଯିବ ଦେଖିବା ତାଙ୍କର କର୍ତ୍ତବ୍ୟ ବୋଲି ପ୍ରକାଶକଲେ । ଏପରି ଆଲୋଚନା ବେଳେ ଉତ୍ତରପ୍ରଦେଶର ସ୍ୱାମୀ ଭଗବାନ୍ ଉତ୍ତ୍ୟକ୍ତ ହୋଇ କହିଲେ—ଏପରି ମିଶ୍ରଣରେ କିଛି ଫାଇଦା ହେବ ନାହିଁ । କେବଳ କେତେକ କଳାବାଳ ସହ ଧଳା-ବାଳ ଆସି ଯୋଗଦେବେ ସିନା ! ଏତିକିବେଳେ ଆଚାର୍ଯ୍ୟ ନରେନ୍ଦ୍ର ଦେବ ରହସ୍ୟ ଛଳରେ କହିଲେ—“ଡକ୍ଟର ଲୋହିଆଙ୍କ ମୁଣ୍ଡରେ ତ ଧଳା କଳା ଉଭୟ ରହିଗଲେଣି ।” ଡକ୍ଟର ଲୋହିଆଙ୍କର ତାଙ୍କ ଦେହକୁ ଚାହିଁ ଖାଲି ମୁଣ୍ଡ ବଡ଼ ନ ଥିଲା, ମୁଣ୍ଡରେ ଘଞ୍ଚ ବାଳ ବି ଥିଲା । ସେତେବେଳକୁ ମୁଣ୍ଡବାଳରୁ ଗୋଟାଏ ଗୋଟାଏ ଧଳା ହେବାକୁ ଆରମ୍ଭ କରିଥିଲା ଏବଂ ତାହା ପ୍ରକାଶ୍ୟରେ ଦେଖାଯାଉଥିଲା । ଆଚାର୍ଯ୍ୟ ନରେନ୍ଦ୍ର ଦେବ ରହସ୍ୟ ଛଳରେ ବଡ଼ ମର୍ମକଥା କହିପାରୁଥିଲେ । ବାସ୍ତବିକ ଡକ୍ଟର ଲୋହିଆ ଏସବୁ ମିଶ୍ରଣର ଅସଲ କର୍ତ୍ତା ବୋଲି ତାଙ୍କୁ ଦେଖାଇ ଏପରି ଉପହାସ କରିଥିଲେ ।

ଡକ୍ଟର ଲୋହିଆ ଆମ ଭିତରେ ଅଧିକ ସଂଗ୍ରାମଶୀଳ ଓ ବିଚକ୍ଷଣ ବୁଦ୍ଧି ସମ୍ପନ୍ନ ବୋଲି ଧରାନିଆଯାଉଥିଲା । ସୋସଲିଜମ୍‌କୁ ନୂତନ ରୂପ ଓ ନୂତନ ସଂଗ୍ରାମ ଅଭିମୁଖୀ କରାଯାଇଥିଲା ପଞ୍ଚମାଢ଼ୀରେ । ଏହି ମିଳନ ବା ମିଶ୍ରଣ ପାର୍ଟିର ସେ ଚରିତ୍ରକୁ ନିଶ୍ଚିତ ଭାବରେ ଦାରୁଣ ଧକ୍‌କା ପହଞ୍ଚାଇଲା । ସଂଗ୍ରାମର ବିଭିନ୍ନ କୌଶଳ ଗ୍ରହଣ କରାଯାଇପାରେ; ମାତ୍ର ସୋସଲିଜମ୍‌ର ମୁଖ୍ୟ ଲକ୍ଷ୍ୟ ଓ ଆଦର୍ଶରେ ଯଦି ମିଳାମିଶା ହୋଇଗଲା ତେବେ ପାର୍ଟିର ଅଭିବୃଦ୍ଧି ଓ ବିକାଶର ପ୍ରାଣଶକ୍ତି ଅନ୍ତର ହୋଇଗଲା । ଯେଉଁ ମୂଳପିଣ୍ଡକୁ ଲୋହିଆ ମଜବୁତ କରିବା ନିମନ୍ତେ ସମସ୍ତଙ୍କୁ ଆହ୍ୱାନ ଦେଇଥିଲେ, ଏପରି ଏକ ମିଶ୍ରଣ ଦ୍ୱାରା ତହିଁରେ କୁଠାରାଘାତ କରାଗଲା । ଆଚାର୍ଯ୍ୟ ନରେନ୍ଦ୍ର ଦେବ ଏ କ୍ଷେତ୍ରରେ ଠିକ୍ ଦେଶ ବିଭାଜନରେ ଗାନ୍ଧିଜୀ କଂଗ୍ରେସ ନେତାମାନଙ୍କ ସହିତ ଯେମିତ ଦୁର୍ଦ୍ଦଶାରେ ପଡ଼ିଥିଲେ, ସେମିତିକା ଅବସ୍ଥାରେ ପଡ଼ିଲେ—ଫରକ୍ ଏତିକି ଯେ ଗାନ୍ଧିଜୀ ଦେଶର ବିଭାଜନକୁ ସ୍ୱୀକାର କରିପାରିଲେ ନାହିଁ, ସ୍ୱାଧୀନତା ଉତ୍ସବରେ ଯୋଗଦେଲେ ନାହିଁ; କିନ୍ତୁ ଆଚାର୍ଯ୍ୟ ନରେନ୍ଦ୍ର ଦେବ ଅତ୍ୟନ୍ତ ଧୈର୍ଯ୍ୟ ଓ ବୁଦ୍ଧିମତ୍ତା ସହକାରେ ଏହି ମିଶ୍ରଣ କାର୍ଯ୍ୟ ଓ ପର୍ଯ୍ୟାୟରେ ସକ୍ରିୟ ଅଂଶ ଗ୍ରହଣ କଲେ ଏବଂ ତାଙ୍କ ଉଦ୍ୟମ ଯୋଗୁଁ ଯାହାହେଲେ ସୋସଲିଜମ୍ କିଛି ପରିମାଣରେ ଏହି ଦୁଇ ପାର୍ଟିର ମତ ପୋଷଣାରେ ରଖାଯାଇପାରିଥିଲା ।

## ପ୍ରଜାଦଳ ନେତାଙ୍କ ଚରିତ୍ର ଓ ଢଙ୍ଗ

ଉପରେ ଯେଉଁ ନେତାମାନଙ୍କ ନାମ ଉଲ୍ଲେଖ କରାଯାଇଛି, ସେମାନଙ୍କ ଭିତରୁ କେତେକ କେବେ ସୋସଲିଜମ୍ ବିଷୟରେ ମୁଣ୍ଡ ଘୂରାଇନଥିଲେ । ଗାନ୍ଧିଜୀଙ୍କ ନେତୃତ୍ୱକୁ ଅନ୍ୟ କଂଗ୍ରେସ ନେତାଙ୍କ ଅପେକ୍ଷା ଅଧିକ ସ୍ୱୀକାର କରିଥିଲେ ଏବଂ ସେହି ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ଆଚାର୍ଯ୍ୟ କୃପାଳନୀଙ୍କ ବ୍ୟତୀତ ଆଉ କେହି ମାର୍କସ୍ ବା ବୈଜ୍ଞାନିକ ସମାଜବାଦ ସମ୍ବନ୍ଧରେ କେବେ କୌଣସି ଚିନ୍ତା କରିଥିଲେ କି ନା ସନ୍ଦେହ । ତାହାଛଡ଼ା ସ୍ୱାଧୀନତା ସଂଗ୍ରାମରେ ତ୍ୟାଗ ଯୋଗୁଁ ଗାନ୍ଧିଜୀଙ୍କ ଅନୁଚର ହିସାବରେ ଅଧିକାଂଶ ଖ୍ୟାତ ଥିଲେ; ସାମାଜିକ ଦୃଷ୍ଟିକୋଣ ସେହିପରି ରକ୍ଷଣଶୀଳ ଥିଲା । ଆଚାର୍ଯ୍ୟ କୃପାଳନୀ ତ ଉପହାସ ଛଳରେ ବେଳେବେଳେ କହିପକାଉଥିଲେ, "ମୁଁ ନେତା, ତୁମକୁ ନେତୃତ୍ୱ ଦେବି ସିନା, ନେତୃତ୍ୱ ଗ୍ରହଣ କରିବ କିଏ ? ଏ ପାଠ ତ ଆମେ ନୂଆ ଶିଖିଲୁ ।" ପ୍ରଜା ସୋସଲିଷ୍ଟ ପାର୍ଟି ଗଠନ ପରେ ଏଲାହାବାଦରେ ପ୍ରଥମ ପ୍ରକାଶ୍ୟ ଅଧିବେଶନରେ ସୋସଲିଷ୍ଟ ଡେଲି-ଗେଟ୍‌ମାନଙ୍କର ଅତି ଦୀର୍ଘ ତର୍କ-ବିତର୍କ ଦେଖି କହିଲେ, "You will inspire and I will perspire" ଅର୍ଥାତ୍ ତୁମର ଅତ୍ୟଧିକ ଉତ୍ସାହ ମୋର ଝାଳ ବୁହାଇପକାଇଲାଣି ।

## ବମ୍ବେରେ ମିଶ୍ରଣ ସମ୍ମିଳନୀ

ଏହି ବାରାଣସୀ ବୈଠକରେ ମିଶ୍ରଣ କଥାବାର୍ତ୍ତା ଆଗେଇନେବା ନିମନ୍ତେ କମିଟି ନିଆଗଲା ଏବଂ ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଜୟପ୍ରକାଶ ନାରାୟଣ, ରାମମନୋହର ଲୋହିଆ

ଏବଂ ଅଶୋକ ମେହେଟାଙ୍କୁ ନେଇ ଏକ କମିଟି ନିଯୁକ୍ତ କରାଗଲା କେ. ଏମ୍. ପି.ପି. ସହ କଥାବାର୍ତ୍ତା ହେବା ନିମନ୍ତେ । ଏହି କଥାବାର୍ତ୍ତା ପରେ ବମ୍ବେଠାରେ ସେପ୍ଟେମ୍ବର ୨୬, ୨୭ ଓ ୨୮ ତାରିଖରେ ମିଶ୍ରଣ ସମ୍ମିଳନୀ ହେଲା । ଏଥିରେ କେ. ଏମ୍. ପି., ପି. ପକ୍ଷରୁ ୪୦ ଜଣ ଏବଂ ସୋସଲିଷ୍ଟ ପାର୍ଟି ତରଫରୁ ୩୨ ଜଣ ପ୍ରତିନିଧି ଉପସ୍ଥିତ ଥିଲେ । ଆମେ ସବୁ ମିଳିମିଶି ଭିନ୍ନ ଭିନ୍ନ ସ୍ଥାନରେ ରହିଥିଲୁ । ମୋର ମନେଅଛି, ଆମେ କେତେଜଣ ଚୌପାଠୀ ପାଖରେ ଜି. ଜି. ମେହେଟାଙ୍କର ଏକ ଫ୍ଲାଟରେ ରହିଥିଲୁ । ଆମ ସାଙ୍ଗରେ ଥିଲେ ଜେନେରାଲ ମଞ୍ଚେରଶା ଆର୍. ଆୱାରି । ନାଗପୁରରେ ହୋଇଥିବା ଜାତୀୟପତାକା ସତ୍ୟାଗ୍ରହରେ ତାଙ୍କର ବୀରତ୍ୱ କାହାଣୀ ନିମନ୍ତେ ସେ ଦେଶସାରା ଖ୍ୟାତି ଲଭିଥିଲେ ଏବଂ ତାଙ୍କୁ ସମସ୍ତେ ଜେନେରାଲ ଆୱାରି ବୋଲି ଡାକୁଥିଲେ । ସେ ମୋତେ ପଚାରିଲେ— ଅଶୋକ ମେହେଟାଙ୍କର ନିଶ୍ଚୟ ବହୁ ଟେକ୍‌ସଟାଇଲ ମିଲ୍ ଥିବ —ନଚେତ୍ ଟେକ୍‌ସଟାଇଲ ଶ୍ରମିକ ନେତା ସେ କେମିତି ହେବେ ? ତାଙ୍କ ପରି ଜଣେ ଅତି ନିଷ୍ଠାବାନ୍, ପ୍ରଖର ଜାତୀୟବାଦୀ ଓ ପ୍ରବୀଣ ଲୋକଙ୍କର ଏହି ସାମାନ୍ୟ କଥାରୁ ବୁଝାପଡ଼େ ଅଧିକାଂଶ କେ.ଏମ୍.ପି.ପି. ଲୋକଙ୍କର ଶ୍ରମିକ ଆନ୍ଦୋଳନ ବା ସୋସଲିଷ୍ଟ ଆନ୍ଦୋଳନ ବିଷୟରେ କିପରି ଧାରଣା । ରାଜନୈତିକ ଜୀବନକୁ ଏକୀକରଣ କରିବା ନାମରେ ଏହିମାନଙ୍କ ଦ୍ୱାରା ମିଳିତ ହୋଇ ଆମେ ଏକ ସମାଜବାଦୀ ପାର୍ଟି ଗଠନ କଲୁ ଏବଂ ଦୁଇ ପାର୍ଟି ମିଶ୍ରଣରେ ଏହାର ନାମ ରଖାଗଲା--- ପ୍ରଜା ସୋସଲିଷ୍ଟ ପାର୍ଟି ।

## ପ୍ରଜା-ସୋସଲିଷ୍ଟ ପାର୍ଟି

ଏଥିରେ ସଭାପତି ହେଲେ ଆଚାର୍ଯ୍ୟ ଜେ. ବି. କ୍ରିପାଲିନୀ ଏବଂ ସାଧାରଣ ସମ୍ପାଦକ ରହିଲେ ଅଶୋକ ମେହେଟା । ଯେଉଁ ନୂତନ କାର୍ଯ୍ୟକାରୀ ସମିତି ଗଠିତ ହେଲା ସେଥିରେ ରହିଲେ—ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଟି. ପ୍ରକାଶମ୍, ଜୟପ୍ରକାଶ ନାରାୟଣ, ଡକ୍‌ଟର ପ୍ରଫୁଲ୍ଲ ଚନ୍ଦ୍ର ଘୋଷ, ଡକ୍‌ଟର ରାମମନୋହର ଲୋହିଆ, କେ. କେଲପନ୍, ସୁଚେତା କ୍ରିପାଲିନୀ, ଡକ୍‌ଟର ସୁରେଶ ଚନ୍ଦ୍ର ବାନାର୍ଜି, ଡକ୍‌ଟର କେ. ବି. ମେନନ, ସାଦିକ ଅଲୀ, ହରେଶ୍ୱର ଗୋସ୍ୱାମୀ, ମହାମାୟା ପ୍ରସାଦ ସିଂହ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ହଳଧର ଭୂୟାଁ, ମହାଦେବ ସିଂହ, ତ୍ରିଲୋକୀ ସିଂହ, ମଗନଲାଲ ବାଗଡ଼ୀ, ଏନ୍. ଜି. ଗୋରେ, ଠାକୁର ପ୍ୟାରିଲାଲ ସିଂହ ଏବଂ ପୁରୁଷୋତ୍ତମ ତ୍ରିକମ୍ ଦାସ ।

ପାର୍ଟିର ଲକ୍ଷ୍ୟ ଉଦ୍ଦେଶ୍ୟରେ ଲିପିବଦ୍ଧ ହେଲା—ଶାନ୍ତିପୂର୍ଣ୍ଣ ଉପାୟରେ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଶୋଷଣମୁକ୍ତ ଏକ ଗଣତାନ୍ତ୍ରିକ ସମାଜବାଦୀ ସମାଜ ସ୍ଥାପନା । ( To achieve through peaceful means a democratic socialist society free from social, political and economic exploitation. )

ପୁରୁଣା ସୋସଲିଷ୍ଟ ପାର୍ଟିର ବିଲୋପ ଘଟିଲା—ନୂତନ ପ୍ରଜା ସୋସଲିଷ୍ଟ ପାର୍ଟି ଜନ୍ମଲାଭ କଲା । କିନ୍ତୁ ଏଥିରେ ଆଉ ସମାଜବାଦର ସେ ମାଦକତା ରହିଲା ନାହିଁ—ଏହା ଏକ ମିଶ୍ରିତ ସୋସଲିଷ୍ଟ ପାର୍ଟି ହେଲା ।

## ସୋସଲିଷ୍ଟ ଆନ୍ଦୋଳନର ଗୁଣାତ୍ମକ ପରିବର୍ତ୍ତନ

ଏପରି ଏକ ପଦକ୍ଷେପ ଫଳରେ ଦେଶରେ ପାର୍ଟି ସଂଖ୍ୟା ବୃଦ୍ଧି ଧାରା କିଛି ପରିମାଣରେ କମିଲା ଏବଂ ସାଧାରଣ ନିର୍ବାଚନରେ ୨ୟ ଓ ୩ୟ ସ୍ଥାନ ଅଧିକାର କରିଥିବା ପାର୍ଟି ଦୁଇଟିର ମିଶ୍ରଣ ଫଳରେ ବିରୋଧରେ ଏହା ଏକ ବୃହତ୍ତର ପାର୍ଟି ହେଲା, ସନ୍ଦେହ ନାହିଁ । ମାତ୍ର ସୋସଲିଷ୍ଟ ସଙ୍ଗଠନ ଏପର୍ଯ୍ୟନ୍ତ ଯେଉଁ ଧାରାରେ ଚାଲିଆସିଥିଲା, ତାହାର ପରିବର୍ତ୍ତନ ଘଟିଲା । ସୋସଲିଷ୍ଟ ପାର୍ଟି ଗଠନର ଏକ ମୂଳକଥା ଥିଲା ଦେଶରେ ସୋସଲିଷ୍ଟ ସୃଷ୍ଟି କରିବା । ଆମେ ପଞ୍ଚମାଢ଼ୀରେ ଗଣତାନ୍ତ୍ରିକ ସମାଜବାଦର ଯେଉଁ ବ୍ୟାଖ୍ୟା କରିଥିଲୁ, ସେମାନେ ସେ ବିଷୟରେ ସଂପୂର୍ଣ୍ଣ ଭାବରେ ଜ୍ଞାତ ହେବେ ଏବଂ ଦେଶସାରା ସେହି ଧାରାରେ ସଂଗଠନ ଓ ଆନ୍ଦୋଳନ କରିବେ—ନିର୍ବାଚନ ମଧ୍ୟ ତାଙ୍କ କାର୍ଯ୍ୟର ଏକ ଅଙ୍ଗ ହେବ । ମାତ୍ର ଜୋର୍ ଦିଆଯିବ ଶକ୍ତିବୃଦ୍ଧି, ସଂଗଠନର ପ୍ରସାର ଓ ଶିକ୍ଷିତ କର୍ମୀ ସୃଷ୍ଟି ଉପରେ । କିନ୍ତୁ ପ୍ରଜା ସୋସଲିଷ୍ଟ ପାର୍ଟିରେ ଯେଉଁ ବନ୍ଧୁମାନେ ମିଶିଲେ ସେମାନେ ଏଭଳି ଧାରାରେ କେବେ କାର୍ଯ୍ୟ କରିନଥିଲେ କିମ୍ବା ଏପରି ସଂଗଠନ ପ୍ରତି ତାଙ୍କର କୌଣସି ଆଗ୍ରହ ନଥିଲା । ରାଜନୈତିକ ଆନ୍ଦୋଳନ ବା କାର୍ଯ୍ୟର ଅଙ୍ଗରୂପେ ସାଂଗଠନିକ ପ୍ରସାରରେ ସେମାନେ ବିଶ୍ୱାସ କରୁନଥିଲେ । ତେଣୁ ଆଦର୍ଶବାଦ ପ୍ରଚାର ଓ କର୍ମୀ ସଂଗ୍ରହ ଆଦିର ବିଚାର ଏହି ନୂତନ ପାର୍ଟିରେ ଗୌଣ ହୋଇଗଲା । ଭିନ୍ନ ଢଙ୍ଗରେ ଓ ଭିନ୍ନ ଚିନ୍ତାଧାରାରେ ଚଳିଥିବା ବ୍ୟକ୍ତିଙ୍କ ପକ୍ଷରେ ନୂଆ ଗଣତାନ୍ତ୍ରିକ ଧାରାକୁ ଗ୍ରହଣ କରିବା କଷ୍ଟକର ହେଲା । ବୃଦ୍ଧ, ପ୍ରବୀଣ ଓ ଯୁବକମାନଙ୍କ ଭିତରେ ସୌହାର୍ଦ୍ଦ୍ୟ ରହିପାରିଲା ନାହିଁ ଯେମିତି ସୋସଲିଷ୍ଟ ପାର୍ଟି ସଂଗଠନରେ ଥିଲା । ଏହାର ଚରିତ୍ର ଓ ଆଚରଣ କ୍ରମେ ଅନ୍ୟସବୁ ରାଜନୈତିକ ଦଳପରି ହୋଇଗଲା । ଡକ୍‌ଟର ଲୋହିଆଙ୍କ ପରି ସୋସଲିଷ୍ଟ ନେତାମାନେ ଆଗୁଆ ହୋଇ ଏ ସଂଗଠନକୁ ଏପରି ରୂପ ଦେବାଦ୍ୱାରା ପାର୍ଟିର ଆଭିମୁଖ୍ୟ ବଦଳିଗଲା ।

## ସୋସଲିଷ୍ଟ ଆନ୍ଦୋଳନର ଦୁର୍ବଳତା

ଦେଶ ଲୋକଙ୍କ ମନରେ ଅନେକ ସମୟରେ ପ୍ରଶ୍ନ ଉଠେ—ଏତେ ସୁନ୍ଦର କୁଶଳୀ ନେତୃତ୍ୱ ଏବଂ ଆମ ଦେଶକୁ ଅନୁରୂପ ଏକ ମୌଳିକ ଚିନ୍ତାଧାରା ପ୍ରସୂତ ସୋସଲିଷ୍ଟ ଆନ୍ଦୋଳନ ଏ ଦେଶରେ କାହିଁକି ଅଗ୍ରସର ହୋଇପାରିଲା ନାହିଁ ? ଜୟପ୍ରକାଶ ନାରାୟଣ ଓ ଅନ୍ୟ ସାଥୀମାନଙ୍କୁ ଏ ଦେଶର ଲୋକେ ବିକଳ୍ପ ନେତୃତ୍ୱ ଓ ରାଜନୈତିକ ଉତ୍ତରାଧିକାରୀ ଚକ୍ଷୁରେ ଦେଖିବାକୁ ଆରମ୍ଭ କରିଥିଲେ । ଉପରଠାଉରିଆ ଭାବରେ ସାଧାରଣତଃ କୁହାଯାଏ ଯେ ପୃଥିବୀର ଅନ୍ୟ ସୋସଲିଷ୍ଟମାନଙ୍କ ପରି ଏଠାରେ ମଧ୍ୟ ବିବାଦ ଓ ବିଭାଜନ ଏହାକୁ

ମୂଳରୁ ଗ୍ରାସ କରିବାରୁ ଏହାର ଅଗ୍ରଗତିରେ ବାଧା ପଡ଼ୁଥିଲା । ଏକଥା କେତେକ ପରିମାଣରେ ସତ୍ୟ । ମାତ୍ର ଆମେ ଏଠି ମୂଳରୁ ଯେଉଁ ଚିନ୍ତାଧାରା ଓ ବୈପ୍ଳବିକ କାର୍ଯ୍ୟ ନିମନ୍ତେ ଲୋକଙ୍କ ସମର୍ଥନ ଲଭିକରୁଥିଲୁ ଏବଂ ଏହାର ଉଜ୍ଜ୍ୱଳ ଭବିଷ୍ୟତ ରହିଛି ବୋଲି କୁହାଯାଉଥିଲା, ସେହି କାର୍ଯ୍ୟଗୁଡ଼ିକ ଉପରେ ଆରମ୍ଭକାଳରୁ ହିଁ ଆଉ ଗୁରୁତ୍ୱ ରହିଲା ନାହିଁ । ମୋର ନିଜର ବିଶ୍ୱାସ ପଶ୍ଚିମାଞ୍ଚଳରୁ ଯେଉଁ ଅପ୍ରତ୍ୟକ୍ଷ ଓ ସ୍ପଷ୍ଟ ମନୋଭାବ ନେଇ ସୋସିଆଲିଷ୍ଟମାନେ ଫେରିଥିଲେ ତାକୁ ଯଦି କାର୍ଯ୍ୟରେ ଲଗାଇବା ନିମନ୍ତେ ନିଷ୍ଠାପର ଉଦ୍ୟମ କରାଯାଇଥାଆନ୍ତା, ତେବେ ଏ ଦେଶରେ ଏହି ସୋସିଆଲିଷ୍ଟ ଆନ୍ଦୋଳନ ଏକ ବିକଳ୍ପ ଜାତୀୟ ଶକ୍ତିରୂପେ ଅଚିରେ ଛିଡ଼ାହୋଇପାରିଥାଆନ୍ତା । ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ଉକ୍ତି ଯଥାର୍ଥ ପ୍ରତିପାଦିତ ହେଲା । ମୁଣ୍ଡରେ କଳା ଧଳା ବାଳ ମିଶ୍ରିତ ହୋଇଗଲା । ଦୁହେଁ ସ୍ୱତନ୍ତ୍ର ସ୍ଥିତି ପରି ଗୁଚ୍ଛ ଗୁଚ୍ଛ ହୋଇ ମୁଣ୍ଡ ଉପରକୁ ଶୋଭା ପାଇଲେ—ଦୁହିଁଙ୍କର ପୂର୍ଣ୍ଣ ମିଶ୍ରଣ ହୋଇ ଏକ ରଙ୍ଗ ହେଲାବେଳକୁ ସବୁ ଧଳାପାଲଟିଗଲା ।

□□□

# ୧୦ । ୧୯୫୩-୧୯୫୫

## ଓଡ଼ିଶାରେ ପ୍ରଜା ସୋସଲିଷ୍ଟ ପାର୍ଟି ଗଠନ

ପ୍ରଜା ସୋସଲିଷ୍ଟ ପାର୍ଟି ଗଠିତ ହେବା ପରେ ଯେଉଁ ନୂତନ କାର୍ଯ୍ୟକାରୀ ସମିତି ଗଠିତ ହେଲା, ତାହାର ପ୍ରଥମ ବୈଠକରେ ବିଭିନ୍ନ ପ୍ରାଦେଶିକ କମିଟି ଗଠିତ ହେଲା । ଆଗରୁ ସୋସଲିଷ୍ଟ ପାର୍ଟିରେ କୌଣସି ପ୍ରାଦେଶିକ ଚେୟାରମ୍ୟାନ୍ ନ ଥିଲେ; ପାଟନାଠାରେ ଯେଉଁ ନୂତନ ବିଧାନ ହେଲା, ସେଥିରେ ଜଣେ ଜାତୀୟ ଚେୟାରମ୍ୟାନ୍ ରହିବାର ବ୍ୟବସ୍ଥା ଥିଲା । କିନ୍ତୁ ନୂତନ ବିଧାନ ଅନୁସାରେ ପ୍ରଦେଶ, ଏପରିକି ଜିଲା ସ୍ତରରେ, ଜଣେ ଲେଖାଏଁ ସଭାପତି ରହିବାର ବ୍ୟବସ୍ଥା ଖଞ୍ଜାହେଲା ।

ଓଡ଼ିଶାଲାଗି ଦଳର ପୁନର୍ଗଠନ କରିବାର ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରାଗଲା । ବଙ୍ଗଳାର ଡ଼କ୍‌ଟର ପ୍ରଫୁଲ୍ଲ ଘୋଷଙ୍କ ସହିତ ପରାମର୍ଶ କରି ମୁଁ ପୁନର୍ଗଠନ କଲି । ଏଠାରେ କିସାନ ମଜଦୁର ପ୍ରଜା ପାର୍ଟି ନାମକୁ ମାତ୍ର ଥିଲା । କିଛି ବୟସ୍କ ବ୍ୟକ୍ତି ଶେଷବେଳକୁ ସେଥିରେ ସାମିଲ ହୋଇଥିଲେ—ଯେପରି କଟକର ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ । ତାହାଛଡ଼ା ଆଉ ଯେଉଁମାନେ ଥିଲେ ତାଙ୍କ ଭିତରେ ଉଲ୍ଲେଖଯୋଗ୍ୟ ଥିଲେ ପୁରୀର ଡାକ୍ତର ଜଗନ୍ନାଥ ଚୌଧୁରୀ ଏବଂ କଟକ ଜିଲା ଛତିଆର ଡାକ୍ତର ଜଗନ୍ନାଥ ଦାସ । ଏମାନେ ପ୍ରଥମ ସାଧାରଣ ନିର୍ବାଚନରେ ପ୍ରାର୍ଥୀ ମଧ୍ୟ ହୋଇଥିଲେ । ତେଣୁ ନୂତନ କମିଟିରେ ତାଙ୍କୁ ହିଁ ସ୍ଥାନ ଦିଆଗଲା । ଏଥିରେ ସେମାନେ ଆପତ୍ତି ଦର୍ଶାଇ ଡକ୍‌ଟର ପ୍ରଫୁଲ୍ଲ ଘୋଷଙ୍କୁ ଲେଖିଲେ ଏବଂ ଦର୍ଶାଇଲେ ଯେ ଡାକ୍ତର ଦାସ ତାଙ୍କ ଦଳଭୁକ୍ତ ହୋଇଥିଲେ ସୁଦ୍ଧା ବିଧିବଦ୍ଧ ସଦସ୍ୟ ନୁହନ୍ତି । ମୁଁ ଡକ୍‌ଟର ପ୍ରଫୁଲ୍ଲ ଘୋଷଙ୍କୁ ବୁଝାଇ ଦେବାରେ ସେ ସମ୍ମତି ଜଣାଇ ଚିଠି ଲେଖିଲେ ଏବଂ ସେହି ଅନୁସାରେ ଓଡ଼ିଶା ପ୍ରଜା ସୋସଲିଷ୍ଟ ପାର୍ଟି ଗଠିତ ହେଲା । ମୁଁ ନୂତନ କମିଟିର ଚେୟାରମ୍ୟାନ୍ ହେଲି ।

## ରେଙ୍ଗୁନରେ ପ୍ରଥମ ଏସୀୟ ସୋସଲିଷ୍ଟ ସମ୍ମିଳନୀ

୧୯୫୩ର ପ୍ରଥମ ଭାଗରେ ମୁଁ ଜଳଜାହାଜ ଯୋଗେ ବ୍ରହ୍ମଦେଶର ରେଙ୍ଗୁନ୍ ଯାତ୍ରା କଲି । ଏହା ମୋ ଜୀବନର ପ୍ରଥମ ବିଦେଶ ଯାତ୍ରା । ଏଠାରେ ୧୯୫୩ ଜାନୁୟାରୀରେ ଏସିଆନ୍ ସୋସଲିଷ୍ଟ ସମ୍ମିଳନୀ ବସିଥିଲା । ଚୀନ୍ ଛଡ଼ା ପ୍ରାୟ ସମଗ୍ର ଏସିଆର ପ୍ରତିନିଧି ଏବଂ ଇଉରୋପ ଓ ମଧ୍ୟପ୍ରାଚ୍ୟର କିଛି ପ୍ରତିନିଧି ଦର୍ଶକ ଭାବରେ ଆସିଥିଲେ । ସୋସଲିଷ୍ଟ ଇଣ୍ଟର-ନେସନାଲ୍‌ର ପ୍ରତିନିଧି ଯୋଗ ଦେଇଥିଲେ । ଆମେ ଭାରତର ସୋସଲିଷ୍ଟ ପାର୍ଟି ଇଉରୋପର ସୋସଲିଷ୍ଟ ଆନ୍ତର୍ଜାତିକରେ ଯୋଗଦେଇନଥିଲୁ । ତାଙ୍କ ସମ୍ମିଳନୀକୁ ଦର୍ଶକ

ଭାବରେ ଯାଉଥିଲୁ ଏବଂ ସମ୍ପର୍କ ରକ୍ଷା କରୁଥିଲୁ । ମାତ୍ର ଏସିଆ ମହାଦେଶରେ ସୋସାଲିଷ୍ଟ-ମାନଙ୍କର ଭିନ୍ନ ପରମ୍ପରା ଥିବାରୁ ଏହାର ଏକ ସ୍ୱତନ୍ତ୍ର ମିଳନପୀଠରୂପେ ଏହି ସମ୍ମିଳନୀର ପରିକଳ୍ପନା ହେଲା । ଡକ୍ଟର ଲୋହିଆ ଏପରି ଏକ ସଂଗଠନ ଠିଆ କରିବାରେ ଆଗୁଆ ହୋଇଥିଲେ ଏବଂ ଭାରତୀୟ ପାର୍ଟି ଅନ୍ୟମାନଙ୍କ ସହ ଆବାହକ ଥିଲା । ପ୍ରେମ ଭସିନ ଜଣେ ସାଧାରଣ ସମ୍ପାଦକ ଥିଲେ । ବର୍ମାର ସୋସାଲିଷ୍ଟମାନେ ସରକାରରେ ଥିବାରୁ ସେମାନେ ଆୟୋଜନର ଦାୟିତ୍ୱ ନେଇଥିଲେ ଓ ଉବାସ୍ୱେ ଥିଲେ ଚେୟାରମ୍ୟାନ୍ । ଜୟପ୍ରକାଶ ନାରାୟଣ ଏଥିରେ ମୁଖ୍ୟ ଭାଷଣ ଦେଇଥିଲେ ସମ୍ମିଳନୀ ଆରମ୍ଭ ଦିନ ଏବଂ ସେହି ବିଷୟବସ୍ତୁ ସମ୍ମିଳନୀର ପ୍ରଧାନ ବିଚାର୍ଯ୍ୟ ଥିଲା । ମୁଁ ମଧ୍ୟ କୃଷକ ବିଭାଗରେ ସଭାପତିତ୍ୱ କରିଥିଲି । ଏହିଠାରେ ମୋର ଯୁଗୋସ୍ଲାଭିଆର ମିଲୋଭାନ ଜିଲାସ୍, ବେଭାନ୍, ସୋସାଲିଷ୍ଟ ଇଣ୍ଟର-ନେସନାଲ୍‌ର ଅଲବର୍ଟ କାର୍ଥି, ନେପାଳର ବି. ପି. କୋଇରାଲା ପ୍ରଭୃତିଙ୍କ ସହ ପରିଚୟ ଘଟିଥିଲା । ଏଥିରେ ଭାରତୀୟ ପାର୍ଟିରୁ ଦର୍ଶକ ଓ ପ୍ରତିନିଧି ପ୍ରାୟ ୧୫୦ ଜଣ ଯୋଗଦେଇ-ଥିଲେ ଏବଂ ଆମ ଓଡ଼ିଶାରୁ ପ୍ରାୟ ୨୫ ଜଣ ସାଥୀ ଯୋଗଦେଇପାରିଥିଲେ ।

## ଆଦର୍ଶବାଦୀ ନହୋଇ ବାସ୍ତବବାଦୀ

ପ୍ରଜା ସୋସାଲିଷ୍ଟ ପାର୍ଟିର ଏକ ଆନ୍ତର୍ଜାତିକ ଅଭିମୁଖ୍ୟ ରେଙ୍ଗୁନ ସମ୍ମିଳନୀ ପରେ ପ୍ରକାଶ ପାଇଲା । ଗୋଟାଏ ଦୃଷ୍ଟିରୁ ଏହାର ଆବଶ୍ୟକତା ଥିଲା । ଆମେ ସୋସାଲିଷ୍ଟ ଇଣ୍ଟରନେସନାଲ୍‌ରେ ଯୋଗ ଦେଇ ନ ଥିଲେ ସୁଦ୍ଧା ଆମର ବିରୋଧୀ କଂଗ୍ରେସ ଏବଂ କମ୍ୟୁନିଷ୍ଟଙ୍କର ଏକ ପ୍ରଧାନ ପ୍ରଚାର ଥିଲା ଯେ ସୋସାଲିଷ୍ଟ ଇଣ୍ଟରନେସନାଲ୍ ଜରିଆରେ ଭାରତୀୟ ସୋସାଲିଷ୍ଟମାନେ ଆମେରିକା ଓ ଅନ୍ୟ ଦେଶମାନଙ୍କ ସହିତ ସଂପୃକ୍ତ; ଏହି ନୂତନ ଆନ୍ତର୍ଜାତୀୟ ସମ୍ମିଳନୀ ଆମ ସମାଜବାଦ ନୀତିର ମୁଖ୍ୟ ଆଭିମୁଖ୍ୟ ସ୍ୱୀକାର କରିଥିଲା ଏବଂ ଏସିଆ ଦେଶର ସମ୍ମିଳନୀ ହୋଇଥିବାରୁ ଏହାର ଏକ ଗୁରୁତ୍ୱ ରହିଥିଲା । କିନ୍ତୁ ପ୍ରଜା ସୋସାଲିଷ୍ଟ ପାର୍ଟି ଯେ ଆଦର୍ଶବାଦ ବିବାଦ ତ୍ୟାଗ କଲା, ଏଥିରେ ପାର୍ଟି ଭିତରେ ସମସ୍ୟା ବଢିଲା । ଆଚାର୍ଯ୍ୟ କୃପାଳନୀ ମିଶ୍ରଣ ଦିନ ଭାଷଣରେ କହିଲେ—ଆମେ ମୂଳ ନୀତି ଓ କାର୍ଯ୍ୟକ୍ରମରେ ଯେପରି ସମ୍ମତ ହେଉଁ ଏଥିଲାଗି ଆଗ୍ରହୀ ଥିଲୁ—ଜାଣିଶୁଣି ଆଦର୍ଶବାଦ ସମସ୍ୟାକୁ ଛାଡ଼ିଦେଇଛୁ । ଜୟପ୍ରକାଶ ନାରାୟଣ ମଧ୍ୟ ଠିକ୍ ସେହି ମର୍ମରେ କହିଲେ, "It was good that ideological issues were kept out when we agreed to merge." –ଆମେ ଏକାଠି ହେବା ଲାଗି ସହମତ ହେବାଲାଗି ଯେତେବେଳେ ସ୍ଥିର କଲୁ ସେତେବେଳେ ଆଦର୍ଶବାଦ କଥା ନ ଉଠାଇ ଭଲହେଲା ।" କିନ୍ତୁ ଏଥିରେ ବିବାଦ ଏଡ଼ାଯାଇପାରିଲା ନାହିଁ । ଆଚାର୍ଯ୍ୟ କୃପାଳନୀ ଏଥି ସଙ୍ଗେ ସଙ୍ଗେ ପ୍ରଶ୍ନ ଉଠାଇଦେଲେ—ରାଜନୀତିକ ଦଳର ଆଦର୍ଶବାଦ ବା ସାମାଜିକ ଦର୍ଶନ ରହିବା ଦରକାର କି ? ଏହା ପାର୍ଟି ଭିତରେ ନୂତନ କନ୍ଦଳର ସୂତ୍ରପାତ କଲା ।

# ନେହରୁ-ଜେ. ପି. କଥାବାର୍ତ୍ତା

ରେଙ୍ଗୁନ୍ ସମ୍ମିଳନୀରୁ ଫେରିବାର ଅଳ୍ପଦିନ ପରେ ଫେବ୍ରୁୟାରୀ ପ୍ରଥମ ସପ୍ତାହରେ ପ୍ରଧାନମନ୍ତ୍ରୀ ନେହରୁଙ୍କ ସହ ଜୟପ୍ରକାଶ ନାରାୟଣଙ୍କର ଦେଶର ରାଜନୀତି ସମ୍ବନ୍ଧରେ କଥାବାର୍ତ୍ତା ଆରମ୍ଭ ହୋଇଥିଲା । ଏପରି କଥାବାର୍ତ୍ତା ଲାଗି ବୋଧହୁଏ ଦୁହିଁଙ୍କ ମନ ଭିତରେ କିଛି ଭାବ ଖେଳୁଥିଲା; କାରଣ ରେଙ୍ଗୁନ୍‌ଠାରେ ଆମ ଭାରତ ଡେଲିଗେଟ୍‌ଙ୍କ ସହ କଥା-ବାର୍ତ୍ତା ପ୍ରସଙ୍ଗରେ ଜୟପ୍ରକାଶ ଉଲ୍ଲେଖ କରିଥିଲେ ଯେ ଭାରତର ଆର୍ଥିକ ଅବସ୍ଥା ଦିନକୁଦିନ ଯେଉଁଭଳି ଖରାପ ଆଡ଼କୁ ଗତିକରୁଛି, ସେ ସମ୍ପର୍କରେ ଏକ ଜାତୀୟ ସର୍ବସମ୍ମତ ନୀତି ବାହାର କରିବାର ଉଦ୍ୟମ ହେବା ଉଚିତ ।

ଯାହାହେଉ ଦୁହିଁଙ୍କର ଭେଟ ହେଲା । ଜବାହରଲାଲ୍ ନେହରୁଙ୍କ ନିମନ୍ତ୍ରଣ କ୍ରମେ ଜୟପ୍ରକାଶ କଥାବାର୍ତ୍ତାରେ ଅନୁଭବ କଲେ ଯେ ନେହରୁ ପ୍ରଜା ସୋସଲିଷ୍ଟ ପାର୍ଟିର ସରକାରୀ ଓ ବେସରକାରୀ ଉଭୟ ସ୍ତରରେ ସହଯୋଗ ଚାହୁଁଥିଲେ । ଅନେକ ସମସ୍ୟାରେ ଉଭୟ ଏକମତ ଥିଲେ । ଏହି କଥାବାର୍ତ୍ତା ଯାହା ଚାଲିଲା, ସେଥିରେ କଂଗ୍ରେସ ଓ ପି.ଏସ୍ ପି.ର ମିଶ୍ରଣ କଥା ଆଦୌ ଉଠିନଥିଲା—ତେବେ ସହଯୋଗ ପ୍ରଶ୍ନ ନିଶ୍ଚିତ ଭାବରେ ଉଠିଲା ଏବଂ ଜୟପ୍ରକାଶ ନିଜେ ବିଚାରିଲେ ଯେ ଏପରି ଏକ ମିଳିତ ସହଯୋଗ ହୋଇପାରିଲେ ଦେଶର ବର୍ତ୍ତମାନ ପରିସ୍ଥିତିରେ ହିତକର ହେବ । କିନ୍ତୁ ସେ ନେହରୁଙ୍କୁ କହି ଆସିଲେ—ମୁଁ ବନ୍ଧୁମାନଙ୍କ ପରାମର୍ଶ କରି ପୁଣି ମାର୍ଚ୍ଚ ମାସରେ ଆପଣଙ୍କ ସହ ସାକ୍ଷାତ କରିବି । ସେତେବେଳେ ଦିଲ୍ଲୀରେ ଯେଉଁ ସୋସଲିଷ୍ଟ ନେତା ଥିଲେ, ସେମାନଙ୍କ ସହ ପରାମର୍ଶ ହେଲା । ଏ ସମ୍ବନ୍ଧରେ ଯେତେ ବୈଠକ ହୋଇଛି, ମୁଁ ସବୁଥିରେ ଯୋଗଦେଇଥିଲି । ଏପରି ଉଚ୍ଚସ୍ତରରେ ରାଜନୀତିକ କଥାବାର୍ତ୍ତା ଫଳରେ ଦେଶରେ ନାନା ପ୍ରକାର କଳ୍ପନା ଚାଲିଲା । ପି. ଏସ୍. ପି. ସରକାରରେ ଯୋଗଦେବାର ଏକ ଭବିଷ୍ୟବାଣୀ ସଂବାଦପତ୍ର-ମାନଙ୍କରେ ବାହାରିଗଲା । ଏହା କଂଗ୍ରେସ ଓ ପି. ଏସ୍. ପି. ଉଭୟ ମହଲରେ ନାନା ଆଶା ଆଶଙ୍କା ଉପୁଜାଇଲା । ଏଥିମଧ୍ୟରେ ଜବାହରଲାଲ୍ ପୁଣି ସ୍ୱତନ୍ତ୍ରଭାବରେ ଆଚାର୍ଯ୍ୟ କୃପାଳନୀ ଓ ଆଚାର୍ଯ୍ୟ ନରେନ୍ଦ୍ରଦେବଙ୍କୁ ଭେଟିଲେ ।

ମାର୍ଚ୍ଚ ପ୍ରଥମ ସପ୍ତାହରେ ଏସବୁକୁ ବିଚାର କରିବା ନିମନ୍ତେ ଆମମାନଙ୍କର ଏକ ଘରୋଇ ବୈଠକ ହେଲା । ଏହି ବୈଠକକୁ ଡକ୍ଟର ଲୋହିଆଙ୍କୁ ବି ନିମନ୍ତ୍ରଣ କରାଯାଇଥିଲା—ସେ ଆସି ନ ଥିଲେ । ଆଚାର୍ଯ୍ୟ କୃପାଳନୀ ଓ ନରେନ୍ଦ୍ରଦେବ ଖୁବ୍ ଆଶାବାଦୀ ନ ଥିଲେ; ମାତ୍ର ସେମାନଙ୍କ ସହିତ ସେଠି ଉପସ୍ଥିତ ଥିବା ସବୁ ବନ୍ଧୁଙ୍କର ମତ ହେଲା—କଥାବାର୍ତ୍ତା ଆମ ତରଫରୁ ଭାଙ୍ଗିଦେବା ଠିକ୍ ହେବ ନାହିଁ—ଏହା ଚାଲୁ—କିନ୍ତୁ ଜବାହରଲାଲ୍ ଯଦି ପାର୍ଟି ପାର୍ଟି ଭିତରେ ସବୁ ସ୍ତରରେ ସହଯୋଗ କାମନା କରନ୍ତି, ତେବେ ଏକ କାର୍ଯ୍ୟକ୍ରମ ଭିତରେ ଏପରି ସହଯୋଗ ଦିଆଯାଇପାରିବ ବୋଲି ସ୍ଥିର କରାଗଲା ଏବଂ ଏକ ୧୪ ଦଫା

କାର୍ଯ୍ୟକ୍ରମର ଚଠା କରାଗଲା । ଜୟପ୍ରକାଶ ନାରାୟଣ ମାର୍ଚ୍ଚ ୧୭ ତାରିଖରେ ପୁଣି ଜବାହରଲାଲଙ୍କୁ ଭେଟି ଏହି କାର୍ଯ୍ୟକ୍ରମର ଚଠା ତାଙ୍କ ହାତକୁ ଦେଲେ ଏବଂ ଦୁହିଁଙ୍କ ଭିତରେ ଆଲୋଚନା ଚାଲିଲା ।

ଏଥିଭିତରେ କିନ୍ତୁ ଦୁଇ ପାର୍ଟି ଭିତରେ ଜଟିଳତା ସୃଷ୍ଟି ହୋଇଯାଇଥିଲା ! ପି.ଏସ୍.ପି. ଭିତରେ ଡକ୍‌ଟର ଲୋହିଆଙ୍କ ପରି କେତେକ ସାଥୀ ଏପରି କଥାବାର୍ତ୍ତା ବିରୁଦ୍ଧରେ ପ୍ରକାଶ୍ୟରେ ମତ ପ୍ରକାଶ କଲେ ଏବଂ ପାର୍ଟି ଭିତରେ ଅତି ନିମ୍ନ ଧରଣର ସନ୍ଦେହ ସୃଷ୍ଟି ହେଲା । ତେଣେ କଂଗ୍ରେସ ମହଲରେ ମଧ୍ୟ ଖୁବ୍ ଚହଳ ପଡିଗଲା । ପ୍ରାୟ ସବୁ ରାଜ୍ୟରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ରହିଥିଲା ଏବଂ କେନ୍ଦ୍ରରୁ ରାଜ୍ୟ ପର୍ଯ୍ୟନ୍ତ ସାରା ଦେଶରେ ସେମାନେ ଏକଚାଟିଆ ଅଧିକାର ଉପଭୋଗ କରୁଥିଲେ । ଜବାହରଲାଲଙ୍କର ଏହି ଉଦ୍ୟମ ସଫଳ ହେଲେ ସେମାନଙ୍କ କ୍ଷମତାରେ ପୁଣି ଭାଗୀଦାର ବସିବେ—ଏଭଳି ଏକ ପରିସ୍ଥିତିକୁ ସେମାନେ ଭଲ ଚକ୍ଷୁରେ ଦେଖୁନଥିଲେ । ତାହାଛଡ଼ା ପ୍ରାୟ ପ୍ରତ୍ୟେକ ରାଜ୍ୟରେ ପି.ଏସ.ପି. ପ୍ରତି ସେମାନଙ୍କର ମନୋଭାବ କିଛି ଅନୁକୂଳ ନଥିଲା—କେତେକ ରାଜ୍ୟରେ କମ୍ୟୁନିଷ୍ଟଙ୍କ ଅପେକ୍ଷା ଆମମାନଙ୍କୁ ଅଧିକ ଶତ୍ରୁ ବୋଲି ବିଚାରୁଥିଲେ । ମୋର ଖବର ଯେ, ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କ ନେତୃତ୍ୱରେ ଏମାନେ ଜବାହରଲାଲ ନେହରୁଙ୍କ ଉପରେ ଚାପ ଦେଲେ ଏବଂ ବିରୋଧ କଲେ । କଂଗ୍ରେସ ସ୍ଥିତି ଯେବେ ଅତି ଦୃଢ ରହିଥିବା-ବେଳେ ଭିନ୍ନ ଦଳର ସହଯୋଗର କୌଣସି ଆବଶ୍ୟକତା ନଥିଲା ଏବଂ ଏପରି ପଦକ୍ଷେପରେ ବରଂ ଲୋକଙ୍କ ମନରେ ଧାରଣା ଉପୁଜିବ ଯେ କଂଗ୍ରେସ ଦଳ ଏକାକୀ ଶାସନ ଚଳାଇବା ନିମନ୍ତେ ଅକ୍ଷମ ହୋଇପଡ଼ିଲାଣି ।

## ଜବାହରଲାଲ ସ୍ୱର ବଦଳାଇଲେ

ଜୟପ୍ରକାଶ ମାର୍ଚ୍ଚ ୧୭ ତାରିଖରେ ଯେତେବେଳେ କଥାବାର୍ତ୍ତା ଆରମ୍ଭ କରିଥିଲେ, ଜବାହରଲାଲ କହିଲେ ଯେ ପାର୍ଟି ଦୃଷ୍ଟିରୁ ପ୍ରୋଗ୍ରାମ୍ ଦେବାଟା ଯଥାର୍ଥ—କିନ୍ତୁ କଂଗ୍ରେସ ପାର୍ଟି ତରଫରୁ ଏପରି ଏକ ପ୍ରୋଗ୍ରାମ୍‌ରେ ଆସନ୍ତା କେତେବର୍ଷ ଲାଗି ବନ୍ଧା ହୋଇଯିବା ନିମନ୍ତେ ସେ ପ୍ରସ୍ତୁତ ହେଲେନାହିଁ । ସେ ବ୍ୟକ୍ତିଗତ ବୁଝାମଣା ଉପରେ ମିଳିମିଶି କାର୍ଯ୍ୟ କରିବାର ପ୍ରସ୍ତାବ ଦେଲେ । ଆଚାର୍ଯ୍ୟ କୃପାଳନୀ ଓ ନରେନ୍ଦ୍ରଦେବଙ୍କ ସନ୍ଦେହ ଶେଷରେ ସତ୍ୟ ହେଲା । ସେମାନେ ଜବାହରଲାଲଙ୍କ ସଙ୍ଗେ ସାକ୍ଷାତ କଲା ପରେ ଏପରି ଧାରଣା ନେଇ ଫେରିଥିଲେ—ସେମାନେ କହିଲେ ଯେ ବ୍ୟକ୍ତିଗତଭାବରେ ଜୟପ୍ରକାଶ ଏବଂ ଆଉ କେତେ ଜଣଙ୍କୁ ତାଙ୍କ ସରକାର ସହ ସାମିଲ କରିନେବାରେ ସେ ଆଗ୍ରହୀ ।

## ଜୟପ୍ରକାଶଙ୍କ ନାସ୍ତିବାଣୀ

ଜୟପ୍ରକାଶ ନାରାୟଣ ସ୍ପଷ୍ଟଭାବରେ ଜଣାଇ ଦେଲେ "ଏକ ନିମ୍ନତମ କାର୍ଯ୍ୟକ୍ରମ ଭିତ୍ତିରେ ସହଯୋଗ ନ ହୋଇ ବ୍ୟକ୍ତିଗତ ସ୍ତରରେ କରାଗଲେ ସେଥିରେ ପୁଣି ଯେତେବେଳେ

ସରକାରରେ ଯୋଗ ଦେବା ପ୍ରଶ୍ନ ଉଠୁନ୍ତୁ—ଏହା ଆଦୌ ସଫଳ ହେବ ନାହିଁ । ନିଜ ଭିତରେ ଭୁଲ ବୁଝାମଣା ସୃଷ୍ଟି ହେବ ଏବଂ ଫଳପ୍ରଦ ଭାବରେ କୃତିତ୍ୱ ଲାଭ କରିବାର ସମ୍ଭାବନା ଊଣା । ବ୍ୟକ୍ତିଗତ ଭାବରେ ପରସ୍ପର ବୁଝାମଣାରେ କାର୍ଯ୍ୟ ହୋଇପାରେ; ମାତ୍ର ରାଜନୀତିକ ଦଳ ପରସ୍ପର ସମ୍ମତ କାର୍ଯ୍ୟକ୍ରମ ବିନା ସହଯୋଗ କାର୍ଯ୍ୟକାରୀ ହୋଇପାରିବ ନାହିଁ । ମୂଳ କଥାରେ ମତଭେଦ ଘଟିବାରୁ ପ୍ରଧାନମନ୍ତ୍ରୀ ସବୁ ସ୍ତରରେ ସହଯୋଗର ଯେ ପ୍ରଶ୍ନ ଉଠାଇଥିଲେ, ତାହା ଏହିଠାରେ ହିଁ ଅନ୍ତ ହୋଇଗଲା ।"

ଆଗରୁ ଜୟପ୍ରକାଶ କାର୍ଯ୍ୟକାରୀ ସମିତିର ବୈଠକ ଡକାଇବା ନିମନ୍ତେ କହୁଥିଲେ; ମାତ୍ର କଥାବାର୍ତ୍ତା ନିର୍ଦ୍ଦିଷ୍ଟ ରୂପ ନ ନେବା ପର୍ଯ୍ୟନ୍ତ ଆଚାର୍ଯ୍ୟ କ୍ରିପାଲନୀ ବୈଠକ ଡାକିବାର ପକ୍ଷପାତୀ ନ ଥିଲେ । ଏହାପରେ ମାର୍ଚ୍ଚ ୨୫।୨୬ ଆଡ଼କୁ ଦିଲ୍ଲୀଠାରେ କାର୍ଯ୍ୟକାରୀ ସମିତିର ବୈଠକ ବସି ପ୍ରସ୍ତାବ ହେଲା ଯେ ଜବାହରଲାଲ ନେହରୁ ଏ ପ୍ରସଙ୍ଗଟି ଉତ୍ଥାପନ କରିଥିଲେ—ସେ ଯେତେବେଳେ ସେଥିରେ ଆଉ ଆଗେଇବାକୁ ପ୍ରସ୍ତୁତ ନ ଥିଲେ, ସେତେବେଳେ ସେ ବିଷୟ ସେହିଠାରୁ ଶେଷହୋଇଗଲା । କାର୍ଯ୍ୟକାରୀ କମିଟି ସିନା ଏପରି ଏକ ସିଦ୍ଧାନ୍ତ ନେଲା, କିନ୍ତୁ ପାର୍ଟି ଭିତରେ ଏହା ଯେନିକ ତୁମୁଳ ବାଦବିବାଦ ପ୍ରକାଶ୍ୟରେ ଆରମ୍ଭ ହୋଇ ଅତି ଅବାଞ୍ଛନୀୟ ପରିସ୍ଥିତି ଜାତ ହୋଇଗଲା । ପ୍ରଜା ସୋସଲିଷ୍ଟ ପାର୍ଟି ଆରମ୍ଭ ହେଉ ହେଉ ସରକାରରେ ଯୋଗ ଦେବା ନିମନ୍ତେ ଯେ ନିମନ୍ତ୍ରଣ କରାଗଲା ଏହା ପାର୍ଟିର ମର୍ଯ୍ୟାଦା ବଢ଼ାଇଲା । ଦ୍ୱିତୀୟରେ ଜୟପ୍ରକାଶ ବ୍ୟକ୍ତିଗତ ଯୋଗଦାନରେ ଅସ୍ୱୀକାର କରିବା ଏବଂ ନିମ୍ନତମ କାର୍ଯ୍ୟକ୍ରମ ଉପରେ ଜୋର୍ ଦେବା ଖୁବ୍ ଉତ୍ତମ ପ୍ରତିକ୍ରିୟା ଜାତ କଲା । ତୃତୀୟରେ ଯେଉଁ କାର୍ଯ୍ୟକ୍ରମ ଦିଆଯାଇଥିଲା, ତାହା କିଛି ଏକ ସମାଜବାଦୀ କାର୍ଯ୍ୟକ୍ରମ ନ ଥିଲା । ତାହା ମଧ୍ୟ କଂଗ୍ରେସ ଗ୍ରହଣ କରିବାକୁ ପ୍ରସ୍ତୁତ ନ ହେବାରୁ ଲୋକ ଚକ୍ଷୁରେ କଂଗ୍ରେସର ପ୍ରକୃତ ସ୍ୱରୂପ ପଦାରେ ପଡ଼ିଗଲା । ତେଣୁ ଏଭଳି କଥାବାର୍ତ୍ତା ପାର୍ଟିର ସ୍ୱାର୍ଥ ହାନି ଘଟାଇଲା ବୋଲି କହିବା ଭୁଲ । ମାତ୍ର ଡକ୍ଟର ଲୋହିଆ ଓ ଅନ୍ୟ ସାଥୀମାନେ କେତେକ ନେତାଙ୍କ ଉପରେ କଂଗ୍ରେସ ସହିତ ମିଳିତ ମନ୍ତ୍ରିମଣ୍ଡଳ ଗଠନର ସୁବିଧା କରିବା ଦ୍ୱାରା ପାର୍ଟି ନୀତିର ଖିଲାପ କାର୍ଯ୍ୟ ହେଉଥିବାର ଅଭିଯୋଗ ଉଠାଇଲେ ଏବଂ ପ୍ରକାଶ୍ୟରେ ତର୍କ ବିତର୍କ ଚାଲିଲା । ଏ ସବୁ ଦେଖି ଜୁନ୍ ୧୪ରୁ ୧୮ ପର୍ଯ୍ୟନ୍ତ ମଧ୍ୟପ୍ରଦେଶର ବେତୁଲଠାରେ ପାର୍ଟିର ଏକ ବିଶେଷ ଅଧିବେଶନ ଡାକିବା ନିମନ୍ତେ ସ୍ଥିର ହେଲା ।

## ବେତୁଲଠାରେ ସବୁ ବେତାଳ

ପ୍ରଜା ସୋସଲିଷ୍ଟ ପାର୍ଟି ଗଠନ ପରେ ବାର୍ଷିକ ସମ୍ମିଳନୀ ହେବା ପୂର୍ବରୁ ଏଭଳି ଅସମ୍ଭାଳ ପରିସ୍ଥିତି ସୃଷ୍ଟି ହେଲା ଯେ ମଧ୍ୟପ୍ରଦେଶର ବେତୁଲଠାରେ ଏକ ବିଶେଷ ଅଧିବେଶନ ଡାକିବାକୁ ପଡ଼ିଲା । ମୁଁ କୌଣସି କାରଣରୁ ଏହି ସମ୍ମିଳନୀରେ ଉପସ୍ଥିତ ନ ଥିଲି । ପାର୍ଟି ଭିତରେ ଟିକିଏ ଭିନ୍ନମତ ପ୍ରକାଶ ପାଉଥିଲେ ସୁଦ୍ଧା ତାହା ଏତେଦୂର ଯାଇଥିଲା ବୋଲି ମୁଁ

ଅନୁମାନ କରି ନ ଥିଲି । ତାହା ଛଡ଼ା ଏଥି ଭିତରେ ଯାହା ସବୁ ରାଜନୀତିକ ଘଟଣା ଘଟିଲି, ତହିଁରେ ମୁଁ ପ୍ରତ୍ୟକ୍ଷ ଭାବରେ ସଂପୃକ୍ତ ଥିଲି । ତେଣୁ ସେଠିକି ନ ଗଲେ ଚଳିବ ବୋଲି ଅନ୍ୟ କାମରେ ଗଲି । ମୋର ମନେହୁଏ ସାରଙ୍ଗଧରବାବୁ ମଧ୍ୟ ଏଠାରେ ଉପସ୍ଥିତ ନ ଥିଲେ । ଓଡ଼ିଶାରୁ ଏଥିରେ ଯୋଗ ଦେଇଥିଲେ ବୃନ୍ଦାବନ ବିହାରୀ ପାଳିତ, ଚିରଞ୍ଜିଲାଲ ଶର୍ମା, ଗୋବିନ୍ଦ ଦାସ, କିଶାନ୍ ପଟ୍ଟନାୟକ, କୁମାରୀ ଆଶାଲତା, ନରସିଂହ ମିଶ୍ର ଏବଂ ସହଦେବ ମିଶ୍ର । ଏଥିରେ ଆଗ୍ରହୀ ଜିପାଳିନୀ ସଭାପତି ହୋଇଥିଲେ । ଜାତୀୟ, ପ୍ରାଦେଶିକ ଓ ଜିଲ୍ଲା କମିଟିମାନଙ୍କର ସଭ୍ୟ ଏବଂ ପାର୍ଲିମେଣ୍ଟ ଆସେଂବ୍ଲି ସଭ୍ୟମାନେ ପ୍ରତିନିଧିଭାବରେ ଯୋଗ ଦେଇଥିଲେ । କୃଷକ, ଶ୍ରମିକ ଓ ଅନ୍ୟାନ୍ୟ ଅନୁଷ୍ଠାନର ସଭ୍ୟ ଏବଂ ପ୍ରତିନିଧି ଆଦିଙ୍କୁ ମିଶାଇ ପ୍ରାୟ ୫୦୦ ଲୋକ ଯୋଗଦେଲେ ।

## ନାଆଁରେ ତେଲ ଚଳା

ଆଗରୁ ବହୁ ଡେଲିଗେଟ୍ କଂଗ୍ରେସ ପି.ଏସ୍.ପି. କଥାବାର୍ତ୍ତା ଯୋଗୁଁ ଉତ୍ତେଜିତ ହୋଇ ରହିଥିଲେ । ତାହା ସାଙ୍ଗକୁ ଅଶୋକ ମେହେଟ୍ଟା ସାଧାରଣ ସଂପାଦକ ଭାବରେ ତାଙ୍କର ଯେଉଁ ରିପୋର୍ଟ ଦାଖଲକଲେ ସେଥିରେ ଏକ ନୂତନ ତଥ୍ୟ ସମ୍ବଳିତ ତତ୍ତ୍ୱ ବ୍ୟାଖ୍ୟାନ କଲେ—ତାହାହେଲା ଆମର ଅନୁନ୍ନତ ଅର୍ଥନୀତିରେ କେତେକ ରାଜନୀତିକ ବାଧ୍ୟତାମୂଳକ ପରିସ୍ଥିତି । ଅର୍ଥାତ୍ ଅଶୋକ ମେହେଟ୍ଟା ଦେଶର ଆର୍ଥନୀତିକ ଦୁରବସ୍ଥା ଦର୍ଶାଇ ପ୍ରତିପାଦିତ କଲେ ଯେ ରାଜନୀତିକ ବିବାଦଗ୍ରସ୍ତ ହେଲେ ଦେଶର ଆର୍ଥନୀତିକ ଦୁର୍ଗତି ବଢ଼ିଯିବ; ତେଣୁ ଦେଶର ବିକାଶ ନିମନ୍ତେ ଏପରି ଏକ ଜାତୀୟ ସଂକଟମୟ ପରିସ୍ଥିତିରେ ଗଣତାନ୍ତ୍ରିକ ଦଳ ଅର୍ଥାତ୍ କଂଗ୍ରେସ ଓ ପ୍ରଜା ସୋସିଆଲିଷ୍ଟ ପାର୍ଟି ମିଳିତ ଭାବରେ କାର୍ଯ୍ୟ କରିବାର ଆବଶ୍ୟକତା ଆସିଲାଣି । ଅଶୋକ ମେହେଟ୍ଟାଙ୍କର ଏହି ତତ୍ତ୍ୱ କାର୍ଯ୍ୟକାରୀ ସମିତିରେ ଆଲୋଚିତ ହୋଇ-ନଥିଲା । ମାତ୍ର ସେ ତାଙ୍କର ବ୍ୟକ୍ତିଗତ ବିଶ୍ଳେଷଣ କରି ସମ୍ମିଳନୀରେ ଏହା ଆଲୋଚନା କରିବା ନିମନ୍ତେ ଆଗତ କରିଥିଲେ । ଏକଥା ଜଣାଶୁଣା ଯେ ଏହି ମତ ପଶ୍ଚାତ୍‌ରେ ପାର୍ଟିର ଅଧିକାଂଶ ସଭ୍ୟଙ୍କ ସମର୍ଥନ ନ ଥିଲା । କାରଣ ପାର୍ଟିଲୋକ ବିଚାରକଲେ ପାର୍ଟିକୁ ଏକ ବିକଳ୍ପ ଶକ୍ତିରୂପେ ଅମେ ଛିଡ଼ାକରାଇବାକୁ ଚେଷ୍ଟା କରୁଥିଲାବେଳେ ଶାସକଦଳ ସହ ଏପରି ମିଳିତ କ୍ଷେତ୍ର ବାହାର କରିବାଦ୍ୱାରା ପାର୍ଟି ସ୍ୱାର୍ଥରେ ବାଧା ପହଞ୍ଚିବ—ଏକ ଶକ୍ତିଶାଳୀ ସମାଜବାଦୀ ବିରୋଧ ଗଢ଼ି ଉଠିବ ନାହିଁ । ଡେଲିଗେଟ୍‌ଙ୍କର ଆଉ ଏକ ବିଚାର ହେଲା—ତାଙ୍କର ନିଜ ଉପରୁ ଆତ୍ମବିଶ୍ୱାସ ହଟିଗଲାଣି ଏବଂ ସାଧାରଣ ନିର୍ବାଚନର ପରାଜୟ ଯୋଗୁଁ ଏପରି ଏକ ହତାଶ ମନୋଭାବ ପ୍ରକାଶିତହେଲା । ଆଗରୁ କେନ୍ଦ୍ରରେ ମିଳିତ ମନ୍ତ୍ରିମଣ୍ଡଳ ଗଠନ ଆଦି ସଂପର୍କୀୟ କଥାବାର୍ତ୍ତା ସାଙ୍ଗକୁ କଂଗ୍ରେସ ସହ ନିର୍ଦ୍ଦିଷ୍ଟ ଆର୍ଥନୀତିକ ବିକାଶରେ ସହଯୋଗ ପ୍ରସ୍ତାବ ଡେଲିଗେଟ୍‌ଙ୍କର ସନ୍ଦେହ ବୃଦ୍ଧିକଲା ଏବଂ ଯେଉଁ

ନେତାମାନେ ନେହରୁଙ୍କ ସହ ବାର୍ତ୍ତାଳାପ କଲେ, ସେମାନେ ସମସ୍ତେ ଅଶୋକଙ୍କ ସମର୍ଥକ ଏବଂ ଏହା ପଶ୍ଚାତ୍ତରେ ରହିଥିବାର ଅନୁମାନ କଲେ ।

## କଂଗ୍ରେସ ସହିତ ସହଯୋଗର ନିନ୍ଦା

ତେଣୁ ବେତୁଲ ସମ୍ମିଳନୀରେ ଯେଉଁ ପ୍ରସ୍ତାବ ଥିଲା, ତାହା ଗୌଣ ହୋଇଗଲା । କଂଗ୍ରେସ ସହ ମିଳିତମନ୍ତ୍ରିମଣ୍ଡଳର ପ୍ରଶ୍ନ ଆଉ ରହି ନ ଥିଲେ ସୁଦ୍ଧା ତାହାହିଁ ମୁଖ୍ୟ ଆଲୋଚ୍ୟ ବସ୍ତୁ ହେଲା । ଅଶୋକ ମେହେଟାଙ୍କ ତତ୍ତ୍ୱ ମଧ୍ୟ ସେଥିରେ ଛପିଗଲା । କଂଗ୍ରେସ ସହ କୌଣସି ପ୍ରକାର ସହଯୋଗ ବିଷୟ ଆଲୋଚନା କରାଯାଇନପାରେ ଏବଂ ଆମ ପାର୍ଟି ସହ କଂଗ୍ରେସ ପାର୍ଟିର କିଛି ସାମଞ୍ଜସ୍ୟ ରହିଛି ବୋଲି କହିବା ମଧ୍ୟ ଠିକ୍ ନୁହେଁ । ଯଦିଓ ମିଳିତ ମନ୍ତ୍ରିମଣ୍ଡଳ ଗଠନର ପ୍ରଶ୍ନ ଆଉ ରହିନାହିଁ, ତଥାପି ଏପରି ଆଉ କେବେ ହେବ ନାହିଁ ବୋଲି ନେତାମାନେ ପ୍ରତିଶ୍ରୁତି ଦେବା ନିମନ୍ତେ ଦାବୀ ହେଲା । ଏସବୁ ବିବାଦର ନେତୃତ୍ୱ ନେଇଥିଲେ ଡକ୍ଟର ରାମମନୋହର ଲୋହିଆ । ତାଙ୍କର ଦୀର୍ଘ ଭାଷଣରେ ସେ ଏଥିଭିତରେ କରାଯାଇଥିବା ସମସ୍ତ ଘଟଣାର ତୀବ୍ର ନିନ୍ଦା କରିବା ସଙ୍ଗେ ସଙ୍ଗେ ବ୍ୟକ୍ତିଗତ ଆଲୋଚନା କରିବାକୁ ମଧ୍ୟ ପଛାଇଲେ ନାହିଁ । ଦୁଇପକ୍ଷର ମତର କୌଣସି ସ୍ଥଳରେ ଐକ୍ୟ ହେବାର ଦେଖାଗଲା ନାହିଁ ଏବଂ ଜୟପ୍ରକାଶ ନାରାୟଣ ଶେଷରେ ସବୁକଥା ବୁଝାଇ ଏପରି ପରିସ୍ଥିତିରେ ସେ ଆଉ କୌଣସି ଦାୟିତ୍ୱ ନେବେ ନାହିଁ ବୋଲି ଜାତୀୟ କାର୍ଯ୍ୟକାରୀ ସମିତିରୁ ଇସ୍ତଫା ଦେଲେ ଏବଂ ତାଙ୍କ ସଙ୍ଗେ ସଙ୍ଗେ ଜେନେରାଲ୍ ସେକ୍ରେଟାରୀ ଅଶୋକ ମେହେଟା ଓ ଅନ୍ୟମାନେ ମଧ୍ୟ ତାଙ୍କ ପଦବୀ ତ୍ୟାଗର ଘୋଷଣା କଲେ । ଆଚାର୍ଯ୍ୟ କିପାଲନୀ ଇସ୍ତଫା ଦେଲେ ନାହିଁ; ମାତ୍ର ପରିଷ୍କାର କହିଦେଲେ—"ମୁଁ କିନ୍ତୁ ମୋ ମତ ଆପଣମାନଙ୍କ ଆଗରେ ପରିଷ୍କାର କରିଦେବାକୁ ଚାହେଁ । ମିଳିତ ମନ୍ତ୍ରିମଣ୍ଡଳ ରାଜନୀତି ବର୍ତ୍ତମାନ ବାସ୍ତବରେ ଆଉ ନାହିଁ; କିନ୍ତୁ ମୁଁ କହିଦେବାକୁ ଚାହେଁ ଯେ ନେହରୁ ଯେପର୍ଯ୍ୟନ୍ତ ଦେଶର ପ୍ରଧାନମନ୍ତ୍ରୀ ରହିଥିବେ, ଏହି ଅଭିଶପ୍ତ ଓ ଦୁଃଖୀ ଦେଶର ଜୀବନ୍ତ ଓ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ଆଲୋଚନା କରିବାକୁ ମତେ ଆହ୍ୱାନ କଲେ ମୁଁ ନିଶ୍ଚୟ ଯିବି । ରାଜି ବାରଟା ବେଳେ ସେ ଡାକିଲେ ମଧ୍ୟ ମୁଁ ଏପରି ଅସୁବିଧା ସମୟରେ ବି ଯିବି । ସେ ଯଦି ମୋ ପାର୍ଟି ସହିତ ଚୁକ୍ତି କରିବା କଥା ଉଠାନ୍ତି, ମୁଁ ତୁମମାନଙ୍କର ଅନୁମତି ନ ଲୋଡ଼ି ସେଥିଲାଗି ପ୍ରସ୍ତୁତ ହୋଇଯିବି । କିନ୍ତୁ ଏଭଳି କଥାବାର୍ତ୍ତାର ଫଳାଫଳ ବିଷୟରେ ଶେଷ ନିଷ୍ପତ୍ତି ହେବା ପୂର୍ବରୁ ଆପଣଙ୍କ ସମ୍ମୁଖରେ ସବୁ କଥା ରଖାଯିବ । ତୁମେ ସବୁ ମତେ ଚେୟାରମାନ୍ ରଖିବାକୁ ଚାହଁ, ତେବେ ଏତିକ ସ୍ୱାଧୀନତା ତୁମକୁ ମତେ ଦେବାକୁ ପଡ଼ିବ । ଯଦି ଏହା ନ ହୋଇ ପାରୁଛି, ତେବେ ମୋ ପରି ଜଣେ ବୃଦ୍ଧଲୋକ ମୁଣ୍ଡରୁ ଏ ବୋଝ ଆଉ କେହି ନେଉ । କିନ୍ତୁ ଯେ ଚେୟାରମ୍ୟାନ୍ ହେବ, ତାଙ୍କୁ ମୁଁ ପୂର୍ଣ୍ଣ ସମର୍ଥନ ଦେବି । ଗାନ୍ଧିଜୀଙ୍କ କଥା ମୁଁ ପୂର୍ଣ୍ଣରୂପେ ବୁଝି ନ ପାରି ସୁଦ୍ଧା ୩୦ ବର୍ଷ କାଳ ତାଙ୍କୁ ଯେପରି ଅକୁଣ୍ଠିତ ସମର୍ଥନ ଦେଇଆସିଥିଲି, ସେମିତିକା ସମର୍ଥନ ଦେବି ।"

## ପାର୍ଟିରେ ଅଚଳ ଅବସ୍ଥା

ଏହା ଫଳରେ ପାର୍ଟିରେ ଏକ ଅଚଳ ଅବସ୍ଥା ସୃଷ୍ଟି ହେଲା । ଯେଉଁମାନେ ଏପରି ବିରୋଧ କରିଥିଲେ ଏବଂ ଏକ ସନ୍ଦେହ ଜାତ କରାଇଥିଲେ, ସେମାନେ ଏଥିଲାଗି ପ୍ରସ୍ତୁତ ନ ଥିଲେ । ପାର୍ଟି ପୁଣି ଦୁଇଭାଗ ହେଉ ଏହା କାହାରି ଆନ୍ତରିକ ଇଚ୍ଛା ନ ଥିଲା । ବିବାଦ କିଛି ପୂର୍ବ କେ. ଏମ୍. ପି. ପି. ଓ ପୂର୍ବ ସୋସଲିଷ୍ଟ ଭାବରେ ବିଭକ୍ତ ହୋଇ ନ ଥିଲା; ବରଂ ମୁଖ୍ୟତଃ ପୂର୍ବ ସୋସଲିଷ୍ଟ ପାର୍ଟି ଲୋକଙ୍କ ଭିତରେ ଏହା ବେଶି ଦେଖାଦେଇଥିଲା । ଯେଉଁ ବିଷୟରେ ମତଭେଦ ହେଲା, ସେ ବିଷୟରେ କିଛି ଶ୍ରେଷ୍ଠ ନୂଆ ହୋଇ ନ ଥିଲା ଏବଂ କୌଣସି ପକ୍ଷ ଜିତିବା ହାରିବାର ପ୍ରଶ୍ନ ନ ଥିଲା । ମାତ୍ର ଜୟପ୍ରକାଶଜୀ ପ୍ରଭୃତିଙ୍କର କହିବା କଥା ହେଲା ଆମେ ଯେଉଁ ନୀତି ଚଳାଇବାକୁ ଚାହୁଁଛୁ, ସେଥିରେ ହୁଏତ ପାର୍ଟି ସମ୍ମତ ନୁହନ୍ତି । ସମ୍ମିଳନୀ କାର୍ଯ୍ୟ କିନ୍ତୁ ଏସବୁ ବିବାଦ ସତ୍ତ୍ୱେ ସୁରୁଖୁରୁରେ ଚାଲିଲା । ପଞ୍ଚବାର୍ଷିକ ଯୋଜନା ଓ ରାଜ୍ୟ ପୁନର୍ଗଠନ କମିଶନ ସଂକ୍ରାନ୍ତରେ ଏହି ସମ୍ମିଳନୀରେ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ ଗୃହୀତ ହେଲା ।

## ସମାଜବାଦୀ ଭ୍ରାତୃଭାବର ନିଦର୍ଶନ

ସୋସଲିଷ୍ଟ ନେତାଙ୍କ ଭିତରେ ଯେଉଁ ଗଣତାନ୍ତ୍ରିକ ଭାବନା ଏବଂ ପରସ୍ପର ପ୍ରତି ଶ୍ରଦ୍ଧା ଓ ସହନଶୀଳତା ଥିବ ତାହା ଏହି ସମ୍ମିଳନୀରେ ଏହି ବିବାଦ ପରେ ଖୋଲାମନରେ ପ୍ରକାଶ ପାଇଲା । ଡକ୍ଟର ଲୋହିଆ ବୋଧହୁଏ ଅନୁଭବ କଲେ ଯେ ସେ ଅତି କର୍କଶ ସମାଲୋଚନା କରିବାଦ୍ୱାରା ପରିସ୍ଥିତି ଏପରି ବିପଜ୍ଜନକ ରୂପ ଧରିଲା । ତେଣୁ ସେ ସମ୍ମିଳନୀରେ ଛିଡ଼ା ହୋଇ କହିଲେ "ମୁଁ ଏହି ସମ୍ମିଳନୀ ତରଫରୁ ବନ୍ଧୁମାନଙ୍କୁ ପୂର୍ବପରି ନିଜ ନିଜ ସ୍ଥାନରେ ରହିବା-ଲାଗି ଅନୁରୋଧ କରୁଛି ।" ଜୟପ୍ରକାଶ ନାରାୟଣ ଉଠି କହିଲେ—"ମୁଁ ବଡ଼ ଗୋଳମାଳରେ ପଡ଼ିଲି । କଣ କରାଯାଇପାରିବ ବୁଝିପାରୁନାହିଁ । × × × ଲୋହିଆ ଚାହୁଁଛନ୍ତି ଆମେ ଇସ୍ତଫା ଉଠାଇନେଉ । ମୁଁ ଲୋହିଆଙ୍କୁ ଏତିକି କହିପାରେ ଯେ ତାଙ୍କର ନିବେଦନ ନିଶ୍ଚୟ ବିଚାରକୁ ନିଆଯିବ ।" ସେ ଆହୁରି ମଧ୍ୟ କହିଲେ—"ଏପରି ଏକ ସମାଧାନ ବାହାର କରାଯିବ ଯେପରି ପାର୍ଟି ଶତ୍ରୁ ଓ ବିରୋଧୀମାନେ ଏ ପରିସ୍ଥିତିରେ ଫାଇଦା ଉଠାଇ ନପାରନ୍ତି । ଏହାର ଫଳସ୍ୱରୂପ ଆଗ୍ରହୀ ୪ ପାଳନୀ ପରବର୍ତ୍ତୀ ବୈଠକରେ ଘୋଷଣା କଲେ ଯେ ସମସ୍ତେ ତାଙ୍କ ଇସ୍ତଫା ପ୍ରତ୍ୟାହାର କରିନେଇଛନ୍ତି । ଏକ ଆନନ୍ଦ ଓ ହର୍ଷଧ୍ୱନିରେ ସମ୍ମିଳନୀ ମଣ୍ଡପ କମ୍ପିତ ହେଲା । ସୋସଲିଷ୍ଟ ନେତାଙ୍କ ଭିତରେ କିପରି ଭ୍ରାତୃଭାବ ଓ ଶ୍ରଦ୍ଧା ରହିଥିଲା, ତାହା ଲୋହିଆଙ୍କର ପରବର୍ତ୍ତୀ ଉକ୍ତିରେ ପ୍ରକାଶପାଇଲା ।

## ପଲିସି କମିସନ ନିଯୁକ୍ତି

କଂଗ୍ରେସ ପ୍ରତି ଆମର ମନୋବୃତ୍ତି ଏବଂ ଆଦର୍ଶବାଦ ବିଷୟରେ ପାର୍ଟି ନୀରବ ରହିଥିଲେ ସୁଦ୍ଧା ସୋସଲିଷ୍ଟ ଆଦର୍ଶରେ ପହଞ୍ଚିବା ନିମନ୍ତେ କିପରି କାର୍ଯ୍ୟକ୍ରମ ଓ ପନ୍ଥା ଅନୁସରଣ

କରାଯିବ, ସେ ସମ୍ପର୍କରେ କୌଣସି ନିର୍ଦ୍ଦିଷ୍ଟ ଚାନ୍ଦା ନୂତନ ପାର୍ଟି ରଖିଲେ ଏପରି ସାମୟିକ ଦ୍ୱନ୍ଦ୍ୱ ଓ ଭୁଲ ବୁଝାମଣାର ଆବଶ୍ୟକତା ଉଠିବ ନାହିଁ ବୋଲି ଅନୁଭବ କରାଗଲା । ତେଣୁ ଏକ ପଲିସି କମିସନ ନିଯୁକ୍ତିର ପ୍ରସ୍ତାବ ଗୃହୀତ ହେଲା । ଏଥିରେ ସବୁ ମୁଖ୍ୟନେତାମାନେ ରହିଲେ । ଏଇ ପ୍ରସ୍ତାବ ଆଲୋଚନା ହେବା ଆଗରୁ ଲୋହିଆ କହିଲେ—"କୃପାଳନୀଙ୍କର ମୋର ସଂପର୍କ କିଛି ନୂଆ ନୁହେଁ । ପ୍ରାୟ ଗତ ୧୫ ବର୍ଷ ହେଲା ମୁଁ ତାଙ୍କ ପରିବାରର ଜଣେ ହିସାବରେ ବାରମ୍ବାର ଚାଲି ଆସିଛି । ସେ ଗୋଟିଏ ପରିବାରର ପିତାମହ ପରି ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିଆସିଛନ୍ତି ।

"ଜୟପ୍ରକାଶ ଓ ମୋ ଭିତରେ ସମ୍ବନ୍ଧ କଥା କଣ କହିବ ? ଅତୀତରେ ଆମେ ଦୁହେଁ ଏକାସାଙ୍ଗରେ ଗୁଳିର ସମ୍ମୁଖୀନ ହୋଇଛୁ । ଗୁଳି ଯେ ଆମ ଦେହରେ ବାଜି ନାହିଁ ଏହା ଦୁଃଖର କଥା । ମୁଁ ଏତିକି କହିବାକୁ ଚାହେଁ, ମୋର ନଜର ଭାଇବୋଲି ଆଉ କେହି ନାହିଁ—ଏହା ଛଡ଼ା ଆମ ସମ୍ବନ୍ଧ ବିଷୟରେ ମୁଁ ଆଉ ଅଧିକ କିଛି କହିବାକୁ ଚାହେଁନା । ଏପରି ଅବସ୍ଥାରେ ଆମେ ଅତୀତରେ କଳହ କରିଥିଲୁ କିମ୍ବା ଭବିଷ୍ୟତରେ ହୁଏତ ବିବାଦ ହେବ, ସେଥିରେ ଯାଏ କେତେ ଆସେ କେତେ !

"ଅତୀତରେ ମୁଁ ଓ ଅଶୋକ ବହୁବାର ଘଣ୍ଟା ଘଣ୍ଟା ଧରି ବସି ପ୍ରାୟ ଭୋର୍ ପର୍ଯ୍ୟନ୍ତ କଥାବାର୍ତ୍ତାରେ ବିତାଇଛୁ । କିନ୍ତୁ ଏତେ ଘଣ୍ଟା ବସି ଆମେ ଯେ ଏକାଠି ବିତାଇ ପାରିଲୁ, ସେଥିରେ କଣ ରାଜନୀତି ଛଡ଼ା ଆମର ଆଉ କିଛି କଥାବାର୍ତ୍ତା ହେଉ ନ ଥିଲା ?"

ଏହିପରି ଭାବପ୍ରବଣତା ଭିତରେ ପୁଣି ବେତୁଲରେ ପାର୍ଟି ଭିତରେ ଏକ ସହନଶୀଳ ମନୋଭାବ ପ୍ରକାଶପାଇଲା ଏବଂ ନୂଆ ଜାତୀୟ କାର୍ଯ୍ୟକାରୀ କମିଟି ଗଠିତହେଲା । ଏଥିରେ ଆଚାର୍ଯ୍ୟ କୃପାଳନୀ ସଭାପତି ଓ ଏନ୍. ଜି. ଗୋରେ ସାଧାରଣ ସଂପାଦକ ରହିଲେ । ମୋ ସମେତ ପୂର୍ବର ଅନ୍ୟ ନିର୍ବାଚିତ ସଭ୍ୟ ରହିଲେ; କେବଳ ମନଉଦ୍ଦିନ ହ୍ୟାରିସ ପାର୍ଟିର ନୂତନ କୋଷାଧ୍ୟକ୍ଷ ରୂପେ ନିର୍ବାଚିତ ହେଲେ ।

## ଏଲାହାବାଦ ସମ୍ମିଳନୀ

ଏହି ପଲିସି କମିସନର ଯୁଗ୍ମସମ୍ପାଦକ ରହିଲେ ଡକ୍ଟର ଲୋହିଆ ଓ ଅଶୋକ ମେହେଟ୍ଟା । ଦୁହେଁ ଯଦି ଦୁଇଟି ବିଚାରର ମୁଖପାତ୍ର ବୋଲି ଧରାଯାଏ, ତେବେ ସମ୍ମିଳିତ ଭାବରେ ଯାହା ନିଷ୍ପତ୍ତି ହେବ, ତାହା ପାର୍ଟିର ସବୁ ମତକୁ ଘେନି ସ୍ଥିର କରାଯିବ । କମିସନକୁ କୁହାଗଲା—(୧) ପ୍ରଜା ସୋସଲିଷ୍ଟ ପାର୍ଟିର ଏକ କାର୍ଯ୍ୟକ୍ରମ ଏବଂ (୨) ସମାଜବାଦୀ ଭାରତ ଲାଗି ପ୍ରଥମ ପର୍ଯ୍ୟାୟରେ ସରକାରୀ କାର୍ଯ୍ୟକ୍ରମ କଣ ହେବ, ତାହା ସ୍ଥିର କରାଯିବା ନିମନ୍ତେ ।

## ସୋସଲିଷ୍ଟ ଲକ୍ଷ୍ୟ ଓ କାର୍ଯ୍ୟକ୍ରମ

ଆମେ ଆଦର୍ଶ ସମ୍ବନ୍ଧରେ ଖୁବ୍ ଉଚ୍ଚକୋଟିର ବାଖ୍ୟା କରିପାରୁ; ମାତ୍ର ଏହି ଲକ୍ଷ୍ୟ ହାସଲ ନିମନ୍ତେ ପନ୍ଥା ଓ କାର୍ଯ୍ୟକ୍ରମ ନିର୍ଦ୍ଦିଷ୍ଟ ନ ଥିଲେ ଏବଂ ସେ ଦିଗରେ ଗତି ନ ହେଲେ ଆଦର୍ଶ ପ୍ରାପ୍ତି ଏକ ଗୋଳମାଳିଆ ଢଙ୍ଗ ଧରିପାରେ । ଏହି ମତଲବରେ ନୂତନ ପଲିସି ନିର୍ଦ୍ଧାରଣ କରାଗଲା । ପ୍ରଜା ସୋସଲିଷ୍ଟ ପାର୍ଟି ଗଠନ ଯେଉଁ ମୌଳିକ ନୀତି ଓ ଆଦର୍ଶ ଉପରେ ପ୍ରତିଷ୍ଠିତ ହୋଇଥିଲା, ତାହାର ରୂପରେଖ ସ୍ଥିର କରିବା ନିମନ୍ତେ ଫୁରୁସତ୍ ବି ହୋଇନଥିଲା—ନାନା କ୍ଷୁଦ୍ର ବିବାଦରେ ଆମେ ଲିପ୍ତ ହୋଇଯାଇଥିଲୁ । ଏଲାହାବାଦ ସମ୍ମିଳନୀ ୧୯୫୩ ଡିସେମ୍ବର ମାସରେ ହେଲା ଏବଂ ସେଠାରେ ପଲିସି କମିସନର ରିପୋର୍ଟ ପେଶ ହେଲା ଓ ଗୃହୀତ ହୋଇଗଲା । ଏଥିରେ ପ୍ରଜା ସୋସଲିଷ୍ଟ ପାର୍ଟିର ସୋସଲିଷ୍ଟ ଆତ୍ମା ରହିଲା—ଏହାର ଭିବମୂର୍ତ୍ତି କଂଗ୍ରେସ ବିରୋଧୀ ଓ କମ୍ୟୁନିଷ୍ଟ ବିରୋଧୀ ବୋଲି ସ୍ପଷ୍ଟକରାଗଲା । କାର୍ଯ୍ୟକ୍ରମରେ ମଧ୍ୟ ସମାଜବାଦକୁ ଦୃଢ଼ କଲା ଭଳି ନିର୍ଦ୍ଦିଷ୍ଟ ସଙ୍କେତ ରହିଲା । ତେଣୁ ସୋସଲିଜମ୍ ପଥ ଛାଡ଼ିବାର ଆଶଙ୍କା ଦୂର ହୋଇଗଲା । ପାର୍ଟି ଲୋକଙ୍କ ମନରେ ଥିବା ଦ୍ୱନ୍ଦ୍ୱ ଓ ଆଶଙ୍କା ଦୂର ହେଲା । ଏହି ସମ୍ମିଳନୀରେ ଆଚାର୍ଯ୍ୟ କୃପାଳନୀ ସଭାପତି ଓ ରାମମନୋହର ଲୋହିଆ ସାଧାରଣ ସମ୍ପାଦକ ରହିଲେ । ମୁଁ ଏହି କାର୍ଯ୍ୟକାରୀ ସମିତିରେ ବି ସଭ୍ୟ ହୋଇ ରହିଲି । କୌଣସି ଅସୁବିଧାବଶତଃ ଏଥିରେ ମୁଁ ଯୋଗ ଦେଇପାରିନଥିଲି । ମାତ୍ର ସାରଙ୍ଗଧରବାବୁ ଓ ଅନ୍ୟ ସାଥିମାନେ ଉପସ୍ଥିତ ଥିଲେ । ପଲିସି କମିସନ ରିପୋର୍ଟ ଯେଉଁ ଜାତୀୟ କାର୍ଯ୍ୟକାରୀ କମିଟିରେ ଆଲୋଚନା ହୋଇଥିଲା, ସେଥିରେ ମୁଁ ଉପସ୍ଥିତ ଥିଲି ।

## ଓଡ଼ିଶାରେ ଆନ୍ଦୋଳନର ଅଗ୍ରଗତି

ଆଗରୁ ପାର୍ଟିରେ ଯେଉଁ ବିବାଦ କଥା ଉଲ୍ଲେଖ କଲି, ତାହା ଆମ ଓଡ଼ିଶା ପାର୍ଟିରେ କିଛି ପ୍ରଭାବ ପକାଇ ନ ଥିଲା । ଆମର ପାର୍ଟି ସାଥୀମାନେ ଗତ ସାଧାରଣ ନିର୍ବାଚନରେ ସାରା ପ୍ରଦେଶରେ ଯେଉଁ ସବୁ ସଂପର୍କ ସ୍ଥାପନ ହୋଇଥିଲା ତାକୁ ଦୃଢ଼ କରି ସଂଗଠନ ବଢ଼ାଇବାରେ ଲାଗିପଡ଼ିଲେ । ଆସେମ୍ବ୍ଲିରେ ଥିବା ସାଥୀମାନେ ପ୍ରଦେଶର ବିଭିନ୍ନ ସମସ୍ୟା ସମ୍ବନ୍ଧରେ ଏପରି ନିର୍ଭୀକ ଓ ଦୃଢ଼ଭାବରେ ମତ ପ୍ରକାଶ କଲେ ଯେ ପ୍ରକୃତ ସ୍ୱୀକୃତ ବିରୋଧୀ ଦଳ ଗଣତନ୍ତ୍ର ପରିଷଦ ବହୁତ ପଛକୁ ପଡ଼ିଗଲା । ପ୍ରଦେଶର ସାଧାରଣ ସମସ୍ୟା ସମ୍ବନ୍ଧରେ ଓଡ଼ିଶା ପାର୍ଟି ଯେତିକି ତତ୍ପରତା ଦେଖାଇଲା, ସେହିଭଳି କୃଷକ, ଶ୍ରମିକ ଓ ସାଂସ୍କୃତିକ କାର୍ଯ୍ୟରେ ମଧ୍ୟ ଅଗ୍ରଣୀ ହୋଇ ନୂତନ ସଂଗଠନ ଆରମ୍ଭ ହୋଇଗଲା ।

## ନେତାଙ୍କ ସହ ମୋର ଘନିଷ୍ଠତା

ଆମ ପକ୍ଷରେ ଆଉ ଏକ ସୁଯୋଗ ହେଲା ଯେ ପାର୍ଟିର ଉପର କନ୍ଦଲରେ ଆମେ କୌଣସି ଗୋଷ୍ଠୀଭୁକ୍ତ ହୋଇ ନଥିଲୁ । ଆଚାର୍ଯ୍ୟ କୃପାଳନୀଙ୍କ ସହ ମୋର ସେତେବେଳକୁ ଖୁବ୍

ଘନିଷ୍ଠତା ଜମି ନ ଥାଏ; ମାତ୍ର ସେ ଓ ସୁଚେତା କୃପାଳନୀ ଦୁହେଁ ମୋର ପରିଚିତ ଥିଲେ । ପାର୍ଟିର କାର୍ଯ୍ୟ ଫଳରେ ଏବଂ ପାର୍ଲିଆମେଣ୍ଟ ଯୋଗୁଁ ଆମେ କ୍ରମେ ଅତି ନିକଟତର ହୋଇଗଲୁ । ଅଶୋକ ଓ ମୁଁ ପ୍ରାୟ ସମବୟସ୍କ—ପୁଣି ସମଧର୍ମୀ ହେଲୁ । କେତେକ ବିଷୟରେ ଆମ ଭିତରେ ମତ ମିଳୁନଥିଲେ ବି ପରସ୍ପରକୁ ଭୁଲ ବୁଝିବାର କୌଣସି କାରଣ କେବେ ହୋଇନାହିଁ ଏବଂ ସୌହାର୍ଦ୍ଦ୍ୟ ଅକ୍ଷୁଣ୍ଣ ରହିଛି—ଏବେ ବି ୧୯୫୨ ନିର୍ବାଚନରେ ବମ୍ବେରେ ଲୋକସଭା ନିର୍ବାଚନରେ ସେ ପରାଜିତ ହେଲେ; ମାତ୍ର ପୁଣି ୧୯୫୪ରେ ମଧ୍ୟପ୍ରଦେଶର ଭଣ୍ଡାରା ନିର୍ବାଚନମଣ୍ଡଳୀରୁ ଉପନିର୍ବାଚନରେ ପ୍ରଥମ ଥରଲାଗି ଲୋକସଭାକୁ ଆସିଲେ । ସେତେବେଳେ ମାନ୍ଦ୍ରାଜର ଏକ ପୁସ୍ତକ ପ୍ରକାଶକ ଅଶୋକ ମେହେଟାଙ୍କ ସମ୍ବନ୍ଧରେ ଏକ ପ୍ରବନ୍ଧ ମୋଠାରୁ ଚାହିଁଥିଲେ । ଅନ୍ୟ କଥା ଭିତରେ ମୁଁ ଲେଖିଥିଲି, "ଅଶୋକ କିଛି କାଆଁ ଗିଲା ରାଜନୀତିକ ନୁହେଁ, ଗୁଜରାଟୀ ବଣିଅଙ୍କ ପରି ଭାରି ହିସାବୀ । ସେ ବହୁ ଚିନ୍ତା କରି ଏବେ ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ ସୋସଲିଷ୍ଟ ଆନ୍ଦୋଳନ କେବଳ ବିରୋଧ ଭୂମିକା ନ ନେଇ ଦେଶର ଆର୍ଥନୀତିକ ବିକାଶ ଦୃଷ୍ଟିରୁ ସହଯୋଗୀ ମନୋବୃତ୍ତି ନେବା ଉଚିତ । ଏହା ଅତି ଜରୁରୀ ଏବଂ ଏଥିଲାଗି ଆବଶ୍ୟକ ହେଲେ ପାର୍ଟି ସ୍ୱାର୍ଥକୁ ବି ଭୁଲିଯିବାକୁ ସେ ପ୍ରସ୍ତୁତ । ତାଙ୍କର ଏହି ତତ୍ତ୍ୱ ପାର୍ଟିରେ ଗୃହୀତ ହୋଇନାହିଁ; ତଥାପି ସେ ସେଦିଗରେ ଉଦ୍ୟମ ଅବ୍ୟାହତ ରଖିଛନ୍ତି । କେହି କେହି ଏହା ରାଜନୀତିକ ସୁବିଧାବାଦ ବୋଲି ଅପବାଦ ଦିଅନ୍ତି; ମାତ୍ର ସେ କିଛି ଗୋପନରେ କରୁନାହାନ୍ତି । ସେ ଜଣେ ଏପରି ଦେଶପ୍ରେମୀ ଓ ଅନୁରକ୍ତ ପାର୍ଟି ସଦସ୍ୟ ଯେ ପାର୍ଟି ଓ ଦେଶର ଅପଯଶ ହେଲା ଭଳି କୌଣସି କାର୍ଯ୍ୟ କରିନପାରନ୍ତି—ଏଥିଲାଗି ଅନ୍ୟ ପାର୍ଟି ସାଥୀଙ୍କ ସହ ଅମେଳ ଘଟିଛି; ମାତ୍ର ସେ ସମାଜବାଦୀ କାର୍ଯ୍ୟକ୍ରମ ତ୍ୟାଗ କରିନାହାନ୍ତି । ଦେଶର ଭବିଷ୍ୟତ କି ରୂପ ନେବ କହିବା କଷ୍ଟକର; ମାତ୍ର ଅଶୋକ ଯେ ଦେଶ ଗଠନରେ ମହାନ୍ ଅଂଶ ଗ୍ରହଣ କରିବେ, ଏଥିରେ ସନ୍ଦେହ ନାହିଁ ।" ମୁଁ ଏହି ଲେଖା ପଠାଇବା ପୂର୍ବରୁ ଅଶୋକର ମନ୍ତବ୍ୟ ଚାହିଁଲି, କାରଣ ଆମ ଭିତରେ ଯେପରି କିଛି ଭୁଲ ବୁଝାମଣା ନ ଜନ୍ମେ । ଅଶୋକ ଏହା ଉପରେ ମନ୍ତବ୍ୟ ଦେଇ ଲେଖିଲା—"Dear Surendra, It is ably done. Of course you cannot expect me to agree with some of your observations—particularly where you praise me. As far as criticisms are concerned, they are legitimate." ଅର୍ଥାତ୍ ସେ ମୋର ସବୁ କଥାରେ ସମ୍ମତ ନ ଥିଲେ ସୁଦ୍ଧା ମୁଁ ତାର ଯେ ସମାଲୋଚନା କରିଥିଲି, ତାହା ଯଥାର୍ଥ ଏବଂ ଲେଖାଟି ବଡ ଦକ୍ଷତାର ସହିତ କରାଯାଇଛି । ଏକଥା ଦର୍ଶାଇବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଯେ, ଆମେ ସବୁ ଯେଉଁମାନେ ସୋସଲିଷ୍ଟ ଆନ୍ଦୋଳନରେ ମୂଳରୁ ରହିଛୁ ଆମ ଭିତରେ ମତଭେଦ ହୋଇଥିଲା; ମାତ୍ର ବ୍ୟକ୍ତିଗତ ସମ୍ପର୍କ ତୁଟିନଥିଲା । ଏପରିକି ଅଶୋକ ଯେତେବେଳେ କଂଗ୍ରେସରେ ଯୋଗଦେଇ ମନ୍ତ୍ରୀ ହେଲା; ମୋ ଝିଅ ମୋ ପାଖରେ

ଦିଲ୍ଲୀରେ ରହୁଥିଲା; ମୁଁ ବାହାରକୁ ଗଲେ, ଅଶୋକ ପାଖରେ ତାକୁ ଛାଡ଼ି ଦେଇ ଯାଉଥିଲି ।

ଜୟପ୍ରକାଶଙ୍କ ସହିତ ସମ୍ପର୍କ କଥା ବୋଧହୁଏ ଆଗରୁ ଏଥିରେ ଉଲ୍ଲେଖ କରିଛି—ଦ୍ୱିରୁକ୍ତି କରି ଲାଭ ନାହିଁ । ତାହା ଥିଲା ରାଜନୀତିକ ଘନିଷ୍ଠ ବ୍ୟକ୍ତିଗତ ସଂପର୍କ । ସେଥିଲାଗି ଆମମାନଙ୍କୁ ଛାଡ଼ି ସେ ଭୂଦାନରେ ଯୋଗ ଦେଲା ପରେ ବି ସବଂଦା ସାଧାରଣ ସଭାରେ କହୁଥିଲେ, "ମୋର ପରମ ପ୍ରିୟ ମିତ୍ର ସୁରେନ୍ ବାବୁ ।" ଆମର ପରସ୍ପର ପ୍ରତି ଭକ୍ତି ଓ ବିଶ୍ୱାସ ଅପରିସୀମ ରହିଥିଲା ।

ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କର ମୁଁ ଏପରି ବିଶ୍ୱାସଭାଜନ ହୋଇଥିଲି ଯେ, ଯେତେବେଳେ ପାର୍ଟି ବିଭାଜନ ହୋଇଗଲା, ସେଥିରେ ସେ ମୋ ଉପରେ ବହୁପରିମାଣରେ ନିର୍ଭର କରିଥିଲେ । ତାଙ୍କ ସ୍ତ୍ରୀ ଓ ପୁତ୍ର ତାଙ୍କର ମୃତ୍ୟୁ ପରେ ଦିଲ୍ଲୀରେ ମୋ ସହିତ କିଛିଦିନ ଏକାଠି ବାସକରୁଥିଲେ ।

ଡକ୍ଟର ଲୋହିଆଙ୍କ ସହିତ କିଏ ବା ବନ୍ଧୁତା କରିବାକୁ ନ ଚାହିଁବ ? କେତେ ଜଣ ତାଙ୍କ ପରି ଉଦାର ଓ ଉଦାସୀନ ଅଛନ୍ତି ? ଆମ ଭିତରେ ରାଜନୀତିକ ଚିନ୍ତାରେ ଖୁବ୍ ମେଳ ଥିଲା; ବ୍ୟକ୍ତିଗତ ଶ୍ରଦ୍ଧା ଓ ପ୍ରୀତିଭାବ ରହିଥିଲା । ମୁଁ ରାଜ୍ୟସଭାରେ ଥିବାବେଳେ ସେ ଯେତେବେଳେ ଦିଲ୍ଲୀ ଆସୁଥିଲେ, ବାରଖମ୍ବା ରୋଡ଼ରେ ପଦମ୍ ସିଂହ ଘରେ ଆମେ ଦି'ଜଣ କେତେ ସକାଳ ଯେ ଏକାଠି ନ କଟାଇଥିଲୁ ! ପ୍ରକାଶ୍ୟ ଓ ଅପ୍ରକାଶ୍ୟ ତାଙ୍କର ବ୍ୟକ୍ତିଗତ ଜୀବନ କାହାଣୀ ସମ୍ବନ୍ଧରେ ମୋର କେତେକ ପ୍ରତ୍ୟକ୍ଷ ଜ୍ଞାନ ରହିଛି ।

ତେଣୁ ମୋଟାମୋଟି ଉପରେ ସେତେବେଳେ ମୁଖ୍ୟଥିବା ସବୁ ନେତାଙ୍କ ସହ ମୋର ସଦ୍‌ଭାବ ରହିଥିବାରୁ ଓଡ଼ିଶା ପାର୍ଟି ଉପରର ଅଭ୍ୟନ୍ତରୀଣ ଦ୍ୱନ୍ଦ୍ୱର ବାହାରେ ବହୁକାଳ ରହିପାରିଥିଲି । ଡକ୍ଟର ଲୋହିଆ ସାଧାରଣ ସମ୍ପାଦକ ହେଲାପରେ ମୁଁ ତାଙ୍କୁ ଓଡ଼ିଶା ଗସ୍ତରେ ଆଣିଲି ଏବଂ ୧୯୫୪ ମସିହା ଜାନୁଆରୀ ୨୬, ୨୭ ଓ ୨୮ ତାରିଖରେ ଓଡ଼ିଶା ପ୍ରଜା ସୋସଲିଷ୍ଟ ପାର୍ଟିର ଯେ ପ୍ରଥମ ଅଧିବେଶନ ବଲାଙ୍ଗୀରରେ କରାଗଲା, ସେଥିରେ ସେ ଯୋଗଦେଇଥିଲେ । ତାପୂର୍ବରୁ ସେ ଥରେ କଟକ ଓ ବାଲେଶ୍ୱର ଆସିଥିଲେ—ସୋସଲିଷ୍ଟ ପାର୍ଟି କଂଗ୍ରେସ ତ୍ୟାଗ କରିବାପରେ । ମାତ୍ର ପଶ୍ଚିମ ଓ ଦକ୍ଷିଣ ଓଡ଼ିଶାକୁ କେବେ କେହି ଆସି ନଥିଲେ ଏବଂ ସେ ସବୁ ଅଞ୍ଚଳର ପରିସ୍ଥିତି ଦେଖି ସେ ଆଶ୍ଚର୍ଯ୍ୟ ହୋଇଥିଲେ । କୋରାପୁଟର ଜୟପୁର ଡାକବଙ୍ଗଳାରେ ଆମେ ଦେଶ ଓ ସୋସଲିଷ୍ଟ ଆନ୍ଦୋଳନ ସମ୍ବନ୍ଧରେ କଥା ହେଉଁ ହେଉଁ ରାତି ପାହି ଯାଇଥିଲା । ସେ ଥିଲେ ଅବିବାହିତ; ମୁଁ ଥିଲି ବିପତ୍ନୀକ । ବ୍ୟକ୍ତିଗତ ଜୀବନ ଗାଥା ମଧ୍ୟ ଯାହାସବୁ ସେ କହିଥିଲେ, ତାହା ସ୍ମରଣ କଲେ ଲୋହିଆଙ୍କର ହୃଦୟ କେଡ଼େ କୋମଳ ଏବଂ ଦରଦୀ ତାହା ଜଣାପଡ଼େ । ସେଥିଯୋଗୁଁ ତାଙ୍କର କିଛି ଗୋପନୀୟ ମୁଁ ନଜାଣିବା କଥା ମଧ୍ୟ କହିବାଲାଗି କୁଣ୍ଠାବୋଧ କରୁନଥିଲେ । ଜୟପ୍ରକାଶଙ୍କ ସମ୍ବନ୍ଧରେ ଆମେ ଦୁଜଣ ବହୁଥର ନାନା କଥା ହୋଇଥିଲୁ । ମୋର ତାଙ୍କ ସହ ଏତେ ବନ୍ଧୁତା

ସତ୍ତ୍ୱେ ମୁଁ ତାଙ୍କୁ କହିଦେଇଥିଲି—ଯଦି କେବେ ବ୍ୟକ୍ତି ବିଗ୍ରହ ଅର୍ଥାତ୍ ଜୟପ୍ରକାଶ କମ୍ବା ତୁମ ସହିତ ଯିବା ପ୍ରସଙ୍ଗ ଉଠେ, ନିଶ୍ଚିତ ଭାବରେ ମୁଁ ଜୟପ୍ରକାଶଙ୍କ ପକ୍ଷ ନେବି । ତେଣୁ ନାଗପୁର ସମ୍ମିଳନୀରେ କେବଳ ଗୁଳିକାଣ୍ଡ ନେଇ ଯେଉଁ ବିବାଦ ଉଠିଥିଲା, ସେଥିରେ ସେ ମୋର ସମର୍ଥନ ନପାଇ ଅଙ୍ଗ୍ରେଜିରେ ମୁଁ ରହୁଥିବା ସ୍ଥାନକୁ ଆସି କହିଥିଲେ—"ଏଥରକ ଯାହା ହେବାର ହୋଇଗଲା—ଆଉ ୭ ମାସ ପରେ ତତେ ମୋ ସାଙ୍ଗରେ ଆସିବାକୁହିଁ ପଡ଼ିବ ।" ସେ ବୋଧହୁଏ ଭିନ୍ନ ପାର୍ଟି ଗଠନର କଳ୍ପନା ସେତିକିବେଳେ ମନରେ ରଖିଥିଲେ ।

## ବଲାଙ୍ଗୀର ସମ୍ମିଳନୀରେ ମୋର ଭାଷଣ

ବଲାଙ୍ଗୀରଠାରେ ମୁଁ ଯେଉଁ ସଭାପତି ଅଭିଭାଷଣ ଦେଇଥିଲି, ସେଥିରେ କହିଥିଲି—"ଆମକୁ ମନେରଖିବାକୁ ହେବ, ଆଜି ଦୁଇଦିଗରୁ ଆମ ଉପରେ ଆକ୍ରମଣ ଚାଲିଛି । ଆମର ନୀତି ଓ ଆଦର୍ଶ ଠିକ୍ ନାହିଁ ବୋଲି ବାରମ୍ବାର କୁହାଯାଉଛି । କଂଗ୍ରେସ ଓ କମ୍ୟୁନିଷ୍ଟଦଳ ସୁପ୍ରତିଷ୍ଠିତ । ସେମାନଙ୍କ ପଛରେ ସରକାରୀ କ୍ଷମତା ଓ ସାମରିକ ଶକ୍ତି ରହିଛି । ତେଣୁ ଖାଲି ପ୍ରଚାରରେ ଏଗୁଡ଼ିକୁ କେହି ଭାଙ୍ଗି ପାରିବ ନାହିଁ । କିନ୍ତୁ ଆମେ ଅର୍ଥାତ୍ ପ୍ରଜା ସୋସଲିଷ୍ଟ ପାର୍ଟି ଏକ ଐତିହାସିକ କାଳର ଅଭାବ ପୂରଣ ନିମନ୍ତେ ଉଦ୍ୟମ କରୁଛୁ; ଏହି ଦୁଇ ପାର୍ଟିକୁ ଚାଲେଞ୍ଜ କରିବା ଶକ୍ତିରୂପେ କ୍ରମେ ସୁଦୃଢ଼ ହେଉଛୁ । ତେଣୁ ଏହାକୁ ଭାଙ୍ଗିଦେଇ ନିଜ ନିଜ ଦଳରେ ମିଶାଇ ନେବା ନିମନ୍ତେ ବରାବର ଉଦ୍ୟମ ଚାଲିଛି ଓ ଚାଲୁଥିବ । ହୁଏତ ଏହାର ସାମୟିକ ପ୍ରଭାବ କେତେକ ଦୁର୍ବଳ ଲୋକଙ୍କ ଉପରେ ପଡ଼ିପାରେ, କେତେକ କ୍ଷେତ୍ରରେ ପଡ଼ୁଛି ମଧ୍ୟ । କିନ୍ତୁ ଆମେ ଯେଉଁମାନେ ଏ ଦେଶରେ ଏକ ନୂଆ ଆଦର୍ଶ, ସଭ୍ୟତା, ସଂସ୍କୃତି ଲାଗି ଜୀବନ ପଣ କରିଛେ ଏବଂ ସେହି ଉଦ୍ଦେଶ୍ୟରେ ଆଜି ପର୍ଯ୍ୟନ୍ତ ଏତେ ଦୁଃଖକଷ୍ଟ ସହ୍ୟକରି ଆସିଛେ, ଆମ ଭିତରେ ସେହିପରି ଦମ୍ଭ, ସାହସ ଓ ଧୈର୍ଯ୍ୟ ରହିବା ଦରକାର ଯେପରିକି ଆମେ ଏସବୁ ପ୍ରତିକୂଳ ଅବସ୍ଥାର ସମ୍ମୁଖୀନ ହୋଇପାରିବା ଏବଂ ଆମର ଗନ୍ତବ୍ୟ ପଥରେ ଅବିଚଳିତ ଭାବରେ ଯାତ୍ରା କରିପାରିବା ।" ଆମର ଓଡ଼ିଶା ଆସେମ୍ବ୍ଲିକୁ ଯେଉଁ ୧୦ ଜଣ ସୋସଲିଷ୍ଟ ସଦସ୍ୟ ନିର୍ବାଚିତ ହୋଇଥିଲେ, ତହିଁରୁ ଗିରୀଶଚନ୍ଦ୍ର ରାୟ ଯାଇ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଇଥିବାରୁ ତାହାକୁ ଲକ୍ଷ୍ୟକରି ମୁଁ ଏକଥା କହିଥିଲି ।

## ଓଡ଼ିଶା ଖାଦ୍ୟର ପ୍ରଶଂସା

ବଲାଙ୍ଗୀରରେ ଶରତ୍‌ଚନ୍ଦ୍ର ପାଣିଗ୍ରାହୀଙ୍କ ଘରେ ଲୋହିଆଙ୍କର ନିରାମିଷ ଭୋଜନ ନିମନ୍ତେ ବହୁପ୍ରକାର ବ୍ୟଞ୍ଜନ କରାଯାଇଥିଲା । ଏତେପ୍ରକାର ଖାଦ୍ୟଦ୍ରବ୍ୟ ଦେଖି ଲୋହିଆ କହିଲେ ଓଡ଼ିଶାରେ ନିରାମିଷ ଭୋଜନ ଯେ ଏସବୁ ରହିଛି, ତାହା ଭାରତରେ କେଉଁଠି ନାହିଁ ଏବଂ ଏହା କିପରି ପୁଷ୍ଟିକର ଏଥିନିମନ୍ତେ ଗବେଷଣା ହେବା ପ୍ରୟୋଜନ । ସେହିପରି ମୟୂରଭଞ୍ଜର

ବାରିପଦାଠାରେ ନାନାବିଧ ପିଠାର ଭୋଜନ ଜୟପ୍ରକାଶଜୀଙ୍କ ଲାଗି ମୋର ବନ୍ଧୁ ବ୍ରଜବନ୍ଧୁ ରଥଙ୍କ ଘରେ ବ୍ୟବସ୍ଥା ହୋଇଥିଲା । ଜେ. ପି. ଦେଖି ପ୍ରଭାବତୀଙ୍କ କହିଲେ—ଗ୍ରାମାଞ୍ଚଳରେ ଏତେ କିସମ୍‌ର ଜିନିଷ ତିଆରି ହୋଇପାରେ, ଏହା ଅନୁଧ୍ୟାନ କରିବାଯୋଗ୍ୟ । ଖାଦ୍ୟଟା ପୁରାପୁରି ନିଜର ଅଭ୍ୟାସ, ରୁଚି ଓ ସମାଜର ରୀତିନୀତି ସହ ସମ୍ପୃକ୍ତ । ସେମିତି ଓଡ଼ିଶା ଗସ୍ତବେଳେ ମୁଁ, ଜୟପ୍ରକାଶ ଓ ପ୍ରଭାବତୀ ପ୍ରାୟ ଏକାଠି ଯାଉଥିଲୁ । ଏତେ କାର୍ଯ୍ୟକ୍ରମ ଯେ ଖାଇବାଲାଗି ବେଳେବେଳେ ଫୁରସତ୍ ମିଳୁନଥିଲା । ପ୍ରଭାବତୀ ଦେଖା ସଙ୍ଗରେ କିଛି ଫଳ ଓ କମଳାଲେମ୍ବୁ ରଖିଥିଲେ । ଥରେ ମୋ ହାତକୁ ଗୋଟିଏ କମଳାଲେମ୍ବୁ ବଢ଼ାଇଦେବାରୁ ମୁଁ କହିଲି, "ମତେ କଣ ଜ୍ୱର ହୋଇଛି ଯେ ମୁଁ କମଳା ଖାଇବି ?" ଦୁହେଁଯାକ ସ୍ତମ୍ଭୀଭୂତ ହୋଇଗଲେ । ଆମେ ଓଡ଼ିଶାରେ ବେମାର ଅବସ୍ଥାରେ ହିଁ ଯେ କେବଳ ଫଳ ଖାଉ ଓ ପାଉ ବୋଲି କହିବାରୁ ତାଙ୍କୁ ଚାଟକା ଲାଗିଲା । ଆମେ ଯେଉଁ ଖାଦ୍ୟ ଖାଉ, ସେଥିରେ କିଛି ଶକ୍ତି ନଥାଏ ।

## ଟି. ପ୍ରକାଶମ୍‌ଙ୍କ ପାର୍ଟି ତ୍ୟାଗ

ଏଲାହାବାଦରେ ବାର୍ଷିକ ସମ୍ମିଳନୀ ୧୯୫୩ ଡିସେମ୍ବର ମାସରେ ହେବା ଆଗରୁ ଦୁଇଟି ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣା ଘଟିଗଲା । ତହିଁରେ ପାର୍ଟିର ଭାବମୂର୍ତ୍ତିରେ କେତେକ ପରିମାଣରେ ଆଞ୍ଚ ଆସିଲା । ଆନ୍ଧ୍ରରେ କଂଗ୍ରେସ ସରକାର ଗଠନ କରିବାର ଉଦ୍ୟମ କଲା ଏବଂ ଟି. ପ୍ରକାଶମ୍‌ଙ୍କ ସହ ଏଥିଲାଗି କଥାବାର୍ତ୍ତା ଆରମ୍ଭ କଲା । ଟି. ପ୍ରକାଶମ୍ ନେହରୁଙ୍କ ସହ ଆଲୋଚନା କାର୍ଯ୍ୟକାରୀ ସମିତିର ସେପ୍‌ଟେମ୍ବର ୧୭ରୁ ୧୮ ପର୍ଯ୍ୟନ୍ତ ହେଉଥିବା ଦିଲ୍ଲୀ ବୈଠକରେ ରିପୋର୍ଟ କଲେ । ସେଥିରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରାଯିବ ଏବଂ ଟି. ପ୍ରକାଶମ୍ ତହିଁର ନେତୃତ୍ୱ ନେବାର ପ୍ରସ୍ତାବ ଉଠିଥିଲା । ପାର୍ଟି ଏ ପ୍ରସ୍ତାବକୁ ପ୍ରତ୍ୟାଖାନ କଲା ଏବଂ ପ୍ରକାଶମ୍‌ଙ୍କୁ ଏଥିଲାଗି ଅନୁମତି ଦେଲାନାହିଁ କିମ୍ବା ପାର୍ଟିରୁ ମୁକ୍ତ ଦେଲାନାହିଁ । ଏହା ସଙ୍ଗେ ସଙ୍ଗେ ଆନ୍ଧ୍ର ନୂତନ ପ୍ରଦେଶ ହୋଇଥିବାରୁ ସେଠାରେ ଅନ୍ୟ ପାର୍ଟିମାନଙ୍କ ସହ ମିଳିତ ମନ୍ତ୍ରିମଣ୍ଡଳ ଗଠନର ପକ୍ଷପାତୀ ଥିଲା । ମାତ୍ର ଦୁଃଖର କଥା ଯେ, ପାର୍ଟି ଏ ସମ୍ପର୍କରେ ପୂର୍ଣ୍ଣ ଭାର ପ୍ରକାଶମଙ୍କ ଉପରେ ନ୍ୟସ୍ତ କରିଥିବା ବେଳେ ସେ ନେହରୁ ଓ କଂଗ୍ରେସଦଳ ସହ ଆଲୋଚନା କରି କଂଗ୍ରେସ ମନ୍ତ୍ରିମଣ୍ଡଳର ନେତୃତ୍ୱ ତାଙ୍କୁ ଦିଆଯାଇଛି ଏବଂ ତେଣୁ ଏହାର ନେତୃତ୍ୱ ପି. ଏସ୍. ପି. ପାଇଲା ଓ ଏହାକୁ ମିଳିତ ମନ୍ତ୍ରିମଣ୍ଡଳ ଧରିଯାଇ ତାଙ୍କୁ ଅନୁମତି ଦେବା ନିମନ୍ତେ ପାର୍ଟି ଆଗରେ ପ୍ରାର୍ଥନା କଲେ । ପାର୍ଟି ନାସ୍ତି କରିବାରୁ ସେ ପ୍ରଜା ସୋସଲିଷ୍ଟ ପାର୍ଟି ତ୍ୟାଗ କଲେ । ଏଥିରେ ଆନ୍ଧ୍ର ପାର୍ଟି ଏକ ଧକ୍‌କା ପାଇଲା ଏବଂ ସାରା ଭାରତରେ ଏହାର ଏକ ଖରାପ ପ୍ରଭାବ ପଡ଼ିଲା । ମାତ୍ର ଅକ୍‌ଟୋବର ମାସରେ ପୁଣି କାର୍ଯ୍ୟକାରୀ ସମିତି ବସି ଏହାର ତୀବ୍ର ନିନ୍ଦା କଲା ଏବଂ ପ୍ରକାଶମ୍‌ଙ୍କ କାର୍ଯ୍ୟ "ସାଧାରଣ ଜୀବନରେ ଏକ ନିନ୍ଦନୀୟ ଆଚରଣ" (Deplorable standard of public

conduct) ବୋଲି ଘୋଷଣା କଲା । ଏହି ବୈଠକରେ ଆଚାର୍ଯ୍ୟ କୃପାଲନୀ, ନରେନ୍ଦ୍ର ଦେବ, ଜୟପ୍ରକାଶ ନାରାୟଣ, ରାମ ମନୋହର ଲୋହିଆ, ପଟ୍ଟମ୍ ଥାନୁ ପିଲ୍ଲାଇ ପ୍ରଭୃତି ଉପସ୍ଥିତଥିଲେ ।

## କେରଳ ଲାଗି ନୂଆ ନୀତି

ସେତେବେଳକୁ କେରଳରାଜ୍ୟ ଗଠିତ ହୋଇନଥାଏ । ତ୍ରାବାଙ୍କୋର କୋଚିନ ଷ୍ଟେଟ୍‌ର ନାମ ଥିଲା । ସେଠିକାର ବିଶେଷ ପରିସ୍ଥିତିକୁ ବିଚାରକୁ ନେଇ ସେଠାକାର ଆସେଂବ୍ଲି ଲାଗି ହେବାକୁ ଥିବା ସାଧାରଣ ନିର୍ବାଚନରେ ତ୍ରିମୁଖୀ ପ୍ରତିଦ୍ୱନ୍ଦ୍ୱିତାକୁ ଏଡ଼ିବା ଲାଗି ନିର୍ଦ୍ଦେଶ ଦିଆଗଲା । ଏହା ଫଳରେ ପାର୍ଟି ସେଠାରେ କମ୍ୟୁନିଷ୍ଟ ଓ ଅନ୍ୟ ପାର୍ଟିଙ୍କ ସହ ବୁଝାମଣା କରି ନିର୍ବାଚନ ଲଢ଼ିଥିଲା । ମାତ୍ର ନିର୍ବାଚନରେ କଂଗ୍ରେସ ଓ କମ୍ୟୁନିଷ୍ଟ ପାର୍ଟି କେହି ବହୁମତ ନପାଇବାରୁ ପି. ଏସ୍. ପି. ଏକ ବିଚିତ୍ର ପନ୍ଥା ଧରିଲା । ନିର୍ବାଚନ ଫଳରୁ ଦେଖାଗଲା, ଆସେଂବ୍ଲିର ସଭ୍ୟ ସଂଖ୍ୟା ମୋଟ ୧୧୧ରୁ କଂଗ୍ରେସ ପାଇଥିଲା ୪୫, କମ୍ୟୁନିଷ୍ଟ ପାର୍ଟି ୪୦ ଏବଂ ପ୍ରଜା ସୋସଲିଷ୍ଟ ପାର୍ଟି ୧୯ । ବାକୀ ସବୁ ପାଇଥିଲେ କେତେକ ଛୋଟ ଛୋଟ ପାର୍ଟି ଏବଂ ସ୍ୱାଧୀନ ସଭ୍ୟ । ତିନିଟିଯାକ ବଡ଼ ପାର୍ଟି କେହି କାହା ସହିତ ମିଶିବାକୁ ପ୍ରସ୍ତୁତ ନ ଥିବାରୁ ଏବଂ ଏକାକୀ ମନ୍ତ୍ରିମଣ୍ଡଳ ଗଢ଼ିବାଲାଗି ସମର୍ଥ ହୋଇ ନ ଥିବାରୁ, ଏକ ଅଚଳ ଅବସ୍ଥା ସୃଷ୍ଟି ହେଲା । ପ୍ରଜା ସୋସଲିଷ୍ଟ ପାର୍ଟି, କମ୍ୟୁନିଷ୍ଟ ପାର୍ଟି ଓ ଅନ୍ୟାନ୍ୟ ଦଳ ସହ ତ୍ରିମୁଖୀ ପ୍ରତିଦ୍ୱନ୍ଦ୍ୱିତା ଏଡ଼ାଇବା ଲାଗି ଏବଂ କଂଗ୍ରେସକୁ ପରାସ୍ତ କରିବା ନିମନ୍ତେ ବ୍ୟବସ୍ଥା କରିଥିଲା—ମାତ୍ର ନିର୍ବାଚନ ପରେ ମନ୍ତ୍ରିମଣ୍ଡଳ ଗଠନର ପ୍ରତିଶ୍ରୁତି ଦେଇନଥିଲା । କମ୍ୟୁନିଷ୍ଟ ପାର୍ଟି ସରକାର ଗଢ଼ିବାକୁ ଆହ୍ୱାନ ପାଇଲେ କେତେକ ସର୍ତ୍ତରେ ବାହାରେ ଥାଇ ସେମାନଙ୍କୁ ସମର୍ଥନ ଦେବାକୁ ସ୍ଥିର କଲା । ମାତ୍ର ତାହା ବି ସମ୍ଭବ ହେଲା ନାହିଁ ।

## ଭାରତରେ ପ୍ରଥମ ଅଳ୍ପସଂଖ୍ୟକ ମନ୍ତ୍ରିମଣ୍ଡଳ

ଏ ସଂପର୍କରେ ପି. ଏସ୍. ପି.ର ନୀତି ନିର୍ଦ୍ଧାରଣ ନିମନ୍ତେ ମାର୍ଚ୍ଚ ମାସ ୧୦, ୧୧ ଓ ୧୨ ତାରିଖରେ ଜାତୀୟ କାର୍ଯ୍ୟକାରୀ କମିଟିର ବୈଠକ ମାନ୍ଦ୍ରାଜଠାରେ ବସିଲା । ଏହି ବୈଠକରେ ଆଚାର୍ଯ୍ୟ କୃପାଲନୀ, ଅଶୋକ ମେହେଟା, ରାମମନୋହର ଲୋହିଆ, କେ. କେଲପ୍‌ପନଙ୍କ ସହିତ ମୁଁ ବି ଯୋଗ ଦେଇଥିଲି । ଆଚାର୍ଯ୍ୟ ନରେନ୍ଦ୍ର ଦେବ ଓ ଜୟପ୍ରକାଶ ନାରାୟଣ ଯୋଗ ଦେଇ ପାରି ନ ଥିଲେ । ଦୁହେଁଯାକ ତାର ଓ ଚିଠି ପଠାଇ ଜଣାଇଦେଇଥିଲେ ଯେ କଂଗ୍ରେସ ମନ୍ତ୍ରିମଣ୍ଡଳକୁ ସମର୍ଥନ କରିବା ବା ସହାୟ କରିବା କିମ୍ବା କମ୍ୟୁନିଷ୍ଟ ପାର୍ଟି ସହ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବା ଅନୁଚିତ । ନିର୍ଦ୍ଦିଷ୍ଟ ଭାବରେ କଣ ହେବ ସେ ସମ୍ବନ୍ଧରେ କେତେକ କଥା ଉଲ୍ଲେଖ କରି ସମସ୍ତଙ୍କ ବିଚାର ଲାଗି ଛାଡ଼ି ଦେଇଥିଲେ । ଆମେମାନେ ତିନୋଟିଯାକ ଯାବତୀୟ ବିକଳ୍ପ ଖୋଜିଲୁ । ଅନ୍ୟ ଦେଶର ଏ

ସଂବିଧାନ ବ୍ୟବସ୍ଥାର ନଜର ବାହାର କରିବାକୁ ଚେଷ୍ଟା କଲୁ । ଏହା ସଙ୍ଗେ ସଙ୍ଗେ ସ୍ଥାନୀୟ ଲୋକଙ୍କର ବିଗୃହ ହେଲା, ଆମେ କଂଗ୍ରେସକୁ ସଂଖ୍ୟାନ୍ୟୂନ କରିପାରିଥିଲାବେଳେ ଏକ ସରକାର ଗଠନରେ ଅସମର୍ଥ ହେଲେ, ଆସନ୍ତା ନିର୍ବାଚନରେ ଲୋକେ ଆମକୁ ତ୍ୟାଗ କରିବାର ଯଥେଷ୍ଟ କାରଣ ରହିବ । ତେଣୁ ସେ ଆଡ଼କୁ ବିଗୃହ କରି ସର୍ବସମ୍ମତିକ୍ରମେ ନିମ୍ନଲିଖିତ ପ୍ରସ୍ତାବ ଧାର୍ଯ୍ୟ ହେଲା— "ଯଦି ପି. ଏସ୍. ପି.କୁ ଏକୁଟିଆ ସରକାର ଗଠନ ନିମନ୍ତେ ଡକାଯାଏ, ତାହାହେଲେ ଏହା ତ୍ରାଭାଙ୍କୋର-କୋଚିନରେ ସରକାର ଗଠନ ନିମନ୍ତେ ପ୍ରସ୍ତୁତ ଅଛି ।"

## ମନ୍ତ୍ରିମଣ୍ଡଳ ଗଠନ କିପରି ସମ୍ଭବ ହେଲା

ଏକ ବିଚିତ୍ର ପ୍ରସ୍ତାବ—୧୧୧ ସଭ୍ୟ ଥିବା ଆସେମ୍ବ୍ଲିରେ ୧୯ ଜଣ କେମିତି ସରକାର ଚଳାଇପାରିବେ ଓ ଗଠନ କରିବେ, ଏହା ସମସ୍ତଙ୍କୁ ଚକିତ କରିଦେଲା । ପି. ଏସ୍. ପି.ର ବିଗୃହ ହେଲା, ଏକ ବିଚିତ୍ର ପରିସ୍ଥିତିର ବିଚିତ୍ର ସମାଧାନ ସମ୍ଭବ । ଆମେ କାହା ସହ ମିଶିବୁ ନାହିଁ । ସରକାରକୁ ଯଦି ଆସେମ୍ବ୍ଲିରେ ବହୁମତ ନ ମିଳିବ ତେବେ ଏହା ଭାଙ୍ଗିଯିବ । ମାତ୍ର ଆସେମ୍ବ୍ଲିକୁ ସେଥିଲାଗି ଥରେ ସୁଯୋଗ ନ ଦିଆଯାଇ କେବଳ ଅଧିକ ସଂଖ୍ୟା ପାଇଥିବା ଦଳଗୁଡ଼ିକ ଏ ଦାୟିତ୍ୱ ତୁଲାଇବାକୁ ପ୍ରସ୍ତୁତ ନୁହନ୍ତି ବୋଲି ତ୍ରାଭାଙ୍କୋର-କୋଚିନ ବାସୀଙ୍କୁ ଏକ ଲୋକପ୍ରତିନିଧି ସରକାର ସ୍ଥାପନାରୁ ବଞ୍ଚିତ କରିବା ଠିକ୍ ହେବ ନାହିଁ । କିନ୍ତୁ ଏ ବିଷୟରେ ନିର୍ଭର ନ ହେବା ପର୍ଯ୍ୟନ୍ତ ଗଭର୍ଣ୍ଣର କୌଣସି ଦଳକୁ ଡାକିବେ କେମିତି ? ଏହା ଏକ ପ୍ରହେଳିକା ସୃଷ୍ଟି କଲା । ମାତ୍ର ପି. ଏସ୍. ପି. ନିଜ ମତରେ ଦୃଢ଼ ରହିଲା ଓ କଂଗ୍ରେସ ପାର୍ଟି କିମ୍ବା କମ୍ୟୁନିଷ୍ଟ ପାର୍ଟି କାହାର ସମର୍ଥନ ଭିକ୍ଷା କଲା ନାହିଁ । ପାର୍ଟି ଚେୟାରମ୍ୟାନ୍ ଆଚାର୍ଯ୍ୟ କୃପାଲାନି ଏହା ଘୋଷଣା କରିଦେଲେ । ଭାରତର ଚତୁର ରାଜନୀତିଜ୍ଞ ରାଜଗୋପାଲାଚାରୀ କିନ୍ତୁ ଏପରି ଏକ ଅଭିନବ ମନ୍ତ୍ରିମଣ୍ଡଳ ଗଠନ ଲାଗି କଂଗ୍ରେସ ନେତୃତ୍ୱକୁ ବୁଦ୍ଧି ବତାଇଦେଲେ । କେଲପ୍ପନ ଥିଲେ ଅତି ପୁରାତନ ଗାନ୍ଧିବାଦୀ ଓ ରାଜଗୋପାଲାଚାରୀଙ୍କ ସମସାମୟିକ । ସେ ତାଙ୍କୁ ଟେଲିଫୋନ୍‌ରେ ଡକାଇନେଇ ସବୁ କଥା ଶୁଣିଲେ ଏବଂ ଦିଲ୍ଲୀରେ ନେହରୁ ଓ କଂଗ୍ରେସ କର୍ତ୍ତୃପକ୍ଷଙ୍କୁ ଜଣାଇଦେଲେ ଯେ କମ୍ୟୁନିଷ୍ଟଙ୍କ ହାତରୁ ଦେଶକୁ ରକ୍ଷା କରିବାକୁ ହେଲେ ଏବଂ ଏକ ସଂବିଧାନ ସମ୍ମତ ସରକାର ଚଳାଇବାକୁ ହେଲେ ପି. ଏସ୍. ପି. ଯେଉଁ ପନ୍ଥା ବାହାର କରିଥିଲା ତାହା ଉତ୍କୃଷ୍ଟ । ତେଣୁ କଂଗ୍ରେସ ପାର୍ଟି ନିଜ ଆଡ଼ୁ ଗଭର୍ଣ୍ଣରଙ୍କୁ ଭେଟି ଜଣାଇ ଦେଉ ଯେ ଗଣତାନ୍ତ୍ରିକ ସରକାର ଗଠନ ନିମନ୍ତେ ପି. ଏସ୍. ପି.କୁ ସରକାର ଗଢ଼ିବାକୁ ଯଦି ଡାକରା ଦିଆଯାଏ, ତେବେ ସେମାନଙ୍କର ତା'ପଛରେ ସମର୍ଥନ ରହିବ । ତାହାହିଁ ହେଲା । ଗଭର୍ଣ୍ଣର ପି. ଏସ୍. ପି. ନେତା ପଟ୍ଟମ ଥାନୁ ପିଲାଇଙ୍କୁ ନିମନ୍ତ୍ରଣ ଦେଲେ ଏବଂ ସେ ମାର୍ଚ୍ଚ ୧୭ ତାରିଖରେ ଶପଥ ନେଲେ । ସେ ଘୋଷଣା କଲେ ଯେ ପି. ଏସ୍. ପି. ନିଜ ନିର୍ବାଚନ ଇସ୍ତାହାର ଅନୁସାରେ କାର୍ଯ୍ୟକାରୀ ହେବ ଏବଂ ସମସ୍ତଙ୍କର ସହଯୋଗ କାମନା କରିବ ।

ସମସ୍ତେ ଡାକରା ହେଲେ—ଏହା କେମିତି ହେଲ ? ମାତ୍ର ବାହାରେ କାହାରିକି ଏହା ଜଣା ନ ଥିଲ । ପି. ଏସ୍. ପି. ଲୋକେ ବି ଜାଣି ନ ଥିଲେ । କୋଲ୍‌ପପନ ଏହି କଥାଟି ଆମ କେତେଜଣଙ୍କୁ କହିଥିଲେ ।

## ପାର୍ଟିରେ ଦ୍ୱନ୍ଦ୍ୱ ଓ ଜେ.ପି.ଙ୍କର ଜୀବନଦାନ

ଏହା ପରେ ଅଳ୍ପ କେତେ ମାସ ଭିତରେ ଅତି ଦ୍ରୁତକ୍ରମରେ ଏପରି କେତେକ ଘଟଣା ଘଟିଗଲ, ଯହିଁରେ ପାର୍ଟିରେ ମହା କନ୍ଦଳ ସୃଷ୍ଟି ହେଲା ଏବଂ ପାର୍ଟିଲୋକ ଓ ଜନସାଧାରଣଙ୍କ ମଧ୍ୟରେ ଗୋଳମାଳିଆ ଭାବ ଜାତହେଲ ।

ଆଗରୁ ପଞ୍ଚମାଢ଼ୀ ସମ୍ମିଳନୀ ବେଳୁ ଜୟପ୍ରକାଶ ନାରାୟଣ ଭୂଦାନ ଆନ୍ଦୋଳନ ସପକ୍ଷରେ ମତ ଦେଉଥିଲେ ଏବଂ ବେତୁଲ ସମ୍ମିଳନୀରେ ଘୋଷଣା ମଧ୍ୟ କରିଥିଲେ ଯେ ସେ ଏଣିକି ଏଭଳି କାର୍ଯ୍ୟରେ ବେଶି ସମୟ ଦେବେ । ପାର୍ଟି ମଧ୍ୟ ଭୂଦାନ ଆନ୍ଦୋଳନ ସହ ସହଯୋଗ ସ୍ଥାପନା ଲାଗି ନିଷ୍ପତ୍ତି ନେଲା । କିନ୍ତୁ ଏଥି ଭିତରେ ସଂବାଦ ପ୍ରକାଶ ପାଇଲା ଯେ ଜୟପ୍ରକାଶ ନାରାୟଣ ଲୋହିଆ ପ୍ରଭୃତିଙ୍କ ବ୍ୟବହାରରେ ଅସନ୍ତୁଷ୍ଟ ହୋଇ ଭୂଦାନରେ ଯୋଗଦେଲେଣି । ସତକୁ ସତ ଜୟପ୍ରକାଶ ନାରାୟଣ ଗୟାଠାରେ ବିନୋବାଙ୍କ ପାଖରେ ଜୀବନ ଦାନର ଘୋଷଣା କଲେ ଏବଂ ଏକ ବକ୍ତବ୍ୟରେ ପ୍ରକାଶ କଲେ—ମୁଁ ଦଳବିହୀନ ଗଣତନ୍ତ୍ରଲାଗି କାର୍ଯ୍ୟ କରିବି । ସେ ସକ୍ରିୟ ରାଜନୀତିରୁ କ୍ରମେ ଅପସରିଗଲେ ଓ ନିର୍ବାଚନରେ କେବେ ପ୍ରତିଦ୍ୱନ୍ଦ୍ୱିତା କଲେ ନାହିଁ । କିନ୍ତୁ ସାଙ୍ଗେ ସାଙ୍ଗେ ସେ ପାର୍ଟି ଛାଡ଼ିବେ ନାହିଁ— ଯେତେଦିନ ସମ୍ଭବ ପାର୍ଟିର ସଭ୍ୟ ହୋଇ ରହିବେ ଏବଂ ପାର୍ଟିର ବୈଠକମାନଙ୍କରେ ଯୋଗଦେବେ ବୋଲି କହିଲେ । ଜୟପ୍ରକାଶଙ୍କର ଏ ଘୋଷଣା ପାର୍ଟି ଭିତରେ ବିଭିନ୍ନ ପ୍ରତିକ୍ରିୟା ସୃଷ୍ଟି କଲା । ଜୟପ୍ରକାଶଙ୍କୁ ଫେରାଇ ଆଣିବାର ଉଦ୍ୟମ ହେଲା । ମାତ୍ର ସେ ଜାତୀୟ କାର୍ଯ୍ୟକାରୀ କମିଟିର ସଦସ୍ୟ ରହି ପାର୍ଟିକୁ ନିପଗୁରି ଏଭଳି କରିବାରୁ ସଭ୍ୟମାନଙ୍କ ଭିତରୁ ଆପତ୍ତି ଉଠିଲା ।

## ସତ୍ୟାଗ୍ରହ ଓ ଗିରଫ

ମାତ୍ର ଏଲାହାବାଦରେ କଂଗ୍ରେସ ଓ କମ୍ୟୁନିଷ୍ଟ ପାର୍ଟିଠାରୁ ସମାନ ଦୂରତା ରକ୍ଷାକରି ପାର୍ଟି ନିଜର ସ୍ୱତନ୍ତ୍ରତା ବଜାୟ ରଖି କାର୍ଯ୍ୟ କରିବାର ସିଦ୍ଧାନ୍ତ ସର୍ବସମ୍ମତି କ୍ରମେ ଗୃହୀତ ହୋଇଥିବାରୁ ପାର୍ଟିର ସମସ୍ତ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱର ଅବସାନ ଘଟିଥିଲା । ନିଜ ନିଜ ରାଜ୍ୟରେ କର୍ମତତ୍ପରତା ଦେଖାଦେଲା । ତ୍ରାଭାଙ୍କୋର-କୋଚିନରେ ସୋସଲିଷ୍ଟ ସରକାର ଖୁବ୍ ଦୃଢ଼ତା ଦେଖାଇଲା ଏବଂ ଏକ ନିର୍ମଳ ଶାସନ ଓ ପ୍ରଗତିବାଦୀ କାର୍ଯ୍ୟକ୍ରମ ହାତକୁ ନେବାରୁ ସାରା ଭାରତରେ ପାର୍ଟିର ସମ୍ମାନ ବୃଦ୍ଧି ହେଲା । ଉତ୍ତରପ୍ରଦେଶ ଏବଂ ଆଉ କେତେକ ସ୍ଥାନରେ ଜଳକର ବୃଦ୍ଧି ଓ ଅନ୍ୟାନ୍ୟ ସମସ୍ୟା ଯୋଗେ ସତ୍ୟାଗ୍ରହ ଚାଲିଲା । ଉତ୍କଳର

ରାମମନୋହର ଲୋହିଆ ସେହି ସଂକ୍ରାନ୍ତରେ ଗିରଫ ହେଲେ । ପୁଣି ସୋସଲିଷ୍ଟ ଆନ୍ଦୋଳନ ଯେପରି ନୂତନ ଜୀବନ ଲାଭକଲା, ସେହିପରି ଏକ ବାୟୁମଣ୍ଡଳ ଚତୁର୍ଦ୍ଦିଗରେ ଖେଳିଗଲା ।

## ଟ୍ରାଭାଙ୍କୋରରେ ଗୁଳିଗୋଳା

ଟ୍ରାଭାଙ୍କୋରରେ ଏକ ଘଟଣା ଯୋଗୁଁ ସୋସଲିଷ୍ଟ ସରକାରକୁ ଗୁଳି ଗୋଳା କରିବାକୁ ପଡ଼ିଲା । ସରକାର କିଛି ଗୁଳି ଚଳାଇବାକୁ ହୁକୁମ ଦେଇନ୍ଥିଲେ ନାହିଁ । ଆଇନଶୃଙ୍ଖଳା ରକ୍ଷା ନିମନ୍ତେ ପୂର୍ବରୁ ନିୟମ ଓ କାନୁନ୍ ରହିଥିଲା ଏବଂ ତଦନୁସାରେ ପୁଲିସ ଓ ମାଜିଷ୍ଟ୍ରେଟ ନିଜ କ୍ଷମତା ପ୍ରୟୋଗ କରି କାର୍ଯ୍ୟ କରିଗଲେ । ସେ ସବୁ ଆଇନର ପରିବର୍ତ୍ତନ କରାଯାଇନଥିଲା । ତେଣୁ ଟ୍ରାଭାଙ୍କୋରରେ ଏକ ଘଟଣାରେ ସେହି ଚିରାଚରିତ ପ୍ରଥା ଅନୁସରଣ କରି, ସରକାରର ଅନୁମତି ଲୋଡ଼ିବାଲାଗି କୌଣସି ଆଇନ ନଥିବାରୁ, ସୋସଲିଷ୍ଟ ସରକାରକୁ ନପଚାରି ପୁଲିସ ଗୁଳିଗୋଳା କଲେ ଏବଂ ଚାରିଜଣ ଲୋକ ପ୍ରାଣ ହରାଇଲେ । ଏସବୁ ଘଟଣାର ବିଚାର ହୁଏତ ଜାତୀୟ କାର୍ଯ୍ୟକାରୀ ସମିତିରେ ହୋଇଥାଆନ୍ତା—ପରେ ହେଲା ମଧ୍ୟ । କିନ୍ତୁ ଅବସ୍ଥାକୁ ଜଟିଳ କରିଦେଲେ ଡକ୍ଟର ରାମମନୋହର ଲୋହିଆ । ପାର୍ଟିରେ ପୁଣି ଏକ ନୂତନ ବିବାଦର ସୂତ୍ରପାତ ହେଲା ଏବଂ ପ୍ରବଳ ଝଡ଼ ବାତ୍ୟା ବହିଲା ।

## ଜେଲ ଭିତରୁ ସରକାରର ଇସ୍ତଫା ଦାବୀ

ଡକ୍ଟର ରାମମନୋହର ଲୋହିଆ ନୈନି ଜେଲରେ ବନ୍ଦୀ ଥିଲେ । ସେ ମଧ୍ୟ ପାର୍ଟିର ସାଧାରଣ ସମ୍ପାଦକ । ପାର୍ଟିରୁ କୌଣସି ସମ୍ବାଦ ନେବାର ଚେଷ୍ଟା ନକରି କିମ୍ବା କିଭଳି ପରିସ୍ଥିତିରେ ଗୁଳିକାଣ୍ଡ ହୋଇଥିଲା ତାହାର ସଠିକ ବିବରଣୀ ପାଇବାଲାଗି ଅପେକ୍ଷା ନକରି, ସେ ଅଗଷ୍ଟ ୨୦ ତାରିଖରେ ଜେଲ ଭିତରୁ ଏକ ତାର ଟ୍ରାଭାଙ୍କୋରର ମୁଖ୍ୟମନ୍ତ୍ରୀ ପଟ୍ଟମ ଥାନୁ ପିଲାଇଙ୍କୁ ପଠାଇଦେଲେ । ସେଥିରେ ଲେଖିଲେ—"ଦଙ୍ଗାକାରୀଙ୍କର ପୂରା ଦୋଷ ହୋଇଥାଇପାରେ: ସେମାନେ ଏକ ବିକୃତ ପରିସ୍ଥିତି ସୃଷ୍ଟି କରିଦେଇପାରିଥାଆନ୍ତି; କିନ୍ତୁ କିଛି ସଶସ୍ତ୍ର ବିଦ୍ରୋହ କିମ୍ବା ଲୋକଙ୍କ ଆଡ଼ୁ ହତ୍ୟା ଆଦି ଘଟଣା ନ ଘଟିଲେ ପୁଲିସ ଗୁଳି କରିବାର କୌଣସି ଯଥାର୍ଥତା ନାହିଁ । ଗୋଟିଏ ହତ୍ୟାରୁ ଅଧିକ ହତ୍ୟା କରିବାରେ ପୁଲିସ ଲାଗିବ । ମୁଁ ସୁପାରିଶ କରୁଛି ଯେ ଅଫିସରମାନଙ୍କୁ ସସ୍‌ପେଣ୍ଡ କରିଦିଅ, ବେସରକାରୀ ତଦନ୍ତ କମିଟି ନିଯୁକ୍ତ କର ଏବଂ ଏହି ନୀତି ରକ୍ଷା ପ୍ରତି ସମ୍ମାନ ଦେଖାଇ ସରକାର ଇସ୍ତଫା ଦିଅନ୍ତୁ ।"

ଜେଲ ଭିତରୁ ଏପରି ନିର୍ଦ୍ଦେଶ ଦେବା ଏବଂ ତାକୁ ପୁଣି ସମ୍ବାଦପତ୍ରରେ ପ୍ରକାଶ କରିବାକୁ ଦେବା ଅତ୍ୟନ୍ତ ଆପତ୍ତିଜନକ କାର୍ଯ୍ୟ । ସାଧାରଣ ସମ୍ପାଦକ ଏପରି ଯଥେଚ୍ଛା ନୀତି ନେଇନପାରନ୍ତି । ଲୋହିଆଙ୍କ ସମ୍ମତିକ୍ରମେ ଓ ତାଙ୍କ ମତ ନେଇ ଟ୍ରାଭାଙ୍କୋରରେ ସରକାର ଗଢ଼ିବାର ନିଷ୍ପତ୍ତି ନିଆଯାଇଥିଲା । ୧୯ ଜଣବିଶିଷ୍ଟ ଏକ କ୍ଷୁଦ୍ର ଦଳ ସରକାର ଚଳାଇବା କେଡ଼େ କଷ୍ଟସାଧ୍ୟ ! ତାହାଛଡ଼ା ପଟ୍ଟମ ଥାନୁ ପିଲାଇ ଥିଲେ ଜଣେ ସାଧୁ,

ସଚ୍ଚୋଟ ଓ ଦୃଢ ବ୍ୟକ୍ତି । ସେ କିଛୁ କେ. ଏମ୍. ପି. ପି.ରୁ ଆସିନଥିଲେ—ସେ ପୁରୁଣା ସୋସଲିଷ୍ଟ । ସେ ବଡ଼ ମର୍ଯ୍ୟାଦା ରଖି କାର୍ଯ୍ୟ କଲେ । ତାଙ୍କର ମଧ୍ୟ କେରଳରେ ଖୁବ୍ ଖାତିର୍ ଥିଲା । ଅଳ୍ପଦିନ ଭିତରେ ସେ ଓ ତାଙ୍କ ମନ୍ତ୍ରୀମଣ୍ଡଳ ବେଶ୍ ପ୍ରତିଷ୍ଠା ଅର୍ଜନ କରିପାରିଥିଲା । ତାଙ୍କ ସରକାର ଏପରି ଏକ ଭୂମିସଂସ୍କାରଆଇନ କଲା, ଯାହାକି କେବେ ଭାରତବର୍ଷରେ ହୋଇନଥିଲା । କଂଗ୍ରେସ ଲୋକେ ତାଙ୍କର ଓ ସୋସଲିଷ୍ଟ ମନ୍ତ୍ରୀମଣ୍ଡଳର ଲୋକପ୍ରିୟତା ଦେଖି ଅସ୍ଥିର ହେଲେ । ସେମାନଙ୍କ ସମର୍ଥନରେ ମନ୍ତ୍ରିମଣ୍ଡଳ ଚାଲିଥିଲା, ଅଥଚ ତାଙ୍କର କୌଣସି ଅଯୌକ୍ତିକ ଦାବୀକୁ କିମ୍ବା ଅନ୍ୟାୟ ଉପାୟ ଅବଲମ୍ବନ କରିବା ନିମନ୍ତେ ପଟ୍ଟମ ଥାନୁ ପିଲାଇ ଆଦୌ ପ୍ରଶ୍ରୟ ଦେଲେନାହିଁ । ସେମାନେ ଅସ୍ୱସ୍ତି ଅନୁଭବ କରି ପଣ୍ଡିତ ନେହରୁଙ୍କ ସମ୍ମୁଖରେ ଆପତ୍ତି ଦର୍ଶାଇଲେ । ମାତ୍ର ପଟ୍ଟମ ଥାନୁ ପିଲାଇ ନେହରୁଙ୍କ ଆଗରେ ତାଙ୍କର ଦୃଢ଼ତା ଦେଖାଇଲେ । କିଛୁ ଭୁଲ କାର୍ଯ୍ୟ ହେଲେ କଂଗ୍ରେସ ସମର୍ଥନ ହଟାଇନେଲେ ସେ ଦୁଃଖ କରିବେନାହିଁ ଏବଂ ମନ୍ତ୍ରିମଣ୍ଡଳ ଗଠନରେ କଂଗ୍ରେସର ସମର୍ଥନ ମାଗିନଥିଲେ ବୋଲି ନେହରୁଙ୍କୁ ସ୍ପଷ୍ଟ କହିଦେଲେ । ନେହରୁଙ୍କ ସହିତ ତାଙ୍କର କଥାବାର୍ତ୍ତା ସେ ପାର୍ଟି ଚେୟାରମ୍ୟାନ୍‌ଙ୍କ ଆଗରେ ରିପୋର୍ଟ କଲେ ଏବଂ ପାର୍ଟିର କାର୍ଯ୍ୟକାରୀ ସମିତି ତାଙ୍କ କାର୍ଯ୍ୟର ତାରିଫ୍ କଲା । ପଟ୍ଟମ ଯେ ଜଣେ ଉଚ୍ଚକୋଟିର ରାଜନୀତିଜ୍ଞ ଏବଂ ପାର୍ଟିର ଶୃଙ୍ଖଳିତ ସଭ୍ୟ ହିସାବରେ କାର୍ଯ୍ୟ କରିଥିଲେ ଏହା କେହି ଅସ୍ୱୀକାର କରିବେ ନାହିଁ । ମାତ୍ର ତାଙ୍କୁ ଆଗରୁ କିଛି ନ ପଚାରି ଲୋହିଆ ଜେଲ ଭିତରୁ ଏପରି ନିର୍ଦ୍ଦେଶ ଦେବାଟା କେହି ପସନ୍ଦ କଲେନାହିଁ । ସୋସଲିଷ୍ଟ ଆନ୍ଦୋଳନ ଏକ ଉମୂଳ ବିବାଦର ସମ୍ମୁଖୀନ ହେଲା ।

## ଓଡ଼ିଶାରୁ ପ୍ରତିବାଦ

ପାର୍ଟିରେ ଏପରି ଏକ ବିଶୃଙ୍ଖଳା ସୃଷ୍ଟିରେ ଏବଂ ଆଉ କେତେକ ଘଟଣାରେ ଉଦ୍‌ବିଗ୍ନ ହୋଇ ଓଡ଼ିଶାରୁ ପାର୍ଟିର ଚେୟାରମ୍ୟାନ୍‌ଙ୍କ ପାଖକୁ ଏକ ପତ୍ର ଆସିଲା । ଏହି ପତ୍ରରେ ଦସ୍ତଖତକାରୀ ଥିଲେ—ପ୍ରଦୀପ୍ତ କିଶୋର ଦାସ, ଅମିୟ କୁମାର ଘୋଷ, ବିଶ୍ୱନାଥ ପଣ୍ଡିତ, ବାଙ୍କ ବିହାରୀ ଦାସ, ରାଜକିଶୋର ସାମନ୍ତରାୟ, ନିଶାମଣି ଖୁଣ୍ଟିଆ, ଗୋବିନ୍ଦ ମିଶ୍ର, ନାରାୟଣଚନ୍ଦ୍ର ପତି ଏବଂ ଗୋବିନ୍ଦ ଦାସ । ଏମାନେ ସମସ୍ତେ ପାର୍ଟିର କିଛି ନା କିଛି ପଦବୀରେ ରହିଥିଲେ । ସେମାନେ କହିଲେ—ପାର୍ଟିରେ ଯାହାସବୁ ଘଟିଗଲା ସେଥିରେ ଲୋକ ଓ ପାର୍ଟି ସଭ୍ୟଙ୍କ ଭିତରେ ଖରାପ ଧାରଣା ସୃଷ୍ଟି ହେଲା । ଏଲାହାବାଦରେ ପାର୍ଟି ସଭ୍ୟଙ୍କର ଆଚରଣ ବିଧି ଓ ଆମର ଆଦର୍ଶବାଦୀ କାର୍ଯ୍ୟ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ପ୍ରସ୍ତାବ ଗୃହୀତ ହେବା ପରେ ଆଉ ଏଭଳି ବୁଦ୍ଧିଭେଦ ଜନ୍ମାଇବାର ଆବଶ୍ୟକତା ନ ଥିଲା । କେତେକ ନେତା ଯେପରି ଆଚରଣ କଲେ, ସେଥିରେ ପାର୍ଟିର ଯଥେଷ୍ଟ କ୍ଷତି ହେଲା । ଉଦାହରଣ ସ୍ୱରୂପ ସେମାନେ ଦର୍ଶାଇଲେ, (୧) ଡକ୍ଟର ଲୋହିଆଙ୍କ କାର୍ଯ୍ୟକଳାପ ନିତାନ୍ତ ଦୁଃଖଦାୟକ । ସେ ଟ୍ରାଭାଙ୍କୋର ମନ୍ତ୍ରିମଣ୍ଡଳକୁ ଇସ୍ତଫା ଦେବାକୁ ନିର୍ଦ୍ଦେଶ ଦେଲେ ଏବଂ

ପରେ ପରେ ସାଧାରଣ ସମ୍ପାଦକ ଓ ଜାତୀୟ କାର୍ଯ୍ୟକାରୀ କମିଟିରୁ ବି ଇସ୍ତଫା ଦେଲେ । (୨) ପରିବହନ କର୍ମଚାରୀଙ୍କ ସମ୍ପର୍କରେ ତ୍ରାଭାଙ୍କୋର ମନ୍ତ୍ରୀମଣ୍ଡଳର କାର୍ଯ୍ୟକଳାପର ସମାଲୋଚନା କରି ଏଚ୍. ଭି. କାମାଥ ପ୍ରକାଶ୍ୟ ବିବୃତି ଦେଲେ, (୩) ସ୍ୱାମୀ ଶିବନାଥ ବାନାର୍ଜୀଙ୍କ ପରି ମୁଖ୍ୟ ନେତା ଏମ୍. ଆର୍. ଏ. ସହିତ ସଂପୃକ୍ତ ହେବାର ସମ୍ବାଦ ପ୍ରକାଶ ପାଇଥିଲା । (୪) ଜୀବନଦାନ ଆନ୍ଦୋଳନ ଦେଶ ପକ୍ଷରେ ମଙ୍ଗଳଜନକ; ମାତ୍ର ଜୟପ୍ରକାଶ ନାରାୟଣ ଜାତୀୟ କାର୍ଯ୍ୟକାରୀ ସମିତିକୁ ନ ପଚାରି ସେ ସମ୍ବନ୍ଧରେ ସାଧାରଣରେ ଘୋଷଣା କରିଦେଲେ ।

ସମ୍ବାଦପତ୍ରଗୁଡ଼ିକ ସର୍ବଦା ଆମର ବିରୋଧୀ । ଆମକୁ ଅଯଥା ସାଧାରଣ ସମାଲୋଚନା ଓ ନାନା ପ୍ରଶ୍ନର ଉତ୍ତର ଦେବାକୁ ପଡ଼ୁଥିଲା । ଏହା ପାର୍ଟିର ସାଧାରଣ ସଦସ୍ୟଙ୍କ ମନରେ ଖରାପ ପ୍ରତିକ୍ରିୟା ସୃଷ୍ଟି କଲଣି ଏବଂ ଆମେ ତାର ଫଳ ଭୋଗକରୁଛୁ । ଓଡ଼ିଶା ପାର୍ଟି ବରାବର ଏକମତବିଶିଷ୍ଟ ପାର୍ଟିରୂପେ କାମକରି ଆସିଥିଲା—ଏବେ ନେତାମାନଙ୍କର କାର୍ଯ୍ୟଫଳରେ ଆମ ଭିତରେ ସେମିତି ସଂହତି ରକ୍ଷା କରିବା ଅସମ୍ଭବ ହୋଇପଡ଼ିଲାଣି ।

ଜେନେରାଲ ସେକ୍ରେଟେରୀ ଯେପରି ଜାତୀୟ କାର୍ଯ୍ୟକାରୀ ସମିତି ପ୍ରତି ଆଚରଣ ଦେଖାଇଲେ, ତାହା ଆପତ୍ତିଜନକ । ନେତାମାନେ ସଂବାଦପତ୍ରରେ ଏଭଳି ବିବୃତି ଦେବାରୁ କ୍ଷାନ୍ତ ହେବା ନିମନ୍ତେ ସେମାନେ ଅନୁରୋଧ କଲେ । ମୋଟାମୋଟି ପାର୍ଟିର ଚାରିଆଡ଼ୁ ଏଭଳି କାର୍ଯ୍ୟକୁ ନାପସନ୍ଦ କରି ଚିଠିମାନ ଆସିଲା ।

## ଡକ୍ଟର ଲୋହିଆଙ୍କ ଇସ୍ତଫା ଗୃହୀତ ହେଲା

ଏପରି ପାର୍ଟି ଭିତରର ଦ୍ୱନ୍ଦ୍ୱ ଏବଂ ଗୁଳିକାଣ୍ଡଜନିତ ପରିସ୍ଥିତିକୁ ବିଚାର କରିବା ନିମନ୍ତେ କାର୍ଯ୍ୟକାରୀ ସମିତିର ବୈଠକ ନୂଆ ଦିଲ୍ଲୀରେ ସେପ୍ଟେମ୍ବର ୪, ୫, ୬ ତାରିଖରେ ବସିଥିଲା । ଆଚାର୍ଯ୍ୟ କୃପାଳନୀ ସଭାପତି ହୋଇଥିଲେ—ଜୟପ୍ରକାଶ ନାରାୟଣ ଓ ରାମମନୋହର ଲୋହିଆ ବି ଉପସ୍ଥିତ ଥିଲେ । ମୁଖ୍ୟତଃ ତ୍ରାଭାଙ୍କୋର ଗୁଳିକାଣ୍ଡ ବିଷୟ ଆଲୋଚିତ ହେଲା । ଲୋହିଆ ଓ ମଧୁଲିମାୟେ ଆଦି ତାଙ୍କ କଥା କହିଲେ । ଶେଷକୁ ଜାତୀୟ କାର୍ଯ୍ୟକାରୀ କମିଟିର ଅନୁରୋଧରେ ଜୟପ୍ରକାଶ ନାରାୟଣ ଏକ ପ୍ରସ୍ତାବର ଚିଠା କଲେ । ସେଥିରେ ମନ୍ତ୍ରିମଣ୍ଡଳର ଇସ୍ତଫା ଦାବୀକୁ ନାପସନ୍ଦ କରାଗଲା ଏବଂ ଅବସ୍ଥାଚକ୍ରରେ ଏପରି ଏକ ଗୁଳିକାଣ୍ଡ ସୋସିଆଲିଷ୍ଟ ସରକାର ଥିବାବେଳେ ହୋଇଥିବାରୁ ଦେଶବାସୀଙ୍କ ପାଖରେ କ୍ଷମା ମଗାଗଲା । ଭବିଷ୍ୟତରେ ଏପରି ପରିସ୍ଥିତିରେ ପୁଲିସର ଆଚରଣ କିଭଳି ହେବା ଉଚିତ ଏହା ନିର୍ଦ୍ଧାରଣ କରିବା ନିମନ୍ତେ ଏଚ୍. ଭି. କାମାଥ, ଡକ୍ଟର ପ୍ରଫୁଲ୍ଲଚନ୍ଦ୍ର ଘୋଷ, ତ୍ରିଲୋକି ସିଂହ ଏବଂ ବସନ୍ତଚନ୍ଦ୍ର ଘୋଷଙ୍କୁ ନେଇ ଏକ କମିଟି ନିଯୁକ୍ତହେଲା । ଏହି କମିଟିର ରିପୋର୍ଟ ପରେ ପାର୍ଟିରେ ଗୃହୀତ ହେଲା । ସେଥିରେ ହଠାତ୍ ଗୁଳି ନ ଚଳାଇ ଲୋକଭିଡ଼ ଭାଙ୍ଗିବା ନିମନ୍ତେ ଅନ୍ୟାନ୍ୟ କେତେକ ନୂତନ ପନ୍ଥା ସୁପାରିଶ କରାଗଲା ଏବଂ ତଦନୁସାରେ ଆଇନ ସଂଶୋଧନର ଉଦ୍ୟମ କରିବା ନିମନ୍ତେ କୁହାଗଲା । କୌଣସିଠାରେ ଗୁଳିଗୁଳା ହୋଇ

କାହାର ପ୍ରାଣନାଶ ଘଟିଲେ ସଙ୍ଗେ ସଙ୍ଗେ ବିଚାରବିଭାଗୀୟ ତଦନ୍ତ ନିମନ୍ତେ କମିଟି ସୁପାରିଶ କଲା ଏବଂ ଟ୍ରାଭାଙ୍କୋର ମନ୍ତ୍ରିମଣ୍ଡଳ ଏହାକୁ ସ୍ୱୀକାର କଲା ।

ମାତ୍ର ଏସବୁ ସତ୍ତ୍ୱେ ଡକ୍ଟର ଲୋହିଆ ସାଧାରଣ ସଂପାଦକ ପଦରୁ ଇସ୍ତଫା ଦେଲେ; ତାହା ଗ୍ରହଣ କରିଗଲା । ତାଙ୍କୁ ଅନୁସରଣ କରି ମଧୁଲିମାୟେ ଓ ବାଲେଶ୍ୱର ଦୟାଲ ମଧ୍ୟ ଜାତୀୟ କାର୍ଯ୍ୟକାରୀ ସମିତି ତ୍ୟାଗ କଲେ ଏବଂ ପାର୍ଟିରେ ତାହା ବି ଗୃହୀତ ହୋଇଗଲା । ବାସ୍ତବିକ ଏହି ସବୁ ଇସ୍ତଫା ହେଲା ପାର୍ଟି ବିଭାଜନର ପୂର୍ବାଭାସ । ଗୁରିଆଡ଼େ ଅଧିକ ବିଶୃଙ୍ଖଳା ବି ଲାଗିରହିଥିଲା । ତେଣୁ ନାଗପୁରଠାରେ ୧୯୫୪ ନଭେମ୍ବର ମାସରେ ଏକ ବିଶେଷ ଅଧିବେଶନ ବସିଲା ।

## ବଳ କଷାକଷିରେ ଲୋହିଆ ପରାଜିତ

ଏହି ସମ୍ମିଳନୀ ଉତ୍ତେଜନାମୂଳକ ଥିଲା । ଜାତୀୟ କାର୍ଯ୍ୟକାରୀ ସମିତି ଘୋଷଣା କଲେ ଯେ ତାଙ୍କ ପ୍ରସ୍ତାବ ସମ୍ମିଳନୀରେ ଗୃହୀତ ନ ହେଲେ ସେମାନେ ଏହାକୁ ଅବିଶ୍ୱାସ ପ୍ରସ୍ତାବ ରୂପେ ବିଚାର କରିବେ । ଆଚାର୍ଯ୍ୟ କ୍ରିପାଲାନୀ ପାର୍ଟିର ନେତାମାନଙ୍କ ଭିତରେ ଏପରି ବିଶୃଙ୍ଖଳାକୁ ଆୟତ୍ତ କରିବାଲାଗି ଅକ୍ଷମ ବିଚାରି ସମ୍ମିଳନୀ ପୂର୍ବରୁ ଚେୟାରମ୍ୟାନ ପଦରୁ ଇସ୍ତଫା ଦେଲେ । ଦୁଇପକ୍ଷର ନେତାମାନଙ୍କ ଯୋଗାଡ଼ ଫଳରେ ବେଶି ସଂଖ୍ୟାରେ ଡେଲିଗେଟ ମଧ୍ୟ ଉପସ୍ଥିତ ହେଲେ । ଏ ଦୃଶ୍ୟ ଦେଖି ମୋର ତ୍ରିପୁରୀ କଂଗ୍ରେସ ଅଧିବେଶନ କଥା ମନେପଡ଼ିଗଲା । କିନ୍ତୁ ସେଠି ଥିଲା ଗାନ୍ଧିଜୀ ଓ ନେତାଜୀଙ୍କର ନୀତିଗତ ଘୋର ବିବାଦ —ଏଠାରେ କିନ୍ତୁ କୌଣସି ନୀତି ବା ନେତୃତ୍ୱର ଝଗଡ଼ା ନ ଥିଲା । ପାର୍ଟିର ଶୃଙ୍ଖଳା ଓ ମର୍ଯ୍ୟାଦା ରକ୍ଷାହିଁ ଥିଲା ଅସଲ ସମସ୍ୟା । ପାର୍ଟି ଏକମନ ହୋଇ ଗଢ଼ି କରୁଥିବାବେଳେ ଡକ୍ଟର ଲୋହିଆ ନିଜର ବ୍ୟକ୍ତିଗତ ଜିଦ୍ ବଜାୟ ରଖିବା ନିମନ୍ତେ ଏପରି ଏକ ଅହେତୁକ ସମସ୍ୟା ଛିଡ଼ା କରାଇ ଦେଲେ । ମାତ୍ର ସମ୍ମିଳନୀ ବହୁ ଭୋଟରେ ଜାତୀୟ କାର୍ଯ୍ୟକାରୀ ସମିତି ପ୍ରସ୍ତାବକୁ ସମର୍ଥନ ଜଣାଇଲା ଏବଂ ଡକ୍ଟର ଲୋହିଆ ପରାଜିତ ହେଲେ । ଡକ୍ଟର ଲୋହିଆଙ୍କର ଏପରି ବିଶୃଙ୍ଖଳ ଆଚରଣ ହିଁ ଶେଷରେ ସୋସଲିଷ୍ଟ ଆନ୍ଦୋଳନ ଖଣ୍ଡବିଖଣ୍ଡ ହେବାର ମୁଖ୍ୟ କାରଣ ହେଲା । ଥରେ ଯେ ବିଭେଦ, ମୁହଁ ଫଟାଫଟି ଆରମ୍ଭ ହୋଇଗଲା, ତାହା ଆଉ ସୁଧୁରି ପାରିଲା ନାହିଁ । ଅତୀତରେ ଡକ୍ଟର ଲୋହିଆ ସୋସଲିଜମ୍‌ର ଏକ ଉନ୍ନତ ଦାର୍ଶନିକ ବ୍ୟାଖ୍ୟା ଦେବାରେ ଯେତିକି କୃତିତ୍ୱ ଲାଭକରିଥିଲେ, ଭବିଷ୍ୟତରେ ଭାରତର ସୋସଲିଷ୍ଟ ଆନ୍ଦୋଳନର ପତନ ଲାଗି ନିଶ୍ଚିତ ଭାବରେ ସେତିକି ନିନ୍ଦିତ ହେଉଥିବେ ।

## ଆଚାର୍ଯ୍ୟ ନରେନ୍ଦ୍ରଦେବ ପୁଣି ସଭାପତି ହେଲେ

ଆଚାର୍ଯ୍ୟ ନରେନ୍ଦ୍ର ଦେବ ଭାରତବର୍ଷରେ ଗଣତାନ୍ତ୍ରିକ ସମାଜବାଦୀ ଆନ୍ଦୋଳନର ଜନକ କହିଲେ ହେବ । ସର୍ବଦା ସ୍ୱାସ୍ଥ୍ୟହୀନ ଯୋଗୁଁ ସେ ପୂର୍ଣ୍ଣରୂପେ ସକ୍ରିୟ ହେବାକୁ ସମର୍ଥ

ହୋଇପାରୁନଥିଲେ; ତଥାପି ପାର୍ଟିର ଏ ସଙ୍କଟବେଳେ ଭଗ୍ନସ୍ୱାସ୍ଥ୍ୟ ସତ୍ତ୍ୱେ ସେ ପାର୍ଟିର ଚେୟାରମାନ୍ ଦାୟିତ୍ୱ ଗ୍ରହଣ କଲେ । ତାଙ୍କୁ ନୂତନ ଚେୟାରମ୍ୟାନ୍ ରୂପେ ନିର୍ବାଚିତ କରାଯାଇ ପାର୍ଟିର କର୍ମକର୍ତ୍ତା ବାଛିବାର ଦାୟିତ୍ୱ ମଧ୍ୟ ଦିଆଗଲା । ଡିସେମ୍ବର ୨୪ ଓ ୨୫ରେ ନୂତନ କାର୍ଯ୍ୟକାରୀ ସମିତିର ବୈଠକ ବସି ପାର୍ଲିମେଣ୍ଟାରୀ ବୋର୍ଡ ଓ ଅନ୍ୟ କମିଟି ଗଠନ କରାଗଲା । ଡକ୍ଟର ଲୋହିଆ କାର୍ଯ୍ୟକାରୀ ସମିତି ଓ ପାର୍ଲିମେଣ୍ଟାରୀ ବୋର୍ଡ଼ର ମେମ୍ବର ହୋଇ ରହିଲେ । ଆଚାର୍ଯ୍ୟ ନରେନ୍ଦ୍ର ଦେବ ପାର୍ଟି ଲୋକଙ୍କୁ ଏକ ବିଶେଷ ନିବେଦନରେ ପାର୍ଟିରେ ଶୃଙ୍ଖଳା ରକ୍ଷା ନିମନ୍ତେ ଅନୁରୋଧ କଲେ ଏବଂ କହିଲେ— ଗଣତାନ୍ତ୍ରିକ ସମାଜବାଦ ଏକ ଜୀବନର ଧାରା । ଆମେ ଏତକିବେଳୁ ତାର ପ୍ରୟୋଗ ଶୃଙ୍ଖଳା ସହକାରେ ନ କଲେ ଲୋକଙ୍କ ପାଖରେ ଆମର ଆଦର୍ଶ ଓ ପାର୍ଟି ଆଦୃତ ହୋଇପାରିବ ନାହିଁ ।

## ଜବାହରଲାଲ ନେହରୁ ନାସ୍ତିସୂଚକ ସମାଜବାଦୀ

ଏଥିଭିତରେ କଂଗ୍ରେସର ଆଭିମୁଖ୍ୟରେ ବି କିଛି ପରିବର୍ତ୍ତନ ଦେଖାଦେଲା । ଜବାହରଲାଲ ନେହରୁ ଚୀନ୍ ପରିଦର୍ଶନରେ ଯାଇଥିଲେ । ସେଠାରେ ସୋସଲିଜମ୍‌ର ଅଗ୍ରଗତି ଦେଖି ବଡ଼ ଉତ୍ସାହିତ ହୋଇ ଫେରିଲେ । ସେ ବୁଝିଲେ ଯେ କଂଗ୍ରେସ ଦଳ ଯଦି ସୋସଲିଜମ୍ ଗ୍ରହଣ ନକଲା ତେବେ ଏହା ଏକ କାଠଦଲରେ ପରିଣତ ହୋଇଯିବ ଏବଂ ତାଙ୍କ ନାମ ଆଉ ପ୍ରଗତିବାଦୀ ତାଲିକାରେ ଉଠିବ ନାହିଁ । ସେତେବେଳେ ତ କଂଗ୍ରେସରେ ତାଙ୍କର ଆଉ କେହି ପ୍ରତିଦ୍ୱନ୍ଦ୍ୱୀ ନଥିଲେ ଏବଂ ସାତବର୍ଷ କାଳ ସେ ଦେଶର ପ୍ରଧାନମନ୍ତ୍ରୀ ହୋଇସାରିଥିଲେ । ଜବାହରଲାଲ ଯଦି ବାସ୍ତବିକ ଦେଶରେ ସୋସଲିଷ୍ଟ ମତ ପ୍ରଚଳନ କରିବାକୁ ଇଚ୍ଛା କରୁଥିଲେ, ତେବେ ତାଙ୍କ ପଶ୍ଚାତ୍ତରେ ଯେପରି ଲୋକସମର୍ଥନ ରହିଥିଲା ଏବଂ ସରକାର ଓ କଂଗ୍ରେସର ସେ ଯେପରି ସର୍ବମୟ କର୍ତ୍ତା ଥିଲେ, ତେବେ ତାହା କରିବାରେ କିଛି ବାଧା ନଥିଲା । ମାତ୍ର ଜବାହରଲାଲ ନେହରୁ ଥିଲେ ଏକ ନାସ୍ତିସୂଚକ ସୋସଲିଷ୍ଟ । ସେ ପୁଞ୍ଜିବାଦର ସମର୍ଥକ ନଥିଲେ; ମାତ୍ର ପୁଞ୍ଜିବାଦ ଭାଙ୍ଗିବା ଲାଗି ତାଙ୍କର ସାହସ ନଥିଲା । ତେଣୁ ଦେଶରେ ୧୭ ବର୍ଷ କାଳ ସେ ଯେ ପ୍ରଧାନମନ୍ତ୍ରୀ ରହିଲେ, ତହିଁରେ ଏ ଦେଶର ସ୍ଥିତାବସ୍ଥା (status quo) ବଜାୟ ରହିଲା । ପୁଞ୍ଜିବାଦ ଆହୁରି ମଜବୁତ ହେଲା ଏବଂ ଧନୀ ନିର୍ଦ୍ଧନଙ୍କ ଭିତରେ ପାର୍ଥକ୍ୟ ବଢ଼ିବାରେ ଲାଗିଲା ।

## କଂଗ୍ରେସର ଆଭାଡ଼ୀ ପ୍ରସ୍ତାବ

ଚୀନ୍‌ରୁ ଫେରି ଜବାହରଲାଲ ନେହରୁ କଂଗ୍ରେସର ମାନ୍ଦ୍ରାଜ ଅଧିବେଶନରେ କଂଗ୍ରେସର ଲକ୍ଷ୍ୟ ସମାଜବାଦୀ ଛାଞ୍ଚା (socialist pattern)ର ସମାଜ ସ୍ଥାପନା ବୋଲି ପ୍ରସ୍ତାବ ପାସ୍ କରାଇ ନେଲେ । ଏହା ଠିକ୍ ୧୯୨୭ ମସିହାରେ ସେହି ମାନ୍ଦ୍ରାଜଠାରେ ସ୍ୱାଧୀନତା

ପ୍ରସ୍ତାବ ପାସ୍ ହେବା ପରେ। ଜବାହରଲାଲ ନିଜ ଆତ୍ମକାହାଣୀରେ ଲେଖିଥିଲେ ଯେ— ସୋଭିଏଟ୍ ରୁଷ ଗସ୍ତରୁ ଫେରି କଂଗ୍ରେସର ଲକ୍ଷ୍ୟ ସ୍ୱାଧୀନତା ପ୍ରାପ୍ତି ବୋଲି ପ୍ରସ୍ତାବ ରଖନ୍ତେ କଂଗ୍ରେସ ଅଧିବେଶନରେ ତାହା ଗୃହୀତ ହୋଇଗଲା। ମାତ୍ର ସେ ପୁଣି ଲେଖିଥିଲେ—ମାତ୍ର କୌଣସି କଂଗ୍ରେସ ନେତା ସେତେବେଳେ ଏହାକୁ କିଛି ଗୁରୁତ୍ୱ ଦେଇନଥିଲେ କିମ୍ବା ଏହାର ଅସଲ ମର୍ମ ବୁଝିବା ନିମନ୍ତେ ଚେଷ୍ଟା କରିନଥିଲେ। ତେଣୁ ସେହିପରି ଜବାହରଲାଲ କହିଲେ ବୋଲି ଆଭାଡ଼ୀଠାରେ ପୁଣି 'ସମାଜବାଦୀ ଢାଞ୍ଚା' ପାସ୍ ହୋଇଗଲା।

## ଆଭାଡ଼ୀ ପ୍ରସ୍ତାବ ପ୍ରତ୍ୟାଖ୍ୟାନ

ଆଭାଡ଼ୀ ପ୍ରସ୍ତାବ ପରେ ଦିଲ୍ଲୀଠାରେ ଜାତୀୟ କାର୍ଯ୍ୟକାରୀ ସମିତିର ୧୯୫୫ ମସିହା ଏପ୍ରିଲ ୯, ୧୦ ଓ ୧୧ରେ ଏକ ବୈଠକ ବସିଥିଲା। ସେତେବେଳକୁ ଆଚାର୍ଯ୍ୟ କୃପାଲନୀ ଓ ଜୟପ୍ରକାଶ ନାରାୟଣ ଆଉ କାର୍ଯ୍ୟକାରୀ ସମିତିର ସଭ୍ୟ ନ ଥିଲେ। ସେମାନେ ବିଶେଷ ନିମନ୍ତ୍ରିତ ହୋଇ ଯୋଗଦେଇଥିଲେ। ଆମେ ଆଉ ସମସ୍ତେ ଉପସ୍ଥିତ ଥିଲୁ। ପୂର୍ବ ସମ୍ମିଳନୀ ପରଠାରୁ ସାରଙ୍ଗଧର ଦାସ ଓ ମୁଁ ଦୁଇଜଣ ଜାତୀୟ କାର୍ଯ୍ୟକାରୀ ସମିତିର ସଭ୍ୟ ହୋଇ ସାରିଥିଲୁ। ଓଡ଼ିଶା ପାର୍ଟିର କାର୍ଯ୍ୟକାରୀ ସମିତି ଏକ ବୈଠକରେ ଏଲାହାବାଦରେ ଗୃହୀତ, କଂଗ୍ରେସ ଓ କମ୍ୟୁନିଷ୍ଟଙ୍କୁ ସମାନ ଦୂରତ୍ୱରେ ରଖିବା ନୀତିକୁ ପାଳନ କରିବା ନିମନ୍ତେ ସ୍ଥିର କରିଥିଲା। ଆମେ ଦୁ' ଜଣ ତାହାର ସମର୍ଥକ ଥିଲୁ—ତେଣୁ ଆଭାଡ଼ୀ ପ୍ରସ୍ତାବ ଗ୍ରହଣୀୟ ନୁହେଁ ବୋଲି ମତ ଦେଲୁ। କିନ୍ତୁ ଅଶୋକ ମେହେଟା ପୂର୍ବପରି ଭିନ୍ନମତ ପୋଷଣ କଲେ। ସେ କିଛି କଂଗ୍ରେସରେ ଯୋଗଦେବା ବା ମିଳିତ ମନ୍ତ୍ରିମଣ୍ଡଳ ପ୍ରଶ୍ନ ଉଠାଇନଥିଲେ। ଏକ ପ୍ରସ୍ତାବର ଛଟାରେ ସେ କହିବାକୁ ଚାହିଁଲେ ଯେ, କଂଗ୍ରେସ ଯେ କ୍ରମେ ସୋସଲିଷ୍ଟ ନୀତି ଗ୍ରହଣ ଆଡ଼କୁ ମନ ବଳାଇଲାଣି ଏହା ତାତ୍ପର୍ଯ୍ୟପୂର୍ଣ୍ଣ ଏବଂ ଆମେ ସୋସଲିଷ୍ଟ ପାର୍ଟି ଭାବରେ କଂଗ୍ରେସର ଏହି ପରିବର୍ତ୍ତିତ ଦୃଷ୍ଟିକୋଣକୁ ସ୍ୱାଗତ କରିବା। ମାତ୍ର କାର୍ଯ୍ୟକାରୀ ସମିତି ଅଶୋକଙ୍କ ଛଟା ପ୍ରସ୍ତାବକୁ ଅଗ୍ରାହ୍ୟ କରି ନିମ୍ନଲିଖିତ ମତେ ଏକ ପ୍ରସ୍ତାବ ଗ୍ରହଣକଲା—"କଂଗ୍ରେସ ଦଳ ଆଭାଡ଼ୀଠାରେ ଯେଉଁସବୁ ପ୍ରସ୍ତାବ ଗ୍ରହଣ କରିଥିଲା, ତାହାକୁ ଅତି ଯତ୍ନ ସହକାରେ ସବୁଦିଗରୁ ବିଚାର କରି କାର୍ଯ୍ୟକାରୀ ସମିତିର ଦୃଢ଼ ମତ ଯେ, ଏହି ସବୁ ପ୍ରସ୍ତାବ ଦ୍ୱାରା କଂଗ୍ରେସର ନୀତିରେ କୌଣସି ମୌଳିକ ପରିବର୍ତ୍ତନ ଘଟିନାହିଁ। ତେଣୁ କଂଗ୍ରେସ 'ସମାଜବାଦୀ ଢାଞ୍ଚା' ନାମକ ଯେଉଁ ନୂତନ ଧ୍ୱନି ଉଠାଇଛି, ସେ ଫାନ୍ଦରେ ଲୋକେ ପଡ଼ନ୍ତୁ ନାହିଁ।"

ଏହା ସଙ୍ଗେ ସଙ୍ଗେ ପାର୍ଟିର ସ୍ୱାତନ୍ତ୍ର୍ୟ ରକ୍ଷା କରି ଏଲାହାବାଦ ନୀତି ଅନୁସାରେ ପ୍ରଜା ସୋସଲିଷ୍ଟ ପାର୍ଟିକୁ ସମାଜବାଦର ଏକ ପ୍ରଧାନ ଆୟୁଧରୂପେ ଗଢିବା ନିମନ୍ତେ ପାର୍ଟି ସାଥୀମାନଙ୍କୁ ନିବେଦନ କରାଗଲା।

## ପାର୍ଟି ଭାଙ୍ଗିବା ନିମନ୍ତେ ବଦ୍ଧପରିକର

ଏକଥା ସତ୍ୟ ଯେ ଅଶୋକ ମେହେଟା ଓ ତାଙ୍କ ମତ ସମର୍ଥନ କରୁଥିବା ପାର୍ଟିର କେତେକ ସାଥି ଟିକିଏ ମଉକା ପାଇଲେ କଂଗ୍ରେସ ସହ ସହଯୋଗ କଥା ଉଠାଉଥିଲେ । ସେମାନେ ସେଭଳି ମତ ପୋଷଣ କରୁଥିଲେ । କିନ୍ତୁ ପାର୍ଟି ଭିତରେ ଏପରି ମତ ଗଠନ ନିମନ୍ତେ ଉଦ୍ୟମ କରିବା ବ୍ୟତୀତ କେବେ ଅନୁଶାସନ ଭାଙ୍ଗି ବାହାରେ ପାର୍ଟିର ସମାଲୋଚନା କରୁନଥିଲେ । ମାତ୍ର ଲୋହିଆ ଓ ତାଙ୍କ ଅନୁଚରମାନେ ନିଜ କଥା ନ ରହିବାରୁ ସତେ କି ପାର୍ଟି ଯେପରି ଖଣ୍ଡ ଖଣ୍ଡ ହୋଇଯିବ ଏଥିଲାଗି ଷଡ଼ଯନ୍ତ୍ର କରିବାକୁ ଲାଗିଲେ । ନାଗପୁରଠାରେ ଲୋହିଆଙ୍କ ମତ ସପକ୍ଷରେ ୨୧୭ ଏବଂ ବିରୋଧରେ ୩୦୩ ଭୋଟ ହୋଇଥିଲା । ପାର୍ଟିର ଜଣାଶୁଣା ନେତୃମଣ୍ଡଳୀ ପକ୍ଷରୁ କେହି ତାଙ୍କୁ ସମର୍ଥନ ଦେଉ-ନଥିଲେ । ସାଧାରଣ ଗଣତାନ୍ତ୍ରିକ ରୀତି ଅନୁସାରେ ସେ କେବେହେଁ ପାର୍ଟିରେ ବହୁମତ ପାଇପାରିନଥାଆନ୍ତେ । ତେଣୁ ବୋଧହୁଏ ଲୋହିଆ ନିଜର ଅଲଗା ରାସ୍ତା ଧରିବାକୁ ମନ ସ୍ଥିରକରିନେଇ ସେହି ଅନୁସାରେ ପି. ଏସ୍. ପି. ବିରୁଦ୍ଧରେ ନାନା ଅପପ୍ରଚାର ଓ ଶୃଙ୍ଖଳାହୀନ କାର୍ଯ୍ୟ କରିବାକୁ ଲାଗିଲେ । ମଧୁ ଲିମାୟେ ଆଉ ୯ ଜଣ ସାଥୀଙ୍କ ସହ ପାର୍ଟିର ଶୃଙ୍ଖଳାବିରୋଧୀ କାର୍ଯ୍ୟ କରିଥିବାରୁ ବମ୍ବେ ପାର୍ଟି ତାଙ୍କୁ ସଭ୍ୟପଦରୁ ସସ୍‌ପେଣ୍ଡ କରିଦେଲା । ଲୋହିଆଙ୍କ ପ୍ରରୋଚନାରେ ଉତ୍ତର ପ୍ରଦେଶ ପାର୍ଟି ତାଙ୍କୁ ପ୍ରାଦେଶିକ ସମ୍ମିଳନୀକୁ ନିମନ୍ତ୍ରଣ କଲା । ପାର୍ଟି ସେକ୍ରେଟାରୀ ତ୍ରିଲୋକୀ ସିଂହ ଓ ଚେୟାରମ୍ୟାନ୍ ନରେନ୍ଦ୍ରଦେବଙ୍କୁ ଅମାନ୍ୟ କରି ଯାଜପୁରଠାରେ ପାର୍ଟି ସମ୍ମିଳନୀ ଡାକିଲେ । ତେଣୁ ସେମାନଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ ଶାସ୍ତି ବିଧାନ କରାଗଲା ଓ ଉତ୍ତର ପ୍ରଦେଶ ପାର୍ଟିକୁ ଭାଙ୍ଗି ଆଉ ଏକ ନୂତନ କମିଟି ଗଠନ କରାଗଲା । ସେହିପରି ଆଉ କେତେକ ପ୍ରଦେଶରେ ପ୍ରକାଶ୍ୟରେ ପାର୍ଟି ନେତୃବୃନ୍ଦର ସମାଲୋଚନା କରାଗଲା ।

ଦ୍ୱିତୀୟରେ ସମାଜବାଦୀ ଯୁବକ ସଭାକୁ ପାର୍ଟି ଅବମାନନାର ଏକ କ୍ଷେତ୍ରରୂପେ ଲୋହିଆ ଆଗରୁ ତିଆରି କରି ସାରିଥିଲେ । ଏହାର କେନ୍ଦ୍ର ବାରାଣସୀରେ ଥିଲା ଏବଂ ଲୋହିଆଙ୍କର ସମର୍ଥକମାନେ ଏଥିର କର୍ମକର୍ତ୍ତା ଥିଲେ । ଏମାନେ ପୁରୀରେ ଏକ ସମ୍ମିଳନୀ ଡାକିଲେ । ସେଥିରେ ମୋର ସମର୍ଥନ ଲୋଡ଼ିଥିଲେ—ମୁଁ ହଁକରିଥିଲି । ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କୁ ମଧ୍ୟ ଯୋଗଦେବା ଲାଗି ନିମନ୍ତ୍ରଣ କରିଥିଲେ । କିନ୍ତୁ ଏଣେ ଆମ ସମର୍ଥନ ନେଇ ତେଣେ ମଧୁ ଲିମାଏ ସସ୍‌ପେଣ୍ଡ ହୋଇଥିବା କଥା ଜାଣି ସୁଦ୍ଧା ତାଙ୍କୁ ସଭାପତି କରିବା ନିମନ୍ତେ ସ୍ଥିର କରାଗଲା । ଏହାର ବିରୋଧ ପାର୍ଟିର କେନ୍ଦ୍ର ଅଫିସ କଲା—ଆଚାର୍ଯ୍ୟ ନରେନ୍ଦ୍ରଦେବ ସମ୍ମିଳନୀକୁ ଯିବାକୁ ନାସ୍ତିକରିଦେଲେ ଏବଂ ଏକ ସର୍କୁଲାରରେ ସବୁ ପ୍ରାଦେଶିକ ପାର୍ଟିକୁ ଏଥିରେ ସହଯୋଗ ନକରିବା ନିମନ୍ତେ ଲେଖାଗଲା । ଏଥିରେ ଉତ୍ତ୍ୟକ୍ତ ହୋଇ ସମାଜବାଦୀ ଯୁବକ ସଭାର ସେକ୍ରେଟାରୀ ରଙ୍ଗନାଥ ମତେ ଏକ ଭର୍ତ୍ସନାମୂଳକ ପତ୍ର

ଲେଖିଲେ । ମୁଁ ଆଗରୁ ଜାଣିଥିଲି ଯେ ପ୍ରତି ପ୍ରଦେଶରେ ଡକ୍ଟର ଲୋହିଆ ତାଙ୍କର ଗୋଷ୍ଠୀ ଗଠନ କରୁଥିଲେ । ଓଡ଼ିଶାକୁ ଏଥିରୁ ଅଲଗା ରଖିବା ମୋର ଆନ୍ତରିକ ଇଚ୍ଛା ଥିଲା । ମାତ୍ର ଦିନେ ହଠାତ୍ ରବି ରାୟଙ୍କୁ ମୁଁ କଲିକତାରେ ଲୋହିଆଙ୍କ ବନ୍ଧୁ ବାଳକୃଷ୍ଣ ଗୁପ୍ତଙ୍କ ଘରେ ଲୋହିଆଙ୍କ ସହ ଦେଖିଲି । ରବି ଅପ୍ରସ୍ତୁତ ହୋଇଗଲେ । ପରେ ଏ ବିଷୟ ବୈଠକରେ ପାର୍ଟିର ପ୍ରାଦେଶିକ କାର୍ଯ୍ୟକାରୀ ସମିତିରେ ଉଠାଇଲି । ରବି ନିଜର ଭୁଲ ମାଗିଲେ, ମାତ୍ର ପ୍ରାଦେଶିକ କାର୍ଯ୍ୟକାରୀ ସମିତିରୁ ଇସ୍ତଫା ଦେଇ ପୂର୍ଣ୍ଣପ୍ରାଣରେ ସମାଜବାଦୀ ଯୁବକ ସଙ୍ଘରେ ରଙ୍ଗନାଥଙ୍କ ସହଯୋଗୀ ରୂପେ କାର୍ଯ୍ୟ କରୁଥିଲେ । ସେହିମାନେ ପୁରୀରେ ଏପରି ଅବଜ୍ଞାମୂଳକ ସମ୍ମିଳନୀ କରାଉଥିଲେ । କଥାଟିକୁ ବଢ଼ାଇ ନ ଦେବା ନିମନ୍ତେ ମୁଁ ଜାତୀୟ କାର୍ଯ୍ୟକାରୀ ସମିତିରେ ପ୍ରସ୍ତାବ କରାଇନେଲି ଯେ ଯଦି ପାର୍ଟି ନେତୃତ୍ୱକୁ ବଦ୍‌ନାମ ଓ ଲାଞ୍ଛନା ଦେବା କାର୍ଯ୍ୟରୁ ନିବୃତ୍ତ ହୁଅନ୍ତି, ତେବେ ଉତ୍କଳ ପ୍ରଜା ସୋସଲିଷ୍ଟ ପାର୍ଟି ସେଥିରେ ସହଯୋଗ କରିପାରନ୍ତି; କିନ୍ତୁ ସେମାନେ ତ ପାର୍ଟି ଶୃଙ୍ଖଳା ଭାଙ୍ଗିବା ନିମନ୍ତେ ବଦ୍ଧପରିକର ଥିଲେ—ଏହାକୁ କାହିଁକି ବା ମାନନ୍ତେ ? ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ବ୍ୟକ୍ତିଗତ ଉଦ୍ୟମ ବି ବ୍ୟର୍ଥହେଲା । ପାର୍ଟିରେ ସଙ୍କଟ ବୃଦ୍ଧି ପାଇଲା । ତେଣୁ ପାର୍ଟିର ଏକ ଜେନେରାଲ କାଉନ୍‌ସିଲ୍ ବୈଠକ ରାଜସ୍ଥାନର ଜୟପୁରକୁ ଡକାଗଲା । ଜାତୀୟ କାର୍ଯ୍ୟକାରୀ ସମିତିର ବୈଠକ ଜୟପୁରଠାରେ ଜୁଲାଇ ୧୫ରୁ ୨୧ ପର୍ଯ୍ୟନ୍ତ ବସିଲା । ମେମ୍ବରମାନଙ୍କ ଛଡ଼ା ଜୟପ୍ରକାଶ ନାରାୟଣ ଓ ଆଚାର୍ଯ୍ୟ କୃପାଳାନୀ ବି ଉପସ୍ଥିତ ଥିଲେ ।

ଏଠାରେ ପାର୍ଟି ସଂଗଠନ ସମ୍ବନ୍ଧରେ ଅନେକଗୁଡ଼ିଏ ସିଦ୍ଧାନ୍ତ ନିଆଗଲା ଏବଂ ଡକ୍ଟର ଲୋହିଆଙ୍କୁ ଶୃଙ୍ଖଳାଭଙ୍ଗ ଯୋଗୁଁ ପାର୍ଟିରୁ ସସ୍‌ପେଣ୍ଡ କରି ଏକ ପ୍ରସ୍ତାବ ଗ୍ରହଣ କରାଗଲା । ପ୍ରସ୍ତାବରେ କୁହାଗଲା—"ଜାତୀୟ କାର୍ଯ୍ୟକାରୀ ସମିତି ଗତ ଏପ୍ରିଲ ୯, ୧୦ ଓ ୧୧ର ବୈଠକରେ ସମସ୍ତ ପାର୍ଟି ଲୋକଙ୍କୁ ଏବଂ ବିଶେଷଭାବରେ ବ୍ୟକ୍ତିଗତ ଭାବରେ କେତେକ ସଦସ୍ୟଙ୍କୁ ପାର୍ଟି ଭିତରେ ଯେ ବିଶୃଙ୍ଖଳା ଘଟୁଥିଲା ସେ ବିଷୟରେ ସତର୍କ କରିଦେଇଥିଲେ । କାର୍ଯ୍ୟକାରୀ ସମିତି ଖୁସି ଯେ ଏହି ସତର୍କବାଣୀର ବହୁତ ଭଲ ଫଳ ହେଲା । ମାତ୍ର ଅତ୍ୟନ୍ତ ଦୁଃଖର କଥା, କେତେକ କ୍ଷେତ୍ରରେ, ବିଶେଷତଃ ଡକ୍ଟର ଲୋହିଆ, ଏହାର ବିପରୀତ ଆଚରଣ କରିଛନ୍ତି । ଡକ୍ଟର ଲୋହିଆ ପାର୍ଟି ଓ ଜାତୀୟ କାର୍ଯ୍ୟକାରୀ ସମିତିକୁ ସମାଲୋଚନା ଓ ଆକ୍ରମଣ କରିଛନ୍ତି ଏବଂ ଅନ୍ୟ ପାର୍ଟି ସଭ୍ୟ ଓ ପାର୍ଟି ଶାଖାଗୁଡ଼ିକୁ ଜାତୀୟ କାର୍ଯ୍ୟକାରୀ ସମିତିକୁ ଅବମାନନା କରିବା ନିମନ୍ତେ ମତାଉଛନ୍ତି । ଡକ୍ଟର ଲୋହିଆ ନୂତନ ପାର୍ଟି ଗଠନର ଯେ ଧମକ ଦେଉଛନ୍ତି, ତାହା ପାର୍ଟି ଅତି ଗୁରୁତର ବୋଲି ବିଚାର କରୁଛି । ଡକ୍ଟର ଲୋହିଆଙ୍କର ଏପରି କାର୍ଯ୍ୟଦ୍ୱାରା ପାର୍ଟିର ମର୍ଯ୍ୟାଦାହାନି ଘଟିଛି ଏବଂ ସଂଗଠନ ଦୁର୍ବଳ ହେଉଛି । ଜାତୀୟ କାର୍ଯ୍ୟକାରୀ ସମିତି ତେଣୁ ସାଧାରଣ ସମ୍ପାଦକଙ୍କୁ ନିର୍ଦ୍ଦେଶ ଦେଉଛି ଯେ ଏପରି ପାର୍ଟି ବିରୋଧୀ କାର୍ଯ୍ୟ ନିମନ୍ତେ ଡକ୍ଟର ଲୋହିଆଙ୍କୁ କୈଫିୟତ୍ ତଲବ କରନ୍ତୁ ଏବଂ ଅନ୍ୟ କିଛି ସିଦ୍ଧାନ୍ତ ନ ହେବା ପର୍ଯ୍ୟନ୍ତ ପାର୍ଟି ସଭ୍ୟ ପଦରୁ ସସ୍‌ପେଣ୍ଡ କରିଦିଆଗଲା ।"

ଏଥିରେ ଆହୁରି ଏକ ପ୍ରସ୍ତାବରେ ପାର୍ଟି ଲୋକଙ୍କୁ ସତର୍କ କରାଇ ଦିଆଗଲା ଯେ ସେମାନେ କଂଗ୍ରେସ ସହିତ ସହଯୋଗ ଆଦି ଅଯଥା ବିବାଦରୁ କ୍ଷାନ୍ତ ହୁଅନ୍ତୁ ଏବଂ କଂଗ୍ରେସ ସହ ଯୁକ୍ତ ଫ୍ରଣ୍ଟ ବା ମିଳିତ ସହଯୋଗ ଆଦି କଥା ଆଦୌ ନ ଉଠାଇ ପାର୍ଟିର କାର୍ଯ୍ୟ ଆଗେଇଯିବା ନିମନ୍ତେ ଆଗୁଆ ହୋଇ ବାହାରିଆସନ୍ତୁ ।

## ପାର୍ଟି ଦୁଇଭାଗ ହୋଇଗଲା

ଏହା ପରେ ପାର୍ଟି ଦୁଇଭାଗ ହେବାକୁ ଆଉ ଡେରି ଲାଗିଲା ନାହିଁ । ଡକ୍ଟର ଲୋହିଆଙ୍କୁ ସମର୍ଥନ କରି ବିଭିନ୍ନ ପ୍ରଦେଶରେ ତାଙ୍କ ସମର୍ଥକମାନେ ନାନାଦି ନିମ୍ନସ୍ତରର ବ୍ୟକ୍ତିଗତ କୁତ୍ସାରଟନା ଓ ସମାଲୋଚନା ଆରମ୍ଭ କରିଦେଲେ । ତେଣୁ ଲକ୍ଷ୍ନୌଠାରେ ଜାତୀୟ କାର୍ଯ୍ୟକାରୀ ସମିତିର ବୈଠକ ବସି ସେଭଳି ସମର୍ଥକମାନଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ ଶାସ୍ତି ବିଧାନ କରାଗଲା । ସାରା ଭାରତରେ ଯେତେବେଳେ ଏଭଳି ହୋଇଗଲା, ଆମେ ଶତ ଚେଷ୍ଟା କରି ସଦ୍‌ଭାବ ରଖିବା ନିମନ୍ତେ ଆଗ୍ରହ ଦେଖାଇ ସୁଦ୍ଧା ଓଡ଼ିଶାରେ ଏହା ରୋକି ପାରିଲୁ ନାହିଁ । ଲକ୍ଷ୍ନୌ ବୈଠକରେ ଓଡ଼ିଶାର ଫକିର ଚରଣ ଦାସ, ରବି ରାୟ ପ୍ରଭୃତିଙ୍କୁ ପାର୍ଟି ସଭ୍ୟ ପଦରୁ ବହିଷ୍କାର କରିଦିଆଗଲା । କିଶନ୍ ପଟ୍ଟନାୟକ ଏତେବେଳେ ସେମାନଙ୍କ ସହ ଯାଇନଥିଲେ । ସେ ପାର୍ଟିର ପଶ୍ଚିମାଞ୍ଚଳ ଶାଖାର ଦାୟିତ୍ୱରେ ରହିଥିଲେ । ଶେଷରେ ସେ ସେମାନଙ୍କ ସହ ଯୋଗଦେଲେ ।

ଶେଷକୁ ଡିସେମ୍ବର ୨୭ରୁ ୩୦ ପର୍ଯ୍ୟନ୍ତ ଗୟାରେ ପ୍ରଜା ସୋସଲିଷ୍ଟ ପାର୍ଟିର ଦ୍ୱିତୀୟ ଜାତୀୟ ସମ୍ମିଳନୀ ହେଲା ଏବଂ ସେହି ବର୍ଷ ଅର୍ଥାତ୍ ୧୯୫୫ରେ ହାଇଦ୍ରାବାଦରେ ସୋସଲିଷ୍ଟ ପାର୍ଟି ନାମକ ନୂତନ ପାର୍ଟିର ଅଭ୍ୟୁଦୟ ହେଲା ଏବଂ ୭ ବର୍ଷ ଭିତରେ କ୍ଷମତା ପ୍ରାପ୍ତିର ଆହ୍ୱାନ ସେମାନେ ଦେଲେ । □□□

# ୧୧ । ୧୯୫୬ ଓ ତାର ପରବର୍ତ୍ତୀ କାଳ

## ଓଡ଼ିଶାରେ ସୀମାଆନ୍ଦୋଳନ

ରାଜ୍ୟ ପୁନର୍ଗଠନ କମିସନର ରିପୋର୍ଟ ପ୍ରକାଶିତ ହେବା ପରେ ଭାରତର ରାଜନୀତିକ କ୍ଷେତ୍ରରେ ଏକ ନୂତନ ବିପଦ ମୁଣ୍ଡ ଟେକିଲା । ଆନ୍ଧ୍ର ପ୍ରଦେଶ ଗଠନ ଦାବି ସ୍ୱୀକାର କଲାପରେ ଦେଶର ବିଭିନ୍ନ ଅଞ୍ଚଳର ଦାବି ଉଠିଲା ଏବଂ ସେଥିଲାଗି ରାଜ୍ୟ ପୁନର୍ଗଠନ କମିସନ ସ୍ଥାପିତ ହେଲା । ଏମାନେ ଦୁଇବର୍ଷ ଭିତରେ ତାଙ୍କର ରିପୋର୍ଟ ଦେଲେ । ଆମ ଦେଶ ରାଜନୀତିରେ ଏକ ବଡ଼ ଦୁର୍ଭାଗ୍ୟର କଥା ଯେ ବିଶ୍ୱରିବିଭାଗୀୟ ବ୍ୟକ୍ତିଙ୍କୁ ସଂପୃକ୍ତ କରି କମିସନମାନ ନିଯୁକ୍ତ ହୋଇଯାଏ; କିନ୍ତୁ ତାହାର ସିଦ୍ଧାନ୍ତକୁ ସରକାର ମାନିନେବାକୁ ବାଧ୍ୟ ହୁଅନ୍ତି ନାହିଁ । ଫଳରେ ପୁଣି ସେହି ଦ୍ୱନ୍ଦ୍ୱ ଜାରି ରହେ—କମିସନ-ମାନଙ୍କର ଫଏସଲାର କିଛି ଗୁରୁତ୍ୱ ରହେ ନାହିଁ । କମିସନଗୁଡ଼ାକରେ ଅର୍ଥ ଶ୍ରାଦ୍ଧହୁଏ ମାତ୍ର ।

ରାଜ୍ୟ ପୁନର୍ଗଠନ କମିସନ ରିପୋର୍ଟରେ କେ. ଏମ ପାନିକର ତାଙ୍କର ବ୍ୟକ୍ତିଗତ ମତ ଦେଇ କହିଥିଲେ—ଉତ୍ତରପ୍ରଦେଶ ଏତେ ବଡ଼ ପ୍ରଦେଶ ହୋଇଥିବାରୁ ଶାସନ ଭଲ ଚଳୁନାହିଁ; ଏହା ଅତି ଅନୁନ୍ନତ ଅବସ୍ଥାରେ ରହିଛି । ନିରକ୍ଷରଙ୍କ ସଂଖ୍ୟା ଭାରତର ସବୁ ପ୍ରଦେଶଠାରୁ ଏଠାରେ ଅଧିକ । ତେଣୁ ଏହାକୁ ବିଭକ୍ତ କରିଦିଆଯାଉ । ଏହା କମିସନର ରାୟ ନ ଥିଲା । କେ. ଏମ୍. ପାନିକର ତାଙ୍କର ବ୍ୟକ୍ତିଗତ ଭିନ୍ନ ମତ ରିପୋର୍ଟରେ ଉଲ୍ଲେଖ କରିଥିଲେ । ମାତ୍ର ରିପୋର୍ଟ ବାହାରିଲା ପରେ ସରକାର ଏଥିର ସୁପାରିଶ ଗ୍ରହଣ କରିବେ କି ନାହିଁ ତାହା ପ୍ରକାଶ କରିବା କଥା । ମାତ୍ର ତାହା ହେବା ପୂର୍ବରୁ ପଣ୍ଡିତ ନେହରୁ ଉତ୍ତରପ୍ରଦେଶର ବିଭାଜନ ପ୍ରସ୍ତାବରେ ଅତ୍ୟନ୍ତ ଉତ୍ତେଜିତ ହୋଇପଡ଼ିଲେ; ଏକଥା କିମିତି ହୋଇପାରିବ ବୋଲି ବକ୍ତବ୍ୟ ପ୍ରକାଶ କଲେ । ତାଙ୍କର ଏହି ଉକ୍ତି ପରେ ଦେଶର ଚୁରିଆଡ଼େ ବିବାଦ ମୁଣ୍ଡ ଟେକିଲା । ଯେଉଁ ପ୍ରଦେଶଗୁଡ଼ିକ ଏଥିରେ ନ୍ୟାୟ ପାଇ ନ ଥିଲେ, ସେଗୁଡ଼ିକ ମିଳିତ ଭାବରେ ସ୍ୱର ଉତ୍ତୋଳନ କଲେ ।

## ରାଜ୍ୟସଭାରେ ମୋର ଉକ୍ତି

୧୯୫୫ ଡିସେମ୍ବର ୧୯ ତାରିଖରେ ରାଜ୍ୟ ପୁନର୍ଗଠନ କମିସନ ରିପୋର୍ଟ ଆଲୋଚନା-ବେଳେ ମୁଁ କହିଥିଲି—କମିସନ ନୀତି ନିର୍ଦ୍ଧିଷ୍ଟ କରି ସେହି ଭିତ୍ତିରେ ପୁନର୍ଗଠନ କରିବାର କାର୍ଯ୍ୟ ଛାଡ଼ିଦେଇଥିଲେ ଭଲହୋଇଥାନ୍ତା । ସେମାନେ ବିଭିନ୍ନ ପ୍ରଦେଶର ପୁନର୍ବଣ୍ଟନ ସୀମା ପର୍ଯ୍ୟନ୍ତ ଉଲ୍ଲେଖ କରିବା ହେତୁ ଯାବତୀୟ ଅସୁବିଧା ସୃଷ୍ଟି ହେଲା ।

ଓଡ଼ିଶା ବିଷୟ ଉତ୍ଥାପନ କରି ମୁଁ ଦର୍ଶାଇଲି ଯେ, କମିସନ ଓଡ଼ିଶାର ଦାବି ମୂଳରୁ ବିଚାରକୁ ନ ନେଇ ଅନ୍ୟାୟ କରିଛନ୍ତି । ସେହିଭଳି ଷଢେଇକଳା, ଖରସୁଆଁ ଓ ସିଂହଭୂମି ସଦର ପ୍ରକୃତ ଓଡ଼ିଆ ମୂଲକ ହୋଇଥିଲେ ସୁଦ୍ଧା ସେ ଅଞ୍ଚଳକୁ ବିହାରରେ ସେମିତି ରଖିଦେବାଦ୍ୱାରା ସମସ୍ୟାର ସମାଧାନ ହେଲା ନାହିଁ ବରଂ ଏହା ସମସ୍ୟା ସୃଷ୍ଟି କଲା ।

ବାସ୍ତବିକ ଏହି ଅଞ୍ଚଳ ଘେନି ଆମେ ବହୁତ ଆନ୍ଦୋଳନ କରିଥିଲୁ । ମୁଁ ବ୍ୟକ୍ତିଗତ-ଭାବରେ ଏ ଅଞ୍ଚଳକୁ ବିହାର ସୋସଲିଷ୍ଟ ପାର୍ଟି ଆନୁକୂଲ୍ୟରେ ହୋଇଥିବା ସଭାମାନଙ୍କରେ ଯୋଗଦେଇ ଓଡ଼ିଶା ସହିତ ଏସବୁ ଅଞ୍ଚଳର ମିଶ୍ରଣ କଥା ପ୍ରକାଶ୍ୟରେ ସେଠାରେ କହିବାରେ ଦ୍ୱିଧା କରିନଥିଲି । ମୂଳରୁ ବିଚାରକଲେ କଂଗ୍ରେସ ଯୋଗୁଁ ମୁଖ୍ୟତଃ ଏହି ଅଞ୍ଚଳ ଓଡ଼ିଶା ବାହାରେ ରହିଗଲା । କଂଗ୍ରେସ ଲୋକଙ୍କର ପ୍ରଥମ ପ୍ରତିକ୍ରିୟା ଠିକ୍ ଥିଲା । ପଣ୍ଡିତ ନେହରୁ ଜାନୁୟାରି ୧୭ ତାରିଖରେ ବିବୃତି ଦେଇ ବିସ୍ମୟ ପ୍ରକାଶ କଲେ । ଜାନୁୟାରି ୧୮ ତାରିଖରେ ଓଡ଼ିଶା କଂଗ୍ରେସ ଲୋକେ ବି ସାଧାରଣରେ ଘୋଷଣା କଲେ ଯେ ରିପୋର୍ଟ ଓ ସରକାରୀ ଘୋଷଣା ଗ୍ରହଣଯୋଗ୍ୟ ନୁହେଁ । ମନ୍ତ୍ରୀମାନେ ଇସ୍ତଫା ଦେଇ ଶାସନଗତ ଅଚଳ ଅବସ୍ଥା ସୃଷ୍ଟି କଲେ । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଓ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଇସ୍ତଫାପତ୍ର ଧରି ଦିଲ୍ଲୀ ଆସିଗଲେ । ସେମାନଙ୍କର ଏପରି ବୀରତ୍ୱପୂର୍ଣ୍ଣ ଘୋଷଣା ପରେ ସାରା ରାଜ୍ୟରେ ଚହଲ ପଡ଼ିଗଲା । ଲୋକଙ୍କ ଭିତରେ ପ୍ରବଳ ଉତ୍ତେଜନା ଓ ଉତ୍ସାହ । ଲୋକଙ୍କ ଆଡ଼ୁ ଚାରିଆଡ଼େ ପ୍ରତିବାଦ, ହରତାଳ, ରେଲଗାଡ଼ି ଅଟକାଇବା ଇତ୍ୟାଦି ଚାଲିଲା । ମୁଖ୍ୟତଃ ଛାତ୍ରମାନେ ୧୮, ୧୯ ଓ ୨୦ ତାରିଖରେ ଏକ ଅଭୂତପୂର୍ବ ପ୍ରତିବାଦ ହରତାଳ ସଂଗଠିତ କଲେ । ଯାହା କଥାରେ କହନ୍ତି—ଓଡ଼ିଶାର ପୁରପଲ୍ଲୀ ସର୍ବତ୍ର ସତେକି ଗଛପତ୍ର ବି ହଲିଲା ନାହିଁ । ଲୋକଙ୍କ ଭିତରେ ଥିବା ଜାତୀୟ ପ୍ରାଣ ଉଜ୍ଜୀବିତ ହେଲା । ଏସବୁ ଅବସ୍ଥା ଦେଖି ସାଧାରଣ ସେବୀମାନେ ପଦାକୁ ବାହାରିଲେ ଜାନୁୟାରି ୨୧ ତାରିଖରେ । ଚାରିଆଡେ ସଂଗ୍ରାମ କମିଟି ସ୍ଥାପିତ ହେଲା; ତହିଁରେ କଂଗ୍ରେସ ଲୋକେ ବି ସାମିଲ ହେଲେ । ସେହି କମିଟି ଭାରତ ସରକାରଙ୍କର ସବୁ ଅଫିସ ଏପରିକି ଆକାଶବାଣୀ ମଧ୍ୟ ପିକେଟିଂ କରିବା ନିମନ୍ତେ ସ୍ଥିର କଲେ । ଏସବୁ ଆନ୍ଦୋଳନରେ ଓଡ଼ିଶା ସରକାର ହସ୍ତକ୍ଷେପ କଲାନାହିଁ । କୌଣସି ପ୍ରତିରୋଧକ ବ୍ୟବସ୍ଥା ନ କରି ବରଂ ଉଦାସୀନ ରହିଲା ଏବଂ ଏଥିରେ ତାଙ୍କର ଭିତରିଆ ସମର୍ଥନ ଥିବା ପରି ଜଣାପଡ଼ିଲା । ସବୁଠାରୁ ଉଲ୍ଲେଖଯୋଗ୍ୟ କଥା ହେଉଛି, ଏଥିରେ ଅଣଓଡ଼ିଆ ବା ବିହାରୀ ସଂପ୍ରଦାୟ ପ୍ରତି କୌଣସି ଅସୂୟା ଭାବ ପ୍ରକାଶ ପାଇନଥିଲା—ଏହା ମୁଖ୍ୟତଃ ଭାରତ ସରକାର ବିରୁଦ୍ଧରେ ଥିଲା, ପରେ ଓଡ଼ିଶା ସରକାର ବିରୋଧରେ ଗଲା । କାରଣ ଆନ୍ଦୋଳନର ଗତି ପ୍ରବଳ ହେଲା ବେଳକୁ ମୁଖ୍ୟମନ୍ତ୍ରୀ ଦିଲ୍ଲୀରୁ ଫେରିଗଲେ । ଏଥିଭିତରେ ପୁରୀରେ ଏକ ପରିସ୍ଥିତି ଘଟିଥିଲା ଏବଂ ଗୁଳିରେ ବେଙ୍ଗପାଣିଆର ମୃତ୍ୟୁ ହେଲା । ଏହା ସରକାରୀ କର୍ତ୍ତାମାନଙ୍କୁ ଦୋହଲାଇ ଦେଲା । ସେମାନେ ଆଉ ସମ୍ଭାଳି ରହିପାରିଲେ ନାହିଁ । ଓଡ଼ିଶା ସରକାର ଦମନମୂଳକ

ପନ୍ଥା ପ୍ରୟୋଗ କଲା । ସୈନ୍ୟ ଡାକ ଆଣିଲେ; ଗୁରୁଆଡ୍ରେ ୧୪୪ ଧାରା ନିଷେଧାଜ୍ଞା ଆଦି ଜାରିହୋଇଗଲା । ଏଥିରେ ନବକୃଷ୍ଣ ଚୌଧୁରୀଙ୍କ ଆଚରଣ କ୍ଷମଣୀୟ ନୁହେଁ ।

## ଉତ୍କଳ ସମ୍ମିଳନୀର ନେତୃତ୍ୱ

ଏହା ପରେ ସବୁ ବିରୋଧୀ ଦଳ ଏଥିରେ ଆଗୁଆ ହୋଇ ନିଷେଧାଜ୍ଞା ଅମାନ୍ୟ କରିବାକୁ ସ୍ଥିରକଲେ । କମ୍ୟୁନିଷ୍ଟ ଏଥିରେ ବିଶେଷ ଆଗ୍ରହ ଦେଖାଇ ନ ଥିଲେ । କିନ୍ତୁ ଆମେ ବି ନିଖିଳ ଭାରତ ଦଳ ହୋଇ ସୁଦ୍ଧା ଓଡ଼ିଶାର ଦାବି ଲାଗି କାର୍ଯ୍ୟ କରିବାରେ କୌଣସି ବାଧା ପାଇଲୁ ନାହିଁ । ସାରଙ୍ଗଧର ଦାସ ଓ ଅନ୍ୟ ସାଥୀସବୁ ଜେଲବରଣ କରିଥିଲେ । ପ୍ରଜା ସୋସଲିଷ୍ଟ ପାର୍ଟିର ଦ୍ୱିତୀୟ ବାର୍ଷିକ ସମ୍ମିଳନୀ ନଭେମ୍ବର ୨୫ରୁ ୨୮ ପର୍ଯ୍ୟନ୍ତ ବାଙ୍ଗାଲୋର-ଠାରେ ବସିଥିଲା । ଏଥିରେ ଆମ ତରଫରୁ ରାଜକିଶୋର ସାମନ୍ତରାୟ ଭାଷଣ ଦେଇ କହିଥିଲେ—"ଓଡ଼ିଶାରେ ଏହା ଏକ ଅଭୂତପୂର୍ବ ଆନ୍ଦୋଳନ । ସବୁ ବିରୋଧୀଦଳ ଏଥିରେ ଭାଗନେଇଥିଲେ । ପ୍ରଥମ ଉତ୍ତେଜନା ତ ଶାସକ କଂଗ୍ରେସ ଦଳରୁ ଆସିଥିଲା । ସେମାନେ ନିଆଁ ଲଗାଇ ଦେଇ ପଛଘୁଞ୍ଚା ଦେଇ ପଳାଇଗଲେ । ପି. ଏସ୍. ପି. ଏତିକବେଳେ ଏହି ଆନ୍ଦୋଳନରେ ପ୍ରବେଶ କରି ଏହାକୁ ଠିକଣା ବାଟରେ ଚାଳନା କଲା । ଆମେ ଏଥିରେ ବହୁ ପରିମାଣରେ ସଫଳ ହେଲୁ । ଯେଉଁ ଅଳ୍ପସଂଖ୍ୟକ ଭିନ୍ନ ଭାଷାଭାଷୀ ଓଡ଼ିଶାରେ ରହିଛନ୍ତି, ସାରା ଆନ୍ଦୋଳନ ଭିତରେ ସେମାନଙ୍କ ପ୍ରତି କୌଣସି ପ୍ରକାର ଦୁର୍ବ୍ୟବହାର ବା ହଇରାଣ କରାଯାଇନଥିଲା ବୋଲି ମୁଁ ଦୃଢ଼ତା ସହକାରେ କହିପାରେ ।" ରାଜକିଶୋର ସାମନ୍ତରାୟ ସେତେବେଳକୁ ପ୍ରାଦେଶିକ ପାର୍ଟିର ସଂପାଦକ ଥିଲେ ।

## ଜୟପ୍ରକାଶଙ୍କ ଉଦ୍ୟମ

ଜୟପ୍ରକାଶ ନାରାୟଣ ମଧ୍ୟ ସତେଇକଲାରେ ସଭା କରି ଘୋଷଣା କଲେ ଯେ ଏପରି ସୀମା ଅଞ୍ଚଳର ସମସ୍ୟାଗୁଡ଼ିକ ଗଣଭୋଟ ନିଆଯାଇ ସ୍ଥିର କରାଯିବା ଉଚିତ । ଏହି ସଂକ୍ରାନ୍ତରେ ମାର୍ଚ୍ଚ ୧୩ ତାରିଖରେ ଜୟପ୍ରକାଶଙ୍କର ପ୍ରଧାନମନ୍ତ୍ରୀ ନେହେରୁଙ୍କ ସହ ଭେଟ ହେବାର ଥିଲା । ମୁଁ ଓ ସାରଙ୍ଗଧରବାବୁ ଏକ ମିଳିତ ଚିଠିରେ ନେହେରୁଙ୍କ ଆଗରେ ଆମର ଦାବି ରଖିବା ନିମନ୍ତେ ଅନୁରୋଧ କଲୁ ଏବଂ ଏକ ପତ୍ର ବି ୧୨ ତାରିଖରେ ତାଙ୍କ ହାତରେ ଦେଲୁ । ଆମେ ସେଥିରେ ଲେଖିଥିଲୁ—"ଏକ ଭୁଲପ୍ରଚାର ଚାଲିଛି ଯେ ପୂର୍ବତନ ରାଜାମାନେ ଏହି ଆନ୍ଦୋଳନ ପଛରେ ରହିଛନ୍ତି । ପଣ୍ଡିତ ଜବାହାରଲାଲ ଓ ପଣ୍ଡିତ ପନ୍ଥ ଏପରି କହିବାଦ୍ୱାରା ପୂର୍ବତନ ରାଜାମାନଙ୍କର ଗୁରୁତ୍ୱ ଲୋକଙ୍କ ସମ୍ମୁଖରେ ବଢ଼ାଇ ଦେଇଛନ୍ତି ସିନା; କିନ୍ତୁ ଆନ୍ଦୋଳନଟି ବାସ୍ତବିକ ସର୍ବଦଳୀୟ ଥିଲା—ଭାରତ ସରକାର ଏବଂ ଓଡ଼ିଶା ସରକାର ଉଭୟ ବିରୁଦ୍ଧରେ ଶେଷକୁ ଗଲା । ମାତ୍ର ଆମ ଆନ୍ଦୋଳନ ଫଳରେ ସରକାରକୁ ଶେଷରେ ମୁଣ୍ଡ ନୁଆଁଇବାକୁ ପଡ଼ିଥିଲା । ନିଷେଧାଜ୍ଞା ଆଇନକୁ ପ୍ରତ୍ୟାହାର କରି

ଦିଆଗଲା—ଆଇନ ଅମାନ୍ୟ କରି ଯେଉଁମାନେ ଜେଲ୍‌ବରଣ କରିଥିଲେ, ସେମାନେ ମୁକ୍ତ ହୋଇ ଆମ ରାଜ୍ୟଲୋକଙ୍କ ପାଖରେ ବୀରପୂଜା ପାଇଲେ ।"

ଆମେ ଆହୁରି ଲେଖିଲୁ—"ସରେଇକଲା, ଖରସୁଆଁ ଓ ସିଂହଭୂମିର ସଦର ଇଲାକା ଓଡ଼ିଶାକୁ ଫେରାଇଦେବା ବିରୁଦ୍ଧରେ ଗୋଟାଏ ଯୁକ୍ତି କରାଯାଉଛି ଯେ ଏ ଅଞ୍ଚଳରେ ଓଡ଼ିଆ ହେଉଛି ଦ୍ୱିତୀୟ ଭାଷା (Second Language) ଏବଂ 'ହୋ'ଭାଷୀ ଆଦିବାସୀଙ୍କ ମତହିଁ ପ୍ରକୃତ ମତ । କିନ୍ତୁ ସେ ଅଞ୍ଚଳରୁ 'ହୋ'ଭାଷୀ ଯେଉଁ ଆଦିବାସୀ ଏମ୍. ଏଲ୍. ଏ.ମାନେ ବିହାର ଆସେମ୍ବ୍ଲିକୁ ନିର୍ବାଚିତ ହୋଇଛନ୍ତି, ସେମାନେ ଯେତେବେଳେ ଓଡ଼ିଶାକୁ ଆସିବା ସପକ୍ଷରେ ରାଜ୍ୟ ପୁନର୍ଗଠନ କମିସନ ଆଗରେ ସାକ୍ଷ୍ୟ ଦେଇ ଜଣାଇ ଦେଲେ, ସେତେବେଳେ ତାହା ଗ୍ରହଣ କରିନେବା ଉଚିତଥିଲା ।"

## ଏ ଅଞ୍ଚଳରେ ଗଣଭୋଟ ଗ୍ରହଣ କରାଯାଉ

"ଆମେ ଗୁହାରି ଏ ଅଞ୍ଚଳର ସୀମା ବିବାଦ ତୁଟାଇବାଲାଗି ଜନମତ ଗ୍ରହଣ କରାଯାଉ । ଆମ ପାର୍ଟି କାର୍ଯ୍ୟକାରୀ ସମିତି ପ୍ରସ୍ତାବ କରି କହୁଛି—ହୁଏତ ଏକ ନିରପେକ୍ଷ ଭାରତୀୟ ଟ୍ରିବୁନାଲ ବସୁ, ନଚେତ୍ ଭାରତ ସରକାରର ଆନୁକୂଲ୍ୟରେ ଏକ ଗଣଭୋଟ (Plebiscite) ନେବାର ବ୍ୟବସ୍ଥା କରାଯାଉ । ନିର୍ଦ୍ଦଳୀୟ ସଂଗଠନ ଉତ୍କଳ ସମ୍ମିଳନୀ ମଧ୍ୟ ଗଣଭୋଟ ସଂଗ୍ରହ ସପକ୍ଷରେ ମତ ଦେଇଛି ।

"ଏଥିଲାଗି ହୁଏତ ଟ୍ରିବୁନାଲ ବସୁ, ନଚେତ୍ ଗଣଭୋଟ ସଂଗ୍ରହ କରାଯାଉ । ଅନ୍ୟ ସୀମା ସମସ୍ୟାଠାରୁ ଏହା ଭିନ୍ନ । ୧୯୪୮ରେ ଗଡ଼ଜାତ ମିଶ୍ରଣବେଳେ ଶାସନଗତ କାରଣ ଦର୍ଶାଇ ଓଡ଼ିଶାରେ ନ ମିଶାଇ ଏଗୁଡ଼ିକ ବିହାର ସହିତ ଅସ୍ଥାୟୀ ଭାବରେ ରଖାଯାଇଥିଲା । ଭାରତ ସରକାର ମଧ୍ୟ ଏଥିଲାଗି ଏକ ଜଣକିଆ ଟ୍ରିବୁନାଲ୍ ନିଯୁକ୍ତି ଘୋଷଣା କରିସାରିଥିଲେ । ମାତ୍ର ସେତେବେଳକୁ ହାଇଦ୍ରାବାଦ ଓ ଅନ୍ୟ ରାଜ୍ୟଗୁଡ଼ିକର ସମସ୍ୟାର ଜଟିଳତା ଦୃଷ୍ଟିରୁ ସର୍ଦ୍ଦାର ପଟେଲ ଏଥିରେ ହସ୍ତକ୍ଷେପ କଲେ ଏବଂ ତତ୍କାଳୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ଅସ୍ଥାୟୀଭାବରେ ଏହି ଅଞ୍ଚଳଗୁଡ଼ିକ ବିହାର ପ୍ରଦେଶ ଅଧୀନରେ ରହିବାଲାଗି ସମ୍ମତ ହୋଇଗଲେ । ରାଜ୍ୟ ପୁନର୍ଗଠନ କମିସନ ଯଦି ଏହି ବିଷୟଗୁଡ଼ିକ ବିଚାରକୁ ନେଇଥାଆନ୍ତା, ତେବେ ଆମର ଦୃଢ଼ବିଶ୍ୱାସ, ସେମାନେ ଏହି ଅଞ୍ଚଳକୁ ଓଡ଼ିଶାକୁ ହସ୍ତାନ୍ତର କରିବା ବ୍ୟତୀତ ତାଙ୍କର ଗତ୍ୟନ୍ତର ନଥାଆନ୍ତା । ମାତ୍ର ସେମାନେ ଏହା ଏକର ସମସ୍ୟା ବୋଲି କହିଦେଇ ନୀରବ ହୋଇଗଲେ ଏବଂ ବିବାଦକୁ ବଞ୍ଚେଇ ରଖିଲେ ।"

ଜୟପ୍ରକାଶଜୀ ଅନ୍ୟାନ୍ୟ କଥା ଭିତରେ ଆମର ଏ ଦାବୀ ଜବାହରଲାଲଙ୍କ ପାଖରେ ରଖିଲେ ଏବଂ ସେ ନିଜେ ଗଣଭୋଟ ସଂଗ୍ରହର ପକ୍ଷପାତୀ ବୋଲି କହିଥିଲେ । ବାହାରେ

ବିବୃତି ଦେଇ ତାଙ୍କ ମତ ସାଧାରଣରେ ଜଣାଇଦେଲେ । ମାତ୍ର ଉପରେ ରାଜେନ୍ଦ୍ରପ୍ରସାଦଙ୍କର ପ୍ରଭାବ ଅତି ବେଶି । ସେ ରାଷ୍ଟ୍ରପତି । ମୂଳରୁ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଅମଳରୁ ସେହିମାନେ ବିରୋଧ କରିଆସିଥିଲେ; ଏପରି କି ନିଖିଳ ଭାରତ କଂଗ୍ରେସର ନିଷ୍ପତ୍ତିକୁ ଅବଜ୍ଞା କରି ବିହାର ପ୍ରଦେଶ କଂଗ୍ରେସ କମିଟିର ଅନ୍ତର୍ଭୁକ୍ତ କରାଇଥିଲେ । ତେଣୁ ଗଣଭୋଟ ସଂଗ୍ରହ ହେଲାନାହିଁ । ପି. ଏସ୍. ପି. ତାର ଜାତୀୟ ସମ୍ମିଳନୀରେ ଗଣଭୋଟ ସପକ୍ଷରେ ପ୍ରସ୍ତାବ ଗ୍ରହଣ କରିବା ସତ୍ତ୍ୱେ ସରକାର ନୀରବ ରହିଲେ । ଓଡ଼ିଶା କଂଗ୍ରେସ ସରକାର ଯଦି ଭୟଭୀତ ନ ହୋଇ ଏପରି ଦାବୀ ପଛରେ ଦୃଢ଼ଭାବରେ ଛିଡ଼ା ହୋଇଥାଆନ୍ତେ, ତେବେ ପରିସ୍ଥିତି ଭିନ୍ନ ପ୍ରକାର ହୋଇଥାଆନ୍ତା । ମାତ୍ର ସେମାନେ ଆତ୍ମସମର୍ପଣ କରିଗଲେ । ଆମର ଏ ଓଡ଼ିଆ ଅଞ୍ଚଳ ଚିରଦିନ ଲାଗି ବିଚ୍ଛିନ୍ନ ହୋଇ ରହିଲା ।

## ବିଭାଜନ ପରେ ଓଡ଼ିଶାର ସ୍ଥିତି

ପ୍ରଜା ସୋସାଲିଷ୍ଟ ପାର୍ଟିକୁ ବିଭାଜନରୁ ରକ୍ଷାକରିବାଲାଗି ଆମେ ସବୁ ପ୍ରାଣପଣେ ଉଦ୍ୟମ କରିଥିଲୁ । ମୋର ବ୍ୟକ୍ତିଗତ ଭାବରେ ସମସ୍ତଙ୍କ ସହ ସୁସମ୍ପର୍କ ଥିବାରୁ ଖୁବ୍ ଚେଷ୍ଟା କରିଥିଲି । ବହୁଥର ଲୋହିଆଙ୍କୁ ଭେଟିଥିଲି । ଆଚାର୍ଯ୍ୟ ନରେନ୍ଦ୍ରଦେବ ଲୋହିଆଙ୍କୁ ଖୁବ୍ ଶ୍ରଦ୍ଧା କରୁଥିଲେ ଏବଂ ଲୋହିଆଙ୍କର ତାଙ୍କ ପ୍ରତି ଖୁବ୍ ଭକ୍ତିଭାବ ଥିଲା । ଲକ୍ଷ୍ନୌରେ ଲୋହିଆ ତାଙ୍କରି ଘରେ ରହୁଥିଲେ । ମତେ ଓ ଲୋହିଆଙ୍କର ଆଉ ଅନେକ ବନ୍ଧୁଙ୍କୁ ପଠାଇ ସେ ଲୋହିଆଙ୍କୁ ବୁଝାଇବାକୁ ଚେଷ୍ଟା କରିଥିଲେ; ମାତ୍ର ତାଙ୍କର ସମସ୍ତ ଚେଷ୍ଟା ବିଫଳହେଲା ।

ଆଗରୁ ଲେଖିଛି, ଉପରେ ଯେତେବେଳେ ବିଭାଜନ ହୋଇଗଲା, ଓଡ଼ିଶାରେ ସମସ୍ତିଙ୍କି ଏକାଠି ରଖିବା ମୋ ପକ୍ଷରେ ଆଉ ସମ୍ଭବ ହେଲାନାହିଁ । ଆମ ଭିତରେ ଅର୍ଥାତ୍ ଓଡ଼ିଶା ପାର୍ଟିରେ ଲୋହିଆଙ୍କ କାର୍ଯ୍ୟକ୍ରମରେ କିଛି ବିରୋଧ ନ ଥିଲା । ମାତ୍ର ବିଶୃଙ୍ଖଳା ଏବଂ ପାର୍ଟିର ମୁଖ୍ୟ ନେତାମାନଙ୍କୁ ଭର୍ତ୍ସନା ଓ ଅପମାନିତ କରିବା ଉଦ୍ୟମ ପାର୍ଟିର ପ୍ରଗତିରେ ବାଧକ ହେବ ବୋଲି ଆମେ ବିଚାର କଲୁ । ସେଥିଲାଗି କେତେକ ସାଥୀଙ୍କି ପାର୍ଟିରୁ ବହିଷ୍କାର କରିବାକୁ ପଡ଼ିଲା ।

ଓଡ଼ିଶାରେ ସେତେବେଳକୁ କେଉଁଝର ଓ ଫୁଲବାଣୀ ଜିଲା ବ୍ୟତୀତ ସବୁ ଜିଲାରେ ସଂଗଠନ ଛିଡ଼ା ହୋଇଯାଇଥିଲା—ପ୍ରାୟ ୫୫୦୦ ଜଣ ସଭ୍ୟ ହୋଇଥିଲେ । ତେଣୁ କେତେକଜଣ ଚାଲିଯିବାଦ୍ୱାରା ପାର୍ଟିର ବିଶେଷ କ୍ଷତି ହୋଇ ନ ଥିଲା । ଯୁବକ, ଛାତ୍ର ବା ଶ୍ରମିକ ସଂଗଠନର ବିଶେଷ କେହି ଏମାନଙ୍କ ସହ ଯାଇନଥିଲେ; କିନ୍ତୁ ସମ୍ବଲପୁର ଓ ପଶ୍ଚିମାଞ୍ଚଳ ପାର୍ଟି କାର୍ଯ୍ୟ ବାଧାପ୍ରାପ୍ତ ହେଲା ।

## କପନ, ରବି ଓ ନାରାୟଣଙ୍କ ଲାଗି ଦୁଃଖ

ଯେଉଁମାନେ ଚାଲିଗଲେ ସେମାନଙ୍କ ଭିତରେ ସଙ୍କରଚରଣ ଦାସ ଓ ମକରଧ୍ୱଜଙ୍କ ବ୍ୟତୀତ ଅନ୍ୟ ସମସ୍ତଙ୍କ ସହିତ ମୋର ଅତି ଘନିଷ୍ଠ ବ୍ୟକ୍ତିଗତ ସମ୍ପର୍କ ରହିଥିଲା । ସଙ୍କରବାବୁ ଓ

ମକରଧ୍ୱଜ ୧୯୫୨ ନିର୍ବାଚନର ଅଳ୍ପଦିନ ଆଗରୁ ପାର୍ଟିରେ ଯୋଗ ଦେଇଥିଲେ ଏବଂ ବିଧାନସଭା ସଭ୍ୟରୂପେ ନିର୍ବାଚିତ ହୋଇଥିଲେ; କିନ୍ତୁ ଅନ୍ୟ ସମସ୍ତେ ପ୍ରାୟ ଆନ୍ଦୋଳନ ଭିତରୁ ହିଁ ଗଢି ଉଠିଥିଲେ । ନାରାୟଣ ସାହୁ ଗ୍ରୁପ ଥିବା ଅବସ୍ଥାରେ ମୋ ସହ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନ କରି ହୋସିଆଲିଷ୍ଟ ଆନ୍ଦୋଳନରେ ପ୍ରବେଶ କଲେ । ପାର୍ଟି ଛାଡ଼ିବା ପୂର୍ବରୁ ସେ ମତେ ଯେଉଁ ଚିଠି ଲେଖିଥିଲେ, ସେଥିରୁ ଆମ ସାଥିମାନଙ୍କ ମଧ୍ୟରେ କିପରି ପ୍ରୀତି ଓ ସଦ୍‌ଭାବ ଥିଲା ତାର ଦୃଷ୍ଟାନ୍ତ ମିଳେ ।

## ନାରାୟଣ ସାହୁଙ୍କ ଚିଠି

ତାଙ୍କ ଚିଠିର କିୟଦଂଶ ଏଠାରେ ଉଦ୍ଧାର କରୁଛି ।

ବ୍ରହ୍ମପୁରଠାରୁ ୨୧।୫।୫୫ରେ ଅନ୍ୟ କଥାଭିତରେ ସେ ଲେଖିଛନ୍ତି—"ବଡ଼ କାରଣ ହେଉଛି ପାର୍ଟି ଭିତରେ ଏ ଦଳାଦଳି ଦେଖି ଆଉ ଉତ୍ସାହ ଲାଗୁନାହିଁ । ସମୟେ ସମୟେ ମନହେଉଛି ପାର୍ଟି ଛାଡ଼ିଦେଇ ଅନ୍ୟ କିଛି ଧନ୍ଦା କରିବି । କିନ୍ତୁ ଆପଣମାନଙ୍କର ମୋହ ଛାଡ଼ିପାରୁନାହିଁ । ଆପଣ ଜାଣନ୍ତି, ମୁଁ ଆପଣଙ୍କୁ ମୋ ନିଜ ବାପାଙ୍କଠାରୁ ଅଧିକ ଭକ୍ତି କରେ । ଆପଣଙ୍କ ଇଙ୍ଗିତରେ ଲ' କ୍ଲାସ ଛାଡ଼ି ଚାଲିଆସିଲି; ଯାହାପାଇଁ ଘରେ ବହୁ ନିର୍ଯ୍ୟାତନା ସହିବାକୁ ପଡ଼ିଲା ଏବଂ ବର୍ତ୍ତମାନ ବି ଅନୁତାପ କରିବାକୁ ପଡ଼ୁଛି । ବର୍ତ୍ତମାନ ଅବସ୍ଥା ଦେଖି ମୋର ବିଶ୍ୱାସ ଦୃଢ ହେବାକୁ ଯାଉଛି ଯେ ପାର୍ଟିର ଭବିଷ୍ୟତ ଖୁବ୍ ଅନ୍ଧକାରମୟ । ଆମେ ଜୀବନରେ ସବୁ ସୁଖ ସ୍ୱାଚ୍ଛନ୍ଦ୍ୟ ଛାଡ଼ିଲୁ । ମୋର ନିଜର ଅନ୍ୟାନ୍ୟ ସାଥିମାନେ ବର୍ତ୍ତମାନ ଓକିଲାତି କରି ଚାକିରି କରି ଟଙ୍କା ଅର୍ଜି ସୁଖରେ ଅଛନ୍ତି । ମତେ ଯେ ଦେଖୁଛି ଥଟ୍ଟା କରୁଛି । ଘରେ ସମସ୍ତେ ବିରକ୍ତ । ତଥାପି ଏ ସବୁ କିଛି ଲାଗୁନଥିଲା । ଆନନ୍ଦ ଲାଗୁଥିଲା ଯେ ଯାହାହେଉ ମୁଁ ଗୋଟିଏ ଆଦର୍ଶ ପ୍ରତିଷ୍ଠା କରିବାପାଇଁ ଯାହା କିଛି ହେଲେ କରୁଛି । କିନ୍ତୁ ବର୍ତ୍ତମାନ ଯେପରି ଲାଗୁଛି ଏସବୁ ନିରର୍ଥକ, ଖାଲି ମିଛରେ ନିଜର ଭବିଷ୍ୟତକୁ ନଷ୍ଟ କରିବା ସାର ହେଉଛି । ସମୟେ ସମୟେ ଆପଣଙ୍କ ଉପରେ ବି ବିରକ୍ତ ଆସୁଛି ଯେ ଆପଣ ମତେ ଏ ଭିତରକୁ ଟାଣିଆଣି ମୋର ଭବିଷ୍ୟତ ନଷ୍ଟକରିଦେଲେ ।"

ପୁଣି ଲେଖିଥିଲେ—"ମୁଁ ଆପଣଙ୍କୁ ବିନୀତ ନିବେଦନ କରିବି ଏସବୁ ବନ୍ଦ କରିବାକୁ ଶୀଘ୍ର ଆପଣ କିଛି କରନ୍ତୁ । ଆଦର୍ଶ ଦୃଷ୍ଟିରୁ ଲୋହିଆଙ୍କ ସଙ୍ଗେ ମୁଁ ପୂରାପୂରି ଏକମତ ଓ ମୋର ମତ ପାର୍ଟି ଏହାକୁ ପୂରା ଗ୍ରହଣ କରିବା ଉଚିତ ଓ କାର୍ଯ୍ୟକାରୀ କରିବା ଉଚିତ । ଅବଶ୍ୟ ତାଙ୍କର କଡ଼ା ଭାଷାକୁ ମୁଁ ଅନେକବେଳେ ନାପସନ୍ଦ କରିଛି । ମୋର ଆପଣଙ୍କୁ ବିନୀତ ନିବେଦନ ପାର୍ଟି ଯେପରି ଲୋହିଆ ଲାଇନ୍ ଗ୍ରହଣ କରେ ତାହା ଆପଣ ଦେଖିବେ ।"

ପୁଣି ଲେଖିଛନ୍ତି—"ମୁଁ ରବିବାବୁଙ୍କଠାରୁ ଗୋଟିଏ ଚିଠି ପାଇଛି । ସେ ଲେଖିଛନ୍ତି ଯେ, କୌଣସିମତେ ସମ୍ମିଳନୀ କରାଇବାପାଇଁ ଓ ମୋର ମତ ଚାହିଁଛନ୍ତି । ଏ ପରିସ୍ଥିତିରେ ମୁଁ କି ମତ ଦେବି କିଛି ଠିକ୍ କରିପାରୁନାହିଁ । ଆପଣ ଲେଖିଛନ୍ତି ରବିବାବୁ ପ୍ରଭୃତି ଆପଣଙ୍କୁ

ଲୁଗ୍ଚାଇ ସବୁ କରୁଛନ୍ତି । ଏପରି କରିବା ମୋତେ ତାଙ୍କ ପକ୍ଷେ ଉଚିତ ନୁହେଁ ଏବଂ ମୁଁ ଏକଥା ତାଙ୍କୁ ଲେଖିବି । ଅବଶ୍ୟ ମୁଁ ଶୁଣିଛି ଚନ୍ଦ୍ରମଣି, ମୃତ୍ୟୁଞ୍ଜୟ ଓ କୁଳମଣି ପ୍ରଭୃତି ଆପଣଙ୍କ ପ୍ରତି ଖୁବ୍ କଡ଼ାଭାଷା ବ୍ୟବହାର କରିଛନ୍ତି, ଯାହା ଆପଣଙ୍କ ମନକୁ ଖୁବ୍ ଧକ୍କା ଦେଇଛି । ସେମାନେ ଆଉ ପାର୍ଟି ସଭ୍ୟ ରହିବେ କି ନା ସନ୍ଦେହ । ମୋ ମତରେ ଆପଣଙ୍କୁ ଏସବୁ ପ୍ରତି ବହୁତ ଗୁରୁତ୍ୱ ନ ଦେଇ ତାଙ୍କୁ ସଜାଡ଼ି ନେବାକୁ ହେବ । ଯାହାହେଉ ଆମକୁ ଶୀଘ୍ର କଣ୍ଟ୍ର ଠିକ୍ କରିବାକୁ ପଡ଼ିବ । କେନ୍ଦ୍ରରେ ସବୁ ଠିକ୍ ନ ହେଲେ ଓ ଆଦର୍ଶ ଠିକ୍ ନରହିଲେ ଆମ ପ୍ରଦେଶରେ ମଧ୍ୟ solidarity କିପରି ରହିବ ? ଯାହା ଭାବିଛି ଲେଖିଦେଲି, କ୍ଷମା ଦେବେ ।"

ଯେଉଁମାନେ ଲୋହିଆଙ୍କ ସାଥିରେ ଗଲେ ତାଙ୍କ ମନର ଆବେଗ ଏଥିରୁ ବୁଝାପଡ଼ୁଛି । ପାର୍ଟି ବିଭାଜନ ପରେ ପୁଣି ଏକତ୍ର ହୋଇ ତାକୁ ସଜାଡ଼ିବାକୁ ଯେ ଉଦ୍ୟମ କରାଯାଇଥିଲା, ତାହା ବାରବାର ଧକ୍କାଖାଇ ଶେଷରେ ସୋସଲିଷ୍ଟ ଆନ୍ଦୋଳନର କିଭଳି କ୍ଷତି ଘଟିଲା, ସେ ସବୁ ଦୁଃଖଦ ବିବରଣୀ ପରବର୍ତ୍ତୀ ପୃଷ୍ଠାମାନଙ୍କରେ ବର୍ଣ୍ଣିତ ହେବ । ଏତିକି କହିପାରେ ଯେ ଏହିଭଳି ଚିଠି ସର୍ବଦା ମୋ ମନକୁ ଘାରୁଥିବାରୁ, ଯେତେ ଉଦ୍ୟମ ହୋଇଥିଲା ସବୁଥିରେ ମୁଁ ରହିଥିଲି ଏବଂ ମୋର ଯଥାସମ୍ଭବ କର୍ତ୍ତବ୍ୟ କରିଥିଲି । ମାତ୍ର ଲୋହିଆ କ୍ରମେ ସୋସଲିଷ୍ଟ ପଥ ଛାଡ଼ିଲେ ଏବଂ ତାଙ୍କ ଅନୁଗାମୀ ସେଇଥିରେ ମାତିବାରୁ ସବୁ ଚେଷ୍ଟାଗୁଡ଼ିକ କେବଳ ସମୟ ଓ ଶକ୍ତି କ୍ଷୟରେ ପରିଣତ ହେଲା ।

କଳାହାଣ୍ଡିର ଭବାନୀପାଟଣାଠାରେ ମୁଁ ରାଜଦରବାରର ଆକ୍ରମଣର ସମ୍ମୁଖୀନ ହୋଇ ସଭାକରୁଥିଲି । ସଭାରେ ବହୁ ଗଣ୍ଡଗୋଳ ଉପୁଜିଲା । ସେତେବେଳକୁ କିସନ୍ ନାଗପୁରରେ ବି. ଏ. ପରୀକ୍ଷା ଦେଇ ବା ପାସ୍‌କରି ଘରକୁ ଆସିଥାଆନ୍ତି । ଭବାନୀପାଟଣାରେ ତାଙ୍କ ଘର । ତାଙ୍କ ବଡ଼ଭାଇ ଗିରିଜା ପଟ୍ଟନାୟକଙ୍କ ସହ ମୋର ଭଲ ପରିଚୟ ଥାଏ । ସେହି ସଭାର ପରିସ୍ଥିତି ଦେଖି କୃଷ୍ଣ ପଟ୍ଟନାୟକ କେତେକ ସ୍ଥାନୀୟ ଛାତ୍ରଙ୍କୁ ଧରି ସଭାରେ ସ୍ଲୋଗାନ୍ ଦେଇ ବାହାରିଲେ । ପ୍ରଥମେ ନାମ ଥିଲା କୃଷ୍ଣ ପଟ୍ଟନାୟକ—ପରେ କିସନ୍ ନାମରେ ପରିଚିତ ହେଲେ । ଭବାନୀପାଟଣାରେ ରାଜଦରବାରର ଯେଉଁ ଭୟ, ସେଥିରେ ଏପରି ପଦାକୁ ବାହାରିବାଟା ଏକ ଅତି ସାହସିକ କାର୍ଯ୍ୟରୂପେ ଧରାଗଲା । ସେହିଦିନୁ କିସନ୍ ଆମ ସାଙ୍ଗକୁ ଆସିଲେ ଏବଂ ପାର୍ଟି କାର୍ଯ୍ୟ ସହ ସଂପୃକ୍ତ ହେଲେ । ମାତ୍ର ଯାହା ଯୁବକମାନଙ୍କର ପ୍ରଥମ ଅବସ୍ଥାରେ ହୁଏ ସେମିତି କୌଣସି କାରଣରୁ—ସେ କୁଆଡ଼େ ଲୁଚି ରହିଗଲେ । ତାଙ୍କୁ ପୁଣି ମୁଁ ପାଇଲି ୨।୪ ବର୍ଷ ପରେ ମାନ୍ଦ୍ରାଜଠାରେ । ଆମର ଏକ ଜାତୀୟ କାର୍ଯ୍ୟକାରୀ ସମିତି ବୈଠକଲାଗି ମୁଁ ଯାଇଥିଲି । କିସନ୍‌ଙ୍କ ସନ୍ଧାନ ସେଠି ମିଳିଲା । ମୁଁ ତକାଇଆଣି ଭ୍ରାତୃସୁଲଭ ଢଙ୍ଗରେ ତାଙ୍କୁ ପୁଣି ଆମ ସାଙ୍ଗକୁ ସକ୍ରିୟ ଭାବରେ ଆସିବା ଲାଗି ପ୍ରବର୍ତ୍ତାଇଲି ଏବଂ ସେ ଆସିଗଲେ । ପାର୍ଟି କାର୍ଯ୍ୟରେ ସଂପୃକ୍ତ ହେଲେ । 'କୃଷକ'ର ସହ ସମ୍ପାଦକ, ପାର୍ଟିର ଯୁଗ୍ମ ସମ୍ପାଦକ ଏପରି ନାନାଭାବରେ ସଫଳତାର ସହ କାର୍ଯ୍ୟ ତୁଲାଇଲେ ।

ଉନିଜଣଙ୍କ ଭିତରେ ସେ ଥିଲେ ଅତି ବିଚକ୍ଷଣ ଓ କର୍ମିଷ୍ଠାତ୍ମକ । ଓଡ଼ିଶାରେ ଯେଉଁ ସମାଜବାଦୀ ବିଚାରଧାରା କ୍ରମେ ଦୃଢ଼ ହେଉଥିଲା, ସେଥିରେ ଏ ଉନିଜଣଯାକ ବରାବର ସାଥୀ ହୋଇ ରହିବେ ବୋଲି ମୋର ଆଶା ଥିଲା । ତେଣୁ ସେମାନେ ବିଚ୍ଛିନ୍ନ ହେବାରେ ମୋ ମନରେ ଦୁଃଖ ରହିଗଲା । କେନ୍ଦ୍ର ଓ ପ୍ରଦେଶରେ ବିଭାଜନ ସତ୍ତ୍ୱେ ଓଡ଼ିଶା ପାର୍ଟିର ଅଗ୍ରଗତି ଅବ୍ୟାହତ ରହିଥିଲା । ଓଡ଼ିଶାର ସାଧାରଣ କ୍ଷେତ୍ରରେ ସବୁ ସମସ୍ୟା ସହ ଜଡ଼ିତ ହୋଇ ପ୍ରଦେଶର ମୁଖ୍ୟ ବିରୋଧୀଦଳ ହିସାବରେ ସ୍ଥାନ ଓ ସମ୍ମାନ ପାଇଲା । ଅବଶ୍ୟ ସଂଖ୍ୟା ଦୃଷ୍ଟିରୁ ଗଣତନ୍ତ୍ର ପରିଷଦ ଆସେମ୍ବ୍ଲିରେ ସ୍ୱୀକୃତ ବିରୋଧୀଦଳ ହୋଇ ରହିଥିଲା; ମାତ୍ର ପ୍ରଦେଶର ସାଧାରଣ ରାଜନୀତିରେ ସେପରି ଗ୍ରହଣଯୋଗ୍ୟ ହୋଇ ନ ଥିଲା । କେବଳ ସୀମା ଆନ୍ଦୋଳନରେ ଯୋଗଦେବା ପରେ ସେମାନଙ୍କ ପ୍ରତି ଲୋକଙ୍କ ଦୃଷ୍ଟି ଅଧିକ ଭାବରେ ପଡ଼ିଲା ।

୧୯୫୬, ସାଧାରଣ ନିର୍ବାଚନର ଠିକ୍ ପୂର୍ବ ବର୍ଷ । ଗତ ୪ ବର୍ଷ ଭିତରେ ଆସେମ୍ବ୍ଲି ଓ ପାର୍ଲିମେଣ୍ଟରେ ଆମେ ସବୁ ବେଶ୍ ଦକ୍ଷତା ସହକାରେ କାର୍ଯ୍ୟ କରିଥିଲୁ । ଆମର ସାଥୀମାନେ ବାହାରେ ସବୁ କ୍ଷେତ୍ରରେ ସଂଗ୍ରାମ ଓ ଆନ୍ଦୋଳନାତ୍ମକ କାର୍ଯ୍ୟରେ କିଛି ତ୍ରୁଟି ଦେଖାଇ ନ ଥିଲେ । ପାର୍ଟି ଭିତରେ ଅଧିକ ସଂହତି, ଶୃଙ୍ଖଳା ଓ ସଂଗଠନ ଦେଖାଦେଲା । ବିକ୍ରିକର, ସୀମା ଆନ୍ଦୋଳନ, ଯୁବ ସାଂସ୍କୃତିକ ଆନ୍ଦୋଳନଦ୍ୱାରା ଆମେ ଯେପରି ରାଜ୍ୟର ଶିକ୍ଷିତ ଏବଂ ମଧ୍ୟବିତ୍ତ ଶ୍ରେଣୀଙ୍କର ଦୃଷ୍ଟି ଆକର୍ଷଣ କରିଥିଲୁ, ସେହିଭଳି ଜମି ଦଖଲ, ଭାଗଚୃଷ ଅଧିକାର ଆନ୍ଦୋଳନରେ କୃଷୀଙ୍କ ଭିତରେ ଓ ଗ୍ରାମ ଗହଳରେ ପ୍ରବେଶ କରିପାରିଥିଲୁ । ସେଥିନିମନ୍ତେ ଏହି କାଳ ଭିତରେ ଯେଉଁ ଗ୍ରାମପଞ୍ଚାୟତ ନିର୍ବାଚନ ହେଲା, ସେଥିରେ ପାର୍ଟି ନାମରେ ନିର୍ବାଚନ ନ ଲଢ଼ି ପାର୍ଟିର ଲୋକ ବ୍ୟକ୍ତିଗତଭାବରେ ପାର୍ଟି ସମର୍ଥନରେ ଲଢ଼ାଇକରି ଉଲ୍ଲେଖଯୋଗ୍ୟ ସଫଳତା ଲାଭ କରିଥିଲେ । ବାଲେଶ୍ୱର ଓ ମୟୂରଭଞ୍ଜ ଜିଲାରେ ଅଧିକାଂଶ ସ୍ଥାନ ପାର୍ଟି ଲୋକଙ୍କ ହାତକୁ ଆସିଗଲା । ଶ୍ରମିକ କ୍ଷେତ୍ରରେ ରବୀନ୍ଦ୍ର ମୋହନ ଦାସ, ବାଙ୍କବିହାରୀ ଦାସ, ଧୂର୍ଲୀଶ୍ୱର ବହିଆ, ରାଜକିଶୋର ସାମନ୍ତରାୟ, ବିଶ୍ୱନାଥ ପଣ୍ଡିତ ପ୍ରଭୃତିଙ୍କ ଉଦ୍ୟମ ଯୋଗୁଁ ପ୍ରଜା ସୋସଲିଷ୍ଟ ପାର୍ଟି ଅଦ୍ୱିତୀୟ ସ୍ଥାନ ଅଧିକାର କଲା । ଧୂର୍ଲୀଶ୍ୱର ବହିଆ କେବଳ ତାଳଚେର ନୁହେଁ, ବ୍ରଜରାଜନଗର ଓରିଏଣ୍ଟ କାଗଜକଳ ଶ୍ରମିକଙ୍କୁ କମ୍ୟୁନିଷ୍ଟ ପ୍ରଭାବରୁ ମୁକ୍ତ କଲେ । ରାଜଗାଙ୍ଗପୁରରେ ଏକ ଜବରଦସ୍ତ ସିମେଣ୍ଟ ଶ୍ରମିକ ସଂଘ ସ୍ଥାପିତ ହେଲା । ଶେଷକୁ ନୂତନ ହୋଇ ଗଢ଼ିଉଠୁଥିବା ରାଉରକେଲା ଲୌହ କାରଖାନାରେ ଶ୍ରମିକ କ୍ଷେତ୍ରରେ ଆମର ପ୍ରଥମ ପ୍ରବେଶ ହେଲା । ରାଉରକେଲା ମଜଦୁର ସଭାର ସେ ଥିଲେ ପ୍ରତିଷ୍ଠାତା । ସେଥିରେ ମୁଁ ହେଲି ସଭାପତି । ଅଧିକ ସଂଖ୍ୟକ କର୍ମଚାରୀଙ୍କର ଏଥିପ୍ରତି ସମର୍ଥନ ଥିବା ସତ୍ତ୍ୱେ ଆଇ. ଏନ୍. ଟି. ୟୁ. ସି.ର ୟୁନିୟନକୁ ହିଁ ସ୍ୱୀକାର କରାଯାଇଥିଲା । ଧୂର୍ଲୀଶ୍ୱର ଅଳ୍ପ ବୟସରେ ଶ୍ରମିକଙ୍କ ଭିତରେ ଅଲୌକିକ ସଂଗଠନ ଶକ୍ତିର ପରିଚୟ ଦେଲେ । ତାଳଚେର, ରାଜଗାଙ୍ଗପୁର ଓ ରାଉରକେଲାରେ ଅଧିକ

ସଂଖ୍ୟାରେ ଆଦିବାସୀ ଶ୍ରମିକ ଥିଲେ ଏବଂ ଏବେ ବି ଅଛନ୍ତି । କିନ୍ତୁ ସେ କାଳରେ ସେମାନଙ୍କ ମନରୁ ଭୟ ଦୂର କରି ଇଉନିୟନ ଭୁକ୍ତ କରିବା କାଠିକର ପାଠ ଥିଲା । ଧୂଳୀଶ୍ୱର ନିଜର ନିଷ୍ଠା, ନିଃସ୍ୱାର୍ଥପରତା ଓ ତ୍ୟାଗ ବଳରେ ସେମାନଙ୍କର ବିଶ୍ୱାସଭାଜନ ହୋଇଥିଲେ ଏବଂ ସବୁଠାରେ ଦୃଢ଼ ସଂଗଠନ ଛିଡ଼ା କରାଇ ପାରିଥିଲେ । ମାତ୍ର କାଳର ବିଚିତ୍ର ଗତି । ସେ ରୁଷର ନିମନ୍ତ୍ରଣ କ୍ରମେ ମସ୍କୋରେ ମଇ ଦିବସରେ ଯୋଗ ଦେବାକୁ ଯିବା ନିମନ୍ତେ ପ୍ରସ୍ତୁତ କରୁଥିବାବେଳେ ଏକ ସ୍କୁଟର ଦୁର୍ଘଟଣାରେ ୧୯୬୬ ଏପ୍ରିଲ ୨୭ ତାରିଖରେ ପ୍ରାଣତ୍ୟାଗ କଲେ । ଶ୍ରମିକ ଆନ୍ଦୋଳନ ଏକ ବିରାଟ ଧକ୍କା ପାଇଲା ଏବଂ ବିଶେଷଭାବରେ ରାଉରକେଲା ମଜଦୁରମାନେ ତାଙ୍କୁ ଝୁରିଲେ । ତାଙ୍କର ଲୋକପ୍ରିୟତା 'ପ୍ରାଣୀର ଭଲ ମନ୍ଦ ବାଣୀ, ମରଣକାଳେ ତାହା ଜାଣି' ପରି ମୃତ୍ୟୁପରେ ହିଁ ଜଣାପଡ଼ିଲା—ସେ କେତେଦୂର ଶ୍ରମିକଙ୍କ ହୃଦୟ ରାଜ୍ୟରେ ରହିଥିଲେ ।

## ବସ୍ତିଆ ସ୍ମୃତି ସଦନ

ଧୂଳୀଶ୍ୱରଙ୍କର ଅକାଳ ମୃତ୍ୟୁ ଆମ ଆଗରେ ଶ୍ରମିକ ସଂସ୍ଥାଗୁଡ଼ିକ ଚଳାଇବା ନିମନ୍ତେ ଏକ ବିରାଟ ପ୍ରଶ୍ନରୂପେ ଛିଡ଼ା ହେଲା । କିନ୍ତୁ ମୋ ଅନୁରୋଧରେ ରାଜକିଶୋର ସାମନ୍ତରାୟ କଟକରୁ ପାର୍ଟି ଦାୟିତ୍ୱ ଏବଂ ଚୌଦ୍ୱାରରେ ସେ ଯେଉଁ ସଫଳ ଶ୍ରମିକ ଇଉନିୟନର ନେତୃତ୍ୱ ନେଇଥିଲେ ତାକୁ ଛାଡ଼ି ରାଉରକେଲାର ଦାୟିତ୍ୱ ଗ୍ରହଣକଲେ । ତାଙ୍କର ଏଭଳି ପାର୍ଟି ପ୍ରତି ଅନୁରକ୍ତି ସକାଶେ ସୋସଲିଷ୍ଟ ଆନ୍ଦୋଳନ ତାଙ୍କ ପ୍ରତି ବରାବର କୃତଜ୍ଞ ରହିବ । ରାଜକିଶୋର ଓ ଜଗଦୀଶ ନାଗଙ୍କ ମିଳିତ ଉଦ୍ୟମରେ ରାଉରକେଲା ମଜଦୁର ସଭା ଆହୁରି ଶକ୍ତିଶାଳୀ ହୋଇଉଠିଲା ଏବଂ ୧୯୬୭ ମସିହାରେ ଏହାକୁ ସ୍ୱୀକୃତ ଇଉନିୟନରୂପେ ଗ୍ରହଣ କରିବାକୁ ସରକାର ବାଧହେଲେ । ଭାରତରେ ଯେତେ ସାଧାରଣ ଉଦ୍ୟୋଗ ଚାଳିତ ଲୌହ କାରଖାନା ରହିଛି, ସେଥିରେ ରାଉରକେଲା ମଜଦୁର ସଭା ଏକମାତ୍ର ବେକଂଗ୍ରେସୀ ଇଉନିୟନ ଯାହାକି ସ୍ୱୀକୃତି ଲଭିଛି ଏବଂ ଶତଷଡ଼ଯନ୍ତ୍ରସତ୍ତ୍ୱେ ଏହାକୁ ଭାଙ୍ଗିବାର ଚେଷ୍ଟା ବ୍ୟର୍ଥ ହୋଇଛି । କେବଳ ଦୁର୍ଗାପୁରରେ ସି. ପି.ଆଇ. (ଏମ୍ .) ସରକାର ହେବାରୁ ତାଙ୍କ ଚାଳିତ ଇଉନିୟନକୁ ସ୍ୱୀକୃତି ମିଳିଛି ।

ସବଦା ମହାନ୍ ଓ ଖ୍ୟାତନାମା ବ୍ୟକ୍ତିମାନଙ୍କର ସ୍ମୃତି ରକ୍ଷା କରାଯାଏ । ମାତ୍ର ଧୂଳୀଶ୍ୱର ପରି ଏକ ତ୍ୟାଗୀ କର୍ମୀର ସ୍ମୃତି ଲାଗି କିଛି କରାଯିବା ମୋର ଏକ ନୈତିକ ଦାୟିତ୍ୱ ବୋଲି ମୁଁ ବିଶ୍ୱାସିଲି । ମୋର କଥାରେ ହିଁ ସେ କଲେଜ ପଢ଼ା ଛାଡ଼ି ଶ୍ରମିକ ଆନ୍ଦୋଳନରେ ଝାସ ଦେଇଥିଲା । ଅତି ଆନନ୍ଦର କଥା ଯେ ବସ୍ତିଆ ସ୍ମୃତି ରକ୍ଷା ନିମନ୍ତେ ତାର ଗୁଣମୁଗ୍ଧ ରାଉରକେଲା ଇସ୍ପାତ କାରଖାନାର ଶ୍ରମିକମାନେ ବି ଆଗଭର ହୋଇ ବାହାରି ଆସିଲେ । ତହିଁଭିତରୁ ପ୍ରାୟ ୫,୫୦୦ ଶ୍ରମିକଙ୍କର ଗୁଣ୍ଡୁଚମୂଷାପରି ଟଙ୍କାଏ ଦୁଇଟଙ୍କା ଦାନ ଫଳରେ "ବସ୍ତିଆ ସ୍ମୃତି ସଦନ" ନାମକ ଏକ ବିରାଟ ସୌଧ ପାଞ୍ଚଲକ୍ଷ ଟଙ୍କା ବ୍ୟୟରେ

ଛଡ଼ାହୋଇଛୁ ଏବଂ ସେଠାରେ ଶ୍ରମିକ ଶିକ୍ଷା ଓ ଅନ୍ୟାନ୍ୟ ସାମାଜିକ ଓ ଶିକ୍ଷାମୂଳକ କାର୍ଯ୍ୟ କରିବା ଲାଗି ଏକ ଆନ୍ତର୍ଜାତିକ ପ୍ରତିଷ୍ଠାନ କାର୍ଯ୍ୟକାରୀ କରିବାର କଳ୍ପନା ରହିଛୁ । ମୁଁ ଏହାକୁ ମୋ ଜୀବନର ଏକ ସଫଳତା ବୋଲି ମନେକରୁଛୁ । ଏଥିରେ ଦୁଇଟି ବିଶେଷ କାର୍ଯ୍ୟ ହେଲା—(୧) ଏକ ଦରିଦ୍ର ସାଧାରଣ ଓଡ଼ିଆ କର୍ମୀର ସ୍ମୃତିରକ୍ଷା ହେଲା ଏବଂ (୨) ଏତେ ସଂଖ୍ୟକ ଶ୍ରମିକ ଏକତ୍ର ହୋଇ ଏପରି ଧାରାବାହିକ ଦାନ କଲେ । କାର୍ଯ୍ୟ ସଂପୂର୍ଣ୍ଣ ହୋଇ ନାହିଁ; ମାତ୍ର ଏଭଳି ଉଦ୍ୟମ ଓ ଶ୍ରମିକଙ୍କ ଯୋଗଦାନ ଭାରତରେ ଯେ ଅଦ୍ୱିତୀୟ, ଏଥିରେ ସନ୍ଦେହ ନାହିଁ ।

## ସଂଗଠନ ମଜଭୁତ କିପରି ହେବ ?

ବାସ୍ତବ ଦୃଷ୍ଟିରେ ଦେଖିଲେ ମୋର ଆନ୍ତରିକ ଉଦ୍ୟମ ଓ ଇଚ୍ଛା ଥିଲା—ଓଡ଼ିଶାରେ କେବଳ ସମାଜବାଦୀ ସଂଗଠନ ନୁହେଁ, ଏପରି ଏକ ନବସଂସ୍କୃତିମୂଳକ ଆନ୍ଦୋଳନର ମୂଳଦୁଆ ସ୍ଥାପିତ ହେବ ଯାହା ଓଡ଼ିଶାରେ ବିକଳ୍ପ ରାଜନୀତିକ ଶକ୍ତି ହୋଇପାରିବ ଏବଂ ସମାଜର ସବୁ ସ୍ତରରେ କାର୍ଯ୍ୟ କରୁଥିବ । ସେହି ଉଦ୍ଦେଶ୍ୟରେ 'କୃଷକ ପ୍ରେସ' ଓ 'କୃଷକ' ସଂବାଦପତ୍ରର ସ୍ଥାପନା କରାଗଲା । ତାହା ଏତେବେଳକୁ ଅର୍ଦ୍ଧ-ସାପ୍ତାହିକରୂପେ ପ୍ରକାଶିତ ହେଲା ।

୧୯୫୭ ବେଳକୁ 'କୃଷକ'ର ଲୋକପ୍ରିୟତା ବେଶ୍ ବଢ଼ିଥିଲା ଏବଂ ଆଗାମୀ ନିର୍ବାଚନରେ ତାହା ଖୁବ୍ ସାହାଯ୍ୟ କରିଥିଲା । ସେଥିରେ ମୂଳରୁ ମୁଖ୍ୟଭାବରେ ଯେଉଁମାନେ କାର୍ଯ୍ୟ କରିଥିଲେ ସେମାନେ ହେଲେ ଶଚିଦାନନ୍ଦ ମିଶ୍ର, ନାରାୟଣ ପତି, ପ୍ରଦୀପ୍ତ କିଶୋର ଦାସ, ଗୋବିନ୍ଦ ଦାସ, କିଶନ୍ ପଟ୍ଟନାୟକ, ବିନୋଦ କାନୁନ୍‌ଗୋ, ଗୋରାଚାନ୍ଦ ମିଶ୍ର ଓ ବିଭୂତି ପଟ୍ଟନାୟକ ପ୍ରଭୃତି । କୃଷକକୁ ଆମେମାନେ ବେଶିଦିନ ଚଳାଇ ନ ପାରିବାରୁ ଦୁଃଖ ରହିଗଲା । ମୁଖ୍ୟ କାରଣ ହେଲା, ମୁଁ ଦିଲ୍ଲୀରେ ପାର୍ଲିମେଣ୍ଟ କାର୍ଯ୍ୟରେ ବ୍ୟସ୍ତ ରହିବାରୁ ଏଥିପ୍ରତି ଅଧିକ ଦୃଷ୍ଟିଦେଇ ପାରିଲି ନାହିଁ ଏବଂ ଅନ୍ୟମାନଙ୍କ ଭିତରୁ ଗୋରାଚାନ୍ଦ ମିଶ୍ରଙ୍କ ବ୍ୟତୀତ ଅନ୍ୟ ସମସ୍ତେ ସାଂବାଦିକତା ଅପେକ୍ଷା ରାଜନୀତିକ କାର୍ଯ୍ୟ ଉପରେ ଅଧିକ ଗୁରୁତ୍ୱ ଦେଲେ । ଏହା ହୁଏତ ସ୍ୱାଭାବିକ । ମାତ୍ର ସେମାନେ ଭୁଲିଗଲେ ଯେ ରାଜନୀତିକ କାର୍ଯ୍ୟକୁ ସୁଦୃଢ଼ କରିବାକୁ ହେଲେ ସଂବାଦପତ୍ର ଏକ ପ୍ରଧାନ ଆୟୁଧ । ଏଥିଭିତରୁ ଅନ୍ୟମାନେ ବିଭିନ୍ନ କ୍ଷେତ୍ରକୁ ଯାଇ ଯଶ ଅର୍ଜନ କଲେଣି ଏବଂ ଗୋରାଚାନ୍ଦ ମିଶ୍ର ଜଣେ ସାଂବାଦିକ ଓ ସାହିତ୍ୟିକ ଭାବରେ ଖ୍ୟାତି ଅର୍ଜନ କରିଛନ୍ତି ।

## ଶୃଙ୍ଖଳିତ, ସଚ୍ଚରିତ୍ର ଓ ତ୍ୟାଗୀ କର୍ମୀ ଗଠନ

ଓଡ଼ିଶା ପାର୍ଟି ଦୁର୍ବଳ ନ ହେବାର ଆଉ ଏକ କାରଣ ହେଲା ବିଭାଜନ ପରେ ଯେଉଁମାନେ ରହିଲେ ତାଙ୍କ ଭିତରେ ପରସ୍ପର ପ୍ରତି ସୌହାର୍ଦ୍ୟ ଓ ଭ୍ରାତୃଭାବ । ଆମେ

ସମସ୍ତେ ପ୍ରାୟ ଗରିବ ମଧ୍ୟବିତ୍ତ ଶ୍ରେଣୀ ଭିତରୁ ଆସିଥିଲୁ । ଆମ ଭିତରୁ କେତେକ ହୁଏତ ରାଜନୀତିକ କ୍ଷେତ୍ରରେ ବହୁ ଦିନ କାର୍ଯ୍ୟ କରିଥିବା କିମ୍ବା ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ ଯୋଗୁ ଅଧିକ ଜଣାଶୁଣା ହୋଇଯାଇଥିଲେ; କିନ୍ତୁ ଏଥିଲାଗି ତାହା ମନରେ ଗର୍ବ ବା ଅହମିକା ନ ଥିଲା । କେହି ଧନ ଅର୍ଜନ କରିବାରେ ମନ ଦେଇ ନ ଥିଲେ । ଗୋଟାଏ ନୂଆ ସଂସ୍କୃତି—ସମାଜବାଦୀ ସଂସ୍କୃତି ଗଢିବା ଏହା ଥିଲା ସମସ୍ତଙ୍କର ଆନ୍ତରିକ କାମନା । ସେଥି ନିମନ୍ତେ ଯାବତୀୟ କ୍ଳେଶ ସହିବାକୁ ପ୍ରସ୍ତୁତ ଥିଲେ ଏବଂ ମଝିରେ ମଝିରେ ଶିବିର କରାଯାଇ ଏକାଠି ରହି ପରସ୍ପରର ଚିନ୍ତାଧାରା ଓ ବ୍ୟକ୍ତିଗତ ଜୀବନକୁ ଜାଣିବାର ସୁବିଧା ମିଳୁଥିଲା । ଆସେମ୍ବ୍ଲି ଓ ପାର୍ଲିମେଣ୍ଟ ମେମ୍ବର ଯେ ବେତନ ନ ନେଇ ପାର୍ଟି ଯାହା ସ୍ଥିର କରିଦେବ ସେତିକି ହିଁ ନେଉଥିଲେ, ଏହା ତହିଁର ନିଦର୍ଶନ । ମୋଟ ଉପରେ ଏକ ପରିବାରର ଲୋକ ବୋଲି ଆମେ ସମସ୍ତଙ୍କୁ ନିଜର ବିଚାର କରୁଥିଲୁ । ତେଣୁ ବୟସ ଓ ସମ୍ମାନବୋଧର ଫରକ୍ ନ ଥିଲା । ଏହି ହେତୁ ଓଡ଼ିଶା ପାର୍ଟି ପକ୍ଷରେ ଓଡ଼ିଶା ରାଜନୀତିରେ ଏକ ପ୍ରଭାବଶାଳୀ ଶକ୍ତିରୂପେ ଛିଡାହେବା ସମ୍ଭବ ହୋଇଥିଲା । ସଂଖ୍ୟା ବହୁତ ନ ଥିଲେ ସୁଦ୍ଧା ଏଥିରେ ଏଭଳି ଯୁବକ, ଶିକ୍ଷିତ, ପରୀକ୍ଷିତ ଓ ନିଷ୍ଠାପର ଯୋଗ୍ୟ ସଦସ୍ୟମାନେ ରହିଥିଲେ ଯାହା କେହି ହେଲେ ନିରୀକ୍ଷା କଲେ କହିବ ଯେ ଓଡ଼ିଶା ରାଜ୍ୟକୁ ଚଳାଇବା ନିମନ୍ତେ ଦକ୍ଷ ଓ ସମର୍ଥ ବ୍ୟକ୍ତିମାନେ ଏଥିରେ ରହିଥିଲେ । ଏଇଥିହେତୁ ଉପନିର୍ବାଚନ ବା ନିର୍ବାଚନରେ ପରାଜୟ ଲଭିଲେ ବି ଓଡ଼ିଶା ପାର୍ଟି ଭିତରେ ସେତେବେଳେ ହତାଶା ବା ନିରାଶାର ସ୍ଥାନ ନଥିଲା । ଏପରିକି ପାର୍ଟି ଭିତରେ କିଛି କାର୍ଯ୍ୟକ୍ରମ ବା ନୀତି ଯେଉଁ ମତଭେଦ ଥାଉ ପଛକେ କ୍ରୋଧ ବା ଈର୍ଷାଭାବ ରହୁ ନଥିଲା । ମୋର ସ୍ମରଣ ଅଛି, ପ୍ରତିଥର ପ୍ରାଦେଶିକ ସମ୍ମିଳନୀବେଳେ କର୍ମକର୍ତ୍ତା ନିର୍ବାଚନ ହେଲା ବେଳକୁ ପ୍ରତିଯୋଗିତା ତ ଦୂରର କଥା, ମତେ ବହୁ ସାଥିଙ୍କି ପାର୍ଟିର କର୍ମକର୍ତ୍ତା ହେବା ନିମନ୍ତେ ପ୍ରବର୍ତ୍ତାଇବାକୁ ପଡ଼ୁଥିଲା । ୧୯୫୭ ବେଳକୁ ଆମର ସଂଖ୍ୟା ଖୁବ୍ ବୃଦ୍ଧି ନ ହୋଇଥିଲେ ସୁଦ୍ଧା ଓଡ଼ିଶା ରାଜନୀତି କ୍ଷେତ୍ରରେ ପ୍ରଜା ସୋସଲିଷ୍ଟ ପାର୍ଟିକୁ ଅବଜ୍ଞା କରି ଯିବାଭଳି ପରିସ୍ଥିତି ନ ଥିଲା । ଆମମାନଙ୍କ ମନରେ ଦମ୍ଭ ଓ ସାହସ ଭରି ଥାଏ । ବାରିପଦାଠାରେ ୧୯୫୭ ମସିହା ମାର୍ଚ୍ଚ ୩୧ ଏବଂ ଏପ୍ରିଲ୍ ୧ ଓ ୨ରେ ଓଡ଼ିଶା ପ୍ରଜା ସୋସଲିଷ୍ଟ ପାର୍ଟିର ଦ୍ୱିତୀୟ ବାର୍ଷିକ ସମ୍ମିଳନୀ ହୋଇଥିଲା । ମୁଁ ଏଥିରେ ସଭାପତି ହୋଇଥିଲି ଏବଂ ସୁଚେତା କୃପାଳନୀ ସମ୍ମିଳନୀର ଉଦ୍‌ଘାଟନୀ ଭାଷଣ ଦେଇଥିଲେ ।

ଆଉରି ଏକ କୌତୂହଳପୂର୍ଣ୍ଣ କଥା ଏଠାରେ କହିଦିଏ । ଓଡ଼ିଶା କଂଗ୍ରେସ ରାଜନୀତିରେ ୧୯୫୬ ମସିହାରେ ପଟପରିବର୍ତ୍ତନ ହୋଇଥିଲା । ନବକୃଷ୍ଣ ଚୌଧୁରୀଙ୍କ ତଡ଼ି ଚକ୍ରାନ୍ତ କରି ହରେକୃଷ୍ଣ ମହତାବ ବମ୍ବେ ଗଭର୍ଣ୍ଣରି ପଦ ଛାଡ଼ି ପୁଣି ମୁଖ୍ୟମନ୍ତ୍ରୀ ହୋଇ ଆସିଥିଲେ । ମାତ୍ର ସୀମା ଆନ୍ଦୋଳନ ଓ ନାନା କଳୁଷିତ କର୍ମ ନିମନ୍ତେ କଂଗ୍ରେସ ଏପରି ବଦ୍‌ନାମ୍ ହୋଇଥିଲା ଯେ ଆସନ୍ନ ନିର୍ବାଚନର ସଫଳତା ସମ୍ବନ୍ଧରେ ସେମାନଙ୍କ ମନରେ ଖୁବ୍

ଆଶଙ୍କା ଉପୁଜିଥିଲା । ଏଭଳି ପରିସ୍ଥିତିରେ ବିଜୁ ପଟ୍ଟନାୟକ ତାଙ୍କ ବିରୁଦ୍ଧରେ ଓ ବିରେନ୍ ମିତ୍ରଙ୍କ ବିରୁଦ୍ଧରେ ପି. ଏସ୍. ପି. ଯେପରି ନ ଲଢ଼େ, ସେଥିଲାଗି ମତେ ବିଶେଷ ଅନୁରୋଧ କରିଥିଲେ । ମୁଁ ତାଙ୍କୁ କହିଥିଲି—ରାଜନୀତିକୁ ମୁଁ କେବେ ବ୍ୟକ୍ତିଗତ ଦୃଷ୍ଟିରୁ ବିଚାର କରେନା ଏବଂ ପ୍ରଜା ସୋସଲିଷ୍ଟ ପାର୍ଟି ଏ ପ୍ରସ୍ତାବରେ କେବେ ରାଜିହେବ ନାହିଁ । ସେ ବଡ଼ ନିରାଶ ହୋଇପଡ଼ିଥିଲେ । ତେଣୁ ଓଡ଼ିଶାରେ ପି. ଏସ୍. ପି.ର ସଂଖ୍ୟା ଓ ଶକ୍ତି ନ ଥିଲେ ସୁଦ୍ଧା ପ୍ରଭାବ ପରିଲକ୍ଷିତ ହେଉଥିଲା ।

## ଓଡ଼ିଶା କଂଗ୍ରେସ ଭିତରେ ଚକ୍ରାନ୍ତ

ଆମର ସାଥୀମାନେ କଂଗ୍ରେସର ତୀବ୍ର ସମାଲୋଚନା କରୁଥିଲେ । ମୁଁ ନବକୃଷ୍ଣ ଚୌଧୁରୀଙ୍କର ଏତେ ଘନିଷ୍ଠ ହୋଇଥିଲେ ସୁଦ୍ଧା ସେ ୭ବର୍ଷ ମୁଖ୍ୟମନ୍ତ୍ରୀ ହେବା ଭିତରେ କେବେ କୌଣସି ସାଧାରଣ କାର୍ଯ୍ୟଲାଗି ତାଙ୍କ ପାଖକୁ ଯାଇନଥିଲି । ଆମେ ଅଲଗା ଦଳ ଗଢ଼ିଲୁ— ସେ କଂଗ୍ରେସରେ ରହିଗଲେ; ସେହି କାଳୁ ସୋସଲିଷ୍ଟ ଆନ୍ଦୋଳନ ସହ ତାଙ୍କର ସଂପର୍କ ତୁଟିଗଲା ଏବଂ ଅନ୍ୟ କଂଗ୍ରେସବାଲାଙ୍କ ପରି ସେ ସୋସଲିଷ୍ଟ ପାର୍ଟିର ବିରୋଧ କରୁଥିଲେ; ଏପରିକି ୧୯୫୨ ନିର୍ବାଚନରେ ମୋ ନିର୍ବାଚନ ମଣ୍ଡଳୀରେ ଯାଇ ମୋ ବିରୁଦ୍ଧରେ ସଭା କରି ଆସିଥିଲେ । ମାତ୍ର ହରେକୃଷ୍ଣ ମହତାବ ତାଙ୍କୁ ମନ୍ତ୍ରୀମଣ୍ଡଳ ସମର୍ପି ଦେଇ ବମ୍ବେର ଗଭର୍ଣ୍ଣର ହୋଇ ରହିଥିଲେ ସୁଦ୍ଧା ତାଙ୍କ ମନ ଅଥୟ ହେଉଥିଲା । ସେ ଓଡ଼ିଶାକୁ ଫେରିବାଲାଗି ନାନା ଚକ୍ରାନ୍ତ ଆରମ୍ଭ କଲେ । ଓଡ଼ିଶାରେ ୧୯୫୫ ମସିହାରେ ପ୍ରବଳ ବନ୍ୟା ହୋଇ ଦଳେଇ ଘାଇ ଭାଙ୍ଗି ପ୍ରଭୂତ କ୍ଷତି ଘଟିଥିଲା । ମହତାବ ବମ୍ବେ ଗଭର୍ଣ୍ଣର ଥାଇ ଓଡ଼ିଶା ଗସ୍ତରେ ଆସିଲେ ଏବଂ ଓଡ଼ିଶା ସରକାରର ପ୍ରକାଶ୍ୟ ସମାଲୋଚନା କଲେ । ଓଡ଼ିଶାର ସରକାର ପଙ୍ଗୁ ହୋଇଗଲାଣି ଏବଂ କେନ୍ଦ୍ରରୁ ୨।୩ ଜଣ ବଡ଼ ଅଫିସର ଆସି ଶାସନ ଭାର ନେବା ଆବଶ୍ୟକ ବୋଲି କହିଲେ । ତାଙ୍କର ଆନ୍ତରିକ ଉଦ୍ୟମ ଥିଲା ଓଡ଼ିଶାରେ ରାଷ୍ଟ୍ରପତି ଶାସନ କରାଯାଉ । ମୁଁ ସେତେବେଳକୁ ଦିଲ୍ଲୀରେ ଅସୁସ୍ଥ ଥାଏ । ଓଡ଼ିଶା ଗସ୍ତ ଶେଷକରି ହଠାତ୍ ଦିନେ ମହତାବବାବୁ ସନ୍ଧ୍ୟାରେ ମୋ ଘରେ ପହଞ୍ଚିଲେ ଏବଂ କହିଲେ—ନବବାବୁ ତୁମର ଓ ମୋର ପରମ ବନ୍ଧୁ; ତାଙ୍କ ଇଜ୍ଜତ ରକ୍ଷା କରିବାକୁ ହେବ । ତେଣୁ ଓଡ଼ିଶା ଶାସନ ସଜାଡ଼ିବା ନିମନ୍ତେ ରାଷ୍ଟ୍ରପତି ଶାସନ ବା କେନ୍ଦ୍ରର ହସ୍ତକ୍ଷେପ ଆବଶ୍ୟକ ବୋଲି ତୁମେ ବିବୃତି ଦିଅ । ମୁଁ ମହତାବଙ୍କ ଖେଳ ବୁଝିପାରିଲି । ବିରୋଧିରୁ ଓ ପୁଣି ନବବାବୁଙ୍କର ପୂର୍ବର ଜଣେ ଅତି ନିକଟତମ ବ୍ୟକ୍ତିଙ୍କଠାରୁ ଏପରି ଏକ ବିବୃତି ପ୍ରକାଶ ପାଇଲେ ସେ କେନ୍ଦ୍ର ସରକାରର ହସ୍ତକ୍ଷେପ ଲାଗି ଉପାଦାନ ପାଇପାରିବେ । ମୁଁ ତାଙ୍କୁ ନାସ୍ତି କରିଦେଲି । ରାଷ୍ଟ୍ରପତି ଶାସନ ହୋଇପାରିଲା ନାହିଁ । କିନ୍ତୁ ନବକୃଷ୍ଣ ଚୌଧୁରୀ ଇସ୍ତଫା ଦେଲେ ଏବଂ ମହତାବବାବୁ ପୁଣି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇ ଆସିଲେ ।

## ପାର୍ଟି ବିଭାଜନ ପରେ ଅବସ୍ଥା

୧୯୫୫ରେ ପାର୍ଟି ଦୁଇଫାଙ୍କ ହୋଇଗଲା । ଡକ୍ଟର ଲୋହିଆ ତାଙ୍କ ଅନୁଚରଙ୍କୁ ନେଇ ଯେଉଁ ନୂତନ ଦଳ ଗଠନ କଲେ ତାର ନାମ ରଖିଲେ ସୋସଲିଷ୍ଟ ପାର୍ଟି । ପି. ଏସ୍. ପି.ର ସମ୍ମିଳନୀ ହେଲା ଗୟାରେ ଏବଂ ଡକ୍ଟର ଲୋହିଆଙ୍କ ସମ୍ମିଳନୀ ହେଲା ହାଇଦ୍ରାବାଦରେ । ଦୁହିଁଙ୍କର ଯାହା ନୀତି ଘୋଷଣା ହେଲା ସେଥିରେ କୌଣସି ମୌଳିକ ପାର୍ଥକ୍ୟ ନ ଥିଲା । ପଞ୍ଚମାଡ଼ୀ ଏବଂ ଏଲାହାବାଦରେ ଯେଉଁ ନୀତି ନିର୍ଦ୍ଧାରିତ ହୋଇଥିଲା, ଦୁଇ ସମ୍ମିଳନୀରେ ମୋଟାମୋଟି ତାହାହିଁ ଗୃହୀତ ହୋଇଥିଲା । ଗୟା ସମ୍ମିଳନୀର ନୀତି ଘୋଷଣା ପତ୍ର ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ତତ୍ତ୍ୱାବଧାନରେ ଲେଖାଯାଇଥିଲା । ମୁକୁଟ ବିହାରୀ ଲାଲ ଆଚାର୍ଯ୍ୟଜୀଙ୍କର ଲକ୍ଷ୍ନୌ ବାସଭବନରେ ରହି ଏହା ଲେଖିଥିଲେ ଏବଂ ମୋତେ ବି ଦୁଇଦିନ ଆଗରୁ ଯାଇ ଏହି ନୀତି ଚୂଡ଼ାନ୍ତ କରିବା ଠାରେ ଯୋଗଦାନ କରିବାପାଇଁ ଆଚାର୍ଯ୍ୟଜୀଙ୍କର ନିମନ୍ତ୍ରଣ ଆସିଲା । ମୁଁ ସେଠାକୁ ଯାଇଥିଲି । ଏହି ନୀତି ଘୋଷଣାରେ ଏକ ବିଶେଷ ଉଲ୍ଲେଖଯୋଗ୍ୟ କଥା ହେଲା ଯେ, କଂଗ୍ରେସର ତୀବ୍ର ବିରୋଧୀରୂପେ ପାର୍ଟି କାର୍ଯ୍ୟ କରି ଏବଂ କୌଣସି ପ୍ରକାର ମିଳିତ କର୍ମପନ୍ଥା ନେଇ ଅନ୍ୟ ପାର୍ଟିଗୁଡ଼ିକ ସହ ମିଶି କାର୍ଯ୍ୟ କରିବା ଏବଂ ସ୍ଥାନ ବଣ୍ଟାବଣ୍ଟି ନୀତିକୁ ଏହା ସଂପୂର୍ଣ୍ଣରୂପେ ତ୍ୟାଗ କଲା । ଆଚାର୍ଯ୍ୟ ନରେନ୍ଦ୍ର ଦେବ ଅସୁସ୍ଥତା ହେତୁ ଏଥିରେ ଯୋଗ ଦେଇ ପାରି ନ ଥିଲେ । ନୂତନ ବର୍ଷ ନିମନ୍ତେ ସେ ପୁଣି ସଭାପତି ନିର୍ବାଚିତ ହେଲେ ଏବଂ ଜି ଗୋରେ ଙ୍କ ସଂପାଦକ ରହିଲେ । ମୁଁ ଓ ସାରଙ୍ଗଧରବାବୁ ଉଭୟ ଏଠାରେ ଜାତୀୟ କାର୍ଯ୍ୟକାରୀ ସମିତିକୁ ନିର୍ବାଚିତହେଲୁ ।

## ଆଚାର୍ଯ୍ୟ ନରେନ୍ଦ୍ରଦେବଙ୍କ ଅସୁସ୍ଥତା

ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ଅସୁସ୍ଥତା କ୍ରମେ ବୃଦ୍ଧି ପାଇଲା ଏବଂ ସେ ମାନ୍ଦ୍ରାଜର ଏରୋଡ଼ଠାରେ ଯାଇ ବିଶ୍ରାମ ନେଉଥିଲେ । ତାଙ୍କ ସୁବିଧା ନିମନ୍ତେ ଆମର କାର୍ଯ୍ୟକାରୀ ସମିତିର ଏକ ବୈଠକ ୧୯୫୬ ଫେବୃୟାରୀ ମାସରେ ହେଲା ଏବଂ ସେଥିରେ ଗଙ୍ଗା ଶରଣ ସିଂହଙ୍କୁ ଡେପୁଟି ଚେୟାରମ୍ୟାନ୍ ଭାବରେ ନିଯୁକ୍ତ କରାଗଲା । ମାତ୍ର ଦୁଃଖର ବିଷୟ ଯେ, ମାର୍ଚ୍ଚ ମାସରେ ଉକ୍ତାପ୍ତ ବୈଠକ ବସିଲା ବେଳକୁ ଆଚାର୍ଯ୍ୟଜୀ ଆଉ ନ ଥିଲେ । ୧୯୫୬ ଫେବୃୟାରୀ ୧୯ ତାରିଖରେ ତାଙ୍କର ପରଲୋକ ହୋଇଗଲା । ସେ ଯେଉଁ ସୋସଲିଷ୍ଟ ପାର୍ଟିକୁ ନାନା ପ୍ରତିକୂଳ ପରିବେଶରେ କଷ୍ଟ କରି ଲାଳନ ପାଳନ କରିଥିଲେ ଏବଂ ତାଙ୍କ ନିର୍ଦ୍ଦେଶନାରେ ଯେଉଁ ନୂତନ ନୀତି ନିର୍ଦ୍ଧାରଣ ହୋଇଥିଲା, ତାହାର କାର୍ଯ୍ୟକାରିତା ଦେଖି ପାରିଲେ ନାହିଁ । ସେ ପାର୍ଟିର କେବଳ ଚାଳକ ନଥିଲେ, ଏହାର ଭିତ୍ତି ସ୍ଥାପନ କରିଥିଲେ ପାଟନାଠାରେ ପ୍ରଥମ କଂଗ୍ରେସ ସୋସଲିଷ୍ଟ ସମାବେଶରେ ସଭାପତିତ୍ୱ କରି । ସେ ଉତ୍ତର ପ୍ରଦେଶର ଫୈଜାବାଦ ଜିଲ୍ଲାରେ ୧୮୮୯ ମସିହାର ଅକ୍ଟୋବର ୩୧ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ସେ ମହାନ୍ ବିଦ୍ୱାନ୍, ମାର୍କସବାଦୀ, ସଂସ୍କୃତ ଓ ପାଲିଭାଷାରେ ପଣ୍ଡିତ,

ବୌଦ୍ଧ ଦର୍ଶନର ଗବେଷକ ଥିଲେ ଏବଂ ଲକ୍ଷ୍ନୌ ଓ ବାରାଣସୀ ବିଶ୍ୱବିଦ୍ୟାଳୟର ଭାଇସ୍ ଚାନ୍ସଲର୍ ହୋଇଥିଲେ । କିନ୍ତୁ ପାର୍ଟି ପ୍ରତି ତାଙ୍କର ଅଗାଧ ଅନୁରକ୍ତି ଥିଲା । ଉକ୍ତରେ ଲୋହିଆ ପାର୍ଟିରେ ବିଶୃଙ୍ଖଳା ଜାତ କରାଇ ଯେ ଲଣ୍ଡ୍ଭଣ୍ଡ୍ କଲେ, ତାର ଦୃଢ଼ ବିରୋଧ ଆଚାର୍ଯ୍ୟଜୀ କଲେ ଏବଂ ତାଙ୍କର ଅକ୍ଳାନ୍ତ ପରିଶ୍ରମ ଯୋଗୁଁ ପି. ଏସ୍. ପି.ର ମେମ୍ବର ଓ କର୍ମୀ ଦୃଢ ରହିଲେ; ମାତ୍ର ପାର୍ଟି ରକ୍ଷା କରିବା ନିମନ୍ତେ ଏ ଯେଉଁ ପରିଶ୍ରମ କଲେ ସେଥିଯୋଗୁଁ ସ୍ୱାସ୍ଥ୍ୟର ଅବନତି ଘଟିଲା । ତାହିଁରୁ ଆଉ ସେ ଉଦ୍ଧାର ପାଇଲେ ନାହିଁ, ପ୍ରାଣବାୟୁ ଉଡ଼ିଗଲା । ଖାଲି ତାଙ୍କର ମୃତ୍ୟୁ ହେଲା ନାହିଁ; ଏହି ମୃତ୍ୟୁ ଫଳରେ ପ୍ରଜା ସୋସଲିଷ୍ଟ ପାର୍ଟିର ଓ ଆମ ସମସ୍ତଙ୍କର ପ୍ରାଣଯିବା ସଙ୍ଗେ ସମାନ ଅବସ୍ଥା ହୋଇଗଲା । ଏହି ମାର୍ଚ୍ଚମାସ ବୈଠକରେ ଗଙ୍ଗାଶରଣ ସିଂହଙ୍କୁ ପାର୍ଟିର ଚେୟାରମ୍ୟାନ୍ ରୂପେ ନିଯୁକ୍ତ କରାଗଲା ।

## ସୁଚେତାଙ୍କର ବିଦାୟ

ଅନ୍ୟ ଦୁଇଟି ବୈଠକ ହୋଇ ବମ୍ବେଠାରେ ଏସିଆନ୍ ସୋସଲିଷ୍ଟ ସମ୍ମିଳନୀ କରାଯିବାର ସ୍ଥିର ହେଲା ଏବଂ ୧୯୫୬ ନଭେମ୍ବର ମାସରେ ବାଙ୍ଗାଲୋରଠାରେ ତୃତୀୟ ବାର୍ଷିକ ସମ୍ମିଳନୀ କରାଯିବା ଧାର୍ଯ୍ୟ କରାଗଲା । ଏସିଆନ୍ ସୋସଲିଷ୍ଟ ସମ୍ମିଳନୀକୁ ଡେଲିଗେଟ୍ ଭାବରେ ମାତ୍ର ୧୨ ଜଣ ନିର୍ବାଚିତ ହେଲେ । ତାହାହିଁ ଭାରତ ଭାଗରେ ସଂଖ୍ୟା ପଡ଼ିଥିଲା । ମୁଁ ଏଥିକି ଜଣେ ଡେଲିଗେଟ୍ ଭାବରେ ଯାଇଥିଲି । ଡେଲିଗେଟ୍ଙ୍କ ଭିତରେ ସୁଚେତା କ୍ରିପାଳନୀ ବି ଜଣେ ଥିଲେ । ମାତ୍ର ଠିକ୍ ଏହି ସମ୍ମିଳନୀର କିଛିଦିନ ପୂର୍ବରୁ ସେ ପାର୍ଟି ତ୍ୟାଗ କଲେ । ତାଙ୍କର ପାର୍ଟି ସହ କୌଣସି ମତଭେଦ ନ ଥିଲା; ମାତ୍ର ସେ ଯେଉଁ ସମାଜସେବା କାର୍ଯ୍ୟ ଇତ୍ୟାଦି ସହ ସମ୍ପୃକ୍ତ ଥିଲେ ଉକ୍ତ କାର୍ଯ୍ୟ ପାର୍ଟି ସହ ସମ୍ପର୍କ ତୁଟାଇଲେ ଉତ୍ତମରୂପେ ସଂପାଦନ କରାଯାଇପାରିବା ଆଶାରେ ସେ ଗଲେ । ଅନ୍ତତଃ ତାହାହିଁ ପ୍ରେସ୍ ବିଜ୍ଞପ୍ତିରେ ଜଣାଇଥିଲେ । କିନ୍ତୁ କିଛିଦିନ ପରେ ସେ କଂଗ୍ରେସରେ ଯୋଗଦେଇ ଉତ୍ତରପ୍ରଦେଶର ମୁଖ୍ୟମନ୍ତ୍ରୀ ହେଲେ । ଆଚାର୍ଯ୍ୟ କ୍ରିପାଳନୀ କିନ୍ତୁ ପାର୍ଟିରେ ରହିଲେ । ସ୍ୱାମୀ ବିରୋଧୀ ଦଳରେ ଏବଂ ସ୍ତ୍ରୀ କଂଗ୍ରେସ ଦଳରେ—ଏହାର ପ୍ରତିକ୍ରିୟା ପାର୍ଟି ଓ ଦେଶରେ ଭଲହୋଇନଥିଲା ।

□□□

# ୧୨ । ୧୯୫୭ର ସାଧାରଣ ନିର୍ବାଚନ

ଦ୍ୱିତୀୟ ସାଧାରଣ ନିର୍ବାଚନର ପୂର୍ବାବସ୍ଥାରେ ଭାରତୀୟ ପ୍ରଜା ସୋସଲିଷ୍ଟ ପାର୍ଟିର ସ୍ଥିତି ବଡ଼ ଦୁର୍ବଳ ହୋଇଯାଇଥିଲା । ଜୟପ୍ରକାଶ ନାରାୟଣ ପାର୍ଟିର ସଭ୍ୟପଦ ବି ଛାଡ଼ି ଦେଇଥିଲେ । ଆଚାର୍ଯ୍ୟଜୀଙ୍କର ମୃତ୍ୟୁ ହୋଇଗଲା । ଲୋହିଆ ଦଳ ଅଲଗା । ସୁଚେତା କୃପାଲିନୀ ଏବଂ ଆଉ କେତେକ ମୁଖ୍ୟ କେ.ଏମ୍.ପି.ପି. ନେତା ଛାଡ଼ି ଯାଇଥିଲେ । ପାର୍ଟିର କର୍ମୀ ବହୁଳ ରହିଥିଲେ—ସେମାନଙ୍କ ମନରେ ଉତ୍ସାହ ଥିଲା; ମାତ୍ର ପାର୍ଟି ପକ୍ଷରେ ସମ୍ବଳ ଓ ଅର୍ଥ ସଂଗ୍ରହ କଷ୍ଟସାଧ୍ୟ ଥିଲା । ଭାରତର ଶିଳ୍ପପତିମାନେ କେବେହେଲେ ସୋସଲିଷ୍ଟ ପାର୍ଟିକୁ ଭଲଦୃଷ୍ଟିରେ ଦେଖୁନଥିଲେ । ପାର୍ଟିରେ ବଡ଼ ବଡ଼ ନେତା ରହିଥିଲେ ଏବଂ କାଳେ ସେମାନେ ଦିନେ କ୍ଷମତାକୁ ଆସିଯିବେ, ଏଭଳି ଭୟରେ ସେମାନେ ଆଗରୁ ହେଲେ କିଛି କିଛି ଚାନ୍ଦା ଦାନକରୁଥିଲେ । ସେମାନଙ୍କର ନୀତି ବିଚିତ୍ର—ଶାସନ କ୍ଷମତା ଭୟରେ ଚାନ୍ଦା ଦିଅନ୍ତି । ସେ ଚାନ୍ଦାଟା ପୁଣି ଏକପ୍ରକାର ପୁଞ୍ଜି ଖଟାଇଲାପରି । ଯେଉଁଠି ଦେଲେ ଫାଇଦା ହେବ ସେଠି ଖଟାନ୍ତି । ପି.ଏସ୍.ପି.କୁ ଦେଇ ସେମାନଙ୍କର କି ଲାଭ ! ସେମାନେ କଂଗ୍ରେସକୁ ଖାଲି କ୍ଷମତା ଉପରେ ଦେଇନଥିଲେ, କଂଗ୍ରେସ ସେମାନଙ୍କ ସ୍ୱାର୍ଥ ରକ୍ଷା କରୁଥିଲା । କଂଗ୍ରେସକୁ ସେମାନେ ପ୍ରଭାବିତ କରିପାରୁଥିଲେ । ଅର୍ଥବିନା ନିର୍ବାଚନ ଲଢ଼ିବା ମୁସ୍କିଲ ହେବ ! ତେଣୁ ଆମମାନଙ୍କ ଭିତରେ ଚର୍ଚ୍ଚା ଚାଲିଲା କେଉଁ ନୀତି ଅବଲମ୍ବନ କରି ନିର୍ବାଚନ ପ୍ରତିଦ୍ୱନ୍ଦ୍ୱିତା କରିବା । ଏଣେ ଦେଶର ପରିସ୍ଥିତି ଯେପରି, ଅନୁମାନ ହେଉଥିଲା ସେଥିରେ କଂଗ୍ରେସର ପରାଜୟ ନ ଘଟିଲେ ଏହା ଏକଛତ୍ର ଆଡ଼କୁ ଗତି କରିବାର ଆଶଙ୍କା ଥିଲା । ପ୍ରଜା ସୋସଲିଷ୍ଟ ପାର୍ଟି ଏକାକୀ କଂଗ୍ରେସକୁ ହଟାଇ ପାରିବ ନାହିଁ । ଜୟପ୍ରକାଶ ନାରାୟଣ ଏକ ବିବୃତି ଦେଇ ପରାମର୍ଶ ଦେଇଥିଲେ ଯେ କଂଗ୍ରେସର ଶକ୍ତି ହ୍ରାସ ହେଲାଭଳି ଉଦ୍ୟମ ହେବା ଉଚିତ ।

## ବାଙ୍ଗାଲୋର ପ୍ରସ୍ତାବ

ନିର୍ବାଚନ କୌଶଳ ଓ କାର୍ଯ୍ୟକ୍ରମ ସ୍ଥିର କରିବା ନିମନ୍ତେ ବାଙ୍ଗାଲୋରଠାରେ ପାର୍ଟିର ତୃତୀୟ ସାଧାରଣ ଅଧିବେଶନ ବସିଲା । ୧୯୫୬ ନଭେମ୍ବର ୨୫ରୁ ୨୮ ପର୍ଯ୍ୟନ୍ତ ଏହା ହୋଇଥିଲା । ଅନ୍ୟାନ୍ୟ ପ୍ରସ୍ତାବ ସହିତ ନିର୍ବାଚନ କୌଶଳ ସମ୍ବନ୍ଧରେ ଏକ ପ୍ରସ୍ତାବ ଆସିଥିଲା । ସେଥିରେ ମୁଖ୍ୟ ବିଷୟ ଥିଲା ଯେ ଆମର ଗଲା ସିଦ୍ଧାନ୍ତ ଅନୁସାରେ ଆମେ କଂଗ୍ରେସ, କମ୍ୟୁନିଷ୍ଟ ବା ସାଂପ୍ରଦାୟିକ ଦଳ କିମ୍ବା ଆମ ନୀତିସହ ଖାପଖାଉନଥିବା ଅନ୍ୟ ଦଳଗୁଡ଼ିକ ସହ ମିଳିମିଶି ଏକା ମଞ୍ଚରୁ ପ୍ରଚାର କରିବୁ ନାହିଁ କିମ୍ବା ମେଣ୍ଟ ବାନ୍ଧିବୁ ନାହିଁ ।

ଆମ ନିଜ ପତାକାତଳେ ନିଜ ନିର୍ବାଚନ ଇସ୍ତାହାରରେ ଲଢେଇ କରିବୁ; କିନ୍ତୁ ଦେଶରେ ଏବେ ନାନା ଦଳ ହେଲେଣି, ପ୍ରଦେଶମାନଙ୍କର ପରିସ୍ଥିତି ସ୍ୱତନ୍ତ୍ର; ତେଣୁ ନିର୍ବାଚନ ବେଳେ ପ୍ରଦେଶର ଅବସ୍ଥାକୁ ଅନାଇ ଆବଶ୍ୟକ ସ୍ଥଳେ ଅନ୍ୟ ଦଳଗୁଡ଼ିକ ସହ ବୁଝାମଣା କରାଯାଇ-ପାରେ । ଏତିକି ଅଧିକାର ଜାତୀୟ କାର୍ଯ୍ୟକାରୀ ସମିତିର ରହିବ ଏବଂ ସବୁ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ରହିବ ।

ଏଭଳି ଏକ ପ୍ରସ୍ତାବ ମୁଁ ଆଗତ କରିଥିଲି ଏବଂ କହିଲି, "ଆମେ ସବୁଠାରେ ପ୍ରାର୍ଥୀ ଛିଡ଼ା କରାଇବା ଅବସ୍ଥାରେ ନାହୁଁ ଏବଂ ଆମେ ଏକାକୀ କଂଗ୍ରେସକୁ ହରାଇ ପାରିବା ନାହିଁ । ଆମେ ହେଉଛୁ ସର୍ବାପେକ୍ଷା ବୃହତ୍ତ ବିରୋଧୀ ଦଳ ଏବଂ ଆମର ବିରୋଧ ଦୃଢ ହେବ; କିନ୍ତୁ କଂଗ୍ରେସକୁ ହଟାଇବା ନିମନ୍ତେ ଏହି ଶକ୍ତି ଯଥେଷ୍ଟ ନୁହେଁ । ତେଣୁ ଆମକୁ ସମଗ୍ର ବିରୋଧର ଏକ ଅଂଶରୂପେ ନିଜକୁ ବିଗ୍ଚାର କରିବାକୁ ହେବ; ଆମେ କିଛି ତାର ବାହାରେ ନୋହୁଁ । ଏହା ନଜରରେ ରଖି ଆମର ନିର୍ବାଚନ କୌଶଳ ସ୍ଥିର କରାଯିବ—ଯଥାସମ୍ଭବ ନିର୍ମୁଖୀ ପ୍ରତିଯୋଗିତା ନ ହେଲେ ଭଲ ବ୍ୟବସ୍ଥା ଜାତୀୟ କାର୍ଯ୍ୟକାରୀ ସମିତି କରିବ—ମାତ୍ର ତାହା ପ୍ରାଦେଶିକ କମିଟିମାନଙ୍କର ସମ୍ମତି ନେଇ କିମ୍ବା ସେମାନଙ୍କ ଦାବୀ ଅନୁସାରେ କରାଯିବ ।"

ଏଥିରେ ଅବଶ୍ୟ କମ୍ୟୁନିଷ୍ଟ ପାର୍ଟି ସହ ବି ଆବଶ୍ୟକ ସ୍ଥଳେ ବୁଝାମଣା କରିବାରେ ବାଧା ନ ଥିଲା । ଏହି କଥା ଯେତିକି ଘୋର ବିରୋଧ ହେଲା । ଅଶୋକ ମେହେଟା, ମନୋରଞ୍ଜନ ହ୍ୟାରି, ସାରଙ୍ଗଧର ଦାସ, ଚନ୍ଦ୍ରଶେଖର ଏବଂ ଆହୁରି ବହୁ ମୁଖ୍ୟ ପ୍ରଭାବଶାଳୀ ସାଥୀ ଏହାର ଘୋର ବିରୋଧ କଲେ । ଅଶୋକ ମେହେଟା ଘୋଷଣା କରିଦେଲେ ଯେ ତାଙ୍କ ଶବ ଉପରେ ଏପରି ଏକ ବ୍ୟବସ୍ଥା କରାଯାଇପାରିବ । ଜାତୀୟ କାର୍ଯ୍ୟକାରୀ ସମିତି ଏହା ଗ୍ରହଣ କରିସାରିଥିବା ସତ୍ତ୍ୱେ ଉପରର ମୁଖ୍ୟମାନେ ଚେୟାରମ୍ୟାନଙ୍କଠାରୁ ଅନୁମତି ନେଇ ଏପରି କରିଥିଲେ । ବିରୋଧ ହେବ ଜଣାଥିଲା; ମାତ୍ର ଏପରି ଶକ୍ତ ବିରୋଧ ହେବ ବୋଲି ମୁଁ ଅନୁମାନ କରିନଥିଲି । ସତେ କି ଏହା ଯେତିକି ପାର୍ଟି ପୁଣି ଦୁଇଭାଗ ହୋଇ ପଡ଼ିବ ଏପରି ଏକ ପରିସ୍ଥିତି ସୃଷ୍ଟି ହୋଇଗଲା । ମାତ୍ର ଶେଷକୁ ମୋର ପ୍ରସ୍ତାବ ବହୁଭୋଟରେ ଗୃହୀତ ହୋଇଗଲା । ଅସଲ୍ଲା ନିର୍ବାଚନ ସଂଗ୍ରାମରେ ପ୍ରବେଶ କରିବା ପୂର୍ବରୁ ପି. ଏସ୍. ପି. ବିରୋଧୀମାନଙ୍କ ସହ ଖୋଲାମନରେ କଥାବାର୍ତ୍ତା କରିବାଲାଗି ପ୍ରସ୍ତୁତ ହୋଇ ବାହାରିଲା । ପାର୍ଟି ନିଜର ସୀମିତ ଶକ୍ତି ବିଷୟରେ ସଚେତନ ଥିଲା । ୧୯୫୭ରେ ପରାଜୟରୁ ଯେଉଁ ଶିକ୍ଷା ମିଳିଥିଲା, ସେ ଦୃଷ୍ଟିରୁ ନିଜର ଶକ୍ତି ଓ ସମ୍ବଳ ଦୃଢ଼ଥିବା ସ୍ଥାନମାନଙ୍କରେ ପ୍ରାର୍ଥୀ ଛିଡ଼ା କରାଗଲା । ଏହି ସମ୍ମିଳନୀରେ ଓଡ଼ିଶାରୁ ମୁଁ, ସାରଙ୍ଗଧର ଦାସ, ସହଦେବ ମିଶ୍ର, ନରସିଂହ ଚରଣ ମହାନ୍ତି, ପ୍ରଭାତ ରଞ୍ଜନ ରାଉତ, ସଚ୍ଚିଦାନନ୍ଦ ରାଉତ ଓ ବ୍ରଜକିଶୋର ସାମନ୍ତରାୟ ଯୋଗଦେଇଥିଲୁଁ ।

## ଓଡ଼ିଶାରେ ନିର୍ବାଚନ ଫଳ

ଏହି ନୀତି ଅନୁସରଣ କରି ସାଧାରଣଭାବରେ ଭାରତର ଗୁଡ଼ିଆଡ଼େ ୧୯୫୨ ଅପେକ୍ଷା ପି. ଏସ୍. ପି.ର ନିର୍ବାଚନ ଫଳ ଭଲ ହୋଇଥିଲା । ନେତା ଓ ଧନ ନଥାଇ ସୁଦ୍ଧା ଯେ ଏତିକ ସଂଖ୍ୟା ମିଳିପାରିଲା, ତହିଁରେ ଦେଶରେ ପି. ଏସ୍. ପି.ର କର୍ମୀମାନଙ୍କର ନିଷ୍ଠା ଓ କର୍ମପ୍ରବଣତାର ପ୍ରମାଣ ମିଳିଲା । ଓଡ଼ିଶାରେ ଆମେ ଲୋକସଭାରେ ଦୁଇଟି ଆସନ ପାଇଲୁ । କଟକ ଜିଲ୍ଲାର କେନ୍ଦ୍ରାପଡ଼ା ଦ୍ୱୈତ ନିର୍ବାଚନମଣ୍ଡଳୀରୁ ମୁଁ ଓ ବୈଷ୍ଣବ ଚରଣ ମଲିକ ନିର୍ବାଚିତ ହେଲୁ । ମୋ ବିରୁଦ୍ଧରେ ତତ୍କାଳୀନ ଡେପୁଟି ମିନିଷ୍ଟର ଓ ମୋର ଅଗଷ୍ଟ ଷଡ଼ଯନ୍ତ୍ର ମକଦ୍ଦମା ସାଥୀ ଭୈରବ ଚନ୍ଦ୍ର ମହାନ୍ତି କଂଗ୍ରେସ ପ୍ରାର୍ଥୀ ଥିଲେ । ବିଶେଷ କିଛି ସମ୍ବଳ ଯୋଗାଡ଼ କରି ନ ପାରି ସୁଦ୍ଧା ଏ ବିଜୟ ପାର୍ଟି ଲୋକଙ୍କ ଭିତରେ ଖୁବ୍ ଆନନ୍ଦ ଓ ଉତ୍ସାହ ସୃଷ୍ଟି କରିଥିଲା । ମୋ ପକ୍ଷରେ ଲୋକସଭା ନିର୍ବାଚନରେ ଏହା ପ୍ରଥମ ସଫଳତା ।

## ବିଧାନସଭାରେ ବିଚିତ୍ର ପରିସ୍ଥିତି

ଓଡ଼ିଶା ବିଧାନସଭାର ସଭ୍ୟସଂଖ୍ୟା ୧୪୦ । ତହିଁରୁ ପି. ଏସ୍. ପି. ପାଇଲା ୧୧— ମାତ୍ର କଂଗ୍ରେସ ପାଇଲା ୫୭, ଗଣତନ୍ତ୍ର ପରିଷଦ ୫୧, କମ୍ୟୁନିଷ୍ଟ ପାର୍ଟି ୯, ଝାଡ଼ଖଣ୍ଡ ପାର୍ଟି ୫, ଲୋହିଆ ସୋସିଆଲିଷ୍ଟ ପାର୍ଟି ୧ ଏବଂ ବାକି ୭ ଜଣ ସ୍ୱାଧୀନ । ଆମେ ଯେଉଁ ଆଭିମୁଖ୍ୟ ନେଇ ନିର୍ବାଚନ ଲଢ଼ାଇ କରିଥିଲୁ ତାହା ସଫଳ ହୋଇଥିଲା । ଓଡ଼ିଶାରେ କଂଗ୍ରେସ ମୋଟେ ୫୭ ଭୋଟ ପାଇ ସଂଖ୍ୟାନ୍ୟୂନ ହୋଇଗଲା । ଲୋକମାନେ ନିଶ୍ଚିତ ଭାବରେ କଂଗ୍ରେସକୁ ହରାଇଦେଲେ ଏବଂ କଂଗ୍ରେସ ସରକାର ସ୍ଥାପନାର ବିରୋଧରେ ମତ ଦେଲେ । ଏତିକି-ବେଳେ ଆମ ଆଗରେ ଏକ ବିରାଟ ସମସ୍ୟା ପଡ଼ିଥିଲା—ଆମେ କିପରି ଲୋକମତର ଉପଯୁକ୍ତ ମର୍ଯ୍ୟାଦା ଦେବୁ ।

## ବେକଂଗ୍ରେସୀ ସରକାର ଗଠନର ପ୍ରଚେଷ୍ଟା

ଏ ପାଖରେ କମ୍ୟୁନିଷ୍ଟ ଓ ଅନ୍ୟଆଡ଼େ ଗଣତନ୍ତ୍ର ପରିଷଦ—ଏହାଙ୍କ ସହିତ କେମିତି ବା ବୁଝାବଣା ହୋଇ ପାରିବ ? ତେଣୁ ଆମ ପ୍ରାଦେଶିକ କାର୍ଯ୍ୟକାରୀ ସମିତି ବସି ନିଷ୍ପତ୍ତି ନେଲା ଯେ—

(୧) ପ୍ରଦେଶରେ କଂଗ୍ରେସ ସରକାର ଗଠନକୁ ପି. ଏସ୍. ପି. ସମର୍ଥନ କରିବ ନାହିଁ । (୨) ରାଷ୍ଟ୍ରପତି ଶାସନ ଜାରିର ବିରୋଧ କରିବ । (୩) ଏକ ଅଣକଂଗ୍ରେସ ସରକାର ଗଠନରେ ପି. ଏସ୍. ପି. ସାହାଯ୍ୟ କରିବ; କିନ୍ତୁ ମିଳିତ ମନ୍ତ୍ରିମଣ୍ଡଳରେ ଯୋଗ ଦେବ ନାହିଁ କିମ୍ବା ମନ୍ତ୍ରୀତ୍ୱ ଗ୍ରହଣ କରିବ ନାହିଁ । ବମ୍ବେଠାରେ ଏପ୍ରିଲ ୭ରୁ ୮ ପର୍ଯ୍ୟନ୍ତ ଜାତୀୟ କାର୍ଯ୍ୟକାରୀ ସମିତି ବୈଠକରେ ଏହି ନିଷ୍ପତ୍ତିକୁ ସମର୍ଥନ କରାଗଲା ।

ସେହି ବମ୍ବେଠାରେ ଏମ୍. ଆର୍. ମସାନୀଙ୍କ ଉଦ୍ୟମରେ ଗଣତନ୍ତ୍ର ପରିଷଦର କଳାହାଣ୍ଡି ମହାରାଜା ପି. କେ. ଦେଓ, ଝାଡ଼ଖଣ୍ଡ ନେତା ଜୟପାଲ ସିଂ ଏବଂ ମୋ ଭିତରେ ଏ ସଂପର୍କରେ ମନ୍ତ୍ରଣା ହେଲା ଏବଂ ଏକ ସର୍ବନିମ୍ନ କାର୍ଯ୍ୟକ୍ରମ ଭିତ୍ତିରେ ଅଣକଂଗ୍ରେସୀ ମନ୍ତ୍ରୀମଣ୍ଡଳ ଗଠନ କରିବା ନୀତିଗତ ଭାବରେ ସ୍ଥିର କରାଗଲା । ତାହା ବ୍ୟତୀତ ଏହି ୩ ପାର୍ଟି ପ୍ରଥମେ ଏକଜୁଟ ହୋଇଗଲେ ଏମାନଙ୍କ ସଂଖ୍ୟା ହେବ ୬୭ ଏବଂ କଂଗ୍ରେସ ପାର୍ଟିଠାରୁ ଏହା ବୃହତ୍ତର ହେବ । ମାତ୍ର ଆଉ ୪ ଜଣଙ୍କ ସମର୍ଥନ ମିଳିଲେ ୭୧ ହୋଇ ସଂଖ୍ୟା ବୃଦ୍ଧି ହେବ । କମ୍ୟୁନିଷ୍ଟ ଯଦି ଅଣକଂଗ୍ରେସ ରହିବାକୁ ଚାହାନ୍ତି ତେବେ ଏହାକୁ ସମର୍ଥନ ଦେବେ, ନଚେତ୍ ତାଙ୍କ ସମର୍ଥନ ଲୋଡ଼ା ହେବ ନାହିଁ । ଏହି ଭିତ୍ତିରେ ପୁଣି ଆମେ ଏକାଠି ଓଡ଼ିଶାକୁ ଫେରିଲୁ ।

## କଂଗ୍ରେସର ସଭ୍ୟ ବିକାକିଣା ଉଦ୍ୟମ

ଓଡ଼ିଶା କଂଗ୍ରେସ କନ୍ତୁ ସଭ୍ୟ ବିକାକିଣା ଓ ଅନ୍ୟ ପାର୍ଟିରୁ ସଭ୍ୟ ଖସାଇବାର ଉଦ୍ୟମ ଏଠି ଆରମ୍ଭ କରିଦେଲା । ଯେଉଁ 'ଆୟାରାମ ଗୟାରାମ' ନୀତି ସକାଶେ ଭାରତର ରାଜନୀତି ଅତି ନୀଚସ୍ତରକୁ ଗଲା ଏବଂ ଅସ୍ଥିରତା ସୃଷ୍ଟି ହେଲା, ସେହି ବିଦ୍ୟା ପ୍ରଥମେ ଓଡ଼ିଶାରେ ଆରମ୍ଭ ହେଲା । ମନ୍ତ୍ରିମଣ୍ଡଳ ଗଠନ ଲାଗି ଟଙ୍କା ଦିଆନିଆ ଚାଲିଲା । ଜୟପାଲ ସିଂହଙ୍କର କିଛି ଠିକଣା ନୀତି ନ ଥାଏ; ତଥାପି ଯେଉଁ ପାଞ୍ଚଜଣ ଝାଡଖଣ୍ଡ ସଭ୍ୟ ଥିଲେ ସେମାନେ ପୂର୍ଣ୍ଣରୂପେ ତାଙ୍କ ଆନୁଗତ୍ୟରେ ଥିଲେ । ସେ ଓଡ଼ିଶାରେ ପହଞ୍ଚି ଆମର ସ୍ଥିରୀକୃତ ଉଦ୍ୟମରେ ଆଉ ଯୋଗ ନ ଦେଇ ପ୍ରଲୋଭନରେ ପଡ଼ି କଂଗ୍ରେସକୁ ସାହାଯ୍ୟ କରିବେ ବୋଲି ଘୋଷଣା କରିଦେଲେ । କମ୍ୟୁନିଷ୍ଟ ଏଥିରେ ମଧ୍ୟ ସୁବିଧାବାଦୀ ପନ୍ଥା ଧରିଲେ । ସେମାନେ 'ନିରପେକ୍ଷ' ରହିବେ ବୋଲି କଂଗ୍ରେସ ସହ କଥାବାର୍ତ୍ତା କରି ଘୋଷଣା କରିଦେଲେ ଏବଂ ଯଦିଓ ସେମାନଙ୍କର ଅଣକଂଗ୍ରେସ ସରକାର ଗଠନ କରିବାରେ ବିଶେଷ ଆପତ୍ତି ନ ଥିଲା, ତଥାପି ଏକ ରାଜା-ମହାରାଜାଙ୍କ ଦଳ ଗଣତନ୍ତ୍ର ପରିଷଦ କ୍ଷମତାରେ ଆସିବାଟାକୁ ସେମାନେ ସମର୍ଥନ କରିପାରିନଥିଲେ । ଏପରି ଘୋଷଣା ପରେ ତାଙ୍କର 'ନିରପେକ୍ଷ' ରହିବାଟା କଂଗ୍ରେସ ଦଳକୁ ହିଁ ସାହାଯ୍ୟ କଲା । କଂଗ୍ରେସ ବିରୋଧୀଦଳଙ୍କର ଏପରି ଅସହାୟ ଅବସ୍ଥାର ସୁଯୋଗ ଉଠାଇ ଖାଲି ୫ ଜଣ ଝାଡଖଣ୍ଡ ମେମ୍ବରଙ୍କୁ କିଣିଲା ନାହିଁ—ସ୍ୱାଧୀନ ସଭ୍ୟଙ୍କ ଭିତରୁ ୪ ଜଣ ଏବଂ ଗଣତନ୍ତ୍ର ପରିଷଦରୁ ଜଣେ ତାଙ୍କ ସହିତ ଗଲେ । ଏହିରୂପେ କଂଗ୍ରେସର ସଂଖ୍ୟା ୭୬ ହେଲା ଏବଂ କମ୍ୟୁନିଷ୍ଟଙ୍କ ୧୧କୁ ବାଦ୍ ଦେଲେ ସେମାନେ ବୃହତ୍ତରଦଳ ବୋଲି ଗଭର୍ଣ୍ଣର ହରେକୃଷ୍ଣ ମହତାବଙ୍କୁ ମନ୍ତ୍ରିମଣ୍ଡଳ ଗଠନ କରିବା ନିମନ୍ତେ ନିମନ୍ତ୍ରଣ ଦେଲେ । ଏହିରୂପେ ଅତି ହୀନ ଓ ମନ୍ଦପନ୍ଥା ଗ୍ରହଣ କରି କଂଗ୍ରେସ ଗଭର୍ଣ୍ଣରଙ୍କୁ ହାତ କରି ଏକ ସଂଖ୍ୟାନ୍ୟୂନ ଦଳକୁ ସଂଖ୍ୟାଗରିଷ୍ଠ କରାଯାଇ ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଓଡ଼ିଶା ରାଜନୀତିରେ ଧନ ଓ ପେଞ୍ଚପାଞ୍ଚର ଖେଳ ଆରମ୍ଭ ହେଲା । ଓଡ଼ିଶା କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କଲା ସିନା, ବାରମ୍ବାର ନାନା

ଅସୁବିଧାର ସମ୍ମୁଖୀନ ହେଲା । ସୁବିଧାବାଦୀ ମେଣ୍ଟ ଚଳାଇବା କଷ୍ଟକର ହେଲା । ସ୍ଥିର ଅବସ୍ଥା ପରିବର୍ତ୍ତେ ଅସ୍ଥିରତାର ସଂପୂର୍ଣ୍ଣ ସୂଚନା ଦେଖାଦେଲା ।

## ଗଣତନ୍ତ୍ର ପରିଷଦ ଓ ଆମେ

ଓଡ଼ିଶାର ରାଜନୀତି ସତେକି ଏହିପରି ଏକ ଅସ୍ଥିରତା ଭିତର ଦେଇ ଗତି କରିବ, ଏହା ସ୍ପଷ୍ଟ ଜଣାପଡ଼ିଲା । ରାଜନୀତିକ ପ୍ରଭାବ ଓ ସଂଗଠନ ଯେମିତି ଭାବରେ ରହିଥିଲା ସେଥିରେ ପାର୍ଟିମାନଙ୍କର ଆଉ ପରସ୍ପର ସହ ସଂଘର୍ଷ ହେବାର ବିଶେଷ ସୁଯୋଗ ନ ଥିଲା । ଗଣତନ୍ତ୍ର ପରିଷଦ ବିଶେଷ ଭାବରେ ପଶ୍ଚିମାଞ୍ଚଳ ମନୋବୃତ୍ତି ଏବଂ ସାମନ୍ତୀୟ ରାଜପ୍ରୀତିର ସୁଯୋଗ ନେଇ ରାଜନୀତିକ ପ୍ରଭାବ ବଢ଼ାଇଲା ସିନା, କମିଲା ନାହିଁ । ଏପରି ଏକ ପ୍ରାଦେଶିକ ଦଳର ଅସ୍ତିତ୍ୱ ସବୁଦିନ ଅସ୍ଥିର ଅବସ୍ଥା ସୃଷ୍ଟି କରୁଥିଲା । ତେଣୁ ପ୍ରଦେଶର ରାଜନୀତିକ ଅବସ୍ଥାକୁ ସ୍ଥିର ସ୍ଥିତି ଦେବାକୁ ହେଲେ ଏ ଦିଗରେ କିଛି ଉଦ୍ୟମ ହେବା ଉଚିତ ବୋଲି ମୁଁ ବିଚାରକଲି ।

ଏଥିରେ ମୋ ଉପରେ ଉପରୁ ବି ଗୁରୁ ପଡ଼ିଲା । ପ୍ରଜା ସୋସାଲିଷ୍ଟ ପାର୍ଟି ଗଠନରେ ଆଚାର୍ଯ୍ୟ କୃପାଲିନୀ ଚେୟାରମ୍ୟାନ୍ ହେବା ପରେ ଗଣତନ୍ତ୍ର ପରିଷଦ ସହ କଥାବାର୍ତ୍ତା ଆରମ୍ଭ କରିଦେଲେ । ଏହାର କାରଣ ହେଉଛି, ପ୍ରଥମେ କେ. ଏମ୍. ପି. ପି. ଯେତେବେଳେ ପାଟନାଠାରେ ସମ୍ମିଳନୀରେ ଗଠିତ ହୋଇଥିଲା, ସେଠିକି ପାଟନା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଯାଇଥିଲେ ଏବଂ ଏକ ନିଖିଳ ଭାରତ ଦଳରେ ଯୋଗଦେବାର ଇଚ୍ଛା ପ୍ରକାଶ କରିଥିଲେ । ସେତେବେଳେ ନିର୍ବାଚନ ପାଖାପାଖି ହୋଇଯିବାରୁ ସେ ଦିଗରେ ବିଶେଷ କିଛି କରାଯାଇପାରିଲା ନାହିଁ । ପାର୍ଟିର କାର୍ଯ୍ୟକାରୀ ସମିତିରେ ମଧ୍ୟ ସ୍ଥିର ହେଲା ଯେ ଗଣତନ୍ତ୍ର ପରିଷଦ ସହ କଥାବାର୍ତ୍ତା କରାଯିବ । ଆଚାର୍ଯ୍ୟ କୃପାଲିନୀ ଜଣେ ପୁରୁଣାକାଳିଆ ନେତା, ସେ ମତେ ନ ପଚାରି—ମୋ ସହିତ ସେତେବେଳକୁ ସେପରି ଘନିଷ୍ଠତା ହୋଇ ନ ଥାଏ—ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ସହ କଥାବାର୍ତ୍ତା କରିନେଲେ ଏବଂ ମତେ ଡକାଇ ପଠାଇ କହିଲେ ଗଣତନ୍ତ୍ର ପରିଷଦ ଆମ ପାର୍ଟିରେ ମିଶିଯିବ । କି ସର୍ତ୍ତରେ ଏବଂ କିଭଳି ଏପରି ହୋଇପାରିବ, ମୁଁ ପଚାରନ୍ତେ ସେ ଅତ୍ୟନ୍ତ ବିରକ୍ତ ହୋଇ କହିଲେ—ସେମାନଙ୍କ ସଂଖ୍ୟା ବେଶି; ତେଣୁ ସେମାନେ ବିଧାନସଭା ଦଳରେ ନେତୃତ୍ୱ ନେବେ ଏବଂ ପ୍ରାଦେଶିକ ପାର୍ଟିର ସଭାପତି ହେବେ—ଏହା ଅତି ସାଧାରଣ ଯୁକ୍ତି । ମୁଁ ଏଥିରେ ସମ୍ମତ ନ ହେବାରୁ ସେ ମୋ ସାଙ୍ଗରେ ଆଉ ଆଲୋଚନା କରିବା ନିମନ୍ତେ ପ୍ରସ୍ତୁତ ହେଲେ ନାହିଁ । ମତେ ବରଂ କହିଲେ—ମୁଁ ତ ତୁମ ସୋସାଲିଷ୍ଟଙ୍କୁ ଭଲ କରି ଜାଣିନାହିଁ—ଅଶୋକ ମେହେଟା ଏ ସଂପର୍କରେ କଥାବାର୍ତ୍ତା କରିବେ । ମୁଁ ଏହା ଭିତରେ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କୁ ଡକାଇ ଦିଲ୍ଲୀର ଏକ କଫି ହାଉସ୍‌ରେ ଆମେ ଦିହେଁ ପ୍ରାୟ ୩ ଘଣ୍ଟାରୁ ଅଧିକ କାଳ ଗୁରୁତ୍ୱ ସହକାରେ ବିଚାର କଲୁ । ମୁଁ ତାଙ୍କଠାରୁ ସ୍ପଷ୍ଟଭାବରେ ରାଜାଙ୍କ

ହାତପାଣି ବର୍ଜନ ଓ ଭୂମିବଣ୍ଟନ ବିଷୟରେ ମତ ଜାଣିବାକୁ ଚାହିଁଲି । ସେ ତହିଁରେ କିଛି ପରିବର୍ତ୍ତନର ପକ୍ଷପାତୀ ନ ଥିଲେ ଏବଂ ହାତପାଣି ଉଠାଇଦେବା ଏକ ନୀତିହୀନ ଓ ପ୍ରତିକ୍ରିୟାଭିଙ୍କ କାର୍ଯ୍ୟ ହେବ ବୋଲି କହିଲେ । ଆମେଦୁହେଁ ତାପରେ ଅନୁଭବ କଲୁ ଯେ ଏପରି ଅବସ୍ଥାରେ ଆମେ ଦୁହେଁ ଓଡ଼ିଶାରେ ଏକ ପାର୍ଟି ହୋଇଗଲେ ବି ଏହା ଚାଲିପାରିବ ନାହିଁ ଏବଂ ପ୍ରତିକ୍ରିୟା ବିପର୍ଯ୍ୟସ୍ତ ହେବ । ଏହା ହେଉଛି ୧୯୬୩-୬ର କଥା । ଏ ପ୍ରଶ୍ନ ଆଉ ଆଗେଇଲା ନାହିଁ ।

## ୧୯୬୭ର ପରବର୍ତ୍ତିତ ପରିସ୍ଥିତି

କିନ୍ତୁ ୧୯୬୭ ନିର୍ବାଚନର ପରିଣତି ଏବଂ ସମସ୍ତ ସୁଯୋଗ ଥାଇ ସୁଦ୍ଧା ମନ୍ତ୍ରୀମଣ୍ଡଳ ଗଠନ ସମ୍ଭବ ନ ହେବାରୁ ଗଣତନ୍ତ୍ର ପରିଷଦ ଭିତରେ ବଡ଼ ନିରାଶା ଆସିଲା । ଏଣେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଫାସ ପକାଇ ଗଣତନ୍ତ୍ର ପରିଷଦରୁ ସଭ୍ୟ ଟଣାଟଣି ଆରମ୍ଭ କରିଦେଲେ । ରାଜେନ୍ଦ୍ର ନାରାୟଣ ମଧ୍ୟ ଅନୁଭବ କଲେ ପ୍ରାଦେଶିକ ପାର୍ଟିରୂପେ ତାଙ୍କ ପକ୍ଷରେ ବେଶିଦିନ ତିଷ୍ଠିବା ଅତ୍ୟନ୍ତ କଷ୍ଟକର ହେବ । ତେଣୁ ସେ ତାଙ୍କ ଆଡ଼ୁ ମୋ ପାଖକୁ ଆସିଲେ । ମୁଁ ସେତେବେଳେ କଟକର ତେଲିଙ୍ଗାବଜାରରେ ରହୁଥିଲି । ସେଠାରେ ଆମର ଦୁଇଥର ବୈଠକ ବସି କିଭଳି କର୍ମପନ୍ଥା ଗ୍ରହଣ କଲେ ସହଯୋଗ ହୋଇପାରିବ, ଏହା ଆଲୋଚିତ ହେଲା । ସେ ବି ଯାଇ ତାଙ୍କ ବନ୍ଧୁମାନଙ୍କ ସହ ବିଚାର କଲେ ଏବଂ ମୁଁ ଆମ ପାର୍ଟିକୁ ରିପୋର୍ଟ କଲି । ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳକୁ ଅଧିକ ଦିନ ରହିବାକୁ ନଦେବାଭଳି ଏକ ବାୟୁମଣ୍ଡଳ ମଧ୍ୟ ସେତେବେଳେ ସୃଷ୍ଟି ହୋଇଥିଲା । ଏହିସବୁ କଥାବାର୍ତ୍ତା କିଛି ନ ଆଗେଇଥିବାବେଳେ ଆମ ଉପରେ ଏକ ବିରାଟ ଆଘାତ ଆସି ପଡ଼ିଲା ।

## ସାରଙ୍ଗଧର ଦାସଙ୍କ ମୃତ୍ୟୁ

ସେପ୍‌ଟେମ୍ବର ୧୭ ତାରିଖରେ, କର୍କଟ ରୋଗରେ, କଟକ ଜେନେରାଲ ହସ୍‌ପିଟାଲରେ ଶ୍ରୀ ସାରଙ୍ଗଧର ଦାସଙ୍କର ମୃତ୍ୟୁ ଘଟିଲା । ୧୯୬୭ ନିର୍ବାଚନରେ ହାରିଗଲା ପରେ ସେ ଭୀଷଣ ଅସୁସ୍ଥ ହୋଇପଡ଼ିଲେ । ଦିଲ୍ଲୀରେ ୱେଲିଂଗଟନ୍ ହାସ୍‌ପାତାଲରେ ତାଙ୍କର ଚିକିତ୍ସା ହେଲା । ମାତ୍ର ଡାକ୍ତରମାନେ ତାଙ୍କୁ କ୍ୟାନ୍‌ସର ହୋଇଛି ବୋଲି କହି ନ ଥିଲେ । ହାସପାତାଲରୁ ବିଦାୟ କରି କିଛିଦିନ ଅପେକ୍ଷା କରିବାକୁ କହିଲେ । ସେ କିପରି ନିଷ୍ଠାବାନ୍ ଓ ସଚ୍ଚରିତ୍ର ଥିଲେ, ତହିଁର ଗୋଟିଏ ଦୃଷ୍ଟାନ୍ତ ଦିଏ । ଏହି ଅସୁସ୍ଥ ଅବସ୍ଥାରେ ହଠାତ୍ ବିଜୁ ପଟ୍ଟନାୟକ ତାଙ୍କ ପାଖରେ ପହଞ୍ଚି ତାଙ୍କୁ ସମସ୍ତ ବ୍ୟୟ ଦେଇ ସୁଇଜରଲାଣ୍ଡ ପଠାଇଦେବେ କିମ୍ବା ଶ୍ରୀନଗରରେ ଯାଇ ବିଶ୍ରାମର ବ୍ୟବସ୍ଥା କରିବାର ପ୍ରସ୍ତାବ ଦେଲେ । ମୁଁ ଉପସ୍ଥିତ ଥିଲି । ସାରଙ୍ଗଧରବାବୁ ବିଜୁଙ୍କୁ ଧନ୍ୟବାଦ କଲେ ଏବଂ କହିଲେ ତୋର

ପାପଧନ—ମୁଁ ସେଥିରେ କଳଙ୍କିତ ହେବି ନାହିଁ । ବନ୍ଧୁ ନିରାଶ ହୋଇ ଫେରିଲେ । ପରେ ପୁଣି ଏକ ଟଙ୍କା ଥଳି ଧରି ତାଙ୍କ ସ୍ତ୍ରୀ ଶ୍ରୀମତୀ ଜ୍ଞାନ ପଟ୍ଟନାୟକ ଏକାକୀ ଯାଇ ସାରଙ୍ଗଧରବାବୁଙ୍କ ମୁଣ୍ଡପାଖରେ ତାହା ରଖି ଏହା ପାପଧନ ନୁହେଁ ଏବଂ ତାଙ୍କର ଧନ ଓ ତାହା ଗ୍ରହଣ କରିବାକୁ ଅନୁନୟ ବିନୟ କଲେ । ମାତ୍ର ସାରଙ୍ଗଧରବାବୁ ତାହା ପ୍ରତ୍ୟାଖ୍ୟାନ କରିଦେଲେ । ସେ ବଡ଼ କଠୋର ପ୍ରତିଜ୍ଞାବଦ୍ଧ ବ୍ୟକ୍ତି ଥିଲେ । ଦେହ ବେଶି ଅସୁସ୍ଥ ହେବାରୁ କଟକ ହାସ୍‌ପାତାଳକୁ ଆସିଲେ ପୁଣି ଚିକିତ୍ସିତ ହେବାଲାଗି । ମୁଁ ଦିଲ୍ଲୀ ଡାକ୍ତରଙ୍କଠାରୁ ବୁଝିଲି ତାଙ୍କର ସେତେବେଳକୁ କର୍କଟ ରୋଗ ହୋଇଥିଲା ଏବଂ ଅପରେସନ୍‌ରେ ଭଲ ହେବ ନାହିଁ ବୋଲି ସେମାନେ ତାଙ୍କୁ କିଛି ନ କହି ଫେରାଇ ଦେଇଥିଲେ । କିନ୍ତୁ ସାରଙ୍ଗଧରବାବୁଙ୍କର ଧାରଣା ଥିଲା ଯେ ସେ ଅପରେସନ୍‌ଟା ସଫଳ ହୋଇ ନଥିଲା—ଆଉ ଥରେ କରାଇବା ଦରକାର । କଟକ ମେଡ଼ିକାଲ୍ କଲେଜରେ ମଧ୍ୟ ଖୋଲି ଦେଖାଗଲା ଯେ ରୋଗ ଭିତରେ ଏତେ ବ୍ୟାପିଯାଇଥିଲା ଯେ ଅପରେସନ୍ ଆଉ ସମ୍ଭବ ନଥିଲା । ତେଣୁ କିଛି ହୋଇପାରିଲା ନାହିଁ । ଏସବୁ ତାଙ୍କୁ ଅଜଣା ଥିଲା । କଟକ ଅପରେସନ୍ ପରେ ଏହା ସଫଳ ହୋଇଛି ଭାବି ସେ ଖୁବ୍ ଆନନ୍ଦରେ କିଛିଦିନ ବଞ୍ଚିଲେ ଏବଂ ହାସ୍‌ପାତାଳରେ ଥାଇ ନାନା ଯୋଜନା କରୁଥିଲେ । ଏ ସଂବାଦ ପାଇ ତାଙ୍କର ପରିତ୍ୟକ୍ତା ସ୍ତ୍ରୀ ଫ୍ରେଡ଼ା ଦାସ ତାଙ୍କ ଦୁହିଁଙ୍କ ଭିତରେ ପ୍ରେମ ହୋଇଥିବାବେଳର ତାଏସ୍ମୃତିକୁ ଗୋଟିଏ ପୁଷ୍ପ ଛୁଆଇ ତାଙ୍କ ପାଖକୁ ଏକ କରୁଣ ଚିଠି ଦେଇଥିଲେ ଆସିବା ନିମନ୍ତେ—ମାତ୍ର ସାରଙ୍ଗଧରବାବୁ ଏକ ଅତି ନିଷ୍ଠୁର ଜବାବରେ ଲେଖିଲେ—ସେ ସବୁର କବର ହୋଇଯାଇଛି । ଆମ ସୋସଲିଷ୍ଟ ଆନ୍ଦୋଳନର ସେ ଥିଲେ ଏକ ଖମ୍ବ ଏବଂ ଓଡ଼ିଶା ଗଠନରେ ତାଙ୍କର ଦାନ ତାଙ୍କୁ ଅବିସ୍ମରଣୀୟ କରିରଖିଥିବ । ସେପ୍ଟେମ୍ବର ମାସରେ ତାଙ୍କର ମୃତ୍ୟୁ ଆମ ଓଡ଼ିଶା ସୋସଲିଷ୍ଟଙ୍କ ଉପରେ ଚଡ଼କ ପରିହେଲା । ନଭେମ୍ବର ୨-୫ରେ ଦିଲ୍ଲୀ ଜେନେରାଲ୍ କାଉନ୍‌ସିଲ ମିଟିଂରେ ଶୋକ ପ୍ରସ୍ତାବ କରାଗଲା । ମୁଁ ବ୍ୟକ୍ତିଗତଭାବରେ ମୋର ଅତି ପରମ ପରାମର୍ଶଦାତା ହରାଇଲି । ଆମେ ଦୁହେଁ ଦିଲ୍ଲୀରେ ଏକତ୍ର ରହିବାଯୋଗୁଁ ପରସ୍ପରପ୍ରତି ଅତି ସ୍ନେହ ଓ ଶ୍ରଦ୍ଧା ଡୋରରେ ବନ୍ଧା ହୋଇଯାଇଥିଲୁ । ମଲାପୂର୍ବରୁ ସେ ତାଙ୍କର ସମସ୍ତ ସଂପତ୍ତିକୁ ସାଧାରଣ କାର୍ଯ୍ୟରେ ବ୍ୟୟ କରିବା ନିମନ୍ତେ ଉଇଲ୍ କରିଦେଇ ଯାଇଥିଲେ । ଓଡ଼ିଶାରେ କଣ ଭାରତରେ ଏମିତି କେତୋଟି ପୁଅ ଅଛନ୍ତି ?

## ଓଡ଼ିଶାରେ ରାଜନୀତିକ ଅସ୍ଥିରତା

ଆମେ ଯାହା ଆଶଙ୍କା କରିଥିଲୁ, ତାହାହିଁ ଘଟିଲା । କଂଗ୍ରେସ ଦଳ ଯେ କେଣାବେକା ଓ ଧରାଧରି କରି ୫୬ ସଂଖ୍ୟାକୁ ୭୨ କରିପାରିଥିଲା, ସେଥିରେ ପୁଣି ଫଟାଫଟି ହେଲା । କମ୍ୟୁନିଷ୍ଟ ପାର୍ଟି ଯେ ପ୍ରକାର୍‌ନ୍ତରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନରେ ସହାୟତା କରିଥିଲା,

ଲୋକମତ ଉପରେ ତାଙ୍କ ପକ୍ଷରେ ପ୍ରକାଶ୍ୟ ସମର୍ଥନ ଦେବା କଷ୍ଟକର ହେଲା ଏବଂ ଆସେମ୍ବ୍ଲିରେ ଭୋଟ ବେଳକୁ ସେମାନେ ବଡ଼ ଅସୁବିଧାରେ ପଡ଼ିଲେ । ଏ ପରିସ୍ଥିତିରେ ବାଧ୍ୟ ହୋଇ ହରେକୃଷ୍ଣ ମହତାବ ଇସ୍ତଫା ଦାଖଲ କଲେ । ଗଭର୍ଣ୍ଣରଙ୍କର ଉଚିତ ଥିଲା, ଏହାକୁ ତୁରନ୍ତ ଗ୍ରହଣ କରିବା ଏବଂ ବିରୋଧୀ ଦଳକୁ ସରକାର ଗଢ଼ିବା ନିମନ୍ତେ ଡାକରା ଦେବା । କିନ୍ତୁ କଂଗ୍ରେସୀ ଗଭର୍ଣ୍ଣର ଭୀମସେନ ସାଚ୍ଚର ଏକ ବେଆଇନ କାର୍ଯ୍ୟ କଲେ । ସେ ତୁରନ୍ତ ସଂବିଧାନ ଅନୁସାରେ ଗତି ନ କରି ମହତାବଙ୍କ ଇସ୍ତଫା ଗ୍ରହଣ ବିଷୟରେ କେନ୍ଦ୍ର କଂଗ୍ରେସ ପାର୍ଲିମେଣ୍ଟାରୀ ବୋର୍ଡ଼ର ନିର୍ଦ୍ଦେଶ ଚାହିଁଲେ ଏବଂ କଂଗ୍ରେସ କର୍ତ୍ତୃପକ୍ଷଙ୍କ ସହ ପରାମର୍ଶ କଲା ପରେ ଇସ୍ତଫା ଗ୍ରହଣ କଲେ ନାହିଁ—ମହତାବଙ୍କୁ ପୁଣି କାର୍ଯ୍ୟ ଚଳାଇବା ନିମନ୍ତେ ନିର୍ଦ୍ଦେଶ ଦେଲେ । ଏପରି ଅସାଂବିଧାନିକ ଓ ଅଗଣତାନ୍ତ୍ରିକ ଆଚରଣର ଦୃଷ୍ଟାନ୍ତ ଭାରତର ପାର୍ଲିମେଣ୍ଟାରୀ ଶାସନ ଇତିହାସରେ ବିରଳ ।

## ସମାଧାନର ଉପାୟ

ଏ ସଂକଟ ସିନା ବେଆଇନ ଭାବରେ ଦୂରହୋଇଗଲା, କିନ୍ତୁ ଅବସ୍ଥା ଯାହା ସେଥିରେ ଯେକୌଣସି ସମୟରେ ପୁନର୍ବାର ଅସ୍ଥିରତା ଉପୁଜିବାର ପୂର୍ଣ୍ଣ ଆଶଙ୍କା ରହିଥିଲା । ତେଣୁ ଆମେ ଭାବିଲୁ ଓଡ଼ିଶା ରାଜନୀତିରେ ଏକ ସ୍ଥାୟିତ୍ୱ ଆଣିବାର ପନ୍ଥା ବାହାର କରିବାକୁ ପଡ଼ିବ । ଦୁଇଦୁଇଥର କଂଗ୍ରେସ ଭୋଟାନୁପାତରେ ଏବଂ ସଂଖ୍ୟାରେ ପରାଜିତ ହୋଇଥିଲା; ମାତ୍ର ବିରୋଧୀମାନଙ୍କ ଭିତରେ କୌଣସି ପ୍ରକାର ବୁଝାମଣା ହୋଇନପାରୁଥିବାରୁ କଂଗ୍ରେସ ଫାଇଦା ଉଠାଉଥିଲା । ଓଡ଼ିଶାର ରାଜନୀତିକ ସ୍ଥିତି ଯାହା ତହିଁରେ ଦଳମାନଙ୍କର ଯେଉଁ ଯେଉଁ ଅଞ୍ଚଳରେ ପ୍ରଭାବ ପ୍ରତିଷ୍ଠିତ ହୋଇଥିଲା, ସେଥିରୁ ଉଣା ହେବାର ସମ୍ଭାବନା କମ୍ । ତେଣୁ ଗଣତନ୍ତ୍ର ପରିଷଦ ସହିତ ଗୋଟିଏ ବୁଝାମଣାର ଆବଶ୍ୟକତା ପଡ଼ୁଥିଲା । ପ୍ରଜା ସୋସାଲିଷ୍ଟ ପାର୍ଟିର ନୀତି ନିର୍ଦ୍ଧାରଣରେ କମ୍ୟୁନିଷ୍ଟ, କଂଗ୍ରେସ ଓ ସାଂପ୍ରଦାୟିକ ଦଳଗୁଡ଼ିକ ସହ କୌଣସି ପ୍ରକାର ବୁଝାମଣା କରିବା ବାରଣ କରାଯାଇଥିଲା । ମାତ୍ର ଗଣତନ୍ତ୍ର ପରିଷଦ ଏହି ୩ ଶ୍ରେଣୀରେ ଆସୁନଥିଲା । ତାହା ଛଡ଼ା ଏହା ଏକ ପ୍ରାଦେଶିକ ଦଳ । ଏଥିରେ ରାଜାରାଜୁଡ଼ାଙ୍କ ବ୍ୟତୀତ ଅଧିକ ସଂଖ୍ୟାରେ ମଧ୍ୟବିତ୍ତ ସାଧାରଣ, ଅଦିବାସୀ, ହରିଜନ ରହିଥିଲେ । ଆମେ ତାଙ୍କୁ ପ୍ରତିକ୍ରିୟାବାଦୀ ବୋଲି ପ୍ରତ୍ୟାଖ୍ୟାନ କରିଥିଲୁ; ମାତ୍ର ସେମାନଙ୍କ ସଂଖ୍ୟା ବଢ଼ିଥିଲା ସିନା କମିବାକୁ ନାହିଁ । ଏହିସବୁକୁ ବିଚାରକୁ ନେଇ ମୋର ଆଗରୁ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ସହ ଯେଉଁ କଥାବାର୍ତ୍ତା ଚାଲିଥିଲା ତାହା ପୁନର୍ବାର ଆରମ୍ଭ କରାଗଲା ।

ଆମେ ବିଚାର କଲୁ ପ୍ରଥମେ ବହୁ ସଂଖ୍ୟକ ଆସେମ୍ବ୍ଲି ମେମ୍ବରଙ୍କୁ ଏକ କାର୍ଯ୍ୟକ୍ରମ ସମର୍ଥନ କରିବାର ପକ୍ଷପାତୀ କରିବାକୁ ପଡ଼ିବ ଏବଂ ସେଥିଯୋଗୁଁ ଦୁଇ ପାର୍ଟି ଭିତରେ ପ୍ରଥମେ ବ୍ୟବସ୍ଥାପକ କ୍ଷେତ୍ରରେ ସହଯୋଗର ପନ୍ଥା ବାହାରକରାଗଲା । ୧୪ ଦଫାର ଏକ

ସର୍ବନିମ୍ନ କାର୍ଯ୍ୟକ୍ରମ ସ୍ଥିର କରାଗଲା । ଏହି କାର୍ଯ୍ୟକ୍ରମ ଉଭୟ ଦଳର ନିର୍ବାଚନ ଇସ୍ତାହାରରୁ ନିଆଗଲା । ବିଧାନସଭା କାର୍ଯ୍ୟକାଳ ଭିତରେ ଯେତିକି କାର୍ଯ୍ୟକାରୀ କରିବା ସମ୍ଭବ ତାହାହିଁ ରଖାଗଲା । ପି. ଏସ୍. ପି. ବିଧାନସଭାର ଦଳପତି ରବୀନ୍ଦ୍ରମୋହନ ଦାସ ଏବଂ ଗଣତନ୍ତ୍ର ପରିଷଦର ଆସେମ୍ବ୍ଲି ଦଳପତି ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଦସ୍ତଖତରେ ଏହା ପ୍ରକାଶ କରାଯାଇ କୁହାଗଲା ଯେ ଓଡ଼ିଶାର ଅନିଶ୍ଚିତ ରାଜନୀତିକ ପରିସ୍ଥିତିକୁ ସମ୍ଭାଳିବା ନିମନ୍ତେ ଦୁଇ ପାର୍ଟି ମିଳିତଭାବରେ ଏହି କାର୍ଯ୍ୟକ୍ରମ ସ୍ଥିର କରିଛନ୍ତି ଏବଂ ଓଡ଼ିଶା ବିଧାନସଭାର ସଦସ୍ୟମାନେ ଏହି କାର୍ଯ୍ୟକ୍ରମକୁ ସମର୍ଥନ କଲେ ଅଚଳ ଅବସ୍ଥା ଦୂର ହୋଇପାରିବ । ଏଥିରେ କୌଣସି ଗୋଟିଏ ହେଲେ କାର୍ଯ୍ୟକ୍ରମ ପ୍ରଜା ସୋସଲିଷ୍ଟ ପାର୍ଟିର ନୀତି ବା କାର୍ଯ୍ୟକ୍ରମର ବିରୋଧୀ ନଥିଲା । ବରଂ ଗଣତନ୍ତ୍ର ପରିଷଦ ଜମିର ସିଲିଂ ୧୫ ଏକର ହେବା ନୀତିକୁ ସ୍ୱୀକାର କଲା । ଏହି କାର୍ଯ୍ୟକ୍ରମ ୪-୫-୫୮ରେ ସିଂହଦେଓ ଓ ଦାସ ମିଳିତ ଭାବରେ ଘୋଷଣା କଲେ ଏବଂ କହିଲେ—"ଓଡ଼ିଶାର ଜଟିଳ ରାଜନୀତିକ ପରିସ୍ଥିତିର ତୁରନ୍ତ ସମାଧାନ ଲୋଡ଼ା । ବର୍ତ୍ତମାନ ଥିବା ରାଜନୀତିକ ଅସ୍ଥିରତାକୁ ଶେଷ କରିବାକୁ ପଡ଼ିବ । ଲୋକଙ୍କର ଆକାଂକ୍ଷା ପୂରଣ କରିବାକୁ ହେବ । ଗଣତାନ୍ତ୍ରିକ ପ୍ରଗତି ଯେପରି ବନ୍ଦ ନ ହୁଏ ଏହାହିଁ ଓଡ଼ିଶା ରାଜ୍ୟର ଅତି ଜରୁରୀ ସମସ୍ୟା ।" ସେମାନେ ପୁଣି ଆସେମ୍ବ୍ଲି ମେମ୍ବରମାନଙ୍କୁ ନିବେଦନ କରି କହିଲେ ଯେ ଆମକୁ ବର୍ତ୍ତମାନ ଅଚଳ ଅବସ୍ଥା ଭାଙ୍ଗିବାକୁ ପଡ଼ିବ ଏବଂ ପୂର୍ବର ବିରୋଧକୁ ଭୁଲିଯିବାକୁ ପଡ଼ିବ । ଆମେ ସମସ୍ତେ କେବଳ ଓଡ଼ିଶା ରକ୍ଷା କରିବାର ଦାୟିତ୍ୱ ତୁଲାଇବାକୁ ପ୍ରସ୍ତୁତ ହେଲେ ଏହି କାର୍ଯ୍ୟକ୍ରମ ପଛରେ ମିଳିତଭାବରେ ଛିଡ଼ାହେବା ।

## କମ୍ୟୁନିଷ୍ଟ ଅଡୁଆରେ ପଡ଼ିଲେ

ଏହା ପ୍ରକାଶିତ ହେବା ପରେ କଂଗ୍ରେସ ମହଲରେ ଟିକିଏ ଆତଙ୍କ ଖେଳିଲା । କାରଣ ଝାଡ଼ଖଣ୍ଡ ଆହୁରି ଅଧିକ ଟଙ୍କା ଦାବୀ କଲା । ଏଣେ କମ୍ୟୁନିଷ୍ଟ ପାର୍ଟି ପକ୍ଷରେ ଏଭଳି କାର୍ଯ୍ୟକ୍ରମକୁ ବିରୋଧ କରିବାର କିଛି ନଥିଲା । ଏହା ଉପରେ ଯଦି ଓଡ଼ିଶା ଭୋଟରଙ୍କ ମତକୁ ସମ୍ମାନ ଦିଆଯାଇ ଏକ ବେକଂଗ୍ରେସ ସରକାର ଗଠିତ ହୋଇପାରିବ ତେବେ ସେମାନେ ସେଥିରେ ଅନ୍ତରାୟ ହେଲେ ଲୋକେ ତାଙ୍କୁ ଭୁଲ ବୁଝିବେ । ତେଣୁ ତାଙ୍କୁ ପୂର୍ବ ନୀତି ବଦଳାଇବାକୁ ପଡ଼ିଲା ।

ଏହି ଘୋଷଣା ହେବା ପରେ ତତ୍କାଳୀନ ଗଣତନ୍ତ୍ର ପରିଷଦର ସଭାପତି ରାଜବଲ୍ଲଭ ମିଶ୍ର ମୋ ସହିତ ଆସି ସାକ୍ଷାତ୍ କଲେ ଏବଂ ତାଙ୍କ ପାର୍ଟି ମିଶ୍ରଣର ସମ୍ଭାବନା ଆଲୋଚନା କଲେ —ଏପରିକି ସୂଚନା ଦେଲେ ଯଦି ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କୁ ପାର୍ଟିର କାର୍ଯ୍ୟକାରୀ ସମିତି ସଭ୍ୟ କରିନିଆଯାଏ, ତେବେ ବିଶେଷ କିଛି ଅସୁବିଧା ରହିବ ନାହିଁ । ଏ ବିଷୟରେ ମୁଁ ତାଙ୍କୁ ବିଶେଷ କିଛି ଆଶା ଦେଖାଇଲି ନାହିଁ; ବରଂ ଉଦାସୀନ ଭାବ ଦେଖାଇଲି ।

ରାଜେନ୍ଦ୍ର ନାରାୟଣ ସିଂହଦେଓ ପୁଣି ଭୋଟିଏ ମନ୍ତ୍ରିମଣ୍ଡଳର ସଂଖ୍ୟାନୁପାତ ଓ ବିଭାଗ ବଣ୍ଟନରେ କିଛି ଅସୁବିଧା ଘଟିବ ନାହିଁ ବୋଲି ନିର୍ଭର ପ୍ରତିଶ୍ରୁତି ଦେଇଗଲେ । ଏଥିରେ ସେମାନଙ୍କର ରାଜନୀତିକ ଉଦ୍ଦେଶ୍ୟ ଯାହା ଥାଉ ପଛକେ, ପାର୍ଟି ଏକ ଅଡୁଆ ପରିସ୍ଥିତିରୁ ବାହାରି ଆସିବା ନିମନ୍ତେ ଏବଂ ଓଡ଼ିଶା ଲୋକଙ୍କ ଭିତରେ ଗୋଟାଏ ନୂଆ ଆଶା ସୃଷ୍ଟିକରିବା ନିମନ୍ତେ ଏହା ଅବଶ୍ୟମ୍ଭାବୀ ବୋଲି ବିଚାର କଲି । ଓଡ଼ିଶାର ସବୁ ସାଥୀ ଏଥିରେ ଖୁବ୍ ଆଗ୍ରହୀ ନଥିଲେ, ତଥାପି ପ୍ରଦେଶର ସ୍ୱାର୍ଥଦୃଷ୍ଟିରୁ ସମ୍ମତ ଦେଲେ ଏବଂ ମୁଁ ଏ ପ୍ରସ୍ତାବ ଘେନି ସେହି ମଇ ମାସ ୨୫ରୁ ୨୮ ପର୍ଯ୍ୟନ୍ତ ପ୍ରଜା ସୋସଲିଷ୍ଟ ପାର୍ଟିର ୪ର୍ଥ ଅଧିବେଶନ, ଯାହା ପୁନାଠାରେ ହେଉଥିଲା, ସେଠାକୁ ଏ ପ୍ରସ୍ତାବ ନେଇ ଗଲି । ଜାତୀୟ କାର୍ଯ୍ୟକାରୀ ସମିତି କେତେକ ସର୍ତ୍ତ ସହ ଏହାକୁ ଗ୍ରହଣ କଲା । ମାତ୍ର ପାର୍ଟିର ଜାତୀୟ ଅଧିବେଶନରେ ଏହି ପ୍ରସ୍ତାବକୁ ଘେନି ବହୁତ ବାଦବିବାଦ ଲାଗିଲା । ଏକ ରାଜାରାଜୁଡ଼ା ଦଳ ସହ ହାତ ମିଳାଇବା ଏବଂ ସରକାର ଗଢ଼ିବା ପରିସ୍ଥିତିଟାକୁ ସୋସଲିଷ୍ଟମାନେ କଳ୍ପନାକୁ ସୁଦ୍ଧା ଆଣି ପାରିଲେ ନାହିଁ ଏବଂ ଶକ୍ତ ବିରୋଧ କଲେ । ପ୍ରସ୍ତାବ ପାସ୍ ହୋଇ ପାରିବ ବୋଲି ବିଶ୍ୱାସ ହେଉନଥିଲା । ମୁଁ ଶେଷକୁ ଉଠି ପରିସ୍ଥିତି ସେମାନଙ୍କ ଆଗରେ ରଖି କହିଲି ଯେ ଆମେ ଜାଣିଶୁଣି ଏକ ବିପଦ ବରଣ କରିନେଲେ—ଆମେ କିଛି ସୁବିଧାବାଦୀ ମିଳନ କରୁନଥିଲେ । ଏକ ପ୍ରାଦେଶିକ ଓ ରକ୍ଷଣଶୀଳ ଦଳର ଅଗ୍ରଗାମୀ ଦଳ ସହ ଏକାଠି ହେବାର କେତେ ଦୂର ଆବଶ୍ୟକତା ଥିଲା, ଏଥିରୁ ପ୍ରମାଣିତ ହେବ ଏବଂ ଏହା ସଫଳହେଲେ ଆମେ ଦେଶରୁ ଏକ ପ୍ରାଦେଶିକ ଦଳର ବିଲୟ ଦେଖିବା । ପ୍ରଥମେ ଯୋଗଦେଇ ପରେ ଯଦି ସେମାନେ ବିଶ୍ୱାସଘାତକତା କରିବେ, ତେବେ ସେମାନେ ହିଁ ନିନ୍ଦିତ ହେବେ; କିନ୍ତୁ ସୋସଲିଷ୍ଟମାନେ କାହାରି ସହିତ ସହଯୋଗ କରିବାକୁ ପ୍ରସ୍ତୁତ ନହୋଇ ଅଚଳ ଅବସ୍ଥା ବଢାଉଥିବାର ଅପବାଦ ଆମକୁ ଲାଗିବ ନାହିଁ । ମୋ ଭାଷଣ ପରେ ବିରୋଧ ମଉଳିଗଲା ଓ ମାତ୍ର କେତୋଟି ଭୋଟ ବିରୁଦ୍ଧରେ ପଡ଼ିଥିଲା । ରବୀନ୍ଦ୍ର ମୋହନ ଦାସ ମଧ୍ୟ ଏଠାରେ ଭାଷଣ ଦେଇଥିଲେ ।

## ଗଣତନ୍ତ୍ର ପରିଷଦର ବିଶ୍ୱାସଘାତକତା

ଏକ ପ୍ରଗତିକାମୀ ଦଳ ସହ ମିଶିବାର ସୁଯୋଗକୁ ଗଣତନ୍ତ୍ର ପରିଷଦ ହରାଇଲା ଏବଂ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ନିଜ ସ୍ୱରୂପ ପ୍ରକାଶ ପାଇଲା । ଆମେ ପୁନାରୁ ଫେରି ଏ ସମ୍ପର୍କରେ ଆଉ ଆଗକୁ କଥାବାର୍ତ୍ତା କରିବା ପୂର୍ବରୁ କଂଗ୍ରେସ ଦଳ ଗଣତନ୍ତ୍ର ପରିଷଦ ସହ ମିଳିତ ମନ୍ତ୍ରିମଣ୍ଡଳ ଗଠନର ପ୍ରସ୍ତାବ ଦେଲା । ନିଖିଳ ଭାରତ କଂଗ୍ରେସ କମିଟିରେ ଗଣତନ୍ତ୍ର ପରିଷଦ ରାଜାରାଜୁଡ଼ାଙ୍କ ଦଳ ନୁହେଁ—ବୋଲି ପଣ୍ଡିତ ନେହରୁ ଘୋଷଣା କରି ଓଡ଼ିଶାରେ ମିଳିତ ମନ୍ତ୍ରିମଣ୍ଡଳ ପ୍ରସ୍ତାବ ପାସ୍ କରାଇନେଲେ । ଆମକୁ ଆଉ ନ ପଚାରି ସିଂହଦେଓ ତାଙ୍କ ଭେଳିପଡ଼ିଲେ ଏବଂ ହରେକୃଷ୍ଣ ମହତାବଙ୍କ ମନ୍ତ୍ରିମଣ୍ଡଳରେ ଜଣେ ମନ୍ତ୍ରୀ ହେଲେ । ଓଡ଼ିଶାର ଗଣତାନ୍ତ୍ରିକ ରାଜନୀତିକୁ ଦୃଢ଼ କରିବାର ଚେଷ୍ଟା ବିଫଳ ହେଲା ।

ଏ ବିଷୟରେ ପ୍ରଜା ସୋସଲିଷ୍ଟ ପାର୍ଟିର ୫ମ ବାର୍ଷିକ ସମ୍ମିଳନୀରେ ସାଧାରଣ ସମ୍ପାଦକ ଏନ୍. ଜି. ଗୋରେ ଏହି ମର୍ମରେ ଏକ ରିପୋର୍ଟ ଦେଇଥିଲେ। ଏହି ସମ୍ମିଳନୀ ଗ୍ୱାଲିୟରରେ ସୋସଲିଷ୍ଟ ଆନ୍ଦୋଳନର ରୌପ୍ୟ ଜୁବୁଲି ପାଳନ ଉପଲକ୍ଷ୍ୟେ ୧୯୫୯ ମସିହା ନଭେମ୍ବର ୫ ରୁ ୯ ପର୍ଯ୍ୟନ୍ତ ବମ୍ବେରେ ବସିଥିଲା। ଗୋରେ ଲେଖିଥିଲେ—"ପ୍ରତିନିଧିଭାଇମାନଙ୍କର ସ୍ମରଣ ଥିବ ଯେ ଆମର ପୁନା ସମ୍ମିଳନୀରେ ଓଡ଼ିଶା ପାର୍ଟି ଓଡ଼ିଶାର ରାଜନୀତିରେ ସ୍ଥିରତା ଆଣିବା ନିମନ୍ତେ ଗଣତନ୍ତ୍ର ପରିଷଦ ସହ ମିଶି ଯେଉଁ ମିଳିତ କାର୍ଯ୍ୟକ୍ରମ ଓଡ଼ିଶା ଆସେମ୍ବ୍ଲିରେ କାର୍ଯ୍ୟକାରୀ କରିବାର ପ୍ରସ୍ତାବ କରିଥିଲା ତାକୁ ଆମେ ସମର୍ଥନ ଜଣାଇଥିଲେ। ଏହାର ଦୁଇଟି ଉଦ୍ଦେଶ୍ୟ ଥିଲା, (୧) ବିରୋଧ ଭିତରେ କେବେ ଚୁକ୍ତି ହୋଇପାରିବ ନାହିଁ ବୋଲି କଂଗ୍ରେସର ପ୍ରଚାରକୁ ମିଥ୍ୟା ବୋଲି ପ୍ରମାଣ କରିବା ଏବଂ (୨) ଗଣତନ୍ତ୍ର ପରିଷଦକୁ ଏକ ବିରୋଧୀ ଶକ୍ତି ରୂପେ କେତେଦୂର ବିଶ୍ୱାସ କରାଯାଇପାରିବ ତାହାର ଏକ ପରୀକ୍ଷା। ଏକଥା ମଧ୍ୟ ପରିଷ୍କାର କରିଦିଆଯାଇଥିଲା ଯେ କେବଳ ତତ୍କାଳୀନ ରାଜନୀତିକ ଆବଶ୍ୟକତା ହେତୁ ଗଣତନ୍ତ୍ର ପରିଷଦ ସହ ଏପରି ରାଜିନାମା କରାଯାଉଛି। ସରକାର ଗଠନର ସମସ୍ତ ଚେଷ୍ଟା ବିଫଳ ହେଲା ଏବଂ ଶେଷକୁ ଗଣତନ୍ତ୍ର ପରିଷଦ କଂଗ୍ରେସର ଆହ୍ୱାନକ୍ରମେ ତାଙ୍କ ସହ ମିଶି ଏକ ମିଳିତ ମନ୍ତ୍ରିମଣ୍ଡଳ ଗଠନ କଲେ। କୌଣସି କାର୍ଯ୍ୟକ୍ରମ ନଥାଇ ଏହା ଏକ ସୁବିଧାବାଦୀ ମେଣ୍ଟ। ଏହି ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହେବାପରେ ଆମ ପାର୍ଟି ଓଡ଼ିଶା ଆସେମ୍ବ୍ଲିରେ ମୁଖ୍ୟ ବିରୋଧୀ ଦଳରୂପେ ସ୍ୱୀକୃତି ପାଇଥିଲା। ପରିଷଦର ଅସଲ ମୁଖା ଖୋଲିଗଲା—ଯେଉଁ କାର୍ଯ୍ୟକ୍ରମରେ ସେ ଦସ୍ତଖତ କରିଥିଲେ ଏବେ ସରକାରୀ ଆସନରେ ବସି ତାହାର ବିରୋଧ କଲେଣି।"

ଏହାପରେ ଓଡ଼ିଶା ରାଜନୀତିରେ ସୁବିଧାବାଦ ରାଜନୀତି ବୃଦ୍ଧି ପାଇଲା। ପାର୍ଟିସବୁ ଭାଙ୍ଗି ଏଣୁ ତେଣୁ ମେମ୍ବର ନେଇଯିବାର ଉଦ୍ୟମ ହେଲା। ଯେଉଁମାନେ ଏତେ ଉତ୍ସାହ ସହକାରେ ଗଣତନ୍ତ୍ର ସହ ସରକାର ଗଠନ କରିଥିଲେ, ସେହିମାନେ ପୁଣି ନିଜର ସ୍ୱାର୍ଥରକ୍ଷା ସମ୍ଭବ ନ ହେବାରୁ ତାକୁ ଭାଙ୍ଗିଲେ। ପ୍ରଜା ସୋସଲିଷ୍ଟ ପାର୍ଟିକୁ ବିରୋଧରେ ହିଁ ରହିବାକୁ ପଡ଼ିଲା।

## ପାର୍ଲିମେଣ୍ଟରେ ଦଳର ସଂଖ୍ୟା ବୃଦ୍ଧି

ଏତେ ଦୁର୍ବିପାକ ସତ୍ତ୍ୱେ ଲୋକସଭାରେ ୧୯୫୨ରେ ପାର୍ଟି ମାତ୍ର ୧୨ଟି ସ୍ଥାନ ପାଇ-ଥିବାବେଳେ ଏଥରକ ୧୯ଟି ସ୍ଥାନ ପାଇଲା ଏବଂ ରାଜ୍ୟସଭାରେ ମଧ୍ୟ ଆଠଟି ଜାଗା ଦଖଲ କଲା। ଲୋକସଭା ଦଳର ଆଚାର୍ଯ୍ୟ କୃପାଳନୀ ନେତା, ଅଶୋକ ମେହେଟା ଉପନେତା ଏବଂ ମୁଁ ସେକ୍ରେଟାରୀ ରୂପେ ନିର୍ବାଚିତ ହୋଇଥିଲୁ। ଓଡ଼ିଶାରେ ଆମେ ବିଧାନ ସଭାରେ ୧୧ଟି ସ୍ଥାନ ପାଇଥିଲୁ। ରବୀନ୍ଦ୍ରମୋହନ ଦାସ ଆସେମ୍ବ୍ଲି ଦଳପତି ହେଲେ।

## ସମାଜବାଦୀ ଏକତା

ସମାଜବାଦୀ ଏକତା ସୋସଲିଷ୍ଟ ଆନ୍ଦୋଳନର ମୂଳମନ୍ତ୍ର ଥିଲା । କଂଗ୍ରେସ ସୋସଲିଷ୍ଟ ପାର୍ଟି ଆରମ୍ଭ ହେଲାଦିନୁ ଦେଶରେ କେମିତି ସବୁ ସୋସଲିଷ୍ଟ ଏକ ସଙ୍ଗଠନ ଓ ଏକ ପତାକା ତଳେ ରୁଣ୍ଡ ହୋଇପାରିବେ ସେଥିଲାଗି ବରାବର ଉଦ୍ୟମ ଚଳାଇଆସିଥିଲା । ୧୯୪୮ରେ କଂଗ୍ରେସ ତ୍ୟାଗ କରି ପାର୍ଟି ସ୍ୱାଧୀନ ଦଳ ହିସାବରେ କାର୍ଯ୍ୟ କଲାବେଳେ କେତେକ ପରିମାଣରେ ଅନ୍ୟ ଗଣତାନ୍ତ୍ରିକ ଓ ସୋସଲିଷ୍ଟ ପାର୍ଟିମାନେ ଏଥିରେ ଯୋଗ ଦେବା ଫଳରେ ଏହା ଏକ ବୃହତ୍ତର ପାର୍ଟି ହିସାବରେ ଛିଡ଼ାହେଲା । ମାତ୍ର ତା'ପରେ ପ୍ରଜା ସୋସଲିଷ୍ଟ ପାର୍ଟି ଭିତରେ ବିବାଦ ହୋଇ ଡକ୍ଟର ଲୋହିଆ ପୁଣି ନୂତନ ପାର୍ଟି ଗଠନ କଲେ । ୧୯୫୭ ନିର୍ବାଚନରେ ପ୍ରଜା ସୋସଲିଷ୍ଟ ପାର୍ଟି ପୂର୍ବାପେକ୍ଷା ଅଧିକ ସଂଖ୍ୟକ ସ୍ଥାନ ଲାଭକଲା; ମାତ୍ର ଡକ୍ଟର ଲୋହିଆ ଯେ କି ୭ ବର୍ଷ ଭିତରେ କ୍ଷମତା ଦଖଲ କରିବାର ଧ୍ୱନି ଦେଇ ନିଜ ଦଳକୁ ଖୁବ୍ ଲଢୁଆ ଏବଂ ପ୍ରଜା ସୋସଲିଷ୍ଟ ପାର୍ଟିକୁ ଏକ ଅକାମୀ ପାର୍ଟି ବୋଲି ବର୍ଣ୍ଣନା କରୁଥିଲେ, ତାଙ୍କ ଦଳର ବଡ଼ ଶୋଚନୀୟ ଅବସ୍ଥା ହେଲା । ଜୟପ୍ରକାଶ ନାରାୟଣ ସେତେବେଳକୁ ପାର୍ଟିର ସଭ୍ୟପଦ ଛାଡ଼ି ପୂରାପୂରି ଭୂଦାନ କାର୍ଯ୍ୟରେ ଲିପ୍ତ ହୋଇଯାଇଥିଲେ । ଲୋହିଆଙ୍କର ନିମନ୍ତ୍ରଣରେ ସେ ପୁଣି ଆସି ଦୁଇଦଳ ଭିତରେ ଏକତା ଆଣିବାର ଉଦ୍ୟମ କରିଥିଲେ । ମାତ୍ର ଲୋହିଆ ବିଗୁରିଥିଲେ ଯେହେତୁ ପ୍ରଜା ସୋସଲିଷ୍ଟ ପାର୍ଟିରେ ଜୟପ୍ରକାଶ ଆଉ ନ ଥିଲେ, ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କର ମୃତ୍ୟୁ ହୋଇ-ଯାଇଥିଲା, ସେମାନେ ତାଙ୍କୁ ବରଣ କରିନେବେ । ତେଣୁ ସେ ନିଜର ଦର ବଢ଼ାଇବାକୁ ଲାଗିଲେ ଏବଂ ତାଙ୍କ ପାଖରେ ପୂରା ଆତ୍ମସମର୍ପଣ କରିବାର ଭାବ ଦେଖାଇଲେ; ଏଥିରେ ଜୟପ୍ରକାଶ ଲୋହିଆଙ୍କର ଆନ୍ତରିକତା ନ ଥିବା ଅନୁଭବ କରି ସେ ଉଦ୍ୟମରୁ ବିରତ ହେଲେ ।

## ସବୁ ସୋସଲିଷ୍ଟଙ୍କୁ ଡାକରା

ଏସବୁ ସତ୍ତ୍ୱେ ୧୯୫୮ରେ ଯେତେବେଳେ ପାର୍ଟି ସମ୍ମିଳନୀ ହୁଏ, ସେଥିରେ ପୁଣି ଏକ ପ୍ରସ୍ତାବ କରାଯାଇ ସବୁ ଗଣତାନ୍ତ୍ରିକ ସମାଜବାଦୀଙ୍କୁ ଏକତ୍ର ହେବା ନିମନ୍ତେ ଡାକରା ଦିଆଗଲା । ଏ ସଂକ୍ରାନ୍ତୀୟ ପ୍ରସ୍ତାବ ପାର୍ଟିର ନେତା ପ୍ରଫେସର୍ ମୁକୁଟ ବିହାରୀଲାଲ୍ ଆଗତ କରିଥିଲେ ଏବଂ ମୁଁ ସମର୍ଥନ କରିଥିଲି । ମୁଁ ଏଠାରେ ବକ୍ତୃତା ପ୍ରସଙ୍ଗରେ କହିଥିଲି, "ଆମେ ପାର୍ଲିମେଣ୍ଟରେ ଏକ ସୋସଲିଷ୍ଟ ସାମ୍ମୁଖ୍ୟ ଗଠନର ଉଦ୍ୟମ କରୁଛୁ । ଫରୱାର୍ଡ଼ ବ୍ଲକ୍, ଆର୍. ଏସ୍. ପି. ଏବଂ କିଛି ସ୍ୱାଧୀନ ସଭ୍ୟଙ୍କ ସହ କଥାବାର୍ତ୍ତା ଚାଲିଛି । ଲୋହିଆ ସୋସଲିଷ୍ଟ ଓ ଆମ ଦଳ ଭିତରେ ନୀତିଗତ ପାର୍ଥକ୍ୟ ନାହିଁ---କେବଳ ଲୋହିଆ ଆମକୁ ଅକାମୀ ଦଳ ବୋଲି କହୁଛନ୍ତି । ମାତ୍ର ନିର୍ବାଚନ ଦେଖାଇଦେଇଛି କିଏ କଅଣ । କେତେ ନେତା

ଆସିବେ, ଏମିତି ଅଭିଯୋଗ ବାହୁଥିବେ, ମାତ୍ର ପି. ଏସ. ପି. ରହିଛି ଓ ରହିଥିବ । ଦେଶ ଗୃହୁଁ ଛି ଏକ ଶକ୍ତିଶାଳୀ ସୋସଲିଷ୍ଟ ସଙ୍ଗଠନ, ଯାହା ଏକ ବିକଳ୍ପ ଶକ୍ତିରୂପେ ଛିଡ଼ା ହେବ ଏବଂ କ୍ଷମତା ଦଖଲ କରିପାରିବ । ଏହା ଅତ୍ୟନ୍ତ ସୁଯୋଗ ବେଳ । କେରଳରେ କମ୍ୟୁନିଷ୍ଟ ପାର୍ଟି କ୍ଷମତାକୁ ଆସିପାରିଛି । ଲୋକେ କମ୍ୟୁନିଜମ୍‌କୁ ସମର୍ଥନ କରିଛନ୍ତି, ତାହା ନୁହେଁ । ମାତ୍ର ସେମାନେ କଂଗ୍ରେସ ବଦଳରେ ଏକ ମଜବୁତ୍ ବିକଳ୍ପ ଗୃହୁଁ ଥିଲେ--- କମ୍ୟୁନିଷ୍ଟ ପାର୍ଟି କେରଳରେ ତାହା ହୋଇପାରିଛି । ଯାହା ଏକ ରାଜ୍ୟରେ ହୋଇପାରିଲା, ତାହା ସାରା ଭାରତବର୍ଷରେ ହୋଇପାରିବ ଯଦି ସବୁ ସୋସଲିଷ୍ଟ ଶକ୍ତି ଏକଜୁଟ ହୋଇଯିବେ । ଆମେ ତେଣୁ ସବୁ ସୋସଲିଷ୍ଟଙ୍କୁ ନିମନ୍ତ୍ରଣ କରୁଛୁ । ଆମ କର୍ତ୍ତବ୍ୟ ଆମେ ଅବଶ୍ୟ କରିବୁ ।"

ଲୋହିଆ ସୋସଲିଷ୍ଟ ଦଳ ଏଭଳି ବିଚ୍ଛିନ୍ନ ମନୋଭାବ ଦେଖାଇଥିଲେ ସୁଦ୍ଧା ଆମ ପକ୍ଷରୁ ଉଦ୍ୟମ ଅବ୍ୟାହତ ରହିଥିଲା । କାରଣ ଆମେ ଅନୁଭବ କରୁଥିଲୁ ଯେ ସୋସଲିଷ୍ଟ ଆନ୍ଦୋଳନ ଯେତେ ବିଭକ୍ତ ହେଉଥିଲା, ସେତିକି ଦୁର୍ବଳ ହେଉଥିଲା । ପରବର୍ତ୍ତୀ ଘଟଣାବଳୀ ଦେଖାଇବ ଆମର ନିଷ୍ଠାପର ଉଦ୍ୟମରେ କିଭଳି ଡକ୍ଟର ଲୋହିଆ ବାରବାର ବାଧା ଦେଇଥିଲେ—ଯୋଡ଼ିବା ପରିବର୍ତ୍ତେ ଖଣ୍ଡ ଖଣ୍ଡ କରିବାରେ ସାହାଯ୍ୟ କଲେ । ଡକ୍ଟର ଲୋହିଆ ଭାରତର ସୋସଲିଷ୍ଟ ଆନ୍ଦୋଳନର ଯାହା କ୍ଷତି କରିଥିଲେ, ତାହାର ତୁଳନା ଆଉ କାହାରି ସାଙ୍ଗରେ କରାଯାଇପାରିବନାହିଁ ।

ଏଥିଭିତରେ ପାର୍ଟିର ୧୯୫୮ ପୁନା ଅଧିବେଶନରେ ପୁଣି ଗଙ୍ଗା ଶରଣ ସିଂହ ପାର୍ଟିର ଚେୟାରମ୍ୟାନ୍ ହୋଇଥିଲେ ଏବଂ ମତେ ଡେପୁଟି ଚେୟାରମ୍ୟାନ୍ ନିର୍ବାଚିତ କରାଗଲା । ୧୯୫୯ ମସିହା ଗୌହାଟୀ ଜୁବୁଲି ଅଧିବେଶନରେ ଅଶୋକ ମେହେଟା ଚେୟାରମ୍ୟାନ୍ ହେଲେ, ମତେ ପୁଣି ଡେପୁଟି ଚେୟାରମ୍ୟାନ୍ କରାଗଲା । ଏହି ପଦବୀରେ ମୁଁ ଏକାଦିକ୍ରମେ ବହୁବର୍ଷ ରହିଥିଲି । ଆଉ ଏକ ସାଧାରଣ ନିର୍ବାଚନ ଅଳ୍ପଦିନ ରହିଥିବାରୁ ଅଶୋକ ମେହେଟାଙ୍କ ସଭାପତିତ୍ୱରେ ପାର୍ଟି ସଙ୍ଗଠନକୁ ମଜବୁତ କରିବା ନିମନ୍ତେ ଖୁବ୍ ଉଦ୍ୟମ ହେଲା ଏବଂ ଦେଶବାସୀଙ୍କଠାରୁ ସମର୍ଥନ ବି ମିଳିଲା ।

## ଆଚାର୍ଯ୍ୟ କୃପାଳନୀଙ୍କ ଦଳତ୍ୟାଗ

କିନ୍ତୁ ୧୯୬୦ ମସିହାରେ ଆଚାର୍ଯ୍ୟ କୃପାଳନୀ ପାର୍ଟି ସଭ୍ୟପଦ ଛାଡ଼ି ସ୍ୱାଧୀନ ହୋଇଗଲେ । ସେ ଅବଶ୍ୟ ସେହି କାଳରୁ ସ୍ୱାଧୀନ ଭାବରେ ରହିଛନ୍ତି । ଆଚାର୍ଯ୍ୟ କୃପାଳନୀ କୌଣସି ମତଭେଦ ହେତୁ ତ୍ୟାଗପତ୍ର ଦେଲେନାହିଁ । ସେ ବିଚାରିଲେ, ଦେଶରେ ଯେଉଁଭଳି ପରିସ୍ଥିତି ଘଟିଗଲା, ସେଥିରେ ସେ ଏକ ପାର୍ଟି ଗଣ୍ଡି ଭିତରେ ନ ରହି ବାହାରେ ରହିଲେ ଦେଶ ପକ୍ଷରେ ଭଲ ହେବ । ବାହାରୁ ପାର୍ଟିକୁ ସମର୍ଥନ କରିବେ ଏବଂ ପାର୍ଟି ଯେତେବେଳେ ତାଙ୍କର ସାହାଯ୍ୟ ଓ ପରାମର୍ଶ ଲୋଡ଼ିବ ତାହା ଦେବାରେ କୁଣ୍ଠା କରିବେ ନାହିଁ । ପାର୍ଟି

ବାଧ୍ୟ ହୋଇ ତାଙ୍କର ଇସ୍ତଫାପତ୍ର ଗ୍ରହଣ କଲା । ମାତ୍ର ଏଥିରେ ପାର୍ଟି ଆହୁରି ଏକ ରଥୀଙ୍କି ହରାଇଲା । ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ମୃତ୍ୟୁ ଓ ଜୟପ୍ରକାଶ ନାରାୟଣଙ୍କ ଇସ୍ତଫା ପରେ ସେ ଥିଲେ ଆମ ପାର୍ଟିର ଜଣେ ବୟୋଜ୍ୟେଷ୍ଠ ସମ୍ମାନନୀୟ ନେତା । ଗାନ୍ଧିଜୀଙ୍କ ଅନୁଚର ହେଲେ ସୁଦ୍ଧା ସେ ଗାନ୍ଧିଜୀଙ୍କୁ ମଧ୍ୟ ସମାଲୋଚନା କରିବାକୁ କୁଣ୍ଠା ବୋଧ କରୁନଥିଲେ । ତାଙ୍କପରି ସ୍ପଷ୍ଟବାଦୀ, ତ୍ୟାଗୀ, ନିଷ୍ଠାପର ଏବଂ ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ ନେତା ଆମ ଦେଶରେ ବିରଳ । ଅନ୍ୟ ଗାନ୍ଧୀବାଦୀଙ୍କ ପରି ସେ ରକ୍ଷଣଶୀଳ ନଥିଲେ ଏବଂ ଆଧୁନିକ ରାଜନୀତି ସହ ନିଜକୁ ଖାପ ଖୁଆଇ ଚାଲୁଥିଲେ । ସେଇଥିଲାଗି ହିଁ ସେ ସୋସଲିଷ୍ଟଙ୍କ ସାଙ୍ଗରେ ଖାଲି ଯୋଗ ଦେଲେ ନାହିଁ, ଏ ଦେଶର ସୋସଲିଷ୍ଟ ଆନ୍ଦୋଳନକୁ ଗାନ୍ଧୀଧର୍ମରେ ବହୁପରିମାଣରେ ଦୀକ୍ଷିତ କରିପାରିଥିଲେ । ତାଙ୍କର ବୁଦ୍ଧିମତ୍ତା ଓ ପରିହାସ ମୂଳକ ସମାଲୋଚନା ପୃଥିବୀ ପ୍ରସିଦ୍ଧ । ତାଙ୍କ ଲିଖିତ ପୁସ୍ତକଗୁଡ଼ିକ ତଥ୍ୟ ଓ ତତ୍ତ୍ୱ ସମ୍ବଳିତ । ବହୁବର୍ଷ ପାର୍ଲିମେଣ୍ଟରେ ଏକାସାଙ୍ଗରେ ରହିଲୁ । ଶେଷବେଳକୁ ତାଙ୍କର ଟିକିଏ ଚକ୍ଷୁଦୋଷ ବଢ଼ି ଥିଲା । ତେଣୁ ପାର୍ଲିମେଣ୍ଟରେ ସ୍ୱାଧୀନ ସଭ୍ୟ ହୋଇ ବି ସେ ମତେ ପାଖକୁ ଡାକିନେଉଥିଲେ ଏବଂ ଭାଷଣ ଦେଲାବେଳେ ସେ ଅଟକିଗଲେ ମୁଁ ତାଙ୍କୁ ତାଙ୍କ ଲେଖା ନୋଟ୍ ଦେଖି ସ୍ମରଣ କରାଇ ଦେଉଥିଲି । ତାହା ଛଡ଼ା ସେ ଓ ସୁଚେତା, ମୁଁ ଦିଲ୍ଲୀରେ ଯେଉଁ କ୍ୟାନିଙ୍ଗ ଲେନ୍‌ରେ ରହୁଥିଲି, ସେହି ଗଳିରେ ଆଉ ଗୋଟିଏ କ୍ୱାର୍ଟରରେ ୨୧୩ ବର୍ଷ ରହୁଥିଲେ । ସେତେବେଳେ ଆମ ଭିତରେ ସୌହାର୍ଦ୍ଦ୍ୟ ବୃଦ୍ଧିପାଇଥିଲା । ମୋ ଝିଅ ସେତେବେଳେ ବଡ଼ ଗ୍ରେଟ ଥିଲା । ତା' ସହିତ ସେ ଖୁବ୍ ଥଟ୍ଟା ପରିହାସ କରୁଥିଲେ । ତାଙ୍କର ଜୀବନ ଧାରଣ ପ୍ରଣାଳୀ ମଧ୍ୟ ଅତି ସାଦାସିଧା ଥିଲା । ସ୍ୱାଧୀନତା ପରେ ତାଙ୍କୁ ଜବାହରଲାଲ ନେହରୁ ଗଭର୍ଣ୍ଣର ଓ ଅନ୍ୟ ନାନା ଉଚ୍ଚପଦବୀ ଯାଚିଥିଲେ । ଆମେ ସମସ୍ତେ ତାଙ୍କୁ ଦାଦା ବୋଲି ଡାକୁ । ଏହି ନାମରେ ସେ ଭାରତର ରାଜନୀତିକ ମହଲରେ ପରିଚିତ । କିନ୍ତୁ ପାର୍ଟିରେ ଥିଲାବେଳେ ଆମ ପାର୍ଟିର ଯୁବକମାନଙ୍କ ସହ ତାଙ୍କ ପକ୍ଷରେ ସ୍ୱର ମିଳାଇ ଚାଲିବା ସେ କଷ୍ଟକର ବିଚାରିଲେ । କିନ୍ତୁ ତାଙ୍କର ସଭ୍ୟପଦ ତ୍ୟାଗ ଆମ ପାର୍ଟି ଉପରେ ଆଉ ଏକ ଧକ୍କା ଦେଲା ।

## ମାଞ୍ଚେଷ୍ଟର୍ ଗାର୍ଡ଼ିଆନ୍‌ର ମତ

ଏ ସମ୍ପର୍କରେ ମନ୍ତବ୍ୟ ଦେଇ ବିଲାତର ମାଞ୍ଚେଷ୍ଟର ଗାର୍ଡ଼ିୟାନ୍ ପତ୍ରିକା ଲେଖିଲା— "ପ୍ରଜାସୋସଲିଷ୍ଟ ପାର୍ଟି ଗୋଟିକ ପରେ ଗୋଟିଏ ନେତା ହରାଉଛି । ପାର୍ଟିର ଖୁବ୍ ବେଶୀ ସଂଖ୍ୟା ନ ଥିଲେ ସୁଦ୍ଧା ନେତାମାନେ ତାଙ୍କର ଚରିତ୍ର ଅଥବା ବୌଦ୍ଧିକ ବିଶେଷତା ଯୋଗୁଁ ପାର୍ଟିର ଗୁଣାତ୍ମକ ପରିବର୍ତ୍ତନ ଘଟାଇଥିଲେ । ଏକ ଫାଟିଯାଇଥିବା ଅଣୁପରି ଏମ୍. ଆର୍. ମସାନୀ, ଡକ୍‌ଟର ରାମମନୋହର ଲୋହିଆ ଓ ଜୟପ୍ରକାଶ ନାରାୟଣ ଗୋଟି ଗୋଟି ଏଣେତେଣେ ହୋଇଯାଇଥିଲେ । ଏବେ ଆଚାର୍ଯ୍ୟ କୃପାଲନୀ ବି ଇସ୍ତଫା ଦେଲେ ।

ବ୍ରିଟେନ୍‌ଠାରୁ ଜାପାନ ପର୍ଯ୍ୟନ୍ତ ସୋସିଆଲିଷ୍ଟ ପାର୍ଟିଗୁଡ଼ିକ ପରି ପଦକ୍ଷେପ କରି ହେବ ଏହି ଚିନ୍ତାରେ ବରାବର ପଡ଼ିଛନ୍ତି । ପ୍ରଜା ସୋସିଆଲିଷ୍ଟ ପାର୍ଟି ପରସ୍ପର ବିରୋଧୀ କେତେକ ମତକୁ ଏକାଠି କରି ଚଳିବାକୁ ପଡ଼ୁଥିଲା । ଆଗ୍ରହ୍ୟ ନିଃ ପାଲିମା ଗାନ୍ଧିବାଦୀ ଏବଂ ସେ ଏବେ ଇସ୍ତଫାପତ୍ରରେ ଦେଶର ବୃହତ୍ତ ଶିଳ୍ପର ନିନ୍ଦା କରିଛନ୍ତି । ପାର୍ଟି ଅନ୍ୟ ଦଳଗୁଡ଼ିକ ସହି ସମ୍ଝୋତା କରି ନିର୍ବାଚନ ଲଢ଼ିବାଟାକୁ ସେ ପସନ୍ଦ କରିନାହାନ୍ତି । ତେଣୁ ପ୍ରଜା ସୋସିଆଲିଷ୍ଟ ପାର୍ଟି ପକ୍ଷରେ ବଡ଼ ବିପଦର ସମ୍ମୁଖୀନ ହେବାକୁ ପଡ଼ିବ ।"

## ଭୁବନେଶ୍ୱରରେ ଜେନେରାଲ୍ କାଉନ୍‌ସିଲ୍

ଏହିଭଳି ସଙ୍କଟ ପରେ ସଙ୍କଟର ସମ୍ମୁଖୀନ ହୋଇଥିବାବେଳେ ଦେଶର ରାଜନୀତିକ ପରିସ୍ଥିତି ଓ ଆସନ୍ନ ସାଧାରଣ ନିର୍ବାଚନ ସମ୍ବନ୍ଧରେ ଆଲୋଚନା କରିବା ନିମନ୍ତେ ପ୍ରଜା ସୋସିଆଲିଷ୍ଟ ପାର୍ଟିର ଜାତୀୟ କାର୍ଯ୍ୟନିର୍ବାହକ ସମିତି ଏବଂ ଜେନେରାଲ୍ କାଉନସିଲ୍‌ର ଏକ ବୈଠକ ଭୁବନେଶ୍ୱରଠାରେ ଡିସେମ୍ବର ୨୮, ୨୯, ୩୦, ୩୧ ଏବଂ ୧୯୬୧ ଜାନୁୟାରୀ ପହିଲା ତାରିଖରେ ବସିଥିଲା । ସାରା ଭାରତର ସୋସିଆଲିଷ୍ଟଙ୍କର ଏପରି ଏକ ସମାବେଶ ଓଡ଼ିଶାରେ ନୂଆ । ଆମ ପାର୍ଟି ସାଥୀମାନେ ବାଙ୍କବିହାରୀ ଦାସଙ୍କ ପରିଚାଳନାରେ ସମସ୍ତ ଆୟୋଜନ କରିଥିଲେ । ସମ୍ମିଳନୀ କାର୍ଯ୍ୟରେ ଲୋକେ ଖୁବ୍ ଆଗ୍ରହ ଦେଖାଇଥିଲେ ଏବଂ ଅଭ୍ୟର୍ଥନା ଲାଗି ଯାହା ଚାନ୍ଦା ସଂଗୃହୀତ ହୋଇଥିଲା ତାହା ଖର୍ଚ୍ଚ ଅପେକ୍ଷା ଅଧିକ । ପାର୍ଟିର ଏତେ ବିପର୍ଯ୍ୟୟ ସତ୍ତ୍ୱେ ଓଡ଼ିଶାରେ ପ୍ରଜା ସୋସିଆଲିଷ୍ଟ ପାର୍ଟି ପ୍ରତି ସମର୍ଥନ ରହିଛି, ଏଥିରୁ ବୁଝାପଡ଼ିଲା । ଆମର ଆସେମ୍ବ୍ଲି ସଭ୍ୟମାନଙ୍କ କାର୍ଯ୍ୟ ଫଳରେ ପାର୍ଟିର ମର୍ଯ୍ୟାଦା ବଢ଼ିଥିଲା ।

## ନେପାଳରେ କୋଇରାଲା ସରକାରର ପତନ

ଏହି ସମ୍ମିଳନୀରେ ଅନ୍ୟ ପ୍ରସ୍ତାବ ଭିତରେ ବି. ପି. କୋଇରାଲାଙ୍କ ନେତୃତ୍ୱରେ ନିର୍ବାଚିତ ମନ୍ତ୍ରିମଣ୍ଡଳକୁ ରାଜା ମହେନ୍ଦ୍ର ବରଖାସ୍ତ କରି ତାଙ୍କ ସାଥୀମାନଙ୍କୁ ଜେଲରେ ରଖିବାର ଘୋର ବିରୋଧ କରାଯାଇଥିଲା । ନେପାଳ ଆମର ପଡ଼ୋଶୀ ରାଜ୍ୟ ଏବଂ ସାଂସ୍କୃତିକ ଓ ଭୌଗୋଳିକ ଦୃଷ୍ଟିରୁ ଆମ ସହିତ ସମ୍ପର୍କ ଘନିଷ୍ଠ । ସେଠାରେ ରାଜତନ୍ତ୍ର ବହୁକାଳରୁ ପ୍ରତିଷ୍ଠିତ ଏବଂ ଏବେ ବି ରହିଛି । ଶ୍ରୀ ବି.ପି. କୋଇରାଲା ଭାରତରେ ଅଧ୍ୟୟନ କରୁଥିଲେ ଏବଂ ସୋସିଆଲିଷ୍ଟ ଆନ୍ଦୋଳନ ଏବଂ ପାର୍ଟି ସହ ସଂପୃକ୍ତ ଥିଲେ । ସେ ଅଧ୍ୟୟନ ଶେଷକରି ନିଜ ଦେଶକୁ ଫେରିଯାଇ ନେପାଳ କଂଗ୍ରେସ ସ୍ଥାପନା କଲେ ଏବଂ ଗଣତନ୍ତ୍ର ଓ ସମାଜବାଦ ଲାଗି ଆନ୍ଦୋଳନ ଆରମ୍ଭ କରିଦେଲେ । ଅତି ଅଳ୍ପଦିନ ଭିତରେ ଏହି ଆନ୍ଦୋଳନ ଅତି ଶକ୍ତିଶାଳୀ ହୋଇ ଉଠିଲା ଏବଂ ଶେଷକୁ ୧୯୫୯ ମସିହାରେ ନେପାଳ ରାଜା ଏକ ସାଧାରଣ ନିର୍ବାଚନ ଏବଂ ନିର୍ବାଚିତ ସରକାର ଗଠନର ଘୋଷଣା କଲେ । ରାଜା ଓ ତାଙ୍କ ପକ୍ଷର ଘୋର ବିରୋଧ ସତ୍ତ୍ୱେ ନେପାଳ ପାର୍ଲିମେଣ୍ଟର ନିର୍ବାଚିତ ୧୦୯ ସ୍ଥାନରୁ ନେପାଳୀ କଂଗ୍ରେସ ୭୪ ସ୍ଥାନ ଦଖଲ କଲେ । ଅନିଚ୍ଛାସତ୍ତ୍ୱେ ବି. ପି. କୋଇରାଲାଙ୍କୁ ସରକାର ଗଢ଼ିବାକୁ ରାଜା ଆମନ୍ତ୍ରଣ

କଲେ । ନେପାଳର ପ୍ରଥମ ଗଣତାନ୍ତ୍ରିକ ଶାସନର ପ୍ରଥମ ପ୍ରଧାନମନ୍ତ୍ରୀ ହେଲେ ବି. ପି. କୈରାଲା । ଅତି ଅଳ୍ପ ସମୟ ଭିତରେ ଏହି ସରକାର ବିପୁଳ ଲୋକପ୍ରିୟ ହେଲା ଏବଂ ବାହାର ଦେଶରେ ନେପାଳ ରାଜ୍ୟ ଏବଂ ପ୍ରଧାନମନ୍ତ୍ରୀ କୈରାଲା ଖୁବ୍ ସମ୍ମାନ ଓ ମର୍ଯ୍ୟାଦା ଲାଭ କଲେ । ଭାରତର ପ୍ରଧାନମନ୍ତ୍ରୀ ନେହରୁ ବି ତାଙ୍କୁ ସମ୍ମାନ ଦେଖାଇଲେ ଏବଂ ନେପାଳରେ ଏଭଳି ପରିବର୍ତ୍ତନକୁ ସ୍ୱାଗତ ଜଣାଇଲେ । ଏହି ମନ୍ତ୍ରିତ୍ୱ-ବେଳେ ନେପାଳର କାଠମାଣ୍ଡୁଠାରେ ନେପାଳୀ କଂଗ୍ରେସର ଏକ ବିରାଟ ଖୋଲା ଅଧିବେଶନ ହୋଇଥିଲା । ସେଠିକି ପୃଥିବୀର ବହୁଦେଶର ସୋସଲିଷ୍ଟ ପାର୍ଟିମାନଙ୍କର ପ୍ରତିନିଧି ଆସି ଯୋଗଦେଇଥିଲେ । ନେପାଳୀ କଂଗ୍ରେସ ସୋସଲିଷ୍ଟ ଇଣ୍ଟରନେସନାଲ୍ ସହ ସମ୍ପୃକ୍ତ ଥିବାରୁ ଏମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା । ପାହାଡ଼ କନ୍ଦରର ଏହି କ୍ଷୁଦ୍ର ରାଜ୍ୟଟି ଆନ୍ତର୍ଜାତିକ କ୍ଷେତ୍ରରେ ପଦାର୍ପଣ କଲା । ଏହି ସମ୍ମିଳନୀରେ ଭାରତର ପ୍ରଜା ସୋସଲିଷ୍ଟ ପାର୍ଟିର ପ୍ରତିନିଧି ଦଳର ନେତୃତ୍ୱ ନେଇ ମୁଁ ଯୋଗଦେଇଥିଲି । ମୋ ସାଙ୍ଗରେ ଆଉ ଦୁଇଜଣ ସଦସ୍ୟ ଥିଲେ—ଦେବେନ୍ଦ୍ର ପ୍ରସାଦ ସିଂହ ଓ ପ୍ରଫେସର୍ ମୁକୁଟ ବିହାରୀ ଲାଲ୍ । ମୋ ଝିଅ ମୀନା ମଧ୍ୟ ଆମ ସାଙ୍ଗରେ ଯାଇଥିଲା ଏବଂ କୈରାଲାଙ୍କ ପରିବାରର ଝିଅମାନଙ୍କସହ ମିଶି ଶୋଭାଯାତ୍ରାରେ ଧ୍ୱଜ ଇତ୍ୟାଦି ଦେଉଥିଲା । ମୁଁ ହିନ୍ଦୀରେ ଭାଷଣଦେଲି ଏବଂ ଆମ ଦେଶ ଓ ନେପାଳର ସମସ୍ୟା ପ୍ରାୟ ଏକାଭଳି ହୋଇଥିବାରୁ ଏବଂ ହିନ୍ଦୀ ବୁଝିବା ସହଜ ଥିବାରୁ ଖୁବ୍ କରତାଳି ଓ ସମର୍ଥନ ମିଳିଲା । କିନ୍ତୁ ଗୋଟିଏ ବିଷୟ ଲୋକଙ୍କ ସହ କଥାବାର୍ତ୍ତାରେ ସ୍ପଷ୍ଟ ବୁଝାଗଲା ଯେ ଭାରତ ପ୍ରତି ଯେପରି ସ୍ନେହଭାବ ନ ରହି ଏକ ଭୟଜନିତ ଭକ୍ତିଭାବ ରହିଥିଲା । ଏହି ଭାବ କ୍ରମେ ଭାରତ-ବିରୋଧୀ ହୋଇପଡ଼ିଥିଲା । ଆମେ ବି. ପି. କୈରାଲାଙ୍କୁ ବି. ପି. ବୋଲି ଡାକୁ । ବି. ପି. ଙ୍କ ବିରୁଦ୍ଧରେ ଗୋଟାଏ ଅଭିଯୋଗ ହେଲା—ସତେ କି ସେ ଭାରତର ଏଜେଣ୍ଟ । ରାଜପକ୍ଷ ରାଜନୀତିକ ଉଦ୍ଦେଶ୍ୟରେ ଏପରି ଏକ ପ୍ରଚାର କରିଥିଲେ । ବି. ପି. ଓ ତାଙ୍କ ସ୍ତ୍ରୀ ସୁଶୀଲାଙ୍କ ସହ ଆଗରୁ ଦେଖାଶୁଣା ହୋଇଥିଲେ ସୁଦ୍ଧା ପ୍ରଥମ ଘନିଷ୍ଠତା ହେଲା ରେଙ୍ଗୁନଠାରେ ୧୯୫୩ ମସିହାରେ ଏସିଆନ୍ ସୋସଲିଷ୍ଟ ସମ୍ମିଳନୀରେ । ସେହିଦିନଠାରୁ ମୋର ବ୍ୟକ୍ତିଗତ ସମ୍ପର୍କ ତାଙ୍କ ସହ ରହିଛି ଏବଂ ତାଙ୍କୁ ରାଜସରକାର ଦୁଃଖ ନିର୍ଯ୍ୟାତନା ଦେଲାବେଳେ ଏବଂ ତାଙ୍କ ରାଜନୀତିକ କାର୍ଯ୍ୟରେ ଆମ ପକ୍ଷରେ ଯାହା ସମ୍ଭବ ବରାବର ସାହାଯ୍ୟ କରିଆସିଛୁ । ବି. ପି. ଭଗ୍ନସ୍ୱାସ୍ଥ୍ୟ ଓ ନାନା ନିର୍ଯ୍ୟାତନା ସହ୍ୟକରି, ବହୁକାଳ ଜେଲରେ ଏବଂ ନିର୍ବାସିତ ଅବସ୍ଥାରେ ରହି ସୁଦ୍ଧା ନିଜର ଧୈର୍ଯ୍ୟ ହରାଇନାହାନ୍ତି । ଏବେ ବି ତାଙ୍କର ସଂଗ୍ରାମ ଜାରିରହିଛି । ପୃଥିବୀର ଗଣତାନ୍ତ୍ରିକ ସମାଜବାଦୀ ଆନ୍ଦୋଳନରେ ସେ ଏକ ସୁଦୃଢ଼ ସ୍ତମ୍ଭ ଏବଂ ସେ ପତାକା ଟେକି ରଖିଛନ୍ତି । ଜନତା ସରକାରବେଳେ ଥରେ ମତେ ନେପାଳକୁ ରାଜଦୂତ କରି ପଠାଇବା ନିମନ୍ତେ ପ୍ରସ୍ତାବ କରାଯାଇଥିଲା । ମାତ୍ର ମୁଁ ବି. ପି. କଇରାଲାଙ୍କର ବନ୍ଧୁ ବୋଲି ନେପାଳ ରାଜଦରବାର ମତେ ସମ୍ମତି ଜଣାଇବାକୁ ଅସ୍ୱୀକାର କଲା ।

## ଓଡ଼ିଶାରେ ପୁଣି ରାଜନୀତିକ ଅସ୍ଥିରତା

କଥାରେ କହନ୍ତି 'ପାପଧନ ମିଳେ ବହୁତ, ଗଲାବେଳେ ଯାଏ ମୂଳ ସହିତ' । କଂଗ୍ରେସ ଦଳ ଗଣତନ୍ତ୍ର ଦଳ ସହ ଯେଉଁ ପାପ ଓ ସୁବିଧାବାଦୀ ମିଳନ କଲା, ସେ ସରକାର ଅଳ୍ପଦିନ ପରେ ସଙ୍କଟର ସମ୍ମୁଖୀନ ହେଲା । ଆମେ ୧୯୫୭ ନିର୍ବାଚନରେ ଲୋକମତକୁ ଖାତିର ଦେଖାଇ କଂଗ୍ରେସର ସରକାର ଗଠନର ବିରୋଧ କରିଥିଲୁ ଏବଂ ଅଣକଂଗ୍ରେସ ସରକାର ଗଠିତ ହେଲେ ତହିଁରେ ସାହାଯ୍ୟ କରିବୁ ବୋଲି ଘୋଷଣା କରିଥିଲୁ । ସେ ଦିଗରେ ଆମ ପାର୍ଟି ତରଫରୁ ପ୍ରାଥମିକ ଅବସ୍ଥାରେ କିଛି ଉଦ୍ୟମ ହୋଇଥିଲେ ମଧ୍ୟ ସେତେବେଳେ ଆମକୁ କଂଗ୍ରେସ ନେତାମାନେ ସମାଲୋଚନା କରି କହିଥିଲେ —"ଓଡ଼ିଶାର ସୋସଲିଷ୍ଟମାନେ ରାଜାରାଜୁଡ଼ାଙ୍କ ଜୋତା ଚାଟୁଛନ୍ତି ।" ବିରୋଧୀଙ୍କ ପ୍ରତି ତଥାକଥିତ ଗାନ୍ଧିବାଦୀ ନେତାଙ୍କର ଏହା ହେଉଛି ଅଶିଷ୍ଟଭାଷା ପ୍ରୟୋଗର ନମୁନା; କିନ୍ତୁ ୧୯୫୮ରେ ଯେତେବେଳେ ପ୍ରଜା ସୋସଲିଷ୍ଟ ପାର୍ଟି ଓ ଗଣତନ୍ତ୍ର ପରିଷଦ ମିଳିତ କାର୍ଯ୍ୟକ୍ରମ ଭିତ୍ତିରେ ଓଡ଼ିଶାରେ ବେକଂଗ୍ରେସ ସରକାର ଗଠନ ନିମନ୍ତେ ସବୁ ବ୍ୟବସ୍ଥାପକମାନଙ୍କୁ ନିବେଦନ କଲେ, ସେତେବେଳେ କଂଗ୍ରେସ ମହଲରେ ଭାଲେଣି ପଡ଼ିଗଲା । ନାନା କଳଙ୍କିତ ଉପାୟ ପ୍ରୟୋଗ କରି ମଧ୍ୟ ସେତେବେଳେ କଂଗ୍ରେସ ସରକାରକୁ ରଖିବା କଂଗ୍ରେସ ଦଳ ପକ୍ଷରେ ମୁସ୍କିଲ ହୋଇପଡ଼ିଲା । ତେଣୁ ଗଣତନ୍ତ୍ର ପରିଷଦକୁ ହାତ କରିବା ନିମନ୍ତେ ଚେଷ୍ଟା କରାଗଲା । ନିଖିଳ ଭାରତ କଂଗ୍ରେସ କମିଟିର ଦିଲ୍ଲୀରେ ଏକ ବୈଠକରେ କଂଗ୍ରେସ ଓ ଗଣତନ୍ତ୍ର ପରିଷଦ ମିଶି ଓଡ଼ିଶାରେ ମନ୍ତ୍ରିମଣ୍ଡଳ ଗଠନ ପ୍ରସ୍ତାବ ମଞ୍ଜୁର କରିଦିଆଗଲା । କଂଗ୍ରେସ ଏଥିପୂର୍ବରୁ କେଉଁଠି କୌଣସି ଦଳ ସହ ମିଶି ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିନଥିଲା । ଆଉ କଂଗ୍ରେସ ଦୃଷ୍ଟିରେ ଗଣତନ୍ତ୍ର ପରିଷଦ ରାଜାରାଜୁଡ଼ା ଦଳ ହୋଇ ରହିଲା ନାହିଁ । ପଣ୍ଡିତ ନେହରୁ ନିଜେ ଉଠି ଗଣତନ୍ତ୍ର ପରିଷଦର ରୂପ ବଦଳିଛି ବୋଲି କହିଲେ । ଆମେ 'ପଦଲେହନ' କରୁଥିଲୁ ବୋଲି ହରେକୃଷ୍ଣ ମହତାବ ଆକ୍ଷେପ କରିଥିଲେ, ଏବେ କଂଗ୍ରେସ ସେହି 'ପଦଲେହନ' କଲା । ଏଇଠି ମୁଁ ସ୍ମରଣ କରାଇଦେବାକୁ ଚାହେଁ ଯେ, ୧୯୫୨ ମସିହାରେ ପ୍ରଥମ ସାଧାରଣ ନିର୍ବାଚନରେ ନେହରୁ ସଭା କରିବା ନିମନ୍ତେ ବଲାଙ୍ଗୀର ଯାଇଥିଲେ । ସେହି ସଭାରେ ନେହରୁଙ୍କୁ ଆହ୍ୱାନଦେଇ ଗଣତନ୍ତ୍ର ପରିଷଦ ତରଫରୁ ଲିଫଲେଟ୍ ବଣ୍ଟାଯାଇଥିଲା । ନେହରୁ ସାଧାରଣତଃ ସଭାରେ ଟିକିଏ ଗୋଳମାଳ ଦେଖିଲେ ଅସ୍ଥିର ହୋଇପଡ଼ୁଥିଲେ । ଦୁଇଟି ଘଟଣାର ମୁଁ ପ୍ରତ୍ୟକ୍ଷଦର୍ଶୀ । ୧୯୩୬ରେ ନିର୍ବାଚନ ପ୍ରଚାରବେଳେ କଟକର ଏକ ସାଧାରଣ ସଭାରେ ସେ ଭାଷଣ ଦେଉଥିଲେ । ସେତେବେଳକୁ ସଭାମାନଙ୍କରେ ଡାକବାଜି ଯନ୍ତ୍ର ନଥିଲା । ଲୋକଭିଡ଼ ଖୁବ୍ । ନେହରୁ ଭାଷଣ ଦେଉଥିବାବେଳେ ଜଣେ ଉଠି କିଛି କହିବାକୁ ପାଟିକଲା । ନେହରୁ ତାକୁ ନୀରବ ହେବାଲାଗି କହିଲେ । ସେ ନଶୁଣିବାରୁ ସଭାମଞ୍ଚରୁ ତା ପାଖକୁ କୁଦିପଡ଼ିଥିଲେ । ସେମିତି

ଥରେ ଆମେସବୁ ରାମଗଡ଼ କଂଗ୍ରେସ ଅଧିବେଶନରେ ବିଷୟ ନିର୍ବାଚନ ସମିତି ବୈଠକରେ ବସିଥିଲୁ । କେଉଁ ବିଷୟରେ ଖୁବ୍ ଗରମ ଆଲୋଚନା ଚାଲିଥିଲା, ମୋର ସ୍ମରଣ ନାହିଁ । ମୌଲାନା ଆଜାଦ୍ ସଭାପତି ଥିଲେ । ପ୍ରେସ୍ ଗ୍ୟାଲେରୀରୁ ଜଣେ ଉଠି ମୌଲାନାଙ୍କର କୌଣସି ଏକ ଉକ୍ତିର ପ୍ରତିବାଦ କଲେ । ନେହେରୁ ମୌଲାନାଙ୍କୁ ଏପରି କହିପାରିବ ନାହିଁ ବୋଲି ଖାଲି ଯେ ଭର୍ତ୍ସନା କଲେ ତାହା ନୁହେଁ, ମଞ୍ଚ ଉପରୁ ପ୍ରେସ ଗ୍ୟାଲେରୀକୁ ଡେଇଁ ପଡ଼ିଲେ ଏବଂ ଉକ୍ତ ସାମ୍ବାଦିକଠାରୁ ତାଙ୍କର ଅନୁମତିପତ୍ର ଛଡ଼ାଇନେଲେ । ଆଇନ ଅନୁସାରେ ତାଙ୍କର ଏହା କରିବାର କୌଣସି ଅଧିକାର ନଥିଲା । ଏହା ଅବଶ୍ୟ ସ୍ୱାଧୀନତା ପାଇବାର ବହୁବର୍ଷ ଆଗର କଥା—ବୋଧହୁଏ ୧୯୪୦ ମସିହା ହେବ ।

ମାତ୍ର ୧୯୫୨ରେ ବଲାଙ୍ଗୀରର ଏହି ସାଧାରଣ ସଭାରେ ପାଟନା ମହାରାଜାଙ୍କ ତରଫରୁ ଏପରି ବିରୋଧରେ ନେହରୁ ଅତ୍ୟନ୍ତ ଉତ୍ୟକ୍ତ ହୋଇ କହିଲେ—ଯେଉଁ ରାଜାରାଜୁଡ଼ା ଇଂରେଜ ସରକାରର ଜୋହୁକୁମ୍ ହୋଇ ରହିଥିଲେ ଏବଂ ଜୋତା ଚାଟୁଥିଲେ, ସେମାନଙ୍କର ଆମକୁ କହିବାର କିଛି ଅଧିକାର ନାହିଁ । ଆମ ସୋସଲିଷ୍ଟ ପାର୍ଟି ତରଫରୁ ମଧ୍ୟ ସେଠି ପ୍ରାର୍ଥୀ ଦିଆଯାଇଥିଲା ଏବଂ ସେହି ସଭାରେ ସେ ପୁଣି କହିଲେ—ହଁ, ସୋସଲିଷ୍ଟମାନେ ଆମ ସହିତ ସ୍ୱାଧୀନତା ଲଢ଼ାଇରେ ଥିଲେ; ସେ କହିବେ ଦୁସରା କଥା । ଏବେ ସେହି ନେହରୁ ରାଜାରାଜୁଡ଼ାଙ୍କୁ ବରଣ କରି ଓଡ଼ିଶାରେ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବାର ଅନୁମତି ଦେଲେ । ହରେକୃଷ୍ଣ ମହତାବ ହେଲେ ମୁଖ୍ୟମନ୍ତ୍ରୀ ଏବଂ ପାଟନା ମହାରାଜା ହେଲେ ଜଣେ ମନ୍ତ୍ରୀ । କଂଗ୍ରେସ କିପରି ସୁବିଧାବାଦୀ ପନ୍ଥା ଗ୍ରହଣ କରିପାରେ, ଏହା ତାହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ଆଉ ଗୋଟିଏ ମଜାର ଘଟଣା ଏହି ୧୯୫୨ ନିର୍ବାଚନରେ ଘଟିଥିଲା । ବଲାଙ୍ଗୀର ଅଞ୍ଚଳ ଲୋକେ ଏପରି ରାଜଭକ୍ତ ଥିଲେ ଯେ ନେହରୁଙ୍କୁ ମହାରାଣୀ ଜବାବ ଦେବେ ବୋଲି ଘୋଷଣା କରିଦବାରୁ ନେହରୁଙ୍କ ସଭାର ପ୍ରାୟ ୨୦ଗୁଣ ଲୋକ ସଭାକୁ ଆସିଥିଲେ । ମହାରାଣୀ କେବେ ପଦାକୁ ଆସୁନଥିଲେ । ଲୋକେ ତାଙ୍କ ଦର୍ଶନ ପାଇବେ ଏବଂ ଭାଷଣ ଶୁଣିବେ ଏହା ଏକ ନୂଆ କଥା ବୋଲି ସଭାସ୍ଥଳକୁ ଧାଇଁଲେ । ନେହରୁଙ୍କୁ ଜବାବ ଦେବା ସାଙ୍ଗେ ସାଙ୍ଗେ କୁହାଗଲା ଯେ ସୋସଲିଷ୍ଟମାନେ ବି କଂଗ୍ରେସର ସହୋଦର । କଂଗ୍ରେସର ଧଳାଟୋପି ଓ ସୋସଲିଷ୍ଟଙ୍କର ଲାଲଟୋପି—ଫରକ୍ କିଛି ନାହିଁ । ଏହା ଫଳରେ ସୋସଲିଷ୍ଟ ଓ କଂଗ୍ରେସ ପ୍ରାର୍ଥୀ ଅମାନତ ହରାଇଲେ ।

ତେଣୁ ଏହି ଯେଉଁ ସୁବିଧାବାଦୀ କଂଗ୍ରେସ-ଗଣତନ୍ତ୍ର ମିଳିତ ମନ୍ତ୍ରିମଣ୍ଡଳ ଗଢ଼ାହେଲା, ଏହା ବେଶିଦିନ ତିଷ୍ଠି ରହିପାରିଲା ନାହିଁ । ଦୁଇଦଳ ସରକାର ଜରିଆରେ ନିଜର ସ୍ୱାର୍ଥରକ୍ଷା ନିମନ୍ତେ ଉଦ୍ୟମ କଲେ; ତେଣୁ ନାନା କ୍ଷେତ୍ରରେ ସଂଘର୍ଷ ଜାତହେଲା । ବିଜୁ ପଟ୍ଟନାୟକ ଆଗରୁ ଶିଳ୍ପ ଓ ଅନ୍ୟାନ୍ୟ ବ୍ୟବସାୟ ଆରମ୍ଭ କରିଥିଲେ ଏବଂ ସେ ସର୍ବଦା ସରକାରୀ ପକ୍ଷର ସୁଯୋଗନେଇ ସତ୍ ଅସତ୍ ଉପାୟରେ ନିଜର ଶିଳ୍ପ ଉଦ୍ୟୋଗ

ବୃଦ୍ଧି ରେ ତତ୍ପର ଥିଲେ । ଗଣତନ୍ତ୍ର ପରିଷଦର କେତେକ ବ୍ୟକ୍ତି ମଧ୍ୟ ସେହିପ୍ରକାର ଉଦ୍ୟମ କଲେ । ଏକ ଖିଣି ଇଲାକା ସେନେ ପରସ୍ପର ଭିତରେ ପ୍ରତିଯୋଗିତା ଚାଲିଲା । ମହାରାଜା ମନ୍ତ୍ରିମଣ୍ଡଳରେ ଥିବାରୁ ବିଜୁ ପଟ୍ଟନାୟକଙ୍କ ସ୍ୱାର୍ଥରେ ବାଧା ପଡ଼ୁଥିଲା ଏବଂ ସେ ଆଗେ ଯେପରି ପ୍ରଭୁତ୍ୱ ବିସ୍ତାର କରି ଯାବତୀୟ କାର୍ଯ୍ୟ କରି ନେଇ ପାରୁଥିଲେ, ତାହା ସମ୍ଭବ ହେଲା ନାହିଁ । ତେଣୁ ଯେଉଁ ବିଜୁ ପଟ୍ଟନାୟକ ନିଖିଳ ଭାରତ କଂଗ୍ରେସ କମିଟିରେ ଗଣତନ୍ତ୍ର ପରିଷଦର ଓକିଲ ହୋଇ ମିଳିତ ମନ୍ତ୍ରିମଣ୍ଡଳ ସପକ୍ଷରେ ଯୁକ୍ତି ବାଢ଼ିଥିଲେ, ସେ ଏହାର ବିରୋଧୀ ହୋଇଗଲେ । ଏଣେ ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ପଦ ହରାଇବାକୁ ପ୍ରସ୍ତୁତ ନଥିବାରୁ ତାଙ୍କ କଥାକୁ ଗୁରୁତ୍ୱ ଦେଲେ ନାହିଁ । ତେଣୁ ବିଜୁ ଓଡ଼ିଶା କଂଗ୍ରେସ କମିଟିରେ ମନ୍ତ୍ରିମଣ୍ଡଳ ଭାଙ୍ଗିବା ପ୍ରସ୍ତାବ ଗ୍ରହଣ କରିବା ନିମନ୍ତେ ଉଦ୍ୟମ କଲେ । କଂଗ୍ରେସ ଭିତରେ ଅନ୍ତର୍ଦ୍ୱନ୍ଦ୍ୱ ଆରମ୍ଭ ହୋଇଗଲା । ମହତାବଙ୍କ ପ୍ରାର୍ଥୀ ବନମାଳୀ ପଟ୍ଟନାୟକଙ୍କୁ ହରାଇ ବିଜୁ ପଟ୍ଟନାୟକ ଓଡ଼ିଶା କଂଗ୍ରେସର ସଭାପତି ହେଲେ ଏବଂ ଏହି ମନ୍ତ୍ରିମଣ୍ଡଳ ବେଶିଦିନ ତିଷ୍ଠିଲେ କଂଗ୍ରେସ ଦୁର୍ବଳ ହୋଇଯିବ ବୋଲି ଉପର ମହଲରେ ବୁଝାଇଦେଲେ । ଓଡ଼ିଶାର ପ୍ରଚଳିତ ରାଜନୀତିକ ସ୍ଥିତିରେ କେବଳ ଏହିଭଳି ମିଳିତ ମନ୍ତ୍ରିମଣ୍ଡଳ ଏବଂ କଂଗ୍ରେସ ଓ ଗଣତନ୍ତ୍ର ପରିଷଦର ମିଳନ ବହୁବର୍ଷ ରହିବ ଏବଂ ଏହାହିଁ ଏକମାତ୍ର ସ୍ଥାୟୀ ବିକଳ୍ପ ବୋଲି ହରେକୃଷ୍ଣ ମହତାବଙ୍କର ଯୁକ୍ତି ଆଉ କାଟିଲା ନାହିଁ । ଓଡ଼ିଶାରେ ଏ ସୁବିଧାବାଦୀ ମିଳନ ଭାଙ୍ଗିଲା ଏବଂ ରାଷ୍ଟ୍ରପତି ଶାସନ ଜାରିହେଲା ।

## ଓଡ଼ିଶାରେ ପ୍ରଥମ ରାଷ୍ଟ୍ରପତି ଶାସନ

ପରିସ୍ଥିତି ଏପରି ଅସମ୍ଭାଳ ହେଲା ଯେ ଅନିଚ୍ଛାସତ୍ତ୍ୱେ ଡକ୍ଟର ମହତାବଙ୍କୁ ଇସ୍ତଫା ଦେବାକୁ ପଡ଼ିଲା । ଗଣତନ୍ତ୍ର ପରିଷଦ ଅଳ୍ପଦିନ ଲାଗି ଆପଣାର ମହତ ହରାଇ ଏବେ ଭକୁଆ ହେଲା । ଓଡ଼ିଶା ରାଜନୀତିରେ ଏଣିକି ହଟଚମଟ ବିଦ୍ୟା ଚାଲିଲା । ଓଡ଼ିଶାରେ ରାଷ୍ଟ୍ରପତି ଶାସନ କିପରି ଓ କାହିଁକି ହେଲା ଏବଂ ଓଡ଼ିଶା ରାଜନୀତିରେ କେମିତି ସୁବିଧାବାଦ ଓ ପରସ୍ପର ବିବାଦ ଅଧିକ ପରିମାଣରେ ପ୍ରବେଶ କରିଥିଲା, ସେ ସମ୍ପର୍କରେ ରାଷ୍ଟ୍ରପତି ଶାସନ ମଞ୍ଜୁରୀ ପାର୍ଲିମେଣ୍ଟରେ ନେଲାବେଳେ ଏବଂ ଓଡ଼ିଶା ବଜେଟ ପାସ୍ କରାଯାଉଥିବାବେଳେ ମୁଁ ୧୯୬୧ ମସିହା ମାର୍ଚ୍ଚ ମାସ ୮ ଓ ୨୮ ତାରିଖରେ ଯେଉଁ ଭାଷଣ ଦେଇଥିଲି, ତାହାର କିଛି ସଂକ୍ଷିପ୍ତ ଅଂଶ ତଳେ ଦେଉଛି । ତତ୍କାଳୀନ ପରିସ୍ଥିତି ସମ୍ବନ୍ଧରେ ତହିଁରୁ ସମ୍ୟକ୍ ଧାରଣା କରାଯାଇପାରିବ ।

ରାଷ୍ଟ୍ରପତି ଶାସନର ମୁଁ ଘୋର ନିନ୍ଦାକରି କହିଲି—ଓଡ଼ିଶାରେ ଯେଉଁ ସୁବିଧାବାଦୀ ମିଳନ ହୋଇଥିଲା, ସେ ସରକାର ତ ସୁରୁଖୁରରେ ଚାଲୁଥିଲା । ଏହା ଅବଶ୍ୟ ସାମନ୍ତବାଦୀ ଶକ୍ତିଗୁଡ଼ିକୁ ମଜବୁତ କରିଥିଲା । ଏଥିରେ ୫୯ ଜଣ ଆଦିବାସୀ ଓ ହରିଜନ ସଭ୍ୟଙ୍କ ଭିତରୁ ଜଣକୁ ହେଲେ ମନ୍ତ୍ରିମଣ୍ଡଳରେ ସ୍ଥାନ ଦିଆଯାଇ ନ ଥିଲା । ମାତ୍ର ସରକାର ଥରେହେଲେ

ଆସେମ୍ବ୍ଲିରେ ପରାଜିତ ହୋଇ ନ ଥିଲେ । ତେଣୁ ସମ୍ବିଧାନରେ ଯେଉଁ ଅଚଳ ଅବସ୍ଥାର ଉଲ୍ଲେଖ ରହିଛି ସେଭଳି ପରିସ୍ଥିତି ଏଠାରେ ଘଟି ନ ଥିଲା । କଂଗ୍ରେସ ପାର୍ଟି ଭିତରେ କଳହ ଯୋଗୁଁ ଓଡ଼ିଶାର ୨ କୋଟି ଅଧିବାସୀଙ୍କୁ ବେଆଇନଭାବରେ ପ୍ରତିନିଧିମୂଳକ ଶାସନରୁ ବଞ୍ଚିତ କରାଯାଉଛି । ଏହା କେନ୍ଦ୍ରରେ କଂଗ୍ରେସର ସ୍ୱାର୍ଥରକ୍ଷା ଲାଗି ଏକ ଷଡଯନ୍ତ୍ର । ହରେକୃଷ୍ଣ ମହତାବ ଏବେ ଏକ ପ୍ରବନ୍ଧରେ ମୂଳରୁ କଂଗ୍ରେସ ନୀତିର ବିରୁଦ୍ଧାଚରଣ କରି ବିଭିନ୍ନ ପ୍ରଲୋଭନ ଦେଖାଇ ମନ୍ତ୍ରିମଣ୍ଡଳ ସବୁ ଗଢାହୋଇଥିବାର ଉଲ୍ଲେଖ କରି ନିଜର ସଫେଇ ଦେଇଥିଲେ । ମାତ୍ର ତାଙ୍କର ଏହା 'ବୃଦ୍ଧା ବେଶ୍ୟା ତପସ୍ୱିନୀ' ପରି ବାଣୀ । ସେ ଏସବୁ ମନ୍ଦ ବୁଦ୍ଧି ପୂରାଇବା ଲାଗି ଦାୟୀ । ଗୋଟିଏ ଦଳରୁ ନିର୍ବାଚିତ ସଭ୍ୟଙ୍କୁ ଅନ୍ୟ ଦଳକୁ ନେବାର ଆମେ ଯେତେବେଳେ ବିରୋଧ କଲୁ, ସେତେବେଳେ ମହତାବ କହିଥିଲେ, "ନିର୍ବାଚିତ ସଭ୍ୟ କିଛି ତାଙ୍କ ନିର୍ବାଚନ ମଣ୍ଡଳୀର ଓକିଲ ନୁହନ୍ତି । ସେ ସାରା ଓଡ଼ିଶା ଲୋକଙ୍କର ପ୍ରତିନିଧି । ରାଜ୍ୟର ସ୍ୱାର୍ଥ ଦୃଷ୍ଟିରୁ ତାଙ୍କ ବିବେକ ଯେମିତି ଡାକିବ ସେମିତି କରିବେ ।" ଏବେ ଏହି ହଟଚମଟ ଆଉ ନ ଚଳିବାରୁ ଏପରି ଧର୍ମବାକ୍ୟ ଶୁଣାଉଥିଲେ । ୧୯୫୯ ମଇମାସ ୨୨ ତାରିଖରେ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଇସ୍ତଫା ଦେବା ନିମନ୍ତେ ୧୯୬୧ ଫେବୃୟାରୀ ୨୦ ରେ କଂଗ୍ରେସ ପ୍ରସ୍ତାବ କଲା । ୨୧ ତାରିଖରେ ମହତାବ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲା ଏବଂ ରାଷ୍ଟ୍ରପତି ଶାସନ ଜାରିହେଲା ।

## ସାଥୀ ଡାକ୍ତର ରବି ଘୋଷଙ୍କର ମୃତ୍ୟୁ

ରାଷ୍ଟ୍ରପତି ଶାସନ ଲାଗି ପୁଣି ଏକ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନର ଆମେ ସମ୍ମୁଖୀନ ହେବା ଆଗରୁ ଆମର ଜଣେ ପୁରୁଖା ସାଥୀ ଡାକ୍ତର ରବି ଘୋଷଙ୍କୁ ହରାଇଲୁ । ରବିବାବୁ ମୋର ଜଣେ ଅତି ହିତାକାଂକ୍ଷୀ ସାଥୀ ଥିଲେ । ସେ ଥିଲେ ପାର୍ଟିର ମୂଳ ପତ୍ତନ ପଡ଼ିବାଦିନୁ ଜଣେ ସଦସ୍ୟ । ସରଳ, ନିଷ୍କପଟ, ନିଃସ୍ୱାର୍ଥପର ଏବଂ ପରୋପକାରୀ । ନିଜେ ବିବାହ କରିନଥିଲେ କିମ୍ବା ଡାକ୍ତରୀ ପାସ୍ କରି ସୁଦ୍ଧା ଚାକିରି କିମ୍ବା ଡାକ୍ତରୀ କରିନଥିଲେ । ଡାକ୍ତର ହେବାଟାକୁ ସେ ଆଦୌ ଗୁରୁତ୍ୱ ଦେଇନଥିଲେ । କାରଣ ଡାକ୍ତରୀ ପଢ଼ୁଥିବାବେଳୁ ସେ ବିପ୍ଳବୀ ସଂଗଠନଗୁଡ଼ିକ ସହିତ ସଂପୃକ୍ତ ଥିଲେ ଏବଂ ଅତି ଗହନ କାର୍ଯ୍ୟ ସବୁ କରୁଥିଲେ । ତାଙ୍କ କାର୍ଯ୍ୟଗୁଡ଼ିକର କିଛି ବିଶେଷ ବହିଃପ୍ରକାଶ ହେଉନଥିଲା । ମାତ୍ର ସେ ଯାହା କରୁଥିଲେ, ତାହା ଆଉ କେହି କରିପାରୁନଥିଲେ । ସେ ଥିଲେ ଅତି ସ୍ନେହୀ ଏବଂ ମେଳାପୀ । ତାଙ୍କର ସରଳତା ଓ ନିଷ୍ଠାପରଭାବ ନିମନ୍ତେ ପାର୍ଟିରେ ସମସ୍ତେ ତାଙ୍କୁ ଭକ୍ତି କରୁଥିଲେ । ଢେଙ୍କାନାଳ ଆନ୍ଦୋଳନବେଳେ ଲଟି ଜେଲ୍ ଭିତରେ ସେ ଯେଉଁ ନିର୍ଯାତନା ସହ୍ୟ କରିଥିଲେ, ତାହା ଚିନ୍ତା କଲେ ଆଜି ବି ଲୋମ ଟାଙ୍କୁରି ଉଠେ । ଏତେ ତ୍ୟାଗ କଷ୍ଟ କରି ସୁଦ୍ଧା ସେ କିଛି ଏହାର ମୂଲ୍ୟ ଦାବୀ କରିନଥିଲେ—ସମାଜବାଦ ଆନ୍ଦୋଳନର ସଫଳତା ଏବଂ ସମାଜବାଦୀ ସାଥୀମାନଙ୍କସହ ଭ୍ରାତୃତ୍ୱ ସ୍ଥାପନ ସତେ କି ତାଙ୍କର ଏକମାତ୍ର ଲକ୍ଷ୍ୟ

ଥିଲି । ଶତ ଅନୁରୋଧ ସତ୍ତ୍ୱେ ଆମେ ତାଙ୍କୁ କଟକ ମ୍ୟୁନିସିପାଲ ନିର୍ବାଚନରେ ବି ପ୍ରାର୍ଥୀ ହେବା ନିମନ୍ତେ ରାଜି କରାଇପାରିଲୁନାହିଁ । ତାଙ୍କର ମୃତ୍ୟୁ ଓଡ଼ିଶା ପାର୍ଟିର ପ୍ରଭୂତ କ୍ଷତି କଲା । ପ୍ରଜା ସୋସଲିଷ୍ଟ ପାର୍ଟିର ୧୯୬୧ ଜୁନ୍ ୧୭, ୧୮, ୧୯ରେ ମାଡ୍ରାଜରେ ବସିଥିବା କମିଟିରେ ତାଙ୍କଲାଗି ଶୋକ ପ୍ରସ୍ତାବ ଗୃହୀତ ହେଲା ।

## ଓଡ଼ିଶାରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ

ହରେକୃଷ୍ଣ ମହତାବଙ୍କର ଦକ୍ଷିଣ ଓ ବାମହସ୍ତ ବୋଲିଉଥିବା ବିଜୁ ପଟ୍ଟନାୟକ ଓ ବୀରେନ ମିତ୍ର ତାଙ୍କ ନେତୃତ୍ୱରୁ ଖସି ନିଜେ କଂଗ୍ରେସର ନେତା ହେଲେ । ତାଙ୍କଠାରୁ ଏମାନେ କୁଟ କପଟ ବିଦ୍ୟା ଆୟତ୍ତ କରିସାରିଥିଲେ ଏବଂ ସେଇଥିରେ ମହତାବଙ୍କୁ ଏମାନେ ଟପିଗଲେ । କଂଗ୍ରେସରେ ମହତାବବିରୋଧୀ ବୟୋବୃଦ୍ଧ ବ୍ୟକ୍ତି ଯଥା ବିଶ୍ୱନାଥ ଦାସଙ୍କ ପରି ଲୋକଙ୍କୁ ଏମାନେ ନିଜ ଗୋଷ୍ଠୀ ଭିତରକୁ ଟାଣିଆଣିଲେ । ମନ୍ତ୍ରିମଣ୍ଡଳର ପତନ ହେବା ପରେ ମହତାବଙ୍କର କୌଶଳ ଆଉ କାମ କଲା ନାହିଁ; ଏଣେ ବିଜୁ ପଟ୍ଟନାୟକ ପଣ୍ଡିତ ନେହରୁ ଓ ଅନ୍ୟ ଉପର ନେତାଙ୍କର ସମର୍ଥନ ଲାଭକଲେ । ବିଜୁ ପଟ୍ଟନାୟକ ପ୍ରଚୁର ଅର୍ଥ ଯୋଗାଡ଼ କରିବା ଅବସ୍ଥାରେ ଥିଲେ । ସେ ତେଣୁ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ପ୍ରବର୍ତ୍ତାଇ ଏକ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନଲାଗି ସେମାନଙ୍କୁ ସମ୍ମତ କରାଇନେଲେ । ଆଗରୁ କିଛି ନ ଜଣାଇ ହଠାତ୍ ୧୯୬୧ ମଇମାସରେ ଘୋଷଣା କରାଗଲା ଯେ ଓଡ଼ିଶା ଆସେମ୍ବ୍ଲି-ଲାଗି ନିର୍ବାଚନ କରାଯିବ । ବିଭିନ୍ନ ରାଜନୀତିକ ଦଳ ତରଫରୁ, ଭୀଷଣ ଖରା ଓ କୃଷୀଙ୍କର ବୁଣାବୁଣିବେଳରେ ନିର୍ବାଚନ କରିବା ଠିକ୍ ହେବ ନାହିଁ ବୋଲି ଆପତ୍ତି ଦର୍ଶାଗଲେ ସୁଦ୍ଧା କେହି କର୍ଣ୍ଣପାତ କଲେ ନାହିଁ । ନିର୍ବାଚନର ଘୋଷଣା ହୋଇଗଲା ।

ମୁଁ ପାର୍ଲିମେଣ୍ଟରେ ମହତାବଙ୍କର କଟୁ ସମାଲୋଚନା କରିଥିବାରୁ ଏମାନେ ବିଚାରିଲେ ମୋର ସମର୍ଥନ ତାଙ୍କୁ ମିଳିବ । ମୋ ପାଖକୁ ବୀରେନ୍ ମିତ୍ର ବାରମ୍ବାର ଆସି ନାନା ପ୍ରଲୋଭନ ଦେଖାଇ ସେମାନଙ୍କ ସହିତ ସହଯୋଗ ନଚେତ୍ କଂଗ୍ରେସ ସହ ମିଶି ନିର୍ବାଚନ ଲଢିବା ନିମନ୍ତେ ଖୁବ୍ ଅନୁରୋଧ କରିଥିଲେ । ମୁଁ ତାଙ୍କୁ ବୁଝାଇଦେଲି ଯେ ମୋର ସମାଲୋଚନା ବ୍ୟକ୍ତିଗତ ନୁହେଁ—ରାଜନୀତିକ । ତାହା ମହତାବଙ୍କ ପ୍ରତି ଯେତିକି ପରିମାଣରେ ପ୍ରଯୁଜ୍ୟ, ସେହି ପରିମାଣରେ କଂଗ୍ରେସ ପ୍ରତି ମଧ୍ୟ । ସେ ନିରାଶ ହୋଇ ଫେରିଲେ ।

## ସରକାରୀ କଳ ଓ ଅର୍ଥର ଉପଯୋଗ

ଓଡ଼ିଶାର ଏହି ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ଭବିଷ୍ୟତରେ ଗଣତାନ୍ତ୍ରିକ ନିର୍ବାଚନ କି ରୂପ ନେବ ତାହାର ଏକ ସୂଚନା ବା ଅଗ୍ରିମାଭାସ କହିଲେ ଚଳିବ । ବିଧି ଅନୁସାରେ ନିର୍ବାଚନ ସମୟ ଠିକ୍ କରିବା ପୂର୍ବରୁ ବିରୋଧୀଦଳମାନଙ୍କର ମତ ନେବାର କଥା ।

ଏଥିରେ କାହାରିକୁ ପରାମର୍ଶ ନ କରି କଂଗ୍ରେସଦଳକୁ ସୁହାଇଲାପରି ତାରିଖ ଧାର୍ଯ୍ୟ କରି-ଦିଆଗଲା । ଏପରିକି ବୁଥ୍ ଗଠନ ଓ ଅନ୍ୟାନ୍ୟ ନିର୍ବାଚନ ପରିଚାଳନା କାର୍ଯ୍ୟରେ ସାଧାରଣତଃ ବିରୋଧୀଦଳଗୁଡ଼ିକର ଯେ ପରାମର୍ଶ ନେବାର କଥା ତାହା କରାଗଲାନାହିଁ । ସରକାରୀ କଳ ପ୍ରକାଶ୍ୟଭାବରେ କଂଗ୍ରେସ ଦଳକୁ ସବୁପ୍ରକାରେ ସାହାଯ୍ୟ କଲା ।

ବିଜୁ ପଟ୍ଟନାୟକ ମଧ୍ୟ ଏକ ଅପୂର୍ବ ସଂଗଠନ ଶକ୍ତି ଦେଖାଇଲେ । ୧୪୦ଟି ନିର୍ବାଚନ-ମଣ୍ଡଳୀ ନିମନ୍ତେ ୧୪୦ଟି ନୂଆ ଜିପ୍ ଓ ଲାଉଡ଼ସ୍ପିକର୍ ଆସି କଟକ ସହରରେ ନିର୍ବାଚନ ଆରମ୍ଭର ବହୁପୂର୍ବରୁ ରଖିଦିଆଗଲା । ଏଭଳି ଆୟୋଜନ ଓଡ଼ିଶା ପରି ଦରିଦ୍ର ରାଜ୍ୟରେ ସମ୍ପୂର୍ଣ୍ଣ ନୂତନ । ବିପୁଳ ଅର୍ଥର ମଧ୍ୟ ବ୍ୟବସ୍ଥା କରାଗଲା । କେବଳ ପ୍ରଚାର ଓ ସଂଗଠନ ନିମନ୍ତେ ନୁହେଁ, ଭୋଟରଙ୍କୁ ନଗଦ ଟଙ୍କା ଦିଆଯାଇ ଭୋଟ କିଣାଗଲା । ଏହାକୁ ପ୍ରକାଶ୍ୟରେ କଂଗ୍ରେସର "ଅମୋଘ ଅସ୍ତ୍ର ପ୍ରୟୋଗ" ବୋଲି କୁହାଯାଉଥିଲା । ନିର୍ବାଚନ ପରେ କଂଗ୍ରେସ କମିଟିବୈଠକରେ ବିଜୁ ପଟ୍ଟନାୟକ ଘୋଷଣା କଲେ ଯେ ୪୦ ଲକ୍ଷରୁ ଅଧିକ ଅର୍ଥ ଓଡ଼ିଶା ନିର୍ବାଚନରେ ବ୍ୟୟ କରାଗଲା । ପଣ୍ଡିତ ନେହେରୁଙ୍କଠାରୁ ଆରମ୍ଭ କରି କଂଗ୍ରେସର କେହି କର୍ତ୍ତା ଏପରି ଅର୍ଥ କେଉଁଠୁ ଆସିଲା ଏବଂ କାହିଁକି ଏପରି ବ୍ୟୟ କରାଗଲା, କିଛି ସ୍ୱର ଉଠାଇଲେନାହିଁ । ଏହାକୁ କଂଗ୍ରେସ ଜିତିବାର ଏକ ନୂତନ ପନ୍ଥା ବୋଲି ମନେକରାଯାଇ ବିଜୁ ପଟ୍ଟନାୟକଙ୍କର ବରଂ ତାରିଫ୍ କରାଗଲା । ଏଥିରେ ଉନ୍ମତ୍ତ ହୋଇ ପରେ ବିଜୁ ପଟ୍ଟନାୟକ ଘୋଷଣା କଲେ ଯେ ୮୦ ଲକ୍ଷରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏବଂ ଦୁଇକୋଟି ବ୍ୟୟରେ ଭାରତର ପ୍ରଧାନମନ୍ତ୍ରୀ ହେବା ସମ୍ଭବ । ଏହା ଯେନ କଂଗ୍ରେସ ମହଲରେ ଖୁବ୍ ଚର୍ଚ୍ଚା ହେଲା ଏବଂ ନିଖିଳ ଭାରତ କଂଗ୍ରେସ କମିଟିର ଏକ ବୈଠକରେ ମହୀଶୂରର ତତ୍କାଳୀନ ମୁଖ୍ୟମନ୍ତ୍ରୀ ହନୁମନ୍ତାୟ୍ୟ ଏପରି ଉକ୍ତିର ଘୋର ପ୍ରତିବାଦ କଣାଇ କଂଗ୍ରେସରୁ ତାଙ୍କୁ ବାହାର କରିଦେବା ନିମନ୍ତେ ଦାବୀ କରିଥିଲେ ।

## କଂଗ୍ରେସର ଅପୂର୍ବ ସଫଳତା

ନିର୍ବାଚନ ପୂର୍ବରୁ କଂଗ୍ରେସ ଭିତରେ ମତଭେଦ ରହିଥିଲା । ହରେକୃଷ୍ଣ ମହତାବ ନୀରବ ରହି କେତେକ ବିଦ୍ରୋହୀ କଂଗ୍ରେସ ଲୋକଙ୍କୁ କଂଗ୍ରେସ ବିରୁଦ୍ଧରେ ପ୍ରାର୍ଥୀ କରାଇଲେ ଏବଂ ଭିତରି ସମର୍ଥନ ଦେଲେ । ମାତ୍ର ଅର୍ଥବଳରେ କଂଗ୍ରେସର ଏପରି ପ୍ରଚାର ଓ ସଂଗଠନ ହୋଇପାରିଥିଲା ଯେ ଏସବୁ କିଛି ବିଶେଷ ଫଳ ପକାଇପାରିଲାନାହିଁ ।

ବିରୋଧୀଦଳଗୁଡ଼ିକ ନିର୍ବାଚନ ଲାଗି ପ୍ରସ୍ତୁତ ନଥିଲେ ଏବଂ ସମ୍ବଳ ଯୋଗାଡ଼ ଓ ସଂଗଠନ ଏତେ ଅଳ୍ପଦିନ ଭିତରେ କରିବା ତାଙ୍କ ପକ୍ଷରେ ସମ୍ଭବ ହେଲାନାହିଁ । ତାହାଛଡ଼ା ବିରୋଧୀଙ୍କ ଭିତରେ କୌଣସି ନିର୍ବାଚନ ବୁଝାମଣା ବି ହୋଇପାରିନଥିଲା । କମ୍ୟୁନିଷ୍ଟ-ଦଳ ମଧ୍ୟ କଂଗ୍ରେସର ପ୍ରଗତିଶୀଳ ଉଦ୍ୟମକୁ ସମର୍ଥନ କରିବାର ନୀତି ଗ୍ରହଣ କଲା । ଏହା ଫଳରେ ବିଜୁ ପଟ୍ଟନାୟକ ଅର୍ଥ ଓ ଅନ୍ୟାନ୍ୟ ଲୋଭ ଦେଖାଇ ବହୁ କମ୍ୟୁନିଷ୍ଟ କର୍ମୀଙ୍କୁ

ହସ୍ତଗତ କରିପାରିଲେ । ନନ୍ଦିନୀ ଶତପଥୀ ଏହି ସମୟରେ କମ୍ୟୁନିଷ୍ଟ ପାର୍ଟି ଛାଡ଼ି କଂଗ୍ରେସରେ ଯୋଗଦେଲେ । କମ୍ୟୁନିଷ୍ଟ ପାର୍ଟି ମଧ୍ୟ ନିର୍ବାଚନରେ ସର୍ବାପେକ୍ଷା ଅଧିକ କ୍ଷତିଗ୍ରସ୍ତ ହେଲା । ଗତଥର ୭ଜଣ ସଭ୍ୟ ଥିବା ସତ୍ତ୍ୱେ ଏ ନିର୍ବାଚନରେ ମାତ୍ର ୪ଜଣ ପ୍ରାର୍ଥୀ ନିର୍ବାଚିତହେଲେ । ବିରୋଧୀଦଳଗୁଡ଼ିକ ଅବଶ୍ୟ କଂଗ୍ରେସଠାରୁ ଅଧିକ ଭୋଟ ପାଇଥିଲେ । ବିରୋଧୀ ପାଇଲେ ଶତକଡ଼ା ୫୬, ୪୪ ପାଇଲା କଂଗ୍ରେସ । କିନ୍ତୁ ଗଣତନ୍ତ୍ର ପରିଷଦ ନିଜର ପ୍ରଭାବସ୍ଥଳୀ ଅପେକ୍ଷା ଅଧିକ ସ୍ଥାନରେ ପ୍ରାର୍ଥୀ ଛିଡ଼ା କରାଇଦେବା ଫଳରେ ବିରୋଧୀ ପ୍ରାର୍ଥୀଙ୍କ ଭୋଟ ବାଣ୍ଟି-ହୋଇଗଲା ।

## ତିନି ନିର୍ବାଚନରେ ବିଭିନ୍ନ ପାର୍ଟିର ଅବସ୍ଥା

୧୯୫୨ରେ ପ୍ରଥମ ନିର୍ବାଚନ ଓଡ଼ିଶାରେ ହୋଇଥିଲା । ପୁଣି ୧୯୫୭ ପରେ ଏହାର ଚାରି, ଅର୍ଥାତ୍ ୯ ବର୍ଷ ପରେ ତିନୋଟି ନିର୍ବାଚନହେଲା । ତହିଁର ଫଳାଫଳ ଏବଂ ବିଭିନ୍ନ ପାର୍ଟିର ସ୍ଥିତି ଥିଲା ନିମ୍ନ ପ୍ରକାରର—

| | ୧୯୫୨ | ୧୯୫୭ | ୧୯୬୧ |
|---|---|---|---|
| କଂଗ୍ରେସ | ୬୭ | ୫୬ | ୮୨ |
| ଗଣତନ୍ତ୍ର ପରିଷଦ | ୩୧ | ୫୧ | ୩୭ |
| ପି. ଏସ୍. ପି. | ୧୦ | ୧୧ | ୧୦ |
| ସି. ପି. ଆଇ. | ୭ | ୯ | ୪ |
| ସ୍ୱାଧୀନ | ୨୦ | ୭ | ୭ |
| ଝାଡ଼ଖଣ୍ଡ | — | ୫ | — |
| ଲୋହିଆ ସୋସଲିଷ୍ଟ | — | ୧ | ୧ |
| ସ୍ୱାଧୀନ ଜନସଂଘ | ୪ | — | — |
| ଫରୱାର୍ଡ ବ୍ଲକ | ୧ | — | — |
| ସ୍ୱତନ୍ତ୍ର ପାର୍ଟି | — | — | ୧ |

ଏଥିରୁ ଦେଖାଯିବ ଯେ ବିରୋଧୀଦଳଗୁଡ଼ିକର ଶୋଚନୀୟ ପରାଜୟ ଘଟିଲା । ଗତ ଦୁଇଟି ନିର୍ବାଚନରେ କଂଗ୍ରେସ ପକ୍ଷରେ ସଂଖ୍ୟାଗରିଷ୍ଠତା ପାଇବା କଷ୍ଟସାଧ୍ୟ ଥିଲା; ମାତ୍ର ଓଡ଼ିଶାରେ ପ୍ରଥମଥର ଲାଗି କଂଗ୍ରେସ ପାଇଲା ସର୍ବାଧିକ ସଂଖ୍ୟାଗରିଷ୍ଠତା ୮୧ । ପ୍ରଜା ସୋସଲିଷ୍ଟ ପାର୍ଟି କୌଣସିପ୍ରକାରେ ୧୦ଟି ପାଇ ନିଜର ପୂର୍ବ ସ୍ଥିତିକୁ ପ୍ରାୟ କାଏମ୍ ରଖିପାରିଥିଲା । ମାତ୍ର ଏହାର ମୁଖ୍ୟନେତାମାନେ ଏଥର ପରାସ୍ତହେଲେ ।

## ରାଜନୀତିରେ ନୂଆ ଅଧ୍ୟାୟ

ଓଡ଼ିଶା କଂଗ୍ରେସ ଏହି ନିର୍ବାଚନରେ ଯେଉଁପରି ପନ୍ଥା ଅବଲମ୍ବନ କରି ଜିତିଲା ଏବଂ ଓଡ଼ିଶାରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ସରକାର ଗଠିତ ହୋଇ ଯାହାସବୁ କରିଗଲା,

ସେସବୁ ଏ ଦେଶରେ କଂଗ୍ରେସର ପୂର୍ବ ଧାରଣା ଓ ଚରିତ୍ରକୁ ସଂପୂର୍ଣ୍ଣଭାବରେ ବଦଳାଇଦେଲା । ଦେଶରେ ଗଣତନ୍ତ୍ରର ଅଭ୍ୟୁଦୟରେ ନାନା ଦୋଷ ପ୍ରବେଶକଲା । ପଣ୍ଡିତ ନେହରୁ ନିଜେ ମହାତ୍ମାଗାନ୍ଧୀଙ୍କ ବାଣୀ ଅମାନ୍ୟ କରି କଂଗ୍ରେସ ନାମରେ ପୂରା ଫାଇଦା ଉଠାଇଲେ; ମହାତ୍ମାଙ୍କ ଇଚ୍ଛା ପୂରଣ କଲେ ନାହିଁ କିମ୍ବା କଂଗ୍ରେସକୁ ଭାଙ୍ଗି ଦେଲେନାହିଁ । ଏପରିକି ଯେଉଁ କଂଗ୍ରେସର ତ୍ରିରଙ୍ଗା ପତାକା ତଳେ ସାରା ଦେଶବାସୀ ଠୁଳ ହୋଇଥିଲେ, ସେ ପତାକାକୁ ପୂର୍ବପରି କଂଗ୍ରେସର ଦଳୀୟ ପତାକା କରି ରଖିଲେ । ଆମର ରାଷ୍ଟ୍ରୀୟ ଧ୍ୱଜାକୁ ମଧ୍ୟ ଅନୁରୂପ ରଖାଗଲା—କେବଳ ଚରଖା ପରିବର୍ତ୍ତେ ତାହାରେ ଚକ୍ର ରଖାଗଲା । ଏହା ପରେ କଂଗ୍ରେସ ଦଳର ପତାକା ଆଉ ସେହିଭଳି ରଖିବା ଉଚିତ ନଥିଲା । ମାତ୍ର ଲୋକଙ୍କ ଭିତରେ ବୁଦ୍ଧିଭେଦ ପୂରାଇବା ନିମନ୍ତେ ତାହା ରଖାଗଲା—ଯେପରି କି କଂଗ୍ରେସ ଦଳ ଓ ସରକାର ଭିତରେ କୌଣସି ଫରକ ନାହିଁ । ରାଷ୍ଟ୍ର ସର୍ବୋପରି, ସରକାର ତାହାର ଅଙ୍ଗ । ରାଜନୈତିକ ଦଳଗୁଡ଼ିକ ସରକାର ଦଖଲ କରନ୍ତି । ତେଣୁ ରାଷ୍ଟ୍ର ଓ ସରକାରୀ ଦଳ ଏକ ହୋଇପାରେନା । ଏପରି କରାଗଲେ ଗଣତନ୍ତ୍ରର ମର୍ଯ୍ୟାଦା ରକ୍ଷାହୋଇପାରେନା ।

କଂଗ୍ରେସ ଏହି ଯେଉଁ ପ୍ରକ୍ରିୟା ଆରମ୍ଭ କରିଦେଇଥିଲା, ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇ ତାହାର ସଫଳ ରୂପାୟନ କଲେ । କଂଗ୍ରେସ ବହୁମତ ପାଇବାରୁ ସେ ସମ୍ପୂର୍ଣ୍ଣରୂପେ ସରକାରୀ କଳର ଉପଯୋଗ ପାର୍ଟି ଲାଗି ଏବଂ ପାର୍ଟିର ବ୍ୟକ୍ତିବିଶେଷଙ୍କ ସ୍ୱାର୍ଥ ଲାଗି କରିବାରେ ଲାଗିଲେ । ନାନା ବେଆଇନ ଓ ମନୋମୁଖୀ କାର୍ଯ୍ୟମାନ କରାଗଲା । ଓଡ଼ିଶାରେ ଏକ ନୂତନ ପ୍ରଗତିର ଯୁଗ ନାମରେ ବ୍ୟଭିଚାର ଏବଂ ନାନା ଅସତ୍ ଉପାୟ ପ୍ରକାଶ୍ୟ ଭାବରେ ଅବଲମ୍ବନ କରାଗଲା । ନିର୍ବାଚନ ଯେପରି କି ଏକ ବ୍ୟବସାୟ ବାଣିଜ୍ୟରେ ପରିଣତ ହୋଇଗଲା । ଅର୍ଥର ବିପୁଳ ପ୍ରୟୋଗ ନିର୍ବାଚନକୁ ଏବଂ ରାଜନୈତିକ ଜୀବନକୁ ଦୂଷିତକଲା । ଓଡ଼ିଶା ଏକ ଦରିଦ୍ର ରାଜ୍ୟ ହୋଇଥିବାରୁ ଧନର ଗରିମା ଏଠାରେ ପ୍ରଭାବ ପକାଇଲା । ଆମେରିକାପରି ଧନାଢ୍ୟ ଦେଶମାନଙ୍କରେ ଯେପରି ପ୍ରଚୁର ବ୍ୟୟ ନିର୍ବାଚନରେ କରାଯାଏ, ସେହିଭଳି ରୀତି ଏଠାରେ ପ୍ରୟୋଗ ହେଲା । ନୂତନ ସମ୍ବିଧାନରେ, ଗତ ଦୁଇଟି ସାଧାରଣ ନିର୍ବାଚନରେ, କଂଗ୍ରେସ ସଂଖ୍ୟାଗରିଷ୍ଠତା ହାସଲ କରିପାରିନଥିଲା । ଅଥଚ ଏହି ନୂତନ ପନ୍ଥା ପ୍ରୟୋଗରେ କଂଗ୍ରେସର ଅଲୌକିକ ସଫଳତା ସାଧାରଣ ଭାବରେ ଭାରତର କଂଗ୍ରେସ ମହଲକୁ ଚମକିତ କରିଦେଲା । ଏଣିକି ଭାରତର ସବୁଆଡ଼େ ନିଃସଙ୍କୋଚ ଭାବରେ ନିର୍ବାଚନରେ ଦୂଷିତ ପନ୍ଥା ପ୍ରଚଳନ ହେଲା । ବିଜୁ ପଟ୍ଟନାୟକଙ୍କର କଂଗ୍ରେସରେ ଖ୍ୟାତି ବଢ଼ିଲା ଏବଂ ପଣ୍ଡିତ ନେହରୁଙ୍କର ସେ ଶ୍ରଦ୍ଧାଭାଜନ ହୋଇପାରିଲେ । ହରେକୃଷ୍ଣ ମହତାବ ପରାଜୟ ଲାଭ ସୁଦ୍ଧା କଂଗ୍ରେସ ଛାଡ଼ିନଥିଲେ; ସେ ଓଡ଼ିଶା ରାଜନୀତିରୁ ଦୂରକୁ ଘୁଞ୍ଚିଗଲେ—ଦିଲ୍ଲୀରେ ନିଜର ଭାଗ୍ୟ ନିର୍ଣ୍ଣୟ କରିବା ନିମନ୍ତେ । କିନ୍ତୁ ଏଣେ ଓଡ଼ିଶାରେ ବିଜୁ ପଟ୍ଟନାୟକଙ୍କର ଔଦ୍ଧତ୍ୟ ଓ କର୍ତ୍ତୃତ୍ୱ ବୃଦ୍ଧି ପାଇବାରେ ଲାଗିଲା । ବିରୋଧୀ ରାଜନୈତିକ ଦଳଗୁଡ଼ିକ ଏକପ୍ରକାର ବହିଷ୍କୃତ ଓ ନିଃସହାୟ ହେବାପରି ବିଚରିଲେ । □□□

# ୧୩ । ୧୯୭୨ ଲୋକସଭା ନିର୍ବାଚନ

ବିଜୁ ପଟ୍ଟନାୟକଙ୍କର ଏହି ସଫଳତା ଓ ହଠାତ୍ ନେତୃତ୍ୱ ଗ୍ରହଣ ଫଳରେ ସେ ଓଡ଼ିଶା କଂଗ୍ରେସ ଓ ସରକାରର ପ୍ରାୟ ସର୍ବେସର୍ବା ପାଲଟିଲେ । ଜୁନ୍ ମାସରେ ନୂତନ କଂଗ୍ରେସ ମନ୍ତ୍ରୀମଣ୍ଡଳ ଓଡ଼ିଶାରେ କାର୍ଯ୍ୟଭାର ଗ୍ରହଣକଲା । ୧୯୭୦ ଜାନୁୟାରୀ-ଫେବ୍ରୁୟାରୀରେ ନୂତନ ଲୋକସଭା ଲାଗି ନିର୍ବାଚନ ହେବାର ଥିଲା । ୧୯୬୭ ନିର୍ବାଚନରେ କଂଗ୍ରେସ ଲୋକସଭାରୁ ପ୍ରାୟ ଅର୍ଦ୍ଧେକ ସ୍ଥାନ ହରାଇଥିଲା । କଂଗ୍ରେସ ଏଥରକ ଆସେମ୍ବ୍ଲି ନିର୍ବାଚନରେ ଯେ ସଫଳତା ଲାଭକରିଥିଲା, ତାର ସୁଯୋଗ ନେଇ ପୁଣି ଅଧିକ ଭାବରେ ସଙ୍ଗଠିତ ହେବାକୁ ଲାଗିଲା । ଏହି ନିର୍ବାଚନରେ ମତେ ପରାସ୍ତ କରିବା ନିମନ୍ତେ ପ୍ରବଳ ଉଦ୍ୟମ ହେଲା ।

## ପାରାଦୀପ ପୋଲ ନିର୍ବାଚନ ଖେଳ

ମୋ ନିର୍ବାଚନ ମଣ୍ଡଳୀ ଭିତରେ ପାରାଦୀପ ପଡ଼ୁଥିଲା । ପାରାଦୀପକୁ ଏକ ବନ୍ଦର ରୂପେ ଘୋଷଣା କରିବା ନିମନ୍ତେ ବହୁବାର ପାର୍ଲିମେଣ୍ଟରେ ଦାବୀ ଉଠିଥିଲା । ମୁଁ ନିଜେ ପ୍ରଶ୍ନ କରିଥିଲି ଏବଂ ଏକ ସ୍ୱତନ୍ତ୍ର ପ୍ରସ୍ତାବ ଉପରେ ବି କହିଥିଲି । ମାତ୍ର ଭାରତ ସରକାର ସେ ଦିଗରେ କିଛି କରିବା ନିମନ୍ତେ ପ୍ରସ୍ତୁତ ନଥିଲେ । ଓଡ଼ିଶା ଲୋକଙ୍କ ମନକୁ ଘେନିଲାପରି, ପାରାଦୀପ ବନ୍ଦର କରାଯିବ ବୋଲି ମୁଖ୍ୟମନ୍ତ୍ରୀ ଭାବରେ ବିଜୁ ପଟ୍ଟନାୟକ ଘୋଷଣା କରିଦେଲେ । କୌଣସି ଯୋଜନା ମଞ୍ଜୁର ନ ହୋଇ ସୁଦ୍ଧା ପାରାଦୀପ ଲାଗି ସରକାରୀ ଖର୍ଚ୍ଚରେ ରାସ୍ତା ଓ ବିଜୁଳି ଆଲୁଅ ଆଦି ବ୍ୟବସ୍ଥା କରାଗଲା । ଏହା ଏକ ଅତି ନିଭୃତିଆ ସୁଦୂର ପଲ୍ଲୀ—ସମୁଦ୍ର ତଟ । ସେଠାରେ ଏପରିଭାବରେ ବିଦ୍ୟୁତ୍ ଖଞ୍ଜାଗଲା, ଯାହାଦ୍ୱାରା ମୋ ନିର୍ବାଚନ ମଣ୍ଡଳୀର ସମୁଦ୍ରତଟସ୍ଥ ପ୍ରାୟ ସବୁ ଇଲାକା ଆଲୋକମୟ ହେଲା ଏବଂ ପ୍ରକୃତରେ ଏପରି ଏକ ନୂଆ ବନ୍ଦର ହେଉଥିବାର ବିଶ୍ୱାସ ଲୋକଙ୍କ ମନରେ ପ୍ରବେଶ କରାଗଲା । ସେଥି ସଙ୍ଗେ ସଙ୍ଗେ ପ୍ରବଳ ପ୍ରଚାର ଚାଲିଲା ଯେ ଦ୍ୱିବେଦୀଙ୍କ ଭୋଟ ଦେଲେ ଏ କାର୍ଯ୍ୟ ବନ୍ଦ ହୋଇଯିବ ।

ମୁଁ ଆଗରୁ ସତର୍କ ହୋଇ ପ୍ରାୟ ୩ମାସ ଆଗରୁ ମୋ ନିର୍ବାଚନ ମଣ୍ଡଳୀର ପ୍ରାୟ ସବୁ ପ୍ରଧାନସ୍ଥଳୀମାନଙ୍କୁ ପାଦରେ ଚାଲି ଚାଲି ଯାଇଥିଲି ଏବଂ ବୁଥ୍ ସଙ୍ଗଠନ ଠିକ୍‌କରିସାରିଥିଲି । ଏହି ଗସ୍ତବେଳେ ମୁଁ ଜାଣିଲି ଲୋକଙ୍କର ମୋ ପ୍ରତି ଉପରି ଶ୍ରଦ୍ଧା ଓ ଭକ୍ତି ରହିଥିଲା । ଛଅଟି ଦେଇ ୧୦।୨୦ ଗ୍ରାମର କିଛି ବିଶିଷ୍ଟ ଲୋକଙ୍କୁ ଭେଟିବା ନିମନ୍ତେ ଏକ ନିର୍ଦ୍ଦିଷ୍ଟ ସ୍ଥାନକୁ ମୁଁ ଡକାଉଥିଲି । ମାତ୍ର ଯେତିକି ଡାକୁଥିଲି, ତାଠାରୁ ବହୁ ଅଧିକ ଲୋକ ଆସୁଥିଲେ । ମୁଁ ଏଥରକ ପ୍ରାର୍ଥୀ ହେବା ସମ୍ପର୍କରେ ସେମାନଙ୍କ ମତ ସିଧାସଳଖ ସମସ୍ତଙ୍କ ଉପସ୍ଥିତିରେ

ଲୋଡ଼ୁଥିଲି । ଜନମତ ଏପରି ଥିଲା ଯେ, ସେଠାରେ ଉପସ୍ଥିତ ଥିବା କଂଗ୍ରେସ ଲୋକେ ମଧ୍ୟ ମତେ ସମର୍ଥନ କରିବା ଲାଗି 'ହଁ'ଭରୁଥିଲେ କମ୍ବା ନୀରବରହୁଥିଲେ । ମୋର ବ୍ୟକ୍ତିଗତ ସାକ୍ଷାତର ଏପରି ପ୍ରଭାବ ପଡ଼ିଲା ଯେ ଗ୍ରାମବାସୀମାନେ ଉକ୍ତ ସଭାରେ ଆଗୁଆ ହୋଇ ବାହାର ବିଭିନ୍ନ ବୁଥ୍‌ର ଭାର ବି ନେଇଯାଉଥିଲେ । ଏହା ଫଳରେ ବିଜୁ ପଟ୍ଟନାୟକଙ୍କର ଆକ୍ରମଣ ଆରମ୍ଭ ହେବା ପୂର୍ବରୁ ବହୁ ମୁଖ୍ୟ ଲୋକ ମତେ ସମର୍ଥନ ଦେବା ନିମନ୍ତେ ସାଧାରଣଙ୍କ ଆଗରେ ପ୍ରତିଶ୍ରୁତି ହୋଇସାରିଥିଲେ—ପରେ ସେମାନଙ୍କୁ ଭାଙ୍ଗିବା କଷ୍ଟକର ହେଲା । ଟଙ୍କା ପଇସା, ଚାକିରି ଓ ଅନ୍ୟ ପ୍ରଲୋଭନ ଦେଖାଇ ଯେଉଁମାନଙ୍କୁ ଭାଙ୍ଗି ନିଆଗଲା, ସେମାନେ ନୀରବ ରହିଗଲେ; ଗାଁ ଲୋକଙ୍କ ଆଗରେ ପୁଣି ମତ ବଦଳାଇ ଯେ କେତେଜଣ ପ୍ରଚାର କଲେ, ସେମାନେ ଗଞ୍ଜଣା ପାଇଲେ ଏବଂ ସେମାନଙ୍କ କଥାର କିଛି ମୂଲ୍ୟ ରହିଲା ନାହିଁ ।

## ନେହରୁଙ୍କ ସଭା ଓ ପ୍ରଚାର

ମୁଁ ନିର୍ବାଚନ ମଣ୍ଡଳୀରେ ଏପରି ଗସ୍ତ କରୁଥିବାବେଳେ ଦେଖିଲି ସ୍ଥାନେ ସ୍ଥାନେ ସରକାର ତରଫରୁ ନେହରୁଙ୍କ ସଭାଲାଗି ମଞ୍ଚମାନ ତିଆରି ଚାଲିଥିଲା ଏବଂ ପାରାଦୀପ ବନ୍ଦରର ଶୁଭ ଦିଆଯିବ ବୋଲି ପ୍ରଚାର ଚାଲିଥିଲା । ପାରାଦୀପ ବନ୍ଦରର ଶୁଭ ଦିଆଯିବା ଘୋଷଣାରେ ଲୋକଙ୍କ ମନରେ ଗୋଟାଏ ପ୍ରବଳ ଉତ୍ସାହ ଖେଳୁଥିଲା । ମତେ ବିସ୍ମିତ ଲାଗିଲା—ଏହା କିପରି ହେଲା ଏବଂ ନେହରୁଙ୍କ ନିର୍ବାଚନ ପ୍ରଚାର ଲାଗି ସରକାର ତରଫରୁ କିପରି ଏଭଳି ବ୍ୟବସ୍ଥା କରାଯାଉଥିଲା ! ମୁଁ ତିର୍ତ୍ତୋଲ ପୋଷ୍ଟ ଅଫିସରେ ବସି ନିଜ ହାତରେ ନେହରୁଙ୍କ ପାଖକୁ ୧୧-୧୨-୬୧ ତାରିଖରେ ନିମ୍ନପତ୍ର ଲେଖିଲି—

"ସମ୍ମାନାସ୍ପଦ ପଣ୍ଡିତଜୀ,

ଆପଣ ବିଜ୍ଞାନ କଂଗ୍ରେସ ଅଧିବେଶନ ଲାଗି କଟକ ଆସୁଛନ୍ତି ଏବଂ ୧୯୬୨ ଜାନୁୟାରୀ ୨ ତାରିଖ ପାରାଦୀପଠାରେ ଭିତ୍ତି ସ୍ଥାପନ କରିବେ ସମ୍ବାଦ ପାଇ ମୁଁ ଭାରି ଖୁସି । ଏହା ମୋ ନିର୍ବାଚନମଣ୍ଡଳୀର ଅନ୍ତର୍ଗତ । ତେଣୁ ମୁଁ ବିଶେଷଭାବରେ ଆପଣଙ୍କର ପରିଦର୍ଶନକୁ ସ୍ୱାଗତ ଜଣାଉଛି ।

ଆପଣଙ୍କର ଏହି ପରିଦର୍ଶନ ନିମନ୍ତେ ଅତି ଦ୍ରୁତ ବେଗରେ ସରକାରୀ କଳ କାର୍ଯ୍ୟରେ ଲାଗିଛି । ଆପଣ ପାରାଦୀପ ଯିବା ବାଟରେ ସ୍ଥାନେ ସ୍ଥାନେ ସାଧାରଣ ସଭାଲାଗି ମଞ୍ଚମାନ ତିଆରି ହେଉଛି । ଏସବୁ ବ୍ୟବସ୍ଥା ଦେଖି ମୋର ମନେହେଉଛି ଏହା ଆପଣଙ୍କର ଏକ ସରକାରୀ ଗସ୍ତ । ଆପଣଙ୍କର ନିର୍ବାଚନ ଭାଷଣ ନିମନ୍ତେ ପଡ଼ିଆ ସଫା ତଥା ଅନ୍ୟ ସବୁ ବ୍ୟବସ୍ଥା ସରକାର ତରଫରୁ କରାଯିବା ସପକ୍ଷରେ ଆପଣ କେବେ ନଥିଲେ । ମୋର ବିଶ୍ୱାସ ଯେ ଆପଣଙ୍କ ଗସ୍ତ ଫଳରେ ଗ୍ରାମବାସୀଙ୍କ ମନରେ ନୂତନ ଉନ୍ମାଦନା ସୃଷ୍ଟି ହେବ ଏବଂ ବିକାଶ କାର୍ଯ୍ୟ ନିମନ୍ତେ ସେମାନଙ୍କ ମନ ଆକୃଷ୍ଟ ହୋଇପାରିବ ।

ଆପଣ ସମ୍ଭବତଃ ଜାଣନ୍ତି ଯେ ଓଡ଼ିଶାବାସୀଙ୍କର ଏକାନ୍ତ ଇଚ୍ଛା ଯେ ପାରାଦୀପକୁ ଏକ ସବୃଦ୍ଧନଆ ବନ୍ଦରରେ ପରିଣତ କରାଯାଉ । ଏହାଦ୍ୱାରା ଆମର ଏପରି ଏକ ଅନୁନ୍ନତ ଅଞ୍ଚଳର ବିକାଶ ସମ୍ଭବ ହୋଇପାରିବ—ଖାଲି ସେତିକି ନୁହେଁ, ଦେଶର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ, ଚଟ୍ଟାଗାଙ୍ଗ ପୂର୍ବ-ପାକିସ୍ଥାନରେ ଚାଲିଗଲା ପରେ, ପୂର୍ବଉପକୂଳରେ ଏପରି ଏକ ବନ୍ଦରର ଆବଶ୍ୟକତା ବହୁତ ବେଶି । ଏହା ହେବା ଦ୍ୱାରା ଆମ ଲୌହଖଣ୍ଡ, ଜାପାନ ଓ ଅନ୍ୟ ଦେଶମାନଙ୍କୁ ରପ୍ତାନି କରିବାର ଦ୍ୱାର ଉନ୍ମୁକ୍ତ ହେବ । ଆମେ ଗତ କେତେବର୍ଷ ହେଲା ପାର୍ଲିମେଣ୍ଟରେ ବାରମ୍ବାର ଏହି ଦାବୀ ଉତ୍ଥାପନ କରିଆସିଛୁ । ଗତ ନଭେମ୍ବର ୨୧ ତାରିଖରେ (୧୯୬୧) ମୋର ଏକ ପ୍ରଶ୍ନର ଜବାବରେ ଡକ୍ଟର ସୁବରାୟାନ୍ କହିଥିଲେ ଯେ ତୃତୀୟ ଯୋଜନାରେ ପାରାଦୀପ ଲାଗି କୌଣସି ଅର୍ଥ ଖଞ୍ଜାଯାଇନାହିଁ, ତେଣୁ ଏଥିଲାଗି କୌଣସି ଆନ୍ଦୋଳନ କରିବା ନିରର୍ଥକ । ଶ୍ରୀ ରାଜବାହାଦୂର ମଧ୍ୟ ଜଣାଇଲେ ଯେ ପାରାଦୀପ ଆଗେ ଏକ ସବୃଦ୍ଧନଆ ବନ୍ଦର ହୋଇ ପାରିବ କି ନାହିଁ ସେ ସମ୍ପର୍କରେ ବିଶେଷଜ୍ଞଙ୍କଠାରୁ କୌଣସି ରିପୋର୍ଟ ସରକାରଙ୍କ ପାଖରେ ପହଞ୍ଚି ନାହିଁ । ମୋର ଯେତେଦୂର ଖବର, ଏବସୁଦ୍ଧା ଏହା ଏକ କ୍ଷୁଦ୍ର ବନ୍ଦର ରୂପେ କାର୍ଯ୍ୟ କରୁଛି, ମଧ୍ୟମଧରଣର ବନ୍ଦର ଭାବରେ ବି ସ୍ୱୀକୃତ ଲାଭକରିନାହିଁ ।

ଓଡ଼ିଆ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଛି ଯେ ଆପଣ ଜାନୁୟାରୀ ୨ ତାରିଖରେ ପାରାଦୀପକୁ ଏକ ସବୃଦ୍ଧନଆ ବନ୍ଦର ଭାବରେ ଘୋଷଣା କରିବେ ଏବଂ ତହିଁର ଶୁଭ ଦେବେ । ଆମ ଲାଗି ଏହା ଅପେକ୍ଷା ଅଧିକ ଖୁସିର ଖବର ଆଉ କଣ ହୋଇପାରେ ? ଆମେ ଚାହୁଁ ଆପଣ କିମ୍ବା ଭାରତ ସରକାର ଘୋଷଣା କରନ୍ତୁ ଯେ ପାରାଦୀପ ଏକ ସବୃଦ୍ଧନଆ ବନ୍ଦର ହେବ, ଏହା ତୃତୀୟ ଯୋଜନା ଭିତରେ ସମାପ୍ତ ହେବ ଏବଂ ଆବଶ୍ୟକୀୟ ଅର୍ଥର ବ୍ୟବସ୍ଥା ଏଥିଲାଗି କରାଗଲାଣି । ଯଦି କୌଣସି କାରଣରୁ ଭାରତ ସରକାର ବା ଯୋଜନା କମିସନ ଏପରି ଏକ ନିଷ୍ପତ୍ତି ନେବାଭଳି ଅବସ୍ଥାରେ ପହଞ୍ଚି ପାରିନାହାନ୍ତି, ତେବେ ଆପଣ ବକ୍ତୃତା ଦେଲାବେଳେ ସେ କଥା ବି ପରିଷ୍କାର ଭାବରେ ଲୋକଙ୍କ ଆଗରେ ରଖିଦେବା ଉଚିତ ।”

## ନେହରୁଙ୍କ ତାର ଓ ଚିଠି

ବିଜୁ ପଟ୍ଟନାୟକ ଇତ୍ୟାଦି ଲୋକଙ୍କୁ ଭୁଆଁ ବୁଲାଇ ଯେ ପ୍ରଚାରଯନ୍ତ୍ର ମେଲାଦେଇଥିଲେ, ତାହା ଏଥିରେ ମାଡ ଖାଇଗଲା । ସେ ବୋଧହୁଏ ଜାଣିନଥିଲେ ଯେ ନେହରୁଙ୍କ ସହ ମୋର ଏଥି ଭିତରେ ସମ୍ପର୍କ ସ୍ଥାପିତ ହୋଇଥିଲା ଏବଂ ବିରୋଧ କଥାକୁ ସେ ଏମିତି ଏଡ଼ିଦେଇ ପାରିବେ ନାହିଁ । ମୋର ଏ ଚିଠି ପାଇବାମାତ୍ରେ ସରକାରୀ କଳ ସାହାଯ୍ୟରେ ସଭା ଲାଗି ବ୍ୟବସ୍ଥା ନକରିବାକୁ ଏବଂ ବନ୍ଦରର ଶୁଭ ଦିଆଯାଉଛି ବୋଲି ପ୍ରଚାର ନ କରିବାକୁ ନେହରୁ ତାରଦ୍ୱାରା ଓଡ଼ିଶା ସରକାରଙ୍କୁ ଜଣାଇଦେଲେ । ନେହରୁ ପ୍ରୋଗ୍ରାମ୍

ବନ୍ଦ ହେଲନାହିଁ; ମାତ୍ର ସରକାରୀ ବିଭାଗ ତରଫରୁ ବ୍ୟବସ୍ଥା ବନ୍ଦ କରାଯାଇ ସରକାରୀ କଣ୍ଟ୍ରାକ୍ଟରଙ୍କ ଜରିଆରେ ଉକ୍ତ କାର୍ଯ୍ୟ କରାଗଲା ଏବଂ ପରେ ସେମାନଙ୍କ ଖର୍ଚ୍ଚ ଅନ୍ୟ ବାଟରେ ସରକାର ଭରଣା କଲେ । ନେହରୁ ମତେ ୧୯୬୧ ଡିସେମ୍ବର ୨୧ ତାରିଖରେ ଦିଲ୍ଲୀରୁ ଏକ ପତ୍ରରେ ଲେଖିଲେ—

'ମୋର ପ୍ରିୟ ଦ୍ୱିବେଦୀ,

ଆପଣଙ୍କର ଡିସେମ୍ବର ୧୧ ତାରିଖ ପତ୍ରର ଉତ୍ତର ଦେବାରେ ବିଳମ୍ବ ହୋଇ ଯାଇଥିବାରୁ ମୁଁ ଦୁଃଖିତ ।

ଏହା ସତ୍ୟ ଯେ ମୁଁ ମୁଖ୍ୟତଃ ବାଙ୍ଗାଳ କଂଗ୍ରେସ ଅଧିବେଶନ ନିମନ୍ତେ ଓଡ଼ିଶା ଗସ୍ତରେ ଯାଉଛି । ପାରାଦୀପ ସମ୍ବନ୍ଧରେ ଏତିକ କୁହାଯାଇପାରେ ଯେ, ଏହା ମୋର ଭାରି ପସନ୍ଦ ଏବଂ ମୁଁ ଆଶା କରୁଛି ଶୀଘ୍ର ଏହାର ଏକ ନିଷ୍ପତ୍ତି କରାଯିବ । ପ୍ରକୃତରେ କହିଲେ ଏ ଦିଗରେ କେତେକ ପଦକ୍ଷେପ ନିଆଗଲାଣି । କିନ୍ତୁ ମୁଁ ପାରାଦୀପ ପରିଦର୍ଶନବେଳେ କିଛି ଠିକଣା ଜବାବ ଦେଇପାରିବାରେ ଘୋର ସନ୍ଦେହ ରହିଛି । ଏସବୁ ବ୍ୟାପାରରେ ବହୁ ଆର୍ଥିକ ସମ୍ବଳ ବ୍ୟବସ୍ଥା କଥା ରହିଛି ଏବଂ ସେଗୁଡ଼ିକ କେତେକ ବ୍ୟବସ୍ଥା ଭିତର ଦେଇ ବାହାରକୁ ଯିବ ।

ମୋର ଓଡ଼ିଶା ଗସ୍ତଟି ନିଶ୍ଚିତ ଭାବରେ ଆଂଶିକ ସରକାରୀ; କିନ୍ତୁ ଏହାର ବେସରକାରୀ ଦିଗଟି ପୃଥକକରିବା କଷ୍ଟକର । ଏହି କାରଣରୁ ଯେଉଁଠି ବେସରକାରୀ କାର୍ଯ୍ୟଟିର ପ୍ରାଧାନ୍ୟ ରହିଥାଏ, ତାକୁ ମୁଁ ବେସରକାରୀ ଗସ୍ତ ହିସାବରେ ଗଣ୍ୟକରେ ।"

## ବିଜୁଙ୍କ କାରସାଦି

ଏପରି ସମ୍ବାଦ ପାଇଲାମାତ୍ରେ ବିଜୁ ପଟ୍ଟନାୟକ କିପରି କାରସାଦି ଖେଳିଲେ ଏବଂ ପଣ୍ଡିତ ନେହରୁଙ୍କୁ ପାଲରେ ପକାଇଦେଲେ ତାହା ବଡ଼ ଆମୋଦଦାୟକ । ପଣ୍ଡିତ ନେହରୁଙ୍କୁ ଏଥିଲାଗି ମୋ ପାଖରେ କ୍ଷମା ମାଗିବାକୁ ପଡ଼ିଥିଲା । ପଣ୍ଡିତ ନେହରୁଙ୍କୁ ପାରାଦୀପ ନିଆଗଲା ଏବଂ ଯିବା ବାଟରେ ରଘୁନାଥପୁର, ଢେଙ୍କାନାଳ ଏବଂ କୁଜଙ୍ଗଠାରେ ବଡ଼ ବଡ଼ ନିର୍ବାଚନ ସଭାର ଆୟୋଜନ କରାଯାଇଥିଲା । ପଣ୍ଡିତ ନେହରୁ ଅନ୍ୟତ୍ର କେଉଁଠି ଯାହା ନକରନ୍ତି, ଏହି ସଭାମାନଙ୍କରେ ମୋର ପ୍ରତିଦ୍ୱନ୍ଦ୍ୱୀଙ୍କ ନାମ ଧରି ଭୋଟ ଦେବା ନିମନ୍ତେ ନିବେଦନ କଲେ । ସାଧାରଣତଃ ସେ କଂଗ୍ରେସ ପ୍ରାର୍ଥୀଙ୍କୁ ଭୋଟ ଦେବାକୁ କହୁଥିଲେ । ତାହାର ସୁବିଧା ନେଇ ବିଜୁ ପଟ୍ଟନାୟକ ଉକ୍ତ ସଭାମାନଙ୍କରେ ଲୋକଙ୍କୁ ବୁଝାଇଦେଲେ ଦ୍ୱିବେଦୀଙ୍କୁ ଭୋଟ ନ ଦେବାକୁ ପଣ୍ଡିତଜୀ କହିଗଲେ । 'ଦ୍ୱିବେଦୀ ଗଲେ ତାଙ୍କୁ ସମାଲୋଚନା କରିବେ । ସମାଲୋଚନା ହେଲେ ପଣ୍ଡିତ ନେହରୁ ବିଗିଡ଼ିଯିବେ; ପଣ୍ଡିତଜୀ ବିଗିଡ଼ି ଗଲେ ଓଡ଼ିଶାର ଉନ୍ନତି ନିମନ୍ତେ ଯେଉଁ ଧନ ମିଳିବାର କଥା ତାହା

ମିଳିବ ନାହିଁ ଏବଂ ଓଡ଼ିଶାର ଉନ୍ନତି ବ୍ୟାହତ ହେବ । ସାଧାରଣ ଲୋକଙ୍କ ଉପରେ ଏହାର କିପରି ପ୍ରତିକ୍ରିୟା ହେବ ତାହା ସହଜେ ଅନୁମେୟ । ମାତ୍ର ଓଡ଼ିଶାର ଯୁବକମାନଙ୍କ ଭିତରେ ମୋ ପ୍ରତି ଗୋଟାଏ ଶ୍ରଦ୍ଧାଭାବ ଜାଗ୍ରତହେଲା । ସେମାନେ ବିଚାରକଲେ, ଆମର ଜଣେ ଓଡ଼ିଆ-ପୁଅ ପଣ୍ଡିତ ନେହରୁଙ୍କ ମନରେ ଏତେ ଗ୍ଲାନିଆଁ ଯେତେବେଳେ ପୂରାଇ ପାରୁଛି, ଆମର ତାଙ୍କୁ ପଠାଇବା ଉଚିତ । ବାସ୍ତବିକ ମୁଁ ଏଥର ନିର୍ବାଚନରେ ଯେପରି ତୀବ୍ର ବିରୋଧ ଓ ଅଜସ୍ର ସମ୍ବଳର ସମ୍ମୁଖୀନ ହୋଇଥିଲି—ଓଡ଼ିଆ ଯୁବକମାନେ ଆଗଭର ହୋଇ ସ୍ୱେଚ୍ଛାକୃତ ଭାବରେ ମୋ ଲାଗି କାର୍ଯ୍ୟ କରିନଥିଲେ ମୋର ଜିତିବା ଅସମ୍ଭବ ହୋଇପଡ଼ିଥାଆନ୍ତା ।

## ଶଠତାର ପୁଣି ଗୋଟାଏ ସୀମା ରହିଛି

ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କରେ ବିରାଟ ସଭାମାନ ହେଲା । ପାରାଦୀପରେ ତ ଆଉ ବନ୍ଦରର ଶୁଭ ଦିଆଯାଇ ପାରିଲା ନାହିଁ—ମୋ ଚିଠି ଫଳରେ ନେହରୁ ତାହା ବାରଣ କରି ଦେଇଥିଲେ—ମାତ୍ର ଲୋକଙ୍କୁ ତ ପୁଣି ଭଣ୍ଡେଇବାକୁ ପଡ଼ିବ ! ତେଣୁ ସେଠାରେ ନେହରୁଙ୍କ ଶିଳାନ୍ୟାସ କାର୍ଯ୍ୟକ୍ରମ ବାତିଲ କରାଗଲା ନାହିଁ । ନେହରୁ ଗଲେ – ବହୁ ସଂଖ୍ୟାରେ ଜନସମାଗମ ଭିତରେ ନିଜ ପରିଦର୍ଶନର ସ୍ମୃତିଫଳକ ସ୍ଥାପନା କଲେ । ଲୋକଙ୍କର ବିଶ୍ୱାସ ହେଲା, ପାରାଦୀପ ବନ୍ଦରର ଶୁଭ ଦିଆଗଲା । ତାହା ସାଙ୍ଗକୁ ଆଉ ଯାହା ବା ସନ୍ଦେହ ରହିଥାଆନ୍ତା, ବିଜୁ ପଟ୍ଟନାୟକ ସେଠାରେ ଜମା ହୋଇଥିବା କେଉଟମାନଙ୍କ ପିଠିରେ ହାତବୁଲାଇ କହିଲେ—ଏଣିକି ଆମର ପୂର୍ବପୁରୁଷଙ୍କ ପରି ତୁମେମାନେ ଏହି ବନ୍ଦରରୁ ଜାଭା, ବାଲି ଓ ସୁମିତ୍ରା ଆଦି ଦ୍ୱୀପପୁଞ୍ଜକୁ ବେପାର କରିବାକୁ ଓ ମାଛ ଧରିବାକୁ ବି ଯାଇପାରିବ । ଏଭଳି କଥାର ପ୍ରଭାବ, ଏମିତି ଆଡ଼ମ୍ବରପୂର୍ଣ୍ଣ ପରିବେଶ ଓ ନେହରୁଙ୍କ ଉପସ୍ଥିତିରେ, କେମିତି ପଡ଼ିଥିବ, ଅନୁମାନ କରାଯାଇପାରେ । ଆସେମ୍ବ୍ଲି ଭୋଟ ସରିଥାଏ, ଏହା କେବଳ ପାର୍ଲିମେଣ୍ଟକୁ ଭୋଟ । ସରକାର ଓ କଂଗ୍ରେସ ଦଳର ବିରାଟ ଆୟୋଜନ ସାଙ୍ଗକୁ ମୋର ବା କି ସଂଗଠନ ! କଂଗ୍ରେସ ତରଫରୁ ୧୮ ଖଣ୍ଡ ଜିପ୍‌ଗାଡ଼ି ଓ ବହୁସଂଖ୍ୟାରେ ଟ୍ରକ ଆଦି ଯାନବାହନର ବ୍ୟବସ୍ଥା ହୋଇଥିଲା—ଭୋଟରମାନଙ୍କୁ ଗ୍ରାମରେ କେବଳ ଟଙ୍କା ଦିଆଯାଇନଥିଲା, ଗାଡ଼ି ମଟରରେ ଭୋଟଦେବା ସ୍ଥଳୀକୁ ବୁହାହେଉଥିଲା । ମୋର ଜିତିବା ସେତେ ସହଜ ନଥିଲା । ୮୦୦ରୁ ଅଧିକ ପୋଲିଙ୍ଗ୍ ବୁଥ୍‌ରେ ଲୋକ ରଖାଇ ନିୟମିତ କାର୍ଯ୍ୟ କରିବା କଷ୍ଟସାଧ୍ୟ ହେଲା । ତେଣୁ ଏହାର ସୁଯୋଗ ନେଇ କଂଗ୍ରେସ ପକ୍ଷରୁ ଅନେକ ସ୍ଥାନରେ ଭୋଟଦାତା ନଥାଇ ବି ତାଙ୍କ ନାମରେ କଂଗ୍ରେସ ପକ୍ଷକୁ ଭୋଟ ଦିଆଯାଇଥିଲା । ଏକଥା କେତେକ ପ୍ରିଜାଇଡ଼ିଙ୍ଗ୍ ଅଫିସର୍ ପରେ ମତେ କହିଥିଲେ ।

ପାରାଦୀପ ଏରସମା ନିର୍ବାଚନମଣ୍ଡଳୀରେ । ବନ୍ଦର କାରସାଦି ଯୋଗୁଁ ମୁଁ ଏଠାରେ ୭ ହଜାର ଭୋଟ କମ୍ ପାଇଲି । ଅନ୍ୟ ସ୍ଥାନମାନଙ୍କରେ ପ୍ରାୟ ସମାନ ସମାନ ଚାଲିଲା । ମାତ୍ର ଭୋଟ ଗଣତି ଓ ଫଳ ଘୋଷଣାରେ ବାଧାଦେବାର ଚେଷ୍ଟା ହେଲା । ଗଣତି

ଚାଲିଥିଲାବେଳେ ଭୁବନେଶ୍ୱରରୁ ମୁଖ୍ୟମନ୍ତ୍ରୀ ଟେଲିଫୋନ୍‌ଯୋଗେ ଏସ୍. ଡି. ଓ.ଙ୍କୁ ହୁକୁମ ଦେଲେ ଯେକୌଣସିମତେ ଫଳ ଘୋଷଣା ବନ୍ଦ ରଖିବା ନିମନ୍ତେ । ବାସ୍ତବିକ ପକ୍ଷେ ମୋର ମୋଟେ ୬୭ଟି ଭୋଟ ବେଶି ହୋଇଥିଲା । ତେଣୁ ଫଳ ଘୋଷଣା ବନ୍ଦ ରଖି ରାତିରେ କିଛି ଅବ୍ୟବସ୍ଥା କରିବାର ମସୁଧା ରହିଥିଲା । ମାତ୍ର ମୁଁ ସେଠାରେ ଉପସ୍ଥିତ ଥିବାରୁ, ଅଫିସର୍‌ମାନଙ୍କୁ ଆଇନ ଅନୁସାରେ ଗତି କରିବାକୁ ବାଧ୍ୟ କରିବାରୁ, ସେମାନେ ମୁଖ୍ୟମନ୍ତ୍ରୀଙ୍କ ଅନୁରୋଧ ସଂବାଦ ଏସ୍. ଡି. ଓ. ଙ୍କ ପାଖରୁ ପାଇବା ଆଗରୁ ନିର୍ବାଚିତ ହେବାର ସାର୍ଟିଫିକେଟ୍ ମତେ ଦେଇସାରିଥିଲେ । ସମସ୍ତ ବେଆଇନ ଚେଷ୍ଟା ପଣ୍ଡ ହେଲା । ମାତ୍ର ମୋ ବିରୁଦ୍ଧରେ ପୁଣି ଏକ ନିର୍ବାଚନ ମକଦ୍ଦମା କରାଯାଇ ମତେ ହଇରାଣ ଓ ଖର୍ଚ୍ଚାନ୍ତ କରାଗଲା । ନିର୍ବାଚନ ଟ୍ରିବୁନାଲଙ୍କ ନିର୍ଦ୍ଦେଶ ଅନୁସାରେ ପୁଣି ଭୋଟ କାଗଜର ଗଣତି ବହୁଦିନ ଧରି ଚାଲିଲା । ଫଳରେ ପୁନର୍ଗଣତି ପରେ ମୋର ଅଧିକା ୬୭ଟି ଭୋଟ ୪୫୬ରେ ପରିଣତ ହେଲା । ମୁଁ ଦ୍ୱିତୀୟ ଥର ଲାଗି କେନ୍ଦ୍ରାପଡ଼ା ନିର୍ବାଚନ ମଣ୍ଡଳୀରୁ ଲୋକସଭାକୁ ନିର୍ବାଚିତହେଲି ।

## ପାର୍ଲିମେଣ୍ଟରେ ନେହରୁ ଅପଦସ୍ଥ

ସେତେବେଳେ ନିର୍ବାଚନ ଫଳାଫଳ ବାହାରିଲା ପରେ ବି ପୁରୁଣା ଲୋକସଭାର ଏକ ଅଧିବେଶନ ବସିଥିଲା । ମୁଁ ତ ପୂର୍ବ ଲୋକସଭାର ସଦସ୍ୟ ଥିଲି; ତେଣୁ ସେଥିରେ ଯୋଗ ଦେଇଥିଲି । ଆଜିକାଲି ଅବଶ୍ୟ ସେପରି ( Lame Duck ) ଅଧିବେଶନ ଆଉ ହେଉନାହିଁ । ଆମେ ସବୁ, ବିଶେଷ ଭାବରେ ପ୍ରଜା ସୋସଲିଷ୍ଟ ପାର୍ଟି, ପାର୍ଲିମେଣ୍ଟରେ ଆନ୍ଦୋଳନ କରି ଏହା ବନ୍ଦ କରାଇ ଦେଇଥିଲୁ । ୧୯୬୨ ମାର୍ଚ୍ଚ ୧୫ ତାରିଖରେ ଏହି ଅଧିବେଶନରେ ରାଷ୍ଟ୍ରପତିଙ୍କ ଅଭିଭାଷଣ ବିଷୟରେ ତର୍କ ଚାଲିଥିଲା । ଅନ୍ୟ କଥା ଭିତରେ ଓଡ଼ିଶା ନିର୍ବାଚନ ସଂକ୍ରାନ୍ତରେ ମୁଁ କହିଥିଲି—"ନିର୍ବାଚନ ଜିଣିବା ନିମନ୍ତେ ଯେଉଁସବୁ ଉପାୟ ଓ ପନ୍ଥା ଅବଲମ୍ବନ କରାଯାଇଥିଲା, ସେ ସଂପର୍କରେ ମୁଁ କହିବାକୁ ଯାଉଛି । ମୁଁ କଡ଼ା ଭାଷା ବ୍ୟବହାର କରିବାକୁ ଚାହେଁନା—ମାତ୍ର ଆମେ ସାଧୁଭାବ ପୋଷଣ କରିବା ଦରକାର । ମୁଁ ସବୁ ପାର୍ଟି ଓ ସମସ୍ତଙ୍କୁ ନିବେଦନ କରି କହୁଛି—ଛାତିରେ ହାତ ରଖି କହନ୍ତୁ ନିର୍ବାଚନ ଜିତିବା ନିମନ୍ତେ ଯେଉଁସବୁ ପନ୍ଥା ଓ କୌଶଳ ପ୍ରୟୋଗ କରାଯାଇଛି, ସେଗୁଡ଼ିକ ଗଣତାନ୍ତ୍ରିକ ଓ ସାଂବିଧାନିକ କି ? ଅସାଧୁ ନୁହେଁ ବୋଲି କେହି କହିପାରିବ କି ? ଆମେ ଜାତିବାଦ ବିରୁଦ୍ଧରେ; କିନ୍ତୁ ନିର୍ବାଚନ ଜିତିବା ଦୃଷ୍ଟିରୁ ଯେଉଁ ନିର୍ବାଚନମଣ୍ଡଳୀରେ ଯେଉଁ ଜାତିର ଲୋକ ବେଶି, ସେଥିଲାଗି ସେହି ଜାତିର ଲୋକଙ୍କୁ ପ୍ରାର୍ଥୀ କରାଯାଉ ନାହିଁ କି ? ପ୍ରଧାନମନ୍ତ୍ରୀ ନେହରୁ ମହାତ୍ମା ଗାନ୍ଧୀଙ୍କ ଉତ୍ତରାଧିକାରୀରୂପେ ସତ୍ୟ କଥା ପ୍ରକାଶ କରନ୍ତୁ । ଅନ୍ୟକୁ ଆଙ୍ଗୁଠି ଦେଖାଇବା ଆଗରୁ ନିଜ ଦଳ କଣ କରୁଛି ତାହା ଚିନ୍ତା କରନ୍ତୁ ।"

## ଓଡ଼ିଶାରେ କଣ ହେଲା ?

ଅନ୍ୟ ପ୍ରଦେଶ କଥା ମୁଁ କହୁନାହିଁ; କିନ୍ତୁ ଓଡ଼ିଶାରେ ଯାହା ହୋଇଛି ମୁଁ ତାର ଭୁକ୍ତଭୋଗୀ । ସେଠାରେ ସମସ୍ତ ପ୍ରକାର ନିର୍ବାଚନ ଆଇନକୁ ଅବଜ୍ଞା କରାଯାଇଛି । ମୁଁ ଏଥିଲାଗି ପ୍ରଧାନମନ୍ତ୍ରୀ ନେହରୁଙ୍କ ଉପରେ ଦାୟିତ୍ୱ ଆରୋପ କରୁଛି । ଓଡ଼ିଶାର ମୁଖ୍ୟମନ୍ତ୍ରୀ ନିର୍ବାଚନ ପରେ ଘୋଷଣା କରିଛନ୍ତି ଯେ ଲୋକସଭାର ୧୯ଟି ନିର୍ବାଚନମଣ୍ଡଳୀ ଲାଗି କଂଗ୍ରେସ ଦଳ ୧୨ ଲକ୍ଷ ଟଙ୍କା ବ୍ୟୟ କରିଛି, ଅର୍ଥାତ୍ ପ୍ରତ୍ୟେକ ନିର୍ବାଚନ ମଣ୍ଡଳୀରେ ଖରଚ କରାଯାଇଛି ୬୩ ହଜାର ଟଙ୍କା । ଅଥଚ ପାର୍ଲିମେଣ୍ଟ ନିର୍ବାଚନ ମଣ୍ଡଳୀ ଲାଗି ନିର୍ବାଚନ ଆଇନରେ ମୋଟ ୨୫ ହଜାର ଟଙ୍କା ଖର୍ଚ୍ଚ କରିବାର ଅନୁମତି ରହିଛି । ସମସ୍ତଙ୍କୁ ସମାନ ଭୋଟାଧିକାର ମିଳିଛି । ପ୍ରତ୍ୟେକ ନାଗରିକ ଭୋଟର ଦେଶର ସର୍ବୋଚ୍ଚ ସ୍ଥାନରେ ବସିବାରେ ବାଧା ନାହିଁ । ମାତ୍ର ଏପରି ବ୍ୟୟବହୁଳ ନିର୍ବାଚନରେ କିଏ ଜଣେ ସାଧାରଣ ବ୍ୟକ୍ତି ପ୍ରତିଯୋଗିତା କରିପାରିବ ? ଅର୍ଥର ପ୍ରଭାବ ସମଗ୍ର ନିର୍ବାଚନ ପଦ୍ଧତିକୁ କଳୁଷିତ କରିସାରିଲାଣି ଏବଂ ଗଣତନ୍ତ୍ର ଏକ ପ୍ରହସନରେ ପରିଣତ ହେଲାଣି ।

## ପ୍ରଧାନମନ୍ତ୍ରୀ କଣ କରି ଆସିଲେ ?

ପ୍ରଧାନମନ୍ତ୍ରୀ ନେହରୁ ନିଜେ ମୋ ନିର୍ବାଚନ ମଣ୍ଡଳୀକୁ ଗସ୍ତରେ ଗଲେ । ସେଠାରେ ଜୋର୍‌ରେ ପ୍ରଚାର ଚାଲିଲା ଯେ ପ୍ରଧାନମନ୍ତ୍ରୀ ପାରାଦୀପକୁ ଏକ ସବୁଦିନିଆ ବନ୍ଦର ଭାବରେ ଭିତ୍ତିସ୍ଥାପନ କରିବେ । ଅଥଚ ମୋର ଏକ ପ୍ରଶ୍ନର ଜବାବରେ ଏହି ଗୃହରେ କିଛିଦିନ ଆଗରୁ କୁହାଯାଇଥିଲା ଯେ, ତୃତୀୟ ପଞ୍ଚବାର୍ଷିକ ଯୋଜନାରେ ସେଥି ନିମନ୍ତେ କିଛି ବ୍ୟବସ୍ଥା ନାହିଁ । ମୁଁ ପ୍ରଧାନମନ୍ତ୍ରୀଙ୍କୁ ଏକ ପତ୍ର ଲେଖି ପଠାଇଲି । ମୁଁ ତାଙ୍କୁ ପଚାରିଥିଲି—ଆପଣ କଣ କଂଗ୍ରେସ ନେତା ହିସାବରେ ନିର୍ବାଚନ ପ୍ରଚାର କାର୍ଯ୍ୟରେ ଆସୁଛନ୍ତି ନା ପାରାଦୀପ ବନ୍ଦରର ଶୁଭ ଦେବା ନିମନ୍ତେ ? ତୃତୀୟ ପଞ୍ଚବାର୍ଷିକ ଯୋଜନାରେ ପାରାଦୀପ ଏକ ବୃହତ୍ ବନ୍ଦର ହେବାର ବ୍ୟବସ୍ଥା ସ୍ୱୀକୃତ ହୋଇସାରିଲାଣିକି ? ସେ ମତେ ଲେଖି ପଠାଇଲେ ଯେ ତାଙ୍କର ଗସ୍ତ ସରକାରୀ ଓ ବେସରକାରୀ ଉଭୟ । ଏହା ସିନା ଲେଖିଲେ, କିନ୍ତୁ କଲେ କଅଣ ? ପାରାଦୀପ ଏକ ବୃହତ୍ ବନ୍ଦର ହେବାର ଭିତ୍ତି ସ୍ଥାପନ କରାଗଲା ନାହିଁ, ଏହା ସେ କେମିତି କରିପାରିଥାଆନ୍ତେ ? ମାତ୍ର ତାଙ୍କ ନିଜ ପରିଦର୍ଶନର ଏକ ସ୍ମୃତିଫଳକ ସେ ନିଜେ ସ୍ଥାପନା କରିଆସିଲେ । ପ୍ରଧାନମନ୍ତ୍ରୀଙ୍କ ପରିଦର୍ଶନର ସ୍ମୃତି ପଥର ରଖାଗଲା, ଅଥଚ ଲୋକଙ୍କୁ କୁହାଗଲା ଯେ ପାରାଦୀପକୁ ଏକ ବୃହତ୍ ବନ୍ଦର କରିବା ନିମନ୍ତେ ପ୍ରସ୍ତର ସ୍ଥାପନା କରାଗଲା । କଂଗ୍ରେସ କେଡ଼େ ବଡ଼ କାମ ନ କଲା ! ଯେଉଁ ୩ଟି ଯାକ ନିର୍ବାଚନ ସଭା ସେ ମୋ ନିର୍ବାଚନମଣ୍ଡଳୀରେ କରିଥିଲେ, ସେଥିଲାଗି ବିଜୁଳି ଓ ଅନ୍ୟ ବ୍ୟବସ୍ଥା ସରକାରୀ କଳ ପ୍ରୟୋଗ କରି କରାଗଲା । ସେ ଯଦି ସାଧୁପୁରୁଷ ହୋଇଥାନ୍ତି, ତେବେ ନିଶ୍ଚୟ ସ୍ୱୀକାର କରିବେ ଯେ ଏକ ସୁବିଧାଜନକ ସ୍ଥାନରେ ରହି ସରକାରୀ କଳର ଅପପ୍ରୟୋଗ

କରିବା ଏବଂ କ୍ଷମତାର ଅପବ୍ୟବହାର ନିଜ ପାର୍ଟି ଲାଗି କରାଇବାରେ ଏ ଦେଶରେ ସେ ଏକ ନୂତନ ନେତୃତ୍ୱ ଦେଇଛନ୍ତି । ତାଙ୍କ ମୁହଁରେ ଅନ୍ୟକୁ ସମାଲୋଚନା କରିବା ଶୋଭା ପାଉନାହିଁ ।"

ପ୍ରଧାନମନ୍ତ୍ରୀ ନେହରୁ ଜବାବ ଦେବାବେଳେ ଏ ସଂପର୍କରେ ନୀରବ ରହିଲେ । ମାତ୍ର ଅଧିବେଶନ ସ୍ଥଗିତ ହେଲାବେଳକୁ ମୁଁ ଯେତେବେଳେ ପାର୍ଲିମେଣ୍ଟ ଲବିକୁ ଫେରେ, ଦୁଆର ମୁହଁରେ ପ୍ରଧାନମନ୍ତ୍ରୀଙ୍କ ସହକାରୀ ମତେ ଅପେକ୍ଷା କରି ରହିଥିଲେ ଏବଂ ପ୍ରଧାନମନ୍ତ୍ରୀ ଆର ଦୁଆର ମୁହଁରେ ଅପେକ୍ଷା କରିଥିଲେ, ସେଠିକି ଡାକନେଲେ । ନେହରୁ ମୁଁ ପାଖକୁ ଗିବାରୁ କେବଳ ଏତିକି କହିଲେ, "Dwivedy, I was rather misled !" ତାଙ୍କୁ ଭୁଲକଥା କୁହାଯାଇଥିଲା ବୋଲି ସେ ସ୍ୱୀକାର କରି ଦୁଃଖକଲେ । ନେହରୁଙ୍କର ଅବଶ୍ୟ ଏହା ଉଦାରତା; ମାତ୍ର ସେ କିପରି ବ୍ୟଥିତ, ଏହା ଜଣାପଡ଼ିଲା ।

ଏଠାରେ ଆଉ ଏକ ବିଷୟ ଉଲ୍ଲେଖ କରୁଛି । ପାରାଦୀପ ବନ୍ଦରକୁ ଏକ ନିର୍ବାଚନ ଅସ୍ତ୍ରରୂପେ କେବଳ ଯେ ବ୍ୟବହାର କରାଗଲା, ତାହା ନୁହେଁ; ପରବର୍ତ୍ତୀ ବର୍ଷମାନଙ୍କରେ ବନ୍ଦର ନିର୍ମିତ ହେବା ପରେ ଲୋକଙ୍କ ମନରେ ଏକ ପ୍ରକାର ଗୋଟାଏ ଧାରଣା ସୃଷ୍ଟି କରାଯାଇଛି ଯେ ବିଜୁ ପଟ୍ଟନାୟକଙ୍କ ଯୋଗୁଁ ଏହା ହୋଇପାରିଲା—ଏହା ପୂର୍ବରୁ ଏ ବିଷୟରେ ଆଉ କେହି ପାଟିତୁଣ୍ଡ କରିନଥିଲେ । ଏକଥା ସତ୍ୟ ଯେ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେବା ପରେ ଏ ଦିଗରେ ଖୁବ୍ ସାହସ ସହକାରେ ଆଗେଇ ଗିବା ହେତୁ ବନ୍ଦରଟି ହୋଇପାରିଲା । ମାତ୍ର ପାରାଦୀପ ଲାଗି ଦାବି ବିଜୁ ପଟ୍ଟନାୟକ ରାଜନୀତି କ୍ଷେତ୍ରରେ ଜଣାଶୁଣା ହେବା ଆଗରୁ କରାଯାଇଛି—ବିଭିନ୍ନ ଭାବରେ ଏବଂ ବିଭିନ୍ନ ଲୋକଙ୍କ ଦ୍ୱାରା । ୧୯୫୭ ମସିହା ଡିସେମ୍ବର ୧୩ ତାରିଖରେ ଏ ସଂପର୍କରେ ମୁଁ ଲୋକସଭାରେ କହିଥିଲି—"ଭାରତ ସରକାର ସାମ୍ରାଜ୍ୟବାଦୀ ମନୋବୃତ୍ତି ପରିତ୍ୟାଗ କରିବା ଦରକାର ଏବଂ ଯେଉଁ ଅଞ୍ଚଳରେ ଆଶୁ ଉନ୍ନୟନ ଆବଶ୍ୟକ, ସେଥିପ୍ରତି ନଜର ରଖି ଆଜି ସରକାର ପାରାଦୀପକୁ ବୃହତ୍ ବନ୍ଦରରେ ପରିଣତ କରାଯିବ ବୋଲି ଘୋଷଣା କରନ୍ତୁ । ଏତିକିବେଳେ ମୁଁ ମଧ୍ୟ ସରକାରଙ୍କୁ ସତର୍କବାଣୀ ଶୁଣାଇଦେବାକୁ ଚାହେଁ—ଯଦି ଏତେ ଉଦ୍ୟମ ଓ ଏଭଳି ସୁବିଧା ଥିବା ସତ୍ତ୍ୱେ ସରକାର ଓଡ଼ିଶାର ଏ ଦାବୀ ଗ୍ରହଣ ନ କରନ୍ତି, ତେବେ ଏହାକୁ ହାସଲ କରିବା ନିମନ୍ତେ ଆନ୍ଦୋଳନ ମଧ୍ୟ ହେବ ।"

ପୁଣି ୧୯୫୭ ଜୁଲାଇ ୧୮ ତାରିଖରେ ରାଉରକେଲାଠାରୁ ପାରାଦୀପ ପର୍ଯ୍ୟନ୍ତ ରେଲ ଲାଇନ ହେବାର ଦାବୀ ଲୋକସଭାରେ ରଖିଥିଲି । ପ୍ରକୃତରେ ପାରାଦୀପ ବନ୍ଦର ହୋଇ ୧୯୬୫ ମସିହାରେ ଯାଇ ଭାରତ ସରକାର ହାତରେ ସମର୍ପଣ କରାଗଲା ଏବଂ ତାହାର ବହୁବର୍ଷ ପରେ ଏବେ କଟକରୁ ପାରାଦୀପ ପର୍ଯ୍ୟନ୍ତ ରେଲ ଯୋଗାଯୋଗ ସ୍ଥାପନ କରାଗଲାଣି, ମାଲ ସରବରାହ ହେଲାଣି; ଯାତ୍ରୀ ବି ରେଲରେ ଯାଉଛନ୍ତି । ଯେପରି ମନ୍ଥରଗତିରେ ବନ୍ଦରର ଉନ୍ନତି ହେଉଛି, ସେ ସମ୍ବନ୍ଧରେ ନ ଲେଖିବା ଭଲ ।

## ୧୯୭୨ ନିର୍ବାଚନରେ ସଂଖ୍ୟାହ୍ରାସ

ଓଡ଼ିଶାରେ ୧୯୭୧ ଜୁନ୍‌ରେ ଆସେମ୍ବ୍ଲି ଲାଗି ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ହୋଇଗଲା । ଅନ୍ୟ ସବୁ ବିରୋଧୀ ଦଳ କ୍ଷତିଗ୍ରସ୍ତ ହେଲେ; ତାଙ୍କୁ ହରାଇ କଂଗ୍ରେସର ସଂଖ୍ୟା ବୃଦ୍ଧି ପାଇଲା; ମାତ୍ର ପ୍ରଜା ସୋସଲିଷ୍ଟ ପାର୍ଟି ୧୦ଟି ସ୍ଥାନ ପାଇ ପ୍ରାୟ ପୂର୍ବସ୍ଥିତି ବଜାୟ ରଖିପାରିଲା ।

୧୯୭୨ ଲୋକସଭା ନିର୍ବାଚନରେ କିନ୍ତୁ ଆମର ଶୋଚନୀୟ ପରାଜୟ ଘଟିଲା । ଆମେ ୫ ଜଣ ପ୍ରାର୍ଥୀ ଛିଡ଼ାକରାଇଥିଲୁ । ସେଥିରୁ କେବଳ ମୁଁ କୌଣସିପ୍ରକାର ଜିତି ଆସିଲି; ଆମର ବାକୀ ୪ ଜଣ ପ୍ରାର୍ଥୀ ହାରିଗଲେ । ଏ ଚାରିଜଣ ହେଲେ ବୈଷ୍ଣବଚରଣ ମଲ୍ଲିକ—ଯାଜପୁର, ସିଦ୍ଧେଶ୍ୱର ଜେନା—ଭଦ୍ରକ, ରବୀନ୍ଦ୍ରମୋହନ ଦାସ—ବାଲେଶ୍ୱର ଏବଂ ନିଶାମଣି ଖୁଣ୍ଟିଆ—କଟକ ।

ସାରା ଭାରତରେ ମଧ୍ୟ ଆସେମ୍ବ୍ଲି ଓ ପାର୍ଲିମେଣ୍ଟ ନିର୍ବାଚନରେ ଆମେ କେବଳ ବହୁ ସ୍ଥାନ ହରାଇଲୁ ନାହିଁ, ଭୋଟରେ ମଧ୍ୟ ଶତକରା ହାର କମିଗଲା । ଅବଶ୍ୟ ପାର୍ଲିମେଣ୍ଟରେ ମୁଁ, ଆସାମର ହେମ ବରୁଆ, ମହାରାଷ୍ଟ୍ରର ନାଥ ପାଇ ଓ ମଧ୍ୟପ୍ରଦେଶର ଏଚ୍. ବି. କାମାଥ ଏହି ଚତୁଷ୍ଟୟ ପାର୍ଲିମେଣ୍ଟରେ ଖୁବ୍ ଯଶଲାଭ କରିଥିଲୁ ଏବଂ ଆମ ସଂଖ୍ୟା ଅଳ୍ପ ହୋଇଥିଲେ ସୁଦ୍ଧା ପାର୍ଟିର ସୁନାମ ହୋଇଥିଲା । ଏହି କେତେ ବର୍ଷ ଭିତରେ ମଧ୍ୟ ଦେଶ ବହୁଥର ଗୁରୁତର ସମସ୍ୟାର ସମ୍ମୁଖୀନ ହେଲା ଏବଂ ତିନିଜଣ ପ୍ରଧାନମନ୍ତ୍ରୀ ଦେଖିବାକୁ ମିଳିଲା । ଡକ୍ଟର ଲୋହିଆ ୧୯୫୫ର ମାର୍ଚ୍ଚ ୩ ତାରିଖରେ ଲକ୍ଷ୍ନୌରେ ଏକ ବିବୃତି ଦେଇ କହିଲେ—"ମୁଁ ଏପରି ଶୋଚନୀୟ ପରାଜୟ ଲାଗି ପ୍ରସ୍ତୁତନଥିଲି । ମୁଁ ଆଶାକରୁଥିଲି ହୁଏତ ୧୦,୦୦୦ ଭୋଟରେ ଜିତିବି ବା ହାରିବି । ମାତ୍ର ଫୁଲପୁରରେ କେତେକ ବିଚିତ୍ର ଘଟଣା ଘଟିଗଲା । ସାଧାରଣ ନିର୍ବାଚନରେ ମୋଟାମୋଟି ଯେଉଁ ଫଳ ହୋଇଛି ସେଥିରେ ମୁଁ ବେଶି ଦୁଃଖପାଇଛି । ଆମ ନୀତିରେ କିଛି ଭୁଲ ରହିଛି କି ? କିମ୍ବା ଆମେ ଏହା କାର୍ଯ୍ୟକାରୀ କରିବାଲାଗି ଅକ୍ଷମ କି ? କିମ୍ବା ଆମେ କାଳ ସହିତ ଖାପ ଖାଉ ନାହୁଁ କି ? ଆମେ ହୁଏତ ଭାଙ୍ଗିପଡ଼ିବା ନଚେତ୍ ସଂଶୋଧନ କରିବା—ଏପରି ନିଷ୍ପତ୍ତି ନେବାକୁପଡ଼ିବ ।"

ଡକ୍ଟର ଲୋହିଆଙ୍କର ପ୍ରତିକ୍ରିୟା ଠିକ୍ ହେଲା; ମାତ୍ର ସଂଶୋଧନ କଲାଭଳି କୌଣସି ପଦକ୍ଷେପ ସେ ନେଲେନାହିଁ । ତାଙ୍କର ବୁଝିବା ଉଚିତ ଥିଲା ଯେ ଖାଲି ମୁହଁରେ ଆମେ ଲଢ଼ୁଆ ବୋଲି ଧ୍ୱନିଦେବା କିମ୍ବା ୭ ବର୍ଷ ଭିତରେ କ୍ଷମତା ହାସଲ କରିବା ଏକ ଅତି ଅବାସ୍ତବ କଥା ଓ ବାଚାଳତା ଛଡ଼ା ଆଉ କିଛି ନୁହେଁ । ସୋସଲିଷ୍ଟ ଆନ୍ଦୋଳନକୁ ଦୁଇଖଣ୍ଡ କରି ସେ ଯେଉଁ କ୍ଷତି କଲେ, ସେଥିରେ ୭ ବର୍ଷ ତ ଦୂରର କଥା—୭୦୦ ବର୍ଷ ପର୍ଯ୍ୟନ୍ତ ଆଉ ସୋସଲିଷ୍ଟମାନେ କେବେ ଭାରତବର୍ଷରେ କ୍ଷମତାକୁ ଆସିବାର ବାଟ ବନ୍ଦ ହୋଇଗଲା ।

# ୧୯୬୨ରୁ ୧୯୭୭ ପର୍ଯ୍ୟନ୍ତ

ମୁଁ ୧୯୫୭ ରୁ ୧୯୭୦ ଡିସେମ୍ବର ୨୭ ତାରିଖ ପର୍ଯ୍ୟନ୍ତ ଲୋକସଭାର ସଭ୍ୟ ରହିଲି । ତା ପୂର୍ବରୁ ୧୯୫୨ରୁ ୧୯୫୭ ପର୍ଯ୍ୟନ୍ତ ରାଜ୍ୟସଭାର ମେମ୍ବର ଥିଲି । ମାତ୍ର ପାର୍ଲିମେଣ୍ଟର ଏହି ତୃତୀୟ ଅଧିବେଶନ ଅର୍ଥାତ୍ ୧୯୬୨ରୁ ୧୯୬୭ ପର୍ଯ୍ୟନ୍ତ ଅତ୍ୟନ୍ତ ଘଟଣାବହୁଳ ବର୍ଷ ଥିଲା । ପଣ୍ଡିତ ଜବାହରଲାଲଙ୍କର ମୃତ୍ୟୁ ଘଟିଲା । ଲାଲବାହାଦୁର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ହେଲେ । ସେ ମାତ୍ର ୧୮ ମାସ କାଳ ଶାସନ ଦାୟିତ୍ୱରେ ରହିବା ପରେ ରୁଷଦେଶର ତାସ୍‌କେଣ୍ଟଠାରେ ପ୍ରାଣ ହରାଇଲେ । ତାଙ୍କ ପରେ ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀ ହେଲେ । ଏହି ସମୟରେ ଚୀନ ଯୁଦ୍ଧ, ପାକସ୍ତାନ ଯୁଦ୍ଧ ଆସିଲା, ଭାରତ ସରକାର ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ହେଲା । ଏସବୁ ସହିତ ମୁଁ ଘନିଷ୍ଠଭାବରେ ଜଡ଼ିତହେଲି । ମୁଁ ସେତେବେଳେ ପ୍ରଜାସୋସଲିଷ୍ଟ ପାର୍ଟିର ଦଳପତି । ସହକାରୀ ଦଳପତି ହେଲେ ହରିବିଷ୍ଣୁ କାମାଥ ଏବଂ ଚିଫ୍‌ହୁଇପ୍ ହେଲେ ନାଥ ପାଇ । ମୁଁ ପୁଣି ନିଖିଳ ଭାରତ ପାର୍ଟିର ଡେପୁଟି ଚେୟାରମାନ୍ ରହିଥାଏ । ତେଣୁ ମୋର ଦାୟିତ୍ୱ ଖୁବ୍ ବଢିଯାଇଥିଲା ଏବଂ ବହୁ ଜଟିଳ ପରିସ୍ଥିତି ଭିତରେ କେତେକ ନିଷ୍ପତ୍ତି ମଧ୍ୟ ନେବାକୁ ହେଉଥିଲା ।

## ଦଳପତି ନିର୍ବାଚନରେ ମୁଁ ବିସ୍ମିତ

ବହୁତ କମ୍ ଭୋଟରେ ଜିତିଥିବାରୁ ଓଡ଼ିଶା ହାଇକୋର୍ଟରେ ଏକ ରିଟ୍ ମୋ ବିରୁଦ୍ଧରେ ଦାଖଲ ହୋଇଗଲା । ଅବଶ୍ୟ ନିର୍ବାଚନ ଫଳାଫଳରେ ରିଟ୍ ଗୃହୀତ ହୁଏ ନାହିଁ—ଏଇଟା ହୋଇପାରିଲା ନାହିଁ । ମତେ କିନ୍ତୁ ଦିଲ୍ଲୀ ନ ଯାଇ କଟକରେ ଅଟକି ଯିବାକୁ ପଡ଼ିଲା । ମୁଁ ଯାଇ ଠିକ୍ ଲୋକସଭା ଆରମ୍ଭ ହେବାର ପୂର୍ବଦିନ ପହଞ୍ଚି ପାରିଲି, କିନ୍ତୁ ଆମ ପାର୍ଟିର ଦଳପତି ନିର୍ବାଚନ ବନ୍ଦ କରି ରଖାଯାଇଥିଲା—ମୁଁ ଗଲାପରେ କରାଗଲା ଏବଂ ତରବର କରି ପଠାଗଲା; କାରଣ ତହିଁପରଦିନ ସକାଳୁ ଲୋକସଭା ଆରମ୍ଭ । ଆମ ସଭ୍ୟମାନଙ୍କର ସ୍ଥାନ ନିରୂପଣ ଆମଠାରୁ ତାଲିକା ପାଇଲେ ହବାର କଥା । କିନ୍ତୁ ମୁଁ ଯେ ଦଳପତି ହେବି ଏ ଆଶା ମୋର ନ ଥିଲା କିମ୍ବା ଏଥିପ୍ରତି ମୁଁ କୌଣସି ଆଗ୍ରହ ଦେଖାଇନଥିଲି । ଆମ ଭିତରେ ବହୁ ଯୋଗ୍ୟ ଲୋକ ଥିଲେ । ଏଚ୍ ବି. କାମାଥ ମୋଠାରୁ ଖାଲି ବୟସରେ ବଡ଼ ନ ଥିଲେ, ଶିକ୍ଷା, ଅଭିଜ୍ଞତା ଓ ଖ୍ୟାତି ସବୁଥିରେ ଅନୁପମ । ତାଙ୍କ ପରି ଦକ୍ଷ ପାର୍ଲିମେଣ୍ଟାରିୟାନ୍ ଭାରତରେ ଖୁବ୍ ବିରଳ ଅଛନ୍ତି । ଆଇ. ସି. ଏସ୍. ଚାକିରି ଛାଡ଼ି ନେତାଜୀଙ୍କ ସାଙ୍ଗରେ ସେ ଯୋଗଦେଲେ ୧୯୩୮ ମସିହାରେ ଏବଂ ସେହିଦିନୁ ଭାରତର ରାଜନୀତି କ୍ଷେତ୍ରରେ ନିରବଚ୍ଛିନ୍ନ ସେବା କରି ଆସୁଛନ୍ତି । ଶାସନବିଧାୟକ ସଭାରେ ହିଁ ତାଙ୍କର ଦକ୍ଷତା ଫୁଟିଉଠିଥିଲା ଏବଂ ସେ ଶାସକ ଦଳର ଏକ ଶକ୍ତିଶାଳୀ ସମାଲୋଚକ ଭାବରେ ଖ୍ୟାତି ଲଭିଲେ । ସେ ଅବିବାହିତ, ନିର୍ଭୀକ, ଉଚ୍ଚନୈତିକ ନୀତିବାନ୍ ବ୍ୟକ୍ତି ଏବଂ ଦୃଢ଼ ଧର୍ମବିଶ୍ୱାସୀ । ନିଜର ନିର୍ଭୀକତା ଓ ସ୍ପଷ୍ଟବାଦିତା ଯୋଗୁଁ ତାଙ୍କୁ ଅନେକ କ୍ଷେତ୍ରରେ

ବହୁ ବାଧାର ସମ୍ମୁଖୀନ ହେବାକୁ ପଡ଼ିଛି । ୧୯୫୩ ରେ ଫରଓ୍ୱାର୍ଡ଼ ବ୍ଲକ ପ୍ରଜାସୋସଲିଷ୍ଟ ପାର୍ଟିରେ ଯୋଗଦେବା ପରେ ସେ ଆମ ଭିତରକୁ ଆସିଗଲେ । ମାତ୍ର ତାଙ୍କୁ ସର୍ବଦା ନିର୍ବାଚନରେ ପ୍ରଚଣ୍ଡ ପ୍ରତିଦ୍ୱନ୍ଦ୍ୱିତାର ସମ୍ମୁଖୀନ ହେବାକୁ ପଡ଼ୁଥିଲା, ତେଣୁ ଧାରାବାହିକ ଭାବରେ ଲୋକସଭାକୁ ନିର୍ବାଚିତ ହେବା କଷ୍ଟସାଧ୍ୟ ହେଉଥିଲା । ଯାହାହେଉ ଏଥରକ ସେ ସାଧାରଣ ନିର୍ବାଚନରେ ଆସିପାରିଥିଲେ । ଆମ ସାଙ୍ଗରେ ପୁଣି ଥିଲେ ନାଥ ପାଇ । ମୋ ଅପେକ୍ଷା ବୟସରେ କମ୍ ହେଲେ କଣ ହେବ, ଅତି ବିଚକ୍ଷଣ ବୁଦ୍ଧି ସମ୍ପନ୍ନ—ଜଣେ ଉଚ୍ଚକୋଟୀର ବାଗ୍ମୀ—ବାରିଷ୍ଟର ମଧ୍ୟ । ଆନ୍ତର୍ଜାତିକ ସୋସଲିଷ୍ଟ ଆନ୍ଦୋଳନରେ ଖ୍ୟାତି ଅର୍ଜନ କରିଥିଲେ । ସେ ଏପରି ଚମତ୍କାର ଇଂରେଜୀ ଭାଷଣ ଦେଉଥିଲେ ଯେ, ସେ କହିବାର ଅଛି ବୋଲି ଜଣାପଡ଼ିଲେ ଲୋକସଭା ଭରପୂର ହୋଇଯାଉଥିଲା । ହେମବରୁଆ ସେହିପରି ଇଂରେଜୀରେ ଜଣେ ପଣ୍ଡିତ ଏବଂ ଏକ କଲେଜର ପ୍ରିନସିପାଲ୍ ଥିଲେ । ସେ ସୋସିଲିଷ୍ଟ ଆନ୍ଦୋଳନ ସହ ବହୁକାଳରୁ ସଂପୃକ୍ତ ଥିଲେ । ଆସାମୀ ସାହିତ୍ୟରେ ତାଙ୍କର ଅଲୌକିକ ପାରଦର୍ଶିତା ଦେଖାଇଥିଲେ ଏବଂ ଆସାମର ସଂସ୍କୃତି ଓ ସାହିତ୍ୟ ବିଷୟରେ ବହୁ ପୁସ୍ତିକା ଲେଖିଥିଲେ । ପାର୍ଲିମେଣ୍ଟରେ ପ୍ରଶ୍ନ ପଚାରିବାରେ ସେ ଥିଲେ ଅତି ତୀକ୍ଷ୍ଣ ଏବଂ ତାଙ୍କ ତୀବ୍ର ସମାଲୋଚନା ଶାସକ ମହଲକୁ ଅଥୟ କରିଦେଉଥିଲା । ସେ ଥିଲେ ମୋର ପରମ ସମର୍ଥକ ଏବଂ ବହୁବର୍ଷ ପର୍ଯ୍ୟନ୍ତ ପାର୍ଲିମେଣ୍ଟାରୀ ପାର୍ଟିର ହ୍ୱିପ୍ ରୂପେ କାର୍ଯ୍ୟ କରିଥିଲେ । ୧୯୫୭ରୁ ୧୯୭୦ ପର୍ଯ୍ୟନ୍ତ ସେ ଧାରାବାହିକ ଭାବରେ ଲୋକସଭାର ସଭ୍ୟ ରହିଥିଲେ । ୧୯୭୧ ନିର୍ବାଚନରେ ତାଙ୍କର ପରାଜୟ ଘଟିଲା । ମୋର ତାଙ୍କ ପରିବାର ସହ ଅତି ଘନିଷ୍ଠତା ଜଡ଼ିତ ଥିଲା । କାଳର ଗତି ବିଚିତ୍ର—ଏପରି ଏକ ନିଷ୍କଳଙ୍କ ଚରିତ୍ରବାନ୍ ସାହସୀ ବ୍ୟକ୍ତିଙ୍କର ଶେଷକୁ ଅତି ଅଳ୍ପଦିନ ପରେ ସାଙ୍ଘାତିକ ମସ୍ତିଷ୍କ ବେମାରୀରେ ପ୍ରାଣହାନୀ ଘଟିଲା । ଧନ୍ୱୋଲ୍ଲିଷ୍ଟ ଚିକିତ୍ସାର ବ୍ୟବସ୍ଥା କରାଯାଇ ସୁଦ୍ଧା ଉପଶମ ହୋଇପାରିଲାନାହିଁ ।

ମାତ୍ର କେତେବର୍ଷ ଲାଗି ରାଜ୍ୟସଭାର ସଭ୍ୟରୂପେ ବାଙ୍କବିହାରୀ ଦାସ ପାର୍ଲିମେଣ୍ଟାରୀ କାର୍ଯ୍ୟରେ ଖୁବ୍ ପାରଦର୍ଶିତା ଦେଖାଇପାରିଥିଲେ ଏବଂ ବିଭିନ୍ନ ବିଦେଶୀ ରାଜ୍ୟରୁ ଗସ୍ତଲାଗି ନିମନ୍ତ୍ରଣ ପାଇଥିଲେ । ଦେଶର ଏହି ନିର୍ବାଚନରେ ଏନ୍. ଜି. ଗୋରେ କି ଅଶୋକ ମେହେଟା ନିର୍ବାଚିତ ହୋଇପାରିନଥିଲେ । ଏମାନଙ୍କ ତୁଳନାରେ ମୋତେ ନେତା ବାଛିବାର କୌଣସି ବିଶେଷ ଯୁକ୍ତି ନଥିଲା । ମୁଁ ଅବଶ୍ୟ ୧୦ ବର୍ଷ ଏକାଧାରାରେ ରାଜ୍ୟସଭା ଓ ଲୋକସଭାରେ ମିଶି ରହିଥିଲି ଏବଂ ଦ୍ୱିତୀୟ ଲୋକସଭାରେ ପାର୍ଲିମେଣ୍ଟାରିପାର୍ଟିର ସେକ୍ରେଟାରୀ ରହିଥିଲି । ଆଚାର୍ଯ୍ୟ କ୍ରିପାଲନୀ ଏବଂ ସେ ଇସ୍ତଫା ଦେବା ପରେ ଅଶୋକ ମେହେଟା ପାର୍ଟିର ନେତା ହୋଇଥିଲେ । ମୋ ସପକ୍ଷରେ ବୋଧହୁଏ ମେମ୍ବରମାନେ ଆଉ ଏକ ବିଷୟ ବିଚାରକୁ ନେଲେ । ମୁଁ ବୋଧହୁଏ ସେତେବେଳକୁ ଆମ ପାର୍ଟି ଭିତରେ ପାର୍ଲିମେଣ୍ଟରେ ସବୁଠୁଁ ବେଶି ପରିଚିତ ଥିଲି ଏବଂ ଶାସକ ଦଳ ଓ ଅନ୍ୟ ବିରୋଧୀ ବନ୍ଧୁମାନଙ୍କ ଭିତରେ ମୋର ଗୋଟାଏ ପ୍ରତିଷ୍ଠା ହୋଇଯାଇଥିଲା । ଯାହା ବା କାରଣ

ଥାଉ, ମତେ ସମସ୍ତେ ଏକମତରେ ନେତା ନିର୍ବାଚିତ କରିବାରେ ମୁଁ ଚକିତହେଲି; ମାତ୍ର ଦୁଃଖିତ ହେଲି ନାହିଁ । ଏ ଦାୟିତ୍ୱ ଏକ ଗୁରୁତର କାର୍ଯ୍ୟ । ପାର୍ଲିମେଣ୍ଟରେ ଏକ ବିରୋଧୀ ଦଳର ନେତା ହିସାବରେ ନାନା ଜଟିଳ ପରିସ୍ଥିତି ବିଷୟରେ ନିଷ୍ପତ୍ତି ନେବାକୁ ପଡ଼ିବ; ନାନା ଲୋକସମ୍ପର୍କ ବଢ଼ାଇବାକୁ ପଡ଼ିବ ଏବଂ ସର୍ବୋପରି ପାର୍ଟିର ଯେଉଁ ପୋଖତ, ପୁରୁଖା, ଅଭିଜ୍ଞ ସଭ୍ୟମାନେ ଲୋକସଭା ଓ ରାଜ୍ୟସଭାରେ ଥିଲେ ତାଙ୍କୁ ଚଳାଇ ନେବାକୁ ପଡ଼ିବ । ଏଇଟା ଯେକୌଣସି ନେତା ପକ୍ଷରେ ସବୁଠୁଁ କଠିନ କାମ । କାରଣ ଆମ ପାର୍ଟିରେ ସମସ୍ତେ ପ୍ରାୟ ଏକା ପରିସ୍ଥିତିରୁ ଆସିଥାଆନ୍ତି ଏବଂ ପୂର୍ଣ୍ଣ ଗଣତାନ୍ତ୍ରିକ ରୀତି ଅନୁସରଣ କରାଯାଉଥାଏ । ମୁଖ୍ୟ ସମସ୍ୟାଗୁଡ଼ିକରେ କହିବାଲାଗି ବେଶି ଲୋକଙ୍କର ଆଗ୍ରହ ରହେ । ସେତେବେଳେ ପାର୍ଲିମେଣ୍ଟରେ ଭଲ ଯୁକ୍ତିଯୁକ୍ତ ଭାଷଣର ଆଦର ଥିଲା । ଖାତିର୍ ମିଳୁଥିଲା । ସମ୍ବାଦପତ୍ରମାନେ ମଧ୍ୟ ବିଶେଷ ଦୃଷ୍ଟି ଦେଉଥିଲେ । ସାଧାରଣତଃ ବଡ଼ବଡ଼ମାନେ କହନ୍ତି—ନୂତନ ଓ ଅନ୍ୟ ମେମ୍ବରଙ୍କ ଭିତରେ ଈର୍ଷା ଜାତହୁଏ । ପଣ୍ଡିତ ନେହରୁ ଓ ଅନ୍ୟମାନଙ୍କର ପାର୍ଲିମେଣ୍ଟରେ ଉପସ୍ଥିତି ଯୋଗୁଁ ଅଧିକ ଶୃଙ୍ଖଳା ରହୁଥିଲା । ପଣ୍ଡିତ ନେହରୁ ବଞ୍ଚିଥିବା ପର୍ଯ୍ୟନ୍ତ ପାର୍ଲିମେଣ୍ଟ ଅଧିବେଶନ ଭିତରେ କେବେହେଲେ ଦିଲ୍ଲୀ ଛାଡ଼ି ଯାଉନଥିଲେ ଏବଂ ଅଧିକାଂଶ ସମୟ ପାର୍ଲିମେଣ୍ଟରେ ଆଲୋଚନା ବେଳେ ଉପସ୍ଥିତ ରହୁଥିଲେ, ନଚେତ୍ ପାର୍ଲିମେଣ୍ଟରେ ତାଙ୍କ ଅଫିସରେ କାମ କରୁଥିଲାବେଳେ ଏଣେ ଦୂରଗୃହରେ କଣ ଘଟୁଥିଲା ସେଥିପ୍ରତି କାନ ଡେରୁଥିଲେ । ଥରେ ଆମ ପାର୍ଟିର ଜଣେ ସଭ୍ୟ ରାମଜୀ ବର୍ମାଙ୍କ ନାମରେ ଏକ ବେସରକାରୀ ବିଲ୍ ବାଲଟ୍‌ରେ ଉଠିଗଲା । ସେ ଦାବି କରୁଥିଲେ ଯେ ମେମ୍ବରମାନଙ୍କୁ ଖାଲି ରେଲଟିକଟ ନଦିଆଯାଇ ସରକାରୀ କର୍ମଚାରୀଙ୍କ ପରି ରେଲପାସ୍ ଓ ତତ୍‌ସହିତ ଅନ୍ୟ ସୁବିଧା ମିଳୁ । ଆମେ ପାର୍ଟିରେ ବିଲ୍‌ଟିକୁ ପସନ୍ଦ କଲୁନାହିଁ କିମ୍ବା ସମର୍ଥନ କଲୁନାହିଁ । ମାତ୍ର ଆମର ଜଣେ ପଛୁଆ ମେମ୍ବର ଏକ ମଉକା ପାଇଥିଲା ବୋଲି ଆଲୋଚନା କରିବା ନିମନ୍ତେ ଅନୁମତି ଦେଇଥିଲୁ । କଂଗ୍ରେସ ମେମ୍ବରଙ୍କର ଏଥିପ୍ରତି ବି ଖୁବ୍ ସମର୍ଥନ ଥିଲା । ସେମାନେ ସର୍ବଦା ଅଧିକ ସୁବିଧା କେମିତି ମେମ୍ବରଙ୍କୁ ମିଳିବ ସେହି ଚେଷ୍ଟାରେ ଥିଲେ । ଏହି ଆଲୋଚନାଟିକୁ କେହି ବିଶେଷ ଗୁରୁତ୍ୱ ଦେଉନଥିଲେ କିମ୍ବା ଅଧିକ ସଭ୍ୟ ବା ନେତା ବି ଉପସ୍ଥିତ ନଥିଲେ । ମୁଁ ଅବଶ୍ୟ ମୋ ପାର୍ଟି ସଦସ୍ୟଙ୍କୁ ଉତ୍ସାହ ଦେବା ନିମନ୍ତେ ଏବଂ କୌଣସି ଆକ୍ରମଣରୁ ତାଙ୍କୁ ରକ୍ଷା କରିବା ନିମନ୍ତେ ଉପସ୍ଥିତ ଥିଲି । ହଠାତ୍ ଦେଖାଗଲା ପଣ୍ଡିତ ନେହରୁ ଲୋକସଭା ଭିତରେ ଉପସ୍ଥିତ । ଜଣକ ଛଡ଼ା ଆଉ କେହି ମନ୍ତ୍ରୀ ବି ନଥିଲେ । ଘଣ୍ଟି ଆଡ଼େ ବାଜିଗଲା ନେହରୁ କାହିଁକି ଗୃହଭିତରେ ! ସେଣ୍ଟ୍ରାଲ ହଲ୍ ଓ ଅନ୍ୟତ୍ର ଯେଉଁ ମେମ୍ବର ମନ୍ତ୍ରୀମାନେ ଗୃହାପାନ ବା ଗପସପରେ ମଜ୍ଜି ଥିଲେ ସମସ୍ତେ ଭିତରକୁ ଦଉଡ଼ିଲେ । ଦେଖୁଦେଖୁ ପ୍ରଧାନମନ୍ତ୍ରୀ ନେହରୁ ବିଲ୍‌ର ବିରୋଧକରି ବଡ଼ ତାତ୍ସଲ୍ୟ କଲେ । ବିରୋଧ ସଭ୍ୟ ଜଣେ ଆଣିଥିବାରୁ ବିରୋଧକୁ ଆକ୍ରମଣ କରିବାର ଏକ ମଉକା ତାଙ୍କୁ ମିଳିଗଲା ଏବଂ ଯେମିତି ତାଙ୍କ ଅଫିସରେ

ଥିବା ଡାକବାଜାରେ ଶୁଣିପାରିଛନ୍ତି, ଧାଇଁ ଆସିଲେ । ଅବଶ୍ୟ ସେ ଆମ ପାର୍ଟିକୁ ବଦ୍‌ନାମ୍ କରିବାରୁ ମତେ ପୁଣି ଏଥିରେ କହିବାକୁ ପଡ଼ିଲା ଏବଂ ମୁଁ ପ୍ରକୃତ ସ୍ଥିତି ବୁଝାଇ ଦେବାରୁ, କପିଳ କଂଗ୍ରେସ ଲୋକେ ଭିତରେ ଭିତରେ ଏହାକୁ ସମର୍ଥନ ଦେଉଥିଲେ ପ୍ରକାଶ କରିବା ହେତୁ ପାର୍ଟିର କ୍ଷତି ହେଲାନାହିଁ । ନେହରୁ ପାର୍ଲିମେଣ୍ଟର କାର୍ଯ୍ୟକୁ କିଭଳି ଗୁରୁତ୍ୱ ଦେଉଥିଲେ ଏହା ତାହାର ଏକ ନମୁନା । ମେମ୍ବରଙ୍କ ଉପରେ ଏହାର ପ୍ରଭାବ ପଡ଼ୁଥିଲା । ସେମାନେ ବୁଝୁଥିଲେ, ଏଣୁତେଣୁ କଥା କହିଲେ ନେହରୁ ଗୃହଭିତରେ ନଥିଲେ ସୁଦ୍ଧା ଜାଣିପାରୁ-ଥିଲେ । ତେଣୁ ପାର୍ଲିମେଣ୍ଟର ମର୍ଯ୍ୟାଦା ରକ୍ଷାକରାଯାଉଥିଲା ଏବଂ ଅନ୍ୟଙ୍କ କଥା ଶୁଣିବାର ମଉକା ମିଳୁଥିଲା । କିନ୍ତୁ ଆଜିକାଲି ପାର୍ଲିମେଣ୍ଟର ନେତାଙ୍କର ପାର୍ଲିମେଣ୍ଟ କାର୍ଯ୍ୟ ପ୍ରତି ସେପରି ଶ୍ରଦ୍ଧା ଓ ସମ୍ମାନ ନାହିଁ—ପାର୍ଲିମେଣ୍ଟ ଭିତର କାର୍ଯ୍ୟରେ ମଧ୍ୟ ସେପରି ଆଗ୍ରହ ପରିଲକ୍ଷିତ ହୁଏନାହିଁ । ଫଳରେ ପାର୍ଲିମେଣ୍ଟର କାର୍ଯ୍ୟବିଧି ବଦଳିଗଲାଣି । ଅଧିକ ପରିମାଣରେ ବିଶୃଙ୍ଖଳା ଓ ଅଯଥା ବାଦବିବାଦ ଓ ପାଟିତୁଣ୍ଡରେ ସମୟ ଯାଉଛି । କୌଣସି ଯୁକ୍ତିସଂପନ୍ନ ତଥ୍ୟ ଓ ତର୍କର ଅବତାରଣା ଲାଗି ବାୟୁମଣ୍ଡଳ ବା ଅବକାଶ ନାହିଁ । ଆମର ସର୍ବୋଚ୍ଚ ଲୋକପ୍ରତିନିଧି ସଭାର ଏ ଶୋଚନୀୟ ପରିସ୍ଥିତି ଯୋଗୁଁ ଦେଶବାସୀ ଦୁଃଖିତ ଓ ଆମେ ସମସ୍ତେ ଚିନ୍ତିତ । ପାର୍ଲିମେଣ୍ଟ ମେମ୍ବରମାନେ ନିଜେ ବୁଝୁନ୍ତି ନାହିଁ ଯେ ସେମାନଙ୍କର ସମ୍ମାନ ଓ ପ୍ରତିଷ୍ଠା କେତେ ତଳକୁ ଖସିଗଲାଣି । ନେତା ବୁଝୁନାହାନ୍ତି ଯେ ଏପରି ଭାବରେ ବହୁକଷ୍ଟରେ ଏ ଦେଶରେ ପ୍ରତିଷ୍ଠିତ ପାର୍ଲିମେଣ୍ଟାରୀ ପରମ୍ପରାକୁ ନଷ୍ଟ କରିଦେବାଦ୍ୱାରା କେତେ ବଡ଼ କ୍ଷତି ଘଟୁଛି । ହୁଏତ ଏପରି କ୍ଷତି କରାଇବା ପଶ୍ଚାତ୍ତରେ କିଛି ଉଦ୍ଦେଶ୍ୟ ଥାଇପାରେ । ବିରୋଧପକ୍ଷ ଓ ସରକାରୀପକ୍ଷ ଉଭୟ ପାର୍ଲିମେଣ୍ଟର ଇଜ୍ଜତ ରକ୍ଷାଲାଗି ସମାନ ପରିମାଣରେ ଦାୟୀ । ଆମବେଳେ ଆମେ ବିରୋଧ କରିବାରେ କେବେ କୋମଳ ଭାବ ଦେଖାଇନାହୁଁ କିମ୍ବା ସରକାର ପକ୍ଷକୁ ତାର ଉଚିତ ସ୍ଥାନ ଦେବାରେ କେବେ କୁଣ୍ଠା କରୁନଥିଲୁ । ମୁଁ ଏହି ନୀତିକୁ ପାର୍ଟି ଭିତରେ ରଖି ସବୁ ପାର୍ଟି ସଭ୍ୟଙ୍କୁ ପୂରା ମଉକା ଦେବାର ସ୍ଥିରକଲି । ମେମ୍ବରମାନେ ନିଜଆଡ଼ୁ ପ୍ରସ୍ତାବ ନ କଲେ ମୁଁ କୌଣସି ବିଷୟରେ କହିବା କିମ୍ବା କୌଣସି କମିଟିକୁ ଯିବା ନିମନ୍ତେ ନିଜଆଡ଼ୁ ଆଗ୍ରହ ଦେଖାଉନଥିଲି । ଏହା ଫଳରେ ଆମ ଦଳ ଭିତରେ ଥିବା ଅତି ଦକ୍ଷ ବ୍ୟକ୍ତିମାନଙ୍କର ମୋ ପ୍ରତି କୌଣସି ଈର୍ଷାଭାବ ରହିଲାନାହିଁ । ମୁଁ ସମସ୍ତଙ୍କର ଭକ୍ତି, ଶ୍ରଦ୍ଧା ଓ ସମ୍ମାନ ପାଇଲି । ଏପରି ପରିସ୍ଥିତି ହେଲା ଯେ କୌଣସି ବିଷୟ ଉତ୍ଥାପନ କରିବା ଆଗରୁ ମତେ ସେମାନେ ଜଣାଇଦେଉଥିଲେ ବା ପରାମର୍ଶ ଦେଉଥିଲେ । କେତେକ ତ କେଉଁ କେଉଁ ବିଷୟ କହିବା ଯଥାର୍ଥ ହେବ, ତାହା ବି ବୁଝିନେଉଥିଲେ । ଏକ ପ୍ରତିଯୋଗିତାର ଭାବ ବା ବଡ଼ପଣିଆ ଦେଖାଇବାର ଧାରଣା ନ ଦେବାରୁ ମୋର ନେତୃତ୍ୱ ଦୃଢ଼ଭାବରେ ପ୍ରତିଷ୍ଠିତ ହୋଇପାରିଥିଲା । ୧୯୬୨ରୁ ୭୦ ପର୍ଯ୍ୟନ୍ତ ମୁଁ ପାର୍ଲିମେଣ୍ଟରେ ପାର୍ଟିର ନେତାରୂପେ କାର୍ଯ୍ୟ ତୁଲାଇଥିଲି ।

ଏଥିରେ ଆହୁରି ଏକ ସୁବିଧା ମୋ ପକ୍ଷରେ ଏବଂ ପାର୍ଟି ପକ୍ଷରେ ମଧ୍ୟ ହୋଇପାରିଲା । ପାର୍ଟି ତରଫରୁ ପ୍ରାୟ ସବୁ ପ୍ରଧାନ ବିଷୟରେ ମୁଁ ଲୋକସଭାରେ ମୁଖପାତ୍ର ହୋଇଗଲି ଏବଂ ମୋର ଶ୍ରେଷ୍ଠ ବଡ଼ ସବୁ କଥାର ଗୁରୁତ୍ୱ ସରକାରୀ ପକ୍ଷ ଦେବାକୁ ଲାଗିଲେ । ପ୍ରଶ୍ନ ପଚାରିବାର ହିସାବ ନେଲେ ବି ମୁଁ ଯେ ବହୁତଗୁଡ଼ାଏ ପ୍ରଶ୍ନ ପଚାରୁଥିଲି, ତାହା ନୁହେଁ । ମାତ୍ର ଯେତକ ପଚାରୁଥିଲି, ତାହା ଏଭଳି ତଥ୍ୟଅନୁସନ୍ଧାନକାରୀ ହେଉଥିଲା ଯେ ସରକାରୀ ପକ୍ଷ ବଡ଼ ହଇରାଣରେ ପଡ଼ିଯାଉଥିଲେ । ତେଣୁ ମୋର କୌଣସି ପ୍ରଶ୍ନ ପାର୍ଲିମେଣ୍ଟରେ ଉପସ୍ଥାପିତ ହେଲେ, ବେଳେ ବେଳେ ସଂପୃକ୍ତ ମନ୍ତ୍ରୀ ବ୍ୟକ୍ତିଗତ ଭାବରେ ମତେ ଟେଲିଫୋନ୍ କରି କିମ୍ବା ଅନ୍ୟଭାବରେ ମୁଁ କଣ ଜାଣିବାକୁ ଚାହେଁ ବୋଲି ପଚାରି ନେଉଥିଲେ । ଏପରି ଏକ କାରଣରୁ ହୋଇପାରିଲା ବୋଲି ମୁଁ ଶୁଣିଛି ।

## ସିରାଜୁଦ୍ଦିନ୍ କାଣ୍ଡର ପ୍ରତିକ୍ରିୟା

ସିରାଜୁଦ୍ଦିନ ଘଟଣାଟି ପାର୍ଲିମେଣ୍ଟରେ ମୁଁ ଉଠାଇ କିଭଳି ଛିଡ଼ା ରାଜନୀତିକ ମହଲର ଦୁର୍ନୀତି ପଦାରେ ପକାଇଦେଇଥିଲି, ତାହାର ବିସ୍ତୃତ ବର୍ଣ୍ଣନା ପରେ କରିବି । ସେ ସମ୍ପର୍କରେ ମୋ ଦ୍ୱାରା ଲିଖିତ ଇଂରାଜୀ ବହି 'Political Corruption in India'ରେ କିଞ୍ଚିତ ବର୍ଣ୍ଣନା ରହିଛି । ଏହି ସଂକ୍ରାନ୍ତରେ ପଣ୍ଡିତ ନେହରୁଙ୍କୁ ବାଧ୍ୟହୋଇ ତାଙ୍କ ମନ୍ତ୍ରୀମଣ୍ଡଳର ସଦସ୍ୟ କେଶବ ଦେବ ମାଳବ୍ୟଙ୍କର ଇସ୍ତଫା ଗ୍ରହଣ କରିବାକୁ ପଡ଼ିଥିଲା; କିନ୍ତୁ ତାଙ୍କ ବିରୁଦ୍ଧରେ ସୁପ୍ରିମ୍ କୋର୍ଟର ବିଚାରପତି ଏସ. କେ. ଦାସ ଯେ ମନ୍ତବ୍ୟ ଦେଇଥିଲେ ତାହା ସେ ଗୋପନ ରଖିଥିଲେ । ପଣ୍ଡିତ ନେହରୁ 'ଅତି ଦୁଃଖର ସହ' ମାଳବ୍ୟଙ୍କ ଇସ୍ତଫା ଘୋଷଣା କଲାବେଳେ ବିଚାରପତି ଦୋଷୀ ସାବ୍ୟସ୍ତ କରିଥିବା ବିବରଣୀକୁ ପ୍ରକାଶ କରି ନଥିଲେ । ମୁଁ ତତ୍‌କ୍ଷଣାତ୍ ଛିଡ଼ାହୋଇ ପ୍ରଶ୍ନ କଲି ଯେ– ଏହା କଣ ସତ୍ୟ ନୁହେଁ ଯେ ଜଜ୍‌ଙ୍କର ବିଚାର ୭୫ ପୃଷ୍ଠାସମ୍ବଳିତ ଏବଂ ତାଙ୍କୁ ଯେଉଁ ୫ଟି ବିଷୟ ବିଚାର ନିମନ୍ତେ ପଠାଯାଇଥିଲା, ତହିଁରୁ ୨ଟିରେ ମାଳବ୍ୟଙ୍କୁ ସେ ଦୋଷୀ ସାବ୍ୟସ୍ତ କରିଛନ୍ତି ? ମୋର ଏଭଳି ପ୍ରଶ୍ନରେ ସାରା ଗୃହରେ ଚାଞ୍ଚଲ୍ୟ ଖେଳିଗଲା ଏବଂ କଂଗ୍ରେସ ମେମ୍ବରମାନେ ଚିତ୍କାର କରିଉଠିଲେ – ସ୍ୱାଙ୍କୁ କେମିତି ଏ ଖବର ମିଳିଲା ? ପଣ୍ଡିତ ନେହରୁ ବଡ ଅଡ଼ୁଆ ପରିସ୍ଥିତିରେ ପଡ଼ିଗଲେ; କାରଣ ସେ ମାଳବ୍ୟଙ୍କ ଇସ୍ତଫା ଘୋଷଣା କରିବା ସଙ୍ଗେ ସଙ୍ଗେ କହିଥିଲେ ଯେ ମାଳବ୍ୟଙ୍କ ସାଧୁତା ସମ୍ବନ୍ଧରେ ତାଙ୍କ ମନରେ ତିଳେହେଲେ ସନ୍ଦେହ ନଥିଲା । ମୋର ପ୍ରଶ୍ନର ସେ ଆଉ କଣ ଜବାବ ଦେଇପାରନ୍ତେ ? କେବଳ ଏତିକି କହି "I donot know how does he know ?" (ମୁଁ ଜାଣେନା ତାଙ୍କୁ କେଉଁଠୁ ଖବର ମିଳିଛି) କହି ବସିପଡ଼ିଲେ । ମାତ୍ର ମୋର ପ୍ରଶ୍ନ ସତ୍ୟ; ତାକୁ ସେ ପ୍ରତିବାଦ କରିପାରିଲେନାହିଁ । ବାସ୍ତବ ସ୍ଥିତି ହେଉଛି, ମୋର ପାର୍ଲିମେଣ୍ଟାରୀ ଜୀବନରେ ମୁଁ ଅନେକ ସଙ୍କଟମୟ ମୁହୂର୍ତ୍ତରେ ଅତି ଅଜଣା ଅଶୁଣା ସୂତ୍ରରୁ ସବୁ ଖବର ପାଉଥିଲି । ଯେଉଁଦିନ ପଣ୍ଡିତ ନେହରୁଙ୍କର ଏଭଳି

ଘୋଷଣା ହେଲା, ସେହିଦିନ ଠିକ୍ ପାର୍ଲିମେଣ୍ଟକୁ ଯିବା ପୂର୍ବରୁ ଜଣେ ବନ୍ଧୁ ଆସି ମତେ ଭେଟି ବିଗ୍ରହପତିଙ୍କ ରିପୋର୍ଟର କେତୋଟି ଅଂଶ ଦେଖାଇଦେଇଗଲେ । ମୁଁ ତାଙ୍କ ନାମ ଜାଣେନା; ତାଙ୍କୁ ଆଜି ବି ଦେଖିଲେ ଚିହ୍ନି ପାରିବି କି ନା ସନ୍ଦେହ । ଏହି ଘଟଣା ପରେ ମୁଁ ମନ୍ତ୍ରୀମାନଙ୍କଠାରୁ ଶୁଣିଛି ପଣ୍ଡିତ ନେହରୁ ସେମାନଙ୍କୁ କହିଥିଲେ—ଦ୍ୱିବେଦୀ କରୁଥିବା ପ୍ରଶ୍ନଗୁଡ଼ିକ ଆପାତତଃ ନିର୍ଦ୍ଦୋଷ ବୋଲି ମନେହେଉଥିଲେ ସୁଦ୍ଧା ଖୁବ୍ ସତର୍କ ରହିବା ଉଚିତ ।

ଆଗରୁ ଲେଖିଛି, ୧୯୬୨ ପରେ ତୃତୀୟ ଲୋକସଭା ଅମଳରେ ନାନା ଗୁରୁତ୍ୱର ଘଟଣା-ମାନ ଘଟିଗଲା । ସେଥିରେ ଆମେ ଖୁବ୍ ଉଲ୍ଲେଖଯୋଗ୍ୟ ଅଂଶ ଗ୍ରହଣ କରିଥିଲୁ । ପ୍ରତ୍ୟେକ କାର୍ଯ୍ୟରେ ଆମେ ଖାଲି ବିରୋଧୀ ପକ୍ଷ ନୁହେଁ, ଅନେକ ସମୟରେ ସରକାରୀ ଦଳର କେତେକଙ୍କର ଗୋପନୀୟ ସମର୍ଥନ ଲାଭ କରିପାରୁଥିବାରୁ ଆମ ପକ୍ଷରେ ଏପରି କୃତିତ୍ୱ ହାସଲ କରିବା ସମ୍ଭବ ହେଉଥିଲା । ଦ୍ୱିତୀୟରେ ଆମ ପାର୍ଟି ଭିତରେ ଏପରି ସୌହାର୍ଦ୍ଦ୍ୟ ରହିଥିଲା ଯେ, ଆମ ଭିତରୁ କୌଣସି ମେମ୍ବର କୌଣସି ଏକ କାର୍ଯ୍ୟ କଲେ ସତେକି ସାରା ପାର୍ଟି ଏଥିଲାଗି ସମସ୍ତ ଶକ୍ତି ଖଟାଇଲାପରି ଭାବ ସୃଷ୍ଟି ହେଉଥିଲା ଏବଂ ତାର ପ୍ରଭାବ ଗୃହ ମଧ୍ୟରେ ପରିଲକ୍ଷିତ ହେଉଥିଲା । ମୁଁ ସେଥିସକାଶେ ମୋର ସେଉଁ ପ୍ରଜା ସୋସଲିଷ୍ଟ ପାର୍ଟି ସାଥୀମାନେ ମତେ ନେତା ବାଛିଥିଲେ ଏବଂ ବରାବର ଅକୁଣ୍ଠ ସହଯୋଗ ଦେଲେ, ତାଙ୍କ ନିକଟରେ କୃତଜ୍ଞ ।

ଏହି ତୃତୀୟ ଲୋକସଭାଟିରେ ଦେଶର ବହୁ ମୁଖିଆ ଲୋକ ବି ବିଭିନ୍ନ ପାର୍ଟିରେ ଥିଲେ । କେତେକ ସାଧାରଣ ନିର୍ବାଚନ ବେଳେ ଆସିଥିଲେ—ଯଥା—କମ୍ୟୁନିଷ୍ଟ ପାର୍ଟିର ଏ. କେ. ଗୋପାଳନ୍, ପ୍ରଫେସର୍ ହୀରେନ୍ ମୁଖାର୍ଜି; ସ୍ୱତନ୍ତ୍ର ପାର୍ଟିର ପ୍ରଫେସର୍ ରଙ୍ଗା, ଦାଣ୍ଡେକର, ସି. ସି. ଦେଶାଇ; ସ୍ୱାଧୀନ ସଭ୍ୟ ପ୍ରକାଶ ବୀର ଶାସ୍ତ୍ରୀ; ଜନସଂଘର ଅଟଳବିହାରୀ ବାଜପେୟୀ; ପରେ ଉପନିର୍ବାଚନରେ ଆସିଲେ ଆଚାର୍ଯ୍ୟ କୃପାଳନୀ, ଡକ୍ଟର ଲୋହିଆ, ଏମ୍ ଆର୍. ମସାନୀ ଏବଂ ଜବାହାରଲାଲଙ୍କ ମୃତ୍ୟୁ ପରେ ତାଙ୍କ ନିର୍ବାଚନମଣ୍ଡଳୀରୁ ବିଜୟଲକ୍ଷ୍ମୀ ପଣ୍ଡିତ । ଆଗରୁ କଂଗ୍ରେସ ଦଳର ଯେଉଁମାନେ ମନ୍ତ୍ରୀମଣ୍ଡଳରେ ଥିଲେ, ତାଙ୍କ ବ୍ୟତୀତ ୟୁ. ଏନ. ଧେବର, ମହାବୀର ତ୍ୟାଗୀ, କେ. ହନୁମନ୍ତିଆ, ହରିଶ୍ଚନ୍ଦ୍ର ମାଥୁର, ହରେକୃଷ୍ଣ ମହତାବଙ୍କ ପରି ବହୁ ପ୍ରବୀଣ ଅଭିଜ୍ଞ ଲୋକ ନିର୍ବାଚିତ ହୋଇ ଆସିଥିଲେ । ସ୍ୱାଧୀନତା ଆନ୍ଦୋଳନ ବେଳୁ କେତେକଙ୍କ ସହ ପରିଚୟ ଥିଲା ଏବଂ ପାର୍ଲିମେଣ୍ଟରେ ୧୦ ବର୍ଷ ରହିଥିବାଯୋଗୁଁ ଅନେକଙ୍କ ସହ ଘନିଷ୍ଠ ପରିଚୟ ଓ କେତେକଙ୍କ ସହ ବ୍ୟକ୍ତିଗତ ସାମାଜିକ ସମ୍ପର୍କ ସ୍ଥାପିତ ହୋଇ-ଯାଇଥିଲା । ସଂକ୍ଷେପରେ କହିବାକୁ ଗଲେ, ମୋର ଆଚରଣରେ ଏବଂ ରାଜନୀତିକ ମତ ବିଷୟରେ ସମସ୍ତେ ଭଲରୂପେ ଜାଣିଥିଲେ । ତେଣୁ କି ବିରୋଧୀ କି ଶାସକଦଳ ଉଭୟର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ସହ ଏକପ୍ରକାର ସଦ୍‌ଭାବ ଜାତ ହୋଇଯାଇଥିଲା । କ୍ରମେ ମୁଁ ଏପରି ଏକ ଅବସ୍ଥାକୁ ଆସିଗଲି ସତେକି ସାରା ବିରୋଧ ଭିତରେ କିଛି ସଂଯୋଗ ଆଣିବାକୁ

ପଣ୍ଡଲେ ଶାସକଦଳ ତରଫରୁ ପ୍ରଥମେ ମୋ ସହ ଆସି ପରାମର୍ଶ କରାହେଉଥିଲା—ଅଥଚ ଆମ ଦଳଟି ଖୁବ୍ କ୍ଷୁଦ୍ର ଏବଂ କମ୍ୟୁନିଷ୍ଟ ଦଳ ସର୍ବବୃହତ୍ତ ଦଳରୂପେ ସ୍ୱୀକୃତ ଲାଭ କରିଥିଲା । ଏଥିରେ ଆମ ପାର୍ଟି ପକ୍ଷରେ ଆଉ ଏକ ସୁବିଧା ହେଲା ଯେ ଆମର କେହି ନା କେହି ସଭ୍ୟ ପ୍ରଧାନ କମିଟିଗୁଡ଼ିକରେ ସଭ୍ୟ ହୋଇପାରୁଥିଲେ । ଆମର ସଂଖ୍ୟା ଦୃଷ୍ଟିରୁ ଆମେ ସ୍ଥାନ ପାଇବା କଥା ନୁହେଁ—ମାତ୍ର ଅବସ୍ଥାଚକ୍ରରେ ଆମର ଲୋକେହିଁ ନିର୍ବାଚିତ ହୋଇପାରିବାର ସବୁ ସୁଯୋଗ ଜୁଟିଯାଉଥିଲା ।

## ଚୀନ-ଭାରତ ବିବାଦ

ଏହି ତୃତୀୟ ଲୋକସଭାରେ ଦେଶ ଯେତେ ସମସ୍ୟାର ସମ୍ମୁଖୀନ ହୋଇଥିଲା, ତହିଁରୁ ଚୀନ-ଭାରତ ବିବାଦ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଏହି ସମସ୍ୟା ବାସ୍ତବିକ ୧୯୬୨ରେ ଯିବା ଯୁଦ୍ଧରୂପନେଲା—ତାହାର ବହୁପୂର୍ବରୁ ଦେଖାଦେଇଥିଲା ଏବଂ ଚୀନ ଲୁକ୍କାୟିତଭାବରେ ଲଡ଼ାକ୍ର ଉପର ଅଞ୍ଚଳରେ ରାସ୍ତା ଆଦି ତିଆରି କରି ଆମର ସ୍ଥାନମାନ ଦଖଲ କରି ଯାଇଥିଲା । ୧୯୫୯ରୁ ତିବ୍ବତ ଦଖଲ କରିସାରିଥିଲା । ଏ ବିଷୟରେ ପ୍ରଜା ସୋସଲିଷ୍ଟ ପାର୍ଟି ପାର୍ଲିମେଣ୍ଟ ଓ ବାହାରେ ତୀବ୍ର ବିରୋଧ କରିଆସିଥିଲା । ଏପରିକି ୧୯୫୦ ନଭେମ୍ବର ୨୨ ତାରିଖରେ ସୋସଲିଷ୍ଟ ପାର୍ଟିର ନାଗପୁର ବୈଠକରେ କାର୍ଯ୍ୟକାରୀ ସମିତି ପ୍ରସ୍ତାବକରି କହିଥିଲା ଯେ "ତିବ୍ବତ ଉପରେ ଆକ୍ରମଣ ଅର୍ଥ ଏସିଆମହାଦେଶ ସାରିବର୍ଣ୍ଣ ତିବ୍ବତ ଅଧିବାସୀ ଏବଂ ଭାରତ ଉପରେ ଆକ୍ରମଣ ।" ପରେ ପୁଣି ପ୍ରଜାସୋସଲିଷ୍ଟପାର୍ଟି କାର୍ଯ୍ୟକାରୀ ସମିତି ୧୯୫୯ ଏପ୍ରିଲ ୧୭ ତାରିଖର ଏକ ପ୍ରସ୍ତାବ କରି ଦଲାଇ ଲାମା ଏବଂ ତିବ୍ବତ ଲୋକଙ୍କର ବିଦ୍ରୋହକୁ ସ୍ୱାଗତ ଜଣାଇଥିଲା ଏବଂ ତିବ୍ବତ ଅଧିବାସୀଙ୍କର ଆତ୍ମନିୟନ୍ତ୍ରଣ ଅଧିକାରକୁ କ୍ଷୁଣ୍ଣକରୁଥିବା ହେତୁ ଚୀନ ବିରୁଦ୍ଧରେ ମତ ପ୍ରକାଶ କରିବା ଏବଂ ଜନମତ ଗଠନ କରିବା ନିମନ୍ତେ ଭାରତ ସରକାରକୁ ଆହ୍ୱାନ କରିଥିଲା । ପାର୍ଲିମେଣ୍ଟରେ ମଧ୍ୟ ଏହି ସମ୍ପର୍କରେ ବହୁ ସତର୍କବାଣୀ ଭାରତ ସରକାରଙ୍କୁ ଶୁଣାଇ ଦିଆ ଯାଇଥିଲା । ତତ୍କାଳୀନ ପ୍ରଜା ସୋସଲିଷ୍ଟ ଦଳର ନେତା ଆଚାର୍ଯ୍ୟ କ୍ରିପାଲନୀ ଏବଂ ଅନ୍ୟମାନେ ଚୀନ ତିବ୍ବତକୁ ଦଖଲ କରିବା ବିରୁଦ୍ଧରେ ଆବାଜ ଉଠାଇଥିଲେ ଏବଂ ବହୁ କଂଗ୍ରେସ ଲୋକ ମଧ୍ୟ ଏହି ମତ ସହ ନିଜର ସମ୍ମତି ଜଣାଇଥିଲେ । ଆକାଶାଇ ଚୀନ ଦଖଲ କରିବା କଥା ତ ପଣ୍ଡିତ ନେହରୁ ବହୁବର୍ଷ ପର୍ଯ୍ୟନ୍ତ ପାର୍ଲିମେଣ୍ଟ ପାଖରୁ ଲୁଚାଇ ରଖିଥିଲେ । ପରେ ଆମେ ପାର୍ଲିମେଣ୍ଟରେ ନାନାଭାବରେ ଗୁଡ଼ାଇ ଗୁଡ଼ାଇ ପ୍ରଶ୍ନ ପଚାରି ବିଷୟଟିକୁ ପଦାକୁ ବାହାରକଲୁ । ପଣ୍ଡିତ ନେହରୁ ଏହା ଘୋଡ଼ାଇ ରଖିଥିବା କଥା ପ୍ରକାରାନ୍ତରେ ସ୍ୱୀକାର କଲେ । ୧୯୬୨ରେ ଯିବା ସଙ୍ଘର୍ଷମୂଳକ ପରିସ୍ଥିତି ରହିଥିଲା, ୧୯୫୯ ବେଳକୁ ତିବ୍ବତ ଅଧିକାର ବ୍ୟତୀତ ପରିସ୍ଥିତି ହେଲା—ଚୀନ ତାର ମାନଚିତ୍ରରେ ଭାରତର ୪୦,୦୦୦ ବର୍ଗମାଇଲ ଅଞ୍ଚଳକୁ ନିଜ ଦେଶର ଅନ୍ତର୍ଭୁକ୍ତ କରିଥିଲା । ଭାରତୀୟ

ଅଞ୍ଚଳ ଭିତରେ 'ଲଡ଼ାକ' ଉପର ଦେଇ ଗାର୍ଟକ୍‌ଠାରୁ ସିଙ୍କିଆଙ୍ଗ୍‌ ପର୍ଯ୍ୟନ୍ତ ମଟର ଯାତାୟତ କରିପାରିବା ଭଳି ଏକ ରାସ୍ତା ତିଆରି କରି ଭାରତୀୟ ଅଞ୍ଚଳ ଦଖଲ କରିଗଲା । ମାକ୍‌ମୋହନ ଲାଇନ୍‌ର ଦକ୍ଷିଣକୁ ଭାରତ ଭିତରେ ଲଙ୍ଗଜୁ ଅବସ୍ଥିତ ଏବଂ ଭାରତୀୟ ପହରା ସେଠି ଜଗୁଆଳୀ ଥିଲେ । ଚୀନ ତା ଭିତରକୁ ପଶି ଆସିଥିଲା । ଲଡ଼ାକ୍ ଅଞ୍ଚଳ ଭିତରକୁ ଆସିବାଦ୍ୱାରା ପଶ୍ଚିମ ସୀମାନ୍ତ ଭଙ୍ଗ କରିଥିଲା । ଅକ୍‌ଟୋବର ୨୧ ତାରିଖରେ ପୂର୍ବ ଲଡ଼ାକ୍ ଅଞ୍ଚଳରେ ଭାରତୀୟ ପ୍ରହରୀଙ୍କ ଉପରେ ଅତର୍କିତ ଆକ୍ରମଣ ହେଲା ଏବଂ ହିମାଳୟର ଦକ୍ଷିଣରେ ଭିତରକୁ ବହୁ ଅଞ୍ଚଳ ଦାବି କରିବାରେ ଲାଗିଲା । ଖାଲି ଯେ ଭାରତୀୟ ଅଞ୍ଚଳ ଦଖଲ କରିଗଲା ତାହା ନୁହେଁ, ଚୀନର ଅସଲ ଉଦ୍ଦେଶ୍ୟ ହେଲା ହିମାଳୟ ଯେ ଆମର ଏକ ପ୍ରାକୃତିକ ସୁରକ୍ଷା ଦୁର୍ଗରୂପେ ରହିଥିଲା ସେ ଆଡ଼ୁ ମଧ୍ୟ ଭାରତକୁ ବିପଦ ମୁଖରେ ପକାଇବା ।

## ହିନ୍ଦି ଚୀନି ଭାଇ ଭାଇ

କିନ୍ତୁ ଏପରି ଗୁରୁତର ଘଟଣାମାନ ଘଟିଲେ ସୁଦ୍ଧା ପଣ୍ଡିତ ନେହରୁ ପଞ୍ଚଶୀଳ ନୀତି ଧରି ଚୀନ ସହ ବନ୍ଧୁତା ବାନ୍ଧିଥିଲେ ଏବଂ ହିନ୍ଦି ଚୀନି ଭାଇ ଭାଇ ଧ୍ୱନି ଦିଆଯାଉଥିଲା । ଏଣେ କମ୍ୟୁନିଷ୍ଟ ପାର୍ଟି ଚୀନ ସପକ୍ଷରେ ପ୍ରବଳ ପ୍ରଚାର ଚଳାଉଥିଲା ଏବଂ କମ୍ୟୁନିଷ୍ଟ ରାଜ୍ୟ କେବେହେଲେ ଆକ୍ରମଣମୂଳକ ମନୋବୃତ୍ତି ଧରେନା—ଏହି ଧାରଣା ସୃଷ୍ଟି କରିଗଲା । ଆମର ଦେଶରକ୍ଷା ବିଭାଗର ମନ୍ତ୍ରୀ ଥିଲେ ଭି. କେ. କୃଷ୍ଣମେନନ୍ । ସେ ପଣ୍ଡିତ ନେହରୁଙ୍କୁ ବୁଝାଇଦେଲେ ଯେ ଆମ ଦେଶ ଉପରେ କେବେ ଆକ୍ରମଣ ହେଲେ ଆମେରିକା ସାହାଯ୍ୟରେ ପାକିସ୍ତାନ ଆଡ଼ୁ ହିଁ ହେବ ଏବଂ ଦେଶର ରକ୍ଷା ବ୍ୟବସ୍ଥା ଚୀନର ନୁହେଁ, ପାକିସ୍ତାନର ସମ୍ମୁଖୀନ ହେବା ଭଳି କରିବାକୁ ପଡ଼ିବ । ସେହି ଖାତିରେ ସାରା ଦେଶରକ୍ଷାର ଯୋଜନା ହେବାକୁ ଲାଗିଲା, ଯାହା ଫଳରେ ଚୀନର ସମ୍ମୁଖୀନ ହେଲା ଭଳି ଆମର କୌଣସି ସାମର୍ଥ୍ୟ ବା ପ୍ରସ୍ତୁତି ହୋଇପାରିନଥିଲା । ଚୀନ ବିପଦ ବିଷୟରେ ବାରମ୍ବାର ସୂଚନା ଦେବା ସତ୍ତ୍ୱେ ବନ୍ଧୁତାର ମୋହରେ ଆମେ ଭାସିଗଲୁ । ଦେଶର ବିରୋଧ ସତ୍ତ୍ୱେ ପଣ୍ଡିତ ନେହେରୁ ଚୀନ ସରକାର ସହ ଚିଠିପତ୍ର କାରବାର କରୁଥିଲେ ଏବଂ ଶେଷକୁ ଚୁଉ-ଏନ-ଲାଇଙ୍କୁ ଭାରତ ଆସିବା ନିମନ୍ତେ ନିମନ୍ତ୍ରଣ କଲେ । ଏହି କଥାବାର୍ତ୍ତାର ବିରୋଧ କରି ମୁଁ ୧୯୬୦ ମସିହା ମାର୍ଚ୍ଚ ମାସ ୧୬ ତାରିଖରେ କହିଥିଲି— ଚୀନ ଆମ ଦେଶର ୧୨,୪୦୦ ବର୍ଗମାଇଲ ଦଖଲ କରି ଛାଡ଼ିବାକୁ ପ୍ରସ୍ତୁତ ନ ଥିବାବେଳେ ଏବଂ ଆମର ପ୍ରହରୀ ପୁଲିସଙ୍କୁ ହତ୍ୟା କରିଥିଲାବେଳେ, ଚୀନ ପ୍ରଧାନମନ୍ତ୍ରୀଙ୍କୁ ଡାକିଆଣି ପୁଣି କଥାବାର୍ତ୍ତା କାହିଁକି ? ନେହରୁ କି କି ବିଷୟରେ କଥାବାର୍ତ୍ତା କରିବେ ପାର୍ଲିମେଣ୍ଟକୁ ଜଣାଇଦିଅନ୍ତୁ । ଆମେ ପ୍ରତିଶ୍ରୁତି ଚାହୁଁ ଯେ ଆମ ଦେଶର ଶାସିତ ବା ଅଣଶାସିତ କୌଣସି ଅଂଶ ଚୀନ ପାଖରେ ସମର୍ପଣ କରାଯିବନାହିଁ । ଚୀନ ସହ ଆମର ସୀମା ସମ୍ପର୍କରେ ଆଲୋଚନା ହେବା ପୂର୍ବରୁ ଆକ୍ରମଣକାରୀ ଆମ ଅଞ୍ଚଳ ଛାଡ଼ିଯିବାକୁ ନିର୍ଭର ଜବାବ

ଦେବେ । ଆମେ ପରିଷ୍କାର ଜଣାଇଦେବାକୁ ଚାହୁଁ ଯେ, ଏ କଥାବାର୍ତ୍ତାରେ ଆମର ବିଶ୍ୱାସ ନାହିଁ । ଆମ ଦେଶକୁ ଯେ ଆକ୍ରମଣ କରିବ ସେ ଆମର ଘୃଣ୍ୟ । ତେଣୁ ଚୁଉ-ଏନ୍-ଲାଇ ସରକାରଙ୍କର ଅତିଥି ହୋଇ ଆସିପାରନ୍ତି, ସେ କିନ୍ତୁ ଭାରତୀୟ ଲୋକଙ୍କର ଅତିଥି ନୁହନ୍ତି ।

ମୁଁ ୧୯୬୦ ମସିହା ଜାନୁୟାରୀ ମାସରେ ଦାର୍ଜିଲିଙ୍ଗ୍, କାଲିମ୍ପଙ୍ଗ୍, ସିକିମ୍, ଭୁଟାନ, ସୀମାଞ୍ଚଳ ବୁଲି ଦେଖିଆସିଥିଲି ଏବଂ ସେଠାରେ ଆମ ସୀମାନ୍ତ କିପରି ବିପଦସଙ୍କୁଳ ପରିସ୍ଥିତି ଭିତରେ ରହିଥିଲା ତାହା ଆମର ଜବାନ୍ ଓ ଅନ୍ୟ ସାଧାରଣ ବ୍ୟକ୍ତିଙ୍କଠାରୁ ସମ୍ବାଦ ଆଣିଥିଲି । ସିକିମ୍‌ର କାଜୀ ଲେଣ୍ଡୁପ୍ ଦୋର୍ଜୀ, ଯେ ପରେ ପ୍ରଥମ ମୁଖ୍ୟମନ୍ତ୍ରୀ ହୋଇଥିଲେ, କାଲିମ୍ପଙ୍ଗ୍ ଓ ଗାଙ୍ଗ୍‌ଟକ୍‌ଠାରେ ମୁଁ ତାଙ୍କର ଅତିଥି ହୋଇଥିଲି ଏବଂ ସେ ନିଜେ ମୋ ସାଙ୍ଗରେ ଯାଇ ବିଭିନ୍ନ ଅଞ୍ଚଳ ମତେ ବୁଲାଇ ଦେଖାଇଥିଲେ । ସେତିକାଳର ଭୁଟାନ୍‌ର ନରପତି ଜିଗମ୍ ଦୋର୍ଜୀଙ୍କ ସହ ମୋର କାଲିମ୍ପଙ୍ଗରେ ଭୁଟାନ ପରିସ୍ଥିତି ବିଷୟରେ ଆଲୋଚନା ହେଲା । ସେ କେତେକ ଭାରତୀୟ ଅଫିସରଙ୍କ ବିରୁଦ୍ଧରେ ନାନା କଥା ଉଠାଇଲେ ଏବଂ ଏଗୁଡ଼ିକ ତାଙ୍କ ପକ୍ଷରେ ସରକାରୀ ସୂତ୍ରରେ ଉଚ୍ଚ କର୍ତ୍ତୃପକ୍ଷଙ୍କ ନିକଟରେ ପହଞ୍ଚାଇବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ବୋଲି ମତେ କହିଲେ । ମୁଁ ପରେ ଦିଲ୍ଲୀ ଫେରି ପଣ୍ଡିତ ନେହରୁଙ୍କୁ ସେ କଥା ଘରୋଇଭାବରେ ଜଣାଇଦେଇଥିଲି ଏବଂ କିଛି କାର୍ଯ୍ୟାନୁଷ୍ଠାନ କରାଗଲା ବୋଲି ମୋର ଖବର । କାରଣ ଜିଗ୍‌ମି ଦୋର୍ଜୀ ଅତ୍ୟନ୍ତ ଭାରତପ୍ରେମୀ ଥିଲେ ଏବଂ ତାଙ୍କ କଥାରେ ଆନ୍ତରିକତା ଥିବା ପରି ମୁଁ ଅନୁଭବ କରିଥିଲି । ସିକିମ୍ ବି ସେତେବେଳକୁ ସ୍ୱାଧୀନ ରାଜ୍ୟ ଥାଏ । ସେହି ଦେଶଗୁଡ଼ିକ ସହ ଘନିଷ୍ଠ ସମ୍ପର୍କ ସ୍ଥାପନ ବିଷୟରେ ଜୋର୍ ଦେଇ ମୁଁ ସେହି ମାର୍ଚ୍ଚ ୧୬ ତାରିଖ ଭାଷଣରେ କହିଥିଲି—"କାଲିମ୍ପଙ୍ଗ୍‌ଠାରୁ ଭୁଟାନ ପର୍ଯ୍ୟନ୍ତ ଆମର ସିଧାସଳଖ ସଡ଼କ ନିର୍ମାଣ କରାଯାଉ । ତାହାହେଲେ ଭୁଟାନ ସହିତ ବାଣିଜ୍ୟ ଓ ଅନ୍ୟ କାରବାର ପଥ ଉନ୍ମୁକ୍ତ ହୋଇଯିବ । ମୁଁ ଗତ ଜାନୁୟାରୀ ମାସରେ ସେ ଅଞ୍ଚଳକୁ ଯାଇଥିଲି ଏବଂ କାଲିମ୍ପଙ୍ଗ୍‌ଠାରେ ବାସ କରୁଥିବା ତିବ୍ବତୀୟମାନଙ୍କର ନାନା ଅସୁବିଧା ଦେଖିଆସିଛି । ସେଠାରେ ଥିବା ଚୀନ ସରକାରର ବାଣିଜ୍ୟ ଦୂତାବାସ ଏକପ୍ରକାର ଗୁଇନ୍ଦା କାର୍ଯ୍ୟ କରୁଛି ଏବଂ ତହିଁରେ ଥିବା କର୍ମଚାରୀମାନେ କଲିକତା ଓ ଅନ୍ୟାନ୍ୟ ସ୍ଥାନକୁ ଅବାଧରେ ଯାଇପାରୁଛନ୍ତି । ଅଥଚ ତିବ୍ବତରେ ଆମର ଭାରତୀୟ ବେପାରୀଙ୍କ ଉପରେ କଟକଣା ରଖାଯାଇଛି । ସରକାର ଏଥିଲାଗି ଦୃଷ୍ଟି ଦିଅନ୍ତୁ ।"

ଏହି ଭାବରେ କେବଳ ଆମ ଦଳ ତରଫରୁ ନୁହେଁ, ଦେଶର ଅନ୍ୟ ଜାତୀୟତାବାଦୀ ଦଳଗୁଡ଼ିକର ମୁଖପାତ୍ରମାନେ ପାର୍ଲିମେଣ୍ଟରେ ଚୀନ୍ ଆକ୍ରମଣର ଦୃଢ଼ ପ୍ରତିରକ୍ଷା ବ୍ୟବସ୍ଥା କରାଯିବା ନିମନ୍ତେ ନିରନ୍ତର ଦାବୀ କରୁଥିଲେ ଏବଂ ଚୀନ୍ ସହ କଥାବାର୍ତ୍ତାର ବିରୋଧ କରୁଥିଲେ ।

## ଦୁଇ ପ୍ରଧାନମନ୍ତ୍ରୀଙ୍କର ବିଚାର

ପାର୍ଲିମେଣ୍ଟର ବିଭିନ୍ନ ଦଳର ବିରୋଧକୁ ନ ଶୁଣି ପଣ୍ଡିତ ନେହରୁ ଚୁଏ-ଏନ୍-ଲାଇଙ୍କ ସହ ଦିଲ୍ଲୀଠାରେ ୧୯୬୦ ମସିହା ଏପ୍ରିଲ ୨୦ ତାରିଖରେ କଥାବାର୍ତ୍ତା ହେଲେ । ଏ କଥାବାର୍ତ୍ତାର କିଛି ଫଳ ହେଲନାହିଁ । ଚୀନ୍ ପ୍ରଧାନମନ୍ତ୍ରୀ ଅଧିକୃତ ଅଞ୍ଚଳ ଛାଡ଼ିବାକୁ କିମ୍ବା ଅନ୍ୟ ଘଟଣାଗୁଡ଼ିକ ସମ୍ବନ୍ଧରେ ଭାରତୀୟ ପକ୍ଷର କୌଣସି ପ୍ରକାର ଯୁକ୍ତିକୁ ଗ୍ରହଣ କଲେ ନାହିଁ । ତେଣୁ ଦୁଇ ପ୍ରଧାନମନ୍ତ୍ରୀଙ୍କ କଥାବାର୍ତ୍ତା ଫଳରେ ଏ ସମସ୍ୟାର ଏକ ଶାନ୍ତିପୂର୍ଣ୍ଣ ସମାଧାନ ହେବାର ଆଶା ସଂପୂର୍ଣ୍ଣରୂପେ ମଉଳିଗଲା । ବରଂ ଯେଉଁ ଯୁଗ୍ମଦସ୍ତଖତରେ ଇସ୍ତାହାର ପ୍ରକାଶପାଇଲା ସେଥିରେ କୁହାଗଲା ଯେ ଦୁଇପକ୍ଷ ନିଜ ନିଜର ବକ୍ତବ୍ୟ ଉପସ୍ଥାପନ କଲେ ଏବଂ କେତେକ ସମସ୍ୟା ବିଷୟରେ ଦୁଇପକ୍ଷର ସରକାରୀ କର୍ତ୍ତୃପକ୍ଷ ବିଶଦ ବିଚାର କରିବେ । ଏପରି ଏକ ବିବୃତିର ଅର୍ଥ ଖରାପ ପ୍ରତିକ୍ରିୟା ହେଲା । ଆମେ ନ ଯଯୌ ନ ତସ୍ଥୌ ଅବସ୍ଥାରେ ରହିଲୁ । ବନ୍ଧୁ କି ବିରୋଧୀ କିଛି ସ୍ଥିର ନ ହେବାରୁ ବିପଦର ସମ୍ମୁଖୀନ ହେବା ନିମନ୍ତେ ଆମର ଯେପରି ତତ୍ପର ହେବା କଥା ତାହା କରାଗଲା ନାହିଁ । ଏତେବେଳେ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ, କୃଷ୍ଣ ମେନନ୍ ଓ ଅନ୍ୟ କେତେକ ମନ୍ତ୍ରୀ ଚୁଏ-ଏନ୍-ଲାଇଙ୍କ ସହିତ ସାକ୍ଷାତ କରିଥିଲେ । ପରଂପରା ଅନୁସାରେ ମନ୍ତ୍ରୀମାନେ ବିଦେଶର କୌଣସି ଉଚ୍ଚପଦସ୍ଥ ବ୍ୟକ୍ତିଙ୍କ ସହ କଥାବାର୍ତ୍ତାର ବିବରଣ ରାଷ୍ଟ୍ରପତିଙ୍କୁ ଜଣାଇବାର କଥା । ଡକ୍ଟର ରାଜେନ୍ଦ୍ର ପ୍ରସାଦ ରାଷ୍ଟ୍ରପତି ଥିଲେ । ମାତ୍ର ସମ୍ବାଦ ମିଳିଲା ଯେ ସମସ୍ତେ ତଦନୁସାରେ ରାଷ୍ଟ୍ରପତିଙ୍କୁ ଜଣାଇଥିଲେ—ମାତ୍ର କୃଷ୍ଣ ମେନନ୍ ସେ ବିଧି ରକ୍ଷା କରିନଥିଲେ । ଏହାଛଡ଼ା, କୃଷ୍ଣ ମେନନ୍ ଅନ୍ୟ କୌଣସି ଅଫିସରଙ୍କୁ ସାଙ୍ଗରେ ନ ନେଇ ଚୁଏ-ଏନ୍-ଲାଇଙ୍କ ସହ ଏକାନ୍ତ କଥାବାର୍ତ୍ତା କରିଥିଲେ । ଏତଦ୍ୱାରା ସନ୍ଦେହର ଏକ ବାତାବରଣ ସୃଷ୍ଟି ହେଲା । ଯୁଗ୍ମ ଇସ୍ତାହାର ଏପ୍ରିଲ ୨୬ ତାରିଖରେ ପାର୍ଲିମେଣ୍ଟରେ ପ୍ରଧାନମନ୍ତ୍ରୀ ରଖିବାରୁ ଆମେ ତାହାର ଆଲୋଚନା ଦାବୀକଲୁ ।

ଦିନକୁ ଦିନ ପରିସ୍ଥିତି ଅଧିକରୁ ଖରାପ ଦିଗକୁ ଗତିକଲା ଏବଂ ଚୀନ୍ ଭିନ୍ନ ଅଞ୍ଚଳମାନଙ୍କରେ ଉପଦ୍ରବ କରୁଥିବାର ସମ୍ବାଦ ପହଞ୍ଚୁଥିଲା । ଆମ ଦେଶ ତରଫରୁ ବିଶେଷ କିଛି ତତ୍ପରତା ଦେଖାଯାଉନଥିବାରୁ ଏବଂ କୃଷ୍ଣ ମେନନ୍ ଦେଶରକ୍ଷା ମନ୍ତ୍ରୀ ହୋଇ ଏ ସମ୍ବନ୍ଧରେ ପରିଷ୍କାର କିଛି ଜଣାଇବାକୁ ଅସମ୍ମତ ଦେଖି ମେନନ୍‌ଙ୍କ କାର୍ଯ୍ୟକଳାପ ପ୍ରତି ଦେଶ ସାରା ସନ୍ଦେହ ସୃଷ୍ଟି ହୋଇଯାଇଥିଲା ।

## ନେହରୁ ଓ କମ୍ୟୁନିଷ୍ଟଙ୍କର ମୋ ଉପରେ କୋପ

ନେହରୁ-ଚୁଏ-ଏନ୍-ଲାଇଙ୍କର ସାକ୍ଷାତ ସମ୍ପର୍କୀୟ ବିବୃତି ଆଲୋଚନା ନିମନ୍ତେ ୨୯ ଏପ୍ରିଲ୍‌ରେ ଦୁଇଘଣ୍ଟାଲାଗି ସମୟ ମିଳିଲା । ଆଚାର୍ଯ୍ୟ କ୍ରିପାଲନୀ ପ୍ରଜା ସୋସଲିଷ୍ଟ ପାର୍ଟି ଛାଡ଼ି ସାରିଥିଲେ । ମୁଁ ବାସ୍ତବପକ୍ଷେ ଚୀନ୍ ବ୍ୟାପାରରେ ପାର୍ଟିର ମୁଖପାତ୍ରରୂପେ ବରାବର

ବିତର୍କରେ ଯୋଗଦେବାକୁ ଲଗିଲି । ଆମ ପାର୍ଟି ଭିତରେ ନାଥ ପାଇଙ୍କୁ ବୈଦେଶିକ ବ୍ୟାପାରରେ ଧୁରନ୍ଧର ବୋଲି ଧରାଯାଉଥିଲା ଏବଂ ସେ ହିଁ ଅଧିକାଂଶ ଆଲୋଚନାରେ ଅଂଶ ଗ୍ରହଣ କରୁଥିଲେ; କିନ୍ତୁ ଚୀନ ବ୍ୟାପାରରେ ପାର୍ଟିର ନେତା ହିସାବରେ ମତେ ହିଁ କହିବାକୁ ପଡ଼ୁଥିଲା ।

ଏହି ବିତର୍କଟି ପ୍ରାୟ ଦିନ ୩ଟା ବେଳକୁ ଆରମ୍ଭ ହେଲା । ପଣ୍ଡିତ ନେହରୁ ପ୍ରାଥମିକ ଭାଷଣରେ ବିଶେଷ କିଛି ନକହି ମେମ୍ବରମାନଙ୍କୁ ଶୁଣିଲା ପରେ ଶେଷରେ କହିବେ ବୋଲି ଘୋଷଣା କଲେ । ତାଙ୍କର ମିଳିତ ଇସ୍ତାହାରକୁ ବିଚାରକୁ ନିଆଯାଉ ବୋଲି ଯେଉଁ ପ୍ରସ୍ତାବ ରହିଥିଲା, ମୁଁ ସେଥିରେ ଗୋଟିଏ ସଂଶୋଧନ ଆଣିଥିଲି । ମୋର ସଂଶୋଧନରେ ଥିଲା—"ଚୀନ୍‌ର ଏପରି ହଠକାରିତା ଯୋଗୁଁ ଏ ଗୃହର ମତ ଯେ କଥାବାର୍ତ୍ତା ଚାଲୁ ରଖିବା କିମ୍ବା ଚୀନ୍‌ର ଦାବିଗୁଡ଼ିକ ସମ୍ବନ୍ଧରେ ବିଶଦ ଆଲୋଚନାଲାଗି ଏକ ଅଫିସର ଦଳ ପଠାଇବାଦ୍ୱାରା କୌଣସି ଉଦ୍ଦେଶ୍ୟ ସାଧିତ ହେବନାହିଁ ।" ଆଉ କେତେକ ସଂଶୋଧନ ପ୍ରସ୍ତାବ ବି ଆସିଥିଲା । କମ୍ୟୁନିଷ୍ଟ ହୀରେନ୍ ମୁଖାର୍ଜିଙ୍କ ପରେ ସ୍ପିକର୍ ଅନନ୍ତ ଶୟନମ୍ ଆୟାଙ୍ଗାର ମତେ ଡାକଦେଲେ । ଆମ ସ୍ଥାନ ଆହୁରି ପଛରେ ଥିଲେ ସୁଦ୍ଧା ବିଷୟର ଗୁରୁତ୍ୱ ଦୃଷ୍ଟିରୁ ମତେ କହିବାକୁ ଡାକୁଛନ୍ତି ବୋଲି କହିଲେ ।

ମୁଁ ଏହି ପୁସ୍ତକରେ ଏ ବିଷୟ ଲେଖିବା ପୂର୍ବରୁ ପୁଣି ଥରେ ସେଦିନର ଆଲୋଚନାଟି ଲୋକସଭା ଡିବେଟ ବହିରେ ପଢ଼ିଲି । ନିଜକୁ ନିଜେ ପ୍ରଶଂସା କରିବା ଠିକ୍ ନୁହେଁ; କିନ୍ତୁ ଆଜି ୨୨ ବର୍ଷ ତଳର ଭାଷଣ ପଢ଼ି ମୁଁ ନିଜେ କହିବି—ଭାରି ଭଲହୋଇଥିଲା । ଏପରିକି ମୋର ୧୦ ମିନଟ୍ ସମୟ ଥିଲାବେଳେ ମୁଁ ପ୍ରାୟ ୩୦ ମିନଟ ପର୍ଯ୍ୟନ୍ତ କହିଲି; ସ୍ପିକର୍ ରୋକି ନଥିଲେ, କିମ୍ବା କଂଗ୍ରେସ ମେମ୍ବରମାନେ ବାଧାଦେଇନଥିଲେ । ବରଂ କୃଷ୍ଣ ମେନନ୍ ଓ ଚୀନ୍ ପ୍ରଧାନମନ୍ତ୍ରୀଙ୍କୁ ଆକ୍ରମଣ କଲାବେଳେ ସେମାନେ ଉପଭୋଗ କରୁଥିଲେ । କେହି କେହି କରତାଳି ବି ଦେଇଦେଉଥିଲେ । ମୁଁ ବିଶେଷଭାବରେ ଚୀନ ପ୍ରଧାନମନ୍ତ୍ରୀଙ୍କ ଉକ୍ତି ଏବଂ ଆମ ପକ୍ଷର ଯୁକ୍ତି ଉଦ୍ଧାର କରି ଚୀନ ସାଙ୍ଗରେ ବନ୍ଧୁତା ବାନ୍ଧିବା କିମ୍ବା କଥାବାର୍ତ୍ତା କରିବା ନିରର୍ଥକ ବୋଲି ଦର୍ଶାଇଥିଲି । ଚୀନ୍ ପ୍ରଧାନମନ୍ତ୍ରୀଙ୍କର 'ଉଭୟପକ୍ଷଙ୍କର ଯେତେଦୂର ପର୍ଯ୍ୟନ୍ତ ପ୍ରକୃତ ଶାସନ କର୍ତ୍ତୃତ୍ୱ ରହିଛି, ସେଇଥିରେ ସମ୍ମତ ହେବା" ପ୍ରସ୍ତାବର ତୀବ୍ର ବିରୋଧ କଲି ଏବଂ ଆମ ତରଫରୁ ଆମ ଅଧୀନରେ ରହିଥିବା ସୀମାଞ୍ଚଳରୁ ପହିରିଦେବା ବ୍ୟବସ୍ଥା ଉଠାଇଦେବା କଥାର ନିନ୍ଦାକଲି । ଏଇଟା ପଣ୍ଡିତ ନେହରୁଙ୍କ ଉପରେ ପ୍ରତ୍ୟକ୍ଷ ଆକ୍ରମଣ ବୋଲି ବିଚାର କରାଗଲା । ସେମିତି କୃଷ୍ଣ ମେନନ୍ ମଧ୍ୟ ଆମ ଶାସିତ ଅଞ୍ଚଳରେ ସୀମାବଦ୍ଧ ରହିବା କଥା କହିଥିବାରୁ ମୁଁ ପରିହାସ ଓ ତାଚ୍ଛଲ୍ୟ କରି କହିଲି—"Chou-En-Lai mentions about 'a line of actual control up to which each side exercises administrative jurisdiction.' This is a very significant phrase. Almost the same

words were used by our Defence Minister sometime back. What the Defence Minister says today, the Chinese Premier repeats tomorrow. Sir, great men think alike."
ଏହା କହିଲାବେଳେ ଗୃହରେ ହାସ୍ୟରୋଳ ଉଠିଥିଲା । ମୁଁ ଦେଖିଲି ପଣ୍ଡିତ ନେହରୁ ବଡ଼ ଅସ୍ୱସ୍ତି ବୋଧକରୁଥିଲେ ଏବଂ ତାଙ୍କ ମନର ଅସନ୍ତୁଷ୍ଟ ଭାବ ଯୋଗୁ ସେ ଯେପରିଭାବରେ ନିଜ ସ୍ଥାନରେ ବସି ମୁଖଭଙ୍ଗି କରୁଥିଲେ, ସେଥିରୁ ସମସ୍ତଙ୍କ ପକ୍ଷରେ ଜାଣିବା କିଛି କଷ୍ଟସାଧ୍ୟ ନଥିଲା ।

## ଧୂଳିଝଡ଼ର ସମ୍ମୁଖୀନ

ମୁଁ ଏହା ଦେଖି ମୋର ଭାଷଣ ଶେଷ କରି ଆସିଲି ଏବଂ ଦେଶଲୋକଙ୍କୁ ଚୀନ୍ ଆକ୍ରମଣ ବିରୋଧରେ ପ୍ରସ୍ତୁତ ହେବା ନିମନ୍ତେ ଆହ୍ୱାନ ଦେବା ଓ ସଙ୍ଗଠିତ ହେବା ନିମନ୍ତେ ନିବେଦନ କଲି ଏବଂ କହିଲି—"ଆମେ ଯୁଦ୍ଧ ଚାହୁଁ ନା । ଯୁଦ୍ଧ ନହେଉ, ଏହା ଆମର ଆନ୍ତରିକ ଇଚ୍ଛା । ମାତ୍ର ଏହାର ଅର୍ଥ ନୁହେଁ ଯେ ଆମେ ଆକ୍ରମଣକାରୀକି ତାର ସ୍ୱେଚ୍ଛାନୁସାରେ ମାଡ଼ି ଆସିବାଲାଗି ଛାଡ଼ିଦେବା ଏବଂ ନୀରବ ଦର୍ଶକଭାବରେ ଆମ ଦେଶର କେତେକାଂଶରେ ଚୀନ ମାଡ଼ିଆସିବାଟାକୁ ବରଦାସ୍ତ କରିସିବା । × × × ଏ ବ୍ୟାପାରରେ ଆମ ଭିତରେ କୌଣସି ମତଭେଦ ନାହିଁ । କେବଳ କେତେକ କମ୍ୟୁନିଷ୍ଟ ପଞ୍ଚମବାହିନୀଙ୍କ ଛଡ଼ା ଦେଶଲୋକେ ସମସ୍ତେ ଏ ବିଷୟରେ ଏକାହୋଇ ଛିଡ଼ାହୋଇଛନ୍ତି ।" (There is no question of difference on this point, excepting a few Communist fifth columnists the entire people are one.)

ଏତିକିରେ ନିଆଁ ଲାଗିଗଲା । ମୋ ବାଁ ଡାହାଣରେ ବସିଥିବା କମ୍ୟୁନିଷ୍ଟ ସଦସ୍ୟମାନେ ଆମେରିକାର ଦଲାଲ ବୋଲି ମତେ ଗାଳିଗୁଲଜ କଲେ ଏବଂ କମ୍ୟୁନିଷ୍ଟ ନେତା ହୀରେନ୍ ମୁଖର୍ଜି ମୁଁ ଏହା ପ୍ରତ୍ୟାହାର କରିବା ନିମନ୍ତେ ଦାବି ଉଠାଇଲେ ।

ଏହା ଦେଖି ସ୍ପିକର୍ ମତେ କହିଲେ—ବନ୍ଧୁମାନେ ଯେତେବେଳେ ଉତ୍ତକ୍ଷିପ୍ତ, ସେତେବେଳେ ସେ ଭାଷାଟି ପ୍ରତ୍ୟାହାର କରି ନିଆଯାଇପାରେ । (Why should Sri Dwivedy persist in that language? He can withdraw it." ମୁଁ ଉତ୍ତରରେ କହିଲି, "ଯଦି ଆମର କମ୍ୟୁନିଷ୍ଟ ବନ୍ଧୁମାନେ ଆପଣାକୁ ପଞ୍ଚମବାହିନୀ ବୋଲି ସ୍ୱୀକାରକରୁଥାଆନ୍ତି, ତେବେ ମୁଁ ଉଠାଇ ନେବାଲାଗି ପ୍ରସ୍ତୁତ ଅଛି ।" (If our Communist friends consider themselves to be fifth columnists, I am prepared to withdraw this.)
ଏହା ତଇଲା ତେଲରେ ନିଆଁ ପରି ହେଲା ଏବଂ ମତେ ନାନାଭାବରେ କମ୍ୟୁନିଷ୍ଟ ସଭ୍ୟମାନେ ବାଧାଦେଲେ । ସ୍ପିକର୍ କହିଲେ—"ମାନ୍ୟବର ସଭ୍ୟ ଯଦି କହନ୍ତି କେତେକ କମ୍ୟୁନିଷ୍ଟ

ପଞ୍ଚମବାହିନୀ ହୋଇଥାଇପାରନ୍ତି, ତେବେ ତାଙ୍କୁ କହିବାରେ କପରି ବାଧା ଦିଆଯିବ ମୁଁ ବୁଝିପାରୁନାହିଁ ? (If any Hon. Member says that there may be a few Communists who may be fifth columnists, I do not know how you can prevent him from saying that.) ଏହାପରେ କମ୍ୟୁନିଷ୍ଟମାନେ ସ୍ପିକର୍‌ଙ୍କୁ ଅନୁରୋଧ କଲେ ବିବରଣୀରୁ ଏ ଶବ୍ଦ ଉଠାଇ ଦେବା ନିମନ୍ତେ; ମାତ୍ର ସ୍ପିକର୍ ତାହା ଗ୍ରହଣ କଲେ ନାହିଁ ଏବଂ କମ୍ୟୁନିଷ୍ଟ ସଦସ୍ୟ ସଭାଗୃହ ତ୍ୟାଗ କରି ବାହାରିଗଲେ । ସ୍ପିକର୍ ମତେ ପୁଣି ଅନୁରୋଧ କଲେ—"There is no harm if the Hon'ble Member withdraws this portion, that is, the fifth columnist portion. Let him do so···" ମୁଁ ଉଠି କହିଲି —"I have not made any personal reference to any Hon'ble Member of the House. If anybody has to withdraw, it is Shri H. N. Mookherjee and his friends. He has said namely that these are indicent people. I have not made any personal remark aganist anybody." ଏହାପରେ କମ୍ୟୁନିଷ୍ଟ ଆଡୁର ପାଟିତୁଣ୍ଡ କରିବାରୁ ସ୍ପିକର୍ ତାଙ୍କୁ ଭର୍ତ୍ସନା କଲେ ଏବଂ ମତେ ମୋର ଭାଷଣ ସମାପ୍ତ କରିବା ନିମନ୍ତେ କହିଲେ । ମୁଁ କହିଲି—"ପ୍ରଧାନମନ୍ତ୍ରୀ ଆମ ଲୋକଙ୍କୁ ବିଶ୍ୱାସକୁ ନିଅନ୍ତୁ । ଚୀନର ଏହି ଆହ୍ୱାନକୁ ସଫଳ ଆକାରରେ ମୁକାବିଲା କରିବା ନିମନ୍ତେ କଣ ପଦକ୍ଷେପ ଗ୍ରହଣକରାଯାଉଛି ଏବଂ ଆମର ନିରପେକ୍ଷ ମିତ୍ର ସହିତ ଗାପଶୁଆଇ କିଭଳି ଆକ୍ରମଣକାରୀ ହାତରୁ ଆମ ଭୂମିକୁ ମୁକ୍ତ କରାଯାଉଛି ତାହା ଜଣାନ୍ତୁ । ପ୍ରଧାନମନ୍ତ୍ରୀଙ୍କଠାରେ ଲୋକଙ୍କର ବିଶ୍ୱାସ ରହିଛି; କିନ୍ତୁ ତାଙ୍କ ମନ୍ତ୍ରିମଣ୍ଡଳର ଅନ୍ୟ ସବୁ ସାଥିଙ୍କ ଉପରେ ନୁହେଁ । ଯେଉଁଭଳି ଭାବରେ ଏ ମିଳାମିଶା କଥାବାର୍ତ୍ତା ଭିତରକୁ ଆମର ଦେଶରକ୍ଷାମନ୍ତ୍ରୀ ଆସିଗଲେ ଏବଂ କାହାଦ୍ୱାରା ପ୍ରରୋଚନା ପାଇ ସେ ଚୀନ ପ୍ରଧାନମନ୍ତ୍ରୀଙ୍କି ଭେଟିଲେ, ସେ ବିବାଦରେ ମୁଁ ପଶିବାକୁ ଚାହୁଁ ନାହିଁ । ମାତ୍ର ଏକଥା ସତ୍ୟ କି ଯେ ଆମର ଦେଶରକ୍ଷାମନ୍ତ୍ରୀ ଚୀନ ପ୍ରଧାନମନ୍ତ୍ରୀଙ୍କ ସହ କଥାବାର୍ତ୍ତା ହେଉଥିଲାବେଳେ କୌଣସି ଅନୁବାଦକାରୀ ନଥିଲେ ? ହୁଏତ ଆମର ଦେଶରକ୍ଷା ମନ୍ତ୍ରୀ ଚୀନ୍ ଭାଷା ଶିଖିଲେଣି କମ୍ବା ଚୁଏ- ଏନ୍-ଲାଇ ଭଲ ଇଂରେଜୀ ଜାଣିଥିଲେ । ଯଦି ତାଙ୍କୁ ଇଂରେଜୀ ଜଣାଥିଲା, ତେବେ ଭାରତୀୟ ଅନୁବାଦକ ସବୁ କାହିଁକି ଅନ୍ୟ ସାକ୍ଷାତ୍କାରରେ ଉପସ୍ଥିତ ରହି ଏତେ ସମୟ ବରବାଦ୍ ହେଉଥିଲା । ତେଣୁ ମୁଁ ଶେଷରେ କହିବି···"

ଏତିକିରେ କଂଗ୍ରେସ ଦଳ ତରଫରୁ ପାଟିତୁଣ୍ଡ ହେଲା ଏବଂ ପଣ୍ଡିତ ନେହରୁ ଯେ କି ଅତ୍ୟନ୍ତ ଅଧୈର୍ଯ୍ୟ ହୋଇଯାଇଥିଲେ, ଉଠିପଡ଼ିଲେ । ମାତ୍ର ମୁଁ କହିଲି—"ମୁଁ ତାଙ୍କୁ ଛାଡ଼ୁ ନାହିଁ—ପ୍ରଧାନମନ୍ତ୍ରୀ ଜବାବ ଦେଲାବେଳେ ତାଙ୍କ କଥା କହିବେ । ( I donot

want to yield. The Hon. Prime Minister will have his say in reply) । ଏଇଟା ପାର୍ଲିମେଣ୍ଟର ଗୃହ ମଧ୍ୟ । କୌଣସି ସଭ୍ୟ କହୁଥିଲାବେଳେ ରୋକିବାକୁ ପ୍ରସ୍ତୁତ ନହେଲେ ଅନ୍ୟ ଜଣେ ମଝିରେ କଥା କହିପାରିବନାହିଁ । ମାତ୍ର ସେ ଜବାହାରଲାଲ ନେହରୁ ! ମୋର ଏତେ ଆସ୍ପର୍ଦ୍ଧା ! ସ୍ପିକର୍ "ଅର୍ଡର" "ଅର୍ଡର" କହି ମତେ ବସାଇଦେଲେ ଏବଂ ନେହରୁ କହିଲେ—"ମୁଁ ଗୋଟିଏ ଶବ୍ଦ କହିପାରେ କି ? ଆମର ମୋଟେ ୨ ଘଣ୍ଟାର ଆଲୋଚନା । ଏ ଗୃହରେ ଅତ୍ୟନ୍ତ କର୍କଶ ଓ ଅସୁନ୍ଦର ଭାଷା ପ୍ରୟୋଗ ପ୍ରାୟ ଅଧଘଣ୍ଟାହେଲା ଚାଲିଲଣି । ଏହା କଣ ଏକ ଗୁରୁତର ଆଲୋଚନା ? ଏବେ ପୁଣି ସେ ଦେଶରକ୍ଷା ମନ୍ତ୍ରୀଙ୍କି ଆକ୍ରମଣ କଲେଣି । ମୁଁ ସେଥିରେ ଆପତ୍ତି କରୁନାହିଁ; ମାତ୍ର କହିବାକୁ ଚାହେଁ—ଜଣକର ଧୈର୍ଯ୍ୟର ଏକ ସୀମା ତ ପୁଣି ଅଛି ?" ପଣ୍ଡିତ ନେହରୁଙ୍କର ଏ ଉକ୍ତିର ପ୍ରତିବାଦହେଲା । ମୁଁ ମୋର ବକ୍ତୃତା ଶେଷରେ ପହଞ୍ଚିଥିଲି—ଶେଷକରିଦେଲି । କିନ୍ତୁ ନେହରୁଙ୍କର ଏପରି ଧୈର୍ଯ୍ୟଚ୍ୟୁତି ଘଟିଲା ଯେ ସେ ଉତ୍ତର ଦେବାବେଳେ ବାଉଳା ହୋଇଗଲେ ଏବଂ ଏକଦା ନିଜ କଥାକୁ ପ୍ରତ୍ୟାହାର କରିବାକୁ ପଡ଼ିଲା । ମୁଁ ଶେଷକୁ କହିଲି—ସ୍ପିକର୍ ମହୋଦୟ ! ମୁଁ ଦେଶରକ୍ଷା ମନ୍ତ୍ରୀଙ୍କି ଗାଳିଦେଇଛି ବୋଲି ଆପଣ କେବେ ଅନୁଭବ କରିଛନ୍ତି କି ? ଆପଣ ନିଶ୍ଚୟ କେବେ ଭାବିନଥିବେ । ସେ କେମିତି ଦେଖାକଲେ—କେବଳ ସେହି ସମ୍ବନ୍ଧରେ ମୁଁ ଏକ ସ୍ପଷ୍ଟୋକ୍ତି ଚାହୁଁଥିଲି । ଏକ ବିବାଦ ଉଠାଇବା ମୋର ଇଚ୍ଛା ନଥିଲା । ଶେଷରେ ମୁଁ ଏତିକି କହିବାକୁ ଚାହେଁ—ହିମାଳୟ କନ୍ଦରରେ ଯେ ସ୍ଥାୟୀ ଆତଙ୍କ ରହିଲାଣି, ଏହାକୁ ଦୃଷ୍ଟିପଥରେ ରଖି ଆମର ଦେଶରକ୍ଷା ନୀତିର ପୁନର୍ଗଠନ କରିବାକୁ ପଡ଼ିବ । କଥାବାର୍ତ୍ତାର କୌଣସି ମୂଲ୍ୟ ନାହିଁ—ଏଥିରେ କେବଳ ସମୟ ନଷ୍ଟ । ଚୀନ୍ ଆକ୍ରମଣ ବିବାଦର ବସ୍ତୁ ନୁହେଁ କିମ୍ବା ଏକ ସାମୟିକ ସୀମା ବିବାଦ ନୁହେଁ । ଏହା ସମ୍ପ୍ରସାରଣବାଦୀ ଓ ସ୍ୱାଧୀନତାପ୍ରେମୀଙ୍କ ଭିତରେ ସଂଗ୍ରାମ । କମ୍ୟୁନିଷ୍ଟ ଆକ୍ରମଣ ବିରୁଦ୍ଧରେ ଆମର ସବୁ ସ୍ୱାଧୀନତାପ୍ରେମୀ ଶକ୍ତିକୁ ଠୁଳ କରିବା ଦରକାର । ତେବେ ଯାଇ ଏ ଦେଶ ରକ୍ଷାହୋଇପାରିବ ।

## ବିଭିନ୍ନ ବକ୍ତାଙ୍କ ପରେ ଜବାହାରଲାଲ

ମୋ ପରେ ଅନ୍ୟ ଦଳ ଓ ସଭ୍ୟମାନେ ଏ ସମ୍ପର୍କରେ ତାଙ୍କ ବକ୍ତବ୍ୟ ରଖିଲେ । ଏଥିରେ ଯେଉଁ ସବୁ ମୌଳିକ ପ୍ରଶ୍ନ ଉଠାଯାଇଥିଲା, ତାହାର ସନ୍ତୋଷଜନକ ଜବାବ ନେହରୁଙ୍କଠାରୁ ମିଳିଲନାହିଁ । ସେ ହୁଏତ କିଛି କହିବାପରି ଅବସ୍ଥାରେ ନଥିଲେ କିମ୍ବା ତାଙ୍କର ମାନସିକ ଚଞ୍ଚଳତା ଆସିଯାଇଥିଲା । ସେ ନାନା ଅବାନ୍ତର କଥା କହି ତାଙ୍କ ସହିତ ଏକମତ ହୋଇନଥିବା ସଭ୍ୟମାନଙ୍କୁ ତାଚ୍ଛଲ୍ୟ କରି କହିବାକୁ ଲାଗିଲେ । ଏପରିକି ଆମ ଭିତରୁ ଜଣେ ସଭ୍ୟ ତାଙ୍କ ବକ୍ତୃତା ଲେଖିଆଣି ପଢ଼ିବାରୁ ଆପତ୍ତି ଉଠାଇଲେ । ଏହା ତାଙ୍କ ପକ୍ଷରେ ଶୋଭା ପାଇଲା ନାହିଁ । ଅବଶ୍ୟ ଲୋକସଭା ନିୟମରେ ଅଛି ଯେ କେହି ଲିଖିତ ଭାଷଣ

ଦେଇପାରିବେନାହିଁ—ମାତ୍ର ଅନେକେ ଲେଖି ଆଣନ୍ତି । ସେମାନଙ୍କ ପକ୍ଷରେ କେବଳ ତାକୁ ନୋଟ୍ ପରି ଦେଖି ବି ଚଳାଇ ନେଇ ପାରନ୍ତିନାହିଁ--ସାରା ପଢ଼ନ୍ତି । ଏଥିକି ସମସ୍ତେ ଆଖି ବୁଜିଦିଅନ୍ତି । କିନ୍ତୁ ନେହରୁ ଏପରି ନୋଧାନ୍ୱିତ ହୋଇଥିଲେ ଯେ ସେ ପଏଣ୍ଟ ଅଫ୍ ଅର୍ଡ଼ର ଉଠାଇ ଏଥିରେ ବାଧାଦେଲେ ଏବଂ ନିଜ ବକ୍ତୃତାରେ ମଧ୍ୟ କହିଲେ—ମୁଁ ଏପରି ପାଣ୍ଡୁଲିପି ବାଗ୍ମିତା (manuscript eloquence)ର ଅର୍ଥ ବୁଝିପାରିବା କଷ୍ଟକର । ଯାହା ପଢ଼ନ୍ତି ବୋଧହୁଏ ନିଜେ ବୁଝନ୍ତିନାହିଁ ।

## ନିଜ କଥା ପ୍ରତ୍ୟାହାରକଲେ

ମୋ ଉପରେ ତ ରାଗଥାଏ; ମାତ୍ର ମୋ କଥାରେ କେଉଁଠୁ ଦୋଷ ବାହାର କରିନପାରିବା ଅସୁବିଧାରେ ପଡ଼ି କହିପକାଇଲେ—"ଶ୍ରୀ ଦ୍ୱିବେଦୀ ଏବଂ ଶ୍ରୀ ରଙ୍ଗାଙ୍କଠାରୁ ଏକ ଆବାଜ ଉଠିଲାଣି—ନିରପେକ୍ଷ ନୀତିକୁ ପରିତ୍ୟାଗ କର । (A voice from Shri Dwivedy and Shri Ranga—Give up the policy of non-alignment.)

ମୁଁ ସଙ୍ଗେ ସଙ୍ଗେ ଉଠି କହିଲି, "ମୁଁ ଏମିତି କଥା କହିନାହିଁ । ( I never said that. )

ରଙ୍ଗା କହିଲେ—ଦ୍ୱିବେଦୀ କହିନାହାନ୍ତି, ମୁଁ କହିଥିଲି ।

ନେହରୁ—ତାହାହେଲେ ମୁଁ ପ୍ରତ୍ୟାହାର କରିନେଉଛି । ଦ୍ୱିବେଦୀ କହିଥିଲେ—ସମଗ୍ର ନିରପେକ୍ଷ ନୀତି ବର୍ତ୍ତମାନ ଘୋର ପରୀକ୍ଷାର ସମ୍ମୁଖୀନ । ତେଣୁ ମୁଁ କ୍ଷମା ମାଗୁଛି । (Then, I withdraw it. Shri Dwivedy's words were—The entire policy of non-alignment is being put to test. So, I beg your pardon.)

କିନ୍ତୁ ଏତିକିରେ ତାଙ୍କ ମନ ଶାନ୍ତ ହେଲା ନାହିଁ । ତାଙ୍କ ଜବାବର ଶେଷ ଭାଗକୁ ପୁଣି ମୋ ନାମ ଉଲ୍ଲେଖ କରି କହିଲେ—"ମୋର ମନେହୁଏ ଶ୍ରୀ ଦ୍ୱିବେଦୀ ସମଗ୍ର ଲୋକଙ୍କୁ ଠୁଳକରାଇବା ବା ଲୋକଙ୍କୁ ଏକାଠି କରିବା କଥା କହୁଥିଲେ । କିନ୍ତୁ ମୋର ମନେ ହୁଏନା ସେ ଲୋକଙ୍କୁ ଏକାଠି କରିବା ସମ୍ବନ୍ଧରେ ବିଶେଷ କିଛି କହିବାର ଭାବ ଦେଖାଇଛନ୍ତି । ତାଙ୍କ ଭାଷଣ ଏକ ଧ୍ୱଂସକାରୀ ଭାଷଣ, ଗଠନମୂଳକ ଭାଷଣ ନୁହେଁ । ଏକାଠି କରିବା ନିମନ୍ତେ ନୁହେଁ—ସମାଲୋଚନା କରିବା ଲାଗି, ନିନ୍ଦା ଗାଇବା ଲାଗି—ଏ ବ୍ୟକ୍ତି ସେ ବ୍ୟକ୍ତିର ନାମ ଉଠାଇବା ନିମନ୍ତେ କରିଥିଲେ । ଏହିରୂପେ କଣ ଲୋକଙ୍କୁ ଠୁଳ କରାଯାଇପାରେ ?"

## ପେକିଙ୍ଗ୍ ରେଡ଼ିଓରେ ଭର୍ତ୍ସନା

ଆମର ଲୋକସଭାର ଏହି ବିତର୍କ ପରେ ସନ୍ଧ୍ୟାରେ ପେକିଙ୍ଗ୍ ରେଡ଼ିଓ ଘୋଷଣା କଲା "ଦ୍ୱିବେଦୀ ଭାରତରେ ସାମ୍ରାଜ୍ୟବାଦୀଙ୍କର ଏକ କୁକୁର ( Running dog of the imperialists )।" ଏହା ଶୁଣିଲାପରେ ମୋ ମନରେ ସନ୍ତୋଷ ଆସିଲା ଯେ, ମୁଁ ମୋ ଦେଶକୁ ଚୀନ୍ ଆକ୍ରମଣରୁ ରକ୍ଷା କରିବା ନିମନ୍ତେ ଯେଉଁ ଭୂମିକା ଗ୍ରହଣ କରିଥିଲି, ତାହା ବାସ୍ତବରେ ଫଳପ୍ରଦ ହୋଇଥିଲା ।

## କୃଷ୍ଣ ମେନନ୍‌ଙ୍କ ଇସ୍ତଫା

ପ୍ରଜା ସୋସିଆଲିଷ୍ଟ ପାର୍ଟି ନିରବଚ୍ଛିନ୍ନ ଭାବରେ ଏହି ଆନ୍ଦୋଳନ ଦେଶରେ ଜାରିରଖିଲା । ଆମେ ପାର୍ଲିମେଣ୍ଟରେ ବାରମ୍ବାର ଏ ବିଷୟ ଉତ୍ଥାପନ କରି ସରକାର ଉପରେ ଅପାରଗ ହୋଇଥିଲେ, ତାହା ଦର୍ଶାଇବାରେ କୁଣ୍ଠା କରୁନଥିଲୁ । ବିଶେଷ ଭାବରେ କୃଷ୍ଣ ମେନନ୍‌ଙ୍କୁ ଦେଶରକ୍ଷା ବିଭାଗ ଦାୟିତ୍ୱରୁ କାଢ଼ିବା ନିମନ୍ତେ ଦାବି ଉଠିଲା । ଏଥିଲାଗି ପଣ୍ଡିତ ନେହରୁ ଓ ଆମ ସଭ୍ୟଙ୍କ ଭିତରେ ବାରମ୍ବାର ବିତଣ୍ଡା ହେଉଥିଲା । କୃଷ୍ଣ ମେନନ୍‌ଙ୍କ ବିରୁଦ୍ଧରେ ବି ବହୁ କଂଗ୍ରେସ ଲୋକ ଥିଲେ ଏବଂ ସେମାନେ ତାଙ୍କ ବାଟରେ ଲାଗିପଡ଼ିଲେ । ସେମାନେ ଆମ ସହ ସହଯୋଗକରି ମଧ୍ୟ କାର୍ଯ୍ୟ କରୁଥିଲେ ଏବଂ ପାର୍ଲିମେଣ୍ଟ ଭିତରେ ଆମର ଏ ସଂକ୍ରାନ୍ତୀୟ ପ୍ରଶ୍ନକୁ ପ୍ରକାରାନ୍ତରେ ସମର୍ଥନ ଦେଉଥିଲେ । ନେହରୁ କୃଷ୍ଣ ମେନନ୍‌ଙ୍କୁ ଦେଶରକ୍ଷା ବିଭାଗ ବଦଳରେ "ଦେଶରକ୍ଷା ଲାଗି ଉତ୍ପାଦନ" ନାମକ ଏକ ନୂଆ ବିଭାଗ ଖୋଲି ତାଙ୍କର ଦାୟିତ୍ୱ ଦେଲେ । ମାତ୍ର ଏଥିରେ ଆନ୍ଦୋଳନ ଶାନ୍ତ ପଡ଼ିଲା ନାହିଁ । ଚୀନ୍ ଆକ୍ରମଣ ଯେତେ ତୀବ୍ର ହେଲା ଲୋକମତ ସେତେ ତୀକ୍ଷ୍ଣ ହୋଇ ଉଠିଲା । ନେହରୁଙ୍କର କିନ୍ତୁ ମେନନ୍‌ଙ୍କ ପ୍ରତି ଏତେ ମୋହ ଯେ ସେ ଅନ୍ୟ କିଛି ଶୁଣିବାକୁ ନାରାଜ । ଶେଷରେ ପାର୍ଟି ଭିତରେ ଅସମ୍ଭାଳ ଅବସ୍ଥା ଦେଖି କୃଷ୍ଣ ମେନନ୍ ନିଜେ ଇସ୍ତଫା ପତ୍ର ନେହରୁଙ୍କ ହାତରେ ଦେଇଦେଲେ । ତହିଁରେ ନେହରୁ ଆହୁରି ଅଡ଼ୁଆରେ ପଡ଼ିଲେ । ନିଜେ ତାଙ୍କୁ ଇସ୍ତଫା ଦେବାକୁ ମୁହଁମୁହାଁଳିକାରେ କହିପାରୁ ନ ଥିଲେ; ଏବେ ସେ ନିଜଆଡ଼ୁ ଦେଲେ—କେମିତି ଗ୍ରହଣ କରିବେ ? ବଡ଼ ଧର୍ମସଙ୍କଟରେ ପଡ଼ିଲେ । କିନ୍ତୁ ନେହରୁ ଏ ସମ୍ପର୍କରେ ଯେତିକି ବିଳମ୍ବ କଲେ ସେତିକି ଅସୁବିଧା ସୃଷ୍ଟି ହେଲା ଏବଂ ଏପରି ଏକ ଅବସ୍ଥା ଆସି ପହଞ୍ଚିଲା ଯେତେବେଳେ କମ୍ୟୁନିଷ୍ଟଙ୍କ ଛଡ଼ା ଅନ୍ୟ ସବୁ ବିରୋଧୀ ଓ ଅଧିକାଂଶ କଂଗ୍ରେସ ସଭ୍ୟ ଏକାଠି ମିଳି ନେହରୁଙ୍କ ବିରୁଦ୍ଧରେ ଅନାସ୍ଥା ଆଣିବାର ପ୍ରସ୍ତାବ ମଧ୍ୟ ବଡ଼ ଗୁରୁତ୍ୱର ସହ ଆଲୋଚନାକଲେ ।

## ଇସ୍ତଫା ଗ୍ରହଣର ଭିତରକଥା

ମୁଁ ଏଠାରେ ଯାହା ଲେଖୁଛି, ତାହା ଆମର ତତ୍କାଳୀନ ରାଷ୍ଟ୍ରପତି ଡକ୍ଟର ରାଧାକୃଷ୍ଣନ ମତେ ନିଜେ କହିଥିଲେ । ତାଙ୍କ ସହିତ ମୋର ଖୁବ୍ ଘନିଷ୍ଠତା ହୋଇଥିଲା ଏବଂ ସେ ପାର୍ଲିମେଣ୍ଟରେ ମୋ.ର ସବୁ କାର୍ଯ୍ୟକଳାପ ଲକ୍ଷ୍ୟ କରୁଥିଲେ । ମଝିରେ ମଝିରେ ଡକାଇ ପଠାଉଥିଲେ ମଧ୍ୟ । ମୁଁ ପ୍ରଥମେ ଯେତେବେଳେ ରାଜ୍ୟସଭାକୁ ଯାଇଥିଲି, ସେତେବେଳେ ସେ ଉପରାଷ୍ଟ୍ରପତି ହିସାବରେ ତାର ଚେୟାରମାନ୍ ଥିଲେ । ମୁଁ ୧୯୫୭ ରେ ଲୋକସଭାକୁ ଆସିଲି । ୧୯୬୨ ରେ ସେ ଭାରତର ରାଷ୍ଟ୍ରପତି ହେଲେ ଏବଂ ମୁଁ ପ୍ରଜା ସୋସଲିଷ୍ଟ ପାର୍ଟିର ଦଳପତି ହେଲି । ଏହି ୧୯୬୨ ତୃତୀୟ ଲୋକସଭାକୁ ଆଗେ ରାଜ୍ୟସଭାର ଡେପୁଟି ଚେୟାରମାନ୍ ଥିବା କୃଷ୍ଣମୂର୍ତ୍ତି ରାଓ ମେମ୍ବର ହୋଇ ଆସିଲେ ଏବଂ ଡେପୁଟି ସ୍ପିକର୍ ନିର୍ବାଚିତ ହେଲେ । ଡେପୁଟି ସ୍ପିକର୍ ନିର୍ବାଚନ ପରେ ପରମ୍ପରା ଅନୁସାରେ ବିଭିନ୍ନ ଦଳର ଦଳପତିମାନେ ଅଭିନନ୍ଦନ ଜଣାନ୍ତି । ମୋର ତାଙ୍କ ବିଷୟରେ ରାଜ୍ୟସଭାର ଅନୁଭୂତି ଥିଲି ଏବଂ ସେ ରୁକ୍ଷ ବ୍ୟବହାର କରୁଥିବା ହେତୁ ଅନେକ ସମୟରେ ସଭ୍ୟମାନଙ୍କ ସଙ୍ଗେ ସଂଘର୍ଷ ହେଉଥିଲା ଏବଂ ଚେୟାରମାନ୍ ରାଧାକୃଷ୍ଣନ୍ଙ୍କ ପାଖରେ ଆପତ୍ତି କରାଯାଉଥିଲା । ମୁଁ କୃଷ୍ଣମୂର୍ତ୍ତି ରାଓଙ୍କୁ ସମ୍ବର୍ଦ୍ଧନା ଜଣାଇ କହିଲି—ମୁଁ ତାଙ୍କୁ ରାଜ୍ୟସଭା ବେଳୁ ଜାଣେ । ମୁଁ ଆଶା କରୁଛି ସେ ଏ ଗୃହର ପରମ୍ପରା ସହ ନିଜକୁ ମିଶାଇଦେବେ (I know him from my days in the Rajya Sabha. I hope he will adjust himself to the conventions of this House) । ଏ କଥାର ମର୍ମ କେବଳ କୃଷ୍ଣମୂର୍ତ୍ତି ରାଓ ବୁଝିଲେ ସିନା ଅନ୍ୟ ସଭ୍ୟମାନେ କୁଆଡୁ ଜାଣନ୍ତେ ! ସେହିଦିନ ରାଷ୍ଟ୍ରପତିଭବନରେ କୌଣସି ଏକ ଉତ୍ସବକୁ ମୁଁ ଯାଇଥିଲି ଏବଂ ରାଧାକୃଷ୍ଣନ୍ ଦୂରରୁ ମତେ ଦେଖି ଡକାଇ ପଠାଇଲେ ଏବଂ କହିଲେ, "Dwivedi, you are becoming mischievous. I heard in my room what you said about our Krishna Murthy Rao." (ଦ୍ୱିବେଦୀ, ତୁମର ବଦ୍‌ମାସୀ ଗୁଣ ବାହାରିଲାଣି । ତୁମେ ଆମର କୃଷ୍ଣମୂର୍ତ୍ତି ରାଓ ସମ୍ବନ୍ଧରେ କଣ କହିଥିଲ ମୁଁ ମୋ ଘରେ ଥାଇ ଶୁଣିଥିଲି । ) ପାର୍ଲିମେଣ୍ଟ ବିବରଣୀ ଶୁଣିବା ଲାଗି ରାଷ୍ଟ୍ରପତିଙ୍କ ପାଖକୁ ତାକବାକି ଲଗାଇଦିଆଯାଇଛି ଏବଂ ସେ ଚାହିଁଲେ ପାର୍ଲିମେଣ୍ଟ ଆଲୋଚନା ଶୁଣିପାରନ୍ତି । ସେଇଥିରେ ଶୁଣି ମତେ ପରିହାସ ଛଳରେ ଏପରି କଥା କହିଥିଲେ । ଆଉ ଥରେ ସେମିତି ତାଙ୍କର ଜନ୍ମଦିବସରେ ସମ୍ବର୍ଦ୍ଧନା ଜଣାଇବା ଲାଗି ମୁଁ ଯାଇନଥିଲି । ସେଦିନ ସେ ବାହାରେ ବସୁଥିଲେ ଏବଂ ଶହ ଶହ ଲୋକ ଧାଡ଼ି ହୋଇ ଯାଇ ସମ୍ବର୍ଦ୍ଧନା ଜଣାଇ ଆସୁଥିଲେ । ମୁଁ ନଯାଇଥିଲି ବୋଲି ସେ ଲକ୍ଷ୍ୟ କରିଥିଲେ ଶୁଣି ମୁଁ ବିସ୍ମିତ ଓ ଲଜ୍ଜିତ ହେଲି । ମୋ ପ୍ରତି ତାଙ୍କର ଶ୍ରଦ୍ଧା ଥିବାର ପ୍ରମାଣ ମିଳିଲା । ମୋ ପାଖରେ କିଛି ଜବାବ

ନଥିଲି । ମୁଁ କିନ୍ତୁ ସାଙ୍ଗେ ସାଙ୍ଗେ କହିଲି—"ଆପଣ ଆହୁରି ଅଧିକ ବର୍ଷେ ବୁଢ଼ା ହୋଇଗଲେଣି ବୋଲି ଆପଣଙ୍କୁ ସ୍ମରଣ କରାଇ ଦେବାକୁ ମୁଁ ଚାହୁଁ ନ ଥିଲି ।" ଏହା ଶୁଣି ସେ ହସିଦେଲେ । ଆମ ଭିତରେ ଏପରି ମଉଜ ବାର୍ତ୍ତାଳାପ ବି ହେଉଥିଲି ।

ଆଉ ଥରେ କୌଣସି ଏକ ଗୁରୁତର କାର୍ଯ୍ୟ ସମ୍ପର୍କରେ ମୁଁ ତାଙ୍କ ପାଖକୁ ଯାଇଥିଲି । ସେତେବେଳକୁ ବୋଧହୁଏ ଇନ୍ଦିରାଗାନ୍ଧୀ ପ୍ରଧାନମନ୍ତ୍ରୀ । ତାଙ୍କର କୌଣସି କାର୍ଯ୍ୟ ସମ୍ପର୍କରେ କଥା ଉଠିଥିଲା । ସେହିକବେଳେ ଡକ୍ଟର ରାଧାକୃଷ୍ଣନ୍ ମତେ କହିଥିଲେ— "ଜାଣିଛ ! କୃଷ୍ଣ ମେନନ୍ ଯେବେ ଯେତେବେଳେ ଅବସ୍ଥା ଅସମ୍ଭାଳ ହେଲା, ସେତେବେଳେ ଇନ୍ଦିରା ମୋ ପାଖକୁ ଦଉଡ଼ିଆସିଥିଲେ । ମତେ ଅନୁରୋଧ କରିଥିଲେ ଯେ ମୁଁ ଜବାହରଲାଲ ନେହରୁଙ୍କୁ କହେ କୃଷ୍ଣ ମେନନ୍‌ଙ୍କ ଇସ୍ତଫା ଗ୍ରହଣ କରିବା ନିମନ୍ତେ । ତାଙ୍କ ମନରେ ଆଶଙ୍କା ଜାତ ହୋଇଥିଲା ଯେ ଆଉ ବେଶିଦିନ ଗଡ଼ାଇ ରଖିଲେ ଏହାର ଆଞ୍ଚଆସି ପଣ୍ଡିତ ନେହରୁଙ୍କ ଉପରେ ପଡ଼ିପାରେ । ମୁଁ କହିଲି—ମୁଁ ରାଷ୍ଟ୍ରପତି ଭାବରେ କହିବା ଠିକ୍ ନୁହେଁ । ତୁମେମାନେ କହି ତାଙ୍କୁ ବୁଝାଇଦିଅ । ମାତ୍ର ସେ କହିଲେ—ଆମର ସବୁ ଚେଷ୍ଟା ବିଫଳ ହୋଇଛି । କେବଳ ଆପଣହିଁ ଏ ସଙ୍କଟରୁ ରକ୍ଷାକରିପାରିବେ ।

"ମୁଁ ତା'ପରେ ଜବାହରଲାଲ ନେହରୁଙ୍କୁ ଡକାଇଲି । ତାଙ୍କୁ ବୁଝାଇଲି । ସେ ବଡ଼ ନାରାଜ ଥିଲେ ଏବଂ କହିଲେ ତାଙ୍କ ଇସ୍ତଫାପତ୍ର ତ ମୋ ପାଖରେ ରହିଛି—ମାତ୍ର ମୁଁ କେମିତି ତାହା ଗ୍ରହଣ କରିପାରିବି ? ସେ ସାଧାରଣତଃ ମୋ କଥା ଶୁଣନ୍ତି— ସେଦିନ ସକାଳେ ଇନ୍ଦିରା ବି ଆସିଥିଲେ । ମୁଁ ଟିକିଏ ଜୋର୍ କରିବାରୁ—ସେ ଉଠିଗଲାବେଳେ କହିଗଲେ—ମୁଁ ମେନନ୍‌ଙ୍କ ଇସ୍ତଫାପତ୍ର ଫାଇଲ୍ ଆପଣଙ୍କ ପାଖକୁ ପଠାଇଦେବି । ସତକୁସତ କିଛି ସମୟ ପରେ ଫାଇଲ୍ ଆସିଗଲା । ରାଷ୍ଟ୍ରପତି ଇସ୍ତଫା ଫାଇଲ୍‌ରେ ଦସ୍ତଖତ କରିବାର କଥା ଏବଂ ପ୍ରଧାନମନ୍ତ୍ରୀ ସୁପାରିଶ କରିବାର କଥା । କିନ୍ତୁ ଫାଇଲରେ ସେପରି କିଛି ସୁପାରିଶ ନ ଥାଇ କେବଳ ଲେଖାଥିଲା—Advice. ମୁଁ ତାର ସୁଯୋଗ ନେଇ ସେଥିରେ ଲେଖିଦେଲି—The President advises you to advise him to accept the resignation of Defence Minister Krishna Menon । (ଅର୍ଥାତ୍ ସେଥିରେ ଲେଖି ଫେରାଇଦେଲି ଯେ— କୃଷ୍ଣ ମେନନ୍‌ଙ୍କ ଇସ୍ତଫା ଗ୍ରହଣ କରିବା ନିମନ୍ତେ ରାଷ୍ଟ୍ରପତିଙ୍କୁ ସୁପାରିଶ କରିବା ନିମନ୍ତେ ମୁଁ ତୁମକୁ ପରାମର୍ଶ ଦେଉଛି ।) ମୁଁ ଫାଇଲ୍‌ରେ ଏପରି ଲେଖିଦେବାପରେ ତାଙ୍କ ପକ୍ଷରେ ଗତ୍ୟନ୍ତର ରହିଲା ନାହିଁ । ସୁପାରିଶ କରି ଇସ୍ତଫା ଫାଇଲ୍ ଆସିଗଲା ଏବଂ ମୁଁ ତତ୍‌କ୍ଷଣାତ୍ ତାହା ଗ୍ରହଣକରି ଘୋଷଣା କରିଦେଲି ।"

କୃଷ୍ଣ ମେନନ୍‌ଙ୍କ ଇସ୍ତଫା ଗୃହୀତ ହେବା ପରେ ଦେଶରେ ଚୀନ୍ ସମସ୍ୟା ଟିକିଏ ସ୍ଥିର ଚିତ୍ତରେ ବିଚାର କରିବାଭଳି ବାୟୁମଣ୍ଡଳ ସୃଷ୍ଟି ହେଲା ଏବଂ ମହାରାଷ୍ଟ୍ରର ମୁଖ୍ୟମନ୍ତ୍ରୀ ଓ୍ୱାଇ. ବି. ଚୌହାନ ଦେଶରକ୍ଷା ମନ୍ତ୍ରୀ ହେଲେ ।

ଏସବୁ ୧୯୬୨ର କଥା । ବେଲକୁବେଲ ଅବସ୍ଥା ଗୁରୁତର ଆକାର ଧାରଣ କରୁଥିଲା । ଦେଶରେ ଏ ସମସ୍ୟା ଯେପରି ଉତ୍ତେଜନା ବୃଦ୍ଧି ପାଉଥିଲା । ପଣ୍ଡିତ ନେହରୁଙ୍କ ପକ୍ଷରେ କୌଣସି ଗୋଟାଏ ନିଷ୍ପତ୍ତିମୂଳକ ପଦକ୍ଷେପ ନେବା ସହଜ ନଥିଲା । କାରଣ ସେ ପଞ୍ଚଶୀଳ ନୀତି ଉପରେ ବିଶ୍ୱାସ ରଖି ବିଶ୍ୱରେ ଏହି ନୀତି ପ୍ରଚଳନରେ ଚୀନ୍ ତାଙ୍କର ମୁଖ୍ୟ ସାଥୀ ହେଲା ବୋଲି ବିଶ୍ୱାସରେ ଚାଲିଲେ । ଏବେ ତହିଁରେ ଏକ ଧକ୍କା ଲାଗିଲା । ତାଙ୍କର ସାରା ବୈଦେଶିକ ନୀତି ଓ ଦେଶରକ୍ଷା ନୀତି ସତେ କି ଭୁଲ ପଥରେ ଯାଉଥିଲା—ଏଭଳି ଏକ ଧାରଣା ଲୋକଙ୍କ ମନରେ ଦୃଢ଼ ହୋଇଗଲା । କିନ୍ତୁ ତାକୁ ଭାଙ୍ଗି କେମିତି କି ବାଟ ଧରାଯିବ, ଏଥିରେ ସେ ଭୀଷଣ ଗୋଳକଧନ୍ଦା ଭିତରେ ଗତି କରୁଥିଲେ । ତେଣୁ ସେ ମଝିରେ ମଝିରେ ପାର୍ଲିମେଣ୍ଟ ଆଗରେ କଥା ଉତ୍ଥାପନ କରୁଥିଲେ ଏବଂ ଚୀନ ସରକାର ସହ କାରବାର ହେଉଥିବା ପତ୍ର ଇତ୍ୟାଦି ଧଳାକାଗଜ ( White Paper ) ଭାବରେ ଗୃହ ଟେବୁଲରେ ଉପସ୍ଥାପନ କରାଯାଉଥିଲା । ଏହି ସମୟରେ ଆମ ପ୍ରଜାସୋସଲିଷ୍ଟ ସାଥିଙ୍କ ସହ ନେହରୁଙ୍କର ଏକଦିନ ବଡ଼ ବାକ୍‌ଯୁଦ୍ଧ ଲାଗିଗଲା । ହେମ ବଡ଼ୁଆ, ନାଥପାଇ, ଏଚ୍. ଭି. କାମାଥ ଓ ମୋ ନାମରେ ଏକ ଧ୍ୟାନାକର୍ଷଣକାରୀ ନୋଟିସ୍ ଏ ସଂପର୍କରେ ବିଚାର ଲାଗି ଆସିଲା । ଆମ ସାଥିମାନଙ୍କର ବାକ୍ୟବାଣରେ ଜବାହରଲାଲ ନେହରୁ କ୍ରୋଧାନ୍ୱିତ ହୋଇ 'ଯୁଦ୍ଧ ଖୋର୍' ବୋଲି ଦୋଷାରୋପ କଲେ । ମୋ ପାଳି ଶେଷକୁ ଥିଲା । ମୁଁ ଏ କଥାର ଏକ କଡ଼ା ଜବାବ ଦେଇ କହିଲି—"ତୁମେ ଦେଶକୁ ସମର୍ପଣ କରିଦେଉଛ ।" ( You are surrendering the country) । ମୋର ଏହି ଉକ୍ତିଟି ତାଙ୍କର ଦେଶପ୍ରୀତି ଉପରେ ଆଘାତ ହେଲା ଏବଂ ସେ ଅତ୍ୟନ୍ତ ବ୍ୟସ୍ତ ହୋଇ ନିଜ ଆସନରେ ବସି ୨।୩ ଥର ଏହି ଉକ୍ତି କ୍ଷୀଣସ୍ୱରରେ ଉଚ୍ଚାରଣ କରିବାକୁ ଲାଗିଲେ ଏବଂ ମତେ ଗୋଟାଏ କଣ ଜବାବ ଦେଲେ । ମାତ୍ର ତାଙ୍କ ମନରେ ଦାରୁଣ ଆଘାତ ଲାଗିଲା । ବିଦେଶୀ ସଂବାଦପତ୍ର-ମାନେ ଏକ ବିରୋଧୀନେତା ପଣ୍ଡିତଜୀଙ୍କୁ ଏପରି ଦୋଷାରୋପ କଲେ ବୋଲି ଖୁବ୍ ପ୍ରଚାର କରିଦେଲେ । ଏଥିରେ ବ୍ୟଥିତ ହୋଇ ପୂର୍ବତନ କଂଗ୍ରେସ ସଭାପତି ୟୁ. ଏନ୍. ଧେବର ମୋ ପାଖକୁ ଆସିଲେ । ଲୋକସଭାର ପ୍ରଥମ ଧାଡ଼ିରେ ମୋ ସ୍ଥାନରୁ ଅନତିଦୂରରେ ତାଙ୍କର ସ୍ଥାନ ଥିଲା ଏବଂ ଅଳ୍ପ କେତେ ଦିନ ଭିତରେ ତାଙ୍କ ସହିତ ବେଶ୍ ସଦ୍‌ଭାବ ହୋଇଥିଲା । ସେ ବଡ଼ ମିଷ୍ଟ ଓ କୋମଳଭାଷୀ ଏବଂ ଅନ୍ୟକୁ ପ୍ରବର୍ତ୍ତାଇବାରେ ତାଙ୍କର ଅଦ୍ଭୁତ ଶକ୍ତି ଥିଲା । ସେ ମୋ ପାଖକୁ ଆସି ଏହି ଶବ୍ଦ ପ୍ରତ୍ୟାହାର କରିନେବା ନିମନ୍ତେ ଅନୁରୋଧ ଜଣାଇଲେ । ତାଙ୍କର ଯୁକ୍ତି ହେଲା ନେହରୁ ଆମ ଦେଶର ପ୍ରତୀକ; ତାଙ୍କ ନାମରେ ଏଡ଼େ ବଡ଼ ଅପବାଦ ତୁମ ପରି ଜଣେ ସ୍ୱାଧୀନତା ସଂଗ୍ରାମୀ ଏବଂ ସମାଜବାଦୀ ନେତା କରିବାଦ୍ୱାରା ଦେଶର ସମ୍ମାନରେ ଆଞ୍ଚ ଆସିଲା । ଏଣୁ ପ୍ରତ୍ୟାହାର କରିନେବା ହିଁ ଉଚିତ ହେବ । ମୁଁ କିନ୍ତୁ ମୋ କଥାରେ ଦୃଢ଼ ରହିଲି ଏବଂ ତାଙ୍କୁ ଜଣାଇଦେଲି ଯେ ଆମେ ବି ଦେଶଭକ୍ତ ଏବଂ ଦେଶଲାଗି ତ୍ୟାଗ କରିଛୁ । "ଯୁଦ୍ଧଖୋର୍" ବୋଲି ଭାରତର ପ୍ରଧାନମନ୍ତ୍ରୀ

ଆମପ୍ରତି ଆକ୍ଷେପ କରିବା କିଛି କମ୍ ଆପତ୍ତିଜନକ ନୁହେଁ । ଦୁଇଟିଯାକ ଶବ୍ଦ ପାର୍ଲିମେଣ୍ଟ ବିବରଣୀରେ ରହିଗଲାଣି । ପଣ୍ଡିତଜୀଙ୍କୁ ବ୍ୟକ୍ତିଗତ ଭାବରେ ଆକ୍ରମଣ କରିବା ମୋର କେବେ ଉଦ୍ଦେଶ୍ୟ ନ ଥିଲା । ତେଣୁ ସେ ଯଦି ତାଙ୍କ କହିଥିବା ଶବ୍ଦଟି ପ୍ରତ୍ୟାହାର କରିନେବେ, ତେବେ ମୁଁ ମଧ୍ୟ ପ୍ରତ୍ୟାହାର କରିନେବି ।

ପରେ ସଂବାଦ ମିଳିଲା, ଏହି ବିଷୟ କିପରି ଭାବରେ ସମାଧାନ କରାଯାଇପାରିବ ଏହା ଯେନ କଂଗ୍ରେସ ପାର୍ଲିମେଣ୍ଟାରୀ ପାର୍ଟିର କାର୍ଯ୍ୟକାରୀ ସମିତିରେ ବହୁ ସମୟ ପର୍ଯ୍ୟନ୍ତ ବିଚାର କରାଗଲା; ମାତ୍ର ବିଷୟଟି ଯେପରି ଥିଲା ସେହି ଆକାରରେ ରହିଲା । ଲୋକସଭାର ନିୟମାନୁସାରେ ସ୍ପିକର୍ ମଧ୍ୟ ଏପରି ଶବ୍ଦକୁ ବିବରଣୀରୁ ବାଦ୍‌ଦେବା ତାଙ୍କ ଅଧିକାର ବହିର୍ଭୁତ କାର୍ଯ୍ୟ ହୋଇଥାଆନ୍ତା । ନଚେତ୍ ସେହି ପନ୍ଥାରେ ଏହାକୁ ବାଦ୍ କରାଯାଇପାରିଥାଆନ୍ତା ।

ଏପରି ସଂଘର୍ଷ ବାରମ୍ବାର ଘଟୁଥିଲା । ଆମେ ଚୀନ୍ ବ୍ୟାପାରରେ ଅଧିକ ସଚେତନ ରହିଥିଲୁ । ସରକାର ସେହିପରି ସତର୍କ ରହି କାର୍ଯ୍ୟ କରୁ ଏହା ଥିଲା ଆମର ଆନ୍ତରିକ କାମନା ଏବଂ ଏଥିରେ ସରକାର ସହିତ ସହଯୋଗ କରିବା ନିମନ୍ତେ ଆମେ ସର୍ବଦା ପ୍ରସ୍ତୁତ ଥିଲୁ ।

## ଅଗଷ୍ଟ ୧୩ରେ ପୁଣି ଆଲୋଚନା

ଲୋକସଭାରେ ୧୯୬୨ ଅଗଷ୍ଟ ୧୩ ତାରିଖରେ ପଣ୍ଡିତ ନେହରୁ "ଭାରତ-ଚୀନ ସୀମାନ୍ତ ପରିସ୍ଥିତି—ବିଶେଷଭାବରେ ଲଡାଖ ଅଞ୍ଚଳ" ଯେନ ଆଲୋଚନା କରାଯାଉ ବୋଲି ଏକ ପ୍ରସ୍ତାବ ଆଣିଲେ । ପଣ୍ଡିତଜୀ ଅତି ଚିନ୍ତିତ ହେବାର ବିଷୟ ବୋଲି ସୂଚନା ଦେଲେ । ମୋର ସେଥିରେ ଏକ ସଂଶୋଧନ ପେଶ୍ ହେଲା । ସେଥିରେ କେବଳ ଉପଯୁକ୍ତ ବାୟୁମଣ୍ଡଳ ଓ କାରଣ ରହିଥିଲେ ମିଳାମିଶା ବା କଥାବାର୍ତ୍ତା ଚାଲୁ; ଏବଂ ଚୀନପକ୍ଷ ଯଦି ଆମ ସର୍ତ୍ତ ମାନିନେବାକୁ ପ୍ରସ୍ତୁତ ହେଉନାହାନ୍ତି, ତେବେ ଆମର ନିରପେକ୍ଷ ନୀତି ସହ ସାମଞ୍ଜସ୍ୟ ରଖାଯାଇ ଅନ୍ୟ ପନ୍ଥା ଅବଲମ୍ବନ କରିବା ନିମନ୍ତେ ଆହ୍ୱାନ ଥିଲା ।

ଏଥିରେ ପ୍ରଥମେ ମୋତେ କହିବାକୁ ସୁଯୋଗ ମିଳିଥିଲା । ମୁଁ କହିଥିଲି—"ଆମ ସୀମା ସମସ୍ୟାରେ ଆମେ କେବେହେଲେ ମିଳାମିଶା କରିବୁ ନାହିଁ ବୋଲି ଲୋକଙ୍କ ଭିତରେ ଏ ପର୍ଯ୍ୟନ୍ତ ଥିବା ସନ୍ଦେହକୁ ଦୂର ହେବାଭଳି କିଛି କରାଯାଇନାହିଁ । ସେପରି ଏକ ସ୍ପଷ୍ଟ ବିବୃତି ସରକାରଠାରୁ ମୁଁ ଦାବି କରୁଛି । ମୁଁ ମଧ୍ୟ ଏକଥା କହିଦେବାକୁ ଚାହେଁ ଯେ, ନିରପେକ୍ଷ ନୀତି ଯେନ କିଛି ବିବାଦ ନାହିଁ । ବାରମ୍ବାର ସେ କଥା ଉଠାଇବା ଠିକ୍ ନୁହେଁ । ଆମ ଆଗରେ ପ୍ରଧାନ ଓ ସବୁଠାରୁ ମୁଖ୍ୟ ପ୍ରଶ୍ନ ହେଲା କେମିତି ଆମ ସୀମାନ୍ତର ଅକ୍ଷୁଣ୍ଣତା ଓ ନିରାପତ୍ତା ରହିପାରିବ ଏବଂ ଆମେ ଆକ୍ରମଣକାରୀଙ୍କୁ ଆମ ଭୂମିରୁ ବିତାଡ଼ିତ କରିବା । ଏ ଦିଗରେ କିଛି କରାଯାଉଛି କି ?"

ମୁଁ ଏଥର ଅବଶ୍ୟ ପୁଣି କୃଷ୍ଣ ମେନନ୍‌ଙ୍କ ସମାଲୋଚନା କରି ପ୍ରଧାନମନ୍ତ୍ରୀଙ୍କୁ ଅନୁରୋଧ କଲି ଯେ—ସେ ତାଙ୍କୁ ଅନ୍ୟ ଦେଶମାନଙ୍କୁ ନପଠାଇ କେବଳ ଚୀନ୍ ଓ ରୁଷ ଦେଶକୁ ପଠାଇଲେ ଭଲହେବ; କାରଣ ଅନ୍ୟ ସବୁ ଦେଶ ତାଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଛନ୍ତି । କଂଗ୍ରେସ ତରଫରୁ କେ. ହନୁମନ୍ତାୟା ତାଙ୍କ ବକ୍ତୃତାରେ କହିଲେ—"ପ୍ରଜା ସୋସଲିଷ୍ଟ-ପାର୍ଟିର ନେତା ଏହି ବିତର୍କକୁ ଏକ ଉଚ୍ଚଧରଣର ନେତୃତ୍ୱ ଦେଇଛନ୍ତି । ଅତ୍ୟନ୍ତ ଉଚ୍ଚ ଦେଶପ୍ରେମ, ବ୍ୟକ୍ତିଗତ ସମ୍ମାନଜ୍ଞାନ ଓ ମର୍ଯ୍ୟାଦା ସହକାରେ ଆଲୋଚନା ଚାଲିଛି ।

ଅନ୍ୟାନ୍ୟ ସଦସ୍ୟ ତାଙ୍କ ମତ ଖୋଲାଖୋଲିଭାବରେ ପ୍ରକାଶକଲେ ଏବଂ ପ୍ରଧାନମନ୍ତ୍ରୀ ଗୃହର ଆବହାଓ୍ୱା ଦେଖି ଏପରି ଭାବରେ ନୀତି ବର୍ଣ୍ଣନା କଲେ ଯେ ତାହା ସମସ୍ତଙ୍କର ଗ୍ରହଣଯୋଗ୍ୟ ହୋଇଥିଲା । ଏହା ପରେ ଆମେ ସବୁ ଦେଇଥିବା ସଂଶୋଧନ ପ୍ରସ୍ତାବ ଉଠାଇନେଇଥିଲୁ ଏବଂ ସରକାର ତରଫରୁ ସରକାରୀ ନୀତିର ପ୍ରଶଂସା କରିଯାଇ ଯେଉଁ ସଂଶୋଧନ ଆସିଥିଲା, ଆମମାନଙ୍କର ଅନୁରୋଧରେ ତାହା ମଧ୍ୟ ପେଶ୍ କରାଗଲାନାହିଁ ।

## ନେହରୁଙ୍କ ସହ ସାକ୍ଷାତ ଓ ଆଲୋଚନା

ଏଥିଭିତରେ ଆସନ୍ନ ଚୀନ୍ ଆକ୍ରମଣ ଏବଂ ଆମର ପ୍ରସ୍ତୁତି ସମ୍ବନ୍ଧରେ କିଛି ଜଣାପଡ଼ୁ-ନଥିବାରୁ ଆମ ମନରେ ଉଦ୍‌ବେଗ ଜାତହେଉଥିଲା । ପଣ୍ଡିତ ନେହରୁ ଇଉରୋପ ଗସ୍ତରୁ ଫେରିବା ସାଙ୍ଗେ ସାଙ୍ଗେ ଅକ୍ଟୋବର ୯ ତାରିଖ ସକାଳ ଘ ୯.୩୦ ମିନିଟ୍‌ରେ ତାଙ୍କ ଦପ୍ତରରେ ମୋର ତାଙ୍କ ସହ ସାକ୍ଷାତ ହେଲା । ଚୀନ୍ ଯୁଦ୍ଧ ସମ୍ବନ୍ଧରେ ଆମ ପାର୍ଟିର ମତଗତ ଆଲୋଚନା କରିବା ନିମନ୍ତେ ଏହି ସାକ୍ଷାତର ବ୍ୟବସ୍ଥା ହୋଇଥିଲା । ପଣ୍ଡିତ ନେହରୁ ବଡ଼ ବ୍ୟସ୍ତଥିଲେ—ଶ୍ରୀଲଙ୍କା ଯାତ୍ରା କରିବାର ଥିଲା—ସେ କଥା ମଧ୍ୟ ଚିଠିରେ ଲେଖିଥିଲେ । ଆମେ କାହିଁକି ପ୍ରତିରୋଧ କରିବା ସମ୍ଭବ ହେଉନାହିଁ—ଏହି ବିଷୟ ଉଠାନ୍ତେ ପଣ୍ଡିତ ନେହରୁ ଯାହା କହିଲେ ସେଥିରେ ମୁଁ ଚକିତ ହୋଇଗଲି । ସେ ମତେ ବୁଝାଇବାକୁ ଚେଷ୍ଟା କଲେ—ଯେଉଁ ସବୁ ଅଞ୍ଚଳରେ ଯୁଦ୍ଧ ଚାଲିଛି, ତାହା ଏପରି ଦୁର୍ଗମ, ପାହାଡ଼ିଆ ଓ ଶୀତ ଅଞ୍ଚଳ ଯେ ଆମ ସୈନ୍ୟଙ୍କ ପକ୍ଷରେ ପ୍ରବେଶ ସମ୍ଭବ ହେଉନଥିଲା । ଚୀନ୍ ପକ୍ଷ ସୈନ୍ୟମାନେ ଏଥିଲାଗି ଆଗରୁ ଶିକ୍ଷାପାଇଥିଲେ । ସେମାନେ ସାଙ୍ଗରେ ଖାଲି କିଛି ଚାଉଳ, ଚୁଲି ଓ ଗରମ ପାଣି ଧରି ଆସୁଥିଲେ—ଗରମ ପାଣି ସାହାଯ୍ୟରେ ଭାତ ରାନ୍ଧି ଏବଂ ଚୁଲି କରି ଖାଉଥିଲେ । ଏମିତିଭାବରେ ବହୁଦିନ ରହିବାଲାଗି ସେମାନେ କ୍ଷମ; ମାତ୍ର ଆମ ସୈନ୍ୟଙ୍କ ପାଖରେ ତ ଯଥେଷ୍ଟ ଶୀତବସ୍ତ୍ର ନଥିଲା—ଏପରି ଖାଦ୍ୟ ଖାଇ ଲଢ଼ାଇ କରିବା ନିମନ୍ତେ ଆମ ସୈନ୍ୟ ବି ସମର୍ଥ ନଥିଲେ । ଏହି ସବୁ ଅସୁବିଧା କଥା ନେହରୁ ବଡ଼ ମନୋଦୁଃଖରେ ବର୍ଣ୍ଣନା କରୁଥିଲେ । ମାତ୍ର ସେହିଦିନ ସେ କଲମ୍ବୋ ଯିବାପଥେ ମାନ୍ଦ୍ରାଜରେ ସାମ୍ବାଦିକମାନେ ପ୍ରଶ୍ନ କଲାରୁ ଘୋଷଣା କଲେ ଯେ—ଚୀନାମାନଙ୍କୁ ବାହାର କରିଦେବା ନିମନ୍ତେ ସୈନ୍ୟବାହିନୀକୁ ନିର୍ଦ୍ଦେଶନାମା ଦିଆଗଲାଣି ।

## ଚୀନ ଘେରା ଦେଶରେ ଅଦ୍ଭୁତ ଏକତା

ଏହା ପରେ ଭାରତ ସରକାରର ମତଗତ ନିର୍ଦ୍ଦିଷ୍ଟ ରୂପ ଧରିଲା ଏବଂ ଲୋକଙ୍କ ମଧ୍ୟରେ ଉତ୍ସାହ ଖେଳିଗଲା । କମ୍ୟୁନିଷ୍ଟଙ୍କ ବ୍ୟତୀତ ସବୁ ଜାତୀୟତାବାଦୀ ଶକ୍ତି ସରକାର ପଛରେ ଛିଡ଼ା ହେଲେ—ଚୀନ ଆକ୍ରମଣରୁ ରକ୍ଷାହେଲା ଆମର ମୁଖ୍ୟ ଓ ଏକମାତ୍ର ଦାୟିତ୍ୱ । ଚୀନ୍ ପୁଣି ଶେଲା ପାସ୍ ଦେଇ ଆମ ଦେଶ ଭିତରେ ପ୍ରବେଶ କଲା ଏବଂ ଆମ ସୈନ୍ୟ ତାର ପ୍ରତିରୋଧ କରିପାରିଲେ ନାହିଁ । ଏହା ଅତ୍ୟନ୍ତ ନୈରାଶ୍ୟ ଖେଳାଇଦେଲା । ଅବସ୍ଥା ଏପରି ହେଲା ଯେ ଖାଲି ଅରୁଣାଚଳ ଅଞ୍ଚଳ ନୁହେଁ, ଆସାମ ବି ଆମଠାରୁ ବିଚ୍ଛିନ୍ନ ହୋଇଯିବାର ଆଶଙ୍କା ଉପୁଜିଲା । ବିଜୁ ପଟ୍ଟନାୟକ ସେତେବେଳକୁ ଯୁଦ୍ଧ ସମ୍ବନ୍ଧରେ କିଛି ପରାମର୍ଶ ଦେବା ନିମନ୍ତେ ପଣ୍ଡିତ ନେହରୁଙ୍କ ଅଫିସ୍ ପାଖରେ ଏକ କୋଠରି ପାଇ ମଝିରେ ମଝିରେ ଯା'ଆସ କରୁଥିଲେ । ସେ ଆସାମ ସମ୍ବନ୍ଧରେ ଏପରି ଏକ ବିବୃତି ଦେଲେ ଯେ ଆସାମବାସୀ ଅତ୍ୟନ୍ତ ଆତଙ୍କିତ ହୋଇପଡ଼ିଲେ ଏବଂ କେନ୍ଦ୍ର ସେମାନଙ୍କୁ ଅରକ୍ଷିତ କରି ଛାଡ଼ିଦେବ ଏପରି ଏକ ଧାରଣା ସେମାନଙ୍କ ମନରେ ଜାତହେଲା । କେନ୍ଦ୍ରପ୍ରତି ଏକ ବିରାଗ ଭାବ ସେହି କାଳରୁ ଆସାମ ଅଧିବାସୀଙ୍କ ଭିତରେ ପ୍ରବେଶ କଲା । ଏବେ ବି ତାହା ବଡ଼ିଛି ସିନା, ଊଣା ହୋଇନାହିଁ । ଏପରି ଏକ ଅନିଶ୍ଚିତ ଓ ଆତଙ୍କିତ ପରିସ୍ଥିତି ବେଳେ ଦେଶଲୋକଙ୍କ ମନରେ ଆତ୍ମବିଶ୍ୱାସ ସୃଷ୍ଟି କରିବା ଏବଂ ଦେଶରେ ଏକତା ରକ୍ଷା କରିବା ଏକମାତ୍ର ଦେଶପ୍ରେମ ବୋଲି ବିଚାର କରାଯାଉଥିଲା । କୃଷ୍ଣ ମେନନ୍‌ଙ୍କ କମ୍ୟୁନିଷ୍ଟ ପକ୍ଷପାତୀ ନୀତିଯୋଗୁଁ କମ୍ୟୁନିଷ୍ଟଙ୍କ ଆକ୍ରମଣର ସମ୍ମୁଖୀନ ହେବା ନିମନ୍ତେ ଆମ ପାଖରେ ଅସ୍ତ୍ରଶସ୍ତ୍ର ବା ଅନ୍ୟ ସରଞ୍ଜାମ ନଥିଲା । ରାଷ୍ଟ୍ରପତି ରାଧାକୃଷ୍ଣନ୍ ରଣକ୍ଷେତ୍ର ପରିଦର୍ଶନ କରି ଅତି କଠୋର ସମାଲୋଚନା କଲେ । ବିଭିନ୍ନ ଦେଶରୁ ଅସ୍ତ୍ରଶସ୍ତ୍ର ଯୋଗାଡ଼ର ଉଦ୍ୟମ ହେଲା; ମାତ୍ର ବାହାଘରବେଳେ ବାଇଗଣ ରୁଆ କଣ କାମରେ ଲାଗେ ! ଆମର ଏତେ କାଳର ବନ୍ଧୁ ସୋଭିଏଟ୍ ରୁଷ ଜଣାଇଦେଲା—ଚୀନ୍ ତାଙ୍କର ଭାଇ ଏବଂ ଭାରତ ହେଲା ବନ୍ଧୁ—ତେଣୁ ଭାଇ ଆଡ଼କୁ ତାଙ୍କର ବେଶି ସହାନୁଭୂତି । ଆମେରିକା ସହିତ ଆମର ବେଶି ସଦ୍‌ଭାବ ନଥାଏ । ତଥାପି ତାଙ୍କ ପାଖରେ ପହଞ୍ଚିବାକୁ ପଡ଼ିଲା । ଏତେବେଳେ ଅସ୍ତ୍ରଶସ୍ତ୍ର ବୋହିନେବାଲାଗି ଯେଉଁ ଦ୍ରୁତଗାମୀ ପରିବହନ ଆବଶ୍ୟକ, ତାହା କେବଳ ଆମେରିକାଠାରୁ ମିଳୁଥିଲା । ପଣ୍ଡିତ ନେହରୁଙ୍କୁ ବାଧ୍ୟ ହୋଇ ଆମେରିକାର ଦ୍ୱାରସ୍ଥ ହେବାକୁ ପଡ଼ିଲା । କୃଷ୍ଣ ମେନନ୍‌ଙ୍କୁ ବାହାର କରିଦେଇଥିବାରୁ ଆମେରିକା କିଛି ପରିମାଣରେ ଭରସା ପାଇ ସାହାଯ୍ୟ କରିବାକୁ ଆଗଭର ହୋଇ ଆସିଲା ।

କୃଷ୍ଣ ମେନନ୍‌ଙ୍କର ଆମେରିକା-ବିରୋଧୀ ଏବଂ ରୁଷସପକ୍ଷବାଦୀ ମତବାଦ ଯୋଗୁଁ ଦେଶ ମହାବିପଦର ସମ୍ମୁଖୀନ ହେଲା । ଚୀନ ପ୍ରତି ଆମର ମନୋଭାବ ଆହୁରି ଦୃଢତର କରିବାକୁ ପଡ଼ିଲା । ୧୯୬୨ ମସିହା, ନଭେମ୍ବର ୧୪ ତାରିଖରେ ପଣ୍ଡିତ ନେହରୁଙ୍କ ଜନ୍ମଦିବସରେ ଲୋକସଭାରେ ଏକ ପ୍ରସ୍ତାବ ପାସ୍ କରାଗଲା, ଯାହା ଫଳରେ ଚୀନ୍ ସହ କାଳେ ଲୁଟାମଣା

ଭାରତ କରିଯିବାର ଯେ ଭୟ ଆମେରିକାର ଥିଲା, ତାହା ଦୂରୀଭୂତ ହୋଇଗଲା । ନଭେମ୍ବର ୧୪ ତାରିଖରେ ପାର୍ଲିମେଣ୍ଟରେ ଯେଉଁ ପ୍ରସ୍ତାବ ବା ଶପଥ ଗ୍ରହଣ କରାଗଲା, ସେଥିରେ ରହିଲା—"ଯେତେ ଦୀର୍ଘ ଏବଂ କଠିନ ହେଉ ପଛକେ, ଲୋକସଭା ପୁନର୍ବାର ଘୋଷଣା କରୁଛି ଯେ, ଭାରତର ଲୋକେ ଭାରତର ପବିତ୍ର ଭୂମିରୁ ଆକ୍ରମଣକାରୀଙ୍କୁ ତଡ଼ିଦେବା ନିମନ୍ତେ ଯେ ଶପଥ ଗ୍ରହଣ କରିଛନ୍ତି, ସେ ସଂଗ୍ରାମ ହୃଦୟରେ ଆଶା ଓ ବିଶ୍ୱାସ ପୋଷଣ କରିଯାଇ ଶେଷ ପର୍ଯ୍ୟନ୍ତ ଚାଲୁରଖାଯିବ ।" ଏହି ରୂପେ ନଭେମ୍ବର ୧୪ ତାରିଖ କେବଳ ନେହରୁଙ୍କ ଜନ୍ମଦିବସ ହୋଇ ରହିଲା ନାହିଁ, ଭାରତର ଏକ ଐତିହାସିକ ଦିବସରୂପେ ରହିଲା । ଏଣିକି ଭାରତର ଯାହା ସ୍ଥିତି ହେଲା, ସେଥିରେ ଏତିକି କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ, ଏକପକ୍ଷରେ ଭାରତୀୟ ଲୋକ ଏବଂ ଅନ୍ୟପକ୍ଷରେ ଚୀନର କମ୍ୟୁନିଷ୍ଟ ସରକାର ବିରୁଦ୍ଧରେ ଏ ଯୁଦ୍ଧ ସଂଘର୍ଷ ଲାଗିଗଲା । ରାଜନୀତି କ୍ଷେତ୍ରରେ ମଧ୍ୟ ବିରୋଧୀ ଓ ସରକାର ଭିତରେ ଥିବା ଜାତୀୟତାବାଦୀ ଓ ଦେଶପ୍ରେମୀ ଦଳ ଓ ବ୍ୟକ୍ତିବିଶେଷ-ମାନଙ୍କ ଭିତରେ ଏକ ଅଦ୍ଭୁତ ମିଳନ ପ୍ରତିଷ୍ଠା ହେଲା । କମ୍ୟୁନିଷ୍ଟ ଏକପ୍ରକାର ଏକଘରିଆ ଓ ଘୃଣ୍ୟ ବୋଲି ବିବେଚିତହେଲେ ।

## ଆମ ସହ ଲାଲବାହାଦୁରଙ୍କ ମନ୍ତ୍ରଣା

ପି. ଏସ୍. ପି. ପ୍ରକାଶ୍ୟରେ ଦେଶରକ୍ଷା ଲାଗି ସମର୍ଥନ ଜଣାଇବା ସଙ୍ଗେ ସଙ୍ଗେ ସରକାରୀ ତ୍ରୁଟିର ମଧ୍ୟ ଘୋର ସମାଲୋଚନା କରୁଥିଲା । ଯୁଦ୍ଧ ଲାଗିଯାଇଥିବାରୁ ଏ ସମ୍ପର୍କୀୟ କିଛି ସମ୍ବାଦ ବି ଆମମାନଙ୍କର ହସ୍ତଗତ ହେଉଥିଲା ଏବଂ ଆମେ ପାର୍ଲିମେଣ୍ଟରେ ତାହା ଉତ୍ଥାପନ କରୁଥିଲୁ । ସରକାର ପାଖରେ କୌଣସି ଜବାବ ନ ଥିଲା; ସେମାନେ ଲୋକଙ୍କୁ ସନ୍ତୁଷ୍ଟ କଲାଭଳି କିଛି କହିପାରୁ ନଥିଲେ । ଏତଦ୍ଦ୍ୱାରା ସରକାର ବଡ଼ ଅଡ଼ୁଆ ଅବସ୍ଥାରେ ପଡ଼ୁଥିଲେ । ଲାଲବାହାଦୁର ଶାସ୍ତ୍ରୀ ସେତେବେଳକୁ ସ୍ୱରାଷ୍ଟ୍ରମନ୍ତ୍ରୀ ଥିଲେ ଏବଂ ପଣ୍ଡିତ ନେହରୁ ସବୁ ବିଷୟରେ ତାଙ୍କ ସହ ପରାମର୍ଶ କରୁଥିଲେ । ନଭେମ୍ବର ୨୩ ତାରିଖରେ ହଠାତ୍ ଲାଲବାହାଦୁର ଶାସ୍ତ୍ରୀ ମୋ ପାଖକୁ ବାର୍ତ୍ତା ପଠାଇଲେ ଯେ ନେହରୁଙ୍କ ଆଦେଶକ୍ରମେ, କେତେକ ଗୁରୁତର ବିଷୟ ବିଚାର କରିବା ନିମନ୍ତେ ଦିନ ୨ଟାବେଳେ ମୋର ଅନ୍ୟ ସାଥୀଙ୍କ ନେଇ ତାଙ୍କ ସହ ସାକ୍ଷାତ କରିବା ନିମନ୍ତେ । ହରିବିଷ୍ଣୁ କାମାଥ, ନାଥ ପାଇ, ହେମ ବଡ଼ୁଆ ଓ ମୁଁ ତାଙ୍କ ଦପ୍ତରରେ ଠିକ୍ ସମୟରେ ଭେଟିଲୁ । ମୁଁ ଭାବିଥିଲି, ସେଦିନ ସାଢ଼େଦୁଇଟା ବେଳକୁ ମୋର ଯେଉଁ ବେସରକାରୀ ପ୍ରସ୍ତାବ ରହିଥିଲା, ବୋଧହୁଏ ସେହି ବିଷୟରେ କିଛି କହିବେ । ମାତ୍ର ସେ ଆମକୁ ବିଶ୍ୱାସକୁ ନେଇ କହିଲେ ଯେ ସେତେବେଳେ ବଡ଼ ଦୁର୍ଦ୍ଦିନ ଓ ଦୁଃସ୍ଥିତି ଭିତରେ ସରକାର ରହିଥିଲା । ପ୍ରାୟ ସାଧାରଣ ଅସ୍ତ୍ରଶସ୍ତ୍ର ଏପରିକି ୩୦୩ ବନ୍ଧୁକର ବି ଅଭାବ ଘଟିଥିଲା । ଆମେରିକାର ସାହାଯ୍ୟ ଯେକୌଣସି ମୁହୂର୍ତ୍ତରେ ପହଞ୍ଚିବାର ଆଶା ଥିଲା—

ମାତ୍ର ପହଞ୍ଚି ନଥିଲି । ତେଣୁ ଆମ ତରଫରୁ ଏ ସମ୍ବନ୍ଧରେ ପ୍ରଶ୍ନ ହେଲେ ପଣ୍ଡିତଜୀ ବି ଅଡୁଆରେ ପଡ଼ୁଥିଲେ । ସେଥିରୁ ବିରତ ହେବା ନିମନ୍ତେ ଆମକୁ ଅନୁରୋଧ କଲେ ଏବଂ ଆମେ ଦେଶର ହିତଦୃଷ୍ଟିରୁ ତାହା ରକ୍ଷାକଲୁ । ସେଇଠାରେ ସେ ଜଣାଇଲେ, ଆଜି ଦ୍ୱିବେଦୀଙ୍କର ଯେଉଁ ପ୍ରସ୍ତାବ ରହିଥିଲା, ସେଥିରେ ପଣ୍ଡିତଜୀ ଉତ୍ତର ଦେବାଲାଗି ସ୍ଥିର ହୋଇଥିଲା ।

## ବେସରକାରୀ ପ୍ରସ୍ତାବରେ ପଣ୍ଡିତଜୀ ?

ଏକଥା ଶୁଣି ଆମେ ଟିକିଏ ଚାଟକା ହୋଇ ଗଲୁ । ବେସରକାରୀ ପ୍ରସ୍ତାବରେ ସାଧାରଣତଃ ପଣ୍ଡିତଜୀ ଜବାବ ଦେଉନଥିଲେ । ସ୍ୱରାଷ୍ଟ୍ରମନ୍ତ୍ରୀ ଲାଲବାହାଦୁର ଜବାବ ଦେବାର କଥା—ହଠାତ୍ ପଣ୍ଡିତଜୀ ଆସୁଥିଲେ କାହିଁକି ? ମୋର ପ୍ରସ୍ତାବଟି ବାହାରକୁ ଅତି ନିରୀହ ପରି ଜଣାପଡ଼ୁଥିଲେ ସୁଦ୍ଧା ଦେଶ ଦୃଷ୍ଟିରୁ ବଡ଼ ଗୁରୁତ୍ୱପୂର୍ଣ୍ଣ ଥିଲା ।

ନଭେମ୍ବର ୨୩ ତାରିଖ ଅପରାହ୍ନ ୨-୩୦ ମିନିଟ୍‌ରେ ମୁଁ ନିମ୍ନଲିଖିତ ପ୍ରସ୍ତାବ ଆଗତ କରିଥିଲି—"ଅର୍ଥସଂକୋଚନ ଏବଂ ସରକାରୀ କଳର କର୍ମକୁଶଳତା ବଢ଼ାଇବା ଦୃଷ୍ଟିରୁ, ଏପରି ସଂକଟ ମୁହୂର୍ତ୍ତର ଆବଶ୍ୟକତା ପୂରଣ ନିମନ୍ତେ ନିମ୍ନଲିଖିତ ବ୍ୟବସ୍ଥାମାନ ଗ୍ରହଣ କରାଯାଉ : (୧) ମନ୍ତ୍ରିପରିଷଦର ସଭ୍ୟସଂଖ୍ୟା ହ୍ରାସ କରାଯାଉ ଏବଂ (୨) ମନ୍ତ୍ରୀ ଓ ସରକାରୀ ଦପ୍ତରମାନଙ୍କରେ ଆଡ଼ମ୍ବରବହୁଳ ବ୍ୟୟ କରାଯାଇ ବ୍ୟୟ-ସଂକୋଚର ଚେଷ୍ଟା ହେଉ ।

ମୁଁ ମୋ ଭାଷଣରେ ବିଭିନ୍ନ ଦିଗରୁ ବ୍ୟୟ-ସଂକୋଚର କିପରି ଆବଶ୍ୟକତା ରହିଥିଲା ଏବଂ ଯୁଦ୍ଧ ଉଦ୍ୟମ ଲାଗି ଆମର ପ୍ରତ୍ୟେକ ପଇସା କିପରି ବ୍ୟୟ ହେବା ଉଚିତ, ଏହା ଦର୍ଶାଇଥିଲି ଏବଂ ତାହା ସଙ୍ଗେ କେନ୍ଦ୍ର ଓ ରାଜ୍ୟମାନଙ୍କରେ ଥିବା ରାଜ୍ୟସଭା ଓ ବିଧାନ-ପରିଷଦଗୁଡ଼ିକୁ ଉଠାଇଦେବା ଏବଂ ଗଭର୍ଣ୍ଣର ପଦମାନ ଲୋପ କରିବା ନିମନ୍ତେ ଦାବୀ କରିଥିଲି । ମୋର ଯୁକ୍ତି, ଜରୁରୀ ପରିସ୍ଥିତି ଜାରି ହେବାପରେ ଏହି ଦୁଇଟି ନରହିଲେ ବି ଚଳିବ ଏବଂ ଏ ସବୁ ଧଳାହାତୀ ପିଛା ଯାହା ବ୍ୟୟ ହେଉଥିଲା, ତହିଁରୁ ବହୁଧନ ରକ୍ଷା କରାଯାଇପାରିବ ।

## ମତେ ବି ଜଣାନଥିଲା

ବେସରକାରୀ ପ୍ରସ୍ତାବର ସୁଯୋଗ ପାଇବା କିଛି ସହଜ ନଥିଲା । ନିୟମାନୁସାରେ ଯେଉଁମାନେ ନୋଟିସ୍ ଦେଉଥିଲେ, ତାଙ୍କ ନାମ ସବୁ ବାଲଟ୍ କରାଯାଉଥିଲା ଏବଂ ଯାହା ନାମ ଉଠୁଥିଲା, ତାଙ୍କୁ ଲୋକସଭା ଅଫିସରୁ ନିର୍ଦ୍ଦେଶ ଆସେ ପ୍ରସ୍ତାବର ନୋଟିସ ଦେବାଲାଗି । ମୋ ନାମ ଉଠିବାର ସଂବାଦ ପହଞ୍ଚିବାମାତ୍ରକେ ମୁଁ ଉପରୋକ୍ତ ପ୍ରସ୍ତାବ ବିଚାର ଲାଗି ଦେଇଥିଲି । ମାତ୍ର ଏହା ଏପରି ସମୟୋପଯୋଗୀ ଏବଂ ଗୁରୁତ୍ୱପୂର୍ଣ୍ଣ ଆକାର

ନେବ ବୋଲି ସେତେବେଳେ ମୁଁ ଅନୁମାନ କରିପାରିନଥିଲି । ପଣ୍ଡିତଜୀ ଆଲୋଚନାରେ ଭାଗନେବାକୁ ଆସିବେ ଶୁଣିବାମାତ୍ରକେ ମୋର ଚେତା ପଶିଲା ଏବଂ ମୁଁ ଅଳ୍ପକ୍ଷଣ ମଧ୍ୟରେ ପ୍ରସ୍ତୁତ ହୋଇଗଲି ।

## ସବୁ ଦଳ ଓ ସବୁ ମତର ସମର୍ଥନ

ପଣ୍ଡିତଜୀ କହିବାଲାଗି ସମୟ ଦରକାର ବୋଲି ଡେପୁଟି ସ୍ପିକର କହିବାରୁ ମୋର ଯେତିକି କହିବାର କଥା, ତାହା ମୁଁ ସଂକ୍ଷିପ୍ତ କରିଦେଇଥିଲି । ମାତ୍ର କଂଗ୍ରେସ, ବେ-କଂଗ୍ରେସ, ଏପରିକି କମ୍ୟୁନିଷ୍ଟ ଦଳରୁ ସରଯୂ ପାଣ୍ଡେଙ୍କ ପରି ସଦସ୍ୟମାନେ ଉଠି ମତେ ପ୍ରଶଂସା କଲେ ଏବଂ ଦୃଢ଼ ସମର୍ଥନ ଜଣାଇଲେ । ପ୍ରକାଶ ବୀର ଶାସ୍ତ୍ରୀ ନାମକ ଜଣେ ଖ୍ୟାତନାମା ସ୍ୱାଧୀନ ସଭ୍ୟ ସମର୍ଥନ ଜଣାଇ କହିଲେ—"ରାଷ୍ଟ୍ରକୀ ସଂକଟକାଲୀନ ଘଡ଼ିଓଁ କା ଜବ୍ କଭି ଇତିହାସ ଲିଖାଜାଏଗା, ଔର ଉସ୍ ଇତିହାସମେଁ ଲୋକସଭାକା ଏକ ଅଧ୍ୟାୟ ହୋଗା, ତୋ ଉସ୍ ଅଧ୍ୟାୟୋଁମେଁ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ କା ନାମ୍ ସୋନେଁକୀ ଅକ୍ଷରମେଁ ଲିଖା ଜାଏଗା କି ଉସ୍ ବିଶେଷ ପରିସ୍ଥିତିୟୋଁ ମେଁ ଇତନା ଏକ ମହତ୍ତ୍ୱପୂର୍ଣ୍ଣ ସୁଝାବ୍ ଉନ୍‌ହୋଁନେ ସଂସଦକେ ସମ୍ମୁଖମେଁ ଅପି ତୁ ଦେଶ୍‌କେ ସମ୍ମୁଖ ଉପସ୍ଥିତ କିୟା । ୟିହ୍ ବିଚାରଧାରା ଦୋ ଆଜ୍ ସଂସଦମେଁ ପହିଲୀବାର୍ ଚର୍ଚ୍ଚା କା ବିଷୟ ବନୀ ହୈଁ ।"

## ପଣ୍ଡିତଜୀଙ୍କ ଭାଷଣ ଓ ଅନୁରୋଧ

ପଣ୍ଡିତ ନେହରୁ କହିଲେ ଯେ ଏ ପ୍ରସ୍ତାବର ଉଦ୍ଦେଶ୍ୟ ଏବଂ ଯେଉଁ କାରଣରୁ ଆଗତ କରାଯାଇଥିଲା, ସେଥିସହିତ ସାରା ଗୃହର ସମ୍ମତି ରହିଲା । ଉଦ୍ଦେଶ୍ୟ ହେଲା ବ୍ୟୟ-ସଂକୋଚ; ଅପବ୍ୟୟ ବନ୍ଦ ହେବ ଏବଂ କର୍ମକୁଶଳତା ବୃଦ୍ଧି ପାଇବ ।

ଏପରି ସମ୍ମତି ଜଣାଇବା ସଙ୍ଗେ ସଙ୍ଗେ ମୁଁ ଯେ ମନ୍ତ୍ରୀଙ୍କ ସଂଖ୍ୟା ହ୍ରାସ, ଗଭର୍ଣ୍ଣର ପଦ ଉଠାଇଦେବା ଏବଂ ରାଜ୍ୟସଭା ଓ ବିଧାନ ପରିଷଦ ଲୋପ କରିବାର ପରାମର୍ଶ ଦେଇଥିଲି, ତାହାର ତୀବ୍ର ବିରୋଧ କଲେ ଏବଂ ଏପରିକି ଏତଦ୍‌ଦ୍ୱାରା ପାର୍ଲିମେଣ୍ଟାରୀ ପଦ୍ଧତି ଲୋପ କରିବାହିଁ ହୋଇଯିବ ବୋଲି କହିଲେ । ଏହା ମୋର କେବେହେଲେ ଉଦ୍ଦେଶ୍ୟ ନୁହେଁ ବୋଲି ମୁଁ ପ୍ରତିକରିବାରୁ ସେ କହିଲେ, ମୁଁ ସ୍ୱୀକାର କରୁଛି ମାନ୍ୟବର ସଭ୍ୟ କେବେହେଁ ତାହା ଚାହାଁନ୍ତି ନାହିଁ; ମାତ୍ର ଏହାର ପରିଣତି ହେବ ତାହା । ମଣିଷକୁ ରଖି ତାର ଗୋଡ଼ କାଟିଦେବା ବା ମୁଣ୍ଡକାଟ ସାଙ୍ଗେ ଗଭର୍ଣ୍ଣର ଓ ରାଜ୍ୟସଭା ଉଠାଇଦେବା ପ୍ରସ୍ତାବ ସମାନ ବୋଲି କହି ତାଚ୍ଛଲ୍ୟ ବି କଲେ । ମାତ୍ର ପ୍ରସ୍ତାବଟି ଭଲ ଏବଂ ଏହାର ଉଦ୍ଦେଶ୍ୟ ପୂରଣ କରିବା ନିମନ୍ତେ ଚେଷ୍ଟା କରାଯିବ । ସେ କହିଲେ, "ଅର୍ଥକାଟ ଯେ ସବୁପ୍ରକାରେ ହେବା

ଉଚିତ, ଏହି ସାଧାରଣ ନୀତିକୁ ମୁଁ ଗ୍ରହଣ କରୁଛି । ଯୁଦ୍ଧ-ଉଦ୍ୟମର ସଫଳତା ଓ ସମର୍ଥ କାର୍ଯ୍ୟ ହିଁ ଏଥିର ପରୀକ୍ଷା । କୌଣସି ଅପବ୍ୟାଖ୍ୟା ହେବା ଉଚିତ ନୁହେଁ । ମୁଁ ବିଶ୍ୱାସ କରୁଛି ଏହି ବିତର୍କ ଶେଷ ହେବା ପରେ ମାନ୍ୟବର ପ୍ରସ୍ତାବକ ପ୍ରସ୍ତାବଟିକି ପ୍ରତ୍ୟାହାର କରିନେବେ; କାରଣ ମୂଳକଥାରେ ଆମେ ତାଙ୍କ ସହ ସମ୍ମତ ।" ଏହାପରେ ପ୍ରଧାନମନ୍ତ୍ରୀ ମୂଳନୀତି ସ୍ୱୀକାର କରୁଥିବା ହେତୁ ମୁଁ ପ୍ରସ୍ତାବଟିକୁ ଉଠାଇନେଲି ।

ଏହି ପ୍ରକାରେ ପ୍ରସ୍ତାବଟି ଭୋଟ ଦିଆ ନଆଗଲା । ଏଥିରେ ଆମର ଏକ ନୈତିକ ବିଜୟ ହେଲା । ଏଥିରୁ ପରିଷ୍କାର ହେଲା ପଣ୍ଡିତ ନେହରୁ ପାର୍ଲିମେଣ୍ଟରେ ଉଠୁଥିବା ପ୍ରତ୍ୟେକ ପ୍ରଶ୍ନ ପ୍ରତି ଉପରେ ସର୍ବଦା ସଚେତନ ରହୁଥିଲେ ।

ଚୀନ ଭାରତ ଲଢ଼ାଇର ଅବସାନ ଘଟିଲା । ଚୀନ ସ୍ୱେଚ୍ଛାରେ ଯୁଦ୍ଧ-ବିରତି ଘୋଷଣା କଲା; ମାତ୍ର ଭାରତ ମୁହଁରେ କାଳିଦାଗ ବୋଳିଦେଇଗଲା । ପଣ୍ଡିତ ନେହରୁଙ୍କ ଜୀବନର ଏହା ସବୁଠାରୁ ଏକ ବଡ଼ ବ୍ୟର୍ଥତା । ପଞ୍ଚଶୀଳ ନୀତି ଓ ନିରପେକ୍ଷତା ଉପରେ ଆଞ୍ଚ ଆସିଲା । ଆମେରିକା ପାଖରୁ ଶେଷରେ ସାହାଯ୍ୟ ମାଗିବାକୁ ପଡ଼ିଲା । ଏଥିରେହିଁ ପଣ୍ଡିତ ନେହରୁଙ୍କର ଏପରି ସ୍ୱାସ୍ଥ୍ୟଭଗ୍ନ ହୋଇଥିଲା ଯେ ସେ ଅଳ୍ପ କେତେମାସ ପରେ ପ୍ରାଣ ହରାଇଲେ । ଆମେରିକାରେ ନେହରୁ ଓ ଭାରତର ମର୍ଯ୍ୟାଦା ହାନି ଘଟିଥିଲା । କୃଷ୍ଣ ମେନନ୍ ଇସ୍ତଫା ଦେଇଥିବା ସତ୍ତ୍ୱେ ଆମେ ଯେତେବେଳେ ପାର୍ଲିମେଣ୍ଟାରି ଦଳ ଗସ୍ତରେ ଯାଇଥିଲୁ ବିଭିନ୍ନ ସ୍ଥଳରେ, ଲୋକମାନେ ଭୋଜିଭାତବେଳେ ପଚାରୁଥିଲେ, "କୃଷ୍ଣ ମେନନ୍ କୁଆଡ଼େ ପ୍ରତିଦିନ ସକାଳୁ ଆସି ପ୍ରଧାନମନ୍ତ୍ରୀ ନେହରୁଙ୍କ ସହ ପ୍ରାତଃଭୋଜନ କରୁଛନ୍ତି !"

ଚୀନ ସମସ୍ୟା ସମ୍ବନ୍ଧରେ ସବୁ କଥା ଏଥିରେ ଲେଖାଯାଇନାହିଁ । ତେଣୁ ପୂର୍ଣ୍ଣ ବିବରଣୀ ପାଇବାଲାଗି କେହି ଇଚ୍ଛା କଲେ ହତାଶ ହେବେ; ମାତ୍ର ମୁଁ ପ୍ରତ୍ୟକ୍ଷଭାବରେ ସମ୍ପୃକ୍ତ ଥିବା କେତେକ ବିଷୟ ଏଥିରେ ଲେଖାଗଲା । ଏ ସନ୍ଦର୍ଭରେ ପଣ୍ଡିତ ନେହରୁଙ୍କ ସହ ହୋଇଥିବା ପତ୍ରାଳାପରୁ ଗୋଟିଏ ଏଠାରେ ଉଲ୍ଲେଖ କରି ଏ ବିଷୟଟି ଶେଷକରିବି ।

ଚୀନ ଯୁଦ୍ଧ-ବିରତି ଘୋଷଣା ହେବା ପରେ ଲୋକସଭାରେ ସେ ସମ୍ବନ୍ଧରେ ବିତର୍କ ହୋଇଥିଲା ଏବଂ ପଣ୍ଡିତ ନେହରୁ ଡିସେମ୍ବର ୧୦ ତାରିଖରେ କହିଥିଲେ—ପାର୍ଲିମେଣ୍ଟର ମଞ୍ଜୁରି ପାଇଲେ ସୀମା ସଂକ୍ରାନ୍ତୀୟ ଦାବୀକୁ ହେଗ୍‌ରେ ଥିବା ଇଣ୍ଟରନେସନାଲ୍ କୋର୍ଟ ଅଫ୍ ଜଷ୍ଟିସ୍‌ର ବିଚାରଲାଗି ପଠାଇବାଲାଗି ପ୍ରସ୍ତୁତ ଥିଲେ । ମାତ୍ର ଚୀନ ଆକ୍ରମଣ କରିଥିବା ଅଞ୍ଚଳ ଛାଡ଼ିବା ପରେ ଏବଂ ଆମର ପୂର୍ବାବସ୍ଥା ଫେରିପାଇଲେ ଯାଇ ଏହା କରାଯିବା କଥା ଉଠିବ ଏବଂ ଏହା ଏକ ନ୍ୟାୟସଙ୍ଗତ କଥା ହେବ ।

ଏହାପରେ ୧୯୬୩ ମସିହା ଫେବୃୟାରୀ ୨୭ ତାରିଖରେ ପାର୍ଲିମେଣ୍ଟ ବାହାରେ ଏକ ସାମ୍ବାଦିକ ସମ୍ମିଳନୀରେ ସେ କହିପକାଇଲେ ଯେ—ଇଣ୍ଟରନେସ୍‌ନାଲ କୋର୍ଟ ଅଫ୍ ଜଷ୍ଟିସ୍ ବା ଏପରିକି କେତେକ ଦେଶ ମିଶି ଏ ସମ୍ପର୍କରେ ଠିକଣା ପଞ୍ଚାୟତ (arbitration) କରିବାର ପ୍ରସ୍ତାବ ମୁଁ ଆଗରୁ ଦେଇସାରିଥିଲି ।

ଏହି ଯେ ବିଭିନ୍ନ ଦେଶ ମିଶି ପଞ୍ଚାୟତ ଗଠନ କରିବା ପ୍ରସ୍ତାବ ତାହା ପାର୍ଲିମେଣ୍ଟ ଆଗରେ ରଖାଯାଇନଥିବା ହେତୁ ମୁଁ ଏହାର ଆପତ୍ତି ଉଠାଇଲି ଏବଂ ତାଙ୍କୁ ଲେଖିଲି—ଏହା ଏକ ନୂତନ ପ୍ରସ୍ତାବ । କେତେଗୁଡ଼ିଏ ଦେଶ ଏଥିରେ ହସ୍ତକ୍ଷେପ କରିବା ପ୍ରସ୍ତାବରେ ମୂଳରୁ ରାଜିନାମା ହୋଇପାରିବନାହିଁ । ଏ ସମ୍ପର୍କରେ ଆମର ନୀତି ପରିଷ୍କାର କରିଦେବା ନିମନ୍ତେ ମୁଁ ତାଙ୍କୁ ଆହ୍ୱାନ କରି ଏକ ଚିଠି ୧୯୬୩ ମାର୍ଚ୍ଚ ମାସ ୨ ତାରିଖରେ ଲେଖିଥିଲି ।

ସେହିଦିନ କେତେକ ଘଣ୍ଟା ପରେ ତାଙ୍କଠାରୁ ଜବାବ ମିଳିଲା । ଏଇଟା ମୁଁ ଦିଲ୍ଲୀଠାରେ ସକାଳ ୧୦-୩୦ରେ ପାଇଲି । ମୋ ଚିଠି ହୁଏତ ୯ଟା ସୁଦ୍ଧା ତାଙ୍କର ହସ୍ତଗତ ହୋଇଥିବ । ମୁଖ୍ୟ ବିଷୟଗୁଡ଼ିକର, ଏପରିକି ସାଧାରଣ ଚିଠିଗୁଡ଼ିକର, ଉତ୍ତର ଦେବାରେ ପଣ୍ଡିତଜୀ କିପରି ତତ୍ପର ଥିଲେ ତାହାର ଏହା ଏକ ଦୃଷ୍ଟାନ୍ତ । ଆଜିକାଲି ଆମର ସରକାରୀ କର୍ତ୍ତାମାନେ ଏ ଦିଗରେ କିପରି ନିନ୍ଦନୀୟ ଆଚରଣ ଦେଖାନ୍ତି ତାହା ଊଣା ଅଧିକେ ଜଣା ।

ପଣ୍ଡିତଜୀ ତାଙ୍କ ଉତ୍ତରରେ କହିଲେ, ମୁଁ ଏକଥା ଚୀନ୍‌କୁ ଲେଖିଥିବା ଚିଠିରେ ଉଲ୍ଲେଖ କରିଥିଲି । ଏ ପର୍ଯ୍ୟନ୍ତ ତାଙ୍କଠାରୁ କିଛି ଉତ୍ତର ପାଇନାହିଁ । ହେଗ୍ କୋର୍ଟ ବା ପଞ୍ଚାୟତକୁ ଯିବା ପ୍ରଶ୍ନ ସ୍ୱୀକୃତ ହେଲେ ଅବଶ୍ୟ ପାର୍ଲିମେଣ୍ଟ ଆଗରେ ଉତ୍ଥାପନ କରାଯିବ—ବର୍ତ୍ତମାନ ସମୟ ଆସିନାହିଁ ।

ମଜାର କଥା ହେଉଛି, ଏହା ସହିତ କିଛି ସମ୍ପର୍କ ନଥିଲେ ସୁଦ୍ଧା ଲେଖିଲେ ଯେ—ତୁମକୁ ଜଣାଥିବ, ଜୟପ୍ରକାଶ ନାରାୟଣ ଅନେକ ଥର ପଞ୍ଚାୟତ ଗଠନ କରିବା ପ୍ରସ୍ତାବ ଉଠାଇଥିଲେ । ଜୟପ୍ରକାଶ ନାରାୟଣ ଆମ ଦଳରେ ନଥିଲେ କିମ୍ବା ଦଳର ରାଜନୀତିକ କାର୍ଯ୍ୟସହ ତାଙ୍କର କୌଣସି ସମ୍ପର୍କ ନଥିଲା । ମାତ୍ର ମୋର ବ୍ୟକ୍ତିଗତ ଭାବରେ ଜୟପ୍ରକାଶଙ୍କ ସହିତ ସମ୍ପର୍କ ଓ ତାଙ୍କ ମତ ପ୍ରତି ଆଦର ଥିବା ବିଷୟ ତାଙ୍କୁ ଜଣାଥିବାରୁ ନିଜ କାର୍ଯ୍ୟର ସମର୍ଥନ କରି ତାଙ୍କ ଦୃଷ୍ଟାନ୍ତ ଦେଇଦେବାକୁ ହୁଏତ ଇଚ୍ଛା କଲେ ।

ପଣ୍ଡିତ ନେହରୁ Prime Minister's House, New Delhiରୁ ୧୯୬୩ ମାର୍ଚ୍ଚ ୨ ତାରିଖରେ ଚିଠି No. 554-PMH-63ରେ ଲେଖିଲେ—

Dear Shri Dwivedy,

I have your letter of March 2nd.

As far as I can remember, I have in one or two of my letters to the Chinese Government, referred to the proposal to refer our dispute to the International Court of Justice at the Hague. I have also, I think, referred once to the possibility of arbitration. This was not done firmly as a proposal, but the idea was thrown out to see

what reaction the Chinese had to it. We have had no response of any kind to this suggestion.

Of course, if there is a question of referrence to the Hague Court or Arbitration, the matter will naturally have to be placed before Parliament. I hardly think it necessary or desirable to make a statement on this subject in the Lok Sabha at this stage.

You may remember that Jayaprakash Narayan has more than once suggested arbitration in this matter. I do not think there is anything improper in this course. Naturally much will depend upon the persons or countries chosen for this purpose.

Yours sincerely,
Jawaharlal Nehru

ପାର୍ଲିମେଣ୍ଟ ବାହାରର ବିଶିଷ୍ଟ ଲୋକଙ୍କର ମତକୁ ମଧ୍ୟ ନେହରୁ କିଭଳି ଗୁରୁତ୍ୱ ସହକାରେ ବିଚାରକରୁଥିଲେ, ଜୟପ୍ରକାଶ ନାରାୟଣଙ୍କ ପ୍ରସଙ୍ଗ ଉଲ୍ଲେଖରୁ ତାହା ସୂଚୀତ ହୁଏ ।

□□□

# ୧୪ । ୧୯୬୩ ଓ ପରବର୍ତ୍ତୀ ଘଟଣା

ଚୀନ୍ ସମସ୍ୟା ପରେ ୧୯୬୩ ମସିହାରେ ପାର୍ଲିମେଣ୍ଟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଲ—ସିରାଜୁଦ୍ଦିନ ବ୍ୟାପାର ଏବଂ ତାହିରେ କେନ୍ଦ୍ର ଓ ଓଡ଼ିଶା ମନ୍ତ୍ରୀଙ୍କ ସମ୍ପର୍କ । ଏ ଉଚ୍ଚସ୍ତରର ଦୁର୍ନୀତି କାରବାର ସମ୍ପର୍କରେ ନାନା ତଥ୍ୟ ପ୍ରକାଶ ପାଇବାରୁ ଏହା ଗୃଞ୍ଚଳ୍ୟ ସୃଷ୍ଟି କରିଥିଲା । ଦେଶସାରା ପ୍ରବଳ ଆନ୍ଦୋଳନ ହେଲା । ୧୯୬୩ରୁ ଆରମ୍ଭ ହେଲା ସିନା, ଏହି ବ୍ୟାପାର ସଂକ୍ରାନ୍ତୀୟ ଅନ୍ୟାନ୍ୟ ବିଷୟ ଆଲୋଚନାର ପରିସମାପ୍ତି ଘଟିଲା ୧୯୬୫ ମାର୍ଚ୍ଚ ୧୫ ଓ ୧୬ ତାରିଖରେ । ମୁଁ ଲାଲବାହାଦୁର ଶାସ୍ତ୍ରୀଙ୍କ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆଗତ କଲି । ମୋ ମନରେ ଗୋଟାଏ ସନ୍ତୋଷ ପାଇଛୁ ଯେ, ମୁଁ ଏଭଳି ଗୁରୁତର ସମସ୍ୟା ଦେଶ ଆଗରେ ପ୍ରଥମେ ଉତ୍ଥାପନ କଲି ଏବଂ ସେଥିରେ ସଫଳତା ହାସଲକଲି । କେନ୍ଦ୍ର ମନ୍ତ୍ରୀ କେଶବ ଦେଓ ମାଲବ୍ୟଙ୍କୁ ଇସ୍ତଫା ଦେବାକୁ ପଡ଼ିଲା ଏବଂ ପରେ ବିଜୁ ପଟ୍ଟନାୟକ ଓ ବୀରେନ୍ ମିତ୍ର ବି କ୍ଷମତାରୁ ଅପସରିଗଲେ । ଏହା ପୂର୍ବରୁ ଅବଶ୍ୟ କୃଷ୍ଣ ମେନନ୍ଙ୍କୁ ଦେଶର ବିରୋଧ ଯୋଗୁଁ ଇସ୍ତଫା ଦେବାକୁ ପଡ଼ିଥିଲା; ମାତ୍ର ତାହା ମୁଖ୍ୟତଃ ଥିଲା ରାଜନୀତିକ କାରଣରୁ । ମାତ୍ର ବ୍ୟକ୍ତିତ୍ୱର ଦୋଷରେ ଅଭିଯୁକ୍ତ ହୋଇ ପ୍ରମାଣିତ ହେବା ପରେ କଂଗ୍ରେସ ଓ ସରକାରରେ ଉଚ୍ଚସ୍ଥାନ ଦଖଲ କରିଥିବା ବ୍ୟକ୍ତିଙ୍କର ଏପରି ବହିଷ୍କାର କଂଗ୍ରେସଦଳକୁ ଲୋକଚକ୍ଷୁରେ ହୀନ କରିଦେଲା ଏବଂ ପଣ୍ଡିତ ନେହରୁ କିପରି ନିଜ ଦଳର ଲୋକଙ୍କୁ ଘଣ୍ଟିଘୋଡ଼ାଇବା ନିମନ୍ତେ ଉଦ୍ୟମ କରୁଥିଲେ, ତାହା ମଧ୍ୟ ପ୍ରକାଶପାଇଗଲା । ଏହି ସବୁ ଘଟଣା ସମ୍ପର୍କରେ ବହୁ ପୁସ୍ତକ ଓ ଲେଖା ପ୍ରକାଶିତ ହୋଇଛୁ । ମୁଁ ଓ ଶ୍ରୀ କେ. ଏଲ୍. ଭାର୍ଗବ ମିଳି "Political Corruption in India" ବୋଲି ଏକ ପୁସ୍ତକ ରଚନା କରିଥିଲୁ । ଏହା ୧୯୬୭ ମସିହାରେ ପ୍ରକାଶିତ ହେଲା । ଭାରତରେ ଏପରି ପୁସ୍ତକ ସମ୍ପୂର୍ଣ୍ଣ ନୂତନ । ଏହାଛଡ଼ା ଇଂରାଜୀରେ ମୁଁ ଛପାଇଥିଲି "C.B.I. Enquiry in Orissa" ନାମକ ଏକ ପୁସ୍ତକ । ଓଡ଼ିଶା ପ୍ରଜା ସୋସଲିଷ୍ଟ ପାର୍ଟି ତରଫରୁ ସି. ବି. ଆଇ. ରିପୋର୍ଟ ଓଡ଼ିଆରେ ଅନୁଦିତ ହୋଇ ଛପାହୋଇ ବିକ୍ରି ହେଲା । ସେ ସବୁର ବିସ୍ତୃତ ବିବରଣୀ ଏଠାରେ ଉଲ୍ଲେଖ କରୁନାହିଁ; କେବଳ କେଉଁ ପଶ୍ଚାତ୍‌ଭୂମିରେ ଏହା ଆରମ୍ଭ କରାଗଲା ଏବଂ କେମିତି କଣ ଘଟିଲା, ସେ ସମ୍ବନ୍ଧରେ କେତେକ ବିଷୟ ଉଲ୍ଲେଖ କରିବି । ତାହାଛଡ଼ା ନେହରୁ ଓ ଅନ୍ୟମାନଙ୍କ ସହ ଏ ସମ୍ବନ୍ଧରେ ଯାହା ଚିଠିପତ୍ର କାରବାର ହୋଇଥିଲା ସେଥିରୁ କେତେକ ପରିଶିଷ୍ଟରେ ଦିଆଯାଇଛୁ । ମୁଁ ମଧ୍ୟ ପାର୍ଲିମେଣ୍ଟ ଓ ବାହାରେ ଦୁର୍ନୀତି ବିରୁଦ୍ଧରେ ଯେପରି ଅଭିଯାନ ଏ କେତେବର୍ଷ ଧାରାବାହିକ ଭାବରେ ଚଳାଇପାରିଥିଲି, ସେଥିରେ ପାର୍ଲିମେଣ୍ଟରେ ଆମ ଦଳ ସଦସ୍ୟଙ୍କ ଛଡ଼ା ପ୍ରାୟ ସବୁ ବିରୋଧୀଦଳ ଓ କଂଗ୍ରେସର କେତେକ ମୁଖିଆ ଲୋକ ମୋ

ସହଯୋଗ ଦେଇଥିଲେ, ସେଥିଲାଗି ମୁଁ ସେମାନଙ୍କ ନିକଟରେ କୃତଜ୍ଞ । ଓଡ଼ିଶାରେ ଦୁଇଜଣ ମୁଖ୍ୟମନ୍ତ୍ରୀ ଓ ଅନ୍ୟ ମନ୍ତ୍ରୀମାନଙ୍କ ବିରୁଦ୍ଧରେ କିଛି କାର୍ଯ୍ୟ ବିଧାନ ନିଆଯାଇ ନଥିବାରୁ ମୁଁ ଯେଉଁ ଅନାସ୍ଥା ପ୍ରସ୍ତାବ ଆଗତ କରିଥିଲି ଏହା ପାର୍ଲିମେଣ୍ଟର ଇତିହାସରେ ଏକ ରେକର୍ଡ । ସମସ୍ତ ବିରୋଧ ଶକ୍ତି ଗୋଟିକ ପରେ ଗୋଟିଏ ଉଠି ଏହାକୁ ସମର୍ଥନ ଜଣାଇଥିଲେ ।

## ମହତାବଙ୍କ ସମର୍ଥନ ସତ୍ୟ ନୁହେଁ

ଓଡ଼ିଶାରେ ଏକ ସଫଳ ପ୍ରଚାର କରାଯାଇଥିଲା ଯେ, ମୋର ଏସବୁ କାର୍ଯ୍ୟରେ ହରେକୃଷ୍ଣ ମହତାବଙ୍କଠାରୁ ମୁଁ ବହୁ ସମର୍ଥନ ପାଇଛି ଏବଂ ସେ ବହୁ ତଥ୍ୟ ଯୋଗାଇଦେଇଥିଲେ । ସମ୍ବଲପୁର ବିଶ୍ୱବିଦ୍ୟାଳୟର ରିଡ଼ର୍ ଡକ୍ଟର ଶୁକଦେବ ନନ୍ଦ ତାଙ୍କର ବିରାଟ ପୁସ୍ତକ "Coalitional Politics in Orissa" ବିଷୟରେ ମଧ୍ୟ ଏକପ୍ରକାର ଲେଖିଛନ୍ତି —ସତେ କି ମୁଁ ମହତାବଙ୍କ ଇଙ୍ଗିତରେ ଏହି ସବୁ କାର୍ଯ୍ୟ କରିଥିଲି । ଏବେ ବି ଅନେକ ଲୋକ କଥାବାର୍ତ୍ତା ଛଳରେ ମହତାବଙ୍କର ସେତେବେଳର ସାହାଯ୍ୟ କଥା ଉଲ୍ଲେଖ କରିଥାଆନ୍ତି । ମହତାବଙ୍କର ନିଜ ସପକ୍ଷ ପ୍ରଚାର କୌଶଳ କେତେ ଦୃଢ଼ ଏହି କଥାଟିରୁ ଜଣାପଡ଼େ । କିନ୍ତୁ ଏହା ସମ୍ପୂର୍ଣ୍ଣ ମିଥ୍ୟା ।

ବାସ୍ତବିକ କଥା ହେଉଛି, ମହତାବ ସେତେବେଳେ କଂଗ୍ରେସ ପାର୍ଲିମେଣ୍ଟାରି ଦଳର ଉପନେତା ଥିଲେ । କେଶବ ଦେଓ ମାଲବ୍ୟଙ୍କ ବିରୁଦ୍ଧରେ ମୁଁ ଆଣିଥିବା ଅଭିଯୋଗକୁ ଯେତେବେଳେ ପଣ୍ଡିତ ନେହରୁ କେନ୍ଦ୍ର ଗୁଇନ୍ଦା ବିଭାଗ ( Central Intelligence Dept. )କୁ ଅନୁସନ୍ଧାନ ପାଇଁ ଦେଲେ, ତାହାର ସମାଲୋଚନା ହୋଇଥିଲା । ୧୯୬୩ ଫେବ୍ରୁୟାରି ୨୬ ତାରିଖରେ ମୋ ଚିଠି ପାଇବାର ୫ ଘଣ୍ଟା ଭିତରେ ପଣ୍ଡିତ ନେହରୁଙ୍କ ପାଖରୁ ଉତ୍ତର ଆସିଗଲା : "I am immediately asking our intelligence to send me a report.—ମୁଁ ଏକ ରିପୋର୍ଟ ଦେବାଲାଗି ଆମର ଗୁଇନ୍ଦା ବିଭାଗକୁ ସାଙ୍ଗେ ସାଙ୍ଗେ କହୁଛି ।" ମାଲବ୍ୟ ଜଣେ କେନ୍ଦ୍ରମନ୍ତ୍ରୀ ଏବଂ ତାଙ୍କ ବିରୁଦ୍ଧରେ ଏକ ବିଭାଗକୁ ଅନୁସନ୍ଧାନ କରିବାକୁ ଦେବାଟା ଏକ ରୁଚିହୀନ ଏବଂ ଅପମାନ ଜନକ କାର୍ଯ୍ୟ ବୋଲି ମହତାବ ସମେତ କଂଗ୍ରେସ ପାର୍ଲିମେଣ୍ଟ ଦଳର କାର୍ଯ୍ୟକାରୀ ସଭ୍ୟମାନେ ଖୁବ୍ ଆପତ୍ତି ଉଠାଇଥିଲେ । ତାହା ଛଡ଼ା, ଏ ସାରା ଘଟଣାରେ ମହତାବ କୌଣସି ପ୍ରକାର ଆଗ୍ରହ ଦେଖାଇନଥିଲେ ବା ସମ୍ପୃକ୍ତ ହୋଇନଥିଲେ, ବରଂ ମୁଁ ସିରାଜୁଦ୍ଦିନ ଘଟଣା ସହିତ ଓଡ଼ିଶାକୁ ଯେପରି ଜଡ଼ିତ ନକରେ ତହିଁର ଚେଷ୍ଟା କରିଥିଲେ । କାରଣ ତାଙ୍କର ଭୟ ଥିଲା, ମୁଁ ଯଦି ସିରାଜୁଦ୍ଦିନ ସମସ୍ୟା ଖାଲି ପାର୍ଲିମେଣ୍ଟରେ ପେଶ୍ କରିଦିଏ ତେବେ ତାଙ୍କ ନାମ ବି ସେଥିରୁ ବାହାରିବ । ଶେଷରେ ସିରାଜୁଦ୍ଦିନଠାରୁ ଉତ୍କୋଚ ଗ୍ରହଣ କରିଥିବା କଥା ତାଙ୍କ ବିରୁଦ୍ଧରେ ହୋଇଥିବା ମାଧୋଲକର ଓ ସରଯୂପ୍ରସାଦ କମିସନ ପ୍ରମାଣିତ ବୋଲି ପ୍ରକାଶକରିଥିଲେ । ତେଣୁ ଏ ଘଟଣାରେ ସେ ସମ୍ପୂର୍ଣ୍ଣ ନୀରବ

ଥିଲେ । କେବଳ ବିଜୁ ପଟ୍ଟନାୟକ ଓ ବୀରେନ୍ ମିତ୍ରଙ୍କ ଉପରେ ବ୍ୟକ୍ତିଗତ ଓ ରାଜନୀତିକ କ୍ରୋଧ ଥିବାରୁ ସେ ସଂପର୍କରେ ତାଙ୍କ ସମର୍ଥକ କଂଗ୍ରେସକର୍ମୀ ବନମାଳୀ ପଟ୍ଟନାୟକ ଓ ସୁରେନ୍ଦ୍ରନାଥ ପଟ୍ଟନାୟକ ଯେଉଁ ବିରୋଧ ମତ ପ୍ରକାଶ କରିଥିଲେ, ତାକୁ ସେ ପ୍ରକାଶ୍ୟରେ ସମର୍ଥନ ଜଣାଇଥିଲେ । ବିଜୁ ପଟ୍ଟନାୟକଙ୍କ ସମ୍ବନ୍ଧରେ ମୋର କୌଣସି ଗୋପନୀୟ ତଥ୍ୟ ସଂଗ୍ରହର ଆବଶ୍ୟକତା ନ ଥିଲା । ସି. ବି. ଆଇ. ରିପୋର୍ଟରେ ସବୁକଥା ରହିଥିଲା ଏବଂ ମୁଁ ସେ ଗୋପନ ସରକାରୀ ରିପୋର୍ଟକୁ ପାର୍ଲିମେଣ୍ଟରେ ରଖି ଦେଇ ସରକାରକୁ ଚ୍ୟାଲେଞ୍ଜ ଦେଇଥିଲି—ଏହା ଯଦି ସତ୍ୟ ନୁହେଁ ମତେ ଶାସ୍ତି ଦିଆଯାଇପାରେ । ଆଜି ପର୍ଯ୍ୟନ୍ତ ସରକାର ସେଭଳି ସାହସ କରିନାହାନ୍ତି । ସିରାଜୁଦ୍ଦିନ ବ୍ୟାପାର ସହ ବିଜୁ ପଟ୍ଟନାୟକ ସଂପୃକ୍ତ ନଥିଲେ; ବୀରେନ୍ ମିତ୍ର ପ୍ରତ୍ୟକ୍ଷଭାବରେ ଟଙ୍କା ନେଇଥିଲେ । ବିଜୁ ପଟ୍ଟନାୟକ କରିଥିବା ଅପକର୍ମର ସରକାରୀ ଓ ଅନ୍ୟ କାଗଜପତ୍ର ରହିଥିଲା ଏବଂ ଅଧିକାଂଶ ବିଷୟ ସ୍ୱୀକୃତ । ପ୍ରଜା-ସୋସଲିଷ୍ଟ ପାର୍ଟିର ସଂପାଦକ ନିଶାମଣି ଖୁଣ୍ଟିଆ ଓ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ନେତୃତ୍ୱରେ ପ୍ରାୟ ୭୨ ଜଣରୁ ଅଧିକ ଏମ୍.ଏଲ୍.ଏ. ଓ ଏମ୍.ପି. ରାଷ୍ଟ୍ରପତିଙ୍କୁ ଏକ ସ୍ମାରକପତ୍ର ଦେଇ ସବୁ ତଥ୍ୟ ଯୋଗାଇଥିଲେ । ଆମେ ପାର୍ଲିମେଣ୍ଟରେ ସେହିଗୁଡ଼ିକର ତଦନ୍ତ ଦାବୀ କରିଥିଲୁ ଏବଂ ଆହୁରି ଅନେକ କଥା ସେ ସଂପର୍କରେ ବାହାର କରିବାକୁ ଚେଷ୍ଟାକରିଥିଲୁ । ଏଥିଲାଗି କି ଭିତରି ତଥ୍ୟ ଲୋଡ଼ାଥିଲା ଯେ ମହତାବ ଯୋଗାଡ଼ କରି ଆଣିଦେଇଥିଲେ ? ମହତାବଙ୍କର ଉଦ୍ଦେଶ୍ୟ ଥିଲା ବିଜୁ ପଟ୍ଟନାୟକଙ୍କୁ ଅପଦସ୍ଥ କରିବା । ତାହା ତାଙ୍କ ରାଜନୀତିକୁ ସାହାଯ୍ୟ କରୁଥିଲା । ସେ କେବଳ ଦୁର୍ନୀତିର ବିରୋଧ କରୁନଥିଲେ ଯେ ଆମକୁ ଆଣି ଅଧିକ ଇନ୍ଧନ ଯୋଗାଇଦେଇଥାନ୍ତେ । ନିଜର ସଂକୀର୍ଣ୍ଣ ରାଜନୀତିକ ଉଦ୍ଦେଶ୍ୟ ହାସଲ କରିବା ନିମନ୍ତେ କିପରି ମିଥ୍ୟା ଛଳନାଯୁକ୍ତ ପ୍ରଚାର କରାଯାଉଥିଲା, ଏହା ତାହାର ଏକ ନମୁନା । ମତେ ମୋର ଆତ୍ମଚରିତରେ ଏକଥା ଲେଖିବାକୁ ପଡ଼ିଲା ବୋଲି ମୁଁ ଦୁଃଖିତ । ଗବେଷଣାକାରୀ ଅଧ୍ୟାପକମାନେ ମଧ୍ୟ ଏଭଳି ପ୍ରଚାରରେ ଭାସିଯାଇ ପୁସ୍ତକରେ ଏହା ସନ୍ନିବେଶିତ କରିଥିବା ଦେଖି ମୁଁ ବିସ୍ମିତ ହୋଇଛି ।

## ବିଦେଶୀ ବ୍ୟାଙ୍କରେ ଧନ ଜମା

୧୯୬୩ରେ ସିନା ମୁଁ ଏସବୁ କଥା ଉଠାଇଲି, ବାସ୍ତବିକ ୧୯୬୧ରୁ ବିଜୁ ପଟ୍ଟନାୟକଙ୍କ ବିରୋଧୀ ଅଭିଯାନ ଆରମ୍ଭ ହୋଇଥିଲା । ସେତେବେଳକୁ ହରେକୃଷ୍ଣ ମହତାବ ମୂଳରୁ ପାର୍ଲିମେଣ୍ଟରେ ନ ଥିଲେ । କୌଣସି ବ୍ୟକ୍ତିଗତ କାରଣରୁ ଏହା ଯେ ଆରମ୍ଭ ହେଲା, ତାହା ନୁହେଁ । ଯେଉଁମାନେ ସେତେବେଳର ଓଡ଼ିଶାର ରାଜନୀତିକ ଚିତ୍ର ସ୍ମରଣ ରଖିଥିବେ, ବୁଝିପାରିବେ । ୧୯୬୧ ଜୁନ୍‌ରେ ଓଡ଼ିଶା ଆସେମ୍ବ୍ଲି ନିର୍ବାଚନରେ ବିଜୁଙ୍କର ନେତୃତ୍ୱରେ ଅଲୌକିକ କଂଗ୍ରେସ ବିଜୟ ଏବଂ ପ୍ରଚୁର ଧନ ଓ କ୍ଷମତାର ପ୍ରୟୋଗ ଦେଶରେ ଏକ ବିଚିତ୍ର ପରିସ୍ଥିତି ସୃଷ୍ଟି କରିଥିଲା । ଭୟରେ କେହି ବିରୋଧରେ ପାଟିଫିଟାଇବାକୁ

ସାହସ କରୁନଥିଲେ ଏବଂ ଧନର ପ୍ରଭାବରେ ସମସ୍ତେ ବିହ୍ୱଳିତ ହୋଇପଡ଼ିଲେ । ମୁଁ ବିଗୃର କଲି, ଓଡ଼ିଶାରେ ବୋଧହୁଏ ବିରୋଧର ଆଉ୍ୱାନ ଆଉ ଉଠି ପାରିବ ନାହିଁ, କାରଣ ଲୋକଙ୍କ ମନରେ ପ୍ରାଣର ଭୟ ବି ଉପୁଜୁଥିଲା । ଧନ, କ୍ଷମତା ଆମକୁ ଚପାଇ ରଖିଦେବ—ଏପରି ଏକ ଭାବନା ମୋ ମନରେ ଦ୍ୱନ୍ଦ୍ୱ ସୃଷ୍ଟି କଲା । ମୁଁ ଭାବିଲି, ଆମେ କଣ ଏତେଦିନ ଯାହା କରିଆସିଥିଲୁ ସବୁ ବୃଥାରେ ଗଲା ! ଯେତେ ବିରୋଧୀ ନେତାଙ୍କ ସହ କଥାବାର୍ତ୍ତା ହେଲି, ସମସ୍ତେ ମ୍ରିୟମାଣ ଅବସ୍ଥାରେ ରହିଥିଲେ । ଶେଷକୁ ମୁଁ ସ୍ଥିର କଲି—ଆମକୁ ଏପରି କିଛି ପଦକ୍ଷେପ ନେବାକୁ ହେବ, ଯେଉଁଥିରେ ପଣ୍ଡିତ ନେହରୁ ଓ ଉପର ନେତାମାନେ ତାଙ୍କର ଅପକର୍ମର କିଛି ସୂଚନା ପାଇବେ । ତେଣୁ ୧୯୬୧ ମସିହାରେ ଏହି ବିଦେଶୀ ବ୍ୟାଙ୍କରେ ଟଙ୍କା ଜମା ଥିବା ପ୍ରଶ୍ନ ଉଠିଲା ।

## ମହାବୀର ତ୍ୟାଗୀ ଓ ଅନ୍ୟମାନଙ୍କ ସାହାଯ୍ୟ

କଂଗ୍ରେସଦଳ ଭିତରେ ମହାବୀର ତ୍ୟାଗୀ, ହରିଶ୍ ଚନ୍ଦ୍ର ମାଥୁରଙ୍କ ପରି ସ୍ୱାଧୀନଚେତା ସଭ୍ୟ ଥିଲେ । ସେମାନେ ମତେ ବହୁଭାବରେ ସାହାଯ୍ୟ କରିଥିଲେ । ଯେଉଁଠି ତଥ୍ୟ ରହିଥିଲା ବୋଲି ମୁଁ ସଂବାଦ ପାଉଥିଲି ଏବଂ ସେଠୁ ପାଇବା ମୋ ପକ୍ଷରେ କଷ୍ଟସାଧ୍ୟ ମନେ-ହେଉଥିଲା, ସେତେବେଳେ ତ୍ୟାଗୀଜୀ ସ୍ୱେଚ୍ଛାକୃତଭାବେ ସାହାଯ୍ୟ କରୁଥିଲେ । ସେମାନେ କଂଗ୍ରେସ ଭିତରେ ଦୁର୍ନୀତିର ଘୋର ବିରୋଧୀ ଥିଲେ । ବିଜୁ ପଟ୍ଟନାୟକ ଏକ ବ୍ୟାପାରରେ ବିଦେଶୀମୁଦ୍ରା ଆଇନ ଲଙ୍ଘନ କରିଥିବା ଏବଂ ବହୁ ଧନ ବିଦେଶୀ ବ୍ୟାଙ୍କରେ ରଖିଥିବା ସଂବାଦ ପ୍ରଥମେ ତ୍ୟାଗୀଜୀ ମତେ କହିଲେ । ସେହିପରି ସିଦ୍ଧକର୍ଦ୍ଦିନ ବ୍ୟାପାର ସଂପର୍କରେ ମୋଠାରୁ କେତେକ ବିଶେଷ ବିବରଣୀ ତୁରନ୍ତ ପାଇବା ନିମନ୍ତେ ପଣ୍ଡିତ ନେହରୁ ଯେତେବେଳେ ଗୃହିଁଥିଲେ, ମହାବୀର ତ୍ୟାଗୀ ଓ ରାମନାଥ ଗୋଏଙ୍କାଙ୍କ ସାହାଯ୍ୟ ନମିଳିଥିଲେ କଲିକତାରୁ ସଂଗୃହୀତ ତଥ୍ୟ ମୁଁ ଠିକ୍ ସମୟରେ ଯୋଗାଇ ଦେଇ ପାରି ନଥାନ୍ତି । ମେନନ୍-ବିରୋଧୀ ଅଭିଯାନରେ ଏମାନେ ପ୍ରକାଶ୍ୟରେ ଓ ଆମମାନଙ୍କ ସହିତ ମିଶି କାର୍ଯ୍ୟ କରିଥିଲେ । କାହିଁ, ତ୍ୟାଗୀଜୀ ପ୍ରମୁଖ କେବେହେଲେ ତ ମତେ କିଛି ଯୋଗାଇ ଦେଇଥିଲେ ବୋଲି କେଉଁଠି ହେଲେ କହିନଥିଲେ ! ନ କରିଥିବା ଶ୍ଳୋକେ ବାହାଦୁରି ନେବାଲାଗି ଓ ନିଜେ ସବୁ କରିଇପାରୁଥିବାର କରାମତି ଦେଖାଇବା-ଲାଗି ମିଥ୍ୟା ପ୍ରଚାର ଆରମ୍ଭ କରିଦେଲେ ଏବଂ ତାହା କେତେକ ଲୋକଙ୍କ ମନରେ ସତ୍ୟ ଆକାରରେ ରହିଗଲା ।

## ମୋର କାର୍ଯ୍ୟକରିବାର ବିଧି

ମୁଁ ଅନ୍ୟମାନଙ୍କ ପରି ହଠାତ୍ କୌଣସି ସମ୍ବାଦ ପାଇଲେ ସଂବାଦପତ୍ରରେ ପ୍ରକାଶ କରୁନଥିଲି । ରାଜନୀତିକ ସ୍ତରରେ ଦୁର୍ନୀତି ଏବଂ ବ୍ୟବସାୟୀ ଓ ଶାସକଗୋଷ୍ଠୀଙ୍କ

ଭିତରେ ଯଲସୁଭୁସ ହୋଇ ଦେଶର ଧନ କପରି ଲୁଣ୍ଠନ କରାଯାଉଛି ଏବଂ ଅସାଧୁ ଗୋଷ୍ଠୀ କେମିତି ରାଜନୀତିରେ କ୍ରମେ ପ୍ରଭାବଶାଳୀ ହୋଇଗଲେଣି, ଏହା ବାହାର କରିବା ଥିଲା ମୋର ଲକ୍ଷ୍ୟ । ସେଥିଲାଗି ମୁଁ ସିଧାସଳଖ, ଯାହାଙ୍କ ବିରୋଧରେ ଅଭିଯୋଗ ପାଉଥିଲି, ତାର କିଛି ପ୍ରାଥମିକ ଅନୁସନ୍ଧାନ ପରେ ସମ୍ପୃକ୍ତ ମନ୍ତ୍ରୀଙ୍କୁ ଆଗ ଲେଖୁଥିଲି ଏବଂ ପାର୍ଲିମେଣ୍ଟରେ ଉପସ୍ଥାପିତ କରୁଥିଲି । ପାର୍ଲିମେଣ୍ଟାରି ପଦ୍ଧତି ଅନୁସରଣ କରି ମୁଁ ଏ ଦିଗରେ ଯାହା ସଫଳତା ହାସଲ କରିଥିଲି, ତାହା ମୋର ଏବେ ବି ମତ ଯେ, ନିଷ୍ଠା ସହକାରେ ଓ ଅନ୍ୟ ମତଲବ ନ ରଖି ନିର୍ଭୀକଭାବରେ ପାର୍ଲିମେଣ୍ଟାରି ପଦ୍ଧତି ପାଳନ କଲେ ଏ ଦିଗରେ ସଫଳତା ମିଳିପାରିବ । ମୋ ପରେ ଆହୁରି କେତେକ ବ୍ୟକ୍ତି ପାର୍ଲିମେଣ୍ଟରେ ନାନା ଦୁର୍ନୀତି ବିଷୟ ଉଠାଇଥିଲେ; ସେଥିନିମନ୍ତେ ଖୁବ୍ ପ୍ରଚୁର ଓ ହଟ୍ଟଗୋଳ ସୃଷ୍ଟି ହୋଇଥିଲା । ସରକାରଙ୍କୁ ଖୁବ୍ ଅପଦସ୍ଥ କରାଯାଇଥିଲା । ମାତ୍ର ଅଭିଯୁକ୍ତ ମନ୍ତ୍ରୀମାନଙ୍କୁ ତାଙ୍କ ପଦରୁ ହଟାଇବାର ଦୃଷ୍ଟାନ୍ତ ଆଉ ଦେଖିବାକୁ ମିଳିନାହିଁ । ଦ୍ୱିତୀୟରେ, ଚିଠିପତ୍ର ଆଦାନପ୍ରଦାନ ଓ ପାର୍ଲିମେଣ୍ଟ ଭିତରେ ତର୍କବିତର୍କ, ମୁହଁ ତେଢ଼ାତେଢ଼ି ଏବଂ ଦୁଇ ତରଫରୁ ଅତି କଡ଼ା ଶବ୍ଦର ପ୍ରୟୋଗ କରାଗଲେ ସୁଦ୍ଧା ସମ୍ପୃକ୍ତ ମନ୍ତ୍ରୀ ବା ଉପରସ୍ଥ ଉଚ୍ଚପଦାଧିକାରୀଙ୍କ ବ୍ୟକ୍ତିଗତ ଭାବରେ ଯାଇ ସାକ୍ଷାତ୍ କରିବାଦ୍ୱାରା ମୋର ମନେହୁଏ, ମୋ କାର୍ଯ୍ୟରେ ସଫଳତା ମିଳିବାରେ ସାହାଯ୍ୟ କରିଥିଲା । କାରଣ ଏତଦ୍ଦ୍ୱାରା ଏଥିରେ ମୋର କିଛି ବ୍ୟକ୍ତିଗତ ଓ ପାର୍ଟିଗତ ସ୍ୱାର୍ଥ ରହିଥିଲା ବୋଲି ସେମାନଙ୍କ ମନରେ ଧାରଣା ରହୁନଥିଲା । ସେମାନେ ଆଉ ଟିକିଏ ଖୋଲାଭାବରେ କହିବାକୁ କୁଣ୍ଠିତ ହେଉନଥିଲେ । ଏପରି ବହୁ ଦୃଷ୍ଟାନ୍ତ ରହିଛି । ମାଲବ୍ୟଙ୍କ ସମ୍ବନ୍ଧରେ ଯେତେବେଳେ ଅତି ସଙ୍ଘର୍ଷଜନକ ପରିସ୍ଥିତି ଏବଂ ପଣ୍ଡିତ ନେହରୁ କ୍ରୋଧାନ୍ୱିତ ହୋଇ ଏହା ଏକ ରାଜନୀତିକ ଈର୍ଷାମୂଳକ କାର୍ଯ୍ୟ ବୋଲି ବର୍ଣ୍ଣନା କରିଥିଲେ, ସେତେବେଳେ ମୁଁ ତାଙ୍କୁ ବ୍ୟକ୍ତିଗତ ଭାବରେ ସେହି ବିଷୟରେ କଥାବାର୍ତ୍ତା କରିବା ନିମନ୍ତେ ଲେଖିଲି । ଲୋକସଭାରେ ଏ ସମ୍ବନ୍ଧରେ ମଇ ମାସ ୭ ତାରିଖରେ ସେ କେତେକ କଥା କହିଥିଲେ । ମଇ ମାସ ୯ ତାରିଖରେ ମୋର ଅନ୍ୟତ୍ର ଯିବାର କାର୍ଯ୍ୟକ୍ରମ ଥିଲା । ମୁଁ ମଇ ୭ ତାରିଖରେ ଲେଖିପଠାଇଲି, ମୁଁ କାଲି ଅର୍ଥାତ୍ ୮ ତାରିଖରେ ସାକ୍ଷାତ ଚାହୁଁଥିଲି । ସେଦିନ ପଣ୍ଡିତଜୀ ଉତ୍ତର ଦେଇପାରିନଥିଲେ । ତତ୍ପରଦିନ ଅର୍ଥାତ୍ ୧୯୬୩ ମସିହା ମଇ ୮ ତାରିଖରେ ମତେ ଲେଖିଲେ ୯ ତାରିଖରେ ତାଙ୍କ ସହ ଯାଇ ଅଫିସରେ ସାକ୍ଷାତ କରିବା ନିମନ୍ତେ । ସେ ଲେଖିଲେ—"Dear Dwivedy, I have your letter of the 7th May. I have been very heavily occupied today and tomorrow early afternoon I am going to Gujrat. I shall be glad, however, to meet you tomorrow morning at 11·30 in my office in External Affairs. Yours sincerely, Jawaharlal Nehru ।"

. ଏ ଚିଠି ୮ ତାରିଖରେ ମୁଁ ପାଇଥିଲି କି ନା ମୋର ସ୍ମରଣ ନାହିଁ, ମାତ୍ର ୯ ତାରିଖ ସକାଳୁ ବୋଧହୁଏ ମୋର ପୂର୍ବନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ ମୁଁ ଦିଲ୍ଲୀ ଛାଡ଼ି ଯାଇଥିଲି । କାରଣ ମଇ ୯ ତାରିଖର ଏକ ଚିଠିରେ ପଣ୍ଡିତଜୀ ଲେଖିଥିଲେ—"Dear Shri Dwivedy, I had hoped to meet you this morning, but I was told you were away." ଏଥିରୁ ପ୍ରତୀତ ହେଲା ଯେ ୯ ତାରିଖରେ ମୁଁ ଦିଲ୍ଲୀରେ ଥିବା ନଥିବା କଥା ଅନୁସନ୍ଧାନ କରାଯାଇଥିଲା । ଏକ ବିବାଦୀୟ ମାମଲାରେ ବି ପଣ୍ଡିତଜୀ ମତେ ସାକ୍ଷାତ୍ ଦେବାରେ ପଶ୍ଚାତ୍ପଦ ହେଉନଥିଲେ । ବ୍ୟକ୍ତିଗତ ଓ ରାଜନୀତିକ ସମସ୍ୟାକୁ ଏକା ଦୃଷ୍ଟିରେ ନଦେଖିଲେ ଏପରି ଉଦାରଭାବ ପୋଷଣ କରାଯାଇପାରିବ ।

## ବିଦେଶୀମୁଦ୍ରା ସଂକ୍ରାନ୍ତୀୟ ପତ୍ର

ବିଜୁ ପଟ୍ଟନାୟକ ବିଦେଶୀ ମୁଦ୍ରା ନିୟନ୍ତ୍ରଣ ଆଇନ ଲଙ୍ଘନ କରିଥିବା ସମ୍ବାଦ ମିଳିଲା ମାତ୍ରକେ ମୁଁ ପ୍ରଥମେ ଅର୍ଥମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇଙ୍କୁ ଏକ ପତ୍ର ଲେଖିଲି । ମୁଁ ମୋର ୧୯୬୧ ମସିହା ୪ ତାରିଖ ସେପ୍‌ଟେମ୍ବର ଚିଠିରେ ଲେଖିଲି—"ମୁଁ ଓଡ଼ିଶାରେ ଶୁଣିବାକୁ ପାଇଲି ଯେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ବିଦେଶୀ ବ୍ୟାଙ୍କରେ ବହୁ ଟଙ୍କା ଡିପୋଜିଟ ରଖିଛନ୍ତି ଏବଂ ଏଥି ନିମନ୍ତେ ଭାରତସରକାର ବା ରିଜର୍ଭ ବ୍ୟାଙ୍କର ଅନୁମତି ନିଆଯାଇନାହିଁ । ମୁଁ ଭାବିଲି, ଆପଣଙ୍କୁ ଲେଖିଲେ ପ୍ରକୃତ କଥା ଜଣାପଡ଼ିବ । ଯଦି ଆପଣଙ୍କ ବିଭାଗ ତରଫରୁ ଏ ସମ୍ପର୍କରେ କେତେବେଳେ କୌଣସି କାରଣରୁ କୌଣସି କାର୍ଯ୍ୟ ସନ୍ଧାନରେ କିଛି ତଦାରଖ କରାଯାଇନଥିଲା, ତେବେ ଏପରି ଏକ ବିଷୟ ଅନ୍ୟମାନଙ୍କ କାନକୁ ଆସିଲା ବା କିପରି ? ଆଶାକରେ ଆପଣଙ୍କଠାରୁ ଶୀଘ୍ର ଜବାବ ପାଇବି ।" ମୋରାର୍‌ଜୀ ଦେଶାଇଙ୍କର ୮ ତାରିଖରୁ ବିଦେଶ ଗସ୍ତ କାର୍ଯ୍ୟକ୍ରମ ଥିଲା । ସେ ମତେ ୮ ତାରିଖରେ ଲେଖିଲେ—"My dear Dwivedy, please refer to your letter dated the 4th September, 1961. Under sub-section (4) of the section 19 of the Foreign Exchange Regulation Act, it is not possible to disclose information in such cases." ଅର୍ଥାତ୍ ମୋ ଖବର ଅସତ୍ୟ ବୋଲି ସେ ନକହି ବିଦେଶୀ ମୁଦ୍ରା ନିୟନ୍ତ୍ରଣ ଆଇନ ଅନୁସାରେ କୌଣସି ତଥ୍ୟ ଏ ସମ୍ବନ୍ଧରେ ଦେବା ସମ୍ଭବ ନୁହେଁ ବୋଲି ଜଣାଇଦେଲେ । ଏଥିରୁ ଅନ୍ତତଃ ଏତିକି ଜଣାପଡ଼ିଲା ଯେ, ମୁଦ୍ରା ନିୟନ୍ତ୍ରଣ ଆଇନ୍‌ର କିଛି ଲଙ୍ଘନ କରାଯାଇଥିଲା ଏବଂ ସେ ସନ୍ଧାନରେ କିଛି ତଦନ୍ତ ଆଦି କରାଯାଇଥିଲା; ମାତ୍ର ତାହା ପ୍ରକାଶ କରିବା ନିମନ୍ତେ ସରକାର ପ୍ରସ୍ତୁତ ନଥିଲେ । ମୋ ମନର ସନ୍ଦେହ ଏଥିରେ ବୃଦ୍ଧି ପାଇଲା ଏବଂ ମୁଁ ଆହୁରି ଟିକିଏ ଅଧିକ ଖବର ସଂଗ୍ରହର ଉଦ୍ୟମ କଲି ।

## କିପରି ଭାବରେ ବିଦେଶରେ ଟଙ୍କା ରହିଥିଲା ?

ମୋ ପାଖରେ ଯେଉଁ ତଥ୍ୟ ପହଞ୍ଚିଥିଲା, ସେଥିରେ ଉଲ୍ଲେଖ ଥିଲା ଯେ କଳିଙ୍ଗ ଟିଉବ୍‌ସ୍‌ର କାରବାରରେ ପଶ୍ଚିମ ଜର୍ମାନୀର ଷ୍ଟାଲଇଉନିୟନ୍ କମ୍ପାନୀ ନାମରେ ଜର୍ମାନ ମୁଦ୍ରା ଏକ ଜର୍ମାନ୍ ବ୍ୟାଙ୍କରେ ଏବଂ ଆଲେକ୍‌ଜାଣ୍ଡ୍ରର ମାର୍କସ୍ ନାମକ ଏକ କମ୍ପାନୀ ନାମରେ ଲଣ୍ଡନର ଏକ ବ୍ୟାଙ୍କରେ ବିଜୁ ପଟ୍ଟନାୟକ ଓ ତାଙ୍କ ସ୍ତ୍ରୀଙ୍କ ନାମରେ ଟଙ୍କା ଡିପୋଜିଟ୍ କରାଯାଇଥିଲା । ଏ ବିଷୟରେ ଅନୁସନ୍ଧାନ ହେବାରୁ ବିଜୁଙ୍କ ସ୍ତ୍ରୀ ଜ୍ଞାନ ପଟ୍ଟନାୟକ ଲଣ୍ଡନ ଓ ପଶ୍ଚିମ ଜର୍ମାନୀକୁ ଯାଇ ଉକ୍ତ ଦୁଇ କମ୍ପାନୀକୁ ଅନୁରୋଧ କରିଥିଲେ ସେମାନଙ୍କ ଟଙ୍କା ରଖାଯାଇଥିଲା ବୋଲି କୌଣସି ତଦନ୍ତରେ ନକହିବାକୁ । ମାତ୍ର ସେମାନେ ତାହା ନ ଶୁଣିବାରୁ ଜ୍ଞାନ ପଟ୍ଟନାୟକ ଫେରିଲାବେଳେ ଦୁହିଁଙ୍କର ଚିଠିଲେଖା କାଗଜ ନେଇ ଆସିଥିଲେ । ତହିଁରେ ଏକପ୍ରକାର ରିପୋର୍ଟ ତିଆରି କରାଯାଇ ଏଠାରେ ଦାଖଲ କରିଦିଆଯାଇଥିଲା ।

ଏହା ମଧ୍ୟ ଶୁଣିବାକୁ ମିଳିଲା ଯେ, ଏନ୍‌ଫୋର୍ସମେଣ୍ଟ ବିଭାଗର ଡିରେକ୍‌ଟରଙ୍କ ପାଖରେ ଯଥେଷ୍ଟ ପ୍ରମାଣ ରହିଥିଲା । ଡି. ସୁଜା ନାମକ ଜଣେ ଅଫିସର୍ ତଦନ୍ତ ଲାଗି ଇଉରୋପ ଯାଇଥିଲେ; ମାତ୍ର ତାଙ୍କୁ ସ୍ୱରାଷ୍ଟ୍ର ବିଭାଗ ଫେରାଇ ଆଣିଥିଲେ । ସ୍ପେଶାଲ ପୁଲିସ ଏଷ୍ଟାବ୍ଲିଶମେଣ୍ଟର ଡିରେକ୍‌ଟର ଜେନେରାଲ ଶ୍ରୀ ସାକ୍‌ସେନାଙ୍କ ପାଖରେ ଏ ସମ୍ବନ୍ଧରେ କାଗଜପତ୍ର ରହିଥିଲା ଏବଂ ମକଦ୍ଦମା କରିବା ନିମନ୍ତେ ସେମାନେ ଆଗ୍ରହୀ ଥିଲେ; ମାତ୍ର ପ୍ରଧାନମନ୍ତ୍ରୀ କାଳେ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ କେସ୍ କରିବାରେ ଅସନ୍ତୁଷ୍ଟ ହେବେ, ସେଥି ନିମନ୍ତେ ସେମାନେ ଅଗ୍ରସର ହେବାକୁ ପଶ୍ଚାତ୍‌ପଦ ହେଉଥିଲେ । ପାର୍ଲିମେଣ୍ଟରେ ଯଦି ଏହା ଉତ୍‌ଥାପନ କରାଯାଏ ଏବଂ ଲାଲବାହାଦୁର ଶାସ୍ତ୍ରୀ ଏ ଦିଗରେ ଆଇନ ଅନୁସାରେ ଯାହା କରଣୀୟ ତାହା କରିବାରେ ହେଳା କରାଯିବ ନାହିଁ ବୋଲି ଘୋଷଣା କରନ୍ତି, ତେବେ ସ୍ପେଶାଲ ପୁଲିସ ଏଷ୍ଟାବ୍ଲିଶମେଣ୍ଟ ଏ ଦିଗରେ ଉଚିତ କାର୍ଯ୍ୟ ବିଧାନ ଆରମ୍ଭ କରିବାଲାଗି ତତ୍ପର ହେବାରେ କିଛି ଅସୁବିଧା ରହିବ ନାହିଁ ।

## ପଣ୍ଡିତଜୀଙ୍କୁ ଚିଠି ଓ ତାର ପ୍ରତିକ୍ରିୟା

ଏତିକି ସମ୍ବାଦ ମୋର ହସ୍ତଗତ ହେବାରୁ ମୁଁ ୧୪।୪।୬୧ରେ କଟକରୁ ପଣ୍ଡିତଜୀଙ୍କୁ ଚିଠି ଲେଖିଲି । ମୋ ଚିଠିର ମର୍ମ ହେଲା—ମୋର ନିଜ ତଦନ୍ତ ଫଳରେ ମୁଁ ଜାଣିପାରିଛି ଯେ ବିଦେଶୀ ମୁଦ୍ରା ନିୟନ୍ତ୍ରଣ ଆଇନ ଲଙ୍ଘନ କରାଯାଇଛି । କିନ୍ତୁ କେତେ ଟଙ୍କା ଓ କେଉଁ ବ୍ୟାଙ୍କରେ ରଖାଯାଇଛି ମୁଁ ଜାଣିପାରିନାହିଁ । କିନ୍ତୁ ଆଶଙ୍କା କରାଯାଉଛି ଯେ ବିଜୁ ପଟ୍ଟନାୟକ ବ୍ୟବସାୟୀ ଭାବରେ ଯେଉଁ ନିୟମ ଲଙ୍ଘନ କରିଛନ୍ତି, ଏବେ ସେ ଏକ ପ୍ରାଦେଶିକ ସରକାରର ମୁଖ୍ୟ ହୋଇଥିବାରୁ ଆଉ ସେ ବିଷୟରେ କିଛି କାର୍ଯ୍ୟବିଧାନ କରାଯିବ ନାହିଁ । ଏହା ସତ୍ୟ ହୋଇଥିଲେ ଶାସନ ଉପରେ ଏହାର ପ୍ରତିକ୍ରିୟା କିଭଳି

ହେବ ବିଗ୍ରହକରାଯାଉ । ଆଇନର ଆଶ୍ରା ନେଇ ଏ ସମ୍ବନ୍ଧରେ କିଛି କୁହାଯାଇ ପାରିବ ନାହିଁ କହିବା ସହଜ; ମାତ୍ର ଏଥିରେ ରାଜନୀତିକ କାରଣରୁ ଯେ ଏକ ଅନ୍ୟାୟ ଓ ବେଆଇନ କାରବାର ଦବାଇଦିଆଯାଉଛି, ଏ ସନ୍ଦେହ ରହିଯିବ । ମୋର ବିଶ୍ୱାସ, ଆପଣଙ୍କ କାନକୁ ଯେତେବେଳେ ବିଷୟଟି ଅଣାଯାଉଛି, ଏହାର ଉଚିତ ଅନୁସନ୍ଧାନ ଓ ପ୍ରତିକାର ହେବ; ମାତ୍ର ଆପଣଙ୍କ ନେତୃତ୍ୱରେ ପରିଚାଳିତ ସରକାର ଯଦି କଂଗ୍ରେସ ଦଳରେ ଉଚ୍ଚସ୍ଥାନ ଦଖଲ କରୁଥିବା ବ୍ୟକ୍ତିଙ୍କ ପ୍ରତି ପକ୍ଷପାତ ମନୋଭାବ ନିଅନ୍ତି, ତେବେ ଆମ ଦେଶର ଭବିଷ୍ୟତ ଅନ୍ଧକାରମୟ ବୋଲି ବୁଝିବାକୁହେବ ।

ପଣ୍ଡିତ ନେହରୁ ୨୧ ସେପ୍ଟେମ୍ବରରେ ମତେ ଏକ ଜବାବ ଦେଲେ ଏବଂ ଅର୍ଥ ମନ୍ତ୍ରଣାଳୟ ଓ ବିଜୁ ପଟ୍ଟନାୟକଙ୍କଠାରୁ ଖବର ସଂଗ୍ରହ କରି ଲେଖିଲେ ବୋଲି ଉଲ୍ଲେଖ କରିଥିଲେ । ସେ ଲେଖିଲେ—ବିଜୁ ପଟ୍ଟନାୟକ ଜଣେ ଶିଳ୍ପପତି ହିସାବରେ ଅନ୍ୟ ଦେଶମାନଙ୍କ ସହ ବହୁ କାରବାର କରୁଥିଲେ ଏବଂ ସେଇ ସଂକ୍ରାନ୍ତରେ ବହୁ ଦିବାନିବା ହେଉଥିଲା । କିନ୍ତୁ ମୋର ମନେହୁଏନା ବିଦେଶୀ ମୁଦ୍ରା ନିୟନ୍ତ୍ରଣ ଆଇନ ଲଙ୍ଘନ କରି ବହୁପରିମାଣରେ ଧନ ବିଦେଶୀ ବ୍ୟାଙ୍କମାନଙ୍କରେ ସେ ରଖିଛନ୍ତି । ଗୋଟିଏ ବ୍ୟାପାର ଏ ସଂପର୍କରେ ଉଠିଥିଲା; ମାତ୍ର ପରେ ତଦନ୍ତରେ ଏହା ପରିଷ୍କାର ହୋଇଗଲା ।

ଏଥିରୁ ଦେଖାଯିବ, ପଣ୍ଡିତଜୀ ମଧ୍ୟ ସିଧାସଳଖ ମନା କରିଦେଲେ ନାହିଁ । ମୋ ଖବର ଠିକ୍ ନୁହେଁ ବୋଲି କହିଲେ । ମାତ୍ର ବହୁପରିମାଣରେ ଟଙ୍କା ବିଦେଶୀ ବ୍ୟାଙ୍କରେ ନାହିଁ ଏବଂ ଗୋଟାଏ ବ୍ୟାପାର ଉଠିଥିଲା, ତାହା ପରେ ପରିଷ୍କାର ହୋଇଗଲା । ବେଶି ଟଙ୍କା ନ ଥିଲେ କେତେ ଥିଲା କହିଲେ ନାହିଁ କିମ୍ବା କେଉଁ ଲଙ୍ଘନ ବିଷୟ ପରିଷ୍କାର କରିଦିଆଗଲା, ତାହା ବି ପ୍ରକାଶ କଲେ ନାହିଁ । ମୁଁ ପୁଣି ଲେଖି କିଛି ଲାଭ ହେଲା ନାହିଁ, କାରଣ ସେ ଲେଖିଲେ ଏ ବିଷୟ ଅର୍ଥମନ୍ତ୍ରଣାଳୟ ଦେଖୁଛି । ମାତ୍ର ବିଜୁ ପଟ୍ଟନାୟକ ଏହି ସୁଯୋଗରେ ମତେ ପଣ୍ଡିତଜୀ ଲେଖିଥିବା ଚିଠିରେ ତାଙ୍କୁ ସୁହାଇଲାଭଳି କେତେକ ଅଂଶ ସମ୍ବାଦପତ୍ର-ମାନଙ୍କୁ ଦେଇଦେଲେ । ଏହା କରିବା ପଶ୍ଚାତ୍‌ରେ ଉଦ୍ଦେଶ୍ୟ ହେଲା ତଦନ୍ତକାରୀମାନେ ପଣ୍ଡିତଜୀଙ୍କ ମତ ଜାଣିଲା ପରେ ଆଉ ତାଙ୍କ ବିରୁଦ୍ଧରେ ଲାଗିବେ ନାହିଁ । ମୁଁ ଏ ଉଦ୍ଦେଶ୍ୟ ପଣ୍ଡ କରିବା ନିମନ୍ତେ ୨୫-୧୦-୬୧ରେ ଏକ ପ୍ରେସ୍ ବିବୃତି ଦେଲି ଏବଂ ମୋ ସହ ନେହେରୁଙ୍କ ଚିଠିର ପୂରା ନକଲ ପ୍ରକାଶକରିଦେଲି ।

## ପାର୍ଲିମେଣ୍ଟରେ ମୋରାରଜୀ ହିଡ଼ିବିଡ଼ିହେଲେ

ଏସବୁ ହେଲା ପରେ ପାର୍ଲିମେଣ୍ଟରେ ଆମେ ପ୍ରଶ୍ନ ଆକାରରେ ଏହା ଉଠାଇଲୁ । ଏଇଠି ପାଠକଙ୍କ ଜାଣିବା ନିମନ୍ତେ ମୋର ଆହୁରି ଏକ ପାର୍ଲିମେଣ୍ଟାରୀ କୌଶଳ ପ୍ରୟୋଗ କଥା କହିଦିଏ । ମୁଁ କେବେ ନିଜେ ବାହାଦୁରୀ ନେବା ଦୃଷ୍ଟିରୁ କାର୍ଯ୍ୟ କରୁନଥିଲି । ବିଷୟଟି ବାହାର କରିବା ଥିଲା ଆମର ଉଦ୍ଦେଶ୍ୟ । ଲୋକସଭା ନିୟମାନୁସାରେ ପ୍ରଶ୍ନକର୍ତ୍ତା ମୋଟେ

ଦୁଇଟି ସହଯୋଗୀ ପ୍ରଶ୍ନ ପଚାରିପାରିବେ । ସେଥିରେ ସରକାର ଯେପରି ସର୍ବଦା ଘୋଡ଼େଇ ରଖିବାକୁ ଉଦ୍ୟମ କରନ୍ତି, ସବୁ କଥା ପ୍ରକାଶ ପାଇପାରେନା । ତେଣୁ ମୁଁ ଆହୁରି କେତେକ ସହଯୋଗୀ ପ୍ରଶ୍ନ ତିଆରି କରି ଆମରି ପାର୍ଟି ସାଥି ଓ ବିରୋଧୀର ଅନ୍ୟ ସହାନୁଭୂତିସମ୍ପନ୍ନ ସାଥିଙ୍କୁ ଦେଇଥାଏ । ସେମାନେ ଗୁଡ଼ାଇତୁଡ଼ାଇ ପ୍ରଶ୍ନ ପଚାରନ୍ତି ଏବଂ ମୁଁ ମଝିରେ ମଝିରେ ଯୋଗଦିଏ । ଏହି ନୀତି ଅନୁସରଣ କରାଯାଇ ଲୋକସଭାରେ ୧୯୬୨ ମସିହା ନଭେମ୍ବର ମାସ ପର୍ଯ୍ୟନ୍ତ ନାନା ଭାବରେ ବହୁଥର ଅର୍ଥମନ୍ତ୍ରୀଙ୍କୁ ଏହି ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଶେଷରେ ୧୫-୧୧-୬୨ରେ ମୁଁ ଓ ଅନ୍ୟ ବନ୍ଧୁମାନେ ନାନା ଭାବରେ ପଚାରିବାରୁ ମୋରାରଜୀ ଦେଶାଇ କିଛି ସ୍ୱୀକାର କରି ଓ ଆଇନର ଆଶ୍ରା ନେଇ ଅଧିକ ଖବର ଦେବା ସମ୍ଭବ ନୁହେଁ ବୋଲି କହିବାକୁ ଲାଗିଲେ । ମୁଁ ଶେଷକୁ ପଚାରିଲି— ମତେ ଯାହା ଲେଖାଯାଇଛି ଗୋଟିଏ ସାମାନ୍ୟ ବିଷୟ ଉଠିଥିଲା ବୋଲି, ସେ ବିଷୟଟି କି ପ୍ରକାର ଜାଣିପାରେ କି ? ମୋରାରଜୀ ନୀରବ ରହିବାରୁ ସ୍ପିକର ଏ ସମ୍ପର୍କରେ ଆଉ ପଚାରି ଲାଭନାହିଁ ବୋଲି କହିଲେ ଏବଂ ମୋ ସହ ପଣ୍ଡିତ ନେହରୁ ଓ ମୋରାରଜୀଙ୍କର ଯେଉଁ ଚିଠିପତ୍ର କାରବାର ହୋଇଥିଲା, ସେ ସମ୍ପର୍କରେ ମୋ ସହିତ ଆଲୋଚନା କଲା ପରେ କିଛି ଗୋଟାଏ ନିଷ୍ପତ୍ତି କରାଯିବ ବୋଲି କହିଲେ । ପାର୍ଲିମେଣ୍ଟରେ ଓ ଦେଶ ଆଗରେ ଏକ ବେଆଇନ କାରବାର ସହ ଓଡ଼ିଶାର ମୁଖ୍ୟମନ୍ତ୍ରୀ କିପରି ସମ୍ପୃକ୍ତ ଏବଂ ତାଙ୍କୁ ଘଣ୍ଟଘୋଡ଼ାଇବା ନିମନ୍ତେ କିପରି ଚେଷ୍ଟା ହେଉଥିଲା ତାହା ଜଣାପଡ଼ିଲା । ଦେଶର ସବୁ ସମ୍ବାଦପତ୍ର ଏଥିରେ ସରକାରଙ୍କୁ ନିନ୍ଦା କରି ମନ୍ତବ୍ୟ ଲେଖିଲେ । Times of India ୭-୧୧-୬୧ରେ ଲେଖିଲା—"Having taken an interest in the affair, Mr. Nehru certainly owes to himself, to Mr. Patnaik and to the people to reveal all the facts." ବାସ୍ତବିକ ବିଜୁ ପଟ୍ଟନାୟକଙ୍କର ଅବାଞ୍ଛନୀୟ କାରବାର ଦେଶଲୋକେ ଏହି ଘଟଣା ପରେ ବେଶି ଜାଣିବାକୁ ପାଇଲେ ।

## ମାଲବ୍ୟ ଘଟଣା କେମିତି ବାହାରିଲା

୧୯୬୨ ମସିହାରେ ମୁଁ ଅତି ଅଳ୍ପ ଭୋଟରେ ଜିତିଥିବାରୁ ମୋ ବିରୁଦ୍ଧରେ ନିର୍ବାଚନ ମକଦ୍ଦମା ଚାଲିଥିଲା । କଟକର ଆଡ଼ଭୋକେଟ୍ ଅଶୋକ ଦାସ ମୋ ମକଦ୍ଦମା ଚଳାଉଥିଲେ । ଏଥିରେ ଅବଶ୍ୟ ମୁଁ ଜିତିଲି ଏବଂ ଅପରପକ୍ଷରୁ ମକଦ୍ଦମାର ଖର୍ଚ୍ଚା ବି ପାଇଲି । ଏହି ସଂକ୍ରାନ୍ତରେ ମୁଁ ତାଙ୍କ ଅଫିସରେ ବସିଥିଲି । 'ଲୋକମତ' ନାମକ ବଙ୍ଗଳାର ଫରୱାର୍ଡ଼ ବ୍ଲକର କଲିକତାରେ ପ୍ରକାଶିତ ଏକ ସାପ୍ତାହିକ ପତ୍ରିକା ସେଠାରେ ଦେଖିଲି । ୧୯୬୩ ଫେବୃୟାରୀ ୭ ତାରିଖ ସଂଖ୍ୟାରେ ଲେଖାଥିଲା—"ଅଶୋକ ସେନ୍ ଓ ମାଲବ୍ୟ ଦୁର୍ନୀତିର ଗ୍ରାସରେ ? ପଶ୍ଚିମ ବଙ୍ଗଳାର ପ୍ରାଦେଶିକ କଂଗ୍ରେସ କମିଟି ସଭାପତି ଏବଂ ଓଡ଼ିଶାର

ମନ୍ତ୍ରୀମାନେ ମଧ୍ଯ ଏଥିରେ ସଂପୃକ୍ତ ।'' ଏହା ମୋର କୌତୂହଳ ଜାତ କରାଇଲା ଏବଂ ବିଷୟବସ୍ତୁ ପଢ଼ିଲା ପରେ ଜାଣିଲି, କଲିକତାର ବେଣ୍ଟିଙ୍କ୍ ଷ୍ଟ୍ରିଟ୍‌ରେ ଥିବା ଏକ ମାଙ୍ଗାନିଜ କାରବାର କରୁଥିବା ବ୍ୟବସାୟୀ ପାଖରୁ ତଲ୍ଲାସ କରି କଷ୍ଟମ୍‌ସ୍‌ବାଲା ବହୁ ଆପତ୍ତିଜନକ ତଥ୍ୟ ହସ୍ତଗତ କରିଥିଲେ ଏବଂ ତହିଁରେ ଉପରଲିଖିତ ମନ୍ତ୍ରୀମାନେ ଓ ଅନ୍ୟ କଂଗ୍ରେସ ବ୍ୟକ୍ତିଙ୍କ ନାମ ଲିଖିତ ହୋଇଥିଲା । ଏବେ ସେମାନେ ବିଷୟଟିକୁ ଘୃପିଦେବା ନିମନ୍ତେ ଉଦ୍ୟମ କରୁଛନ୍ତି ।

ଏତିକି ହେଲା ମୋର ସମ୍ବଳ । ମୁଁ କାଗଜଟିକୁ ସାଙ୍ଗରେ ନେଇ ଦିଲ୍ଲୀ ଗଲି । ଏହାପରେ ପୁଣି ସେହି ୬ ତାରିଖରେ ଦୈନିକ 'ଲୋକସେବକ' ଓ 'ଆନନ୍ଦବଜାର ପତ୍ରିକା'ରେ ଏ ସମ୍ପର୍କରେ କେତେକ ତଥ୍ୟ ପ୍ରକାଶିତ ହେଲା । ଏହା କିନ୍ତୁ ସେତେବେଳକୁ ମୋର ହସ୍ତଗତ ହୋଇନଥିଲା କିମ୍ବା ମତେ ଜଣାନଥିଲା । ମୁଁ ଫେବୃୟାରୀ ୨୧ ତାରିଖରେ ଲୋକସଭାରେ ରାଷ୍ଟ୍ରପତିଙ୍କ ଭାଷଣ ଚର୍ଚ୍ଚାବେଳେ ଏ ବିଷୟ ଉଲ୍ଲେଖ କରି କହିଲି—କେତେକ କେନ୍ଦ୍ରମନ୍ତ୍ରୀ ଓ ଓଡ଼ିଶାର ମନ୍ତ୍ରୀ ଏକ ଅସାମାଜିକ କାଳାବଜାରୀ ସହ ଅତ୍ୟନ୍ତ ଜଘନ୍ୟ ଦୁର୍ନୀତି କାରବାରରେ ସଂପୃକ୍ତ ହୋଇଛନ୍ତି ଏବଂ ସରକାର ଏସବୁକୁ ଘଣ୍ଟଘୋଡ଼ାଇ ରଖିଛନ୍ତି । ସେ ପର୍ଯ୍ୟନ୍ତ ପାର୍ଲିମେଣ୍ଟରେ କେନ୍ଦ୍ରମନ୍ତ୍ରୀଙ୍କ ସମ୍ବନ୍ଧରେ ବହୁକଥା ଜଣାଥିଲେ ସୁଦ୍ଧା କେହି କିଛି କହିବାକୁ ସାହସ କରୁନଥିଲେ । କାରଣ ପଣ୍ଡିତ ନେହରୁ ସେମାନଙ୍କୁ ସାଥୀ ହିସାବରେ ମନୋନୀତ କରିଥିଲେ । ତାଙ୍କ ବିରୁଦ୍ଧରେ ଦୋଷାରୋପ କରିବା ଅର୍ଥ ପ୍ରକାରାନ୍ତରେ ନେହରୁଙ୍କ ଉପରେ ଆକ୍ରମଣ । ସେତେବେଳେ ପଣ୍ଡିତ ନେହରୁଙ୍କର ଯେପରି ପ୍ରତିପତ୍ତି, କିଏ ବିରାଡ଼ି ବେକରେ ଘଣ୍ଟି ବାନ୍ଧିବାର ଦୁଃସାହସ କରିପାରେ ! ମୁଁ କିନ୍ତୁ ଏତେ ଆଡ଼କୁ ବିଚାର ନକରି ମୋର ଅଭିଯୋଗ ଉତ୍ଥାପନ କରିଦେଲି । ଆଗରୁ କିଛି କିଛି ସମ୍ବାଦ ଜଣାଥିଲା କି କଅଣ, ତତ୍ପରଦିନ ସକାଳୁ ଦିଲ୍ଲୀ ସମ୍ବାଦପତ୍ରମାନଙ୍କରେ ଆଗପୃଷ୍ଠାରେ ବଡ଼ ବଡ଼ ଅକ୍ଷରରେ ବାହାରିପଡ଼ିଲା—"Dwivedy alleges involvment of Central Ministers in shady transactions." ଆପତ୍ତିଜନକ କାରବାରରେ କେନ୍ଦ୍ରମନ୍ତ୍ରୀ ସବୁ ସଂପୃକ୍ତ ଥିବାର ଅଭିଯୋଗ ପାର୍ଲିମେଣ୍ଟରେ ଉଠିଲା । ଏଥିରେ ଘୃରିଆଡ଼େ ଚହଳପଡ଼ିଗଲା । କେତେକ କେନ୍ଦ୍ରମନ୍ତ୍ରୀ ମୋ ପାଖକୁ ଧାଇଁଲେ କାହା କାହା ନାମ ରହିଥିଲା ଜାଣିବା ନିମନ୍ତେ । ମୁଁ କୌଣସି ନାମ ଉଲ୍ଲେଖ କରିନଥିଲି କିମ୍ବା କେଉଁ ବ୍ୟବସାୟୀ ତାହା ବି କହିନଥିଲି ! ସେଥିରେ ତହୁଁ ଅଧିକ ସନ୍ଦେହ ସୃଷ୍ଟି ହେଲା । ପାର୍ଲିମେଣ୍ଟ ଲବିରେ ନାନା ନାମ ଆଲୋଚିତ ହେଲା । ଏଥିରେ କେନ୍ଦ୍ରମନ୍ତ୍ରୀମାନେ ବଡ଼ ଅପମାନିତ ବୋଧକଲେ । ମହାବୀର ତ୍ୟାଗୀଙ୍କ ପରି କେତେକ କଂଗ୍ରେସ ସଭ୍ୟ କଥାବାର୍ତ୍ତାରେ ବିଷୟଟିକୁ ଆହୁରି ତେଜାୟିତ୍ କଲେ । ମୋ ଉପରେ ସମସ୍ତଙ୍କର ଦୃଷ୍ଟି । ମୁଁ ପାର୍ଲିମେଣ୍ଟ ଲବିରେ ପହଞ୍ଚିଲାମାତ୍ରେ କଂଗ୍ରେସଦଳ ଓ ବିରୋଧୀର କେତେକ ସଭ୍ୟ ଆସି ମତେ ଘେରିଯାଇ ପଚାରୁଥିଲେ—ମୋ ବ୍ୟାଗରେ ଆଉ କାହା ନାମରେ କେତେ ମସଲା ରହିଛି ? କଂଗ୍ରେସ ପାର୍ଟି ଭିତରେ ମଧ୍ୟ ଭାରି ବିତର୍କ ଲାଗିଲା ।

# ପାର୍ଲିମେଣ୍ଟେରୀ ମନ୍ତ୍ରୀଙ୍କ ତତ୍ପରତା

ସେତେବେଳକୁ ଶ୍ରୀ ସତ୍ୟନାରାୟଣ ସିହ୍ନା ଥିଲେ ପାର୍ଲିମେଣ୍ଟାରୀ ବ୍ୟାପାର ମନ୍ତ୍ରୀ । ପ୍ରଧାନମନ୍ତ୍ରୀଙ୍କ ନେହରୁଙ୍କ ପାଖକୁ ତାଙ୍କର ଅବାଧ ପ୍ରବେଶ । ସେ ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟିକୁ ଏ ବିଷୟଟି ଆଣିଲେ ଏବଂ ମୋଠାରୁ ନିର୍ଦ୍ଦିଷ୍ଟ ତଥ୍ୟ ଏ ସମ୍ବନ୍ଧରେ ଆଣିବା ନିମନ୍ତେ ପଣ୍ଡିତ ନେହରୁ ତାଙ୍କୁ ନିର୍ଦ୍ଦେଶ ଦେଲେ । ଏହା ଯେତେଦୂର ସମ୍ଭବ ଫେବୃୟାରୀ ୨୭ ତାରିଖ ହେବ; ସେ ମତେ ଆସି ପୂରା ତଥ୍ୟ ମାଗିଲେ । ଘଟଣାଟି ଏପରି ଗୁରୁତର ଆକାର ଧାରଣ କରିବ ବୋଲି ମୁଁ ଅନୁମାନ କରିପାରିନଥିଲି । ମୋ ପାଖରେ ଧନନଥିଲା କି ଅନ୍ୟ ସୁବିଧା ନଥିଲା ଯେ ମୁଁ କଲିକତା ଯାଇ ଦିନକ ଭିତରେ ଆଉ କିଛି ତଥ୍ୟ ସଂଗ୍ରହ କରି ନେଇ ଆସିପାରନ୍ତି । ଏତିକିବେଳେ ମହାବୀର ତ୍ୟାଗୀ ଓ ଇଣ୍ଡିଆନ୍ ଏକ୍ସପ୍ରେସ୍‌ର ରାମନାଥ ଗୋଏଙ୍କା ମୋର ସାହାଯ୍ୟରେ ଆସିଲେ । ଟେଲିପ୍ରିଣ୍ଟର୍ ଜରିଆରେ ଅନ୍ୟ ସବୁ ସମ୍ବାଦପତ୍ର-ମାନଙ୍କରେ ଯାହା ପ୍ରକାଶ ପାଇଥିଲା, ସେଗୁଡ଼ିକ ସଂଗ୍ରହକରି ମତେ ଦେଲେ ଏବଂ ମୁଁ ଫେବୃୟାରୀ ୨୭ ତାରିଖରେ ପଣ୍ଡିତ ନେହରୁଙ୍କୁ ଏକ ଚିଠି ଲେଖି ଏସବୁ ତଥ୍ୟ ଯୋଗାଇଦେଲି ଏବଂ ସେଥିରେ ଲେଖିଥିଲି—"ଏହି ରିପୋର୍ଟଗୁଡ଼ିକରୁ ଆପଣ ସବୁକଥା ଜାଣିବେ । କେତେକ ଦାୟିତ୍ୱପୂର୍ଣ୍ଣ ସମ୍ବାଦପତ୍ରରେ ଯେତେବେଳେ ଏତେ ବିଶଦଭାବରେ ବର୍ଣ୍ଣନା କରାଯାଇଛି ଏବଂ ବ୍ୟାପକଭାବରେ ପ୍ରକାଶପାଇଛି, ଏହାକୁ 'ଦ୍ୱେଷମୂଳକ' ପ୍ରଚାର ବୋଲି କୁହାଯାଇପାରିବନାହିଁ । ଏଥିରେ କେବଳ କେତେକ କେନ୍ଦ୍ର ଓ ରାଜ୍ୟମନ୍ତ୍ରୀଙ୍କ ନାମ ଉଲ୍ଲେଖ କରାଯାଇନାହିଁ; କଂଗ୍ରେସ କମିଟିଗୁଡ଼ିକର କେତେକ କର୍ମକର୍ତ୍ତାଙ୍କ ନାମ ମଧ୍ୟ ରହିଛି । ତେଣୁ ମନେହେଉଛି ଯେଉଁମାନଙ୍କ ନାମ ଏଥିରେ ରହିଛି, ବିଷୟଟି ତାଙ୍କ ଭିତରେ ସୀମା-ବଦ୍ଧ ନୁହେଁ । ବାହାରେ ଲୋକେ କଥାବାର୍ତ୍ତା ହେଉଛନ୍ତି, ସବୁ ବଡ଼ବଡ଼ିଆ ଲୋକ ଏସବୁ କଥା ଜାଣନ୍ତି । ଅଧିକନ୍ତୁ ମଧ୍ୟ କୁହାଯାଉଛି ଯେ କେନ୍ଦ୍ର ଗୁଇନ୍ଦା ବିଭାଗ ଏବଂ କଷ୍ଟମସ୍ ବିଭାଗ ଜରିଆରେ ପୂର୍ଣ୍ଣ ତଥ୍ୟ କେନ୍ଦ୍ର ସରକାରୀ ଦପ୍ତରରେ ପହଞ୍ଚିସାରିଛି; ମାତ୍ର ବିଷୟଟିକୁ ଗୁପ୍ତ ରଖାଯାଉଛି । ମୁଁ ଶୁଣୁଛି ଯେ କମ୍ପାନୀ ପାଖରୁ ଯାହାସବୁ ଖାତାପତ୍ର ଧରାପଡ଼ୁଛି, ତାହା କଲିକତାର କେତେକ କଚେରିରେ ଦାଖଲ ହୋଇସାରିଛି; ମାତ୍ର କଥାଟି ପଦାକୁ ବାହାରି ପଡ଼ିବାରୁ ଏବେ ସେ କାଗଜପତ୍ର ଏକତ୍ର ସେକଡ଼ କରିବାର ଉଦ୍ୟମ ଚାଲିଛି । ଏହି କମ୍ପାନୀର ନାମ ହେଉଛି ସିରାଜୁଦ୍ଦିନ ଏଣ୍ଡ୍ କମ୍ପାନୀ, ବେଣ୍ଟିଙ୍କ୍ ଷ୍ଟ୍ରିଟ୍, କଲିକତା । ପାର୍ଲିମେଣ୍ଟାରୀ ଲବିରେ ଯାହାସବୁ ଶୁଣୁଛି, ମୋ ଅପେକ୍ଷା ଲୋକେ ଅଧିକ କଥା ଏ ସଂକ୍ରାନ୍ତରେ ଜାଣନ୍ତି ।

"ଦେଶର ସାଧାରଣ ଜୀବନର ସାଧୁତା ଓ ନିଷ୍ଠା ରକ୍ଷା ଦୃଷ୍ଟିରୁ ଏହି ସମଗ୍ର ବିଷୟର ତଦନ୍ତ ହେବା ନିତାନ୍ତ ଆବଶ୍ୟକ । ମୁଁ ମଧ୍ୟ ଏ ସମ୍ବନ୍ଧରେ ଏକ ନିରପେକ୍ଷ ବିଭାଗୀୟ ତଦନ୍ତ କରାଇବା ନିମନ୍ତେ ଆପଣଙ୍କୁ ଅନୁରୋଧ କରିବି, କାରଣ ମୋ ମତରେ ପ୍ରଶାସନିକ ବିଭାଗ ଏହାକୁ ନ୍ୟାୟୋଚିତ ଢଙ୍ଗରେ ଫଇସଲା କରିପାରିବେନାହିଁ । ଆହୁରି ମଧ୍ୟ ଅନୁରୋଧ କରିବି ଯେ

ଏ ସଂକ୍ରାନ୍ତରେ ଯାହା କାଗଜପତ୍ର ଜବତ କରାଯାଇଛି, ସେଗୁଡ଼ିକ ହାଇକୋର୍ଟ ରେଜିଷ୍ଟ୍ରାରଙ୍କ କିମ୍ବା ସେହିପରି ଏକ ଉଚ୍ଚପଦସ୍ଥ ଅଧିକାରୀଙ୍କ ସିଲ୍ ମୋହର ଦେଇ ନିରାପଦରେ ରଖି-ଦିଆଯାଉ ।

"ମୁଁ ଆଶା କରୁଛି ଆପଣ ପାର୍ଲିମେଣ୍ଟରେ ଯେତେବେଳେ ଏହାର ଉତ୍ତର ଦେବେ, ଏ ଦିଗରେ କି ପଦକ୍ଷେପ ନିଆଯାଉଛି, ତାହାର ସୂଚନା ଦେବେ । ମୁଁ ଆପଣଙ୍କୁ ନିର୍ଭରଦେଇ କହୁଛି ଯେ, ମୁଁ କେବଳ ବିରୋଧରେ ଥିବାରୁ ଯେ ଏ ବ୍ୟାପାର ଆପଣଙ୍କ ଦୃଷ୍ଟିକି ଆଣିଲି, ଆପଣ ଏମିତି ଭାବରେ କଥାଟି ଧରିବେନାହିଁ । ଆମର ସାଧାରଣ ଜୀବନ ଓ ଶାସନ ବିରୁଦ୍ଧରେ ଏପରି ଅଭିଯୋଗସବୁ ବାରମ୍ବାର ଉଠୁଛି । ଏପରି ବିଷୟଗୁଡ଼ିକୁ ଯଦି ପରିଷ୍କାର କରିଦିଆନଯାଏ ଏବଂ ଲୋକଙ୍କ ମନରୁ ସନ୍ଦେହ ଦୂର କରିବା ନିମନ୍ତେ କିଛି ପଦକ୍ଷେପ ନିଆନଯାଏ, ତେବେ ଭବିଷ୍ୟତ ବଂଶଧରଙ୍କ ଲାଗି ଏକ ଅତି ଖରାପ ପରମ୍ପରା ରହିଯିବ ।"

ଏଥି ସଂକ୍ରାନ୍ତରେ ଯାହାସବୁ ଚିଠିପତ୍ର ରହିଛି, ତାହା ଇଂରାଜୀରେ ପରିଶିଷ୍ଟରେ ପୁସ୍ତକର ଶେଷଭାଗରେ ଦିଆଯାଉଛି । ତେଣୁ ଏଣିକି ମୋ ଲେଖାରେ ମୁଁ ସେ ସମ୍ପର୍କରେ ଓଡ଼ିଆରେ ସଂକ୍ଷେପରେ ଉଲ୍ଲେଖ କରିଯିବି । ତେବେ ପଣ୍ଡିତଜୀଙ୍କର ଦୁଇଟି ବକ୍ତବ୍ୟ ଏଠାରେ ଦେଇଦେଉଛି ।

## ପାଞ୍ଚଘଣ୍ଟା ଭିତରେ ଜବାବ

ମୋର ଉପରୋକ୍ତ ପତ୍ର ଓ କାଗଜପତ୍ର ପାଇବାର ୫ ଘଣ୍ଟା ପରେ ମୁଁ ପଣ୍ଡିତ ନେହରୁଙ୍କଠାରୁ ଉତ୍ତର ପାଇଲି ଏବଂ ସେ ଏ ବିଷୟରେ କେନ୍ଦ୍ର ଗୋଇନ୍ଦା ବିଭାଗକୁ ତଦନ୍ତଲାଗି ଦେଇଛନ୍ତି ବୋଲି ଜଣାଇଲେ । ପଣ୍ଡିତଜୀ ଲେଖିଲେ "Dear Shri Dwivedy, I have just received your letter of 26th February with its enclosures. I had not heard of this matter till yesterday when Satyanarayan Sinha mentioned it to me. We have had no report yet from our Intelligence Department or any other source. I am immediately asking our Intelligence to send me a report."

ଏହାପରେ ମୁଁ ଯେ ଲୋକସଭାରେ ଉତ୍ତରବେଳେ ଏ ସମ୍ବନ୍ଧରେ କିଛି କହିବାକୁ ଅନୁରୋଧ କରିଥିଲି, ସେ ସମ୍ବନ୍ଧରେ ୨୭-୨-୬୩ରେ ଉତ୍ତର ଦେଇ କହିଲେ ଯେ ଏ ସମ୍ପର୍କରେ ରିପୋର୍ଟ ମଗାଯାଇଛି । ତହିଁରୁ ବିଷୟଟି ଜଣାପଡ଼ିବ ଏବଂ ତାପରେ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ ହେବ । ସେ କହିଲେ—"There is another matter that I should like to refer to. Some honourable members

have drawn my attention to some reports in Calcutta newspapers, apparently about some papers, account books and other things being attached by the police, and it is said that in these account books occurred the names of some Ministers, Central Ministers, State Ministers etc. I heard of this for the first time two days ago or three days ago, I am not sure; Immediately I enquired and I wanted to know something more about it, and I have asked for a report about this, so that we might find out what it is and we shall, after finding it out take necessary action."

## ଏଣିକି ଗୋଳ ଲାଗିଲା

ପାର୍ଲିମେଣ୍ଟରେ ପଣ୍ଡିତ ନେହରୁ ଏପରି କହିବା ପରେ ଘଟଣାଟି ନାନା ହୃଦସ୍ତରେ କମ୍ପନ ଜାତକରାଇଲା । କଂଗ୍ରେସ ପାର୍ଲିମେଣ୍ଟାରୀ ଦଳର ଏକ ବୈଠକ ବସି ଦାବୀ କରାଗଲା ଯଦି କେହି କେନ୍ଦ୍ରମନ୍ତ୍ରୀ ଏଥିରେ ସମ୍ପୃକ୍ତ ରହିଥିଲେ, ସେମାନେ ସ୍ୱୀକାର ନକଲେ ସବୁ ମନ୍ତ୍ରୀଙ୍କ ମୁଣ୍ଡରେ ଅଠା ଲାଗିରହିବ । ଏହିପରି ଏକ ବୈଠକରେ କେଶବ ଦେଓ ମାଳବ୍ୟ କହିଲେ ଯେ ତାଙ୍କ ନାମରେ ବୃଥାରେ ଅଭିଯୋଗ ଅଣାଯାଉଛି । ଏ ଅପବାଦ ଲଗାଇବା ପଛରେ କେତେକ ପୁଞ୍ଜିବାଦୀ ଶିଳ୍ପପତି ଓ ଆମେରିକାର ତୈଳ କାରବାର ସଂସ୍ଥା ଅଛନ୍ତି । ସେମାନେ ସୋସଲିଷ୍ଟଙ୍କୁ ଲଗାଇଛନ୍ତି ଏବଂ ମୋର କମ୍ୟୁନିଷ୍ଟଙ୍କ ପ୍ରତି ସହାନୁଭୂତି ଥିବାରୁ ରାଜନୀତିକ ଦୃଷ୍ଟିକୋଣରୁ ଏପରି ଈର୍ଷାମୂଳକ ଅଭିଯୋଗ ଆସିଛି । ଏହା କହିବା ସାଙ୍ଗେ ସାଙ୍ଗେ ସେ କହିଲେ ଯେ, ସେ ସିରାଜୁଦ୍ଦିନ କମ୍ପାନୀର କୌଣସି ବ୍ୟକ୍ତି ବା ସିରାଜୁଦ୍ଦିନଙ୍କୁ ବ୍ୟକ୍ତିଗତଭାବେ ଜାଣନ୍ତିନାହିଁ । ତେବେ ନିର୍ବାଚନବେଳେ ନାନା ଲୋକଙ୍କଠାରୁ ଚାନ୍ଦା ସଂଗ୍ରହ କରାଯାଏ ଏବଂ ତାଙ୍କର ପାର୍ଲିମେଣ୍ଟାରୀ ନିର୍ବାଚନମଣ୍ଡଳୀ ଭିତରର ଜଣେ ଆସେମ୍ବ୍ଲି ପ୍ରାର୍ଥୀ ଟଙ୍କା ପାଇଁ ଆସିବାରୁ ସେ ଉକ୍ତ ଫାର୍ମ ପାଖକୁ ତାଙ୍କୁ ପଠାଇଦେଇଥିଲେ ଏବଂ ସିରାଜୁଦ୍ଦିନ କମ୍ପାନୀ ତାଙ୍କୁ ୧୦ ହଜାର ଟଙ୍କା ଦେଇଥିଲେ । ଏହି ଦେଣନେଣ ୧୯୫୭ ମସିହା ନିର୍ବାଚନ ପୂର୍ବରୁ ୧୯୫୬ ଡିସେମ୍ବର ମାସରେ କରାଯାଇଥିବାର ଏକ ରସିଦ ସେ ବୈଠକରେ ଦେଖାଇଲେ । ଏଥିରେ ଅନ୍ୟ କଂଗ୍ରେସଲୋକେ ଏହା କିଛି ଦୋଷାବହ କାର୍ଯ୍ୟ ନୁହେଁ ବୋଲି କହି ପଣ୍ଡିତ ନେହରୁଙ୍କ ଉପରେ ଚାପ ପକାଇଲେ । ମତେ ସାମ୍ବାଦିକମାନେ ରାତିରେ ଏ ସମ୍ବାଦ ଜଣାଇଲାମାତ୍ରେ ମୁଁ ଏକ ବିବୃତି ଦେଇ ମାଳବ୍ୟଙ୍କର ତୁରନ୍ତ ଇସ୍ତଫା ଦାବୀ କଲି ଏବଂ ଦର୍ଶାଇଲି ଯେ ସେ କମ୍ପାନୀକୁ ଖଣିମନ୍ତ୍ରଣାଳୟ ସୁବିଧା ଦେଇଥିବାରୁ ତାର

ପ୍ରତିବଦଳରେ ଏ ଗୁନ୍ଦା ମିଳିଥିଲା । ଏଥିଭିତରେ କଲିକତାର "ଲୋକସେବକ" ସମ୍ବାଦପତ୍ର ପୁଣି ମାର୍ଚ୍ଚ ୧୩ ତାରିଖରେ ପ୍ରକାଶ କଲା ଯେ ପାର୍ଲିମେଣ୍ଟରେ ଏ ବିଷୟ ପ୍ରକାଶିତ ହେଲା ପରେ ବି ମାଙ୍ଗାନିଜ ବଦଳରେ ଚେକୋସ୍ଲୋଭାକିଆରୁ ମେସିନାରି ଆଣିବା ନିମନ୍ତେ ସିରାଜୁଦ୍ଦିନ କମ୍ପାନୀକୁ ଅନୁମତି ମିଳିସାରିଛି । ଏଣେ ରାଜନୀତିକ ରୂପ ଦେଇ ତଦନ୍ତ ଆଦିକୁ ବନ୍ଦ କରିଦେବା ନିମନ୍ତେ ଖୁବ୍ ଉଦ୍ୟମ ଚାଲିଲା ଏବଂ ପଣ୍ଡିତ ନେହରୁ ମଧ୍ୟ ସେଥିରେ ଛନ୍ଦିଯାଇ ନିଖିଳ ଭାରତ କଂଗ୍ରେସ କମିଟିର ଏକ ବୈଠକରେ ଏପରି ଦୁର୍ନୀତି ଅଭିଯୋଗ ରାଜନୀତିକ-ବିଦ୍ୱେଷମୂଳକ ବୋଲି କହିଦେଲେ । ମୁଁ ସଙ୍ଗେ ସଙ୍ଗେ ତାର ପ୍ରତିବାଦ କରି ନେହରୁଙ୍କୁ ଲେଖିଲି (ଚିଠିପତ୍ର ଦ୍ରଷ୍ଟବ୍ୟ) । ଏଣେ ଏ ସମ୍ପର୍କରେ ବିଭିନ୍ନ ମନ୍ତ୍ରଣାଳୟକୁ ପ୍ରଶ୍ନ ପଚାରି ନୂତନ ତଥ୍ୟ ହସ୍ତଗତ ହେଉଥିଲା । ପ୍ରତି ସପ୍ତାହରେ ଏ ସଂକ୍ରାନ୍ତରେ ମୋର କିଛି ନା କିଛି ପ୍ରଶ୍ନ ଆସୁଥିଲା । ମଜାର କଥା ହେଉଛି, ଏଭଳି ପ୍ରଶ୍ନ ଯେଉଁଦିନ ଉଠେ, ସେଦିନ ମୁଁ ପାର୍ଲିମେଣ୍ଟକୁ ଯିବା ପୂର୍ବରୁ କେହି ଅଜଣା ବ୍ୟକ୍ତି ମତେ ଟେଲିଫୋନରେ ଜଣାଇଦିଅନ୍ତି ଯେ ଉକ୍ତ ପ୍ରଶ୍ନର ଏଭଳି ଜବାବ ଦିଆଯାଉଛି; ତାର ବିପରୀତ ତଥ୍ୟ ଆଗରୁ ଦିଆଯାଉଥିଲା । ଏତିକି କହି ସେ ଟେଲିଫୋନ୍ ଛାଡ଼ିଦିଅନ୍ତି । ମୁଁ ନାମ ପଚାରିଲେ ଟେଲିଫୋନ୍ କଟା ହୋଇଯାଏ । ଏଭଳି ପ୍ରଶ୍ନରେ ତେଣୁ ସରକାରୀ ପକ୍ଷ ଅଧିକ ଅପଦସ୍ଥ ହୁଅନ୍ତି । ଏପରି ହେଲା କି ସ୍ପିକର ହୁକୁମ ସିଂହଙ୍କ ଉପରେ ପ୍ରଭାବ ପକାଇବାକୁ ଉଦ୍ୟମ କରାଗଲା । ମାତ୍ର ସେ ବିଧିମୁତାବକ କାର୍ଯ୍ୟ ହେଉଥିବାରୁ କୌଣସିପ୍ରକାର ବାଧା ଦେବା ନିମନ୍ତେ ଅସ୍ୱୀକାର କରିଦେଲେ । ପ୍ରତ୍ୟେକ ପ୍ରଶ୍ନ ପୂର୍ବରୁ ମୁଁ ସେଥି ସଂକ୍ରାନ୍ତୀୟ ସହଯୋଗୀ ପ୍ରଶ୍ନ ପଚାରିବା ନିମନ୍ତେ ବନ୍ଧୁମାନଙ୍କୁ ସ୍ଥିର କରିଦେଇଥିଲି ଏବଂ ସେମାନେ ଗୁଡ଼ାଇ ଗୁଡ଼ାଇ ଜେରା କରୁଥିଲେ । ଦିନେ ଦିନେ କେବଳ ଏହିପରି ଗୋଟିଏ ପ୍ରଶ୍ନ ଉପରେ ହିଁ ପ୍ରଶ୍ନ ଘଣ୍ଟାଟିର ସମସ୍ତ ପୂରା ବ୍ୟୟ ହୋଇଯାଉଥିଲା । ଖଣିମନ୍ତ୍ରଣାଳୟର ବଜେଟ ଆଲୋଚନା ଏବଂ ଅର୍ଥ ବିଲ୍ ବିଚାରବେଳେ ଆହୁରି ବିସ୍ତୃତଭାବରେ ଏହା ଉତ୍ଥାପିତ ହେଲା । ସବୁଦିଗରୁ ରାଜନୀତିକ ଚାପ ଅଧିକ ପଡ଼ିଲା । କୃଷ୍ଣମେନନ ଗଲା ପରେ ମନ୍ତ୍ରିମଣ୍ଡଳରେ ମାଳବ୍ୟହିଁ ଏକମାତ୍ର କମ୍ୟୁନିଷ୍ଟ ସମର୍ଥକ ଥିଲେ । ତେଣୁ ତାଙ୍କୁ ରକ୍ଷା କରିବା ନିମନ୍ତେ ସେମାନେ ପତ୍ରପରୋନାସ୍ତି ଚେଷ୍ଟା କଲେ ଓ ନେହରୁଙ୍କୁ ପ୍ରଭାବିତ କରିବାକୁ ଉଦ୍ୟମ କଲେ । ମୋ ପାଖରେ ସମ୍ବାଦ ପହଞ୍ଚିଲା ଯେ କେତେକ କାଗଜପତ୍ର ହରଣଚାଲ କରିବାର ବ୍ୟବସ୍ଥା ହେଉଥିଲା । ଲାଲବାହାଦୂର ଶାସ୍ତ୍ରୀ ସ୍ୱରାଷ୍ଟ୍ରମନ୍ତ୍ରୀ ଥିଲେ । ମୁଁ ତାଙ୍କୁ ସାକ୍ଷାତ୍‌କରି କାଗଜପତ୍ର ହସ୍ତାନ୍ତର ନହେବାର ପ୍ରତିଶ୍ରୁତି ପାଇଲି । ଏଥିଭିତରେ ପୁଣି ଦେଖିଲି ମାଳବ୍ୟ ଯାଇ ରାଷ୍ଟ୍ରପତି ରାଧାକୃଷ୍ଣନଙ୍କ ସହ ସାକ୍ଷାତ୍ କରିଥିଲେ । ଏ ସମ୍ବାଦ ଦେଖି ମୁଁ ରାଷ୍ଟ୍ରପତିଙ୍କୁ ସାକ୍ଷାତ୍‌କରି ଏ ସମ୍ପର୍କରେ ମୋର ନେହରୁଙ୍କ ସହ ଯେତେ ଚିଠି କାରବାର ହୋଇଥିଲା ଏବଂ ପାର୍ଲିମେଣ୍ଟରେ ଯେଉଁସବୁ ପ୍ରଶ୍ନୋତ୍ତର ମିଳିଥିଲା, ତାର ନକଲ ତାଙ୍କୁ ଦେଇଆସିଲି ଏବଂ ସେ ନେହରୁଙ୍କସହ କଥାବାର୍ତ୍ତା କରିବାକୁ ପ୍ରତିଶ୍ରୁତି ଦେଲେ । ତାଙ୍କଠାରୁ ଆହୁରି ମଧ୍ୟ ସମ୍ବାଦ ମିଳିଲା ଯେ ମାଳବ୍ୟ ତାଙ୍କୁ ସାକ୍ଷାତ୍

କାଳରବେଳେ ୧୯୫୭ ଡିସେମ୍ବରରେ ୧୦ ହଜାର ଟଙ୍କାର ରସିଦ ଦେଖାଇଥିଲେ । ସେହିଠାରେ ଡକ୍ଟର ରାଧାକୃଷ୍ଣନ ତାଙ୍କୁ ପଚାରିଥିବାର ପ୍ରକାଶ ଯେ, ୧୯୫୭ର ରସିଦ ତ ଇନ୍‌କମ୍ ଟିକସ ହିସାବରେ ଯିବାରକଥା—ଦୀର୍ଘ ୭ବର୍ଷ ପରେ ମାଳବ୍ୟଙ୍କର ହସ୍ତଗତ ହେଲା କେମିତ ? ମୁଁ ବରାବର ଗୁରଆଡ଼୍ ଜଗିବାରୁ ଏବଂ ଏଥିରେ କୌଣସି ରାଜନୀତି ଜଡ଼ିତ ନୁହେଁ ବୋଲି, ରାଜନୀତିକ ଗୁପ ଆଉ କାର୍ଯ୍ୟ କଲନାହିଁ । ବାସ୍ତବିକ ପ୍ରାଥମିକ ଦୋଷ ଅଛି କି ନାହିଁ ମତାମତ ଦେବା ନିମନ୍ତେ ଆଟର୍ଣ୍ଣି ଜେନେରାଲ୍ ଦପ୍ତରଙ୍କ ପରାମର୍ଶ ମଗାଗଲା । ଏହି ଘୋଷଣା ହେବା ପରେ ମୁଁ ତାକୁ ସ୍ୱାଗତ କରି ତାହା ସଙ୍ଗେ ସଙ୍ଗେ ଆଉ କେତେକ କଥା ଯୋଡ଼ିବା ନିମନ୍ତେ ଦାବୀ କଲି ଏବଂ ମୋର ଅଭିଯୋଗ ଆଟର୍ଣ୍ଣି ଜେନେରାଲଙ୍କୁ ଜଣାଇଦେଲି । ଆଟର୍ଣ୍ଣି ଜେନେରାଲ ସମ୍ପୂର୍ଣ୍ଣ ତଥ୍ୟ ନଆସିଲାଭଳି ଅନୁଭବ କରି ଯେତିକି ଆସିଥିଲା, ତହିଁରେ ଅଧିକ ତଦନ୍ତର ଆବଶ୍ୟକତା ସୁପାରିଶ କଲେ । ଏହାପରେ ପଣ୍ଡିତ ନେହରୁଙ୍କର ଅନ୍ୟ ରାହା ନଥିଲା । ବିରୋଧ ପକ୍ଷରୁ ଦାବୀହେଲା ଯେ ବିଚାରବିଭାଗୀୟ ତଦନ୍ତ କରାଯାଉ ଏବଂ କେବଳ ମାଳବ୍ୟଙ୍କ ସଂକ୍ରାନ୍ତରେ ନୁହେଁ, ସେଥିରେ ଯେତେ ଲୋକଙ୍କର ନାମ ରହିଛି, ଯଥା ଓଡ଼ିଶାର ମୁଖ୍ୟମନ୍ତ୍ରୀ ବୀରେନ୍‌ମିତ୍ର, ସମସ୍ତଙ୍କ ବିଷୟ ବିଚାରବିଭାଗୀୟ ତଦନ୍ତ ପାଇଁ ଯାଉ । କମ୍ୟୁନିଷ୍ଟ ସଦସ୍ୟମାନେ ଏହି ଦାବୀକୁ ସମର୍ଥନ ଜଣାଇଲେ । ମାତ୍ର ପଣ୍ଡିତ ନେହରୁ ଜଣେ ସୁପ୍ରିମ କୋର୍ଟ ବିଚାରପତି ଏସ୍. କେ. ଦାସଙ୍କୁ ଏକ ଘରୋଇ ତଦନ୍ତ ରିପୋର୍ଟ ଦେବା ନିମନ୍ତେ ଅନୁରୋଧକଲେ । ଏ ଦିଗରେ ସାମ୍ବିଧାନିକ ଆପତ୍ତି ବି ସେ ଗ୍ରାହ୍ୟ କଲେନାହିଁ । ଏସ୍. କେ. ଦାସଙ୍କ ପାଖକୁ ଯେତିକି ଅଭିଯୋଗ ପଠାଯାଇଥିଲା, ତହିଁର କାଗଜପତ୍ର ତନଖି କରି ସେ ଦୁଇଟି ବିଷୟରେ ମାଳବ୍ୟଙ୍କୁ ଦୋଷୀ ସାବ୍ୟସ୍ତ କରିଥିଲେ ।

## ମାଳବ୍ୟଙ୍କ ଇସ୍ତଫା ଘୋଷଣା

ଶେଷକୁ ୧୯୬୩ ଅଗଷ୍ଟ ୧୭ ତାରିଖରେ ପଣ୍ଡିତ ନେହରୁ ମାଳବ୍ୟଙ୍କର ଇସ୍ତଫା ଅତି ଅନିଚ୍ଛାସତ୍ତ୍ୱେ ଗ୍ରହଣ କରିଥିଲେ ବୋଲି ଘୋଷଣା କଲେ । ଏକ ପକ୍ଷରେ କହିଲେ ଯେ—ମୁଁ ତାଙ୍କୁ ବହୁକାଳରୁ ଜାଣେ—ତାଙ୍କର ବ୍ୟକ୍ତିଗତ ସାଧୁତା ଉପରେ ମୋର ବିଶ୍ୱାସ ରହିଛି ଏବଂ ତାଙ୍କୁ ଦୋଷ ଦେବା ଭଲ କିଛି ନାହିଁ; ଅନ୍ୟ ପକ୍ଷରେ କହିଲେ—ଜଷ୍ଟିସ ଦାସଙ୍କ ରିପୋର୍ଟ ହେତୁ ତାଙ୍କ ଇସ୍ତଫା ଗୃହୀତ ହେଲା । ମାତ୍ର ଜଷ୍ଟିସ ଦାସ ତାଙ୍କୁ ଦୋଷୀ କରିଛନ୍ତି କି ନା ସେ ସମ୍ବନ୍ଧରେ କିଛିହେଲେ କହିଲେ ନାହିଁ ଓ ତାଙ୍କ ରିପୋର୍ଟ ପ୍ରକାଶ କରିବାକୁ ମନାକରିଦେଲେ । ଏତିକିବେଳେ ମୁଁ ଉଠି ମାଳବ୍ୟଙ୍କୁ ୫ଟି ଅଭିଯୋଗ ଭିତରୁ ୨ଟିରେ ଦୋଷୀ ସାବ୍ୟସ୍ତ କରାଯାଇଥିଲା ଏବଂ ସେ ରିପୋର୍ଟଟି ୭୦ ପୃଷ୍ଠାର ବୋଲି ଚିତ୍କାର କରି କହିଲି । ଗୃହ ଭିତରେ ପୁଣି ଶୃଙ୍ଖଳା ଖେଳିଗଲା । ମୁଁ ପୂର୍ବରୁ ମାଳବ୍ୟଙ୍କ ସମ୍ପର୍କରେ ପ୍ରଶ୍ନ ରହିଥିଲେ ଟେଲିଫୋନ୍‌ରେ ଯେମିତି ସମ୍ବାଦ ପାଉଥିଲି, ସେମିତି

ଉକ୍ତ ଦିନ ମୁଁ ପାର୍ଲିମେଣ୍ଟକୁ ଆସିବା ଆଗରୁ ଜଜ୍‌ଙ୍କ ରିପୋର୍ଟ ସମ୍ବନ୍ଧରେ ମତେ ଜଣେ ଅଜଣା ବନ୍ଧୁ ସୁସମ୍ବାଦ ଦେଇଯାଇଥିଲେ । ମୁଁ ଏହା ପ୍ରକାଶକଲାପରେ ବହୁ ଯୁକ୍ତିତର୍କ ଲାଗିଲା ଏବଂ ରିପୋର୍ଟରେ ଦୁଇଟି ଅଭିଯୋଗ ପ୍ରମାଣିତବୋଲି ନେହରୁଙ୍କୁ ସ୍ୱୀକାର କରିବାକୁ ପଡ଼ିଲା । ପଣ୍ଡିତ ନେହରୁ ମଧ୍ୟ ସ୍ୱୀକାର କଲେ ଯେ ବିଗୃରବିଭାଗୀୟ ତଦନ୍ତକୁ ନ ଦେଇ ଏପରି ଘରୋଇ ତଦନ୍ତ ଠିକ୍ ନୁହେଁ ଏବଂ ଭବିଷ୍ୟତରେ ଆଉ ଏଭଳି ପନ୍ଥା ଗ୍ରହଣ କରାଯାଇପାରେନା । ମୁଁ ଫେବୃୟାରୀ ୨୧ ତାରିଖରେ ଯେଉଁ ଅଭିଯୋଗ ଆଗତ କରିଥିଲି, ଅଗଷ୍ଟ ୧୭ ତାରିଖରେ ତାହା ଫଳବତୀ ହେଲା । ଜଣେ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀଙ୍କୁ ଅସାଧୁ କାରବାର ନିମନ୍ତେ ପଦ ତ୍ୟାଗ କରିବାକୁ ପଡ଼ିଲା । କେବଳ ପାର୍ଲିମେଣ୍ଟରେ ପ୍ରଶ୍ନ କରିଦେଇଥିଲେ ହୋଇନଥାନ୍ତା—ମୁଁ ଯେ ଗୋଡେ ଗୋଡ଼େ ଜଗିଲି ଏବଂ ସବୁ କ୍ଷେତ୍ରରେ ସମସ୍ତଙ୍କ ପାଖରେ ପହଞ୍ଚିଲି ଏବଂ ବିଭିନ୍ନ ଲୋକଙ୍କର ସହଯୋଗ ପାଇଲି, ତାହା ଫଳରେ ଏପରି ଏକ ନୂତନ କାର୍ଯ୍ୟ ହାସଲହୋଇପାରିଲା ଏବଂ ପଣ୍ଡିତ ନେହରୁଙ୍କୁ ଦୋଷ ସ୍ୱୀକାର କରିବାକୁ ପଡ଼ିଲା । ନ୍ୟାୟ, ନିଷ୍ଠା ଓ ସତ୍ୟର ଜୟ ହେଲା । ଅବଶ୍ୟ ପଣ୍ଡିତ ନେହରୁଙ୍କର ଗଣତାନ୍ତ୍ରିକ ମର୍ଯ୍ୟାଦାବୋଧ ଥିବାରୁ ଏହା ସମ୍ଭବ ହେଲା । ଏବେ ଏହା ଅପେକ୍ଷା ଆହୁରି ଜଘନ୍ୟ କାରବାର ପ୍ରକାଶିତ ହୋଇ ସୁଦ୍ଧା କେହି କର୍ଣ୍ଣପାତ କରୁନାହିଁ । ଏପରି ହୋଇଥିଲାକି, ମୋଠାରୁ ଖଣ୍ଡେ ଲେଖାଇନେଲେ ମାଳବ୍ୟ ପୁଣି ପୁରୁଣା ପ୍ରତିଷ୍ଠା ଫେରିପାଇବେ, ମାଳବ୍ୟଙ୍କ କନ୍ୟା ଆସି ମତେ ବାରମ୍ବାର ଏଭଳି ଅନୁରୋଧ କରିଥିଲେ ମଧ୍ୟ ମୁଁ କର୍ଣ୍ଣପାତ କରିନଥିଲି । ଏ ପ୍ରସଙ୍ଗରେ ଆଉ ଏକ ମଜାର ଘଟଣା ଉଲ୍ଲେଖକରି ମାଳବ୍ୟ କାହାଣୀ ଶେଷକରିବି ।

ସି. ବି. ଆଇ.ର ଗୁପ୍ତ ବିବରଣୀକୁ ସରକାର ସ୍ୱୀକାର ନକରିବାରୁ ତାକୁ ଓଡ଼ିଶାରେ ଛପାଇ ଆମେ ଭୁବନେଶ୍ୱରରେ ବାଣ୍ଟି କଲୁ ଏବଂ ଏ ସମ୍ପର୍କରେ ଏକ ବିରାଟ ଜନସଭା ଭୁବନେଶ୍ୱରରେ ହୋଇଥିଲା । ମୁଁ ସେଥିରେ ଭାଷଣ ଦେଇ ପରିହାସରେ କହିଲି ଯେ, ଭାରତ ସରକାର ସିରାଜୁଦ୍ଦିନଙ୍କୁ 'ଭାରତ ରତ୍ନ' ଉପାଧି ଦେବା ଉଚିତ । ସେ ଯଦି ଦୁଇଟି ଭିନ୍ନ ଖାତାରେ ଏତେ ଟିକିନିଖି ବିବରଣୀ ଲେଖିରଖିନଥାଆନ୍ତେ, ତେବେ ଭାରତର ରାଜନୀତି କ୍ଷେତ୍ରର ଏଡ଼େବଡ଼ ଦୁର୍ନୀତି କାହାଣୀ କିଭଳି ପଦାକୁ ଜଣାପଡ଼ିଥାଆନ୍ତା ? ଏ ସମ୍ବାଦ ପଢି ଦିନେ ହଠାତ୍ ସିରାଜୁଦ୍ଦିନ ଯାଇ ଦିଲ୍ଲୀରେ ମୋ ଘରେ ପହଞ୍ଚି ମୋ ଗୋଡ଼ତଳେ ସାଷ୍ଟାଙ୍ଗ ପଡିଯାଇ କହିଲେ—ଆପଣ ଏଡ଼େବଡ଼ ଦୟାବାନ୍ ବ୍ୟକ୍ତି ବୋଲି ମତେ ଜଣାନଥିଲା । ମୁଁ ଭୟରେ ଆପଣଙ୍କ ପାଖକୁ ଆସୁନଥିଲି; କିନ୍ତୁ ଏତେ ଟଙ୍କା ନେଇ ଏମାନେ ମତେ ବୁଡ଼ାଇଦେଲେ । ଆପଣ କିଛି ନ ନେଇ ମତେ 'ଭାରତରତ୍ନ' ସୁପାରିଶ କରିଛନ୍ତି । ସିରାଜୁଦ୍ଦିନ ବିଚରା ବି ମରିଗଲେଣି !

## ସିରାଜୁଦ୍ଦିନ ଓ ବୀରେନ ମିତ୍ର

ସିରାଜୁଦ୍ଦିନ କମ୍ପାନୀ ୧୯୫୬ ମସିହାରୁ ବହୁଲକ୍ଷ ଟଙ୍କା ଓଡ଼ିଶାର କଂଗ୍ରେସ ନେତା ଓ ମନ୍ତ୍ରୀମାନଙ୍କୁ ଦେଇଥିଲା । ସେସବୁ କଥା ଏକପ୍ରକାର ସାଧାରଣଙ୍କ ଗୋଚରକୁ ଆସିଯାଇଥିଲା ।

ଯାହା ବା ଅଜଣା ଥିଲା, ମାଲବ୍ୟ ଘଟଣାରେ ସିରାଜୁଦ୍ଦିନ ଧରାପଡ଼ିଯିବାରୁ ସେ ବଡ଼ ବିପଦର ସମ୍ମୁଖୀନ ହେଲେ । ମନ୍ତ୍ରୀମାନେ ହରଡ଼ଘଣାରେ ପଡ଼ିବାରୁ ତାଙ୍କୁ କିଛି ସାହାଯ୍ୟ କରିପାରିଲେ ନାହିଁ ଏବଂ ପାର୍ଲିମେଣ୍ଟରେ ଏହି ବିଷୟ ବାରମ୍ବାର ଉଠିବାରୁ ସରକାରି ଦପ୍ତର ସବୁ ସିରାଜୁଦ୍ଦିନ କମ୍ପାନୀ ବିରୁଦ୍ଧରେ ନାନା କାର୍ଯ୍ୟାନୁଷ୍ଠାନ ଆରମ୍ଭ କରିଦେଲେ । ସେ ବିଚରା ହାଇରାଣ ହୋଇ କହୁଥିଲେ— ଏମାନଙ୍କୁ ଏତେ ବର୍ଷ ପୋଷିଲି; ଏବେ ମୋ ପିଠିରେ ପଡ଼ିବାକୁ କେହି ନାହିଁ । ଇନକମ୍‌ଟିକସ୍ ଓ ଅନ୍ୟାନ୍ୟ ପାଉଣା ଦେବା ମୁସ୍କିଲ ହେଲା ଏବଂ ମହଲତ୍ତ ବି ମିଳୁନଥିଲା । ଆଉ କିଛି ଉପାୟ ନ ପାଇ ସିରାଜୁଦ୍ଦିନଙ୍କର ଜଣେ ଭଣଜା ଯେ ପାର୍ଲିମେଣ୍ଟର ମେମ୍ବର ଥିଲେ—ସେ ମତେ ଅନୁରୋଧ କଲେ ଏକ ବ୍ୟକ୍ତିଗତ ଚିଠିରେ, ସିରାଜୁଦ୍ଦିନ ଖରାପ ଲୋକ ନୁହନ୍ତି ଏବଂ ତାଙ୍କ ବିରୁଦ୍ଧରେ ବ୍ୟକ୍ତିଗତ ଭାବରେ ମୋର କିଛି ନାହିଁ ବୋଲି ଲେଖିଦେବାକୁ । ଏପରି ଚିଠି ଦେଖାଇଲେ ଇନକମ୍‌ଟିକସବାଲାଙ୍କ ପାଖରୁ କିଛି ରିହାତି ମିଳିବ ବୋଲି ସେ ଆଶା କରୁଥିଲେ । ମୁଁ ସେଥିରେ ସମ୍ମତ ହେଲିନାହିଁ । ବୀରେନ୍ ମିତ୍ର ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ ଏବଂ ତାଙ୍କ ନାମ ନିର୍ଦ୍ଦିଷ୍ଟ ଭାବରେ ସେଥିରେ ଥିଲା । ମାଲବ୍ୟଙ୍କ ବିଷୟ ଯେତେବେଳେ ତଦନ୍ତଲାଗି ପଠାଗଲା, ସେତେବେଳେ ଓଡ଼ିଶାର ମନ୍ତ୍ରୀମାନଙ୍କ ସମ୍ବନ୍ଧରେ ରହିଥିବା ବିଷୟଗୁଡ଼ିକ ବିଚାରପତିଙ୍କ ତଦନ୍ତକୁ ପଠାଇବା ନିମନ୍ତେ ଆମେ ଦାବୀ ଉଠାଇଥିଲୁ । ମାତ୍ର ପଣ୍ଡିତ ନେହରୁ ସ୍ପଷ୍ଟ ମନାକରିଦେଲେ ଏବଂ ସୂଚନା ଦେଲେ ଯେ ପ୍ରଦେଶ ବ୍ୟାପାର ପ୍ରାଦେଶିକ ସରକାର ଦେଖିବାର କଥା । ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ଏବଂ ଏବର ଉପମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ରଙ୍କ ବିରୁଦ୍ଧରେ ଓଡ଼ିଶା କଂଗ୍ରେସ ମନ୍ତ୍ରିମଣ୍ଡଳ କୌଣସି ପଦକ୍ଷେପ ନେବ—ଏ ଆଶା କେମିତି କରାଯାଆନ୍ତା ? ସିରାଜୁଦ୍ଦିନ ସିନା ଭାରତ ସରକାରଙ୍କ ଦପ୍ତରରେ ଅସୁବିଧା ଭୋଗିଲେ; କିନ୍ତୁ ଓଡ଼ିଶା ସରକାର ତାଙ୍କ କମ୍ପାନୀ ଉପରେ ବାକିଥିବା ୨୭ ଲକ୍ଷ ଟଙ୍କା ଆଦାୟ କରିନଥିଲେ । ବ୍ୟବସାୟୀଙ୍କୁ ସୁବିଧା ଦେବାର ଏହା ଏକ ପନ୍ଥା । ଲକ୍ଷ ଲକ୍ଷ ଟଙ୍କା ବାକୀ ରହେ, ଆଦାୟଲାଗି ସରକାରୀ ଦପ୍ତର ଉଦାସୀନ ରହେ ଏବଂ ସେହି ଟଙ୍କାରେ ସେମାନେ ଅଧିକ ବ୍ୟବସାୟ କରି ଲାଭବାନ୍ ହୁଅନ୍ତି । ଏହିପରି ଭାବରେ ବିଜୁ ପଟ୍ଟନାୟକ ବ୍ୟବସାୟ କରୁଥିବାବେଳେ ବହୁ ପରିମାଣ ଟିକସ ବାକୀରଖିଥିଲେ ଏବଂ ଏହାକୁ ଆମେ ଉଚ୍ଚ କର୍ତ୍ତୃପକ୍ଷଙ୍କ ଦୃଷ୍ଟିକୁ ଆଣିଥିଲୁ । ସରକାରୀ କଳର ଅପର୍ଯ୍ୟାପ୍ତ କ୍ଷମତା ଓ କୌଶଳ ରହିଛି ବ୍ୟବସାୟୀ ଗୋଷ୍ଠୀଙ୍କୁ ଲାଭ ଦେବା ନିମନ୍ତେ । ଏହି ଉପାୟକୁ ପୂର୍ଣ୍ଣଭାବରେ ହରେକୃଷ୍ଣ ମହତାବ ଓ ବିଜୁପଟ୍ଟନାୟକଙ୍କ ଅମଳରେ ଉପଯୋଗ କରାଗଲା । ଦୁର୍ନୀତି, ଲାଞ୍ଚମିଛ ଓ ବ୍ୟଭିଚାରର ନୂତନ ଭଦ୍ର କୌଶଳମାନ ଉଦ୍ଭାବନ କରାଗଲା । ଖାଲି କାହାକୁ ଗୋଟାଏ ଲାଇସେନ୍‌ସ ବା ଜମି ଦେଇଦେଲେ ଯେ ଦୁର୍ନୀତି ହୋଇଗଲା ତାହା ନୁହେଁ—ଦୁର୍ନୀତିର ବାହୁ ପ୍ରସାରିତ ଏବଂ ବହୁଦୂରକୁ ଗଲାଣି । ଏଥିରେ ଉତ୍ତମ ଶାସନ ବା ଶାସକ ହେବା ସହ କିଛି ସମ୍ପର୍କ ନାହିଁ—ମେ ଦେଖା[illegible]ଓଡ଼ିଶାର କେହି କେହି ନେତା ଖୁବ ପାରଙ୍ଗମ ବୋଲି

ସ୍ୱୀକାର କରିବାରେ କିଛି ଆପତ୍ତି ରହିବ ନାହିଁ । ମାତ୍ର ମୋର ବ୍ୟକ୍ତିଗତ ଅନୁଭୂତ ଏବଂ ଯାହା ସବୁ ମୁଁ ଆଖି ଆଗରେ ଦେଖିଛି, ସେଥିରେ ନିଃସନ୍ଦେହରେ କୁହାଯାଇପାରେ ଯେ, ସରକାରୀ କଳର ଦୁରୁପଯୋଗ ଏବଂ ବ୍ୟବସାୟ ସହ ସରକାରୀ କଳର ଯୋଗାଯୋଗ ଏବଂ ବ୍ୟକ୍ତିଗତ ଲାଭ, ଧନସଂଗ୍ରହ ଏବଂ ପାର୍ଟି ସ୍ୱାର୍ଥରକ୍ଷା ନିମନ୍ତେ ଓଡ଼ିଶାରେ ଯେମିତି ଶାସନକଳକୁ ବ୍ୟବହାର କରାଯାଇଥିଲା, ତାହା ପୂର୍ବରୁ ଭାରତବର୍ଷରେ ସ୍ୱାଧୀନତା ପରେ କେଉଁଠି ହୋଇନଥିଲା । ଏହାପରେ ସମାଜବାଦୀ ଢାଞ୍ଚା ଅପେକ୍ଷା ଏ ଯେଉଁ ନୂତନ ଆଧୁନିକ ଦୁର୍ନୀତି କୌଶଳ ଢାଞ୍ଚା ଏଠାରେ ସଫଳତା ସହ ପରୀକ୍ଷିତହେଲା, ତାହା କ୍ରମେ ଭାରତର ସବୁ କଂଗ୍ରେସଶାସିତ ରାଜ୍ୟରେ ଦେଖିବାକୁ ମିଳିଲା । ଯାହାହେଉ, ସିରାଜୁଦ୍ଦିନଙ୍କଠାରୁ ଓଡ଼ିଶା ସରକାର ପ୍ରାୟ ୨୭ ଲକ୍ଷ ଟଙ୍କା ଆଦାୟ ନ କରୁଥିବା ଏବଂ ବୀରେନ୍ ମିତ୍ର ତାଙ୍କଠାରୁ ପାଞ୍ଚଲକ୍ଷଟଙ୍କା ଉତ୍କୋଚ ଗ୍ରହଣ କରିଥିବା ବିଷୟ ମୁଁ ଭାରତ ସରକାରଙ୍କୁ ଜଣାଇଲି । ଲାଲବାହାଦୂର ଶାସ୍ତ୍ରୀ କାମରାଜ ଯୋଜନାରେ କ୍ଷମତାରୁ ବାହାରିଗଲା ପରେ ଗୁଲ୍‌ଜାରୀଲାଲ ନନ୍ଦା ସ୍ୱରାଷ୍ଟ୍ରମନ୍ତ୍ରୀ ହେଲେ । ସେ ଏ ବିଷୟରେ ହସ୍ତକ୍ଷେପ କରିବାକୁ ମନାକରିଦେଲେ । ବୀରେନ୍ ମିତ୍ର ୫ ଲକ୍ଷ ନୁହେଁ, ୨ ଲକ୍ଷ ନେଇଥିଲେ ବୋଲି ସ୍ୱୀକାର କଲେ । ମୁଁ ତା'ପରେ ପଣ୍ଡିତ ନେହରୁଙ୍କୁ ଲେଖିଲି । ମନେହେଉଛି ସେ ସିରାଜୁଦ୍ଦିନଙ୍କ ବକେୟା ବିଷୟରେ ଓଡ଼ିଶା ସରକାରକୁ ଲେଖିଥିଲେ ଏବଂ ତା'ପରେ ତାଙ୍କଠାରୁ କିସ୍ତିଓ୍ୱାରି କିଛି ଆଦାୟ କରିବାର ବ୍ୟବସ୍ଥା କରାଗଲା । ପଣ୍ଡିତ ନେହରୁ ୧୯୬୩ ମସିହା ଡିସେମ୍ବର ୧୩ ତାରିଖରେ ମତେ ଲେଖିଲେ—"ସିରାଜୁଦ୍ଦିନ ଖାତା ଅନୁସାରେ ବୀରେନ୍ ମିତ୍ର ନଗଦ ଏବଂ ଉପଢୌକନ ଆକାରରେ ପ୍ରାୟ ୨ ଲକ୍ଷ ଟଙ୍କା ନେଇଥିବାର ଉଲ୍ଲେଖ ଅଛି । ସିରାଜୁଦ୍ଦିନଙ୍କଠାରୁ ଏସବୁ ପାଇଥିବା କଥା ବୀରେନ୍ ମିତ୍ର ସ୍ୱୀକାର କରିଛନ୍ତି । କିନ୍ତୁ ବୀରେନ୍ ମିତ୍ର ଓଡ଼ିଶା ସରକାରର ମନ୍ତ୍ରୀପଦରେ କିମ୍ବା ଅନ୍ୟ କୌଣସି ସାଧାରଣ ପଦବୀରେ ଅଧିଷ୍ଠିତ ନଥିବାବେଳେ ଏସବୁ କାରବାର ହୋଇଥିଲା । ଆମେ ତେଣୁ ଏ ବିଷୟଗୁଡ଼ିକର ତଦନ୍ତ କରିବୁ ନାହିଁ ଏବଂ ଆମେ ଏ ବିଷୟଟିକୁ ଏଠିକରେ ବନ୍ଦକରିଦେଉଛୁ ।"

ଟଙ୍କା ନେଇଥିବା ସ୍ୱୀକୃତହେଲା । ବୀରେନ୍ ମିତ୍ରଙ୍କୁ କ'ଣ ଏ ଟଙ୍କା ବୃଥାରେ ଦିଆଯାଇଥିଲା ? ସେ ମୁଖ୍ୟମନ୍ତ୍ରୀ ମହତାବଙ୍କର ଦକ୍ଷିଣ ହସ୍ତ ନଥିଲେ କି ? ଏହା ଜାଣି ସୁଦ୍ଧା ପଣ୍ଡିତ ନେହରୁ କିପରି ନିଜ ପାର୍ଟିଲୋକଙ୍କୁ ଘୋଡ଼ାଇଥିଲେ, ଏହା ତାହାର ଏକ ନଗ୍ନ ଦୃଷ୍ଟାନ୍ତ । ମାଲବ୍ୟଙ୍କ ବିରୁଦ୍ଧରେ ଆଣିଥିବା ଅଭିଯୋଗକୁ ପ୍ରାଥମିକ ଅବସ୍ଥାରେ ତଦନ୍ତକୁ ଦେବାରେ ପଣ୍ଡିତ ନେହରୁ ଓ କଂଗ୍ରେସ ଦଳ ଯେ ଅସୁବିଧାରେ ପଡ଼ିଥିଲେ, ଆଉ ସେମିତି ପଦକ୍ଷେପ ନେବାକୁ ପଶ୍ଚାତ୍‌ପଦ ହେଲେ । ଏଣିକି ଯାହା ସବୁ ଘଟିଗଲା, ସେଗୁଡ଼ିକ ଲାଗି ମାଲବ୍ୟ-ସିରାଜୁଦ୍ଦିନ ଘଟଣା ପରି ତଥ୍ୟ ସଂଗ୍ରହର ଆବଶ୍ୟକତା ନଥିଲା ।

## ଓଡ଼ିଶା ଶାସନର ଦୁର୍ନୀତି

ବାହାରକୁ ବିଜୁପଟ୍ଟନାୟକଙ୍କ ବିରୁଦ୍ଧରେ ଆନ୍ଦୋଳନ ହେଉଥିଲା ବୋଲି ମନେ ହେଉଥିଲେ ସୁଦ୍ଧା, ଏହା ବାସ୍ତବିକ ଓଡ଼ିଶା ସରକାରକୁ ଯେଉଁ ଦୁର୍ନୀତି ଗ୍ରାସ କରିଥିଲା,

ତାହାର ବିରୁଦ୍ଧରେ ସଂଗ୍ରାମ ଚାଲିଥିଲା । ବ୍ୟକ୍ତିଗତଭାବରେ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ଆନ୍ଦୋଳନ କରାଯାଇଥିଲେ ଏଥିରେ ସଫଳତା ମିଳିନଥାନ୍ତା, କାରଣ ସେ ଖୁବ୍ ପ୍ରଭାବଶାଳୀ ଥିଲେ ଏବଂ ପଣ୍ଡିତ ନେହରୁଙ୍କର ତାଙ୍କ ଉପରେ ଖୁବ୍ ବିଶ୍ୱାସ ଜନ୍ମି ଆସିଥିଲା । ଆଗରୁ ଦର୍ଶାଇଛି, କିଭଳି ବିଦେଶୀ ମୁଦ୍ରା ନିୟନ୍ତ୍ରଣ ଆଇନର ଲଙ୍ଘନ କଥା ସ୍ୱୀକାର କଲେ ସୁଦ୍ଧା ଏହା ଏକ ସାମାନ୍ୟ କଥା ବୋଲି ଫଇସଲା କରିଦିଆଗଲା । ଅଥଚ ସେହିପରି ଲଙ୍ଘନ ଅପରାଧରେ ଶାନ୍ତି ପ୍ରସାଦ ଜୈନଙ୍କୁ କଠିନ ଶାସ୍ତି ଭୋଗ କରିବାକୁ ପଡିଥିଲା । ସେମିତି କଳିଙ୍ଗ ଏୟାର୍ ଲାଇନ୍‌ସ ଜରିଆରେ ନେଫା ଅଞ୍ଚଳରେ ସୈନ୍ୟମାନଙ୍କୁ ଯୋଗାଇବା ନିମନ୍ତେ ପଠାଯାଉଥିବା କମ୍ବଳ କିଭଳି ବଜାରରେ ବିକ୍ରୀ କରାଯାଉଥିଲା ଏବଂ ଆନ୍ତର୍ଜାତିକ ଗୁପ୍ତଚରବେପାରୀ ଏପ୍ଲାଲିକନଙ୍କ୍ ସହ ସମ୍ପର୍କ ଆଦି ବିଷୟରେ ନାନା କଥା ପାର୍ଲିମେଣ୍ଟ ଓ ବାହାରେ ପ୍ରକାଶିତ ହେଲେ ସୁଦ୍ଧା ପଣ୍ଡିତ ନେହରୁ କୌଣସି କଥାକୁ ଗ୍ରାହ୍ୟ କରିନଥିଲେ । ପଣ୍ଡିତ ନେହରୁଙ୍କର ଏହା ଥିଲା ଏକ ବଡ଼ ଦୁର୍ବଳତା । ଥରେ ଯେଉଁମାନଙ୍କଠାରେ ସେ ମୁଗ୍ଧ ହେଉଥିଲେ, ତାଙ୍କୁ ରକ୍ଷା କରିବା ନିମନ୍ତେ ବହୁବିଧ ଉଦ୍ୟମ କରୁଥିଲେ । ପଞ୍ଜାବର ପ୍ରତାପ ସିଂ କାଇରେଁଙ୍କ ବିରୁଦ୍ଧରେ ବହୁ ଅପକର୍ମ ପ୍ରକାଶ ପାଇବା ସତ୍ତ୍ୱେ ବି କୌଣସି କାର୍ଯ୍ୟବିଧାନ କରାଯାଉନଥିଲା । ନେହରୁ ବରଂ ପ୍ରତାପସିଂ ଓ ବିଜୁ ପଟ୍ଟନାୟକଙ୍କୁ ପ୍ରଶଂସା କରୁଥିଲେ ଏବଂ ସେଥିରେ ବିଜୁ ପଟ୍ଟନାୟକଙ୍କର ଔଦ୍ଧତ୍ୟ ବଢିବାକୁ ଲାଗିଲା ।

## ବିଜୁଙ୍କ ବିଷୟ କେମିତି ଗୁରୁତର ହେଲା

ଏହି ଔଦ୍ଧତ୍ୟ ଯୋଗୁଁ ସେ ଧରାକୁ ସରା ଜ୍ଞାନ କଲେ ଏବଂ 'ଷ୍ଟେଟସ୍‌ମ୍ୟାନ୍' ପତ୍ରିକାର ଭାଷାରେ "ଶ୍ରୀ ପଟ୍ଟନାୟକ ଓ ତାଙ୍କ ସାଥିମାନେ କ୍ଷମତାରେ ଥିବାବେଳେ ଓଡ଼ିଶା ସରକାରକୁ ଏକ ପ୍ରାଇଭେଟ୍ ଲିମିଟେଡ଼ କମ୍ପାନୀଭଳି ବ୍ୟବହାର କରୁଥିଲେ ।"

ଏପରି ଔଦ୍ଧତ୍ୟର ପରିଣତି ହେଲା ମୁଖ୍ୟମନ୍ତ୍ରୀଭାବରେ ଭୁବନେଶ୍ୱରରେ ତାଙ୍କର ୧୯୬୩ ଜୁନ୍ ୨୮ ତାରିଖରେ ପ୍ରଥମ ସାମ୍ବାଦିକ ସମ୍ମିଳନୀ । ସେଇଥିରେ ସେ କହିଲେ—"ମୁଁ ୧୯୫୯ରେ ବୀରେନ୍ ମିତ୍ରଙ୍କୁ ବ୍ୟବସାୟରେ ଭର୍ତ୍ତି କରିଥିଲି । ୪ ବର୍ଷ ଭିତରେ ୧୯୬୩ ମାର୍ଚ୍ଚ ୩୧ ତାରିଖ ସୁଦ୍ଧା ଏହି ବ୍ୟବସାୟ ଫଳରେ ଲାଭ ହୋଇଥିଲା ମୋଟ ୧୬ ଲକ୍ଷରୁ ଉପରେ ।"

ଏହି ସାମ୍ବାଦିକ ସମ୍ମିଳନୀରେ ଆପଣାର ଅନେକ ବାହାଦୁରି କଥା ସେ କହିଥିଲେ ଏବଂ ତାହା ସବୁ ଓଡ଼ିଶା ସରକାର ତରଫରୁ ଟେପ୍‌ରେକର୍ଡ଼ କରାଯାଇ ପୁସ୍ତିକା ଆକାରରେ ଛପାହୋଇଥିଲା ।

## ଏଇଥିରୁ ଜିଅ ବାହାରିଲା

ବୀରେନ ମିତ୍ରଙ୍କ ସ୍ତ୍ରୀ ଇଶ୍ୱରମା ମିତ୍ରଙ୍କ ନାମରେ ଗଠିତ ଓଡ଼ିଶା ଏଜେଣ୍ଟସ୍‌ର ଆରମ୍ଭ ବେଳେ ମୂଳଧନ ଥିଲା ମୋଟେ ୨୨୦୨ ଟଙ୍କା । ୪ ବର୍ଷ ଭିତରେ ଏତିକି ମୂଳଧନ ଖଟାଇ

ଥିବା କମ୍ପାନୀ ୧୬ ଲକ୍ଷ ଲାଭ ପାଇଥିବା ବ୍ୟବସାୟ ଇତିହାସରେ ଏକ ଅଲୌକିକ ଘଟଣା ନୁହେଁ କି ? ଏହା କେମିତି ହେଲା ଜାଣିବାଲାଗି ଦେଶସାରା ଆଗ୍ରହ ଦେଖାଗଲା । ଖୋଳ-ତାଡ଼ ପରେ ଜଣାପଡ଼ିଲା ଓ ପରେ ପ୍ରମାଣିତ ହେଲା, ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଓ ଉପ-ମୁଖ୍ୟମନ୍ତ୍ରୀ ବୀରେନ ମିତ୍ର ଏହି ପଦବୀରେ ଥିବାବେଳେ ( ୧୯୬୧ ରୁ ୧୯୬୩ ) ସ୍ତ୍ରୀମାନଙ୍କ ନାମରେ ବ୍ୟବସାୟ ଆରମ୍ଭକଲେ । କଳିଙ୍ଗ ଟିଉବ୍‌ସର ଡିରେକ୍ଟର ଥିଲେ ଶ୍ରୀମତୀ ଜ୍ଞାନ ପଟ୍ଟନାୟକ । କଳିଙ୍ଗ ଟିଉବ୍‌ସରୁ ଲକ୍ଷ ଲକ୍ଷ ଟଙ୍କାର ଜିନିଷ ଖରିଦ କରିବାର ଅର୍ଡ଼ର ପାସ୍ କଲେ ବିଜୁ ପଟ୍ଟନାୟକ । କଳିଙ୍ଗ ଟିଉବ୍‌ସ ସିଧାସଳଖ ସରକାରକୁ ଜିନିଷ ନଦେଇ ବୀରେନ ମିତ୍ରଙ୍କ ସ୍ତ୍ରୀଙ୍କର 'ଓଡ଼ିଶା ଏଜେନ୍ସିସ୍' ଜରିଆରେ ବିକ୍ରି କରାଗଲା ଏବଂ ଓଡ଼ିଶା ସରକାର ଏହା ବି ଗ୍ରହଣ କଲେ । ଫଳରେ କାଗଜ କଲମ ହେରଫେର୍‌ରେ ସ୍ୱାମୀମାନେ ସରକାରରେ ରହି ସ୍ତ୍ରୀଙ୍କ ନାମରେ କମ୍ପାନୀ ଖୋଲି ଉପକୃତ ହେଲେ । ଏ ସମ୍ବନ୍ଧରେ ଏଠାରେ ବିଶେଷ ଆଲୋଚନା ନ କରି ୧୯୬୭ରେ ଯେଉଁ ଖାନ୍ନା କମିସନ ସ୍ଥାପିତ ହୋଇଥିଲେ, ସେ ବୀରେନ ମିତ୍ର ଓ ବିଜୁ ପଟ୍ଟନାୟକଙ୍କ ବିଷୟରେ ଯାହା ଲେଖିଯାଇଥିଲେ, ତାହା ଉଲ୍ଲେଖ କରିବା ଠିକ୍ ହେବ । ଖାନ୍ନା କମିସନ କହିଥିଲେ—"ଶ୍ରୀ ପଟ୍ଟନାୟକ ନିଜେ ଯେଉଁ ଶିଳ୍ପାନୁଷ୍ଠାନଗୁଡ଼ିକ ପ୍ରତିଷ୍ଠା କରିଥିଲେ ଏବଂ ଯେଉଁଥିରେ ତାଙ୍କ ନିଜ ପରିବାର-ବର୍ଗଙ୍କର ଆର୍ଥିକ ଓ ବ୍ୟବସାୟଗତ ଲାଭପାଇଁ ରାଜ୍ୟସରକାର ସହିତ ବ୍ୟବସାୟ କରିବାର ସୁଯୋଗଦେଲେ, ତାହା ଫଳରେ ତାଙ୍କର ଅଖଣ୍ଡ ନେତୃତ୍ୱ ମାତ୍ର ୨ । ୩ ବର୍ଷ ଭିତରେ ନଷ୍ଟହୋଇଗଲା ଏବଂ ତାଙ୍କ ଉପରେ ଯେଉଁ ଉଚ୍ଚ ଆଶା ପୋଷଣ କରାଯାଇଥିଲା ତାହା ଧୂଳିସାତ୍ ହୋଇଗଲା ।" ବୀରେନ ମିତ୍ରଙ୍କ ସମ୍ବନ୍ଧରେ ଖାନ୍ନା ଲେଖିଲେ—"ଶ୍ରୀ ମିତ୍ର ମଧ୍ୟ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ତାଙ୍କର ପଥପ୍ରଦର୍ଶକ ନେତାରୂପେ ଗ୍ରହଣକରି ତାଙ୍କୁ ରାମ ଓ ନିଜକୁ ଭରତ ବୋଲି ଅଭିହିତ କଲେ ଏବଂ ତାଙ୍କର ପଦାଙ୍କ ଅନୁସରଣ କଲେ । ଶ୍ରୀ ପଟ୍ଟନାୟକ କ୍ଷମତାରେ ଥାଇ ଯେପରି ବିନା ସଙ୍କୋଚରେ ତାଙ୍କ ପରିବାର ବର୍ଗ ସଂପୃକ୍ତ ଥିବା ବ୍ୟବସାୟ ପ୍ରତିଷ୍ଠାନମାନଙ୍କଦ୍ୱାରା ରାଜ୍ୟ ସରକାରଙ୍କ ସହିତ ବଡ଼ ବଡ଼ ବ୍ୟବସାୟରେ ଲିପ୍ତ ରହିପାରିଲେ, ସେହିପରି ଶ୍ରୀ ମିତ୍ରଙ୍କର ମଧ୍ୟ ଏହିପରି ବ୍ୟବସାୟ କରିବାରେ କୌଣସି ଦ୍ୱିଧା ରହିଲା ନାହିଁ ।"

## ପର୍ଯ୍ୟାୟକ୍ରମେ ଘଟଣାଗୁଡ଼ିକ

ତେଣିକି ଯାହା ସବୁ ଘଟିଗଲା, ସେଥିରେ ଆପଣା ହସ୍ତେ ଜିହ୍ୱା ଛେଦିଲା ପରି ହେଲା ।

୧୯୬୩ ଜୁଲାଇ ୨୯ରେ ଦୁଇଜଣ କଂଗ୍ରେସ ସଭ୍ୟ ବନମାଳୀ ପଟ୍ଟନାୟକ ଓ ସୁରେନ୍ଦ୍ରନାଥ ପଟ୍ଟନାୟକ କଂଗ୍ରେସ ସଭାପତି ସଞ୍ଜିବାୟ୍ୟାଙ୍କ ନିକଟକୁ ଏକ ପତ୍ର ଲେଖି ଏହି କାରବାର ସମ୍ବନ୍ଧରେ ଆପତ୍ତି ଉଠାଇଲେ । ୩୦-୭-୬୩ରେ ପ୍ରଜା ସୋସାଲିଷ୍ଟ ପାର୍ଟିର ସମ୍ପାଦକ ଚିନ୍ତାମଣି ଖୁଣ୍ଟିଆ ପ୍ରଧାନମନ୍ତ୍ରୀଙ୍କୁ ବହୁ ଅଭିଯୋଗ ସମ୍ବଳିତ ଏକ ପତ୍ର ଦେଲେ ।

ପାର୍ଲିମେଣ୍ଟରେ ନାନାଭାବରେ ଏହିସବୁ ପ୍ରଶ୍ନ ଉତ୍‌ଥାପିତ ହେଲା । ହରେକୃଷ୍ଣ ମହତାବ ସେତେବେଳେ ଲୋକସଭାରେ ଥିଲେ ଏବଂ କଂଗ୍ରେସ ନେତୃତ୍ୱଙ୍କୁ ପ୍ରଭାବିତ କରିବା ନିମନ୍ତେ ଓ ତାଙ୍କର ଦୁଇଜଣ ବିଶ୍ୱସ୍ତ ସହକର୍ମୀ ଯେ ପତ୍ର ପଠାଇଥିଲେ, ସେଥିରେ କାର୍ଯ୍ୟାନୁଷ୍ଠାନ କରାଇବା ନିମନ୍ତେ ଲାଗିପଡ଼ିଥିଲେ । ଏଡିକବେଳେ ସେ ଏକ ପ୍ରେସ୍ ବିବୃତି ଦେଲେ । କଂଗ୍ରେସ ଦଳର ଲୋକ ହୋଇଥିବାରୁ ସେମାନଙ୍କ ପକ୍ଷରେ ଅଧିକ ଦୂର ଯିବା ସମ୍ଭବ ନ ଥିଲା । ବିଜୁ ବୀରେନଙ୍କ ଦୁର୍ନୀତିକୁ ପଦାରେ ପକାଇବାରେ 'ସମାଜ' ସମ୍ପାଦକ ରାଧାନାଥ ରଥ ମଧ୍ୟ ସମ୍ବାଦ ପ୍ରକାଶନରେ ଓ ଅନ୍ୟ କାର୍ଯ୍ୟରେ ଖୁବ ସାହାଯ୍ୟ କରିଥିଲେ । ମୋର କରିବା ଭିତରେ ମୁଁ ପାର୍ଲିମେଣ୍ଟରେ ବିଷୟଟିକୁ ସଜୀବ ରଖିଥିଲି ଏବଂ ମାଲବ୍ୟ ଘଟଣା ପରେ ମୋ କଥାର ଗୁରୁତ୍ୱ ପାର୍ଲିମେଣ୍ଟ ଓ ସରକାରରେ ବଢ଼ିଯାଇଥିଲା ।

## କଂଗ୍ରେସ ତରଫରୁ ତଦନ୍ତ

ଏହି ସବୁ ଦେଖି କଂଗ୍ରେସକୁ ବଦ୍‌ନାମରୁ ରକ୍ଷା କରିବା ନିମନ୍ତେ କଂଗ୍ରେସ ତରଫରୁ ଜଣେ ଓଡ଼ିଶା ପଠାଯାଇ ତଦନ୍ତ ଆରମ୍ଭ ହେଲା । ସେ ଜଣ ରିପୋର୍ଟ ଦେଲେ ତାହା ଗୁପ୍ତ ଦିଆଗଲା । କଂଗ୍ରେସ ତରଫରୁ ଆଉ କିଛି କାର୍ଯ୍ୟ କରିବାର ମତଲବ ଜଣାପଡ଼ିଲା ନାହିଁ । ବିଜୁ ପଟ୍ଟନାୟକ ଆଗରୁ ୧୯୬୨ ମସିହା ନିର୍ବାଚନ ବେଳେ ନିଜର ପ୍ରୌଢ଼ୀ ଦେଖାଇ ଝାରସୁଗୁଡ଼ାଠାରେ ଘୋଷଣା କରିଥିଲେ ଯେ ସେ 'କପର୍ଦ୍ଦକଶୂନ୍ୟ' ଥିଲେ; ମାତ୍ର ୧୦ ବର୍ଷ ଭିତରେ ଏକ କୋଟି ଟଙ୍କା ସମ୍ପତ୍ତିର ମାଲିକ ହୋଇପାରିଥିଲେ । ଏହି ସମୟରେ କାମରାଜ ଯୋଜନା ଅନୁସାରେ ବିଜୁ ପଟ୍ଟନାୟକଙ୍କୁ ମୁଖ୍ୟମନ୍ତ୍ରୀ ପଦ ଛାଡ଼ିବାକୁ ପଡ଼ିଲା । ବୀରେନ୍ ମିତ୍ର ହେଲେ ମୁଖ୍ୟମନ୍ତ୍ରୀ ଏବଂ ବିଜୁ ପଟ୍ଟନାୟକ ଷ୍ଟେଟ୍ ପ୍ଲାନିଙ୍ଗ୍ ବୋର୍ଡ଼ର ଚେୟାରମ୍ୟାନ୍-ରୂପେ ମୁଖ୍ୟମନ୍ତ୍ରୀ ହିସାବରେ ଯେଉଁ କୋଠରିରେ ବସୁଥିଲେ, ସେହିଠାରେ ଅଫିସ କଲେ । ସବୁ ଫାଇଲପତ୍ର ତାଙ୍କ ମନ୍ତ୍ରଣା ଲାଗି ଗଲା । ବୀରେନ୍ ମିତ୍ର ଭରତ ହୋଇ ପାଦୁକା ପୂଜା କରୁଥିଲେ ।

□□□

## ୧୫ । ୧୯୬୪ରେ ସାରା ଦେଶରେ ଦୁର୍ନୀତି ବିରୋଧରେ ଅଭିଯାନ

୧୯୬୪ରେ ପ୍ରତାପ ସିଂହ କାଇଁରୋଙ୍କ ବିରୁଦ୍ଧରେ ବସିଥିବା ଦାସ୍ କମିସନ ରିପୋର୍ଟ ପ୍ରକାଶପାଇଲା । ଏହା ଫଳରେ ଦେଶର ଘରଆଡ଼େ ଦୁର୍ନୀତି ବିଷୟ ଆଲୋଚିତ ହେଲା । ପଞ୍ଜାବ ପଛକୁ ଓଡ଼ିଶାର ପାଳି ପଡ଼ିବ ବୋଲି ସାଧାରଣରେ ଆଶା କରାଯାଉଥିଲା । ପ୍ରଜା ସୋସଲିଷ୍ଟ ପାର୍ଟି ତରଫରୁ ୩୦-୬-୬୪ରେ ଏକ ସ୍ମାରକପତ୍ର ରାଷ୍ଟ୍ରପତିଙ୍କୁ ଦିଆଗଲା । ତାହାର କିଛି ଦିନ ପରେ ଓଡ଼ିଶାର ବିଧାନସଭାର ବିରୋଧୀନେତା ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ଅନ୍ୟ ୬୨ ଜଣ ବିଧାୟକ ଓ ବିଶିଷ୍ଟ ବ୍ୟକ୍ତି ରାଷ୍ଟ୍ରପତି ଡକ୍ଟର ରାଧାକୃଷ୍ଣନଙ୍କ ପାଖରେ ୧୫ ଦଫା ସମ୍ବଳିତ ଏକ ଅଭିଯୋଗପତ୍ର ପେଶ୍ କରିଥିଲେ । ଇଣ୍ଡିଆନ୍ ଏକ୍ସପ୍ରେସ୍‌ର ବିଶେଷ ସମ୍ବାଦଦାତା ଜି. ଏସ୍. ଭାର୍ଗବ ଓଡ଼ିଶାରେ କିଛିଦିନ ରହି ତାଙ୍କ କାଗଜରେ ୪ ଗୋଟି ପ୍ରବନ୍ଧରେ ଓଡ଼ିଶା ସରକାରର ଦୁର୍ନୀତି କାରବାର ଏବଂ ବିଜୁ ବୀରେନ୍‌ଙ୍କର ତହିଁସହି ସମ୍ପର୍କ ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା କଲେ । ଏହି କାଗଜ ଭାରତର ବଡ଼ ବଡ଼ ୧୦ଟି ସହରରୁ ଏକସଙ୍ଗେ ପ୍ରକାଶିତ ହୁଏ । ଏତଦ୍ୱାରା ସାରା ଭାରତର ଲୋକଙ୍କ ସମ୍ମୁଖରେ ଏମାନଙ୍କର ଗୁଣଗାଥା ପ୍ରକାଶ ପାଇଗଲା । ଏହା ହୋଇପାରିବା ଯୋଗୁଁ ପାର୍ଲିମେଣ୍ଟରେ ଆମ କାମ ଅପେକ୍ଷାକୃତ ସହଜତର ହୋଇଗଲା । ମେମ୍ବରମାନେ ସବୁ କଥା ଜାଣିଥିବାରୁ, ମାଲବ୍ୟଙ୍କ ବେଳେ କଂଗ୍ରେସ ମେମ୍ବରମାନେ ଯେପରି ଉତ୍ତ୍ୟକ୍ତ ହୋଇ ବାଧା ଆଦି ଦେଉଥିଲେ, ଏଥର ଆମକୁ ସେପରି ଅସୁବିଧା ଭୋଗିବାକୁ ହେଲା ନାହିଁ । ବରଂ କଂଗ୍ରେସ ଲୋକେ କହିବାକୁ ଆରମ୍ଭ କଲେ ଯେ ଏମାନଙ୍କର ଏଭଳି ଅପକର୍ମ ଯୋଗୁଁ କଂଗ୍ରେସ ସାରା ଭାରତରେ ଦୁର୍ନାମ ଲଭିଲା । ଡକ୍ଟର ରାଧାକୃଷ୍ଣନ୍‌ଙ୍କ କାନରେ ଏସବୁ ପହଞ୍ଚୁଥିଲା । ତାଙ୍କ ପାଖରୁ ମୁଁ ଶୁଣିଥିଲି—ସେ ନେହରୁଙ୍କୁ ଡାକି କହିଥିବା ପ୍ରକାଶ ଯେ ବିଜୁ ପଟ୍ଟନାୟକ ହୁଏତ ବ୍ୟବସାୟ କରିବେ ନଚେତ୍ ରାଜନୀତି କରିବେ—ଦୁଇଟିଯାକ ଏକାସାଙ୍ଗରେ ହୋଇପାରିବ ନାହିଁ ଏବଂ ସରକାରୀ କଳର ଯେ ଅପପ୍ରୟୋଗ ହେଉଛି, ତାହା ସହ୍ୟ କରାଯାଇପାରିବ ନାହିଁ । ସେ ତେଣୁ ଏ ସମ୍ବନ୍ଧରେ ତଦନ୍ତ ପାଇଁ ପରାମର୍ଶ ଦେଲେ । ତେଣୁ ମାଲବ୍ୟଙ୍କ ଘଟଣା ଯେପରି ଆଟର୍ଣ୍ଣି ଜେନେରାଲଙ୍କ ହାତକୁ ପ୍ରାଥମିକ ତଦନ୍ତ ପାଇଁ ଗଲା, ତାହା ନହୋଇ ଯାହାସବୁ ଅଭିଯୋଗପତ୍ର ଆସିଥିଲା ସେ ବିଷୟରେ ତଦନ୍ତ କରିବା ନିମନ୍ତେ ସି. ବି. ଆଇ.କୁ ସମର୍ପି ଦିଆଗଲା । ଘଟଣା ଏପରି ହେଲା ଯେ ବିଜୁପଟ୍ଟନାୟକଙ୍କ ପକ୍ଷରେ ଏହା ସ୍ଥଗିତ ରଖିବାର ଚେଷ୍ଟା ବିଫଳ ହେଲା । ପାରାଦୀପ ସଂକ୍ରାନ୍ତୀୟ ସମସ୍ତ ଦୁର୍ନୀତି ମଧ୍ୟ ରାଷ୍ଟ୍ରପତିଙ୍କୁ ଦିଆଯାଇଥିଲା ।

## କଂଗ୍ରେସ ନେତାଙ୍କର ହସ୍ତକ୍ଷେପ

କାମରାଜ କଂଗ୍ରେସର ସଭାପତି ଥିଲେ । ଅତୁଲ୍ୟ ଘୋଷ, ସଞ୍ଜୀବ ରେଡ୍ଡି, ନିଜଲିଙ୍ଗାପା ଏବଂ ଅନ୍ୟମାନେ ମିଳି ଏକ ମେଣ୍ଟ ବାନ୍ଧିଥିଲେ । ଏହାକୁ ସିଣ୍ଡିକେଟ୍ ବୋଲି କୁହା-ହେଉଥିଲା । ଏହିମାନେ ରାଞ୍ଚିରେ ଏକ ବୈଠକ କରି କଂଗ୍ରେସ ମୁଖ୍ୟମନ୍ତ୍ରୀଙ୍କ ବିରୁଦ୍ଧରେ ଏପରି ସରକାରୀ ସଂସ୍ଥା ଦ୍ୱାରା ତଦନ୍ତ ଫଳରେ କଂଗ୍ରେସ ଓ ମୁଖ୍ୟମନ୍ତ୍ରୀଙ୍କର ମର୍ଯ୍ୟାଦା ହାନିକର ହେବ ବୋଲି ଘୋଷଣା କଲେ । କାରଣ ନିର୍ବାଚନ ଆଉ ୨।୩ ବର୍ଷ ଥିଲା ଏବଂ ସେମାନେ ବିଜୁ ପଟ୍ଟନାୟକଙ୍କ ଉପରେ ଟଙ୍କା ଏବଂ ଓଡ଼ିଶା ନିର୍ବାଚନର ସଫଳତା ନିମନ୍ତେ ନିର୍ଭର କରୁଥିଲେ ।

## ପ୍ରାଦେଶିକ ସ୍ୱାତନ୍ତ୍ର୍ୟ

ଏଣେ ବିଜୁ ପଟ୍ଟନାୟକ ଏକ ପ୍ରାଦେଶିକ ବ୍ୟାପାରରେ କେନ୍ଦ୍ର ସଂସ୍ଥା ହସ୍ତକ୍ଷେପ କରିପାରିବ ନାହିଁ ବୋଲି ପ୍ରଶ୍ନ ଉଠାଇଲେ । ଟାଇମସ୍ ଅଫ୍ ଇଣ୍ଡିଆର ୧୯୬୫ ଫେବୃୟାରୀ ୪ ତାରିଖ ସଂଖ୍ୟାରେ ପ୍ରକାଶିତ ହେଲା—ଇଉନିଅନ୍ ଓ ଷ୍ଟେଟ ସରକାର ଗୁଡ଼ିକର ସୀମା ଓ ଦାୟିତ୍ୱ ପ୍ରଶ୍ନ । ବିଜୁ ପଟ୍ଟନାୟକ କଂଗ୍ରେସ ସଭାପତିଙ୍କୁ ଏକ ପତ୍ର ଲେଖି ଜଣାଇଥିଲେ —"The question of limitations and responsibilities of the Union vis-a-vis State Government is believed to have been raised by Mr. Biju Patnaik in a letter to the Congress President. Mr. Patnaik has pointed out that a Central Govt. agency investigated the affairs of a State Govt. and such investigations and preliminary reports supposed to be 'top secret' had systematically found their way to the Press leading to character assassination and damage to the Party's image on an unprecedented scale should be viewed with alarm." [ Times of India, Feb. 4. 1965] କାରଣ ସେତେବେଳକୁ ଲାଲବାହାଦୁର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ହୋଇଥିଲେ ଏବଂ ବିଜୁ ପଟ୍ଟନାୟକ ମୋରାରଜୀ ଦେଶାଇଙ୍କ ସପକ୍ଷରେ କାର୍ଯ୍ୟ କରିଥିଲେ । ମୁଁ ମଧ୍ୟ ଏସବୁ ଘଟଣା ଦେଖି କାଳେ ରାଜନୀତିକ ଗ୍ରୁପ ଫଳରେ ତଦନ୍ତ ଆଦ ବନ୍ଦ ହୋଇଯିବ, ଏହି ଆଶଙ୍କାରେ ଲାଲବାହାଦୁରଙ୍କୁ ସାକ୍ଷାତ୍ କରିଥିଲି । ସେ ମତେ କହିଲେ 'Patnaik thinks evry one has a price'—ସେ କାରବାର ଏଠି କାର୍ଯ୍ୟ କରିବ ନାହିଁ । ମୁଁ ଆଶ୍ୱସ୍ତ ହେଲି ।

## ପଣ୍ଡିତଜୀଙ୍କ ମୃତ୍ୟୁ

୧୯୬୪ ମେ ମାସ ୨୭ ତାରିଖରେ ପ୍ରଧାନମନ୍ତ୍ରୀ ନେହରୁଙ୍କର ପରଲୋକ ହୋଇଗଲା । ବାସ୍ତବିକ ଚୀନ-ଭାରତ ଯୁଦ୍ଧ ତାଙ୍କ ମନରେ ଏପରି ଆଘାତ କରିଥିଲା ଯେ, ସେହି କାଳୁ ତାଙ୍କ ସ୍ୱାସ୍ଥ୍ୟ ଭଗ୍ନ ହୋଇଥିଲା । ଭୁବନେଶ୍ୱରରେ କଂଗ୍ରେସ ଅଧିବେଶନ ବେଳେ ସେ ଅଚେତ ହୋଇପଡ଼ିଥିଲେ । ମାତ୍ର ପ୍ରଧାନମନ୍ତ୍ରୀ ଦାୟିତ୍ୱରୁ କିଛି କାଳ ବିଶ୍ରାମ ନେବା ପ୍ରସ୍ତାବକୁ ସେ ଗ୍ରହଣ କଲେ ନାହିଁ । କାମରାଜ ଯୋଜନାରେ ମନ୍ତ୍ରୀପଦ ଛାଡ଼ିଥିବା ଲାଲବାହାଦୁରଙ୍କୁ ଆଣି ତାଙ୍କ କାଗଜପତ୍ର ଦେଖି ସାହାଯ୍ୟ କରିବା ନିମନ୍ତେ ନିଯୁକ୍ତ ଦେଲେ । ଡକ୍ଟର ରାଧାକୃଷ୍ଣନଙ୍କ କହିବାନୁସାରେ—କିଏ ତାଙ୍କ ପରେ ପ୍ରଧାନମନ୍ତ୍ରୀ ହେବ ଏ ବିଷୟରେ ତାଙ୍କ ସହିତ କଥାବାର୍ତ୍ତାରେ କୌଣସି ସୂଚନା ଦେଲେ ନାହିଁ । ହୁଏତ ଇନ୍ଦିରା ଗାନ୍ଧୀଙ୍କୁ ପ୍ରଧାନମନ୍ତ୍ରୀ କରିବା ତାଙ୍କର ଇଚ୍ଛା ଥିଲା; ମାତ୍ର ତାଙ୍କର ହଠାତ୍ ସ୍ୱାସ୍ଥ୍ୟଭଗ୍ନ ସେଥିରେ କିଛି ଆଗେଇବାରେ ଅନ୍ତରାୟ ହୋଇଥିଲା । ଡକ୍ଟର ରାଧାକୃଷ୍ଣନଙ୍କ କହିବାନୁସାରେ, ନେହରୁଙ୍କ ମୃତ୍ୟୁ ପରେ କ୍ଷମତା ପାଇଁ ବିବାଦ ଲାଗିବାର ଆଶଙ୍କା ଦେଖି, ମୃତ୍ୟୁର ପ୍ରାୟ ଅଳ୍ପ କେତେକ ସମୟ ପରେ ସେ ଗୁଲଜାରିଲାଲ ନନ୍ଦାଙ୍କୁ ଡକାଇ ଅସ୍ଥାୟୀ ପ୍ରଧାନମନ୍ତ୍ରୀ ଭାବରେ ଶପଥ ଦିଆଇଥିଲେ । ଲାଲବାହାଦୁରଙ୍କର ୧୯୬୬ ଜାନୁୟାରୀ ୯ ତାରିଖରେ ମୃତ୍ୟୁ ହୋଇଯିବାରୁ ମଧ୍ୟ ସେହି ପନ୍ଥା ଅବଲମ୍ବନ କରିଥିଲେ । ତେଣୁ ପ୍ରଧାନମନ୍ତ୍ରୀ ପଦ ଲାଗି ମୋରାରଜୀ ଦେଶାଇ, ଗୁଲଜାରିଲାଲ ନନ୍ଦା ଏବଂ ଲାଲବାହାଦୁର ଶାସ୍ତ୍ରୀଙ୍କ ଭିତରେ ପ୍ରତିଯୋଗିତା ଲାଗିଥିଲା । ଇନ୍ଦିରାଗାନ୍ଧୀଙ୍କ ନାମ ଉଠିଥିଲା—ମାତ୍ର କେହି ସେଥିରେ ଗୁରୁତ୍ୱ ଦେଇନଥିଲେ । ନନ୍ଦା ମଧ୍ୟ କ୍ରମେ ସମର୍ଥନ ହରାଇଲେ । ଶେଷକୁ ଲାଲବାହାଦୁର ଶାସ୍ତ୍ରୀ ଭାରତର ପ୍ରଧାନମନ୍ତ୍ରୀ ହେଲେ । ମୋରାରଜୀ ବଡ଼ ଅପମାନିତ ବୋଧକଲେ ।

## ସି. ବି. ଆଇ. ତଦନ୍ତରେ ବାଧା

ସି. ବି. ଆଇ. କିଛି କମିଶନ ନ ଥିଲା; ସରକାରୀ ଫାଇଲପତ୍ର ଦେଖି ହୋଇଥିବା ଅଭିଯୋଗଗୁଡ଼ିକ କେତେଦୂର ପ୍ରମାଣସିଦ୍ଧ ଏହା ଦେଖି ରିପୋର୍ଟ କରିବା ହେଲା ତାଙ୍କର କାମ । ଅଭିଯୁକ୍ତ ବ୍ୟକ୍ତିମାନେ ସରକାରୀ କର୍ତ୍ତୃତ୍ୱରେ ଥିଲେ । ସେମାନେ କିଛି ଫାଇଲପତ୍ର ନଷ୍ଟ କରିଦେଲେ, କିଛି ହରଣଚାଲ ହୋଇଗଲା ଏବଂ କେତେକ ଫାଇଲ ସେମାନେ ନିଜେ ଆବଶ୍ୟକ କରୁଥିଲେ ବା ପାଇପାରିନାହାନ୍ତି ବୋଲି ନାନା ଆଳ ଦେଖାଇଲେ । ଏହା ସତ୍ତ୍ୱେ ସି. ବି. ଆଇ. ବୀରେନ୍ମିତ୍ର ଓ ବିଜୁ ପଟ୍ଟନାୟକ ଦୁର୍ନୀତିରେ ଲିପ୍ତଥିବାର ବହୁ ପ୍ରମାଣ ସଂଗ୍ରହ କରିଥିଲେ । ଏହି ଗୁପ୍ତ ରିପୋର୍ଟ ସ୍ୱରାଷ୍ଟ୍ରମନ୍ତ୍ରୀ ନନ୍ଦାଙ୍କ ଅଫିସରେ ଦାଖଲହେଲା । ଗୋଟିଏ ଥିଲା ସଂକ୍ଷିପ୍ତ ରିପୋର୍ଟ, ଆଉ ଗୋଟିଏ ହେଲା ପୂର୍ଣ୍ଣ ରିପୋର୍ଟ । ସେତେବେଳକୁ ଆମ ପକ୍ଷରେ ରିପୋର୍ଟ ଦେଖିବାର କୌଣସି ବାଟ ନଥିଲା । ମାତ୍ର ସି. ବି. ଆଇ. ଓଡ଼ିଶାରେ

ତଦନ୍ତ କରୁଥିବା ବେଳେ ଯେଉଁସବୁ ଫାଇଲ ମଗାଉଥିଲେ, ତାହା ସଂପୃକ୍ତ ସେକ୍ରେଟେରିଏଟ୍ କର୍ମଚାରୀ ଜାଣିପାରୁଥିଲେ । ସେମାନେ ଏଣୁ ତେଣୁ କଥା କୁହାବୋଲା ହେଉଥିଲେ; ସେଥିରେ କିଛି କଥା ପଦାକୁ ବାହାରୁଥିଲା । ତାହାଛଡ଼ା ଆମର ଅଭିଯୋଗପତ୍ର ଗୁଡ଼ିକ ମଧ୍ୟ ବିସ୍ତୃତ ଭାବରେ ପ୍ରକାଶିତ ହୋଇଥିଲା । ଏଥିରେ 'ସମାଜ' କାଗଜ ଖୁବ୍ ଅଗ୍ରଣୀ ହୋଇ ଦୁର୍ନୀତି ପଦାରେ ପକାଇବାରେ ତତ୍ପରତା ଦେଖାଇଥିଲା । ଏହାକୁ ଲକ୍ଷ୍ୟକରି ବିଜୁ ପଟ୍ଟନାୟକ କଂଗ୍ରେସ ସଭାପତିଙ୍କୁ ଲେଖିଲେ ଯେ—କେତେକ ବିଷୟ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇ ଆମର ମର୍ଯ୍ୟାଦା ହାନି ଘଟିଲାଣି ।

## କମିଶନ ବସାଇବା ଦାବୀ

ସି ବି. ଆଇ. ରିପୋର୍ଟ ଦାଖଲ ପରେ ଆମ ତରଫରୁ ଏବଂ ପାର୍ଲିମେଣ୍ଟର ପ୍ରାୟ ସବୁ ବିରୋଧୀମାନଙ୍କ ତରଫରୁ ପ୍ରବଳ ଦାବୀ ଉଠିଲା ଯେ ପ୍ରାଥମିକ ପ୍ରମାଣ ଯେତେବେଳେ ମିଳିଲାଣି ଏହାକୁ ବିଚାରବିଭାଗୀୟ ତଦନ୍ତ ନିମନ୍ତେ ପଠାଇଦିଆଯାଉ । ପଣ୍ଡିତ ନେହରୁଙ୍କ ପରି ଲାଲବାହାଦୁର ଶାସ୍ତ୍ରୀଙ୍କର ବ୍ୟକ୍ତିଗତ ସାଧୁତା ବିଷୟରେ କାହାରି କିଛିହେଲେ ସନ୍ଦେହ ନଥିଲା । ସେ ପ୍ରଧାନମନ୍ତ୍ରୀ ହେଲା ପରେ ଏସ୍. ଆର୍. ଦାସଙ୍କ ରିପୋର୍ଟ ଉପରେ ଯାହା କାର୍ଯ୍ୟାନୁଷ୍ଠାନ କରିଥିଲେ ପଣ୍ଡିତ ନେହରୁ ତାହା କଦାପି କରିପାରିନଥାନ୍ତେ । କିନ୍ତୁ ପଞ୍ଜାବ ପରେ ଓଡ଼ିଶାର ଏକ ଉଦୀୟମାନ ଶାସକଙ୍କ ବିରୁଦ୍ଧରେ ଏପରି ଗୁରୁତର ଅଭିଯୋଗ କଂଗ୍ରେସ ମହଲରେ ଆତଙ୍କ ସୃଷ୍ଟି କରିଥିଲା । ଏହାର ପ୍ରତିକ୍ରିୟା ଆସନ୍ତା ନିର୍ବାଚନରେ କଣ ହେବ ସେଥିଲାଗି ସେମାନେ ଚିନ୍ତିତ ହୋଇପଡ଼ିଥିଲେ । ବିଜୁ ପଟ୍ଟନାୟକ ତାଙ୍କର ସମସ୍ତ ଶକ୍ତି ଲଗାଇ କଂଗ୍ରେସ ନେତାମାନଙ୍କୁ ଏକାଠି କରି ଶାସ୍ତ୍ରୀଙ୍କ ଉପରେ ଖୁବ୍ ଚାପ ପକାଇଲେ । କୌଣସି କଂଗ୍ରେସ ନେତା ଆଉ ବିବୃତି ଦେଲେନାହିଁ । ହରେକୃଷ୍ଣ ମହତାବ ମଧ୍ୟ ନୀରବ ହୋଇଗଲେ । ବିଜୁ କହିବୁଲିଲେ, ବେଶି ଖୋଲତାଡ଼ ହେଲେ ମହତାବ ବି ପଡ଼ିଯିବେ । ଏହି ଆଶଙ୍କାରେ ସେ ଚିଆଁଣିଆଁ ହୋଇଗଲେ ।

## କ୍ୟାବିନେଟ୍ ସବ୍‌କମିଟି

ଏହିସବୁ ଚାପ ଫଳରେ ଏବଂ କଂଗ୍ରେସ ଦଳର ସ୍ୱାର୍ଥରକ୍ଷା ଦୃଷ୍ଟିରୁ, ଲାଲବାହାଦୁର ଶାସ୍ତ୍ରୀ ତଦନ୍ତ କମିଶନକୁ ନ ପଠାଇ ଏହି ରିପୋର୍ଟ ବିଚାର କରିବା ନିମନ୍ତେ ଏକ କ୍ୟାବିନେଟ୍ ସବ୍‌କମିଟିର ଘୋଷଣା କଲେ । ତହିଁରେ ଟି. ଟି. କୃଷ୍ଣମାଚାରୀ, ଏମ୍. ସି. ଚଗଲା, ଅଶୋକ ସେନ୍ ଇତ୍ୟାଦି ସଭ୍ୟ ରହିଲେ । ସି.ବି.ଆଇ. ରିପୋର୍ଟ ତ ସରକାର ହାତରେ— ତାହା ବାହାର ଲୋକ ଦେଖିପାରିବେ ନାହିଁ ବୋଲି କ୍ୟାବିନେଟ୍ ମେମ୍ବରଙ୍କୁ ଯାଞ୍ଚ କରିବା ନିମନ୍ତେ ଦିଆଗଲା । ଏହା ମଧ୍ୟ କୁହାଗଲା ଯେ ସେମାନେ ତ କିଛି ସାକ୍ଷ୍ୟ ନେଇ ନ ଥିଲେ କିମ୍ବା ନେବାଲାଗି ତାଙ୍କୁ କୁହାଯାଇ ନ ଥିଲା—ଏକତରଫା ରିପୋର୍ଟ—ଏବେ



୧୯୫୨ର ରାଜ୍ୟ ସଭା—ଏଥିରେ ଅଛନ୍ତି—ଡକ୍ଟର ରାଧାକୃଷ୍ଣନ୍, ଶୈଳବାଳା ଦାସ, ଜବାହରଲାଲ, ଜଗଜ୍ଜୀବନ ରାମ, ଲାଲବାହାଦୁର ଶାସ୍ତ୍ରୀ, ଏନ୍. ଜି. ରଙ୍ଗା, ହୃଦୟନାଥ କୁଞ୍ଜରୁ, ଡକ୍ଟର ଜାକିର ହୋସେନ୍, ଭି. ଭି. ଗିରି ଇତ୍ୟାଦି । ୨ୟ ଧାଡ଼ିରେ ଦକ୍ଷିଣରୁ ୫ମରେ ଦ୍ୱିବେଦୀ ]



[ ଦ୍ୱିବେଦୀ ଅନ୍ୟ ପାର୍ଲିମେଣ୍ଟ ସଦସ୍ୟଙ୍କ ସହ ଅରୁଣାଚଳ ପ୍ରଦେଶରେ ]



[ ହରିପୁର କଂଗ୍ରେସରେ ସରୋଜିନୀ ନାଇଡୁ ଓ ନେତାଜୀଙ୍କର ଭୋଜନ ବେଳେ କଥାବାର୍ତ୍ତା ]



[ ବନ୍ଧୁ ମିଳନ— ୧୯୪୦—ମୋହିତ ମୈତ୍ରଙ୍କ ବିଦାୟ ଉପଲକ୍ଷେ ]

ବସିଛନ୍ତି—ମଧୁସୂଦନ ମହାନ୍ତି, ନିତ୍ୟାନନ୍ଦ କାନୁନ୍‌ଗୋ, ରାଧାନାଥ ରଥ, ହରେକୃଷ୍ଣ ମହତାବ, ମୋହିତ ମୈତ୍ର, କେ. ଏନ୍. ଆଗ୍ନୁସ୍ୱା, ପଣ୍ଡିତ ଆକୁଳ ମିଶ୍ର, ସତ୍ୟନାରାୟଣ ସେନଗୁପ୍ତ, ହରିହର ମହାପାତ୍ର, କାଳନ୍ଦୀଚରଣ ପାଣିଗ୍ରାହୀ,

ଠିଆହେବା ପ୍ରଥମ ଧାଡ଼ିରେ ଅଛନ୍ତି—ରାମପ୍ରସାଦ ସିଂହ, ଏନ୍. ଅର୍. ସ୍ୱାମୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ମହେଶ ଚନ୍ଦ୍ର ପ୍ରଧାନ ଆଦି

କ୍ୟାବିନେଟ୍ ସବ୍ କମିଟି ସବୁ ପକ୍ଷକୁ ଶୁଣି ଗୋଟାଏ ନିଷ୍ପତ୍ତି ନେବ ଏବଂ ତାହା ଅଧିକ ନିର୍ଭରଶୀଳ ହୋଇପାରିବ । ବିଜୁ ପଟ୍ଟନାୟକ ଓ ଓଡ଼ିଶା ସରକାର ଆପଣାର ବକ୍ତବ୍ୟ ତାଙ୍କ ଆଗରେ ରଖିଲେ । ଲୋକେ ଯେପରି ସି. ବି. ଆଇ. ରିପୋର୍ଟକୁ ଗୁରୁତ୍ୱ ନ ଦେବେ, ବିଜୁ ପଟ୍ଟନାୟକ ସେଥିଲାଗି କହିବୁଲିଲେ, "ଏହା ଏକ ଚୌକିଦାରି ରିପୋର୍ଟ ।" ଏ ପରିସ୍ଥିତିରେ ସି. ବି. ଆଇ. ରିପୋର୍ଟ ପ୍ରକାଶ ନିମନ୍ତେ ଗୃହରୁ ଦାବି ହେଲା ।

## ଓଡ଼ିଶାରେ ବିରୋଧୀ ଅଭିଯାନ

ଆମେମାନେ ସ୍ଥିରକରିନେଲୁ ଯେ ବାହାରେ ଏକ ଜବରଦସ୍ତ ଆନ୍ଦୋଳନ ଠିଆନକଲେ, ଭାରତ ସରକାର ହଲିବ ନାହିଁ । ଓଡ଼ିଶାରେ ପ୍ରଜା ସୋସଲିଷ୍ଟ ପାର୍ଟି ଏଥିରେ ଅଗ୍ରଣୀହେଲା । ଆଗରୁ କଂଗ୍ରେସ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ଏକ ବିରାଟ ଛାତ୍ର ଆନ୍ଦୋଳନ ହୋଇଥିଲା । ସାରା ପ୍ରଦେଶର ଛାତ୍ର ଓ ଯୁବକମାନେ ବିଜୁ ବୀରେନଙ୍କ ବିରୁଦ୍ଧରେ ବିଦ୍ରୋହ କରି ଉଠିଲେ । ଛାତ୍ରଙ୍କୁ ଦମନ କରିବାକୁ ଉଦ୍ୟମ କରିବାରୁ ସେମାନେ ଆହୁରି ଉତ୍ତେଜିତହେଲେ । ଦୁହିଁଙ୍କର ଔଦ୍ଧତ୍ୟ ଓ ମନୋମୁଖୀ ବ୍ୟବହାର ଯୋଗୁଁ ନାନା ଅଶୋଭନୀୟ ଓ ଗର୍ହିତ କାର୍ଯ୍ୟ କରାଯାଇଥିଲା । ଓଡ଼ିଶା ଲୋକେ ବିଚାରିଲେ ତାଙ୍କର ପୂର୍ବ ସଂସ୍କୃତି ଓ ରୁଚି ସବୁ ନଷ୍ଟ ହୋଇଗଲା । ଏଥିଲାଗି ପ୍ରତ୍ୟେକ ଶ୍ରେଣୀର ଲୋକେ ତାଙ୍କ କାର୍ଯ୍ୟରେ ଉତ୍କ୍ଷିପ୍ତ ଓ କ୍ଷୁବ୍ଧ ହୋଇଥିଲେ । ଏତିକିବେଳକୁ ଛାତ୍ରମାନଙ୍କ ଉପରେ ଦମନ ଲୋକ ମନକୁ ଆହୁରି ଉତ୍ତେଜିତ କରିଥିଲା । ଏମାନଙ୍କ ବିରୁଦ୍ଧରେ ଯେଉଁସବୁ ବ୍ୟଭିଚାରର କାହାଣୀ ପ୍ରକାଶିତ ହେଲା, ସେଥିରେ ସେମାନେ ସମସ୍ତଙ୍କର ଶ୍ରଦ୍ଧା ହରାଇବସିଥିଲେ ।

## ଭ୍ରଷ୍ଟାଚାରୀ ଗାଦୀ ଛାଡ଼

ଲୋକମତକୁ ଆହୁରି ସଚେତ ଓ ସଙ୍ଗଠିତ କରିବା ନିମନ୍ତେ ପ୍ରଜା ସୋସଲିଷ୍ଟ ପାର୍ଟି ସାରା ଓଡ଼ିଶାରେ "ଭ୍ରଷ୍ଟାଚାରୀ ଗାଦୀ ଛାଡ଼" ସପ୍ତାହ ପାଳନ କରିଥିଲା । ଏହା କରିବା ନିମନ୍ତେ ସ୍ଥିର କଲାବେଳେ ବହୁ ବନ୍ଧୁ ଆମମାନଙ୍କୁ ସତର୍କ କରିଦେଇଥିଲେ । ଲୋକେ ଏପରି ଭୟ କରିଯାଇଥିଲେ ଯେ କେହି ପ୍ରକାଶ୍ୟରେ କିଛି କହିବା ନିମନ୍ତେ ସାହସ କରୁନଥିଲେ । ଓଡ଼ିଶାରୁ ଏପରି ଭୟାକ୍ତ ବାୟୁମଣ୍ଡଳ ଭାଙ୍ଗିବା ହେଲା ମୋର ଉଦ୍ଦେଶ୍ୟ । ସେଥିଲାଗି ଯେତେ ବିପଦ ପଡ଼ୁ ପଛକେ ଓ ଆମ ଉପରେ ଯେତେ ଅତ୍ୟାଚାର ହେଉ ପଛକେ, ଲୋକଙ୍କୁ ଏଥିରେ ସମ୍ମିଳିଷ୍ଟ କରିବା ନିମନ୍ତେ ମୁଁ ବଦ୍ଧପରିକର ଥିଲି । ଦିଲ୍ଲୀରେ ଓ ଅନ୍ୟ ସ୍ଥାନମାନଙ୍କରେ ସୁବିଧା ଦେଖି ମତେ ମାରିଦେବା ନିମନ୍ତେ ବିଚାର ହୋଇଥିବା ବିଷୟ ମତେ ଜଣାଥିଲା । କଲିକତାରେ ବଙ୍ଗଳାର ସ୍ପେସାଲ ବ୍ରାଞ୍ଚ ପୁଲିସ ଆସି ମତେ ସମ୍ବାଦ ଦେବା ହେତୁ ମୁଁ ପ୍ରାୟ ୩।୪ ମାସ ହାବଡ଼ା ଷ୍ଟେସନରୁ ଫେରୁଥିଲି—କଲିକତା ଭିତରକୁ ଯାଉନଥିଲି । ହାବଡ଼ା ଷ୍ଟେସନରେ ମୁଁ ଥିବା ପର୍ଯ୍ୟନ୍ତ ଗୁଇନ୍ଦା ପୁଲିସ ବରାବର ନଜର

ରଖୁଥିଲେ । ଏତେବେଳେ ଅନେକ ରେଳ କର୍ମଚାରୀ ମଧ୍ୟ ମୋର ସାହାଯ୍ୟକୁ ଆସିଥିଲେ । ମୁଁ କିନ୍ତୁ କାହାର ଆଗରେ ଲିଖିତ ବା ମୌଖିକ ଆପତ୍ତି କରିବା ଉଚିତ ମନେକରୁନଥିଲି । ନିଜେ ସକଳ ପରିସ୍ଥିତିର ସମ୍ମୁଖୀନ ହେବି ଏପରି ଏକ ସାହସ ମନରେ ରଖିଥାଏ ।

'ଗାଦାଗ୍ରାଉଣ୍ଡ' ସଭା ସମିତି ଅଭୂତପୂର୍ବରେ ଲୋକ ସମର୍ଥନ ପାଇଲା । ହଜାର ହଜାର ସଂଖ୍ୟାରେ ଲୋକ ସମାଗମହେଲା । ଏସବୁ ରିପୋର୍ଟ ମଧ୍ୟ ଭାରତ ସରକାରଙ୍କ ପାଖକୁ ଗଲା । ଓଡ଼ିଶାର ପ୍ରାୟ ସବୁ ବଡ ସହରକୁ ଯାଇ ମୁଁ ସଭାରେ ଯୋଗଦେଇଥିଲି । ବିଜୁ, ବୀରେନ୍‌ଙ୍କ ସମ୍ମାନ ତଳେ ପଡ଼ିଲା । ପ୍ରଜା ସୋସଲିଷ୍ଟ ପାର୍ଟି ଏଥିରେ ଖୁବ୍ ଘଶଲାଭକଲା ।

## କ୍ୟାବିନେଟ୍ ସବ୍‌କମିଟିର ସୁପାରିଶ

ସବ୍‌କମିଟିର ସୁପାରିଶ ଓ ସି. ବି. ଆଇ. ରିପୋର୍ଟ ପ୍ରକାଶ କରିବା ନିମନ୍ତେ ପାର୍ଲିମେଣ୍ଟରେ ପ୍ରବଳ ଦାବୀ ହେଲା । ଆମେ ସମସ୍ତେ ଅନ୍ଧାରରେ ଥିଲୁ । ଏହି ସମୟରେ କ୍ୟାବିନେଟ୍ ସବ୍-କମିଟିର ଜଣେ ସଦସ୍ୟ ମୋର ସାହାଯ୍ୟକୁ ଆସିଲେ । ସେ ଏବେ ବି ଜୀବିତ ରହିଛନ୍ତି— ମୁଁ ତାଙ୍କ ନାମ ପ୍ରକାଶ କରିବି ନାହିଁ । ସେ ମତେ ତାଙ୍କ ଘରକୁ ଖାଇବାକୁ ଡାକି ସମସ୍ତ ବିବରଣୀ ଦେଖାଇଦେଲେ ଏବଂ କହିଲେ— କଂଗ୍ରେସର ମର୍ଯ୍ୟାଦା ରଖିବାଲାଗି ଏବଂ ମୁଖ୍ୟମନ୍ତ୍ରୀ ଯେପରି ଶାସ୍ତି ନ ପାଆନ୍ତି ତାହା ଦୃଷ୍ଟିପଥରେ ରଖି, ଏଥିରେ ବ୍ୟକ୍ତିଗତ ଫାଇଦା ଉଠାଇନଥିଲେ ବୋଲି କୁହାଯାଇଥିଲା । ମାତ୍ର ସେମାନଙ୍କ ପ୍ରରୋଚନାରେ, ସାହାଯ୍ୟ ସମର୍ଥନରେ, ସ୍ତ୍ରୀମାନେ ଯେ ବ୍ୟବସାୟ କରିଥିଲେ ତାହାର ନିନ୍ଦା କରାଯାଇଥିଲା । ପରେ ତ ଖାନ୍ନା କମିସନ ଏକଥାର ଉଲ୍ଲେଖ କରି ଲେଖିଲେ ଯେ, ବିଜୁ ପଟ୍ଟନାୟକ ଓ ବୀରେନ୍ ମିତ୍ର ତାଙ୍କ ସ୍ତ୍ରୀଙ୍କ ନାମରେ ଓଡ଼ିଶା ସରକାର ସହ କାରବାର କରି ସରକାରକୁ ପ୍ରାୟ ୨୦ କୋଟି ଟଙ୍କାର କ୍ଷତି କରାଇଥିଲେ ।

## ପାର୍ଲିମେଣ୍ଟରେ ପ୍ରଶ୍ନ

କ୍ୟାବିନେଟ୍ ସବ୍‌କମିଟିର ସୁପାରିଶଗୁଡ଼ିକ ମତେ ଜଣାପଡ଼ିସିବାରୁ ମୁଁ ସେହି ସମ୍ପର୍କରେ ପ୍ରଶ୍ନ ଉଠାଇବାକୁ ଚେଷ୍ଟା କଲି । ଖୁବ୍ ଧାଣ୍ଡଚକଟ ଲାଗିଲା । ତାଙ୍କ ସୁପାରିଶ ଦେଖିଲା ପରେ ସି. ବି. ଆଇ. ରିପୋର୍ଟ ପାଇବା ଯୋଗାଡ଼ ଲଗାଇଲି । କିନ୍ତୁ ଇତ୍ୟବସରରେ କ୍ୟାବିନେଟ୍ ସବ୍‌କମିଟିର ସୁପାରିଶ ଅନୁସାରେ ପ୍ରଧାନମନ୍ତ୍ରୀ ଶାସ୍ତ୍ରୀ କାର୍ଯ୍ୟାନୁଷ୍ଠାନ କଲେ । ୧୯୬୫ ମସିହା ଫେବୃୟାରୀ ୨୨ ତାରିଖରେ ସେ ପାର୍ଲିମେଣ୍ଟରେ ଘୋଷଣା କଲେ ଯେ କେତେକ କାରବାରରେ ନିଶ୍ଚିତ ଭାବରେ ଅସଙ୍ଗତ ଘଟିଛି, ଯେଉଁଥିପାଇଁ ଶ୍ରୀ ପଟ୍ଟନାୟକ ଓ ଶ୍ରୀ ମିତ୍ରଙ୍କୁ ଦୋଷ ବହନ କରିବାକୁ ପଡ଼ିବ । [In several transactions improprities were definitely involved for which responsibility had to be borne by Shri Patnaik and Shri

Mitra.] ସେ ଆହୁରି ମଧ୍ୟ କହିଲେ ଯେ "normal standards of public conduct had not been maintained."

## ବିଜୁ ବୀରେନ୍‌ଙ୍କୁ ଇସ୍ତଫା ଦେବାକୁ ପଡ଼ିଲା

ଏହା ପରେ ଅନ୍ୟାନ୍ୟ କେତେକ କଥା ଉଲ୍ଲେଖ କରି ଶ୍ରୀ ଶାସ୍ତ୍ରୀ ଘୋଷଣା କଲେ । ବିଜୁ ପଟ୍ଟନାୟକ ଓ ବୀରେନ୍ ମିତ୍ର ତାଙ୍କର ପରାମର୍ଶ ମାନି ସେମାନଙ୍କ ପଦବୀରୁ ଇସ୍ତଫା ଦେଲେ । ଏଇଟା ନିନ୍ଦା ବା ଡିସମିସ୍ କରିବାର କଂଗ୍ରେସ ପଦ୍ଧତି । ଯେଉଁ ବିଜୁ ପଟ୍ଟନାୟକ ସର୍ବେସର୍ବା ବୋଲି ଡିଣ୍ଡିମ ବଜାଉଥିଲେ, ଶାସ୍ତ୍ରୀଙ୍କ ନିର୍ଦ୍ଦେଶରେ ତାଙ୍କୁ ଯୋଜନା ବୋର୍ଡ଼ର ଚେୟାରମ୍ୟାନ୍ ପଦରୁ ଏବଂ ବୀରେନ୍ ମିତ୍ରଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ଓହରି ଆସିବାକୁ ପଡ଼ିଲା । ବୀରେନ୍ ମିତ୍ରଙ୍କ ସ୍ଥାନରେ ସଦାଶିବ ତ୍ରିପାଠୀ ନୂତନ ମୁଖ୍ୟମନ୍ତ୍ରୀ ହେଲେ ।

ମାତ୍ର ପାର୍ଲିମେଣ୍ଟ ଏଥିରେ ସନ୍ତୁଷ୍ଟ ନ ହୋଇ ବିଚାର ବିଭାଗୀୟ ତଦନ୍ତ କମିସନ ଲାଗି ଜୋର୍ ଦାବୀ ଉଠାଇଥିଲା ।

## ସି. ବି. ଆଇ.ର ଗୁପ୍ତ ରିପୋର୍ଟ ହସ୍ତଗତ ହେଲା

ବିଜୁପଟ୍ଟନାୟକ ଯେ ନିର୍ଦ୍ଦିଷ୍ଟ ଦୋଷୀ ବୋଲି ପ୍ରମାଣିତ ହୋଇ ପଦ ତ୍ୟାଗ କଲେ, ମୋର ବିଶ୍ୱାସ, ପଣ୍ଡିତ ନେହରୁ ବଞ୍ଚିଥିଲେ ତାହା ହୋଇପାରିନଥାନ୍ତା । ଓଡ଼ିଶାର ଏକ କଳଙ୍କମୟ ଅଧ୍ୟାୟ ଏହା ଫଳରେ ଶେଷ ହେଲା ବୋଲି ଲୋକେ ଆଶ୍ୱସ୍ତି ଲାଭ କଲେ । କଂଗ୍ରେସ ସରକାର ଚାଲିଲା—ମାତ୍ର ଦୌରାତ୍ମ୍ୟ, ଉତ୍ପାତ ଓ ଉପଦ୍ରବ ଆଉ ରହିଲା ନାହିଁ । ଯେଉଁ ଭୟ ଓ ଆତଙ୍କର ରାଜୁତି ଚାଲିଥିଲା, ତାହା ବହୁପରିମାଣରେ ଦୂରହେଲା । ବିରୋଧୀ ପକ୍ଷ ମଧ୍ୟ ଏଥିରେ ଉତ୍ସାହିତ ହେଲେ ।

ମୁଁ ଏଥି ଭିତରେ ସି.ବି. ଆଇ ରିପୋର୍ଟ ପାଇବା ଲାଗି ଉଦ୍ୟମ କଲି । ମୋର ସୌଭାଗ୍ୟକୁ ଜଣେ ସାଂବାଦିକ ବନ୍ଧୁ ଏକ ସଂକ୍ଷିପ୍ତ ରିପୋର୍ଟ ଯୋଗାଡ଼ କରି ହଠାତ୍ ଆସି ମୋର ୨୧, କ୍ୟାନିଙ୍ଗ୍ ଲେନ୍ ଗୃହରେ ଉପସ୍ଥିତ ହେଲେ । ୧୯୬୫ ମସିହା ବଜେଟ୍ ଅଧିବେଶନ ଆରମ୍ଭ ହୋଇଥିଲା । ରାଷ୍ଟ୍ରପତିଙ୍କ ଅଭିଭାଷଣ ବିତର୍କ ଚାଲିଥିଲା । ମୋର ସେଥିରେ ଭାଷଣ ଦେବାର ଥିଲା । ସେତେବେଳେ ରିପୋର୍ଟ ପ୍ରସଙ୍ଗ ଉଠାଇବା ନିମନ୍ତେ ସ୍ଥିର କରାଗଲା । ସେ ବନ୍ଧୁ ୟୁ. ଏନ୍. ଆଇ ରେ କାର୍ଯ୍ୟ କରୁଥିଲେ ଏବଂ ସୋସାଲିଷ୍ଟଙ୍କ ପ୍ରତି ସହାନୁଭୂତିଶୀଳ ଥିଲେ । ସେ ବି ଚାହୁଁଥିଲେ ଏହା କେମିତି ପ୍ରକାଶପାଇବ; ମାତ୍ର ସରକାରୀ ଗୁପ୍ତ ରିପୋର୍ଟକୁ ସେ ବା ସଂବାଦପତ୍ରମାନଙ୍କୁ ପଠାଇପାରନ୍ତେ କିପରି ?

## ଏଚ୍. ଭି. କାମାଥଙ୍କଦ୍ୱାରା ରିପୋର୍ଟ ଦାଖଲ

ହଠାତ୍ ପ୍ରଜା ସୋସଲିଷ୍ଟ ପାର୍ଟିର ଏକ ଗୁରୁତର କାର୍ଯ୍ୟ ନିମନ୍ତେ ମୋର ଯାଇବା ଯିବାର ଆବଶ୍ୟକତା ପଡ଼ିବାରୁ ମୁଁ ପାର୍ଟିର ଡେପୁଟି ଲିଡର୍ ହରି ବିଷ୍ଣୁ କାମାଥଙ୍କୁ ମୋ ସ୍ଥାନରେ ଭାଷଣ ଦେବା ନିମନ୍ତେ ଏବଂ ଏହି ଗୁପ୍ତ ସି. ବି. ଆଇ. ରିପୋର୍ଟ ଦାଖଲ କରିବା ନିମନ୍ତେ ତାଙ୍କୁ ଦେଇଗଲି । ସି. ବି. ଆଇ. ଦୁଇଟି ରିପୋର୍ଟ ଦେଇଥିଲେ—ଗୋଟିଏ ସଂକ୍ଷିପ୍ତ ରିପୋର୍ଟ ଏବଂ ଅନ୍ୟଟି ପୂର୍ଣ୍ଣାଙ୍ଗ ରିପୋର୍ଟ । ସଂକ୍ଷିପ୍ତ ରିପୋର୍ଟଟି ହାତପାଏଠ ହୋଇଥିଲା । କାମାଥ ତାଙ୍କ ଭାଷଣ ପ୍ରସଙ୍ଗରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଓ ବୀରେନ୍ ମିତ୍ରଙ୍କ ଦୁର୍ନୀତି ବିଷୟ ଉଲ୍ଲେଖ କରି ଏହି ରିପୋର୍ଟ ପାର୍ଲିମେଣ୍ଟ ଗୃହରେ ଦାଖଲ କରିବାକୁ ଚାହିଁଲେ । ସରକାର ମହା ଅଡ଼ୁଆରେ ପଡ଼ିଲେ । ନାନା ଆଇନଗତ ବାଧା ଉଠାଗଲା । ଶେଷକୁ ସର୍ଦ୍ଦାର ହୁକମ ସିଂହ ସ୍ପିକର୍ ହିସାବରେ ଏକ ଐତିହାସିକ ରୁଲିଙ୍ଗ୍ ଦେଲେ । ସେ ଦର୍ଶାଇଲେ—ସରକାରର ଗୁପ୍ତ ରିପୋର୍ଟ ସରକାର ହୁଏତ ପ୍ରକାଶ ପାଇଁ ସମ୍ମତ ନ ଥିଲେ; କିନ୍ତୁ ଦେଶର ସାଧାରଣ ସ୍ୱାର୍ଥ ଦୃଷ୍ଟିରୁ ଯଦି ଗୃହର କୌଣସି ସଭ୍ୟ ସେପରି ତଥ୍ୟ ପ୍ରକାଶ କରିବାଲାଗି ଆଗ୍ରହୀ, ତେବେ ତାଙ୍କର ସେ ଅଧିକାର ରହିବ; କେବଳ ସଭ୍ୟଙ୍କୁ ଗୋଟିଏ ବଡ଼ ବିପଦ ବହନ କରିବାକୁ ପଡ଼ିବ—ମିଥ୍ୟା ପ୍ରମାଣିତ ହେଲେ ଦଣ୍ଡ ସହ୍ୟକରିବାକୁ ପଡ଼ିବ । କିନ୍ତୁ ଗୃହରେ ସେ ଯେଉଁ କାଗଜ ପେଶ୍ କରିବେ, ସେଥିରେ ସତ୍ୟପାଠ କରି ତାଙ୍କୁ ଲେଖିଦେବାକୁ ପଡ଼ିବ ଯେ ସେ ଯାହା ପେଶ୍ କରୁଛନ୍ତି ତାହା ବାସ୍ତବିକ ଉକ୍ତ ରିପୋର୍ଟର ଅବିକଳ ନକଲ । କାମାଥ୍ ତାହା ଲେଖିଦେବାରେ କୁଣ୍ଠା ବୋଧ କଲେ ନାହିଁ ଏବଂ ସି.ବି. ଆଇ.ର ସଂକ୍ଷିପ୍ତ ରିପୋର୍ଟ ପାର୍ଲିମେଣ୍ଟ ସଦନରେ ରହିଗଲା । ଆମର ୟୁ.ଏନ୍.ଆଇ. ବନ୍ଧୁଙ୍କ ହାତରେ ଆଗରୁ ସବୁ କପି ପ୍ରସ୍ତୁତ ହୋଇ ରହିଥିବାରୁ ଅନ୍ୟ ସଂବାଦ ସଂସ୍ଥା ପ୍ରକାଶ କରିବା ପୂର୍ବରୁ ସେ ଚାରିଆଡ଼କୁ ପଠାଇଦେଇପାରିଥିଲେ ।

## ସାରା ଦେଶରେ ଚହଳ

ଆଗରୁ ବିଭିନ୍ନ ପତ୍ରପତ୍ରିକା ଏବଂ ପାର୍ଲିମେଣ୍ଟ ଆଲୋଚନାରୁ ଯାହା ଶୁଣାଯାଉଥିଲା, ତାହାର ବିସ୍ତୃତ ସତ୍ୟ ବର୍ଣ୍ଣନା ସି. ବି. ଆଇ.ର ସଂକ୍ଷିପ୍ତ ରିପୋର୍ଟରୁ ପାଇଲା ପରେ ଚାରିଆଡ଼େ ଲୋକେ କଂଗ୍ରେସକୁ ଛି' ଛି' କରିଥିଲେ । ଉପରସ୍ଥ କଂଗ୍ରେସ ନେତାମାନେ କିଭଳି ଘଣ୍ଟି ଘୋଡ଼ାଇ ଦୁର୍ନୀତିଗ୍ରସ୍ତ ଲୋକଙ୍କୁ କଂଗ୍ରେସର ଉଚ୍ଚସ୍ଥାନରେ ରଖାଇଥିଲେ, ତାହା ପଦାରେ ପଡ଼ିଗଲା । ଲାଲବାହାଦୁର ଶାସ୍ତ୍ରୀ ନୂତନ ପ୍ରଧାନମନ୍ତ୍ରୀ । ସେ କିନ୍ତୁ କଂଗ୍ରେସ ନେତୃମଣ୍ଡଳୀ ଉପରେ ପଡ଼ି ଅଧିକ କିଛି କରିପାରିଲେନାହିଁ । ତାଙ୍କୁ ବୁଝାଇଦିଆଗଲା ଯେ ବିଚାରବିଭାଗୀୟ କମିସନ ବସାଇଦେଲେ କଂଗ୍ରେସର ଆହୁରି ବଦ୍‌ନାମ ହୋଇଯିବ । ସେ ତେଣୁ ନୀରବ ରହିଗଲେ । କିନ୍ତୁ ତାଙ୍କ ମନରେ ଅଶାନ୍ତି ରହିଗଲା । ମୁଁ ତାଙ୍କୁ ଯାଇ ବ୍ୟକ୍ତିଗତ ଭାବରେ

ସାକ୍ଷାତ୍ କଲି । ମାତ୍ର ସେ କହିଲେ—ସେମାନେ ପଦବୀରୁ ବାହାରିଗଲାପରେ ଆଉ ତଦନ୍ତ କରି କି ଲାଭ ହେବ ! ସବୁ କଥା ତ ପଦାରେ ପଡ଼ିଲାଣି ! ମୁଁ ତାଙ୍କୁ ବୁଝାଇଥିଲି ଯେ, ସି.ବି.ଆଇ. ରିପୋର୍ଟକୁ ଏକପାଖିଆ ରିପୋର୍ଟ ବୋଲି କୁହାଯାଉଥିଲା । ତାହା ବ୍ୟତୀତ ବ୍ୟକ୍ତିଗତ ଭାବରେ କାହାକୁ ଶାସ୍ତି ଦେବା ଅପେକ୍ଷା ଶାସନ କଳର କିପରି ଦୁରୁପଯୋଗ ଓ ଅପ-ବ୍ୟବହାର କରାଯାଇଥିଲା, ଏ ସମ୍ବନ୍ଧରେ ଏକ ବିଶ୍ବରପଟଙ୍କ ନିଷ୍ପତ୍ତି ପ୍ରକାଶ ପାଇଲେ ଶାସନରୁ ଏଭଳି ତ୍ରୁଟି ଦୂର କରିବା ନିମନ୍ତେ ସୁବିଧା ହେବ । ଶାସ୍ତ୍ରୀଜୀ କିଛି ନ କହି ହସି-ଦେଲେ ଏବଂ ମୁଁ ଏହି ଧାରଣା ନେଇ ଆସିଲି ଯେ ବୋଧହୁଏ ଆଉ କିଛି ପଦକ୍ଷେପ ନେବା ତାଙ୍କ ପକ୍ଷେ ସମ୍ଭବ ହେଉନାହିଁ ।

## ବିରୋଧ ମଧ୍ୟରେ ମେଣ୍ଟ

ବିରୋଧ ପକ୍ଷ ଭିତରେ କେବେହେଲେ କୌଣସି ପ୍ରଶ୍ନରେ ଏକମତ ହେବା ସମ୍ଭବ ହେଉନଥିଲା । କିନ୍ତୁ ସି. ବି. ଆଇ. ରିପୋର୍ଟର ସଂକ୍ଷିପ୍ତ ବିବରଣ ପ୍ରକାଶ ପାଇଗଲା ପରେ ପ୍ରାୟ ସମସ୍ତଙ୍କ ମନ ଦୃଢ଼ ହୋଇଗଲା ଏବଂ କୌଣସି ନା କୌଣସି ସୂତ୍ରରେ ବିଚାର ବିଭାଗୀୟ କମିସନ ନିଯୁକ୍ତିର ଦାବୀ ଜୋର୍‌ରେ ଉଠିଲା । ବାହାରେ ପ୍ରାୟ ସବୁ ସମ୍ବାଦପତ୍ର ଏହି ଦାବୀକୁ ସମର୍ଥନ କରି ପ୍ରବନ୍ଧମାନ ଲେଖିଲେ । ବିଷୟଟି ପୁଣି ତ ଏକ ବାଟରେ ପହଞ୍ଚିବା ଦରକାର ! ତେଣୁ ଏକ ଅନାସ୍ଥା ପ୍ରସ୍ତାବ ଅଣାଯିବାଲାଗି ସ୍ଥିର ହେଲା ।

## ଶାସ୍ତ୍ରୀଙ୍କ ପ୍ରତି ମନୋଭାବ

ଶାସ୍ତ୍ରୀ କିନ୍ତୁ ପ୍ରଧାନମନ୍ତ୍ରୀ ହେବା ପରେ ସାରା ଦେଶର ବାୟୁମଣ୍ଡଳରେ ପରିବର୍ତ୍ତନ ଆସି-ଯାଇଥିଲା । ସେ ବିରୋଧପକ୍ଷକୁ ସମ୍ମାନ ଦେଖାଇଲେ ଏବଂ ପ୍ରତ୍ୟେକ ଗୁରୁତର ଘଟଣାରେ ବିରୋଧର ପରାମର୍ଶ ନେଉଥିଲେ । ଜବାହରଲାଲ ନେହରୁ ଯେ ବିରୋଧକୁ ସମ୍ମାନ ଦେଉନଥିଲେ ତାହା ନୁହେଁ—ମାତ୍ର ତାହା ଥିଲା ଭିନ୍ନ ପ୍ରକାରର । କେହି ବିରୋଧ ପକ୍ଷରୁ ଅନୁରୋଧ ନକରିବା କିମ୍ବା ପତ୍ର ନ ଲେଖିବା ପର୍ଯ୍ୟନ୍ତ ସେ କେବେ ବିରୋଧୀଦଳକୁ ଡକାଇ-ଥିବାର ମନେ ଜଣାନାହିଁ । ତାହା ଛଡ଼ା, ତାଙ୍କର ଅମାୟିକ ଆଚରଣ ଯୋଗୁଁ ତାଙ୍କୁ କଡ଼ା କଥା କହିବା ନିମନ୍ତେ କଷ୍ଟ ଲାଗୁଥିଲା । ଆମମାନଙ୍କ ସହ ବ୍ୟକ୍ତିଗତ ଭାବରେ ସମ୍ପର୍କ ସ୍ଥାପନ କଥା ଆଗରୁ ଉଲ୍ଲେଖ କରିଥିଲି—କେମିତି ଚୀନ ଯୁଦ୍ଧବେଳେ ଡାକିନେଇ ପରାମର୍ଶ ଗ୍ରହଣ କରୁଥିଲେ । ଏହା ଫଳରେ ତାଙ୍କ ପ୍ରତି ଗୋଟାଏ ତୀବ୍ର ବିରୋଧ ଭାବନା ରହିନଥିଲା ।

## ଅନାସ୍ଥା ପ୍ରସ୍ତାବ ଆଲୋଚନା

ବିରୋଧୀଦଳର ପ୍ରାୟ ସମସ୍ତେ ଆଲୋଚନା ପାଇଁ ଅନାସ୍ଥା ପ୍ରସ୍ତାବ ଦେଇଥିଲେ । ତହିଁରୁ ମୋ ନାମରେ ଥିବା ପ୍ରସ୍ତାବଟି ଆଲୋଚନା ଲାଗି ଗୃହୀତ ହୋଇଗଲା ଏବଂ ଗୃହୀତ

ହେବା ନିମନ୍ତେ ଆବଶ୍ୟକୀୟ ସଂଖ୍ୟକ ବିରୋଧୀ ସଭ୍ୟ ତା ସମର୍ଥନରେ ଛିଡ଼ାହୋଇଗଲେ । ନଚେତ୍ ଆମ ପ୍ରଜା ସୋସଲିଷ୍ଟ ପାର୍ଟି ସଭ୍ୟଙ୍କ ସଂଖ୍ୟା ଏତେ କମ୍ ଥିଲା ଯେ ଆମେ କେବେ ସରକାର ବିରୋଧରେ ଅନାସ୍ଥା ପ୍ରସ୍ତାବ ଆଣିପାରୁନଥିଲୁ । ଏହା ପଛରେ ପୁଣି ସମଗ୍ର ବିରୋଧର ସମର୍ଥନ—ଏପରି ଗୌରବ ମତେ ମିଳିଲା ।

୧୯୬୫ ମସିହା ମାର୍ଚ୍ଚ ୧୫ ଓ ୧୬ ଦୁଇଦିନ ଏହି ଅନାସ୍ଥା ପ୍ରସ୍ତାବର ଆଲୋଚନା ନିମନ୍ତେ ସମୟ ଧାର୍ଯ୍ୟ କରାଗଲା । ପ୍ରାୟ ଏକ ସପ୍ତାହ ସମୟ ମିଳିଲା ଏଥିଲାଗି ପ୍ରସ୍ତୁତ ହେବା ନିମନ୍ତେ । ମୁଁ ତ ମୂଳ ପ୍ରସ୍ତାବକ, ପୁଣି ଏଡ଼େ ବଡ଼ ଏକ ଦାୟିତ୍ୱପୂର୍ଣ୍ଣ କର୍ତ୍ତବ୍ୟ ! ମୁଁ ନିଜକୁ ତିଆରି କଲି ଏବଂ ଆମର ଦାବୀକୁ ଆହୁରି ଦୃଢ଼ କରିବା ନିମନ୍ତେ ସି. ବି. ଆଇ. ରିପୋର୍ଟର ପୂର୍ଣ୍ଣାଙ୍ଗ ବିବରଣୀ ସଂଗ୍ରହ କଲି ଏବଂ ତାକୁ ବି ଏହି ମଉକା ନେଇ ଅନାସ୍ଥା ପ୍ରସ୍ତାବ ଆଲୋଚନା ବେଳେ ପେଶ୍ କରିଦେଲି । ଏହା ଗୃହ ମଧ୍ୟରେ ଆହୁରି କୌତୂହଳ ଓ କୋଳାହଳ ସୃଷ୍ଟି କରିଥିଲା । ସରକାରୀ ପକ୍ଷ ଟିକିଏ ଅଡ଼ୁଆ ଓ ଦୁର୍ବଳ ଅବସ୍ଥାରେ ଥିଲେ । ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ହେବା ପରେ ପରେ ହିଁ ଏମିତି ଅନାସ୍ଥା ପ୍ରସ୍ତାବର ସମ୍ମୁଖୀନ ହେଉଥିଲେ । ଏହା ତାଙ୍କ ସମର୍ଥକଙ୍କ ମନରେ ଗୁଞ୍ଜନ ସୃଷ୍ଟି କରିଥିଲା ।

ମାର୍ଚ୍ଚ ୧୫ ତାରିଖ ଥିଲା ସୋମବାର । ତା' ଆଗରୁ ଗୁରୁବାରଠାରୁ ମୁଁ ଆଉ ଲୋକସଭା ବୈଠକକୁ ନ ଯାଇ ଘରେ ରହି ଏଥିଲାଗି ପ୍ରସ୍ତୁତ ହେବାରେ ଲାଗିଲି । ଦିନ ରାତି ମୋର କଠିନ ପରିଶ୍ରମ ଦେଖି ମୋ ଝିଅ ପଚାରିବାକୁ ଆରମ୍ଭ କରିଥିଲା, "ଏତେ ପୁରୁଣା ବହିପତ୍ର ସବୁ କାହିଁକି ଦେଖୁଛ ? ତୁମେ କଣ ପରୀକ୍ଷା ଦେବକି ?" ଏଥିଭିତରେ ଦୁଇଜଣ ମନ୍ତ୍ରୀ, ଯେ କେବେ ହେଲେ ମୋ ଘରକୁ ଆସୁ ନ ଥିଲେ, ଅଚାନକ ଆସି ବିଭିନ୍ନ ସମୟରେ ପହଞ୍ଚୁଥିଲେ ଅଲଗା ଅଲଗା ହୋଇ ଏବଂ ନାନା କଥାର ଅବତାରଣା କରୁଥିଲେ । ସେମାନଙ୍କର ବକ୍ତବ୍ୟ ହେଲା—ଶାସ୍ତ୍ରୀ ଦୁର୍ନୀତିର ବିରୋଧୀ—ବିଜୁ ପଟ୍ଟନାୟକଙ୍କ ସମ୍ବନ୍ଧରେ ତାଙ୍କ ମତ ଆପଣଙ୍କୁ ଜଣା ଇତ୍ୟାଦି । ଏପରିକି ଯେଉଁଦିନ ଅନାସ୍ଥା ପ୍ରସ୍ତାବ ଆଗତ କରିବାର କଥା, ସେଦିନ ଲୋକସଭା ଭିତରେ ଫ୍ରାଙ୍କ ଆନ୍ଥୋନୀ ଏକ ଅଦ୍ଭୁତ କାଣ୍ଡ କଲେ । ଆମ ଦୁ'ଜଣଙ୍କ ଭିତରେ ଭାରି ବନ୍ଧୁତା ହୋଇଥିଲା । ଚୀନ ସମସ୍ୟା ଆଲୋଚନା ବେଳେ ଆମେରିକାର 'ୱାଶିଂଟନ ପୋଷ୍ଟ' କାଗଜ ତରଫରୁ ଫଟୋଗ୍ରାଫର୍ ଆସି ଆମ ଦୁ'ଜଣଙ୍କର ଫଟୋ ନେଇଥିଲେ । ମୁଁ ମୋର ବକ୍ତବ୍ୟ ପାଇଁ ନୋଟ୍ କରି ନେଇଥିଲି । ଟାଇପ୍ ବି କରିବା ସମ୍ଭବ ହୋଇନଥିଲା । ବହୁତ ଡକୁମେଣ୍ଟ ଓ କୋଟେସନ୍ ରହିଥିଲା । ସେ ମୋ ପାଖକୁ ଚାଲିଆସି କହିଲେ—ମୁଁ ତୁମ ନୋଟ୍ ଦେଖିବି । ଫ୍ରାଙ୍କ ଆନ୍ଥୋନୀ ଜଣେ ବିଖ୍ୟାତ ଅଇନଜୀବି, ଭଲ ବକ୍ତା । ତାଙ୍କର ସବୁ ଭାଷଣ ପୂର୍ବରୁ ନୋଟ୍ ଟାଇପ୍ ହେଉଥିଲା ଏବଂ ଯେଉଁଥିରେ ଜୋର୍ ଦିଆଯିବାର କଥା ସେଥିରେ ନାଲିଗାର ପଡ଼ୁଥିଲା । ସେ ଭାବିଥିଲେ— ମୁଁ ଏଡ଼େ ବଡ଼ ଦାୟିତ୍ୱପୂର୍ଣ୍ଣ ବିତର୍କ ଲାଗି ମୋର ବକ୍ତବ୍ୟ ନିର୍ଦ୍ଦିଷ୍ଟ ଭାବରେ ଲେଖି ଆଣିଥିବି ଏବଂ ତାହା ଟାଇପ୍ ହୋଇଥିବ । ଖଣ୍ଡେ ଖଣ୍ଡେ ସ୍ଲିପ୍ କାଗଜ ଲେଖାଯାଇ ଗୁନ୍ଥା

ହୋଇଥିବା ଦେଖି ହସିଲେ ଏବଂ କହିଲେ, "ତୁମର କହିବା ବିଷୟବସ୍ତୁ ଉପରେ ମୋର ହସ୍ତକ୍ଷେପ କରିବାର ଇଚ୍ଛା ନଥିଲା ବା ଉଚିତ ମଧ୍ୟ ନ ଥିଲା । କିନ୍ତୁ ଆମ ସମସ୍ତଙ୍କର ବନ୍ଧୁ ଲାଲବାହାଦୁରଙ୍କ ପ୍ରତି କିଛି କର୍କଶ ଶବ୍ଦ ବ୍ୟବହାର କରାଯାଇଛି କି ନାହିଁ ତାହା ଦେଖିବା ନିମନ୍ତେ ଗୃହକୁ ଆସିଥିଲି ଏବଂ ତାହା ନକରିବା ନିମନ୍ତେ ତୁମକୁ ଏ ଶେଷମୁହୂର୍ତ୍ତରେ ବି ଅନୁରୋଧ କରୁଛି ।"

## ଅନାସ୍ଥା ପ୍ରସ୍ତାବ ଓ ଭାରତ ସରକାର

କିଭଳି ପରିସ୍ଥିତି ମଧ୍ୟରେ ମତେ ଏଭଳି ଏକ ଅନାସ୍ଥା ପ୍ରସ୍ତାବ ଆଗତ କରିବାକୁ ପଡ଼ିଲା, ଏଇଥିରୁ ଅନୁମାନ କରାଯାଇପାରିବ । ତେଣୁ ମତେ ପ୍ରତ୍ୟେକ ଶବ୍ଦକୁ ତଉଲି କଥା କହିବାକୁ ପଡ଼ିଲା । ଭାଷଣ କ୍ରମେ କ୍ରମେ ଏପରି ଆକାର ଧାରଣ କଲା ଯେ ମତେ କି ପ୍ରତ୍ୟେକ ବାକ୍ୟ ପଛରେ କିଛି ନା କିଛି ପ୍ରମାଣ ଥିବା ସୂଚିତ ହେଉଥିଲା । କୌଣସି ବ୍ୟକ୍ତିଗତ ଆକ୍ଷେପ ଲାଲବାହାଦୁରଙ୍କ ବିରୁଦ୍ଧରେ କଲିନାହିଁ; ମାତ୍ର ସରକାରର ଦୁର୍ବଳତା ଓ ବ୍ୟର୍ଥତା ଏପରି ଭାବରେ ଦେଖାଗଲା ଯେ ଭାରତ ସରକାରର ଇସ୍ତଫା ଦାବୀ ବେଳକୁ ସାରା ବିରୋଧିରୁ ତାଳି ଉଠିଲା । ମୋର ଭାଷଣ ବେଳେ କୌଣସି ଜଣେହେଲେ ସଦସ୍ୟ ବାହାରକୁ ଯାଇନଥିଲେ—ସମସ୍ତେ ଏକାଗ୍ରତାର ସହ ଭାଷଣ ଶୁଣୁଥିଲେ । ଦର୍ଶକ ଗ୍ୟାଲେରୀ ପୂର୍ଣ୍ଣ ହୋଇଥିଲା । ବେଶି ଭିଡ଼ ହେବାରୁ ଦର୍ଶକମାନଙ୍କୁ ଦୁଇଘଣ୍ଟାରେ ବଦଳି କରିଦିଆ-ଯାଉଥିଲା । ଏଇଥିରୁ ବୁଝାପଡ଼ୁଥିଲା ଏହି ସମସ୍ୟା କିପରି ଲୋକମନକୁ ଆନ୍ଦୋଳିତ କରୁଥିଲା । ମୋର ଭାଷଣ ଶେଷକୁ କଂଗ୍ରେସ ତରଫରୁ ମହାବୀର ତ୍ୟାଗୀ ଉଠି କହିଲେ— 'ଯାହା କହିବାର କହିଲେ, ବର୍ତ୍ତମାନ ପ୍ରସ୍ତାବଟି ପ୍ରତ୍ୟାହାର କରିନିଅନ୍ତୁ ।' ସେ ମଝିରେ ମଝିରେ ଏମିତି ରସିକତା କରୁଥିଲେ । ମୁଁ ତତ୍‌କ୍ଷଣାତ୍ ଜବାବରେ କହିଲି—ଏଥିରେ ବ୍ୟକ୍ତିଗତ କିଛି ନାହିଁ । ଭାରତ ସରକାର ତଳଲିଖିତ କେତୋଟି ସର୍ତ୍ତ ପୂରଣର ଘୋଷଣା କରିଲେ ପ୍ରସ୍ତାବ ପ୍ରତ୍ୟାହାର କରାଯାଇପାରିବ । (୧) ଓଡ଼ିଶା ବ୍ୟାପାର ସମ୍ବନ୍ଧରେ ସରକାର ପାଖରେ ଯେତେ ରିପୋର୍ଟ ଓ ଅନ୍ୟ କାଗଜପତ୍ର ରହିଛି ସେଗୁଡ଼ିକ ଏକ ଧଳାକାଗଜ ( white paper ) ଆକାରରେ ଛପାଯାଇ ପାର୍ଲିମେଣ୍ଟରେ ଉପସ୍ଥାପନ କରାଯିବ ଏବଂ ଏକ ପ୍ରକାଶ୍ୟ ବିଚାରବିଭାଗୀୟ ତଦନ୍ତର ସ୍ଥାପନା ହେବ । (୨) ପ୍ରାଥମିକ ପ୍ରମାଣ ମିଳିସାରିଥିବା ହେତୁ ଏବେ ଓଡ଼ିଶାର କଂଗ୍ରେସ ମନ୍ତ୍ରିମଣ୍ଡଳକୁ ବରଖାସ୍ତ କରାଯିବ, (୩) ସ୍ଥାୟୀଭାବରେ ଦୁର୍ନୀତି ସମ୍ବନ୍ଧୀୟ ବ୍ୟାପାରର ବିଚାରଲାଗି ସୁପ୍ରିମ କୋର୍ଟ, ପବ୍ଲିକ ସର୍ଭିସ କମିସନ କିମ୍ବା ନିର୍ବାଚନ କମିସନ ପରି ସ୍ୱତନ୍ତ୍ର କ୍ଷମତାପ୍ରାପ୍ତ ସାମ୍ବିଧାନିକ ଅନୁଷ୍ଠାନ ସ୍ଥାପନା କରାଯିବ ।

ମୋ ବକ୍ତୃତା ଶେଷ ହେଲା ବେଳକୁ ଡକ୍ଟର ରାମମନୋହର ଲୋହିଆ ମତେ ଆସି କୁଣ୍ଢାଇପକାଇଲେ ଏବଂ ସେ ମତେ ସମର୍ଥନ କରି ପରେ ଭାଷଣ ଦେଲେ, ଆଗ ବେଞ୍ଚକୁ

ମୋର ପାଖକୁ ଆସି । ସେ ନିର୍ବାଚିତ ହୋଇ ଆସିବା ଦିନରୁ ସବୁ ପଛରେ ଗୋଟିଏ ସ୍ଥାନରେ ବରାବର ବସୁଥିଲେ ଏବଂ ଆଲୋଚନାରେ ଭାଗ ନେଉଥିଲେ । କେତେକ କହିଲେ ଯେ ଶ୍ୟାମା ପ୍ରସାଦ ମୁଖାର୍ଜିଙ୍କ ପରେ ଏପରି ଭାଷଣ ପ୍ରଥମେ ଶୁଣିବାକୁ ମିଳିଲା । ମାତ୍ର ଏହା ଟିକିଏ ଅତିରଞ୍ଜିତ ବର୍ଣ୍ଣନା, କାରଣ ଶ୍ୟାମାପ୍ରସାଦଙ୍କପରି ମୋର ଭାଷା, ବାଗ୍ମିତା ବା ଶୈଳୀ ନଥିଲା । ବାସ୍ତବିକ ଆମ ଭିତରେ ନାଥ ପାଇ ଏଥିରେ ଅନୁପମ ଥିଲେ । ମାତ୍ର ମୁଁ ଯେପରି ତଥ୍ୟ ଦେଇ ଏବଂ ବ୍ୟକ୍ତିଗତ ସମାଲୋଚନା ନକରି ବକ୍ତୃତା ଦେଇଥିଲି, ସେଥିରେ ସେହିପରି ଏକ ଧାରଣା ସୃଷ୍ଟି ହୋଇଗଲା । ଲୋକସଭାର ସେକ୍ରେଟେରୀ ପି.କେ. ପଟ୍ଟନାୟକ ମତେ ପରେ କହୁଥିଲେ—ଦର୍ଶକମାନେ ଟିକେଟ କଲାବେଳକୁ କୁଆଡ଼େ ପଚାରୁଥିଲେ ଦ୍ୱିବେଦୀଙ୍କର କିଛି ବକ୍ତବ୍ୟ ଅଛି କି ?

## ସରକାର ତରଫରୁ ବଡ଼ ବଡ଼ ଯୋଦ୍ଧା

ଗୃହ ଭିତରର ଏଭଳି ବାୟୁମଣ୍ଡଳ ଦେଖି ସରକାର ତରଫରୁ ଏମ୍. ସି. ଚଗଲା, ଅଶୋକ ସେନ୍‌ଙ୍କ ପରି ମନ୍ତ୍ରୀମାନଙ୍କୁ ଛିଡ଼ାକରାଗଲା । ମାତ୍ର ଲକ୍ଷ୍ୟ କରିବାର କଥା ଯେ, ମନ୍ତ୍ରୀଙ୍କ ବାହାରେ କଂଗ୍ରେସର ମୁଖିଆ ସଭ୍ୟ, ଯଥା ମହାବୀର ତ୍ୟାଗୀ, ହନୁମନ୍ତୟା କିମ୍ବା ହରିଶଚନ୍ଦ୍ର ମାଥୁର ଆଦି କେହି ସରକାରୀ ପକ୍ଷ ସମର୍ଥନ କରିବାକୁ ବାହାରିନଥିଲେ । ନୂଆ ନୂଆ ସଭ୍ୟ, ଯଥା କେ. ସି. ପନ୍ଥ, ଭଗବତ୍ ଝା ଆଜାଦ, ଖାଦିଲକାର୍, ମୋରାର୍କା ଆଦି କହିଲେ । ବିରୋଧ ପକ୍ଷରୁ ମଧ୍ୟ କମ୍ୟୁନିଷ୍ଟ ଇନ୍ଦ୍ରଜିତ୍ ଗୁପ୍ତ ଏବଂ ପୂର୍ବତନ ଆଇ. ସି. ଏସ୍. ଏନ୍. ଦାଣ୍ଡେକର ଆଦି ଅତି ବଳିଷ୍ଠ ଯୁକ୍ତି ବାଢ଼ିଲେ ।

## ସରକାରୀପକ୍ଷର ଜବାବ

ମୋ ପରେ ଏମ୍. ସି. ଚଗଲା ପ୍ରଥମେ କହିଲେ ଏବଂ ସେ ମୋଟାମୋଟି ଯାହା କହିଥିଲେ ତାହାକୁ ହିଁ ସରକାରୀ ପକ୍ଷର ଜବାବ ବୋଲି ଧରାଯାଇପାରିବ, କାରଣ ପ୍ରଧାନମନ୍ତ୍ରୀ ଶାସ୍ତ୍ରୀ ଅତି ସଂକ୍ଷିପ୍ତ ଭାଷଣ ଦେଇଥିଲେ ।

ଚଗଲା ମାନିଲେ ଯେ ବ୍ୟାଭଗୁରୁ ବହୁତ ଓ ଆମେ ଯେ ଉଚ୍ଚ ଆସନରେ ବସିଛେ, ଆମେମାନେ ଖୁବ୍ ଉଚ୍ଚ ମାନ ରକ୍ଷା କରିବା ଉଚିତ । ମାତ୍ର ମୁଁ ଯେ ଏକ ଗୋପନୀୟ ସରକାରୀ ରିପୋର୍ଟକୁ ଗୃହରେ ଆଣି ରଖିଥିଲି ଏହା ଏକ ଗୁରୁ ଏବଂ ଯେ ତାହା ମତେ ଦେଇଥିଲା ତାକୁ ପୁଲିସ ହାତରେ ଧରାଇନଦେବାଦ୍ୱାରା ମୁଁ ଶାସନର ମର୍ଯ୍ୟାଦାହାନି କାର୍ଯ୍ୟ କରିଛି । ସେ ନିଜେ କିନ୍ତୁ ଏଇଟା ପ୍ରକୃତ ସେହି କାଗଜ କି ନା ସ୍ୱୀକାର କରିବାକୁ ସମ୍ମତ ହେଲେ-ନାହିଁ । ସେ ଏହା କହିଲାବେଳେ ଗୃହଆଡ଼େ ତାଚ୍ଛଲ୍ୟଯୁକ୍ତ ହାସ୍ୟରୋଳ ଉଠିଲା ।

(୨ କ୍ୟାବିନେଟ ସବ୍‌କମିଟି ଓଡ଼ିଶାର ମୁଖ୍ୟମନ୍ତ୍ରୀ (ସେତେବେଳକୁ ବୀରେନ୍ ମିତ୍ର) ଏବଂ ବିଜୁ ପଟ୍ଟନାୟକ ... ... ପ୍ରାଥମିକ ପ୍ରମାଣ ପାଇ ପ୍ରଧାନମନ୍ତ୍ରୀଙ୍କୁ ପରାମର୍ଶଦେଲେ

ସେମାନଙ୍କୁ ଦାୟିତ୍ୱପୂର୍ଣ୍ଣ ସ୍ଥାନରେ ନ ରଖିବା ନିମନ୍ତେ । ସେହି ଅନୁସାରେ ସେ ଦୁଇଜଣଙ୍କୁ ପଦଚ୍ୟୁତ କରିଗଲଣି । ତେଣୁ କମିସନ ନିଯୁକ୍ତର ଆଉ ଆବଶ୍ୟକତା କଣ ?

(୩) କ୍ୟାବିନେଟ୍ ସବ୍ କମିଟି ଆଗରୁ ଯାହା କହିଥିଲି, ତାର ପୁନରାବୃତ୍ତି କରି ସେ କହିଥିଲେ, "With all the emphasis at my command I have to say that the Chief Minister of Orissa and Shri Patnaik had behaved in a manner unworthy of a Chief Minister." ସେମାନେ କୌଣସି ପ୍ରକାର ସାଧାରଣ ଦାୟିତ୍ୱପୂର୍ଣ୍ଣ ପଦବୀରେ ରହିବା ନିମନ୍ତେ ସମ୍ପୂର୍ଣ୍ଣ ଅନୁପଯୁକ୍ତ ବୋଲି ଆମେ ଘୋଷଣା କରୁଛୁ ।

ଏହିରୂପେ ମାର୍ଚ୍ଚ ୧୫ ଓ ୧୬ ଦୁଇଦିନ ଧରି ପ୍ରବଳ ଉତ୍ତେଜନାମୂଳକ ବାୟୁମଣ୍ଡଳ ଭିତରେ ଅନାସ୍ଥା ପ୍ରସ୍ତାବର ଆଲୋଚନା ଶେଷହେଲା । ଉପସ୍ଥିତ ଥିବା ସମସ୍ତ ବିରୋଧୀ ସଭ୍ୟ ପ୍ରସ୍ତାବ ସପକ୍ଷରେ ଭୋଟ ଦେଇଥିଲେ । ପାର୍ଲିମେଣ୍ଟରେ ଭୋଟ ଦେବା ପ୍ରଥାନୁସାରେ 'ହଁ' ବା 'ନାଁ' ବୋତାମକୁ ଟିପିଦେବାକୁ ପଡ଼େ—ସେହି ଅନୁସାରେ ବୋର୍ଡ଼ରେ ଭୋଟସବୁ ରେକର୍ଡ଼ ହୋଇ ପୂରା ସଂଖ୍ୟା ବାହାରିପଡ଼େ । ଏହି ଟିପିଲାବେଳେ କେହି କେହି ଭୁଲ କରିଥିଲେ ପରେ ସଂଶୋଧନ କରୁଥିଲେ । ଦେଖାଗଲା ଯେ ସ୍ୱରାଷ୍ଟ୍ର ମନ୍ତ୍ରୀ ଗୁଲଜାରିଲାଲ ନନ୍ଦା ଏପରି ଭୁଲବଶତଃ ପ୍ରସ୍ତାବ ସପକ୍ଷରେ ଭୋଟ ଦେଇ ସଂଶୋଧନ ପାଇଁ ସ୍ପିକରଙ୍କୁ ଅନୁରୋଧ କଲେ । ଏଥିରେ ଗୃହରେ ସମସ୍ତେ ପାଟିକଲେ—ନନ୍ଦାଙ୍କର ମନ ଯେଉଁଠି ହାତ ସେଠିକି ଚାଲିଯାଇଥିଲା । □□□

## ୧୬ । ମୋର ପାର୍ଲିମେଣ୍ଟର କାର୍ଯ୍ୟାବଳୀ

ଅଠର ବର୍ଷ କାଳ ପାର୍ଲିମେଣ୍ଟରେ ସଭ୍ୟ ରହିଲି । ଏହିକବେଳେ ଦେଶରେ ଅତି ଗୁରୁତ୍ୱପୂର୍ଣ୍ଣ ଘଟଣାମାନ ଘଟିଥିଲା ଏବଂ ତିନିଜଣ ପ୍ରଧାନମନ୍ତ୍ରୀ ହେଲେ । ୧୯୬୨ ରୁ ୧୯୬୭ ସେଥିଲାଗି ଅତି ତାତ୍ପର୍ଯ୍ୟପୂର୍ଣ୍ଣ ଏବଂ ମୁଁ ତ ୧୯୭୦ ଡିସେମ୍ବର ପର୍ଯ୍ୟନ୍ତ ଲୋକସଭାର ସଦସ୍ୟ ରହିଥିଲି । ଏହି କେତେ ବର୍ଷ ମୋର ଜୀବନର ଗୌରବମୟ ବର୍ଷ ବୋଲି ମୁଁ ବିଶ୍ୱାସକରେ ।

ସୌଭାଗ୍ୟକ୍ରମେ, ଭାରତ-ପାକିସ୍ତାନ ଯୁଦ୍ଧ ଏବଂ ରୁଷର ଚେକୋସ୍ଲୋଭାକିଆ ଉପରେ ଆକ୍ରମଣଜନିତ ସମସ୍ୟା ସଂକ୍ରାନ୍ତରେ ମୋର ନିନ୍ଦାସୂଚକ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଲୋକ-ସଭାରେ ଗୃହୀତ ହୋଇଯାଇଥିଲା । ଚେକୋସ୍ଲୋଭାକିଆ ସମସ୍ୟା ଉପରେ କେବଳ କମ୍ୟୁନିଷ୍ଟ ଦଳର ୯ ଜଣ ସଭ୍ୟ ବିରୁଦ୍ଧରେ ଭୋଟ ଦେଇଥିଲେ । ଇନ୍ଦିରା ଗାନ୍ଧୀ ସେତେବେଳକୁ ପ୍ରଧାନମନ୍ତ୍ରୀ । ତାଙ୍କ ସରକାରୀ ପକ୍ଷ ବି ମତେ ସମର୍ଥନଦେଲେ । ଫଳସ୍ୱରୂପ ମୋ ଭାଗ୍ୟରେ ଆଉ ସୋଭିଏଟ୍ ରୁଷ ପରିଦର୍ଶନ ହୋଇପାରିଲାନାହିଁ । ଦକ୍ଷିଣ-ଆମେରିକାର ପେରୁ ରାଜ୍ୟର ଲିମା ସହରରେ ଆନ୍ତର୍ପାର୍ଲିମେଣ୍ଟାରୀ ଇଉନିୟନ୍ ସମ୍ମିଳନୀରେ ଭାରତର ପ୍ରତିନିଧି ରୂପେ ମୁଁ ଯୋଗଦେଇଥିଲି । ଲିମା ଯିବା ପଥରେ ମୁଁ ଦିଲ୍ଲୀରୁ ଯାଇ ପ୍ରଥମେ ସୋଭିଏଟ୍ ରୁଷରେ ୩ ଦିନ କଟାଇବାକୁ ସ୍ଥିରହୋଇଥିଲି । ଭିସା ଆଦି ମିଳିଥିଲା ଏବଂ ସ୍ଥାନୀୟ ରୁଷ ଦୂତାବାସ ୩ ଦିନର ଗସ୍ତ ଆଦି ସ୍ଥିରକରିଦେଇଥିଲେ । ମାତ୍ର ମୋର ରୁଷ ବିରୁଦ୍ଧରେ ଚେକୋସ୍ଲୋଭାକିଆ ଉପରେ ଆକ୍ରମଣ ସମ୍ବନ୍ଧରେ ପ୍ରସ୍ତାବ ପାସ୍ ହେବାରୁ ବନ୍ଧୁମାନେ ମତେ ପରାମର୍ଶଦେଲେ ଏଭଳି ପରିସ୍ଥିତି ଭିତରେ ମୋର ରୁଷ ପରିଦର୍ଶନ ବାଞ୍ଛନୀୟ ହେବନାହିଁ । ମୁଁ କିଛି ସ୍ଥିର-କରିପାରିଲିନାହିଁ । ଲିମା ଯିବାରେ ମୋର ବିଳମ୍ବ ହୋଇଗଲାଣି ବୋଲି ଆଳ ଦେଖାଇ ରୁଷ ଦୂତାବାସରୁ ମାଫି ମାଗିନେଲି । ସେମାନେ ମତେ ଆଉ କେବେ ନିମନ୍ତ୍ରଣ କରିନଥିଲେ ।

ପାକିସ୍ତାନ ଯୁଦ୍ଧ ଘଟଣାରେ ଲାଲବାହାଦୁର ବହୁକଥାରେ ମୋର ପରାମର୍ଶ ନେଉଥିଲେ ଏବଂ କେତେକ ସୀମାନ୍ତ ଅଞ୍ଚଳ ଦେଖିବା ନିମନ୍ତେ ପଠାଇଥିଲେ । ପ୍ରଜା ସୋସଲିଷ୍ଟ ପାର୍ଟି ମଧ୍ୟ ଏ ଦିଗରେ ବିଭିନ୍ନ ଅଞ୍ଚଳକୁ ଲୋକ ପ୍ରେରଣ କରୁଥିଲା । ଅରେ ୧୯୬୫ ଅଗଷ୍ଟମାସରେ ପ୍ରଜା ସୋସଲିଷ୍ଟ ପାର୍ଟିର ମୁଁ, ନାଥ ପାଇ, ଫରୀଦ୍ ଆନ୍‌ସାରୀ କାଶ୍ମୀର ସମସ୍ୟା ଘଟଣା ସ୍ଥଳରେ ଯାଇ ଦେଖିଆସିବା ନିମନ୍ତେ ପାର୍ଟି ପଠାଇଥିଲା । ଲାଲ୍‌ବାହାଦୁର ଶାସ୍ତ୍ରୀ ଏହା ଶୁଣିବା ମାତ୍ରକେ ସେଠାରେ ଆମ ଲାଗି ସକଳ ସୁବିଧା କରିଦେଇଥିଲେ । ଆମେ ସୀମାନ୍ତ ଅଞ୍ଚଳକୁ ଯାଇଥିଲୁ—ସୈନ୍ୟଙ୍କ ଛାଉଣୀକୁ ଯାଇ ଖବର ଅନ୍ତର ବୁଝିଥିଲୁ । ସେତିକବେଳେ ପାକିସ୍ତାନରୁ ଅନୁପ୍ରବେଶକାରୀ ବହୁ ସଂଖ୍ୟାରେ କାଶ୍ମୀରରେ ପ୍ରବେଶକରୁଥିଲେ । ସେମାନଙ୍କ ପଛରେ ସୀମାନ୍ତବର୍ତ୍ତୀ କାଶ୍ମୀରବାସୀଙ୍କ ସମର୍ଥନ ରହିଥିଲା । ସେମାନେ ଅତି ମାରାତ୍ମକ ମାରଣାସ୍ତ୍ର

ସାଙ୍ଗରେ ଧରି ଛୋଟ ଛୋଟ ବଣ ଏବଂ ଘନ କ୍ଷେତ କିଆରିରେ ଛପି ରହି ଖଣ୍ଡଯୁଦ୍ଧମାନ କରୁଥିଲେ । ମୁଁ ନିଜେ, ଅନ୍ୟ ସାଥୀମାନଙ୍କଠାରୁ ଟିକିଏ ଦୂରରେ ଏକୁଟିଆ ଏକ ଗାଡିରେ ଯାଉଥିବାବେଳେ ଏହି ଘେର ଭିତରେ ପଡ଼ିଯାଇଥିଲି । ମୋ ଆଖି ଆଗରେ ଦେଖିବାକୁ ପାଇଲି କିଭଳି ଷ୍ଟେନ୍‌ଗନ୍ ଓ ଡିନାମାଇଟ୍ ଆଦି ବ୍ୟବହାର କରି ଛୋଟ ଛୋଟ ପୋଲ ସେମାନେ ଉଡ଼ାଇଦେଉଥିଲେ । ଗାଡିର ଡ୍ରାଇଭର୍ ମତେ ଗୋଟିଏ ପାଖ ଗାଁରେ ନେଇ ଲୁଚାଇ ରଖିଲେ । ସେଇଠାରେ ମୁଁ କେତେକ ପୁରାତନ ଅବସରପ୍ରାପ୍ତ କାଶ୍ମୀରୀ ସୈନ୍ୟଙ୍କୁ ଭେଟିଲି । ସେମାନଙ୍କ ଭିତରୁ କେତେକ କାଶ୍ମୀର ସରକାର ବିରୁଦ୍ଧରେ ଅଭିଯୋଗ କଲେ ଯେ ସେମାନଙ୍କ ସହଯୋଗ କେହି ଲୋଡ଼ୁନାହାନ୍ତି । ସୀମାନ୍ତବର୍ତ୍ତୀ ଗ୍ରାମମାନଙ୍କରେ ଏଭଳି ଅବସରପ୍ରାପ୍ତ ଲୋକଙ୍କୁ ବିଶ୍ୱାସକୁ ନେଇ ଅସ୍ତ୍ର ଯୋଗାଇଦେଲେ ସେମାନେ ଶତ୍ରୁର ପ୍ରତିରୋଧ କରିବାରେ ସମର୍ଥ ହୁଅନ୍ତେ । ମୁଁ ଆସି ଏକ ଗୋପନୀୟ ରିପୋର୍ଟ ଶାସ୍ତ୍ରୀଙ୍କୁ ଦେଲି ଓ ସାକ୍ଷାତ୍‌ରେ ସବୁ ବର୍ଣ୍ଣନା କଲି । ଶୁଣିଲି, ତାପରେ ଏ ସମ୍ପର୍କରେ ଭାରତ ସରକାର ସୀମାନ୍ତବର୍ତ୍ତୀ ଗ୍ରାମମାନଙ୍କରେ ରହିଥିବା ଅବସରପ୍ରାପ୍ତ ସିପାହୀ ଓ ଅନ୍ୟ କର୍ମଚାରୀମାନଙ୍କ ସହଯୋଗ ନେବା ନିମନ୍ତେ କିଛି ଉପାୟ ସ୍ଥିର କଲେ ।

## ତାସ୍‌କେଣ୍ଟ ଚୁକ୍ତି ଓ ଶାସ୍ତ୍ରୀଜୀ

ତାସ୍‌କେଣ୍ଟ ଯିବା ପୂର୍ବରୁ ଶାସ୍ତ୍ରୀଜୀ ବିରୋଧୀ ନେତାମାନଙ୍କର ଏକ ସମ୍ମିଳନୀ ଡାକି ତାସ୍‌କେଣ୍ଟରେ ଯେଉଁସବୁ ସମସ୍ୟା ଆଲୋଚିତ ହେବ, ତହିଁର ବିଶଦ ଆଲୋଚନା କରି ମତ ଲୋଡିଥିଲେ । ସବୁ ବିରୋଧୀ ସଭ୍ୟ କିଛି ଏକମତ ହୋଇନଥିଲେ; ମାତ୍ର ଶାସ୍ତ୍ରୀଜୀ ଦୁଇପକ୍ଷର ଯୁକ୍ତି ଆମ ଆଗରେ ରଖି ପରାମର୍ଶ ଲୋଡ଼ିଥିଲେ । ପ୍ରଧାନମନ୍ତ୍ରୀମାନେ ସାଧାରଣତଃ ଏସବୁ କଥା ବିରୋଧ ପକ୍ଷ ଆଗରେ ଉଠାଇବାର ବି ପକ୍ଷପାତୀ ନଥିଲେ । ପାକିସ୍ତାନ ସହିତ ଆଉ ଯୁଦ୍ଧ ନକରିବା ଚୁକ୍ତିରେ ଦସ୍ତଖତ୍ କରିଦିଏ ତେବେ ବର୍ତ୍ତମାନ କାଶ୍ମୀର ଯେଉଁ ଭାରତ ଓ ପାକିସ୍ତାନ ଭିତରେ ଯେ ଯୁଦ୍ଧବିରତି ସୀମାରେଖା ରହିଛି, ତାକୁହିଁ ଆମର ସ୍ଥାୟୀ ସୀମାରେଖା ବୋଲି ସ୍ୱୀକାର କରିନେବା କେତେଦୂର ଠିକ୍ ହେବ, ସେ ସମ୍ପର୍କରେ ମଧ୍ୟ ନାନା ଦିଗରୁ ଆଲୋଚନା ହେଲା । ଏପରି ବୈଠକରେ କିଛି ନୀତି ଧାର୍ଯ୍ୟ କରିବାର କଥା ନୁହେଁ—ସରକାର ତାଙ୍କ ନୀତି ସ୍ଥିରକରିବେ ଏବଂ ସେ ଦିଗରେ ଯାହା କାର୍ଯ୍ୟ କରିବେ ସେଥିଲାଗି ଦେଶବାସୀଙ୍କ ପାଖରେ ଦାୟୀ ହେବେ । ତେବେ ଆମଠାରୁ ଯେ କଥାବାର୍ତ୍ତା ଛଳରେ ଏତିକି ପରାମର୍ଶ ନିଆଗଲା, ଏହି ପରମ୍ପରା ଗଣତାନ୍ତ୍ରିକ ପଦ୍ଧତି ପରିଚାଳନାରେ ଶୁଭସଙ୍କେତ । ତେବେ ସମସ୍ତଙ୍କ ସାମନାରେ ସେ ଗୋଟିଏ ପ୍ରତିଶ୍ରୁତି ଦେଲେ ଯେ, ହାଜୀପିର୍ ପାସ୍ ଆମ ଦଖଲରେ ରହିଥିଲା—ତାକୁ ଆଉ ଛାଡ଼ିବାର ପ୍ରଶ୍ନ ଉଠୁନଥିଲା । ସମ୍ବାଦପତ୍ରରେ ମଧ୍ୟ ସେହି ମର୍ମରେ ମତ ପ୍ରକାଶପାଇଲା । ଠିକ୍ ସଭା ଭାଙ୍ଗିଲାବେଳକୁ ଶାସ୍ତ୍ରୀଜୀ ମତେ ଚୁପ୍ କରି ପଚାରିଲେ—ରୁଷ ଯଦି ଚାପ ଦିଏ, ଆମ ପକ୍ଷରେ ଏବର ଆନ୍ତର୍ଜାତିକ ସ୍ଥିତି ଯାହା

ଏଡ଼ିଦେବା ସହଜ ହେବ କି ? ତା' ସାଙ୍ଗେ ସାଙ୍ଗେ ସେ ନିଜେ ଉତ୍ତର ଦେଇ କହିଲେ— 'କୁଛ ଟିକଡ଼ମ୍ କରେଙ୍ଗେ ।' କିନ୍ତୁ ବୋଧହୁଏ ସେଥିରେ ସେ ସଫଳ ହେଲେନାହିଁ । ହାଜିପିର୍ ପାସ୍‌କୁ ଛାଡ଼ିବାକୁ ପଡ଼ିଲା ଏବଂ ସେଇଥିରେ ତାଙ୍କର ହୃଦ୍‌ଯନ୍ତ୍ରଣା ପ୍ରବଳ ହୋଇ ସେ ପ୍ରାଣ ହରାଇଥିଲେ । କାରଣ ରାତି ଗୋଟାକବେଳେ ଶାସ୍ତ୍ରୀଜୀ ପୁଅକୁ ଟେଲିଫୋନ୍‌ରେ ପଚାରିଲେ ଯେ ଭାରତରେ କି ପ୍ରତିକ୍ରିୟା । ଶାସ୍ତ୍ରୀଜୀ ଯେ ପ୍ରଧାନମନ୍ତ୍ରୀ ନେହେରୁଙ୍କ ଅପେକ୍ଷା ବିରୋଧ ପକ୍ଷକୁ ଅଧିକ ସୁବିଧା ଦେଇଦେଇଥିଲେ କିମ୍ବା କଂଗ୍ରେସଦଳର ସ୍ୱାର୍ଥକୁ ନଦେଖି ବିରୋଧୀ ପକ୍ଷର କୌଣସି ପ୍ରକାରେ ନିକଟତର ବୋଲି ଧାରଣା ଜାତକରାଇଥିଲେ ଏପରି ନୁହେଁ; ତେବେ ସେ ଯେଉଁଭଳି ଢଙ୍ଗରେ ବିରୋଧୀ, ବିଶେଷତଃ ଜାତୀୟତାବାଦୀ ଗଣତାନ୍ତ୍ରିକ ବିରୋଧୀ ପକ୍ଷ ସହ ସମ୍ପର୍କ ସ୍ଥାପନ କରିଥିଲେ, ସେଥିରେ ଆମେ ସବୁ ସଚେତନ ନୀତିନିର୍ଦ୍ଧାରଣରେ ବି ସାମିଲ ହୋଇଥିଲୁ ଏପରି ଏକ ଧାରଣା ସୃଷ୍ଟି ହୋଇଥିଲା । ଗଣତାନ୍ତ୍ରିକ ଦେଶରେ ଏହାର ବହୁତ ଗୁରୁତ୍ୱ ଓ ମୂଲ୍ୟ ରହିଛି । ମୋର ମନେହୁଏନା ଏ ଦେଶରେ ଆଉ ନିକଟ ଭବିଷ୍ୟତରେ ଶାସ୍ତ୍ରୀଜୀଙ୍କ ପରି ଜଣେ ଗଣତାନ୍ତ୍ରିକ ପ୍ରଧାନମନ୍ତ୍ରୀ ଦେଖାଦେବେ ।

## ଓଡ଼ିଶା ଦାବୀ ବଳବତ୍ତର ହେଲା

ଆମେ ସବୁ ପାର୍ଲିମେଣ୍ଟରେ ମୁଖ୍ୟ ସଭ୍ୟ ଭିତରେ ଗଣ୍ୟହୋଇଯିବାରୁ ଓଡ଼ିଶାର ମୁଖ୍ୟ ଦାବୀ ଗୁଡ଼ିକ ଉଠାଇବାରେ କିଛି ଅସୁବିଧା ହେଉନାହିଁ । କିଛି ମନ୍ତ୍ରୀଙ୍କୁ ଧରି ଲବି ମଧ୍ୟ କରାଯାଉଥିଲା । ଶ୍ରେଷ୍ଠ ଶ୍ରେଷ୍ଠ ନୂଆ ମନ୍ତ୍ରୀମାନେ ଶପଥ ନେବାବେଳକୁ ଆସି ଆଶୀର୍ବାଦ ଲୋଡ଼ୁଥିଲେ । ବହୁ ଲୋକଙ୍କର ଶ୍ରଦ୍ଧା ଓ ଭକ୍ତି ମିଳୁଥିଲା । ଇନ୍ଦିରାଗାନ୍ଧୀ ପ୍ରଧାନମନ୍ତ୍ରୀ ହେବା ପରେ ପରସ୍ପର ସହ ଯୋଗସୂତ୍ର ବୃଦ୍ଧି ପାଇଲା ସିନା ଊଣା ହୋଇନଥିଲା । ଓଡ଼ିଶାର ଦ୍ୱିତୀୟ ଇସ୍ପାତ୍ କାରଖାନା ଦାବୀ ଆମେ ସଫଳତା ସହକାରେ ଉଠାଇ ସରକାର ପାଖରୁ ଲୋକସଭାରେ ପ୍ରତିଶ୍ରୁତି ଆଦାୟ କରିପାରିଥିଲୁ । ଦୈନିକ 'ସମାଜ' ଏଥିରେ ଖୁବ୍ ସାହାଯ୍ୟ କରିଥିଲେ । ଓଡ଼ିଶାରେ ଝୋଟକଲ ସ୍ଥାପନାଲାଗି ବିଶେଷ ଆଲୋଚନା କରାଗଲା ଏବଂ ତହିଁରେ ଯେଉଁ ନିର୍ଦ୍ଦିଷ୍ଟ ପ୍ରତିଶ୍ରୁତି ମିଳିଥିଲା ତାର ଫଳସ୍ୱରୂପ କେତେ ବର୍ଷ ପରେ ଓଡ଼ିଶାର ଧାନମଣ୍ଡଳରେ ନୂତନ ଝୋଟକଲର ସ୍ଥାପନା କରାଗଲା । ୧୯୬୭ ମସିହାରେ ଓଡ଼ିଶାରେ ଯେଉଁ ପ୍ରଳୟଙ୍କରୀ ତୋଫାନ ହୋଇଥିଲା, ମୁଁ ଯାଇ ଅର୍ଥମନ୍ତ୍ରୀ ମୋରାରଜୀ ଦେଶାଇଙ୍କୁ ସନ୍ଧ୍ୟା ସାତଟାରେ ସମ୍ବାଦ ଦେଲାମାତ୍ରକେ ଦୁଇକୋଟି ଟଙ୍କା ପ୍ରାଥମିକ ସାହାଯ୍ୟ ମଞ୍ଜୁର ହେଲା-ବୋଲି ରାତି ଦଶଟାରେ ଟେଲିଫୋନ୍ କରି ସେ ମତେ ଜଣାଇଦେଲେ । ରାଷ୍ଟ୍ରପତି ଜାକିର ହୋସେନ୍ ଆନ୍ତର୍ଜାତିକ ସାହାଯ୍ୟ ନିବେଦନ କରିବା ନିମନ୍ତେ ଏବଂ ଆବଶ୍ୟକ ହେଲେ ଏକ ସାହାଯ୍ୟ କମିଟି ଗଢ଼ି ଚେୟାରମ୍ୟାନ୍ ହେବା ନିମନ୍ତେ ସମ୍ମତ ହୋଇଥିଲେ; ମାତ୍ର ସେ ତୁରନ୍ତ ଆସି ଅବସ୍ଥା ଦେଖିଯିବାକୁ ଚାହୁଁଥିଲେ । ଓଡ଼ିଶା ସରକାର ତାଙ୍କୁ ନିମନ୍ତ୍ରଣ କରିବା କଥା । ସେତେବେଳର ମୁଖ୍ୟମନ୍ତ୍ରୀଙ୍କୁ ମୁଁ ଆସି ଜଣାଇଲି । ମାତ୍ର ସେ ବୋଧହୁଏ ବିଚାର କଲେ ଯେ

ମୋ କଥାରେ ରାଷ୍ଟ୍ରପତିଙ୍କୁ ଡକାଇଦେଲେ ମୋର ରାଜନୀତିକ ମର୍ଯ୍ୟାଦା ବେଶି ବଢ଼ିଯିବ । ତେଣୁ ନାନା ଆଳ ଦେଖାଇ ବିଳମ୍ବ କରିଦେଲେ । ରାଷ୍ଟ୍ରପତି ବହୁ ଦିନ ପରେ ଆସିଲେ । ସେତେବେଳକୁ ସାହାଯ୍ୟ ଲାଗି ନିବେଦନ କରିବା ପରିସ୍ଥିତି ନଥିଲା । ରାଷ୍ଟ୍ରପତିଙ୍କ ସହ ମୋର ଯେତିକି ଆଲୋଚନା ହୋଇଥିଲା, ଆମେ ଯଦି କଥା ରକ୍ଷାକରିପାରିଥାଆନ୍ତୁ ତେବେ ଆନ୍ତର୍ଜାତିକ ଓ ଅନ୍ୟ ସୂତ୍ରରୁ ବହୁ ଅର୍ଥ ଆସି ଆମର ସେହି ବାତ୍ୟାଗ୍ରସ୍ତ ଅଞ୍ଚଳର ବହୁଗ୍ରାମର ପୁନର୍ବସତି ହୋଇପାରିଥାଆନ୍ତା ।

## ଶାସ୍ତ୍ରୀଜୀଙ୍କ ପରେ ଇନ୍ଦିରାଗାନ୍ଧୀ

ତାସ୍‌କେଣ୍ଟରେ ଶାସ୍ତ୍ରୀଜୀଙ୍କର ଅକାଳ ମୃତ୍ୟୁ ପରେ ପୁଣି ପ୍ରଧାନମନ୍ତ୍ରୀତ୍ୱ ଲାଗି ବିବାଦ ଉଠିଲା । କିନ୍ତୁ ପୂର୍ବଥର ପରି ରାଷ୍ଟ୍ରପତି ଡକ୍‌ଟର୍ ରାଧାକୃଷ୍ଣନ୍ ଗୁଲଜାରୀଲାଲ ନନ୍ଦାଙ୍କୁ ଅସ୍ଥାୟୀ ପ୍ରଧାନମନ୍ତ୍ରୀ ଭାବରେ ନିଯୁକ୍ତ କରିଦେଲେ । ତାପରେ ଯାହାସବୁ ଘଟିଥିଲା ବଡ଼ ଆମୋଦଦାୟକ । ଆମେ ବିରୋଧରେ ଥାଇ ଏହା ଖୁବ୍ ଉପଭୋଗ କରୁଥିଲୁ । ଏଥରକ ବିଚାରୀ ନନ୍ଦା ଖୁବ୍ ଲାଗିପଡ଼ିଲେ । ସେ ଆଶା କରୁଥିଲେ ଦୁଇଦୁଇଥର ଅଳ୍ପଦିନ ପାଇଁ ହେଲେ ସୁଦ୍ଧା ଯେତେବେଳେ ପ୍ରଧାନମନ୍ତ୍ରୀ ହେଲେଣି, ତାଙ୍କ କଥାକୁ ଗୁରୁତ୍ୱ ଦିଆଯିବ । ସେ ମଧ୍ୟ ବିଚାରୁଥିଲେ ଯେ ଇନ୍ଦିରା ଗାନ୍ଧୀଙ୍କ ସମର୍ଥକଙ୍କଠାରୁ ସହଯୋଗ ମିଳିବ । ଇନ୍ଦିରା ଗାନ୍ଧୀ ଯେତେବେଳେ ନିଜେ ମଇଦାନକୁ ବାହାରିଲେ, ତାଙ୍କର ସେ ଆଶା ମଉଳିଗଲା । ଦୁଇଜଣଙ୍କ ଭିତରେ ଘୋର ବିବାଦ ସୃଷ୍ଟି ହେଲା—(୧) ମୋରାରଜୀ ଦେଶାଇ ଏବଂ (୨) ଇନ୍ଦିରା ଗାନ୍ଧୀ । ମୋରାରଜୀ ଦେଶାଇ ଏହା ଘୋଷଣା କରିଦେଲେ ଯେ ପ୍ରଧାନମନ୍ତ୍ରୀ ପଦ ତାଙ୍କର ନ୍ୟାଯ୍ୟ ଦାବୀ ଏବଂ ସେ ଏଥରକ ତ୍ୟାଗ କରିବେ ନାହିଁ । ଏକ ମଜାର କଥା କୁହେଁ । ଲାଲବାହାଦୁର ଶାସ୍ତ୍ରୀଙ୍କ ଶୋକସଭାରୁ ଆମେ ସବୁ ଫେରୁଥିଲୁ । ଆମେରିକାର ରାଷ୍ଟ୍ରପତି ଆଇଜେନ୍ ହାଉଆର ପ୍ରଭୃତି ଆସିଥିଲେ । ଆମେ ବିରୋଧୀଦଳ ନେତାମାନଙ୍କୁ ଭାଷଣ ଦେବାକୁ ପଡ଼ିଲା । ଗୁଲଜାରିଲାଲ ନନ୍ଦା ସଭାପତି ହୋଇଥିଲେ । ମୋରାରଜୀଙ୍କୁ ବଡ଼ ପେଣ୍ଡାଲ ଉପରେ ବସିବାକୁ ସ୍ଥାନ ଦିଆଗଲା, ମାତ୍ର ଭାଷଣ ଦେବାକୁ ସୁଯୋଗ ଦିଆଗଲା ନାହିଁ । ଆମେ ସଭାରୁ ଫେରିଲାବେଳକୁ ମୁଁ ମୋରାରଜୀଭାଇଙ୍କ ସହିତ ତାଙ୍କ ଗାଡ଼ିରେ ଆସିଲି । ସେ ମତେ ମୋ ଘରେ ପହଞ୍ଚାଇଦେଇ ଗଲେ । (ମୋର ନିଜର ଗାଡ଼ି ନଥିଲା) ବାଟରେ ଆସୁଥିଲାବେଳେ ମୁଁ ଭାବୀ ପ୍ରଧାନମନ୍ତ୍ରୀ ବିଷୟ ଉଲ୍ଲେଖକଲି ଏବଂ ଇନ୍ଦିରା ଗାନ୍ଧୀଙ୍କ ନାମ ଜୋର୍‌ରେ ଉଠିଲାଣି ବୋଲି କହିଲି । ମୋରାରଜୀଭାଇ ତ ତତ୍‌କ୍ଷଣ ଜବାବ ଦେବାରେ ଅଭ୍ୟସ୍ତ—ସାଙ୍ଗେ ସାଙ୍ଗେ କହିଲେ, "It will be disaster"—ସର୍ବନାଶ ହୋଇଯିବ । ସେତେବେଳକୁ ଇନ୍ଦିରାଙ୍କ ପ୍ରତି ସମର୍ଥନ ବାହାରକୁ କିଛି ଜଣାପଡ଼ୁ ନଥିଲା । କିନ୍ତୁ କଂଗ୍ରେସର ଶକ୍ତିଶାଳୀ ପକ୍ଷ ମୋରାରଜୀଭାଇଙ୍କୁ ଚାହୁଁ ନଥିଲେ । କାମରାଜ କଂଗ୍ରେସ ସଭାପତି ଥିଲେ ଏବଂ ସେମାନେ ସବୁ ଏକ ଦୃଢ଼ ମେଣ୍ଟ ବାନ୍ଧିଥିଲେ, ଯାହାକୁ ସିଣ୍ଡିକେଟ୍

ବୋଲି କୁହାଯାଉଥିଲା । ସବୁ ପ୍ରଦେଶର ମୁଖ୍ୟମନ୍ତ୍ରୀମାନେ ମୋଟାମୋଟି ତାଙ୍କ ସହିତ ରହିଥିଲେ । କେବଳ ଓଡ଼ିଶାର ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ନଥାଇ ସୁଦ୍ଧା ଓଡ଼ିଶା କଂଗ୍ରେସର ପ୍ରକୃତ ଚାଳକ ବୋଲି ଧରାଯାଉଥିଲେ । ସେ ପ୍ରକାଶ୍ୟରେ ମୋରାରଜୀଙ୍କ ପାଇଁ ଲାଗିପଡ଼ିଲେ । ସିଣ୍ଡିକେଟ୍ ଲାଲବାହାଦୁରଙ୍କୁ ବି ସମର୍ଥନ ଦେଇଥିଲେ—ମାତ୍ର ସେ ତାଙ୍କର ସ୍ୱାଧୀନ ରାସ୍ତା ଧରିଲେ—ସିଣ୍ଡିକେଟ୍‌କୁ ଖାତିର୍ କରିନଥିଲେ । ସିଣ୍ଡିକେଟ୍‌ର ଭରସା ପାଇଲାନାହିଁ—ମୋରାରଜୀ ତାଙ୍କ କଥାଅନୁସାରେ ଚାଳିତ ହେବେ ବୋଲି । ଏଣେ ଅତି ଶୀଘ୍ର ପୁଣି ଏକ ନିର୍ବାଚନର ସମ୍ମୁଖୀନ ହେବାକୁ ହେବ । ଇନ୍ଦିରାଗାନ୍ଧୀ ସବୁ ଦୃଷ୍ଟିରୁ ଠିକ୍ ହେବେ ଏବଂ ଏହି ବଳିଷ୍ଠ ବ୍ୟକ୍ତିଙ୍କୁ ଏଡ଼ିଦେଇ କିଛି କରିବାଭଳି ଅବସ୍ଥାରେ ନଥିଲେ ବିଚାରି ସିଣ୍ଡିକେଟ୍ ଇନ୍ଦିରାଗାନ୍ଧୀଙ୍କ ସପକ୍ଷରେ ବାହାରିପଡ଼ିଲେ । ମୋରାରଜୀଭାଇ କୌଣସି ପ୍ରକାର ମିଳାମିଶା ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ନିଜ ସ୍ଥାନରେ ଦୃଢ଼ ରହିଲେ । ମାତ୍ର ସେ ପରାଜୟ ଲଭିଲେ । ଏହିରୂପେ ଇନ୍ଦିରାଗାନ୍ଧୀ, ଯାହାଙ୍କୁ ଲାଲବାହାଦୂର ଶାସ୍ତ୍ରୀ ତାଙ୍କ ମନ୍ତ୍ରିମଣ୍ଡଳରେ ତଥ୍ୟ ଓ ବେତାର ବିଭାଗ ମନ୍ତ୍ରୀ କରିଥିଲେ, ସେ ଦେଶର ପ୍ରଧାନମନ୍ତ୍ରୀ ହେବାର ସୁଯୋଗ ଲାଭକଲେ । ପ୍ରଥମ ଥର ଲାଗି ଲୋକସଭାର ସଭ୍ୟ ନଥିବା ଜଣେ ବ୍ୟକ୍ତିଙ୍କୁ ପ୍ରଧାନମନ୍ତ୍ରୀ କରାଗଲା । କାରଣ ଇନ୍ଦିରାଗାନ୍ଧୀ ସେତେବେଳକୁ ରାଜ୍ୟସଭାର ସଦସ୍ୟ ଥିଲେ ।

ମୋରାରଜୀଙ୍କର ଏତେ ଅଧିକ ସମର୍ଥନ ଦେଖି ସିଣ୍ଡିକେଟ୍ ବିଚାର କଲେ ଯେ ଗୋଟାଏ ମିଳାମିଶା କରିବେ—ଦୁହେଁ ତ କଂଗ୍ରେସର ଲୋକ ! ତେଣୁ ଖୁବ୍ ବିଚାର ହୋଇ ମୋରାରଜୀଙ୍କୁ ଉପପ୍ରଧାନମନ୍ତ୍ରୀ ଓ ଅର୍ଥମନ୍ତ୍ରୀ ରୂପେ ନିଯୁକ୍ତ କରାଗଲା । ମୋରାରଜୀଭାଇ ଏଥିରେ ସମ୍ମତି ଜଣାଇ ଯୋଗଦେଇଥିଲେ ।

## ୧୯୬୭ ନିର୍ବାଚନର ଫଳ

୧୯୬୭ରେ ଇନ୍ଦିରାଗାନ୍ଧୀଙ୍କ ପ୍ରଧାନମନ୍ତ୍ରୀତ୍ୱରେ ଭାରତର ତୃତୀୟ ସାଧାରଣ ନିର୍ବାଚନ ହେଲା । ମାତ୍ର କଂଗ୍ରେସଦଳ ପକ୍ଷରେ ସଂଖ୍ୟାଗରିଷ୍ଠତା ବଡ଼ କଷ୍ଟରେ ମିଳିଥିଲା । ତାପରେ ୧୯୬୯ରେ କଂଗ୍ରେସରେ ବିଭାଜନ ହୋଇ ମୋରାରଜୀ ଇତ୍ୟାଦି ବାହାରିଯିବାରୁ ଏହାର ସଂଖ୍ୟା ହ୍ରାସ ଘଟିଲା । ଏକ ଅଳ୍ପସଂଖ୍ୟକ ଦଳର ନେତୃତ୍ୱ ନେଇ ଇନ୍ଦିରାଗାନ୍ଧୀଙ୍କୁ ପ୍ରଧାନମନ୍ତ୍ରୀତ୍ୱ ଚଳାଇବାକୁ ପଡ଼ିଲା । ସେତେବେଳେ କେବଳ ଡ. ଏମ୍. କେ. ଧାଁନ ଏବଂ ଦକ୍ଷିଣପନ୍ଥୀ କମ୍ୟୁନିଷ୍ଟଙ୍କ ସମର୍ଥନରେ ହିଁ ସେ କୌଣସିପ୍ରକାରେ ସରକାର ଚଳାଇବାକୁ ସମର୍ଥ ହୋଇଥିଲେ ।

## ପ୍ରଦେଶମାନଙ୍କରେ ଅଣକଂଗ୍ରେସୀ ରାଜ

କେନ୍ଦ୍ରରେ କଂଗ୍ରେସର ଏଭଳି ଦୁର୍ବଳ ଅବସ୍ଥା ସାଙ୍ଗକୁ ତେଣେ ୯ଟି ରାଜ୍ୟରେ ଅଣକଂଗ୍ରେସୀ ମନ୍ତ୍ରିମଣ୍ଡଳ ସ୍ଥାପିତ ହୋଇଗଲା । ଦେଶରେ କଂଗ୍ରେସ ବିରୋଧୀ ପବନ ବହିଲା । ଆମ ଓଡ଼ିଶାରେ ବିଜୁପଟ୍ଟନାୟକ ଇତ୍ୟାଦିଙ୍କ କୁକାର୍ଯ୍ୟ ଯୋଗୁଁ କଂଗ୍ରେସର ଶୋଚନୀୟ ପରାଜୟ

ଘଟିଲା । ୧୯୬୧ର ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ କଂଗ୍ରେସ ଯେ ୧୪୦ ସ୍ଥାନ ଭିତରୁ ୮୧ ସ୍ଥାନ ଦଖଲ କରିପାରିଥିଲେ, ତାଙ୍କ ସଂଖ୍ୟା କମି ମୋଟେ ୩୧ରେ ପରିଣତ ହେଲା । ନିଜେ ବିଜୁପଟ୍ଟନାୟକ ମୋର ପାର୍ଲିମେଣ୍ଟାରୀ ନିର୍ବାଚନମଣ୍ଡଳୀର ପାଟକୁରା ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇଥିଲେ ଏବଂ ଆଶା କରୁଥିଲେ ଏହି ଗୋଟିକ ନିର୍ବାଚନମଣ୍ଡଳୀରେ ସେ ଏତେ ଅଧିକ ଭୋଟ ସଂଗ୍ରହ କରିବେ ଯଦ୍ଦ୍ୱାରା ମୋର ପାର୍ଲିମେଣ୍ଟକୁ ନିର୍ବାଚନ କଷ୍ଟସାଧ୍ୟ ହେବ । ମାତ୍ର ବାଧ୍ୟ ଏପରି ବାମହେଲା ଯେ, ପ୍ରଜା ସୋସଲିଷ୍ଟ ପାର୍ଟି ପ୍ରାର୍ଥୀ ସ୍କୁଲ ଶିକ୍ଷକ ଚନ୍ଦ୍ରଧର ଶତପଥୀଙ୍କଠାରୁ ପ୍ରାୟ ୧୭ ହଜାରରୁ ଅଧିକ ଭୋଟରେ ସେ ପରାସ୍ତ ହୋଇଗଲେ । ୧୯୬୭ ଫେବୃୟାରୀ ୨୫ ତାରିଖରେ ବିଜୁପଟ୍ଟନାୟକ ଭୁବନେଶ୍ୱରରୁ ମତେ କେନ୍ଦ୍ରାପଡ଼ା ଠିକଣାରେ ଏକ ଚିଠିରେ ଲେଖିଲେ—"ତୁମର ଅଲୌକିକ ବିଜୟ ନିମନ୍ତେ ମୁଁ ତୁମକୁ ଓ ତୁମ ପାର୍ଟିକୁ ଅଭିନନ୍ଦନ ଜଣାଉଛି ।" ( I must congratulate you and your party on your remarkable victory. ) ୧୯୬୭ ନିର୍ବାଚନରେ ଓଡ଼ିଶା ଆସେମ୍ବ୍ଲିରେ ପ୍ରଜା ସୋସଲିଷ୍ଟ ପାର୍ଟି ୧୦ ପରିବର୍ତ୍ତେ ୨୧ଟି ସ୍ଥାନ ପାଇଲା ଏବଂ ଲୋକସଭା ନିର୍ବାଚନରେ କଟକ ଜିଲ୍ଲାର ସବୁ ସ୍ଥାନଗୁଡ଼ିକ ଏବଂ ବାଲେଶ୍ୱରର ଗୋଟିଏ ସ୍ଥାନ ପ୍ରଜା ସୋସଲିଷ୍ଟ ପାର୍ଟିକୁ ମିଳିଲା । ମୁଁ କେନ୍ଦ୍ରାପଡ଼ା ନିର୍ବାଚନମଣ୍ଡଳୀରୁ ଗତ ଥର ମାତ୍ର ଯେ ୪୫୬ ଅଧିକ ଭୋଟ ପାଇଥିଲି, ଏଥରକ ମୋର ପ୍ରାୟ ୧ ଲକ୍ଷ ୧୧ ହଜାର ଭୋଟ ଅଧିକହେଲା । ମୋ ଛଡ଼ା ଓଡ଼ିଶାରୁ ଆଉ ଯେଉଁ ୩ ଜଣ ପ୍ରଜା ସୋସଲିଷ୍ଟ ପ୍ରାର୍ଥୀ ଭାବରେ ଲୋକସଭାକୁ ନିର୍ବାଚିତ ହୋଇଥିଲେ ସେମାନେ ହେଲେ ଶ୍ରୀ ଶ୍ରୀନିବାସ ମିଶ୍ର, ସମରେନ୍ଦ୍ର କୁଣ୍ଡୁ ଓ ବାଇଧର ବେହେରା । ଏଥରକ ଲୋକସଭାକୁ ଶ୍ରୀ କାମାଥ ନିର୍ବାଚିତ ହୋଇପାରିନଥିଲେ । ମୁଁ ପୁଣି ଲୋକସଭା ପ୍ରଜା ସୋସଲିଷ୍ଟ ପାର୍ଟିର ଦଳପତିରୂପେ ନିର୍ବାଚିତ ହେଲି ଏବଂ ନାଥ ପାଇ ହେଲେ ଉପଦଳପତି ।

## ଓଡ଼ିଶାରେ ସ୍ୱତନ୍ତ୍ର-ଜନକଂଗ୍ରେସ ସରକାର

ଓଡ଼ିଶାରେ ସ୍ୱତନ୍ତ୍ର ଓ ଜନକଂଗ୍ରେସଦଳ ମିଶି ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ସେମାନେ ଏକ ମିଳିତ କାର୍ଯ୍ୟକ୍ରମ ଭିତ୍ତିରେ ନିର୍ବାଚନ ଲଢ଼ାଇ କରିଥିଲେ ଏବଂ ଅଧିକ ସଂଖ୍ୟା ପାଇଯିବାରୁ ମିଳିତ ମନ୍ତ୍ରିମଣ୍ଡଳ ଗଢ଼ିପାରିଲେ । ଏହି ମିଳିତ ମନ୍ତ୍ରୀମଣ୍ଡଳରେ ଯୋଗ ଦେବା ନିମନ୍ତେ ପ୍ରଜା ସୋସଲିଷ୍ଟ ପାର୍ଟିକୁ ନିମନ୍ତ୍ରଣ କରାଯାଇଥିଲା; ମାତ୍ର ପାର୍ଟି ଏଥିରେ ଯୋଗ ନ ଦେବା ନିମନ୍ତେ ସ୍ଥିରକଲା ଏବଂ ସ୍ଥଳବିଶେଷରେ ସମସ୍ୟା ଯେପରି ସମର୍ଥନ ଦେବ, ମାତ୍ର ସ୍ୱାଧୀନ ଦଳ ହିସାବରେ କାର୍ଯ୍ୟ କରିବା ନିମନ୍ତେ ସ୍ୱିକୃତହେଲା ।

## ମୋର ପାର୍ଲିମେଣ୍ଟାରୀ ଜୀବନର ପରିସମାପ୍ତି

ମୁଁ ତ ପାର୍ଲିମେଣ୍ଟରେ ୧୯୭୦ ପର୍ଯ୍ୟନ୍ତ ରହିଲି । ଇନ୍ଦିରା ଗାନ୍ଧୀ ୧୯୭୦ ଡିସେମ୍ବର ୨୭ ତାରିଖରେ ପାର୍ଲିମେଣ୍ଟ ଭାଙ୍ଗିଦେଲେ । ଭାରତ ଇତିହାସରେ ଏଭଳି କରିବା ପ୍ରଥମ । ଏକ

ସଂଖ୍ୟାଲଘୁ ଦଳର ସରକାର ଚଳାଇବା ସହଜସାଧ୍ୟ ନଦେଖି ସେ ଏକ ସୁବିଧାବେଳ ଭିତ୍ତି ପାର୍ଲିମେଣ୍ଟ ଭାଙ୍ଗି ସାନ୍ତ ନିର୍ବାଚନ ଘୋଷଣାକଲେ ଏବଂ ଏହା ପରେ ଯେଉଁ ନିର୍ବାଚନ ହେଲା, ସେଥିରେ ପି.ଏସ୍.ପି. ପ୍ରାର୍ଥୀରୂପେ ମୋର ସେହି ପୂର୍ବ ନିର୍ବାଚନମଣ୍ଡଳୀ କେନ୍ଦ୍ରାପଡାରୁ ମୁଁ ଖୁବ୍ ଅଳ୍ପ ଭୋଟରେ ପରାସ୍ତ ହୋଇଗଲି । ଏହିଠାରୁ ମୋର ପାର୍ଲିମେଣ୍ଟାରୀ ଜୀବନର ପରିସମାପ୍ତି ଘଟିଛି ।

ଏକ ବିରୋଧୀଦଳର ନେତା ହୋଇ ସୁଦ୍ଧା ପଣ୍ଡିତଜୀଙ୍କ ପ୍ରଧାନମନ୍ତ୍ରୀଙ୍କଠାରୁ ମୁଁ ଯଥୋଚିତ ବ୍ୟବହାର ପାଇଛି । ମତେ ଉଚିତ ସମ୍ମାନ ଦିଆଯାଇଥିଲା । ଲାଲବାହାଦୁର ଶାସ୍ତ୍ରୀଙ୍କ ସହ ମୋର ଏକପ୍ରକାର ଘନିଷ୍ଠତା ଜମିଯାଇଥିଲା । ଇନ୍ଦିରା ଗାନ୍ଧୀ ମଧ୍ୟ ମୋପ୍ରତି ସର୍ବଦା ବନ୍ଧୁତ୍ୱପୂର୍ଣ୍ଣ ସହଯୋଗ ମନୋଭାବ ଦେଖାଇଥିଲେ ଯଦିଓ ତାଙ୍କ ରାଜନୀତିକୁ ଗ୍ରହଣ କରିବା ମୋ ପକ୍ଷରେ ସମ୍ଭବ ହୋଇନଥିଲା । ସେହିପରି କଂଗ୍ରେସଦଳର ପ୍ରାୟ ସବୁ ଜଣାଶୁଣା ନେତା ଏବଂ ବିରୋଧୀଦଳର ବନ୍ଧୁମାନଙ୍କଠାରୁ ମୁଁ ଅତି ସଶ୍ରଦ୍ଧ ବ୍ୟବହାର ପାଇଥିଲି । ୧୯୬୮ ମେ ପନ୍ଦର ତାରିଖରେ ମୋର ଯେଉଁ ଜଟିଳ ଅପରେସନ୍ ଅଲ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍‌ରେ ହୋଇଥିଲା, ସେତେବେଳେ ସତେକି ସାରା ପାର୍ଲିମେଣ୍ଟ ମତେ ଦେଖିବାଲାଗି ହାସପାତାଳରେ ପହଞ୍ଚିଥିଲେ । ମୋରାରଜୀଭାଇ ଉପପ୍ରଧାନମନ୍ତ୍ରୀ ଥିଲେ—ସେ ପ୍ରାୟ ଦୁଇଘଣ୍ଟା କାଳ ମୋ ପାଖରେ ବସି ଆଶ୍ୱାସନା ଦେଇ ଆସିଥିଲେ । ଏ ଅପରେସନ୍ ଏକ ସାଂଘାତିକ ଆକାର ଧାରଣ କରିଥିଲା । ପ୍ରାୟ ଶତକଡା ୨୫ ବଞ୍ଚିବାର ଆଶା ବୋଲି ଡାକ୍ତରମାନେ ଘୋଷଣା କରିଥିଲେ । ଏହା ଜାଣି ଭାରତ ସରକାର ମୋ ଲାଗି ପଶ୍ଚିମ ଜର୍ମାନୀର ଏକ ହାସ୍‌ପାତାଳରେ ଚିକିତ୍ସା ବ୍ୟବସ୍ଥା କରିଥିଲେ; ମାତ୍ର ମୁଁ ମଲେ ଦେଶ ଭିତରେ ମରିବି ବୋଲି କହି ଏ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଦେଲି । ଦିଲ୍ଲୀରେ ହିଁ ମୋର ଆତ୍ମୀୟସ୍ୱଜନ, ପ୍ରିୟଜନ ଓ ବନ୍ଧୁବାନ୍ଧବଙ୍କ ଭିତରେ ରହିବାକୁ ପସନ୍ଦକଲି । ଅପରେସନ୍ ସଫଳ ହେଲା । ୧୯୭୬ ଡିସେମ୍ବରରେ ମୁଁ ଯେତେବେଳେ ସାଂଘାତିକ ରୋଗଗ୍ରସ୍ତ, ଜୟପ୍ରକାଶଙ୍କ ସ୍ୱାସ୍ଥ୍ୟର ଅବସ୍ଥା ସଙ୍କଟାପନ୍ନ ଥିବା ସତ୍ତ୍ୱେ ସେ ସମ୍ବାଦ ପାଇ ପାଟନାରୁ ଭୁବନେଶ୍ୱରକୁ ତାର ପଠାଇଥିଲେ ଏବଂ ମୋ ଝିଅ ପାଖରୁ ବରାବର ମୋ ସ୍ୱାସ୍ଥ୍ୟର ଉନ୍ନତି ସମ୍ବାଦ ପାଉଥିଲେ । ନିଜ ପାର୍ଟି ସାଥୀମାନଙ୍କ ସାହାଯ୍ୟ ସହାନୁଭୂତି ବିଷୟ ଉଲ୍ଲେଖ ନ କରିବା ଭଲ । ଏ ସବୁକୁ ମୁଁ ମୋର ପାର୍ଲିମେଣ୍ଟାରୀ ଓ ସାଧାରଣ ଜୀବନରେ ସମସ୍ତଙ୍କ ସହ ସହୃଦୟତା ଓ ସମସ୍ତଙ୍କଠାରୁ ସ୍ନେହ ଶ୍ରଦ୍ଧା ପାଇଥିବାର ଦୃଷ୍ଟାନ୍ତ ବୋଲି ବିଚାରକରେ ।

ଓଡ଼ିଶାର ପୂର୍ବତନ ବାଚସ୍ପତି ଏବଂ ଦେଶପ୍ରେମୀ ବୃଦ୍ଧ ମୁକୁନ୍ଦ ପ୍ରସାଦ ଦାସ ଥରେ ବାଲେଶ୍ୱରରୁ ୮-୯-୬୬ରେ ମୋର ଦିଲ୍ଲୀ ଠିକଣାରେ ମୋ ପାଖକୁ ଏକ ପତ୍ର ଲେଖିଲେ । ସେ ଏବେ ମୃତ । ସେ ଲେଖିଥିଲେ "ଶ୍ରୀମାନ୍ ବାବୁ ସୁରେନ୍ଦ୍ର, ଅନାସ୍ଥା ପ୍ରସ୍ତାବଦ୍ୱାରା କଂଗ୍ରେସର ଶାନ୍ତି ସହଜରେ ଭଙ୍ଗ ହିଆଗଲା । ତେଣୁ ସେମାନଙ୍କର ଟିକିଏ ଚେତା ପଶିଲାପରି ଜଣାପଡୁଛି । ବିରୋଧୀଦଳ ଲୋକମାନଙ୍କର ସଙ୍ଗଠନ ଏ ସମୟରେ ଏକାନ୍ତ ଦରକାର । ସେମାନେ ସମସ୍ତେ ବାହାରିପଡନ୍ତୁ । ମଫସଲକୁ ବାହାରିପଡିବା ଉଚିତ ହେବ ବୋଲି ମୋର

ମନେହୁଏ । ଭାରତବାସୀଙ୍କର ଦୈନିକ ଆୟ ସମ୍ବନ୍ଧେ ଅନ୍ୟ ଆଡ଼େ ଯାହା ହେଉ ନା କାହିଁକି, ଓଡ଼ିଶାରେ ଜଣ ପିଛା ହାରାହାରି ବ୍ୟୟ ସ୍ଥିର କରିବା ପାଇଁ ପ୍ରତି ଜିଲାରେ ୧୦।୧୫ ଗ୍ରାମରେ ଗୋଟିଏ ନମୁନା ସର୍ଭେ ହେଉ ବୋଲି ଦାବୀ କର ଏବଂ ବେସରକାରୀ ଗୋଟିଏ କମିଟି ମଧ୍ୟ ବସାଇ ତଥ୍ୟ ସଂଗ୍ରହ କର । ଆମ ଓଡ଼ିଶା ସମ୍ବନ୍ଧେ ତୁମେ ଭଲକରି ତଥ୍ୟ ସଂଗ୍ରହ କର ।

ଓଡ଼ିଶାର ମେମ୍ବରମାନେ ଜଡ଼ ଓ ମୂକ, ଯାହା ତ ତୁ କରିବୁ । ତୋର ଓଡ଼ିଶାର ପ୍ରତି ଜିଲ୍ଲା ବୁଲି ଖବର ନେବା ଦରକାର ବୋଲି ମୁଁ ଭାବୁଛି ।

ତୁମମାନଙ୍କ ତରଫ ପ୍ରଚାର ମଧ୍ୟ ଜୋର୍‌ସୋର୍‌ରେ ହେବା ଉଚିତ । ଜବାହରଲାଲ ନେହରୁ ଏ ଦେଶକୁ ସର୍ବନାଶ କରିଦେଲେ ବୋଲି ମୋର ଦୃଢ଼ ଧାରଣା ।

ଫେରିଲାବେଳେ ଦିନେ ଦୁଇଦିନ ଏଠାରେ ରହି ଯିବୁ । ଆଶାକରେ ତୋର ସମସ୍ତ କୁଶଳ ।                    ଇତି, ସ୍ନେହାଧୀନ ଶ୍ରୀ ମୁକୁନ୍ଦପ୍ରସାଦ ଦାସ ।"

ଚିଠି ଲେଖିଲାବେଳକୁ ବୋଧହୁଏ ତାଙ୍କର ହାତ ଥରିବା ଆରମ୍ଭ କରିଥିଲା । ତଥାପି କରଣି ଗୁଣ୍ଠାରେ ଏ ଯେଉଁ ଆବେଗପୂର୍ଣ୍ଣ ପତ୍ର ସେ ଲେଖିଥିଲେ, ସେଥିରେ ଆମର ପୂର୍ବ-ପୁରୁଷମାନେ କିପରି ତୀବ୍ର ଭାବରେ ଦେଶର ଚିନ୍ତା କରୁଥିଲେ, ଏଇଥିରୁ ଜଣାପଡ଼େ ।

ଅନୁଗୋଳରୁ ୨୦।୫।୬୭ରେ ଶ୍ରୀ ନବକୃଷ୍ଣ ଚୌଧୁରୀ ଲେଖିଲେ—"ସୁରିଆ, × × × ସାଧାରଣ ନିର୍ବାଚନ ପରେ ନାନା ଦିଗରେ ସମାଜବାଦୀ ଆନ୍ଦୋଳନ ଆଗେଇବ ବୋଲି ମୁଁ ବହୁତ ଆଶା କରିଛି । ମୁଁ ନିଜେ ଦିନକୁଦିନ ଅତ୍ୟନ୍ତ ଅଧୀର ହେଇପଡ଼ୁଛି । ଯେତିକି ନିଜର କାମ କରିବାର ଶକ୍ତି କମୁଛି, ସେତିକି ଏ ଅଧୀରତା ବଢ଼ୁଛି । ମୁଁ ବହୁତ ଆଶା କରିଛି ଯେ ଆମ ଓଡ଼ିଶାରେ ତମେମାନେ ସମସ୍ତେ ମିଶି ହେଉ ବା ଅଲଗା ଅଲଗା ହୋଇ ହେଉ, ପରସ୍ପର ସହଯୋଗରେ କାମ ଆରମ୍ଭ କରିବ ଓ ମତେ ସବୁ କାମରେ ଲଗାଇବ ।"

## ଜୟପ୍ରକାଶଙ୍କ ଚିଠି

ସେହି ୧୯୬୭ ମସିହା ସେପ୍‌ଟେମ୍ବର ୪ ତାରିଖରେ ପାଟନାରୁ ଜୟପ୍ରକାଶଜୀ ତାଙ୍କର ଏକ ବିବୃତିର ଏକ ନକଲ ମତେ ପଠାଇବା ସଙ୍ଗେ ସଙ୍ଗେ ଲେଖିଲେ "ଯୁଗ ବିତିଗଲାଣି—ଆମର ଭେଟ ହୋଇପାରିନାହିଁ । ଏ ଦୋଷ ମୋର ବୋଲି ମୁଁ ସ୍ୱୀକାର କରୁଛି । ମୁଁ ଏଥରକ ଦିଲ୍ଲୀ ଗଲେ ଖବର ନେବି କିମ୍ବା ଆମେ ଦୁ'ଜଣ ଯେତେବେଳେ ଏକ ସମୟରେ ସହରରେ ଥିବା ନିଶ୍ଚୟ ଯେପରି ଦେଖାସାକ୍ଷାତ୍ ହେବା ।

ମୁଁ ଏହି ସୁଯୋଗରେ, ସାଧାରଣ ସମସ୍ୟାଗୁଡ଼ିକ ବିଷୟରେ ଆପଣ ଯେ ଉଚ୍ଚ ନୈତିକ ଆଚରଣ ଦେଖାଇଛନ୍ତି, ସେଥିଲାଗି ଆପଣଙ୍କୁ ସାଧୁବାଦ ଜ୍ଞାପନ କରୁଛି । ଓଡ଼ିଶାର ପି. ଏସ୍. ପି. ଯେ ଲୋଭ ସମ୍ବରଣ କରି ମିଳିତ ମନ୍ତ୍ରିମଣ୍ଡଳରେ ଯୋଗ ଦେବାକୁ ନିବୃତ୍ତ

ରହିଲ ଏବଂ ମନ୍ତ୍ରିମଣ୍ଡଳକୁ ସମସ୍ୟା ଦେଖି ସମର୍ଥନ ଦେବାର ନୀତି ସ୍ଥିର କଲା, ସେଥିରେ ମୁଁ ବିଶେଷଭାବରେ ସୁଖୀ ।

ମୁଁ ଆଶା କରୁଛି ଆପଣ ଓ ଝିଅ ଭଲ ଥିବେ । ଜୟପ୍ରକାଶ ।

ମୁଁ ପାର୍ଲିମେଣ୍ଟରେ ଥିବା ଅବସ୍ଥାରେ ଯେତେ ଆନ୍ତର୍ଜାତିକ ପାର୍ଲିମେଣ୍ଟାରି ଇଉନିୟନ୍ ସମ୍ମିଳନୀ ହୋଇଥିଲା, ସେଠାକୁ ମୁଁ ପ୍ରତିନିଧି ରୂପେ ଯାଇଥିଲି । ତାହାଛଡ଼ା ଇଉରୋପ ଓ ଆମେରିକାର ବହୁ ସୋସଲିଷ୍ଟ ସଙ୍ଗଠନ ସହ ସମ୍ପର୍କ ସ୍ଥାପିତ ହୋଇପାରିଥିଲା । ଆମେରିକା ସହ ଆମର ଆଗରୁ ବିଶେଷ ସୁସମ୍ପର୍କ ନଥିଲା । ୧୯୬୩ ମସିହାରେ ପ୍ରଥମ ଭାରତୀୟ ପାର୍ଲିମେଣ୍ଟାରି ପ୍ରତିନିଧିଦଳ ଆମେରିକା ସରକାର ପାଖରୁ ନିମନ୍ତ୍ରଣ ପାଇ ୫ ସପ୍ତାହ କାଳ ଆମେରିକାର ବିଭିନ୍ନ ସହର ବୁଲିଥିଲେ ଏବଂ ରାଷ୍ଟ୍ରପତି କେନେଡ଼ି ଓ ଅନ୍ୟ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଭେଟିଥିଲେ । ଏହି ଡେଲିଗେସନ୍‌ରେ ଥିଲେ—ସର୍ଦ୍ଦାର ହୁକମ୍ ସିଂହ (ସ୍ପିକର୍) ନେତା, ସଦସ୍ୟ ଥିଲେ ରାଜ୍ୟସଭାର ଡେପୁଟି ଚେୟାରମ୍ୟାନ୍ ଶ୍ରୀମତୀ ଭାଓ୍ୟଲେଟ ଆଲ୍‌ଭା, ଆର୍. କେ. ଖାଡିଲକାର, ଡାଇଓ୍ୱାନ୍ ଚନ୍ଦ୍ର ଶର୍ମା, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଗୋପାଳ ସ୍ୱରୂପ ପାଠକ ଏବଂ ସେକ୍ରେଟାରୀ ଥିଲେ ଲୋକସଭାର ସେକ୍ରେଟାରୀ ମହେଶ୍ୱର ନାଥ କାଉଲ । ଏଥିଭିତରୁ କେବଳ ମୁଁ, ହୁକମ୍ ସିଂହ, ଜି. ଏସ୍. ପାଠକ ଓ ଏମ୍. ଏନ୍. କାଉଲ ଜୀବିତ ଅଛୁ । ଗୋପାଳ ସ୍ୱରୂପ ପାଠକ ପରେ ଆଇନମନ୍ତ୍ରୀ ଓ ଭାରତର ଉପରାଷ୍ଟ୍ରପତି ହୋଇଥିଲେ । ସର୍ଦ୍ଦାର ହୁକମ୍ ସିଂହ ସ୍ପିକର୍‌ରୁ ଗଲା ପରେ ରାଜସ୍ଥାନର ଗଭର୍ଣ୍ଣର ହୋଇଥିଲେ । ଏବେ ଦିଲ୍ଲୀରେ ଅବସର ଜୀବନ ବିତାଉଛନ୍ତି ।

□□□

## ୧୬ । ବିଦେଶ ଗସ୍ତ ଆରମ୍ଭ

ବାସ୍ତବିକ ମୋର ପ୍ରଥମ ବିଦେଶ ଗସ୍ତ ହୋଇଥିଲା ୧୯୫୩ ଜାନୁଆରୀ ମାସରେ । ସେତେବେଳେ ବ୍ରହ୍ମଦେଶର ରେଙ୍ଗୁନ୍‌ଠାରେ ହୋଇଥିବା ଏସିଆ ସୋସିଆଲିଷ୍ଟ ସମ୍ମିଳନୀରେ ଏକ ପ୍ରତିନିଧି ରୂପେ ମୁଁ ଯୋଗ ଦେଇଥିଲି । ଆମ ଓଡ଼ିଶାର ଆଉ କେତେକ ସାଥି ମଧ୍ୟ ଏଠାରେ ଯୋଗଦେଇଥିଲେ । ସେଠି ଯାହା ଘଟିଥିଲା ଏବଂ ତା'ପରେ ମୁଁ ପୃଥିବୀର ବହୁ ଦେଶକୁ ଯେ ଯାଇଥିଲି, ସେ ଦେଶ ସମ୍ବନ୍ଧରେ ଯାହା ବି ଡାଏରୀ ଆଦିରେ ଲେଖିଥିଲି କିମ୍ବା କାଗଜପତ୍ର ସଂଗୃହୀତ ହୋଇ ରହିଛି, ସେ ସମ୍ବନ୍ଧରେ ବିସ୍ତୃତଭାବରେ ଲେଖିହେବନାହିଁ । ତେବେ ଏହା ବି ମୋର ରାଜନୀତିକ କାର୍ଯ୍ୟର ଅଙ୍ଗ ହୋଇଥିବାରୁ ସଂକ୍ଷେପରେ କିଛି ଉଲ୍ଲେଖ କରିବି ।

ସୋସିଆଲିଷ୍ଟ ସଙ୍ଗଠନ ଏବଂ ସୋସିଆଲିଷ୍ଟ ଆନ୍ତର୍ଜାତିକର କର୍ମକର୍ତ୍ତାଙ୍କ ବ୍ୟତୀତ ମୋର ଅନ୍ୟ କୌଣସି ଦେଶ ସହ କିଛି ସମ୍ପର୍କ ପ୍ରତିଷ୍ଠା ହୋଇନଥିଲା । ମୁଁ ମଧ୍ୟ ସାଧାରଣଭାବରେ ଏଠାରେ ଥିବା ରାଷ୍ଟ୍ରଦୂତ ଅଫିସଗୁଡ଼ିକ ସହିତ ବେଶି ପରିଚିତ ନଥିଲି ଓ ସେମାନଙ୍କ ପାଖରୁ ଆସୁଥିବା ନିମନ୍ତ୍ରଣ ଆଦି ଖୁବ୍ କମ୍ ରକ୍ଷାକରୁଥିଲି । ପାର୍ଲିମେଣ୍ଟର କେତେକ ସଭ୍ୟ ଅତି ଲଜ୍ଜାକର ଭାବରେ ବିଦେଶୀ ରାଷ୍ଟ୍ରଦୂତ ଅଫିସର୍‌ମାନଙ୍କ ସହ ଘନିଷ୍ଠତା କରି ବିଦେଶଯାତ୍ରାର ଯୋଗାଡ଼ କରୁଥିଲେ । ଏ ବିଷୟଟି ଖୁବ୍ ସମାଲୋଚିତ ହୁଏ; ମାତ୍ର ବିଶେଷଭାବରେ କଂଗ୍ରେସ ଓ କମ୍ୟୁନିଷ୍ଟ ଦଳର ସଭ୍ୟ ଏପରି ଅଶୋଭନୀୟ ଆଚରଣ କରୁଥିଲେ ସୁଦ୍ଧା ତାଙ୍କୁ କେହି ରୋକୁନଥିଲେ । ମୋ ପାଖକୁ ଅବଶ୍ୟ ଦୂତାବାସମାନଙ୍କରୁ ବହୁ ଉଚ୍ଚପଦସ୍ଥ ଅଫିସର ବିଭିନ୍ନ କାର୍ଯ୍ୟ ସଂକ୍ରାନ୍ତରେ ଆସୁଥିଲେ; ମତେ ଭେଟୁଥିଲେ, ଏଠା ରାଜନୀତିର ଭିତିରି ସମ୍ବାଦ ଜାଣିବାଲାଗି ଉଦ୍ୟମ କରୁଥିଲେ; ମାତ୍ର ମୋର ରାଷ୍ଟ୍ରଦୂତଙ୍କ ଅଫିସ ଆଡ଼କୁ ପ୍ରାୟ ଯିବା ଆସିବା ନଥିଲା । କେବଳ ୧୯୫୨ ମସିହାରେ ବ୍ରିଟିଶ ରାଜଦୂତ ଅଫିସରୁ Victor C. Martin କଟକ ଆସିଥିଲେ—ସେହିକାଳରୁ ତାଙ୍କ ସହିତ ପରିଚୟ ଥିଲା । ଏବେ ସେ ଅବସର ନେବା ପରେ ବି ମୋ ସହିତ ସମ୍ପର୍କ ରଖିଛନ୍ତି । ସେ ହେଲେ ମୋର ବ୍ୟକ୍ତିଗତ ବନ୍ଧୁ ।

ମାର୍ଟିନ୍ କ୍ରମଶଃ ଉନ୍ନତି କରି ଦିଲ୍ଲୀରେ ବ୍ରିଟିଶ ହାଇକମିସନର ଅଫିସରେ ସିନିଅର୍ ସେକ୍ରେଟାରୀ ହୋଇପାରିଥିଲେ । ଏହା ୧୯୫୮ ମସିହା କଥା । ତା'ପରେ ତାଙ୍କର ଆହୁରି ପଦୋନ୍ନତି ହୋଇଥିଲା ଏବଂ ବିଭିନ୍ନ ଜାଗାରେ ରହିଥିଲେ । ସେ ୧୯୫୮ରେ ମତେ ଆସି କହିଲେ ଯେ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ସାଧାରଣତଃ ରାଜନୀତିକ ଓ ସାମ୍ବାଦିକମାନଙ୍କୁ ତାଙ୍କ ଦେଶ ପରିଦର୍ଶନ ନିମନ୍ତେ ନିମନ୍ତ୍ରଣ ଦେଉଥିଲେ ଓ ବ୍ରିଟିଶ ହାଇକମିସନର୍‌ଙ୍କ ଇଚ୍ଛା ଏ

ବର୍ଷ ମତେ ନିମନ୍ତ୍ରଣ କରିବା ନିମନ୍ତେ । ଏପରି ସବୁ ଯାଆନ୍ତି ବୋଲି ତ ମୁଁ ଜାଣିନଥିଲି, ଏବଂ କେବେ ବାହାରକୁ ଯିବାର କଳ୍ପନା ବି କରିନଥିଲି । ଯିବା ଉଚିତ ହେବ କି ନାହିଁ ଜଣାନଥିଲା । କେତେକ ସୋସଲିଷ୍ଟ ବନ୍ଧୁଙ୍କ ସହ ପରାମର୍ଶ କରି ସମ୍ମତ ଦେଲି । ମୁଁ ସେତେବେଳକୁ ନିଖିଳ-ଭାରତ ପ୍ରଜା ସୋସଲିଷ୍ଟ ପାର୍ଟିର ଡେପୁଟି ଚେୟାରମ୍ୟାନ୍ ଏବଂ ଲୋକସଭାରେ ପାର୍ଟିର ସେକ୍ରେଟାରୀ । ତାପରେ ୧୯୫୮ ସେପ୍ଟେମ୍ବର ୫ ତାରିଖରେ ମୋ ପାଖକୁ ଏକ ପତ୍ର ଆସିଲା—ଲେଖାଥିଲା, "You have been invited to spend approximately one month in the United Kingdom this autumn, as the guest of Her Majesty's Government." ଇଂରେଜ ସରକାରଙ୍କର ଅତିଥିରୂପେ ଏକମାସ ବିତାଇବା ନିମନ୍ତେ ନିମନ୍ତ୍ରଣ କରାଗଲା । ଏପରି ଚିଠି ଆସିବା ମୂଳରେ ବି ଏକ ବିଷୟ ରହିଥିଲା । ଏମିତି ଢଙ୍ଗରେ କୁଆଡ଼େ ଅନ୍ୟମାନଙ୍କୁ ନିମନ୍ତ୍ରଣ ଯାଉନଥିଲା ବୋଲି ଶୁଣିଲି । ମାର୍ଟିନ୍ ଆସି ମତେ ଯେତେବେଳେ ପ୍ରଥମେ ଏକଥା ଜଣାଇଥିଲେ, ମୁଁ ତାଙ୍କୁ ସ୍ପଷ୍ଟ କହିଦେଇଥିଲି ଯେ କମନ୍‌ଓ୍ୱେଲ୍‌ଥରୁ ଭାରତ ବାହାରଆସିବା ନିମନ୍ତେ ମୁଁ ପାର୍ଲିମେଣ୍ଟରେ ଦାବୀକରୁଥିବାବେଳେ ସେହି ବିଭାଗର ନିମନ୍ତ୍ରଣରେ ମୋ ପକ୍ଷରେ ବ୍ରିଟେନ୍‌କୁ ଯିବା ମତବିଗର୍ହିତ ହେବ । ତେଣୁ ସେ ମତେ ସିଧା-ସଳଖ ସରକାରର ଅତିଥି ଭାବରେ ନିମନ୍ତ୍ରଣ କରିଥିଲେ ଏବଂ ବ୍ରିଟେନ୍‌ର ବିଭିନ୍ନ ସ୍ଥାନ ପରିଦର୍ଶନ ନିମନ୍ତେ ଅକ୍‌ଟୋବର ୮ ତାରିଖରୁ ନଭେମ୍ବର ୪ ତାରିଖ (୧୯୫୮) ପର୍ଯ୍ୟନ୍ତ ଏକ କାର୍ଯ୍ୟକ୍ରମ ପ୍ରସ୍ତୁତ କରି ସେଥିସଙ୍ଗେ ପଠାଇଲେ । ତାଙ୍କର ବିଧି ଅନୁସାରେ ଭାରତର ବୈଦେଶିକ ବିଭାଗକୁ ଏ ବିଷୟ ଜଣାଇଦେଲେ ।

## ଭାରତ ସରକାରଙ୍କର ନୀଚ ଓ ବିଚିତ୍ର ବ୍ୟବହାର

ଏମ୍. ପି.ମାନେ ସାଧାରଣଭାବରେ ଡେଲିଗେସନ୍ ବା ଅନ୍ୟ ଭାବରେ ବିଦେଶକୁ ଯିବାକୁ ଇଚ୍ଛା କଲେ ପାର୍ଲିମେଣ୍ଟାରୀବିଭାଗ ମନ୍ତ୍ରୀଙ୍କ ଦ୍ୱାରା ଅନୁଗୃହୀତ ହେଉଥିଲେ । କେତେକ ସିଧା ଯାଇ ରାଷ୍ଟ୍ରଦୂତମାନଙ୍କ ପାଖରେ ଉଦ୍ୟମ କରୁଥିଲେ—ଏଥିରେ ବିଶେଷ ଭାବରେ କଂଗ୍ରେସ-ଦଳର ସଦସ୍ୟ ବେଶି ଯାଉଥିଲେ । ମୁଁ ଏଣେ କାହାରିକି, ଏପରିକି ପ୍ରଧାନମନ୍ତ୍ରୀଙ୍କି ମଧ୍ୟ ଅନୁରୋଧ କରିନଥିଲି କିମ୍ବା ଜଣାଇନଥିଲି; ଅଥଚ ମତେ ନିମନ୍ତ୍ରଣ ଆସିଗଲା । ଏହା ଦେଖି ସେମାନେ ବିଚାରିଲେ ମୁଁ ଦଉଡ଼ାଦଉଡ଼ି କରି ଏପରି ଯୋଗାଡ଼ କରିଥିବି । ବିରୋଧୀଦଳ ମୁଣ୍ଡରେ ଅପବାଦ ବୋଳିବା ନିମନ୍ତେ ତାଙ୍କୁ ବାଟ ମିଳିଗଲା ବୋଲି ବିଚାରିଲେ । ସତ୍ୟନାରାୟଣ ସିଂ ଥିଲେ ପାର୍ଲିମେଣ୍ଟାରୀ ବିଭାଗର ମନ୍ତ୍ରୀ; ସେ ପଣ୍ଡିତ ନେହରୁଙ୍କ ସହ ପରାମର୍ଶ କରିଥିଲେ କି ନାହିଁ ମୁଁ ଆଉ ଖବର ନେଇନଥିଲି—ସେ ଆସି ଆମ ଦଳର ନେତା ଆଚାର୍ଯ୍ୟ କୃପାଲାନୀଙ୍କ ଆଗରେ ମୋର ଏପରି ପ୍ରଚେଷ୍ଟାର ନିନ୍ଦା କଲେ ଏବଂ ଏତଦ୍ୱାରା ଭାରତର ସମ୍ମାନରେ ଆଞ୍ଚ ଆସିଲା ବୋଲି କହିଲେ । ମୁଁ କେବଳ ନିମନ୍ତ୍ରଣ ପାଇଥିଲି ।

ପାସ୍‌ପୋର୍ଟ ଆଦି କରାଇନଥିଲି—ତେଣୁ ଆଗ୍ରହୀ ଡିପାଲାମା କିମ୍ବା ଅନ୍ୟ ବନ୍ଧୁଙ୍କୁ ଜଣାଇନଥିଲି । ଦାଦା ଡିପାଲାମା ପରିଷ୍କାର ଜଣାଇଦେଲେ—ଦ୍ୱିବେଦୀ ଏପରି ବ୍ୟକ୍ତି ନୁହେଁ—ସେ ସାଧାରଣତଃ ଏପରି ଧନ୍ଦାରେ ଲିପ୍ତନଥାଏ; ତୁମ କଥାରେ ବିଶ୍ୱାସ କରିବା କଷ୍ଟ । ତା'ପରେ ମୋଠାରୁ ସବୁ କଥା ଶୁଣି ସେ ଏକ କଡ଼ା ଚିଠି ଲେଖିଦେଲେ । ଏହା ପରେ ଅବଶ୍ୟ ମୋର ଏଥରକ ବ୍ରିଟେନ୍ ଓ ଇଉରୋପ ଗସ୍ତଟି ବଡ଼ ସୁରୁଖୁରୁରେ ଗଡ଼ିକଲା । ମୋର ପ୍ରଥମ ବିଦେଶ ଯାତ୍ରା, ତେଣୁ ମୁଁ ଟିକିଏ ଅଧିକ ସଜାଗ ରହିଥିଲି । ବ୍ରିଟେନ୍‌ରେ ଦିନ ଏକମାସ ବିତିଗଲା—ବାକି ଅନ୍ୟ ଦେଶଗୁଡ଼ିକ, ଯଥା ଇଟାଲୀ, ସୁଇଜରଲଣ୍ଡ, ଫ୍ରାନ୍‌ସ, ପଶ୍ଚିମ ଜର୍ମାନୀ, ଅଷ୍ଟ୍ରିଆ, ଯୁଗୋସ୍ଲାଭିଆ ଓ ଇସ୍ରାଇଲ ଆଦି ଦେଶରେ ବୁଲି ଭାରତ ଫେରିବା-ବେଳକୁ ଅଢ଼େଇମାସ ଲାଗିଗଲା । ପଶ୍ଚିମ ଜର୍ମାନୀ ଗସ୍ତ କରିଥିଲି । ଇଂଲଣ୍ଡ ପରି, ସେ ଦେଶ ସରକାରର ଅତିଥିଭାବରେ ଅନ୍ୟ ସବୁ ଦେଶରେ ଉକ୍ତ ଦେଶର ସୋସିଆଲିଷ୍ଟ ପାର୍ଟିଗୁଡ଼ିକର ଅତିଥି ହୋଇଥିଲି । ଭାରତସରକାରଠାରୁ କିଛି ନିର୍ଦ୍ଦେଶ ଯାଇଥିଲା କି ନାହିଁ ଜଣାନାହିଁ, ତେବେ ପ୍ରାୟ ଏସବୁ ଦେଶରେ ଥିବା ରାଷ୍ଟ୍ରଦୂତ ରାତ୍ରିଭୋଜ, ମଧ୍ୟାହ୍ନଭୋଜନ କିମ୍ବା ଚାହାପାନ ବ୍ୟବସ୍ଥା କରିଥିଲେ ଏବଂ ଉକ୍ତ ଦେଶର ଉଚ୍ଚ ସରକାରୀ କର୍ତ୍ତା, ଏପରିକି ମନ୍ତ୍ରୀମାନଙ୍କୁ ମଧ୍ୟ ସେହି ଭୋଜିକୁ ନିମନ୍ତ୍ରଣ କରି ମୋ ସହିତ ପରିଚୟ କରାଇଦେଇଥିଲେ । ଏହି ଗସ୍ତବେଳେ ମୁଁ ଲଣ୍ଡନରେ ବିଜୟଲକ୍ଷ୍ମୀ ପଣ୍ଡିତ, ପ୍ୟାରିସ୍‌ରେ କେ. ଏମ୍. ପାନିକର ଏବଂ ଯୁଗୋସ୍ଲାଭିଆରେ ନବାବ ଆଲିଭରଜଙ୍ଗ ଆଦିଙ୍କୁ ଭେଟିଥିଲି । ଅଷ୍ଟ୍ରିଆ ଓ ଇଟାଲୀ ରାଷ୍ଟ୍ରଦୂତଙ୍କ ନାମ ସ୍ମରଣ ନାହିଁ—ସେମାନେ ଖୁବ୍ ବଡ଼ ବଡ଼ ପାର୍ଟିର ଆୟୋଜନ କରିଥିଲେ । ଇଟାଲୀ ରାଷ୍ଟ୍ରଦୂତଙ୍କ ପରିବାର ସହ ଏକ ରାତି କଟାଇଥିଲି । ମୋର ଏହି ଗସ୍ତବେଳର ଡାଇରୀଟି କେଉଁଠି ହଜିଯାଇଥିବାରୁ ମୁଁ ଅସୁବିଧାରେ ପଡ଼ୁଛି ।

## ମାଲକମ୍ ମାକ୍‌ଡୋନାଲ୍‌ଡଙ୍କ ଚିଠି

ଦିଲ୍ଲୀରେ ବ୍ରିଟିଶ୍ ହାଇକମିସନର୍ ଥିଲେ ମାଲକମ୍ ମାକ୍‌ଡୋନାଲ୍‌ଡ । ସେ ବ୍ରିଟେନ୍‌ର ପ୍ରାକ୍ତନ ପ୍ରଧାନମନ୍ତ୍ରୀ ରାମ୍‌ସେ ମାକ୍‌ଡୋନାଲ୍‌ଡଙ୍କର ପୁଅ । ନିଜେ ମଧ୍ୟ ଲେବର ପାର୍ଟିର ସଭ୍ୟ ଥିଲେ । ସେ ମୋ ସାଙ୍ଗରେ କଥାବାର୍ତ୍ତା କଲେ ଏବଂ ବ୍ରିଟେନ ଗସ୍ତବେଳେ ଲେବର୍ ପାର୍ଟି ସହିତ ସମ୍ପର୍କ ରଖିବା ନିମନ୍ତେ କହିଲେ । ସେବେର ବ୍ରିଟିଶ ଲେବର୍ ପାର୍ଟିର ଜେନେରାଲ୍ ସେକ୍ରେଟେରୀ ମର୍ଗାନ୍ ଫିଲିପ୍‌ସଙ୍କ ପାଖକୁ ଗୋଟିଏ ପତ୍ର ବି ଲେଖିଥିଲେ ଏବଂ ତାର ଏକ କପି ମୋ ପାଖକୁ ପଠାଇଥିଲେ । ସେ ଲେଖିଥିଲେ—
"My appreciation of Mr. Dwivedi's qualities is sincere; and if you and others in the Labour Party can have some talks with him, I am sure the excellent relations between the Praja Socilist and the Labour Party will

benefit." ମୋ ସାଙ୍ଗରେ କଥାବାର୍ତ୍ତା ଫଳରେ ପ୍ରଜା ସୋସଲିଷ୍ଟ ଓ ଲେବର ପାର୍ଟି ଭିତରେ ସମ୍ପର୍କ ବଢ଼ିବ ବୋଲି ଲେଖିଦେଇଥିବାରୁ ବ୍ରିଟେନରେ ମୋର ଦ୍ୱିତୀୟ ଥରରେ ଲେବର୍ ପାର୍ଟିର ମୁଖିଆ ସଭ୍ୟଙ୍କୁ ଡକାଇ ମର୍ଗାନ ମୋର ପରିଚୟ କରାଇଦେଲେ ଏବଂ ବ୍ରିଟେନ୍‌ରେ ଯେଉଁସବୁ ସହର ବା ବିଶ୍ୱବିଦ୍ୟାଳୟ ଆଦିକି ଗଲି, ସେଠାର ସରକାରୀ ପ୍ରୋଗ୍ରାମ୍ ସାଙ୍ଗକୁ ଲେବର୍ ପାର୍ଟି ପ୍ରତି ସନ୍ଧ୍ୟାରେ ଏକ କକ୍‌ଟେଲ ପାର୍ଟି ଦେଉଥାଏ । ଏହି କକ୍‌ଟେଲ୍ ପାର୍ଟିଗୁଡ଼ିକରେ ଭାରି ମଜିକ ହେଉଥିଲା । ସେଠାରେ କେବଳ ମଦ ହିଁ ଚଳେ । ମୁଁ ସେତେବେଳକୁ ସୁଦ୍ଧା ପର୍ଯ୍ୟନ୍ତ ପିଉନଥିଲି । ମତେ ପଚାରିଲେ ମୁଁ ସପୁରି ରସ ପାଇଁ କହେ । ତେଣୁ ପ୍ରାୟ ସବୁ ପାର୍ଟିରେ ଏହା ଏକ ପରିହାସର ବିଷୟ ହେଉଥିଲା ଏବଂ ସେମାନେ ପରସ୍ପରକୁ ପଚରାପଚରି କରୁଥିଲେ—ସପୁରିରସ ପିଇବ ? ଇତ୍ୟାଦି । ମଦ ପିଇପାରିବି ନାହିଁ କି ଗୋମାଂସ ଖାଇବି ନାହିଁ ବୋଲି ମୁଁ ଆଗରୁ କହି ଦେଇଥିଲି । ତାହା ଛଡ଼ା ସିଗାରେଟ୍ ମଧ୍ୟ ପିଉନଥିଲି । ତେଣୁ ଇଂଲଣ୍ଡରେ ସରକାରର ମୁଁ ହେଲି ସବୁଠାରୁ ଶସ୍ତା ଅତିଥି; କାରଣ ମଦ ଓ ସିଗାରେଟ୍ ଦର ଥିଲା ସର୍ବାଧିକ । ମଦ ନପିଉଥିବାରୁ କେବଳ ଦୁଇଟି ସ୍ଥାନରେ ମୁଁ ଟିକିଏ ମୁସ୍କିଲରେ ପଡ଼ିଥିଲି । ମୁଁ ସବୁଠି କୃଷକଙ୍କ ଘର, କୃଷି ଓ ଗ୍ରାମାଞ୍ଚଳ ଦେଖିବାଲାଗି ବିଶେଷ ପ୍ରୋଗ୍ରାମ୍ ରଖିଥାଏ । ମୋର ସୋସଲିଷ୍ଟ ବନ୍ଧୁଙ୍କ ସହିତ ଇଟାଲୀରେ ରୋମ୍ ନିକଟସ୍ଥ କୃଷକ ପରିବାରକୁ ଗଲି । ମୋର ବନ୍ଧୁ ଆଗରୁ ସତର୍କ କରିଦେଇଥିଲେ—ତାଙ୍କ ଘରେ ମଦ ଯାଚିଲେ ନ ପିଇବି ଯଦି ସେମାନେ ଅପମାନିତ ବୋଧକରିବେ ଏବଂ ଭାରତର ଜଣେ ଉଚ୍ଚସ୍ଥାନୀୟ ଲୋକ ଆମ ଘରେ ପାଣି ଛୁଇଁଲାନାହିଁ ବୋଲି ଦୋଷଦେବେ । ମୁଁ ବଡ଼ ଧର୍ମସଙ୍କଟରେ ପଡ଼ିଲି । ସେ ପରିବାର ନିଜ ମଦ ନିଜେ ତିଆରିକରୁଥିଲେ ଏବଂ ସେଥିଲାଗି ଚୁଲି, ଅଙ୍ଗୁର ଓ ଅନ୍ୟ ସରଞ୍ଜାମ ଆମେ ଯେଉଁ ଟେବଲ ପାଖରେ ବସି କଥାବାର୍ତ୍ତା ହେଲୁ, ସେହିଠାରେ ହିଁ ରଖା-ହୋଇଥିଲା । ମଦ ତିଆରିର ପ୍ରକ୍ରିୟା ମୁଁ ତାଙ୍କଠାରୁ ବୁଝି ଏହାର ମୂଳଜିନିଷ ଅଙ୍ଗୁର ଖାଇବି ବୋଲି କହି ଆଉ ମଦ ପିଇଲି ନାହିଁ । ସେମାନେ ଖୁସିହେଲେ । ମାତ୍ର ପ୍ରକୃତ ଅସୁବିଧାରେ ପଡ଼ିଥିଲି ଯେଉଁଠି ଷ୍ଟେଟ୍ ବା କୌଣସି ଅନୁଷ୍ଠାନ ପକ୍ଷରୁ ମତେ ମୁଖ୍ୟ ଅତିଥି କରାଯାଇ ଭୋଜି ଦିଆଯାଉଥିଲା । ସେଠାରେ ମୋ ମଦ ଗିଲାସକୁ ଲକ୍ଷ୍ୟ କରି ଟୋଷ୍ଟ କରାଯିବ—ନନେଲେ କେମିତି ହେବ ? କିନ୍ତୁ ଏହାର ଏକ ଉପାୟ ଉଦ୍ଭାବନ କରିଥିଲେ ମୋ ସାଙ୍ଗରେ ଯେ ସରକାରୀ ଗାଇଡ୍ ଥିଲେ । ସେ ଆଗରୁ ଟେବୁଲ୍ ବେହେରାମାନଙ୍କୁ ଜଣାଇଦେଉଥିଲେ ଏବଂ ସେମାନେ ମୋ ଗ୍ଲାସରେ ମଦ ନ ଦେଇ ସେହି ରଙ୍ଗରେ ମିଶିବା ପରି apple juice ଦେଇଦେଉଥିଲେ । ହଠାତ୍ ବାରିପାରିବାର ଉପାୟ ରହୁନଥିଲା ଏବଂ ଆନନ୍ଦରେ ଭୋଜି କାମ ସମାପନ ହେଉଥିଲା ।

ହାଉସ୍ ଅଫ୍ କମନ୍‌ସ୍‌ରେ ରାଣୀ ଏଲିଜାବେଥ୍‌ଙ୍କ ଭାଷଣ ଶୁଣିଲି ଏବଂ ପ୍ରଧାନମନ୍ତ୍ରୀ ମାକ୍‌ଡୋନାଲ୍‌ଡଙ୍କ ସହ ସାକ୍ଷାତ୍ ହେଲା । ସେତେବେଳକୁ ଲେବର୍ ପାର୍ଟିର ନେତା ଥିଲେ

ଗାଏଟସ୍କେଲ୍ । ମେଜର୍ ଆଟଲି ଲର୍ଡ ଆଟ୍ଲି ହୋଇ ଅବସର ନେଇଥିଲେ । ତାଙ୍କୁ ଭେଟି ଆସିଲି । ଫେନର୍ ବ୍ରକ୍‌ୱେ ବୁଢା ମତେ ଦେଖି ଭାରି ଖୁସିହେଲେ ଏବଂ ଜୟପ୍ରକାଶଙ୍କ ପାଖକୁ ଶୁଭସନ୍ଦେଶ ପଠାଇଲେ । ସେହି ହାଉସ୍ ଅଫ୍ କମନ୍‌ସ୍‌ର ଏକ ହଲ୍‌ରେ ଗାଏଟସ୍କେଲଙ୍କର ସଭାପତିତ୍ୱରେ ବ୍ରିଟିଶ୍ ଓଭରସିଜ୍ ସ୍କଲରଶିପ୍ ଆସୋସିଏସନ୍ ତରଫରୁ ଆୟୋଜିତ ଏକ ସଭାରେ ମତେ କହିବାଲାଗି ଓ ପ୍ରଶ୍ନୋତ୍ତର ଦେବାଲାଗି ପଡ଼ିଥିଲା । ଭାରତୀୟ ଛାତ୍ରମାନଙ୍କୁ ଇଣ୍ଡିଆ ହଷ୍ଟେଲ୍‌ରେ ଯାଇ ଭେଟିଥିଲି । ସେମାନଙ୍କ ସହ ଫଟୋଗ୍ରାଫର ଏକ ଛବି ଏଥିରେ ଦିଆଗଲା । ଇଂଲଣ୍ଡର ମହାରାଣୀଙ୍କୁ ସାକ୍ଷାତ କରିବା ନିମନ୍ତେ ମୁଁ ଆଗ୍ରହ ଦେଖାଇ ନ ଥିଲି କିମ୍ବା ସେତେବେଳେ ମୋର ଯେଉଁ ମନୋଭାବ ଥିଲା ସେଥିରେ କେହି ସେ ବ୍ୟବସ୍ଥା କରିଥିଲେ ବି ମୁଁ ଯିବାକୁ ସମ୍ମତ ହୋଇଥାଆନ୍ତି କି ନାହିଁ ସନ୍ଦେହ । କାରଣ ଇଂଲଣ୍ଡର ମହାରାଣୀ ପାର୍ଲିମେଣ୍ଟରେ ଭାଷଣ ଦେବା ନିମନ୍ତେ ଯେଉଁ ରାଜକୀୟ ଶୋଭାଯାତ୍ରାରେ ଆସନ୍ତି, ତାର ସବୁ ନାନାପ୍ରକାର ସୁନ୍ଦରିଆ ମୂର୍ତ୍ତି ବିକ୍ରୀ ହେଉଥିଲା । ସ୍ମୃତିସ୍ୱରୂପ ଏଇଥିରୁ ଗୋଟିଏ ନେବା ନିମନ୍ତେ ମୋର ଗାଇଡ ମତେ ଅନୁରୋଧ କରିବାରୁ ମୁଁ ରାଜତନ୍ତ୍ରର ବିରୋଧୀ କହି ମନାକରିଦେଲି । ୧୦, ଡାଉନିଂ ଷ୍ଟ୍ରିଟ୍‌କୁ ଗଲି; ମାତ୍ର ବର୍କିଂ ମହାମ୍ ପାଲେସ୍ ଦେଖିବାଲାଗି ଯିବାକୁ ଅସ୍ୱୀକାର କରିଦେଇଥିଲି । ତେବେ ଇଂଲଣ୍ଡ ଓ ଇଉରୋପର ଯେଉଁ ଯେଉଁ ଦେଶକୁ ଗଲି, ସେଠାର ପ୍ରାୟ ସବୁ ଜଣାଶୁଣା ପାସିଫିଷ୍ଟମାନଙ୍କୁ ଜୟପ୍ରକାଶ ନାରାୟଣ ବ୍ୟକ୍ତିଗତ ଚିଠି ଲେଖି ଦେଇଥିଲେ—ସମସ୍ତଙ୍କ ସହ ଖୁବ୍ ମଜାର ମଜାର ଆଲୋଚନା ହୋଇଥିଲା । ଅନ୍ୟ ସବୁ ଦେଶରେ ସୋସିଆଲ୍ ଡେ଼ମୋକ୍ରେଟିକ୍ ପାର୍ଟିମାନଙ୍କ ସହ ବିସ୍ତୃତ ଆଲୋଚନା ହୋଇଥିଲା । ସେହିକାଳରେ ଯେଉଁମାନେ ପାର୍ଟିର ସାଧାରଣ କର୍ମକର୍ତ୍ତା ଥିଲେ, ସେମାନେ ପରେ ସେ ଦେଶର ପ୍ରଧାନମନ୍ତ୍ରୀ, ରାଷ୍ଟ୍ରପତି କିମ୍ବା ସେହିଭଳି ପଦବୀ ପାଇସାରିଲେଣି । ତେବେ ଯୁଗୋସ୍ଲାଭିଆ କମ୍ୟୁନିଷ୍ଟ ଦେଶ ହୋଇଥିଲେ ସୁଦ୍ଧା ପ୍ରଜା ସୋସଲିଷ୍ଟ ପାର୍ଟି ସହ ସେମାନଙ୍କର ଭଲ ସମ୍ପର୍କ ଥିଲା । ୧୯୫୬ରେ ପ୍ରଜା ସୋସଲିଷ୍ଟ ପାର୍ଟି ତରଫରୁ ସେ ଦେଶକୁ ଏକ ପ୍ରତିନିଧିଦଳ ପଠାଯାଇଥିଲା । ସେଥିରେ ରହିଥିଲେ ବାଙ୍କ ବିହାରୀ ଦାସ, କର୍ପୂରୀ ଠାକୁର ଏବଂ ମଧୁ ଦଣ୍ଡବତେ । ଏଠାରେ ସେତେବେଳେ ଥିବା ରାଷ୍ଟ୍ରଦୂତ ଭିଲଫାନ୍ ଯାଇ ଲୁବ୍ଲିୟାନା ରିପବ୍ଲିକର ଗଭର୍ଣ୍ଣର ହୋଇଥିଲେ । ତେଣୁ ମୋ ଲାଗି ସେଠାରେ ବିପୁଳ ଆୟୋଜନ କରାଯାଇଥିଲା । ପାର୍ଟି କର୍ମକର୍ତ୍ତା, ଶାସନ ମୁଖିଆଙ୍କ ସହ ଏପରିକି ମାର୍ଶାଲ ଟିଟୋଙ୍କ ସହ ସାକ୍ଷାତକାର ବ୍ୟବସ୍ଥା କରାଯାଇଥିଲା । ମୋତେ ଆମ ଏମ୍ବାସିର ଲୋକେ କହିଲେ ଯେ ଅନ୍ୟ କୌଣସି ଦେଶର ବେସରକାରୀ ବ୍ୟକ୍ତିଙ୍କ ପ୍ରତି ଏପରି ଅଭ୍ୟର୍ଥନା କରାଯିବା ସେମାନେ ଦେଖି ନ ଥିଲେ । ବେଲଗ୍ରେଡ଼ରେ ଥିବା ଇଣ୍ଟରନେସନାଲ୍ ସ୍କୁଲରେ ପ୍ରାୟ ଏକଘଣ୍ଟାକାଳ ଏକ ପ୍ରଶ୍ନୋତ୍ତର ଅଧିବେଶନ ହୋଇଥିଲା । ଯୁଗୋସ୍ଲାଭିଆ ପାର୍ଟିର ବଡ଼ ବଡ଼ ତତ୍ତ୍ୱଜ୍ଞାନୀ ସବୁ ଉପସ୍ଥିତ ହୋଇ ନାନା ପ୍ରଶ୍ନ ଉଠାଇଥିଲେ । ଗୋଟିଏ ପ୍ରଶ୍ନ ସମସ୍ତଙ୍କ

ମୁହଁରୁ ଉଠୁଥିଲା—ନେହରୁ ତ ସୋସଲିଷ୍ଟ—ନେହରୁ ସରକାର ସହ ପ୍ରଜା ସୋସଲିଷ୍ଟ ମିଶି କାହିଁକି କାମ କରୁନାହାନ୍ତି ? ବାସ୍ତବିକ ଏ ବିଷୟଟି ବାହାର ସୋସଲିଷ୍ଟଙ୍କ ଭିତରେ ଏକ ବୁଦ୍ଧିଜାଲ ସୃଷ୍ଟି ଦେଇଥିଲା । ମୁଁ ଜବାବରେ କହିଲି—ନେହରୁ ହେଲେ negative socialist—ସେ capitalist structure ଆଉ ବୃଦ୍ଧିର ହୁଏତ ପକ୍ଷପାତୀ ନୁହନ୍ତି—ମାତ୍ର ପ୍ରଚଳିତ ପୁଞ୍ଜିବାଦୀ ବ୍ୟବସ୍ଥାକୁ ଭାଙ୍ଗି କରି ନିର୍ଦ୍ଦିଷ୍ଟ ସୋସଲିଷ୍ଟ ନୀତି ପ୍ରଚଳନ କରିବାର ସାହସର ଅଭାବ ତାଙ୍କଠି ଥିଲା ।

ଫେରନ୍ତା ବାଟରେ ଗ୍ରିସ୍ ଦେଇ ଇସ୍ରାଇଲ୍‌ରେ ଯେଉଁ ୧୦ଦିନ କଟାଇଲି ବେଶ୍ ଆରାମ ଲାଗିଲା । ବିକଟ ଅଣ୍ଡାରିକ୍ୟରୁ ଏହି ମଧ୍ୟଭିଲା ଜଳବାୟୁକୁ ଆସିପିବାରୁ ଏବଂ ପୃଥିବୀର ବିଭିନ୍ନ ଦେଶର ଇହୁଦୀମାନଙ୍କୁ ଏକ ସ୍ଥାନରେ ଭେଟିବାହେତୁ ଖୁବ୍ ପରିବର୍ତ୍ତନ ଲାଗିଲା । ଇସ୍ରାଇଲ୍‌ର ଉଚ୍ଚ ରାଜନୀତିକ ଓ ଶାସନ ଅଧିକାରୀ ଏବଂ ଗ୍ରାମ, ସହର ଓ କୋପରେଟିଭ୍‌ମାନଙ୍କରେ ରହି ଲୋକଙ୍କ ସହ ମିଶିବାର ସୁଯୋଗ ମିଳିଥିଲା । ସେଠାର ସଂଗଠନ ଏବଂ ସମାଜବାଦ ନୀତି କିପରି ସମାଜରେ ଓ ବ୍ୟକ୍ତିଗତ ଜୀବନରେ ପ୍ରଚଳିତ ହୋଇଯାଇଥିଲା ତାହା ନିଜ ଚକ୍ଷୁରେ ଦେଖି ମୁଁ ମୁଗ୍ଧ ହୋଇଥିଲି । ଇସ୍ରାଇଲ୍ ପାର୍ଲିମେଣ୍ଟ (କ୍ନେସେଟ)ରେ ମତେ ନେଇ ସ୍ପିକର୍‌ଙ୍କ ପାଖରେ ବସିବାର ସମ୍ମାନ ଦିଆଯାଇଥିଲା ଏବଂ ରେଡ଼ିଓରୁ ଭାଷଣ ଦେବାକୁ ପଡ଼ିଥିଲା । ଇସ୍ରାଇଲ୍ ରହଣିଟି ବାସ୍ତବିକ ସୁଖପ୍ରଦ ହୋଇଥିଲା ।

## କାଏରୋରେ ଦୁଇଦିନ

ଇସ୍ରାଇଲରୁ ଫେରୁ ଫେରୁ କାଏରୋ ଏୟାରପୋର୍ଟରେ ଆମ ପ୍ଲେନ କିଛି ସମୟ ଅଟକିବା ଭିତରେ ହଠାତ୍ ସାକ୍ଷାତହେଲା ଇଣ୍ଡିଆନ୍ ଏକ୍‌ସପ୍ରେସ୍‌ର ସମ୍ବାଦଦାତା ପୁଣ୍ୟ ପ୍ରିୟ ଦାସଗୁପ୍ତଙ୍କ ସହ । ପାର୍ଲିମେଣ୍ଟରେ ସେ ରିପୋର୍ଟର ଥିଲେ ଏବଂ ମୋ ସହ ତାଙ୍କର ଖୁବ୍ ସ୍ନେହଭାବ ରହିଥିଲା । ସେ ଏକପ୍ରକାର ବାଧ୍ୟକରି ମତେ ଅଟକାଇଦେଲେ ଏବଂ ମୋ ଟିକଟ୍ ନେଇ ଦୁଇଦିନ ପରେ ଆଉ ଗୋଟିଏ ପ୍ଲେନରେ ଦିଲ୍ଲୀ ଲାଗି ରିଜର୍ଭ କରି ଆସିଲେ । ମୁଁ ଯାଇ ତାଙ୍କର ଅତିଥିହୋଇ ତାଙ୍କ ଘରେ ଦୁଇଦିନ ରହିଲି ଏବଂ ତାଙ୍କ ପରିବାର ସହ ଇଜିପ୍ଟର ପିରାମିଡ଼, ନାଇଲ୍ ନଦୀ ଓ ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ବୁଲି ଦେଖିଲି । ଆରବ ଘରେ ଭୋଜି ଖାଇଲି । ସେତେବେଳକୁ ବୋଧହୁଏ ନାସେରଙ୍କ ରାଜୁତି । ତେବେ ସେ ଦେଶର ଭାରତ ସହ ଖୁବ୍ ସଦ୍‌ଭାବ ରହିଥିଲା ଏବଂ ଆମେ ଯେଉଁଠିକି ଯାଉଥିଲୁ ଆମକୁ ହସ ହସ ମୁଖରେ ଲୋକେ ସଲାମ୍ ଦେଉଥିଲେ ।

## ୧୯୬୩ରେ ଆମେରିକା ଓ ଜାପାନ ଯାତ୍ରା

ଆମେରିକା ଯିବାର ପ୍ରଥମ ସୁଯୋଗ ମିଳିଲା ୧୯୬୩ ମସିହାରେ । ପ୍ରଥମ ଥର ଲାଗି ଭାରତର ଏକ ପାର୍ଲମେଣ୍ଟାରୀ ଡେଲିଗେସନ୍ ଆମେରିକା ପରିଦର୍ଶନର ନିମନ୍ତ୍ରଣ ପାଇଲା ।



ଲଣ୍ଡନସ୍ଥ ଇଣ୍ଡିଆ ହଷ୍ଟେଲରେ ଦ୍ୱିବେଦୀଙ୍କୁ ସମ୍ବର୍ଦ୍ଧନା—୧୯୫୮

ଅଛନ୍ତି ବାମରୁ—ଡକ୍ଟର ଆକୁଳାନନ୍ଦ ଷଡ଼ଙ୍ଗୀ, ଡକ୍ଟର ବଜୟାନନ୍ଦ ପଟ୍ଟନାୟକ, ଡକ୍ଟର ଆଶାଲତା କର, ଡକ୍ଟର ପାର୍ଥ ରାଓ, ସୂର୍ଯ୍ୟନାରାୟଣ ଅ.ଗ୍ରୂର୍ଯ୍ୟ, ଇଲ ପଣ୍ଡା, ଶକ୍ତି ପ୍ରସାଦ ମିଶ୍ର ଓ ଶ୍ରୀକାନ୍ତ ପଣ୍ଡା ଇତ୍ୟାଦି ।



[ ଆମେରିକାରେ ପ୍ରେସିଡେଣ୍ଟ କେନେଡ଼ିଙ୍କ ସହ—୧୯୬୩ ]



[ ଇଣ୍ଡିଆନ୍ ପାର୍ଲିମେଣ୍ଟର ଡେଲିଗେସନ୍‌ର ସଭ୍ୟରୂପେ ଆମେରିକା ଯୁକ୍ତରାଷ୍ଟ୍ରର ରାଜଧାନୀରେ । ଆମେରିକା ସିନେଟ୍ ଫରେନ୍ ରିଲେସନସ୍ କମିଟିର ଚିଫ୍ ଅଫ୍ ଷ୍ଟାଫ୍‌ଙ୍କ ସହ ଆଲୋଚନାରତ । ]



[ ପେରୁ ରାଜ୍ୟର ଲିମାଠାରେ ଅନୁଷ୍ଠିତ ୬୬ତମ ଇଣ୍ଟର୍ ପାର୍ଲିମେଣ୍ଟାରୀ ସମ୍ମିଳନୀରେ ଭାଷଣ ପ୍ରଦାନ । ( ୬-୯-୧୯୬୮ ) ]

ଡେଲିଗେସନର ସଭ୍ୟଙ୍କ ନାମ ଆଗରୁ ଲେଖିଛି । ବିରୋଧ ପକ୍ଷରୁ କେବଳ ମୁଁ ଥିଲି । ଆମେ ଜୁନ୍ ୨୩ରୁ ଜୁଲାଇ ୨୭ ପର୍ଯ୍ୟନ୍ତ ଆମେରିକାର ୱାଶିଂଟନ୍, ୱିଲିୟମ୍‌ସବର୍ଗ, ଭର୍ଜିନିଆ, ନିଉୟର୍କ, ନାଏଗ୍ରା ଜଳପ୍ରପାତ ଏବଂ ବଫାଲୋ, ବୋଷ୍ଟନ, ମାସାଚୁସେଟସ୍, ସ୍ପ୍ରିଂଫିଲଡ୍, ଇଲିନଏସ୍, ହାଉଷ୍ଟନ୍, ଟେକ୍‌ସାସ୍, ଲସ୍ ଆଞ୍ଜେଲସ୍, କାଲିଫୋର୍ଣ୍ଣିଆ, ସାନ୍ ଫ୍ରାନ୍‌ସିସ୍‌କୋ ହନୋଲୁଲୁ, ହାୱାଇ ଷ୍ଟେଟଗୁଡ଼ିକ ପରିଦର୍ଶନ କରି ଜୁଲାଇ ୨୭ ଶନିବାର ଦିନ ୧୨-୩୦ରେ ହନୋଲୁଲୁ ଛାଡ଼ି ୨୮ ତାରିଖ ରବିବାର ଦିନ ୩-୨୫ରେ ଟୋକିଓରେ ପହଞ୍ଚିଲୁ । ଏହା ସରକାରୀ ପରିଦର୍ଶନ ନୁହେଁ—ଦୁଇଦିନ ରହିଲୁ—ଆମର ରହଣି ଇତ୍ୟାଦି ଆମର ରାଷ୍ଟ୍ରଦୂତ ବ୍ୟବସ୍ଥା କରିଥିଲେ । ଅବଶ୍ୟ ଜାପାନର ପାର୍ଲିମେଣ୍ଟ (Diet) ଆଦିକୁ ଯାଇଥିଲୁ ଏବଂ ଭୋଜି ଆଦିକୁ ସେମାନେ ଡାକିଥିଲେ ।

ଆମେରିକା ଦେଶକୁ ଏହା ମୋର ପ୍ରଥମ ଯାତ୍ରା ହୋଇଥିବାରୁ ନାନାପ୍ରକାର ଘଟଣାର ଛାପ ମନରେ ପଡ଼ିଥିଲା । ସେ ଦେଶର ସାମାଜିକ ଜୀବନ ବି କିଛି ପରିମାଣରେ ଲକ୍ଷ୍ୟ କରିବାର ସୁଯୋଗ ଘଟିଥିଲା । ହନୋଲୁଲୁ ଯେଉଁମାନେ ଯାଇଥିବେ ଏବଂ ଆମେରିକା ଜୀବନ ସହ ସମ୍ପର୍କ ରଖିଥିବା ଲୋକେ ନିଶ୍ଚୟ ସ୍ୱୀକାର କରିବେ ଯେ ଆମେରିକା ପରି ମୁକ୍ତ ସମାଜ ଦୁନିଆରେ ଆଉ କେଉଁଠି ନାହିଁ । ଗୋଟିଏ ଶ୍ରେଷ୍ଠ ଘଟଣାର ଉଲ୍ଲେଖ କରୁଛି । ଆମେ ସବୁ କୌଣସି ଏକ ସ୍ଥାନକୁ ଯିବା ନିମନ୍ତେ ସାନ୍‌ଫ୍ରାନ୍‌ସିସ୍‌କୋର ଯେଉଁ ହୋଟେଲରେ ରହିଥିଲୁ, ତାର ତଳ ବସିବା ଘରେ (lounge) ଆସି ଅପେକ୍ଷା କରିଥିଲୁ । ଆମର ନେତା ସର୍ଦ୍ଦାର ହୁକୁମ ସିଂହ ଜଣେ ଶିଖ ଏବଂ ସର୍ବଦା ମଥାରେ କଳା ପଗଡ଼ି ପିନ୍ଧୁଥିଲେ । ବୃଦ୍ଧ ସତୁରି ଟପିଯାଇ-ଥିଲେ । ସେ ଓ ମୁଁ ପାଖାପାଖି ବସିଥିଲୁ । ଏହି ସମୟରେ ଜଣେ ସ୍ତ୍ରୀଲୋକ ବେଶ୍ ସଜ୍ଜିତ ହୋଇ ଛତା ଧରି କେଉଁଠୁ ଆସି ପହଞ୍ଚିଗଲା ଏବଂ ଅନ୍ୟ କେଉଁଠି ନ ବସି ହୁକୁମ ସିଂହ ଯେଉଁ ସୋଫାରେ ବସିଥିଲେ, ତାହାର ଦାଢ଼ରେ ଯାଇ କୁଦି ବସିପଡ଼ିଲା । ହୁକୁମ୍ ସିଂ ଚାଟକା, ଆମେ ସବୁ ଅବାକ୍ ହେଲୁ । ସେ ମହିଳାଟି ହୁକୁମ ସିଂହଙ୍କ ବେଶ ଦେଖି ବିଗ୍ଚର କଲେ ସେ ବୋଧେ ଜଣେ ଭାରତୀୟ ଜ୍ୟୋତିଷୀ । ତେଣୁ ତାଙ୍କ ପାଖକୁ ନିଜର ହାତ ବଢ଼ାଇ ଦେଇ ପଚାରିଲେ—ଟିକିଏ ଦେଖି କହିଲ—ମୁଁ ମୋର ଚତୁର୍ଥ ସ୍ୱାମୀକୁ ନିକଟରେ ଛାଡ଼ପତ୍ର ଦେଇଛି—ପଞ୍ଚମଟି କେବେ ମିଳିବ ? ମୁଁ ଶୁଣି ମୁଡ଼୍‌କି ମୁଡ଼୍‌କି ହସିଲିଣି । ହୁକୁମ୍ ସିଂହ ବି ବଡ଼ ନିବଜିଆ ଲୋକ । ସେ ସ୍ତ୍ରୀଟିର ହାତ ପାପୁଲିରେ ଟିକିଏ ହାତ ବୁଲାଇ କହିଲେ, "I am not that person", ଅର୍ଥାତ୍ ମୁଁ ତୁମର ପଞ୍ଚମ ସ୍ୱାମୀ ହୋଇପାରିବି ନାହିଁ । ପାଖ-ଆଖରେ ହାସ୍ୟରୋଳ ଉଠିଲା । ମହିଳାଟି ଗ୍ଲଲିଗଲେ; ଆମେ ବି ଆମ ପ୍ରୋଗ୍ରାମ୍‌ରେ ଗଲୁ । ଆମେରିକା ଲୋକେ ଭାରତୀୟଙ୍କ ବିଷୟରେ କିପରି କୌତୂହଳୀ ଏଥିରୁ ବୁଝାପଡ଼ିବ ।

ଆମର ପରିଦର୍ଶନ ତ ଥିଲା ମୋଟାମୋଟି ରାଜନୀତିକ—ତେଣୁ ଆମେ ଯେଉଁଠିକି ଗଲୁ ସେହିପରି ବଡ଼ କର୍ତ୍ତା, ଯଥା ସିନେଟ, ହାଉସ୍, ଗଭର୍ଣ୍ଣର, ଷ୍ଟେଟର୍ କାଉନ୍‌ସିଲ କିମ୍ବା କୌଣସି ସହରରେ ଆମର ଅଭ୍ୟର୍ଥନା ଏମିତି ସବୁଥିରେ ବ୍ୟସ୍ତ ରହିଲୁ । ଡିନର୍, ଘରୋଇ

ଭୋଜ ଆଦି ନାନାଭାବରେ ବ୍ୟବସ୍ଥା ହୋଇଥିଲା । କ୍ଲବ୍, ସୋସାଇଟି ଆଦିରେ ଭାଷଣ ଦେଇ ଆମେ ଭାରତର ଦୃଷ୍ଟିକୋଣ ବୁଝାଉଥିଲୁ । କିନ୍ତୁ ଆମେ ୱାଶିଂଟନ୍‌ରେ ଯେଉଁ ଦିନଦିନ ରହିଥିଲୁ, ସେତେବେଳକୁ ରାଷ୍ଟ୍ରପତି କେନେଡ଼ି ଇଉରୋପ ଗସ୍ତରେ ଥିଲେ । ଜନସନ୍ ଥିଲେ ଉପରାଷ୍ଟ୍ରପତି । ତାଙ୍କ ସହ କିଛି ସାକ୍ଷାତ୍କାର ବ୍ୟବସ୍ଥା ହୋଇନଥିଲା । ଆମର ପରିଦର୍ଶନର ବୋଧହୁଏ ରାଜନୀତି କ୍ଷେତ୍ରରେ କିଛି ପ୍ରଭାବ ପଡ଼ିଥିଲା । କାରଣ କେନେଡ଼ି ଫେରିବାମାତ୍ରକେ ଆମ ପ୍ରୋଗ୍ରାମ ବନ୍ଦ କରାଯାଇ ସ୍ପେଶାଲ ପ୍ଲେନ୍‌ରେ ଆମକୁ ଅଣାଗଲା ତାଙ୍କୁ ଭେଟିବା ନିମନ୍ତେ । ତାଙ୍କ ସହ ଚୀନ୍ ଓ ପାକିସ୍ତାନ ବିଷୟରେ ବିଶେଷଭାବରେ ଆଲୋଚନା ହେଲା । କିଛି ଅଂଶ ମୁଁ ନୋଟ୍ କରି ଆଣିଥିଲି । କେନେଡ଼ି ଆମର ଖୁବ୍ ପ୍ରଶଂସାକରି ଆଗ ଫଟୋ ପାଇଁ ଛିଡ଼ା ହୋଇଗଲେ । କହିଲେ—କୌଣସି ଆମେରିକୀୟ ରାଜନୀତିଜ୍ଞ ଦୁଇଟି କଥାକୁ ଅବଜ୍ଞା କରି ଚଳିପାରିବ ନାହିଁ—ଗୋଟିଏ ହେଲା ଫଟୋଗ୍ରାଫର୍ ଏବଂ ଦ୍ୱିତୀୟହେଲା—ସ୍ତ୍ରୀଲୋକ । ଏହାପରେ ଖୁସିବାସିରେ ତାଙ୍କ ପାଖରୁ ଫେରିବାବେଳକୁ ବାଟ ଜଗି ବସିଥିଲେ ଜନ୍‌ସନ୍—ସେ ତାଙ୍କ ଅଫିସକୁ ଧରିନେଇ ତାଙ୍କ ସହ ଫଟୋ ଉଠାଇଲେ । ଆମ ଗାଇଡ୍ କହିଲେ—କେନେଡ଼ିଙ୍କ ସହ ସାକ୍ଷାତ୍ ହେବାରୁ ସେ ଭାବିଲେ ସେ ପଛରେ ପଡ଼ିଗଲେ କି ?

ଆମ ଗସ୍ତର ଅଭିଜ୍ଞତା ଆମେ ଦେଶକୁ ଫେରିଆସି ଅଲଗା ଅଲଗା ଭାବରେ ଲୋକସଭା ସେକ୍ରେଟାରିଏଟ୍‌କୁ ଦେଲୁ । କିନ୍ତୁ ନେହରୁ ଶେଷକୁ ଚୀନଯୁଦ୍ଧବେଳେ ଆମେରିକାର ସାହାଯ୍ୟ ନେଇଥିବାରୁ ତାଙ୍କର ସମ୍ମାନ ସେତେବେଳେ ବହୁତ ତଳକୁ ଖସିଯାଇଥିଲା । ସବୁଠି ପଚାରୁଥିଲେ, ମେନନ୍ ତ ଦେଶରକ୍ଷା ମନ୍ତ୍ରୀପଦରୁ ଗଲେ—ମାତ୍ର ସେ ପ୍ରତିଦିନ ସକାଳୁ ନେହରୁଙ୍କ ସାଙ୍ଗରେ ପ୍ରାତଃଭୋଜନ କରୁଥିବା ବିଷୟ ସତ୍ୟ କି ? ମେନନ୍ ତାଙ୍କ କାର୍ଯ୍ୟକାଳ ଭିତରେ ଆମେରିକାବାସୀଙ୍କ ମନକୁ ଭାରତ ପ୍ରତି ଏପରି ତିକ୍ତ କରିଦେଇଥିଲେ ଯେ ତାହା କଳ୍ପନା କରିହେବନାହିଁ ।

ଡେଲିଗେସନ୍‌ରେ ମୁଁ ବିରୋଧୀପକ୍ଷର ଏକମାତ୍ର ସଭ୍ୟ ହୋଇଥିବାରୁ ମୋତେ ବହୁତ ଡକରା ଆସୁଥିଲା ଭାଷଣ ଦେବା ନିମନ୍ତେ । ଆମେରିକା ସୋସଲିଷ୍ଟ ପାର୍ଟିର ସେକ୍ରେଟାରୀ ନର୍ମାନ ଥମାସ୍ ନିଉୟର୍କଠାରେ ସୋସଲିଷ୍ଟଙ୍କୁ ଏକାଠିକରି ମୋ ସହ ଭାରତ ଓ ଅନ୍ୟାନ୍ୟ ସମସ୍ୟା ଆଲୋଚନା କରିଥିଲେ । କେତେକ ସମ୍ବାଦପତ୍ରକୁ ବିବୃତି ଦେଇଥିଲି ଏବଂ ଟେଲି-ଭିଜନ୍‌ରେ ସାକ୍ଷାତକାର ହୋଇଥିଲା—ଯାହା ସମଗ୍ର ଆମେରିକାରେ ପ୍ରସାରିତ ହୋଇଥିଲା । 'Women Today' ବୋଲି ସାନ୍‌ଫ୍ରାନ୍‌ସିସ୍କୋର ଏକ ଦୈନିକ ପତ୍ରର ଜୁଲାଇ ୨୪ ତାରିଖ ସଂଖ୍ୟାଟି କେହି ମୋ ପାଖକୁ ପଠାଇ ଦେଇଥିଲା । ସେଥିରେ ଶିରୋନାମା ଥିଲା—'Socialist Leader of India Here'. ଶେଷକୁ ଲେଖାଥିଲା "Dwivedy said the Indian people feel that the present dispute between India and China is not merely a border conflict but

is actually a war against democracy by communist totalitarianism." ସେଥିରେ ମଧ୍ୟ ସେ କାଗଜ ଲେଖିଥିଲା, "Dwivedy is an outspoken foe of Krishna Menon and Prime Minister Nehru." ଏହି ରିପୋର୍ଟ ପାଇ ଏଣେ କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷ ଖୁବ୍ ଖପ୍‌ପା ହୋଇଗଲେ । ମୁଁ ଫେରିବା ସାଙ୍ଗେ ସାଙ୍ଗେ ସତ୍ୟନାରାୟଣ ସିଂହ ମୋ ପାଖକୁ ଆସି କହିଲେ— ବିଦେଶରେ ଆମ ବୈଦେଶିକ ନୀତି ବିରୁଦ୍ଧରେ କହିବାଟା ଠିକ୍ ନୁହେଁ । ବିଲାତରୁ ବେଭାନ୍ ଯେତେବେଳେ ଆସିଥିଲେ, ତାଙ୍କୁ ଲୋକେ ଏଠି ପଚାରନ୍ତେ ସେ ଆମ ଦେଶ ସରକାରୀ ନୀତି ବିରୁଦ୍ଧରେ ବାହାରେ କିଛି କହିପାରିବେ ନାହିଁ ବୋଲି କହିଥିଲେ । ପଣ୍ଡିତ ନେହରୁଙ୍କୁ କାହିଁକି ସମାଲୋଚନା କଲ ? ଏହା କହି ପଣ୍ଡିତଜୀଙ୍କୁ ଭେଟିବା ନିମନ୍ତେ ମତେ ଡାକିଲେ । ମୁଁ କହିଲି —ଏଥିଲାଗି ଯେ ପଣ୍ଡିତଜୀ ଡାକୁଛନ୍ତି, ଏ ବିଷୟରେ ମୁଁ ତାଙ୍କୁ କୈଫିୟତ୍ ଦେବାକୁ ପ୍ରସ୍ତୁତ ନୁହେଁ । ଏହା କହି ଗଲିନାହିଁ ।

## ପେରୁରେ ଆନ୍ତର୍ଜାତିକ ପାର୍ଲିମେଣ୍ଟାରୀ ଇଉନିୟନ୍ ସମ୍ମିଳନୀ

ପୁଣି ୧୯୬୮ରେ ମୁଁ ଦକ୍ଷିଣ ଆମେରିକାର ପେରୁ ରାଜ୍ୟର ରାଜଧାନୀ ଲିମା ସହରକୁ ଯାଇଥିଲି ଆନ୍ତର୍ପାର୍ଲିମେଣ୍ଟାରୀ ଇଉନିୟନ ସମ୍ମିଳନୀରେ ଯୋଗ ଦେବା ନିମନ୍ତେ । ସେଠାରେ ଯୁଗୋସ୍ଲାଭିଆ, ଇସ୍ରାଇଲ, ପଶ୍ଚିମ ଜର୍ମାନୀ, ଅଷ୍ଟ୍ରିଆ ଆଦି ଦେଶର ସୋସଲିଷ୍ଟ ଡେଲିଗେଟ୍‌ମାନେ କମିଟି ବୈଠକଗୁଡ଼ିକରେ ଭାରତକୁ ସମର୍ଥନ ଦେଇଥିଲେ ଏବଂ ବ୍ରିଟୀଶ ଡେଲିଗେଟ୍‌ମାନେ ଭାରତର ଅଛୁଆଁ କଥା ଉଠାଇ ତାଚ୍ଛଲ୍ୟ କରିବାରୁ ମୁଁ ଦ୍ୱିତୀୟଥର କହିବାର ସୁଯୋଗ ପାଇଲିମାତ୍ରକେ ପ୍ରାୟ ୮୯ଟି ଦେଶର ପାର୍ଲିମେଣ୍ଟାରିଆନ୍‌ଙ୍କ ଆଗରେ ବ୍ରିଟୀଶ ନୀତିର ଘୋର ନିନ୍ଦାକଲି ଏବଂ ଉପରୋକ୍ତ ଦେଶଗୁଡ଼ିକର ଡେଲିଗେଟ୍‌ମାନେ ସମର୍ଥନ ଜଣାଇ ଏପରି ତାଳି ବଜାଇଲେ ଯେ ସମଗ୍ର ସମ୍ମିଳନୀ ମୋ ପଛରେ ଥିବାର ଜଣାପଡ଼ିଲା ଏବଂ ବ୍ରିଟୀଶ ଡେଲିଗେଟ୍ ଅପ୍ରସ୍ତୁତ ହେଲେ । କେତେକ ଦେଶର ଡେଲିଗେଟ୍‌ଙ୍କ ସହ ମୋର ଖୁବ୍ ଘନିଷ୍ଠତା ହୋଇଯାଇଥିଲା । ସଞ୍ଜୀବ ରେଡ୍ଡି ସ୍ପିକର୍ ହିସାବରେ ଆମ ଡେଲିଗେସନ୍‌ର ନେତା ଥିଲେ ।

ମୁଁ ସେଠାରୁ ଆସି ନିଉୟର୍କରେ ୧୦ ଦିନ ରହି ମୋର ସ୍ୱାସ୍ଥ୍ୟ ପରୀକ୍ଷା କରାଇଲି ଏବଂ ଓଡ଼ିଆ ବନ୍ଧୁବାନ୍ଧବଙ୍କ ସଙ୍ଗରେ ବେଶୀ ସମୟ କଟାଇଥିଲି । ଏହା ପରେ ମୁଁ ପୁଣି ଥରେ ଗ୍ରେଟ୍ ବ୍ରିଟେନ୍, ଫ୍ରାନ୍‌ସ, ପଶ୍ଚିମ ଜର୍ମାନୀ ଯୁଗୋସ୍ଲାଭିଆ, ସୁଇଡେନ୍ ଓ ଡେନମାର୍କ ଦେଶ ଗସ୍ତ କରି ୧୦ ବର୍ଷ ଭିତରେ ସେ ଦେଶମାନଙ୍କରେ ଯାହାସବୁ ପରିବର୍ତ୍ତନ ହୋଇଥିଲା, ତାହା ଦେଖିଆସିଲି । ଲଣ୍ଡନରେ ସୋସଲିଷ୍ଟ ଇଣ୍ଟରନେସନାଲ୍‌ର ଏକ ବୈଠକରେ ବିଶ୍ୱ ସୋସଲିଷ୍ଟ ଆନ୍ଦୋଳନର ଗତିବିଧି ସମ୍ବନ୍ଧରେ ଚର୍ଚ୍ଚା ହୋଇଥିଲା ।

ମୋର ବିଦେଶ ଗସ୍ତ ଏଇଥିରୁ ଶେଷ । ଆଉ ଯିବାର ସୁଯୋଗ ଜୁଟିନାହିଁ କିମ୍ବା କୌଣସି ଖାସ୍ କାମ ନଥିଲେ ଆଉ ଯିବାଲାଗି ଆଗ୍ରହ ନାହିଁ । କାରଣ ମୋର ଧାରଣା ଇଉରୋପର ଯେକୌଣସି ବଡ଼ ସହର ଥରେ ଦେଖିଲେ, ଆଉ ଅନ୍ୟ ଜାଗାକୁ ଗଲେ ବି ବିଶେଷ କିଛି ଫରକ୍ ଦେଖିବାର ନାହିଁ । କିଏ କେତେ ଶହ ମହଲା ବେଶି କରିପାରିବ, ଏହା ଯେନ ସେମାନେ ପ୍ରତିଯୋଗିତାରେ ବ୍ୟସ୍ତ—ଢଙ୍ଗ, ରୀତିନୀତି, ଚାଲିଚଳନ ଏକା । ତେଣୁ ଆଉ ଦେଖିବାର କିଛି ନାହିଁ ।

ବିଦେଶ ଗସ୍ତ ଭିତରେ ବହୁ ମନୋରଞ୍ଜକ ଘଟଣା ଦୃଷ୍ଟିପଥକୁ ଆସିଛି । ଯୁଗୋସ୍ଲାଭିଆ ଛଡ଼ା ଅନ୍ୟ କୌଣସି କମ୍ୟୁନିଷ୍ଟ ଦେଶକୁ ଯିବାର ସୁଯୋଗ ମୋର ଜୁଟିନଥିଲା । ଅଷ୍ଟ୍ରିଆ ଦେଶ ଗସ୍ତ ଭିତରେ ପଡ଼ୋଶୀ କମ୍ୟୁନିଷ୍ଟ ରାଜ୍ୟମାନଙ୍କ ବିଷୟରେ ସେଠାକାର ସୋସିଆଲିଷ୍ଟ ସାଥୀଙ୍କ ସହିତ ବହୁ ଆଲୋଚନା ହୋଇଥିଲା । ତହୁଁ କମ୍ୟୁନିଷ୍ଟ ରାଜ୍ୟମାନଙ୍କରେ କିପରି ଲୁହା ପରଦା (Iron Curtain) ରହିଛି, ତାହା ଦେଖିବାଲାଗି ମୋର ଆଗ୍ରହ ଜନ୍ମିଲା । ତହିଁ ଆରଦିନ ରବିବାର ଥାଏ । ରବିବାର ଦିନ କବରସ୍ଥାନମାନଙ୍କୁ ମୃତ ବ୍ୟକ୍ତିଙ୍କର ଆତ୍ମୀୟସ୍ୱଜନମାନେ ଯାଇ ପୁଷ୍ପମାଳ ବା ଗୁଚ୍ଛ କବରରେ ଦିଅନ୍ତି । ତେଣୁ ଅଷ୍ଟ୍ରିଆ ଓ ହଙ୍ଗେରୀର ସୀମାନ୍ତରେ ଥିବା ଏକ କବର ସ୍ଥଳୀକୁ ଅଷ୍ଟ୍ରିଆ ସୋସାଲ୍ ଡେମୋକ୍ରେଟିକ ପାର୍ଟିର ସହକାରୀ ସମ୍ପାଦକଙ୍କ ସହ ମୁଁ ଯାତ୍ରା କଲି । ଭିଏନାରୁ ପ୍ରାୟ ୩୦ କିଲୋମିଟର ରାସ୍ତା । ସକାଳୁ ଘନ କୁହୁଡ଼ି । ମୁହଁକୁ ମୁହଁ ଦେଖାଯାଉନଥାଏ । ଡ୍ରାଇଭର ବଡ଼ କଷ୍ଟରେ ଗାଡ଼ି ଚଳାଉଥାଏ । ବାଟରେ ଯାଉ ଯାଉ ବାଟ ବାଉଳା ହୋଇ ରାସ୍ତାରେ ଗୋଟିଏ ଠେକୁଆକୁ ଦେଖି ଗାଡ଼ି ରଖି ଧରିଲା । କି ଆନନ୍ଦ—ଏପରି ଏକ ସୁସ୍ୱାଦୁ ପଦାର୍ଥ ହାବୁଡ଼ିଲା ବୋଲି ! ମୁଁ ଜଣେ ଅତି ଉତ୍ତମ ଶିକାରୀ ବ୍ୟକ୍ତି ବୋଲି ମୋର ପ୍ରଶଂସା କଲା ।

ଆମେ ଯାଇ ସେ କବର ପାଖରେ ପହଞ୍ଚିଲୁ ଏବଂ ତାହା ଲୁହା ବାଡ଼ର ଖୁବ୍ ପାଖାପାଖି ଥିଲା । ଦୂରରେ ପ୍ରାୟ ୧୦୦ ଫୁଟ ଉଚ୍ଚର ଖମ୍ବ ଉପରେ ବନ୍ଧୁକଧାରୀ ପ୍ରହରୀ ବସିଥାଆନ୍ତି ଏବଂ ସେମାନେ ଦୂରବୀକ୍ଷଣରେ ସୀମାନ୍ତ ଅଞ୍ଚଳକୁ ଅନାଇଥାଆନ୍ତି । ପ୍ରତି ଶହେ ଗଜରେ ଏପରି ପ୍ରହରୀ ଥାଆନ୍ତି । ମୁଁ ସାଙ୍ଗରେ ଏକ ଜର୍ମାନ୍ କାମେରା ଧରିଥାଏ । ଏପରି ଏକ ପରିସ୍ଥିତି ଦେଖିବାର ସୁଯୋଗ ଆଉ ଜୀବନରେ ଘଟିବ ନାହିଁ ଭାବି କୁହୁଡ଼ି ଭିତରେ ବି ଫଟୋ ଉଠାଇଲି । ଆଉ ଯାଉ କୁଆଡ଼େ—ସାଙ୍ଗେ ସାଙ୍ଗେ ଏହା ଜାଗ୍ରତ ପ୍ରହରୀଙ୍କର ଦୃଷ୍ଟି ଆକର୍ଷଣ କଲା ଏବଂ ସେମାନେ ଘୋଡ଼ସବାର ପ୍ରହରୀଙ୍କି ଇଙ୍ଗିତ କଲେ । କବରକୁ ଲାଗିଥିବା ଗହମ କ୍ଷେତରେ ଜଣେ ମହିଳା କାର୍ଯ୍ୟ କରୁଥିଲେ । ତାଙ୍କୁ ଏସବୁ ଜଣାଥିଲା । ସେ ଜର୍ମାନ ଭାଷାରେ ଚିତ୍କାର କରି କହିଲେ—'ତୁମେମାନେ ଜଣ ଜଣ କରି ଅଲଗା ହୋଇ କବର ସ୍ଥଳୀରେ ବୁଲ । ମୋଟେ ସେ ଆଡ଼କୁ ନ ଅନାଇଁ ତଳକୁ ମୁହଁ ପୋତି କବରମାନ ବୁଲି ଦେଖୁଥାଅ—ନଚେତ୍ ତୁମ ଉପରେ ଗୁଳି ହେବାର ଆଶଙ୍କା ରହିଛି । ପରେ ସିନା ଆନ୍ତର୍ଜାତିକ ବିବାଦ ଉଠିବ—ମାତ୍ର ତୁମର ହତ୍ୟା ନିଶ୍ଚିତ । ଷ୍ଟେନ୍‌ଗନ୍ ଧରି ଘୋଡ଼ସବାର

ଆସୁଛନ୍ତି ।' ଆମେ ବୃଦ୍ଧାଙ୍କର କଥା ମାନି ତଦ୍ରୂପ ଆଚରଣ କଲୁ ଏବଂ ଅଳ୍ପ ଅଳ୍ପ କ୍ଷଣ ଭିତରେ ଲକ୍ଷ୍ୟ କଲୁ ଠିକ୍ ଆମରି ସିଧା ଲୁହାବାଡ଼ ଆରପାଖରେ ଘୋଡ଼ସବାର ସୈନ୍ୟ— ପ୍ରାୟ ୧୦।୧୨ ଜଣ ହେବ, ଏକ ଦୃଷ୍ଟିରେ ବନ୍ଧୁକ ଦେଖାଇ ଆମ ଆଡ଼କୁ ଅନାଇଛନ୍ତି । ଆମେ ସେମାନଙ୍କର ଉପସ୍ଥିତି ଅନୁଭବ କରୁଥିଲେ ସୁଦ୍ଧା ମୋଟେ ଉପରକୁ ଅନାଇଲୁ ନାହିଁ ଓ ତଳମୁହାଁ ହୋଇ ବୁଲୁଥିଲୁ । ଏପରି ୧୦ ମିନିଟ୍ ବିତିଗଲାରୁ ସେମାନେ ଚାଲିଗଲେ । ବୃଦ୍ଧା ଆମକୁ କହିଲେ—ତୁମେ ଯଦି କ୍ଷଣେମାତ୍ର ବିଳମ୍ବ କରିଥାଆନ୍ତ, ତେବେ ପ୍ରଳୟକାଣ୍ଡ ଘଟିଯାଇଥାଆନ୍ତା । ହଙ୍ଗେରୀରୁ ଅନେକ ଲୋକ ଅଷ୍ଟ୍ରିଆକୁ ପଳାଇ ଆସିବାର ଉଦ୍ୟମ କରୁଥିବାରୁ ଏପରି ଲୁହା ପରଦା ଓ ଜାଗ୍ରତ ପ୍ରହରୀ ବ୍ୟବସ୍ଥା ହୋଇଛି ଏବଂ କମ୍ୟୁନିଷ୍ଟ ଦେଶର ଅଧିବାସୀଙ୍କୁ ଏକ ବିରାଟ ଜେଲ୍ ଭିତରେ ରଖିଲାପରି କଟକଣା ଭିତରେ ରଖାଯାଇଛି । ଅଷ୍ଟ୍ରିଆ ଏକ ଗଣତନ୍ତ୍ର ଦେଶ ହୋଇଥିବାରୁ ସେଠାକୁ ପଳାଇଆସିବାକୁ ହଙ୍ଗେରୀବାସୀଙ୍କର ପ୍ରବଳ ଇଚ୍ଛା ବୋଲି ଜାଣିବାକୁ ପାଇଲି ।

□□□

# ୧୮ । ସୋସଲିଷ୍ଟ ଆନ୍ଦୋଳନର ଗତି

୧୯୬୨ର ନିର୍ବାଚନରେ ନାନା ପ୍ରତିକୂଳ ପରିସ୍ଥିତି ଭିତରେ ପ୍ରଜା ସୋସଲିଷ୍ଟ ପାର୍ଟି କିପରି ସାଫଲ୍ୟ ଲାଭ କରିଥିଲା, ସେ ବିଷୟ ଆଗରୁ ଉଲ୍ଲେଖ କରାଯାଇଛି । ଚୀନ ଯୁଦ୍ଧ ଆରମ୍ଭ ଏବଂ ସେଥି ସଂକ୍ରାନ୍ତୀୟ କାର୍ଯ୍ୟରେ ପାର୍ଲିମେଣ୍ଟରେ ଓ ବାହାରେ ପାର୍ଟି ପୂର୍ଣ୍ଣଭାବରେ ଆପଣାକୁ ନିୟୋଗ କଲା—ଯେହେତୁ ଏହାକୁ ଆମେ ଏକ ଜାତୀୟ ବିପଦ ଏବଂ ଜାତୀୟ ସଂଗ୍ରାମରୂପେ ବିଚାର କରୁଥିଲୁ । ତେଣୁ ଏହି ସମୟ ଭିତରେ ପାର୍ଟି ସଙ୍ଗଠନ ଆଡ଼କୁ ବିଶେଷ ଦୃଷ୍ଟି ଦିଆଯାଇପାରିନଥିଲା । ମାତ୍ର ପାର୍ଲିମେଣ୍ଟରେ ଆମର କାର୍ଯ୍ୟ ପାର୍ଟିକୁ ଯଶ ଆଣିଲା । ଏ ସମ୍ପର୍କରେ ୧୯୬୩ ଜୁନ୍ ମାସରେ ଭୋପାଳରେ ହୋଇଥିବା ଷଷ୍ଠ ଜାତୀୟ ସମ୍ମିଳନୀରେ ସାଧାରଣ ସମ୍ପାଦକଙ୍କ ରିପୋର୍ଟରେ ଯାହା ଉଲ୍ଲେଖ କରାଯାଇଥିଲା ଏଠାରେ ଉଦ୍ଧାର କରୁଛି—

"ଲୋକସଭାରେ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ଏବଂ ରାଜ୍ୟସଭାରେ ଶ୍ରୀ ଗଙ୍ଗାଶରଣ ସିଂହ ପାର୍ଲିମେଣ୍ଟାରି ପାର୍ଟିର ଦଳପତି, ଏଚ୍. ଭି. କାମାଥ ଓ ରୋହିତ ଦାଭେ ଉପଦଳପତି ଏବଂ ପ୍ରିୟ ଗୁପ୍ତ ଓ ଏମ୍. ଏସ୍. ଗୁରୁପଦ ସ୍ୱାମୀ ସେକ୍ରେଟାରି ରୂପେ ନିର୍ବାଚିତ ହୋଇଥିଲେ । ଲୋକସଭାରେ ସଂଖ୍ୟା ବହୁତ ଊଣା ହୋଇଯାଇଥିଲେ ସୁଦ୍ଧା ପି. ଏସ୍. ପି. ସଭ୍ୟମାନେ ତାଙ୍କର ଦକ୍ଷତାର ପ୍ରଦର୍ଶନ କଲେ ଏବଂ ନୂତନ ପାର୍ଲିମେଣ୍ଟର ପ୍ରଥମ ବର୍ଷରେ ହିଁ ସେମାନେ ବିରୋଧରେ ସର୍ବାପେକ୍ଷା ଅଧିକ ପ୍ରଭାବଶାଳୀ ଓ ଜାଗତିଆର ଦଳ ବୋଲି ସିଦ୍ଧ କରିଦେଲେ । ମୋଟାମୋଟି କହିଲେ ବିରୋଧ ବୋଇଲେ ପି. ଏସ୍. ପି.କୁ ହିଁ ବୁଝାଉଥିଲା । କମ୍ୟୁନିଷ୍ଟ, ସ୍ୱତନ୍ତ୍ର ଏବଂ ଜନସଂଘ ଗୋଷ୍ଠୀଠାରୁ କମ୍ ହୋଇ ସୁଦ୍ଧା ଲୋକପ୍ରତିନିଧି ଭାବରେ ସେମାନଙ୍କର କାର୍ଯ୍ୟ ଏବଂ ସେମାନେ ଯେଉଁଭଳି ନିଜର କର୍ତ୍ତବ୍ୟ ସମ୍ପାଦନ କରିଥିଲେ, ତହିଁରେ ସେମାନେ ସମସ୍ତଙ୍କୁ ଟପିଗଲେ । ସେହିପରି ଭାବରେ ସମ୍ବାଦପତ୍ରମାନଙ୍କରେ ଏବଂ ଲୋକେ ମଧ୍ୟ ପି. ଏସ୍. ପି. ସଭ୍ୟଙ୍କର ତାରିଫ୍ କରିଥିଲେ । ପାର୍ଟି ବଡ଼ ଦୁରବସ୍ଥା ଦେଇ ଗତିକରି ଅତି ନିମ୍ନ ଅବସ୍ଥାରେ ପଡ଼ିଥିଲା । ଆମର ଶତ୍ରୁ ଓ ବନ୍ଧୁ ଉଭୟେ ଯେତେବେଳେ ପି. ଏସ୍. ପି.କୁ ଟିଟିକାର କରୁଥିଲେ, ସେତେବେଳେ ପାର୍ଲିମେଣ୍ଟରେ ପି. ଏସ୍. ପି. ସଭ୍ୟମାନେ ଆମର ଶିଖା ଜାଳି ରଖିଥିଲେ ଏବଂ ଦେଶର ଜ୍ୱଳନ୍ତ ସମସ୍ୟାଗୁଡ଼ିକ ପ୍ରତି ଲୋକଙ୍କ ଦୃଷ୍ଟି ଆକର୍ଷଣ କରାଉଥିଲେ । ପାର୍ଟିର ନୈତିକତାକୁ ସେମାନେ ନିଶ୍ଚିତଭାବରେ ତେଜ କରିଥିଲେ । ବାସ୍ତବିକ ଦେଖିଲେ ପି. ଏସ୍. ପି. ପୁନରୁଦ୍ଧାର ଲାଗି ଯେଉଁ ପ୍ରଚେଷ୍ଟା ହୋଇଥିଲା, ସେଥିରେ ଏହାହିଁ ଆମକୁ ଶେଷରେ ଖୁବ୍ ସାହାଯ୍ୟ କରିଥିଲା ।"

## ଓଡ଼ିଶାରେ ପାର୍ଟିର ଅଭିବୃଦ୍ଧି

ଅନ୍ୟ ପ୍ରଦେଶରେ ପାର୍ଟି ଭିତରେ ବିଭେଦ ଓ ଅନ୍ୟ ନାନା ଜଞ୍ଜାଳ ହେତୁ ପାର୍ଟି କ୍ରମେ କ୍ଷୀଣ ଓ ଦୁର୍ବଳ ହୋଇଯାଉଥିଲା । ଏହି ପାଞ୍ଚବର୍ଷ ଭିତରେ (୧୯୬୨-୧୯୬୭) ଓଡ଼ିଶା ପାର୍ଟି ଅଲୌକିକ ସାଫଲ୍ୟ ହାସଲ କରିଥିଲା । ୧୯୬୩ ଭୋପାଳ ସମ୍ମିଳନୀରେ ଏସ୍. ଏମ୍. ଜୋଶୀ ପାର୍ଟିର ଚେୟାରମ୍ୟାନ୍ ଓ ପ୍ରେମ ଭସୀନ୍ ସାଧାରଣ ସମ୍ପାଦକ ହେଲେ । ମୁଁ ଏହିବର୍ଷଠାରୁ ଆଉ ପାର୍ଟିର ଡେପୁଟି ଚେୟାରମ୍ୟାନ୍ ରହିଲି ନାହିଁ । ଫଳରେ ପାର୍ଲିମେଣ୍ଟ ଓ ଭାରତୀୟ ପାର୍ଟିର ସଙ୍ଗଠନ କାର୍ଯ୍ୟ ଛଡ଼ା ଓଡ଼ିଶା ପାର୍ଟି ସଙ୍ଗଠନ ଲାଗି ଅଧିକ ସମୟ ଦେଇପାରିଥିଲି ।

ଏହି ସମୟ ଭିତରେ ଅତି ସନ୍ତୋଷଜନକ ଭାବରେ ଓଡ଼ିଶାରେ ଶ୍ରମିକ ସଙ୍ଗଠନ ପ୍ରସାର ଲାଭ କରିଥିଲା । ପ୍ରଥମଥର ଲାଗି ପ୍ରାୟ ୨ ହଜାର ଶ୍ରମିକ ସେମାନଙ୍କ ଦାବୀପତ୍ର ଓଡ଼ିଶା ଆସେମ୍ବ୍ଲିରେ ପେଶ୍ କରିଥିଲେ । ଧୂଳୀଶ୍ୱର ବର୍ତ୍ତିଆଙ୍କ ନେତୃତ୍ୱରେ ରାଉରକେଲାର ପ୍ରାୟ ୫୦୦ରୁ ଅଧିକ ଶ୍ରମିକ ସାଇକେଲରେ ୩୦୦ ମାଇଲ ଆସି ଚୌଦ୍ୱାରରେ ପହଞ୍ଚିଲେ । ସେଠାରେ ରାଜକିଶୋର ସାମନ୍ତରାୟ ଆଗରୁ ଦୃଢ଼ ଶ୍ରମିକ ସଙ୍ଗଠନ କରିଥିଲେ । ଏମାନେ ସମସ୍ତେ ମିଶି ବାଙ୍କବିହାରୀ ଦାସ, ରାଜକିଶୋର ସାମନ୍ତରାୟ, ଧୂଳୀଶ୍ୱର ବର୍ତ୍ତିଆ, ସମରେନ୍ଦ୍ର କୁଣ୍ଡୁ, ଜଗଦୀଶ ନାଗ ଓ ଆକୁଳାନନ୍ଦ ବେହେରାଙ୍କ ନେତୃତ୍ୱରେ ଆସେମ୍ବ୍ଲି ଆଗରେ ବିକ୍ଷୋଭ ପ୍ରଦର୍ଶନ କରିଥିଲେ ଓ ଶ୍ରମିକଙ୍କର ଦାବୀମାନ ଉପସ୍ଥାପନ କରିଥିଲେ । ଏତିକବେଳେ ମଧ୍ୟ ଓଡ଼ିଶାରେ କେବେ ଦେଖାନଥିବା ପ୍ରାୟ ୨୫ ହଜାର ଚୌକିଦାର ଦଫାଦାରଙ୍କ ସଙ୍ଗଠନ ସଂସାରୀ ମଲ୍ଲିକ ଓ ହରିହର ବାହିନୀପତିଙ୍କ ନେତୃତ୍ୱରେ ସଙ୍ଗଠିତ ହୋଇଥିଲେ । ବାହିନୀପତି ଆସେମ୍ବ୍ଲିର ସଭ୍ୟ ଥିଲେ ଏବଂ ପରେ ୧୯୬୭ ମସିହାରେ ଯେତେବେଳେ ସ୍ୱତନ୍ତ୍ର-ଜନକଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳ ଗଠିତହେଲା, ସେତେବେଳେ ଉପବାଚସ୍ପତି ହୋଇଥିଲେ । ଆଉ ୩ଟି ଉଲ୍ଲେଖଯୋଗ୍ୟ ଆନ୍ଦୋଳନରେ ଓଡ଼ିଶା ପାର୍ଟି ସକ୍ରିୟ ଭାଗ ନେଇଥିବାରୁ ଏହାର ଲୋକପ୍ରିୟତା ବୃଦ୍ଧି ପାଇଥିଲା । ଏକ ହେଲା ଗ୍ରୁପ-ସ୍କୁଲ ଆନ୍ଦୋଳନ, (୨) ଦୁର୍ନୀତି-ନିବାରଣ ଆନ୍ଦୋଳନ, (୩) ଚାଷୀ ଆନ୍ଦୋଳନ । ପ୍ରଥମ ପର୍ଯ୍ୟାୟରେ ଭାଗଚାଷୀ ଆନ୍ଦୋଳନ କରି ଓଡ଼ିଶା ସାରା କୃଷକ ଶ୍ରେଣୀ ଭିତରେ ପାର୍ଟି ସଙ୍ଗଠନ ପ୍ରବେଶ କରିପାରିଥିଲା । ଦ୍ୱିତୀୟ ପର୍ଯ୍ୟାୟରେ ଜଳକର ବୃଦ୍ଧି ବିରୋଧୀ ଏବଂ ଭୂରାଜସ୍ୱ ଛାଡ଼ଲାଗି ଏକ ବିରାଟ ଆନ୍ଦୋଳନ ଠିଆ କରିବାରେ ପାର୍ଟି ସମର୍ଥ ହୋଇଥିଲା । ସ୍ୱାଧୀନତା ଆନ୍ଦୋଳନ ଭିତରେ ଓଡ଼ିଶାରେ ଚାଷୀମାନେ କେତେକ ସ୍ଥଳରେ ସଙ୍ଗଠିତ ହୋଇ ଟିକସ ବନ୍ଦ ଆନ୍ଦୋଳନ କରିଥିଲେ । ମାତ୍ର ଏପରିଭାବେ ସରକାରର ପ୍ରତ୍ୟକ୍ଷ ସଂଘର୍ଷରେ ଆସି ପ୍ରଜାସୋସଲିଷ୍ଟ ପାର୍ଟିର ଆହ୍ୱାନରେ ଜଳକର ଦେବା ବନ୍ଦକରିବା ଏକପ୍ରକାର ନୂଆ କଥା । କଂଗ୍ରେସ ସରକାର ଥିଲା । ଜଳକର ଅସୁଲ ନିମନ୍ତେ ଯାବତୀୟ ଅତ୍ୟାଚାରର ପନ୍ଥା ଅବଲମ୍ବନ କରାଯାଇଥିଲା; ଅତି ମଫସଲ ଗ୍ରାମର ସ୍ତ୍ରୀଲୋକମାନେ ସୁଦ୍ଧା ଗାଁମାନଙ୍କରେ

ଜଲକର ଅସୁଲର ପ୍ରତିରୋଧ କରି ପୁଲିସର ସମ୍ମୁଖୀନ ହୋଇଥିଲେ । ଫଳରେ ପ୍ରଜା ସୋସଲିଷ୍ଟ ପାର୍ଟିର ଚେର ବହୁ ଗଭୀରରେ ପ୍ରବେଶ କରିଥିଲା । ଏହିସବୁ ଆନ୍ଦୋଳନ ଯୋଗୁଁ ଏବଂ କୃଷୀଙ୍କ ଭିତରେ ଆନ୍ଦୋଳନ ଓ ସଙ୍ଗଠନ କରିଥିବା ହେତୁ, ୧୯୬୭ ମସିହା ସାଧାରଣ ନିର୍ବାଚନରେ ପାର୍ଟି ଅପୂର୍ବ ସାଫଲ୍ୟ ଲାଭକରିଥିଲା । ଲୋକସଭାରେ ୪ଟି ସ୍ଥାନ ଏବଂ ବିଧାନସଭାରେ ୨୧ଟି ସ୍ଥାନ ହାସଲ କରିପାରିଥିଲା । ଓଡ଼ିଶା ପାର୍ଟିର ଅଭ୍ୟୁଦୟର ଆହୁରି ଏକ କାରଣ ଥିଲା ପାର୍ଟି ଭିତରେ ସଂହତି, ଶୃଙ୍ଖଳା ଏବଂ ପାର୍ଟି ପାଇଁ କାର୍ଯ୍ୟ କରିବା ନିମନ୍ତେ ପାର୍ଟି ସାଥିମାନଙ୍କର ନିଷ୍ଠା । ପାର୍ଟି ଭିତରେ ଯେ କିଛି ମତଭେଦ ନଥିଲା ତାହାନୁହେଁ, କିନ୍ତୁ ଅନ୍ୟ ରାଜ୍ୟ ପରି ପାର୍ଟିର ନେତୃତ୍ୱ ନେବା ନିମନ୍ତେ ବିବାଦ ଯୋଗୁଁ ଫଟାଫଟି ହୋଇନଥିଲା । ସଫଳତାର ଆହୁରି ଏକ ବଡ଼ କାରଣ ହେଲା, ଉପରେ ପାର୍ଟିର ଯେଉଁସବୁ ବିବାଦ, ସଂଘର୍ଷ ଓ ଭଙ୍ଗାଭଙ୍ଗି ଚାଲିଲା, ତହିଁରୁ ଓଡ଼ିଶାର ପାର୍ଟି ସାଥିମାନେ ଅଲଗା ରହିଥିଲେ, ସେଥିରେ ଜଡ଼ିତ ହୋଇନଥିଲେ । କେବଳ ଲୋହିଆ ପାର୍ଟିକୁ ବିଖଣ୍ଡିତ କରିବାରେ ସମର୍ଥ ହୋଇଥିଲେ ଏବଂ ସେତେବେଳେ ମୋର କେତେକ ଅତି ପ୍ରିୟ ଯୁବସାଥି ଶେଷକୁ ଆମକୁ ଛାଡ଼ି ଗଲେ । ମାତ୍ର ନାରାୟଣ ସାହୁ ଓ ଜଗନ୍ ପଟ୍ଟନାୟକଙ୍କର ବାସ୍ତବିକ ଲୋହିଆଙ୍କ ନୀତି, ନେତୃତ୍ୱ ଓ କାର୍ଯ୍ୟକ୍ରମ ପ୍ରତି ବିଶ୍ୱାସ ହେବାରୁ ତହିଁରେ ଯୋଗଦେଇଥିଲେ ।

## ୧୯୭୩ରେ ପୁଣି ମିଶ୍ରଣ କଥା ଭାଙ୍ଗିଲା

ଏତେସବୁ ଦୁର୍ବିପାକ ଭୋଗକରି ପ୍ରଜା ସୋସଲିଷ୍ଟ ପାର୍ଟି ସମାଜବାଦୀ ଏକତା ମରୀଚିକା ପଛରେ ଧାଇଁବାକୁ ଲାଗିଲା । ପାର୍ଟି ଯେତେ ଶୀର୍ଣ୍ଣ ଓ ଶକ୍ତିହୀନ ହୋଇପଡ଼ିଲା, ସେତେ ଅନ୍ୟ କାହାରି ସାହାଯ୍ୟ ବା ସହଯୋଗରେ ପାର୍ଟିର ଶକ୍ତି ବୃଦ୍ଧି କରିବା ମୋହରେ ପଡ଼ିଗଲା । ତେଣୁ ୧୯୭୨ ନିର୍ବାଚନର ବିପର୍ଯ୍ୟୟ ପରେ ପାଟନାଠାରେ କାର୍ଯ୍ୟକାରୀ ସମିତି ବୈଠକ ବସି ସମସ୍ତ ଗଣତାନ୍ତ୍ରିକ ସମାଜବାଦୀ ଶକ୍ତିଗୁଡ଼ିକର ଏକତା ଧ୍ୱନି ଉଠାଇଲା । ଏଥିରେ କିଛି ଦୋଷ ନଥିଲା; ମାତ୍ର ଏହାର ପ୍ରଥମ ସୋପାନ ରୂପେ ପ୍ରଜା ସୋସଲିଷ୍ଟ ପାର୍ଟି ଓ ସୋସଲିଷ୍ଟ ପାର୍ଟି ଭିତରେ ମିଳନର ପ୍ରସ୍ତାବ ଆସିଲା । ଏଥିରେ କିଛିଦିନ କଥାବାର୍ତ୍ତା ଚାଲି ଗୋଟାଏ ପ୍ରକାର ଆଶାର ସଞ୍ଚାର ହେଲା ଏବଂ ପାର୍ଟିର ସାଙ୍ଗଠନିକ କାର୍ଯ୍ୟ ମଧ୍ୟ ବ୍ୟାଘାତ ପାଇଲା । ଦୁଇ ପକ୍ଷରୁ କମିଟି ନିଯୁକ୍ତ ହେଲା । ସୋସଲିଷ୍ଟ ପାର୍ଟିର ଏକତା ଦୃଷ୍ଟିକୋଣ ଓ ଆମ ଭିତରେ ମେଳ ନଥିଲା । ଆମେ ଚାହୁଁଥିଲୁ ଦେଶରେ ଗଣତାନ୍ତ୍ରିକ ସମାଜବାଦୀ ଶକ୍ତିଗୁଡ଼ିକୁ ଏକତ୍ର କରିବା ନିମନ୍ତେ । କିନ୍ତୁ ସୋସଲିଷ୍ଟ ପାର୍ଟି ଚାହୁଁଥିଲା ସ୍ୱତନ୍ତ୍ର ପାର୍ଟି, ଜନସଙ୍ଘ ଓ କମ୍ୟୁନିଷ୍ଟ ପାର୍ଟି ସମସ୍ତଙ୍କ ସହ ମିଳିତ ଫ୍ରଣ୍ଟ । ତାହାଛଡ଼ା ଆଗରୁ ଭାଷା ସମସ୍ୟା ଓ ପଛୁଆ ଜାତିର ରିଜର୍ଭେସନ ବିଷୟରେ ପି. ଏସ୍. ପି. ଏକମତ ନଥିଲା ଏବଂ ସେ ବିଷୟରେ ପରସ୍ପର ଆଲୋଚନା କରି କିଛି ଗୋଟାଏ ସମାଧାନର ସୋସଲିଷ୍ଟ ପାର୍ଟି

ପକ୍ଷପାତୀ ନଥିଲା । ଏହି ଅଧ୍ୟାୟ ବିଷୟରେ ଏସ୍. ଏମ୍. ଜୋଶୀ ଭୋପାଳ ସମ୍ମିଳନୀରେ ପ୍ରସ୍ତାବ ଆଗତ କରି ଯାହା କହିଥିଲେ, ତାହା ଉଲ୍ଲେଖ କରିବା ସଙ୍ଗତ ହେବ । ଏହି ଏସ୍. ଏମ୍. ଜୋଶୀ ପରେ ଯେ ଖଣ୍ଡିତ ଏସ୍. ଏସ୍. ପି. ଗଠିତ ହୋଇଥିଲା, ତାର ଚେୟାରମ୍ୟାନ୍ ହୋଇଥିଲେ । ସେ କହିଥିଲେ—"ଆମେ ପ୍ରକୃତରେ ଏକତା ଲାଗି ଚେଷ୍ଟା କରିଥିଲୁ; କିନ୍ତୁ ମୋର ସନ୍ଦେହ ସୋସଲିଷ୍ଟ ପାର୍ଟି ଏକତା ନଚାହିଁ ପାର୍ଟିକୁ ଭାଙ୍ଗିଦେବା-ଲାଗି ଉଦ୍ୟତ । ଆମ ମେମ୍ବରମାନଙ୍କୁ ଡାକରା ଦିଆଯାଉଛି ନେତାମାନଙ୍କ ବିରୁଦ୍ଧରେ ବିଦ୍ରୋହ କରିବା ନିମନ୍ତେ ଓ ପାର୍ଟି ଛାଡ଼ିଦେବା ନିମନ୍ତେ ।"

ସେ ପୁଣି କହିଲେ—"ଡକ୍ଟର ଲୋହିଆ ଆମକୁ ଏକ ନିକମ୍ମା ପାର୍ଟି, କେବଳ ଗାଳିଦେବା ଗୋଷ୍ଠୀ ଏବଂ କଂଗ୍ରେସର ଏଜେଣ୍ଟ ବୋଲି କହୁଛନ୍ତି । ସେ କଣ ଆଶା କରୁଛନ୍ତି ଯେ ଆମେ ହାତଗୋଡ଼ ଭାଙ୍ଗି ତାଙ୍କ ଦୁଆରେ ଯାଇ ପହଞ୍ଚିବୁ ଏବଂ ଆମର ଦୋଷ କ୍ଷମା କରିବା ନିମନ୍ତେ ପ୍ରାର୍ଥନା କରିବୁ ? ଯଦି ହୃଦୟର ମିଳନ ହୁଏ ତେବେ ଯାଇ ବାସ୍ତବିକ ଦୁଇପାର୍ଟିର ଏକତା ସମ୍ଭବ । ପରସ୍ପରର ଆତ୍ମସମ୍ମାନ ରକ୍ଷା ହୋଇପାରିଲେ ତେବେ ଯାଇ ଏହି ଏକତା ହାସଲ ହୋଇପାରିବ ।"

ଏଇଥିରୁ ବୁଝାଯିବ, ଏଭଳି ଏକତାରେ କୌଣସି ଆନ୍ତରିକତା ନଥିଲା ଏବଂ ସୋସଲିଷ୍ଟ ପାର୍ଟି ଜାଣିଶୁଣି ଏଭଳି ମନୋବୃତ୍ତି ଗ୍ରହଣ କରିଥିଲା । କାରଣ ରାଜନାରାୟଣ ଘୋଷଣା କରି ଦେଇଥିଲେ ଯେ ଅନ୍ୟ ସମସ୍ତଙ୍କ ଲାଗି ଦ୍ୱାର ଉନ୍ମୁକ୍ତ ରହିଥିଲା; ମାତ୍ର ପ୍ରଜା ସୋସଲିଷ୍ଟ ପାର୍ଟି ଲାଗି ନୁହେଁ । ସୋସଲିଷ୍ଟ ଆନ୍ଦୋଳନର ଦୁର୍ଭାଗ୍ୟ ଯେ, ବାରମ୍ବାର ଏପରି ପ୍ରଚେଷ୍ଟା ବ୍ୟର୍ଥ ହୋଇ ଆମେ ପ୍ରଜା ସୋସଲିଷ୍ଟ ପାର୍ଟିର ନେତାମାନେ ଏ ଦିଗରେ ଏକ ଦୃଢ଼ ମନୋଭାବ ନେଇପାରିଲୁ ନାହିଁ ଏବଂ ଡଃ ଲୋହିଆ ଓ ତାଙ୍କ ଅନୁଚରମାନେ ପ୍ରଜା ସୋସଲିଷ୍ଟ ପାର୍ଟିକୁ ଦୁର୍ବଳ କରିବା ନିମନ୍ତେ ଯେଉଁ ଚକ୍ରାନ୍ତ କରିଥିଲେ ତହିଁର ଶିକାର ହୋଇଗଲୁ । ଏପରି ସବୁ କାର୍ଯ୍ୟରେ ମହାରାଷ୍ଟ୍ର ସାଥୀଙ୍କ ଭିତରେ ଯେଉଁ ଆଞ୍ଚଳିକ ମନୋଭାବ ରହିଥିଲା ଏବଂ ମହାରାଷ୍ଟ୍ରର ତାଙ୍କର ଯେଉଁ ସାଥୀସବୁ ଲୋହିଆଙ୍କ ସାଙ୍ଗରେ ଯାଇଥିଲେ ସେମାନଙ୍କୁ ଫେରାଇ ଆଣିବାଲାଗି ନିଜର ଇଚ୍ଛା ଓ ଦୁର୍ବଳତା ବହୁପରିମାଣରେ ବାରମ୍ବାର ଏପରି ଏକତା ବିଷୟ ପାର୍ଟି ସମ୍ମୁଖରେ ଆଣି ରଖୁଥିଲା । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସୋସଲିଷ୍ଟ ଆନ୍ଦୋଳନର ଇତିହାସ ଯାହାକୁ ଜଣାଥିବ ସେ ଅନୁଧ୍ୟାନ କଲେ କାରଣ ତାହାର କରିପାରିବ । ମହାରାଷ୍ଟ୍ରର ସାଥୀମାନଙ୍କର ଦାନ ଏହି ଆନ୍ଦୋଳନ ପ୍ରତି ଅବିସ୍ମରଣୀୟ ହୋଇଥିଲେ ସୁଦ୍ଧା ସେମାନଙ୍କ ଭିତରେ ରହିଥିବା ତୀକ୍ଷ୍ଣ ଆଞ୍ଚଳିକ ଭ୍ରାତୃପ୍ରୀତି ଅନେକ ସମୟରେ ସେମାନଙ୍କ ଚିନ୍ତା ଓ କାର୍ଯ୍ୟକୁ କଳୁଷିତ କରୁଥିଲା ଏବଂ ତାହା ଫଳରେ ସୋସଲିଷ୍ଟ ଆନ୍ଦୋଳନ କମ୍ କ୍ଷତିଗ୍ରସ୍ତ ହୋଇନଥିଲା ।

## ଅଶୋକ ମେହ୍‌ଟା, କଂଗ୍ରେସ, ସୋସଲିଷ୍ଟ ପାର୍ଟି

୧୯୬୨ ବେଳକୁ ଅଶୋକ ମେହ୍‌ଟା ହିଁ ପାର୍ଟିର ତୁଙ୍ଗ ନେତା ହୋଇ ରହିଲେ । ପାର୍ଟିର ବିପର୍ଯ୍ୟୟ ଲାଗି କେବଳ ତାଙ୍କୁ ଦୋଷ ଦେଲେ ହେବନାହିଁ; ଆମେ ସବୁ ତାଙ୍କ ସହ ମିଶି ଯେ ନେତୃମଣ୍ଡଳୀ ଭାବରେ ପରିଚିତ ହୋଇଥିଲୁ , ସେମାନେ କିଛୁ କମ୍ ଭୁଲ କରିନାହାନ୍ତି । ଲୋହିଆ ପାର୍ଟି ଭାଙ୍ଗିବାରେ ଲାଗିପଡ଼ିଲେ; ଭାଙ୍ଗି ନପାରି ନିଜେ ଗୋଟିଏ ପାର୍ଟି ଗଠନ କରିଗଲେ; କିନ୍ତୁ ଅଶୋକ ମେହ୍‌ଟା ଯେଉଁଭଳି ପଦକ୍ଷେପ ନେଲେ ତହିଁରେ ପାର୍ଟି ଅତ୍ୟନ୍ତ ଦୁର୍ବଳ ହୋଇଗଲା ।

୧୯୫୨ ନିର୍ବାଚନରେ ପରାଜୟ ପରେ ଯେମିତି ହତାଶାରେ ପଡ଼ି ଆମେ ଏଣୁତେଣୁ ହୋଇ ପାର୍ଟିର ମୂଳ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ପ୍ରତି ଗୁରୁତ୍ୱ ନ ଦେଇ କାର୍ଯ୍ୟକ୍ରମ ଭିତ୍ତିରେ ନୂତନ ଢଙ୍ଗରେ ପାର୍ଟି ଗଠନ କରିଥିଲୁ, ସେହିଭଳି ୧୯୬୨ ନିର୍ବାଚନର ଫଳାଫଳ ପରେ ଅଶୋକ ମେହ୍‌ଟା ନିତାନ୍ତ ମ୍ରିୟମାଣ ହୋଇପଡ଼ିଥିଲେ । ମୁଁ ତ ଡେପୁଟି ଚେୟାରମ୍ୟାନ୍ ଥିଲି; ମୁଁ ଜାଣେ ସେ କିପରି କଷ୍ଟ ଓ ପରିଶ୍ରମ କରି ନାନା ଉପାୟରେ ସମ୍ବଳ ଓ ଅର୍ଥ ସଂଗ୍ରହ କରି ପାର୍ଟିକୁ ନିର୍ବାଚନର ସମ୍ମୁଖୀନ ହେବାକୁ ସମର୍ଥ କରାଇପାରିଥିଲେ । ମୋର ମନେହୁଏନା ଆମେ ଏଥିପୂର୍ବରୁ ଏବଂ ଏହା ପରେ ଯେତେ ନିର୍ବାଚନ ଲଢ଼ିଛୁ, କେଉଁଥର ଏପରି ସୁସଙ୍ଗଠିତ, ଶୃଙ୍ଖଳିତ ଓ ସୁବ୍ୟବସ୍ଥିତ ହୋଇପାରିନଥିଲୁ ।

ଏହା ପରେ ଏବଂ ଚୀନ ଆକ୍ରମଣ ଓ ଅନ୍ୟାନ୍ୟ ରାଜନୀତିକ ଘଟଣା ଏବଂ ବିଶେଷଭାବରେ ଆର୍ଥନୀତିକ ଅବସ୍ଥାର ଅଧୋଗତି ଦେଖି ସେ ବିଶ୍ୱାସ କଲେ ଯେ ସଂଘର୍ଷମୂଳକ ରାଜନୀତି ଆଉ ଚାଲିବ ନାହିଁ ଏବଂ ସୋସଲିଷ୍ଟ ବିରୋଧକୁ ଏକ ନିର୍ଦ୍ଦିଷ୍ଟ ସହଯୋଗମୂଳକ ବାଟକୁ ନେଇ ଯିବାକୁ ପଡ଼ିବ । ପୁଣି ତାଙ୍କ ମନରେ, କଂଗ୍ରେସ ଯେହେତୁ ସମାଜବାଦୀ କର୍ମପନ୍ଥା ଗ୍ରହଣ କରିଲାଣି ତାହା ସହିତ ଏକାଠି ହୋଇ ଦେଶର ସୋସଲିଷ୍ଟ ଅର୍ଥନୀତିକୁ ଶକ୍ତିଶାଳୀ କରିବାର ଆବଶ୍ୟକତା ଅନୁଭବ କଲେ । ଭୋପାଳ ସମ୍ମିଳନୀରେ ସଭାପତି ଭାବରେ ସେ ଏପରି ମନୋଭାବର ସୂଚନା ଅପ୍ରତ୍ୟକ୍ଷ ଭାବରେ ଦେଇଥିଲେ ଏବଂ ତାପରେ ପାର୍ଟିର ସମସ୍ତଙ୍କ ଅନୁରୋଧ ସତ୍ତ୍ୱେ ପୁଣି ପାର୍ଟି ଚେୟାରମ୍ୟାନ୍ ହେବା ନିମନ୍ତେ ଅସ୍ୱୀକାର କଲେ । କିନ୍ତୁ ସେହି ଭୋପାଳ ଅଧିବେଶନରେ ପ୍ରଜା ସୋସଲିଷ୍ଟ ଏକ ବିପରୀତ ସିଦ୍ଧାନ୍ତ ନେଲା । ସରକାରର ବିଫଳତା ଦର୍ଶାଇ ଏହା ସ୍ଥିରକଲା ଯେ ସମୟର ଆହ୍ୱାନ ହେଲା ଶାସକଦଳର ଶକ୍ତି ବିରୋଧ ଏବଂ ଶାସନଗାଦିକୁ ଦୋହଲାଇ ଦେବା ନିମନ୍ତେ ଆହ୍ୱାନ । ("Vigorous opposition to the rulling party and effective challenge to its power is the need of the hour") ଏଥିଲାଗି ଲୋକମତ ସଙ୍ଗଠିତ କରିବା ନିମନ୍ତେ କେତେକ କାର୍ଯ୍ୟକ୍ରମ ଭିତ୍ତିରେ ସଂଗ୍ରାମର ଆୟୋଜନ କରିବାଲାଗି ପାର୍ଟି ସ୍ଥିରକଲା । ତେଣୁ ତାଙ୍କର ଅଭିଳଷିତ ଉଦ୍ୟମର ଠିକ୍ ବିପରୀତ ବାଟକୁ ପାର୍ଟି ଗତି କରିବାର ସ୍ପଷ୍ଟ ସୂଚନା ଏଥିରେ ମିଳିଲା ।

# କଂଗ୍ରେସ ଭିତରୁ ସହଯୋଗର ପ୍ରଚେଷ୍ଟା

ଏହିଭିତରେ କାମରାଜ ଯୋଜନା ହୋଇ କେତେକ ମୁଖିଆ ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀଙ୍କୁ ପଣ୍ଡିତ ନେହରୁ ମନ୍ତ୍ରିମଣ୍ଡଳରୁ ବାଦ୍ ଦେଇଥିଲେ । ପ୍ରଗତିକାମୀଙ୍କ ଆଡ଼କୁ ନେହରୁ ଏଣିକି ଗତି କରିବେ ବୋଲି ଅଶୋକ ମେହେଟାଙ୍କର ଏଥିରୁ ହୃଦ୍‌ବୋଧ ହୋଇଥିଲା । ଏହି ସମୟରେ ସେ ଓ ବାସନ୍ତୀ ଦୁହେଁ ଆସି ମୋ ଘରେ ପ୍ରାୟ ଏକ ସପ୍ତାହ ରହିଥିଲେ ଏବଂ ବିଭିନ୍ନ କଂଗ୍ରେସ ନେତାମାନଙ୍କ ସହ ସମ୍ପର୍କ ସ୍ଥାପନ କରି ସେମାନଙ୍କର ମନୋଭାବ ଜାଣିବାଲାଗି ଉଦ୍ୟମ କରିଥିଲେ । ମୋର ପଡ଼ୋଶୀ ଭାବରେ ବଙ୍ଗଳାର ନେତା ଅତୁଲ୍ୟ ଘୋଷ ରହୁଥିଲେ । ସେ ତାଙ୍କ ଘରେ ବହୁ ଲୋକଙ୍କୁ ଭେଟିଲେ; ମାତ୍ର ସେତେବେଳେ ମୁଁ ଶୁଣିପାରିଲି ଅତୁଲ୍ୟ ଘୋଷ କହୁଥିବାର ଯେ—ଏ ଘରେ ଏବେ ଏପରି ଭିଡ଼ ଯେ ଆଉ ନାକ ଗୁଞ୍ଜିବାଲାଗି ସ୍ଥାନ ପାଇବା ମୁସ୍କିଲ ।

ସେହିପରି ଦିନେ ମୋ ଘରକୁ ପ୍ରାତଃଭୋଜନ ଓ ଗୃହା ଲାଗି ଉତ୍ତର ପ୍ରଦେଶର ପୂର୍ବତନ ମୁଖ୍ୟମନ୍ତ୍ରୀ ଚନ୍ଦ୍ରଭାନୁ ଗୁପ୍ତ ଓ ଆଉ କେତେକ ବନ୍ଧୁଙ୍କୁ ଡକାଯାଇଥିଲା । ସେ ଅଶୋକ ମେହେଟାଙ୍କ ବିଶ୍ଳେଷଣକୁ ପସନ୍ଦ କରୁଥିଲେହେଁ କିଛି ସଫଳତା ମିଳିବାର ଆଶା ଦେଖାଇଲେ ନାହିଁ । କାମରାଜ ଯୋଜନାରେ ତାଙ୍କୁ ବାହାର କରି ଦିଆଯାଇଥିଲା । ଏହି ଘଟଣାର କେତେକ ବର୍ଷ ପରେ ମୋର ଗୁପ୍ତାଙ୍କ ସହ କଲିକତା ଚମାନଘାଟିରେ ଭେଟ ହୋଇଥିଲା । ସେ ମତେ ତାଙ୍କ ଜଳଖିଆ ଟେବୁଲ ପାଖକୁ ଡକାଇ ନେଇ କହିଲେ—"ଦ୍ୱିବେଦୀଜୀ, ଦେଖୋ ଜବ୍ ହମ୍‌ଲୋଗ୍ ରୁହତେଥେ, ସୋସଲିଷ୍ଟ ଅନ୍ଦର ଆକର କଂଗ୍ରେସ୍‌କୋ ମଜବୁତ୍ କର୍‌ଗେ, ତବ୍ ଅଶୋକ ମେହେଟା ନେହିଁ ଶୁନା; ଅବ୍ ଦେଖିଏ—ଆଞ୍ଚଲ୍‌କେ ନୀଚେ ଆଗୟା ।" ସେ ଇନ୍ଦିରାଗାନ୍ଧୀଙ୍କୁ ଲକ୍ଷ୍ୟକରି ଏହି 'ଆଞ୍ଚଲ୍' ଶବ୍ଦ ବ୍ୟବହାର କରିଥିଲେ ।

ଏକ ପାର୍ଟି କମିଟି ଆଗରେ ୧୯୬୩ ସେପ୍‌ଟେମ୍ବର ୧୦ ତାରିଖରେ ଅଶୋକ ମେହେଟା ରାଜନୀତିକ ପରିସ୍ଥିତି ଆଲୋଚନା କରି କାମରାଜ ଯୋଜନା ପରେ କଂଗ୍ରେସର ଆଉ ତୀବ୍ର ବିରୋଧ ନକରିଯାଇ ସୋସଲିଷ୍ଟ ନୀତି କାର୍ଯ୍ୟକାରୀ କରିବା ନିମନ୍ତେ ସମ୍ପୂର୍ଣ୍ଣ ସହଯୋଗ ଦେବା କଥା ଉଠାଇଲେ ଏବଂ ତାଙ୍କୁ ଜାତିସଙ୍ଘର ଏକ ଡେଲିଗେସନ୍‌ର ସଭ୍ୟ କରି ନିଆଯାଉଛି ଏବଂ ଯୋଜନା କମିସନର ଡେପୁଟି ଚେୟାରମ୍ୟାନ୍ ପଦବୀ ଦିଆଯାଉଛି ବୋଲି ପ୍ରକାଶ କଲେ । ଏହା ଗ୍ରହଣ କରି ସେ ପାର୍ଟିର ସଭ୍ୟପଦରୁ ଇସ୍ତଫା ଦେବା କଥା ଚିନ୍ତା କରୁନାହାନ୍ତି ବୋଲି ଜଣାଇଲେ । ଏହି ବିଷୟ ବିଚାର ଲାଗି ସେପ୍‌ଟେମ୍ବର ୨୫,୨୬ ଓ ୨୭ ତାରିଖରେ କାର୍ଯ୍ୟକାରୀ ସମିତିର ବୈଠକ ବସିଲା । କଂଗ୍ରେସ ସହିତ ସହଯୋଗ ପ୍ରସ୍ତାବକୁ ସର୍ବସମ୍ମତିକ୍ରମେ ନାମଞ୍ଜୁର କରିଦିଆଗଲା; ମାତ୍ର ଜାତିସଙ୍ଘ ଡେଲିଗେସନ୍‌ର ମେମ୍ବରପଦ ଓ ଯୋଜନା କମିସନ୍‌ର ଡେପୁଟି ଚେୟାରମ୍ୟାନ୍ ପଦ ଗ୍ରହଣ କରିବା ଯେଉଁ ମତ ପାର୍ଥକ୍ୟ ଦେଖାଗଲା । ଅବଶେଷରେ ୧୪ ସପକ୍ଷରେ ଏବଂ ୫ ବିରୋଧରେ ଭୋଟ ଦେଇ ଏପରି ପଦବୀ ଗ୍ରହଣ ପାର୍ଟିର ନୀତିର ବିରୁଦ୍ଧାଚରଣ ବୋଲି ପ୍ରସ୍ତାବ ପାସ୍ ହୋଇଗଲା ।

ପାର୍ଟିର ମତ ସହ ଏ ମତ ଖାପ ଖାଇଲା ନାହିଁ । ସେତେବେଳକୁ ଅଶୋକ ମେହ୍‌ଟା ନିଉୟର୍କରେ ଥିଲେ । ପାର୍ଟି ସମ୍ପାଦକ ତାଙ୍କୁ ନିଷ୍ପତ୍ତି ଶୁଣାଇଦିଅନ୍ତେ ସେ ଦେଶକୁ ଫେରିବା ପର୍ଯ୍ୟନ୍ତ ବିଷୟଟିକୁ ମୁଲତବି ରଖିବା ନିମନ୍ତେ ଅନୁରୋଧ କଲେ । ସେ ଫେରିବା ପରେ ଡିସେମ୍ବର ୨୮, ୨୯ ଓ ୩୦ ତାରିଖରେ ଧର୍ମ କାଉନ୍ସିଲ୍ କାର୍ଯ୍ୟକାରୀ ସମିତିର ବୈଠକ ବମ୍ବେରେ ବସି ଏହି ବିଷୟ ବିଚାର କଲା । ଅଶୋକ ମେହ୍‌ଟା ନିଜେ ଉପସ୍ଥିତ ହୋଇ ତାଙ୍କର ସେହି ପୁରୁଣା ଯୁକ୍ତି ବାଢ଼ିଲେ ଏବଂ କଂଗ୍ରେସ, ସୋସଲିଷ୍ଟ ଓ ଦେଶ ସମ୍ମୁଖରେ ଏହି ସହଯୋଗ ପ୍ରଶ୍ନର ବ୍ୟାପକ ଚର୍ଚ୍ଚା ହେବା ମତଲବରେ ହିଁ ସେ ଡେପୁଟିଚେୟାରମ୍ୟାନ୍ ପଦ ସଙ୍ଗେ ସଙ୍ଗେ ଗ୍ରହଣ କରିନେଲେ ବୋଲି ଜଣାଇଲେ । ଏଥିରେ ସିଦ୍ଧାନ୍ତ କରାଗଲା, ଅଶୋକ ମେହ୍‌ଟାଙ୍କୁ ପାର୍ଟିରୁ ଇସ୍ତଫା ଦେବା ନିମନ୍ତେ କହିବାଲାଗି । କିନ୍ତୁ ଅଶୋକ ମେହ୍‌ଟା ପାର୍ଟିର ଏ ପ୍ରସ୍ତାବକୁ ଗ୍ରହଣ କଲେ ନାହିଁ । ତାପରେ ପାର୍ଟିର କାର୍ଯ୍ୟକାରୀ ସମିତିର ଦିଲ୍ଲୀଠାରେ ୧୯୬୪ ମସିହା ଫେବୃୟାରୀ ୧୫ ଓ ୧୬ ତାରିଖରେ ବୈଠକ ବସି ଏକ ପ୍ରସ୍ତାବ ହେଲା । ସେଥିରେ ଅଶୋକ ମେହ୍‌ଟାଙ୍କ ପି. ଏସ୍. ପି. ସଭ୍ୟ ପଦ ବାତିଲ କରିଦିଆଗଲା । [ Having considered Shri Asoka Mehta's reply to the resolution of the Bombay meeting of the National Executive of the Praja Socialist Party, the National Executive decides with regret, to terminate Shri Asoka Mehta's membership of the P.S.P. ] ଏହିକରେ ଅଶୋକ ମେହ୍‌ଟାଙ୍କର ପାର୍ଟିରୁ ସମ୍ପର୍କ ଛିନ୍ନ ହେଲା । ମାତ୍ର ଏହା ପରେ ଯାହାସବୁ ଘଟିଲା, ତାହା ନା ପାର୍ଟିର ନା ସୋସଲିଷ୍ଟ ଆନ୍ଦୋଳନର କାହାରି ଯଶ ବୃଦ୍ଧି କଲାନାହିଁ । ଅଶୋକ ମେହ୍‌ଟା ମୂଳରୁ ପାର୍ଟିରେ ଏହି ମତ ଗ୍ରହଣୀତ କରାଇବା ନିମନ୍ତେ ବ୍ୟର୍ଥ ହୋଇଥିଲେ ଏବଂ ସେ କେବଳ ଅଲଗା ହୋଇଯାଇଥିଲେ କିଛି ବିଶେଷ ଫରକ୍ ପଡ଼ି ନ ଥାଆନ୍ତା । ମାତ୍ର ସେ ତାଙ୍କ ପକ୍ଷରେ ଥିବା ପାର୍ଟି ସାଥିମାନଙ୍କୁ ଠୁଳ କରାଇବାକୁ ଲାଗିଲେ ।

## ଅଶୋକ-ସମର୍ଥକଙ୍କ ସ୍ୱତନ୍ତ୍ର ବିଚାର

ଏହି ସିଦ୍ଧାନ୍ତ ଫଳରେ ବହୁ ବିଶିଷ୍ଟ ସାଥିଙ୍କ ଭିତରେ ଭିନ୍ନ ପ୍ରତିକ୍ରିୟା ସୃଷ୍ଟି ହେଲା । ଆଗରୁ ବୋଧହୁଏ ଏହାସବୁ ଘଟିବ ବୋଲି ଅନୁମାନ କରାଯାଇଥିଲା । କାରଣ ଯେଉଁ ପାଞ୍ଚଜଣ ବିରୋଧରେ ଭୋଟ ଦେଇଥିଲେ, ତାଙ୍କ ଭିତରେ ଚନ୍ଦ୍ରଶେଖର ଅନ୍ୟତମ । ଦିଲ୍ଲୀରେ ଫେବୃୟାରୀ ୨୫ ଓ ୨୬ ତାରିଖରେ ରୋହିତ୍ ଦାଭେଙ୍କ ସଭାପତିତ୍ୱରେ ସେମାନେ ଏକ ବୈଠକ କରି ଏଥିରେ ସମ୍ମତ ନଥିବା ପାର୍ଟି ଲୋକଙ୍କର ଏକ ସମ୍ମିଳନୀ ଏପ୍ରିଲ ମାସରେ ଡକାଇବାର ସିଦ୍ଧାନ୍ତ ନେଲେ । ଏହା ଆଗରୁ ବହୁ ବିଶିଷ୍ଟ ପାର୍ଟି ସଭ୍ୟଙ୍କ ଦସ୍ତଖତରେ ଏକ ପତ୍ର ଶାସ୍ତ୍ରୀଜୀଙ୍କ ନିକଟକୁ ପଠାଗଲା । ସେ ଚିଠିରେ ଗୋଟିଏ ପାରାରେ ଲେଖାଥିଲା—

"ଅଶୋକ ମେହେଟା ପାର୍ଟିର ଜଣେ ସ୍ଥାପୟିତା ନେତା (founder leader) । ତାଙ୍କ ସଭ୍ୟପଦ ବାତିଲ କରିଦେବା ଏପରି ଏକ ନେତାଙ୍କ ପ୍ରତି ଅନ୍ୟାୟ ଓ ବାଛବିଚାରର କରିବା ଭଳି ନହୁଁଛି । ଏହା ଫଳରେ ପାର୍ଟି ଭିତରେ ଅଧିକ କଠୋରତା ଓ ଅସହିଷ୍ଣୁତା ଦେଖାଦେବ । ଏହା ଫଳରେ ନାହିଁନଥିବା ଏକ ସଙ୍କଟ ପାର୍ଟି ସଙ୍ଗଠନ ଭିତରେ ଆରମ୍ଭ ହୋଇଗଲା ।" ଏହି ଚିଠିରେ ଦସ୍ତଖତକାରୀ ଥିଲେ—ଗେଣ୍ଡା ସିଂହ, ଚନ୍ଦ୍ରଶେଖର, ଉଦିତନାରାୟଣ ଶର୍ମା, ଗୌରିଶଙ୍କର ରାୟ, ଓମ୍ ପ୍ରକାଶ, ରମାୟଣ ରାୟ, କଳିନାଥ ସିଂହ, ଅବଧେଶପ୍ରତାପ ମଲ୍ଲ, ରାମଜୀ ବର୍ମା, ଏ. ଏ. ସିଦ୍ଦିକୀ, ତେଜବାହାଦୁର ସିଂହ, ଚନ୍ଦ୍ର ପ୍ରତାପ ତେର୍ଦ୍ୱାରୀ, କେ. ଏନ୍. ପ୍ରଧାନ, ଏମ୍. ଏଲ୍. ଗୁନ୍‌ସୋରିଆ, ଭି. ଆର୍. ଗୋପାଲସ୍ୱାମୀ, ରୋହିତ ଦାଭେ, ଯଶବନ୍ତ ମେହେଟା, ଅମୂଲ ଦେଶାଇ, ଏମ୍. ଏସ୍. ଗୁରୁପଦସ୍ୱାମୀ, ଆର. ଭି. ବଡ଼ପ୍, ଆର୍. ପି. ସିସ୍ଥା, ଯୋଗେନ୍ଦ୍ର ଝା, ରାମାନନ୍ଦ ସିଂହ, ହରିକିଶୋର ସିଂହ, ଶିବାଜୀ ପଟିଲ, ଶାନ୍ତି ପଟେଲ, ପି. କେ. କୁଣ୍ଡେ, ପ୍ରିନ୍‌ସିପାଲ ରାମକୋଶୀ, ଏନ୍. ଟି. ଗ୍ରଫ୍, ରାଜେନ୍ଦ୍ର ନାଥ ବରୁଆ, ଭି. ଆର. ରାଧାକୃଷ୍ଣନ୍, ଟି. କେ. ରଙ୍ଗସ୍ୱାମୀ, ଅନନ୍ତୁ ବେଦଚଲି, ଅଜିତ୍ ରାୟ, ଧୀରେନ୍ ଭୌମିକ, ଏମ୍. ହାରିସ୍, ଏଫ. ଏମ୍. ପିଣ୍ଟୋ, କେ. କାନନ୍ ।

ଏହି ନାମଗୁଡ଼ିକରୁ ଦେଖାଯିବ ପ୍ରାୟ ସବୁ ପ୍ରଦେଶର ବହୁ ମୁଖିଆ ସାଥି ଅଶୋକଙ୍କ ସହିତ ବାହାରିପଡ଼ିଲେ । ଲକ୍ଷ୍ନୌରେ ଏହି ସମ୍ମିଳନୀ କଂଗ୍ରେସ ସଭାପତି କେ. କାମରାଜ ଉଦ୍‌ଘାଟନ କରିଥିଲେ ଏବଂ ଏମାନଙ୍କୁ କଂଗ୍ରେସରେ ଗ୍ରହଣ କରିବାର ଘୋଷଣା କଲେ । ଲୋକସଭାରୁ ଆମର ଛଅଜଣ ସାଥି ଯୋଗଦେଲେ; ସେମାନେ ତାଙ୍କ ସିଦ୍ଧାନ୍ତ ମତେ ଜଣାଇବାରେ ମୁଁ ସମ୍ମତ ହୋଇନଥିଲି । କିନ୍ତୁ ଓଡ଼ିଶାରୁ କେହି ଯାଇନଥିଲେ । ୧୯୫୫ରେ ଲୋହିଆଙ୍କ ପାର୍ଟି ଗଠନ ବିରୁଦ୍ଧରେ ମୁଁ ଓ ସାରଙ୍ଗଧରବାବୁ ବିବୃତି ଦେବା ପରେ ବି ୫।୬ ଜଣ ଯୁବକ ରବିରାୟଙ୍କ ନେତୃତ୍ୱରେ ତାହାର ଏକ ଶାଖା ଗଠନ କରିପାରିଥିଲେ । ମାତ୍ର ଅଶୋକ ମେହେଟାଙ୍କର କେହି ଜଣେହେଲେ ସମର୍ଥକ ମିଳିଲେନାହିଁ । ଯେତେବେଳେ ପାର୍ଟିର ନେତାମାନେ ଏପରି କୌଣସି ପରିସ୍ଥିତି ସୃଷ୍ଟି କରିଥିଲେ, ଓଡ଼ିଶା ପାର୍ଟି ସାଥିମାନଙ୍କର ସେମାନଙ୍କପ୍ରତି ଯଥେଷ୍ଟ ସମ୍ମାନ ରହିଥିଲେ ସୁଦ୍ଧା ପି. ଏସ୍. ପି ଛାଡ଼ି ଅନ୍ୟ ଦଳରେ ସାମିଲ ହେବାର ବିରୋଧ କରିଥିଲେ । ଲୋହିଆଙ୍କ ସଙ୍ଗରେ କେତେକ ସିବାଦ୍ୱାରା ପାର୍ଟିର ବିଶେଷ କ୍ଷତି ହୋଇନଥିଲା—କେତେକ କର୍ମୀଙ୍କୁ କେବଳ ହରାଇଥିଲୁ । ମାତ୍ର ମୋର ଅଶୋକ ମେହେଟାଙ୍କ ସହ ବ୍ୟକ୍ତିଗତ ଘନିଷ୍ଠତା ଖୁବ୍ ବେଶି । ସେ ମତେ ପ୍ରଭାବିତ କରିବା ନିମନ୍ତେ ଆଉ ୪।୫ ଜଣ ପୁରୁଣା ସାଥିଙ୍କି ଧରି ଦିଲ୍ଲୀରେ ମୋ ଘରେ ପହଞ୍ଚିଥିଲେ, ମତେ ଅନୁରୋଧ କରିଥିଲେ ସମ୍ମିଳନୀରେ ଯୋଗ ଦେବା ନିମନ୍ତେ । ଯେଉଁ ସାଥିମାନେ ଆସିଥିଲେ, ସେମାନଙ୍କୁ 'ନାହିଁ' କହିବା କଷ୍ଟଦାୟକ । ମାତ୍ର ମତେ ଦୃଢ଼ତାର ସହ ନାହିଁ କହିବାକୁ ପଡ଼ିଲା । ଏଥିରେ ନିରାଶହୋଇ ଅଶୋକ ମତେ ଅନୁରୋଧ କରିଥିଲେ ବ୍ୟକ୍ତିଗତ

ଭାବରେ କାମନ୍‌ଜଙ୍କ ସହ ସାକ୍ଷାତ୍ କରିବା ନିମନ୍ତେ । ମୁଁ ଅଶୋକଙ୍କୁ କହିଲି, "ଆରେ ଭାଇ ! ଆମେ ଏତେ କାଳ ଦେଶରେ ସମାଜବାଦ ପ୍ରଚାର କଲେ ଏବଂ ସମାଜବାଦୀ ଦଳ ସ୍ଥାପନ କରିଥିଲେ । ମୋର ଆଉ କାମନ୍‌ଜଙ୍କ ପାଖରୁ ସମାଜବାଦ ଜାଣିବା ନିମନ୍ତେ ଆଗ୍ରହ ନାହିଁ ।" ବନ୍ଧୁମାନଙ୍କୁ ନିରାଶ ହେବାକୁ ପଡ଼ିଲା ।

କେତେକ ବଳିଷ୍ଠ ସାଥି ଚାଲିଯିବାଦ୍ୱାରା ପାର୍ଟି ନିର୍ଦ୍ଦିଷ୍ଟଭାବରେ ଦୁର୍ବଳ ହୋଇଗଲା । ଆଗରୁ ଧକ୍‌କା ଉପରେ ଧକ୍‌କା ଖାଇ ପାର୍ଟି ସାଥିଙ୍କ ଭିତରେ ଗୋଟାଏ ପ୍ରକାର ଦୃଢ ମନୋବୃତ୍ତି ଜାତ ହୋଇଥିଲା ଏବଂ ନିଜ ଗୋଡ଼ରେ ପାର୍ଟିକୁ ଛିଡ଼ା କରାଇବାର ପଣ ସେମାନେ ନେଇଥିଲେ । ସେହି ଦୃଢ଼ତା ଯୋଗୁଁ ପାର୍ଟି ଏଭଳି ଦୁର୍ଯୋଗର ବି ସମ୍ମୁଖୀନ ହୋଇପାରିଥିଲା ।

ଏହି ସବୁ ଘଟଣା ଘଟିବାର ଅଳ୍ପଦିନ ଭିତରେ ପାର୍ଟିର ଏକବର୍ଷ ନ ପୂରୁଣୁ ରାମଗଡ଼-ଠାରେ ପାର୍ଟିର ସପ୍ତମ ବାର୍ଷିକ ସମ୍ମିଳନୀ ମଇମାସ ୧୭ରୁ ୨୦ ପର୍ଯ୍ୟନ୍ତ କରାଯାଇଥିଲା । ସେଠାରେ ପାର୍ଟିର ଯେ ସମାବେଶ ହୋଇଥିଲା ସେଥିରୁ ଦେଖାଗଲା ଭାରତର ପ୍ରାୟ ପ୍ରତ୍ୟେକ ରାଜ୍ୟର ମୁଖ୍ୟ ସାଥି ଏବଂ ଅନ୍ୟ ଡେଲିଗେଟ୍ ବହୁସଂଖ୍ୟାରେ ଆସିଥିଲେ । ନିଜ ଭିତରେ ଅଭୂତ ସହଯୋଗ ପରିଚୟ ମିଳିଲା । ପାର୍ଟିକୁ ପୁନର୍ଗଠିତ କରିବା ନିମନ୍ତେ କେତେକ ନିର୍ଦ୍ଦିଷ୍ଟ ପଦକ୍ଷେପ ନିଆଗଲା । ଏସବୁ ଦାଉ ଦଉଡ଼ମଡ଼ ସତ୍ତ୍ୱେ ପ୍ରଜା ସୋସଲିଷ୍ଟ ସାଥିମାନେ ସୋସଲିଷ୍ଟ ଆନ୍ଦୋଳନକୁ ବଞ୍ଚାଇ ରଖିବା ନିମନ୍ତେ ଯେପରି ଦୃଢ଼ପରିକର ଥିଲେ, ତାହା ଭାବିଲେ ବିସ୍ମୟ ଲାଗେ ।

## ଏସ୍. ଏସ୍. ପି. ଗଠନ ଓ ଭଙ୍ଗ

ଅଶୋକ ମେହେଟାଙ୍କୁ ପାର୍ଟିରୁ ବାହାର କରିବାର ପୂର୍ବରୁ ଏଣେ ସୋସଲିଷ୍ଟ ଏକତା ସମ୍ବନ୍ଧରେ କଥାବାର୍ତ୍ତା ଚାଲିଥାଏ । ବାଧ୍ୟର ବିଡ଼ମ୍ବନା ବୋଲି ସିନା କୁହାଯିବ—ଏ ଦୁଇଟି ବେମାରୀ—କଂଗ୍ରେସ ସହିତ ସହଯୋଗ ନା ଅସହଯୋଗ ଓ ସୋସଲିଷ୍ଟ ଏକତା—ସୋସଲିଷ୍ଟ ଆନ୍ଦୋଳନକୁ ମୂଳରୁ ଶେଷ ପର୍ଯ୍ୟନ୍ତ ଘାରି ରହିଲା । ଆମେ ଯେତେ ମାଡ଼ ଖାଇଲେ ସୁଦ୍ଧା ସେଥିରୁ ଶିକ୍ଷା କଲୁ ନାହିଁ । ଏଥିରେ ପାର୍ଟିର ପ୍ରସାର ନହୋଇ ବରଂ ପାର୍ଟି ଦିନକୁଦିନ ସଙ୍କୁଚିତ ହେଲା । ପାର୍ଟିର ନେତା ଗୋଟିକ ପରେ ଗୋଟିଏ ଯାଉଥିଲେ—ଅନ୍ୟ ପାର୍ଟିରେ ଯୋଗଦେଲେ କିମ୍ବା ନୂତନ ପାର୍ଟି ଗଢିଲେ । ଏହାଦ୍ୱାରା ମୂଳ ପାର୍ଟିର ସ୍ଥାୟିତ୍ୱ ଓ ଭାବମୂର୍ତ୍ତି ସମ୍ବନ୍ଧରେ ଲୋକଙ୍କ ମନରେ ନାନା ଆଶଙ୍କା ଉପୁଜିଲା ଏବଂ ରହିଗଲା । ଆମେ କେତେଜଣ ପାର୍ଟିର ପ୍ରଥମ ସମ୍ମିଳନୀରୁ ସମ୍ପୃକ୍ତ ଥିଲୁ ଏବଂ ପାର୍ଟିରେ ରହିଥିଲୁ; ମାତ୍ର ଅଶୋକ ମେହେଟା ଗଲା ପରେ ପାର୍ଟିର ସ୍ଥାପୟିତା ସଭ୍ୟ ବୋଲି ଯାହାକୁ ଧରାଯାଏ, ସେଥିଭିତରୁ କେବଳ ଏନ୍. ଜି. ଗୋରେ ପି. ଏସ୍. ପି.ରେ ରହିଥିଲେ । ଗଣତାନ୍ତ୍ରିକ ସମାଜବାଦ ଆଦର୍ଶ ଲାଭ ନିମନ୍ତେ ଏତେକାଳ କାର୍ଯ୍ୟ କଲାପରେ ଏବଂ ସବୁ ଧକ୍‌କା

ସନ୍ଧି ପଡ଼ିରହିଥିବାହେତୁ ଏତେବେଳକୁ ଶକ୍ତି ହ୍ରାସ ଘଟିଲେ ମନରେ ବ୍ୟଥା ହେଉଥିଲା ଏବଂ ପୂର୍ବର ତିକ୍ତ ଅଭିଜ୍ଞତା ସତ୍ତ୍ୱେ କିଛି ସଂଖ୍ୟାବୃଦ୍ଧି ଘଟିବ ଏହି ଆଶାରେ ଏସବୁ କଥାବାର୍ତ୍ତା ବାରମ୍ବାର ହେଉଥିଲା ।

ମୋ ନିଜ ମତରେ, ୧୯୬୩ ମସିହାର ଉଦ୍ୟମ ବିଫଳ ହେଲା ପରେ ଆଉ ପି. ଏସ୍. ପି. ଓ ସୋସଲଷ୍ଟ ପାର୍ଟି ଭିତରେ କୌଣସି ନୀତିଗତ ବା ଆଦର୍ଶଗତ ସାମଞ୍ଜସ୍ୟ ରହିନଥିଲା । ସେତେବେଳେ ଦେଖାଗଲା ସୋସଲଷ୍ଟ ପାର୍ଟି ଓ ଡକ୍ଟର ଲୋହିଆ ସମାଜବାଦୀ ଆଦର୍ଶ ଲାଗି ଯେତେ ବ୍ୟାକୁଳତା ଦେଖାଉନଥିଲେ, କେବଳ କ୍ଷମତା ଦଖଲ ନିଶା ତାଙ୍କ ମୁଣ୍ଡରେ ଘୁସିଥିଲା ଏବଂ ସେଇଥିଲାଗି ସେ ଅଣକଂଗ୍ରେସବାଦ ଏକ ତଥ୍ୟ ବାହାରକରି ସମସ୍ତିଙ୍କି କୁଞ୍ଚକରିବାରେ ବ୍ୟସ୍ତ ଥିଲେ । ସୋସଲଷ୍ଟ ମୂଲ୍ୟବୋଧ ଓ ଭାବଧାରାକୁ ପାଶୋରିଗଲେ; ଏପରିକି ପୁଞ୍ଜିବାଦୀ ଅର୍ଥନୀତିକ ଶୋଷଣ ବିରୁଦ୍ଧରେ ସମାଜବାଦୀଙ୍କ ସଂଗ୍ରାମ ପନ୍ଥା ପଛକୁ ପକାଇଦେଲେ—ଭାଷା ଓ ହରିଜନ ଆଦିବାସୀ, ମହିଳା ଏବଂ ଅନ୍ୟ ଅନୁନ୍ନତ ଶ୍ରେଣୀଲାଗି ସ୍ଥାନ ସଂରକ୍ଷଣ ଦାବୀ ପଛରେ ମାତିଲେ । ଜୋର୍ କରି ହିନ୍ଦୀ ପ୍ରଚଳନ ଏବଂ ସେଥି ନିମନ୍ତେ ଇଂରେଜୀ ଲେଖା ଉପରେ ଆଲକାତରା ଆଦି ଲଗାଇବା ଘଟଣା ଭାରତବାସୀଙ୍କି ବିଭକ୍ତ କଲା ସିନା, ଯୋଡ଼ିଲା ନାହିଁ । ଏହାକୁ ପୁଣି ଅତି ହାସ୍ୟାସ୍ପଦ ସ୍ତରକୁ ନିଆଗଲା । ଏପରିକି ପାର୍ଲିମେଣ୍ଟର ସବୁ ଆଇନ କାଏଦାକୁ ଜଳାଞ୍ଜଳି ଦେଇ ରାଷ୍ଟ୍ରପତିଙ୍କୁ ଭାଷଣ ଦେବାରେ ୧୯୬୩ ମସିହା ବଜେଟ୍ ଅଧିବେଶନରେ ବାଧା ଦିଆଯାଇ ବଡ଼ ଅଶୋଭନୀୟ ପରିସ୍ଥିତି ସୃଷ୍ଟି କରାଗଲା । ରାଷ୍ଟ୍ରପତି ଇଂରେଜୀରେ ଭାଷଣ ପାଠକଲେ ଏବଂ ଉପରାଷ୍ଟ୍ରପତି ହିନ୍ଦୀ ଭାଷଣ ପାଠକରିଥିଲେ । ରାଷ୍ଟ୍ରପତିଙ୍କୁ ହିନ୍ଦୀରେ ଭାଷଣ ଦେବାଲାଗି ବାଧ୍ୟ କରିବାଦ୍ୱାରା ହିନ୍ଦୀଭାଷା ଆଗେଇଲା ନାହିଁ ପଛେଇଲା । ଯେଉଁ ସୋସଲଷ୍ଟ ପାର୍ଟି ସଭ୍ୟମାନେ ଏଭଳି ଅରୁଚିକର ଆଚରଣ ଦେଖାଇଲେ, ସେମାନଙ୍କ ବ୍ୟାପାର ପାର୍ଲିମେଣ୍ଟର ସ୍ୱାଧିକାର କମିଟି (Privileges Committee)କୁ ଗଲା । ତହିଁରେ ଏଭଳି କାର୍ଯ୍ୟର ନିନ୍ଦା କରାଗଲା । ୧୯-୩-୬୩ରେ ଏଥିଲାଗି ଯେଉଁ ଡିବେଟ୍ ହୋଇଥିଲା, ସେଥିରେ ମୁଁ ଭାଷଣ ଦେଇ କହିଥିଲି—"ମୋର ବନ୍ଧୁମାନେ ସମ୍ବିଧାନକୁ ମାନ୍ୟକରନ୍ତୁ ଏବଂ ଶାନ୍ତିପୂର୍ଣ୍ଣ ଉନ୍ନତି ଚାହାନ୍ତୁ । ସେମାନେ ମଧ୍ୟ ଗଣତନ୍ତ୍ରର ପରିପୋଷକ । କିନ୍ତୁ ସେମାନେ ବୋଧହୁଏ ଭୁଲି ଯାଉଛନ୍ତି ଯେ ଏଭଳି ସବୁ କାର୍ଯ୍ୟ ଯଥା ରାଷ୍ଟ୍ରପତିଙ୍କ ପ୍ରତି ଆକ୍ଷେପମୂଳକ ଆଚରଣ ବା ସଂବିଧାନର ଅବମାନନା ଭଳି କାର୍ଯ୍ୟ ଏ ଦେଶରେ ବିଶୃଙ୍ଖଳା ଜାତ କରିବା ଶକ୍ତିଗୁଡ଼ିକୁ ପ୍ରୋତ୍ସାହନ ଦେବ—ଶାନ୍ତିପୂର୍ଣ୍ଣ ପ୍ରଗତି ବ୍ୟାହତ ହେବ ।" ବାସ୍ତବିକ ହିନ୍ଦୀ ପ୍ରଚଳନ ନିମନ୍ତେ ଯେଉଁ ଚରମ ପନ୍ଥା ଲୋହିଆ ସୋସଲଷ୍ଟମାନେ ଗ୍ରହଣ କରିଥିଲେ, ତାହାଦ୍ୱାରା ସୋସଲଷ୍ଟଙ୍କ ପ୍ରତି ଏକ ଘୃଣାଭାବ ଲୋକଙ୍କ ମନରେ ସୃଷ୍ଟି ହୋଇଗଲା । ସେହିପରି ଅଳ୍ପସଂଖ୍ୟକ ଓ ଅନୁନ୍ନତ ସଂପ୍ରଦାୟ ନାମରେ ଶତକଡ଼ା ୬୦ ସ୍ଥାନ ସଂରକ୍ଷଣ । ଏହା ପଶ୍ଚାତ୍‌ରେ ନାଁ ଥିଲା ଯୁକ୍ତି ବା ବୈଜ୍ଞାନିକ ଚିନ୍ତା । ଜାତିଭେଦ ଭାଙ୍ଗିବା ପରିବର୍ତ୍ତେ

ଏହା ସମାଜରେ ଜାତିଭେଦ ଓ ଶ୍ରେଣୀ ସଂପ୍ରଦାୟ ଭେଦକୁ ବଢ଼ାଇଲା ଏବଂ ତାହାକୁ ସ୍ଥାୟୀ କଲା ସିନା, ଊଣା ହୋଇନଥିଲା । ଏହାକୁ କେବେହେଁ କେହି ସୋସଲିଷ୍ଟ ପ୍ରୋଗ୍ରାମ୍ ବୋଲି ଗ୍ରହଣ କରି ପାରିବ ନାହିଁ କିମ୍ବା ଏପରି କାର୍ଯ୍ୟଦ୍ୱାରା କିଛି ସମାଜବାଦୀ ଆନ୍ଦୋଳନ ଶକ୍ତିଶାଳୀ ହୋଇ ନ ଥିଲା । ସୋସଲିଷ୍ଟ ପାର୍ଟି ଏହି ଅହେତୁକ ଦାବୀରେ ଦୃଢ଼ ରହିବା ଯୋଗୁଁ ଆଉ ସୋସଲିଷ୍ଟ ପାର୍ଟି ହୋଇ ରହିନଥିଲା—ଏହା ଏକ ଜାତିଆଣ ପ୍ରାଧାନ୍ୟ ପାର୍ଟିରେ ପରିଣତ ହୋଇଗଲା । ଏଭଳି ପାର୍ଟିର ଚରିତ୍ର ଖୁବ୍ ଆଗୁଆ, ଲଢ଼ୁଆ, ଚରମବାଦୀ ହୋଇଥାଇପାରେ; କିନ୍ତୁ ସମାଜବାଦୀ ହୋଇ ରହିନଥିଲା । ଏହା ହେଉଛି ପ୍ରଧାନ କାରଣ; ଯେଉଁଥିଲାଗି ବୁଲନ୍ଦସହରରେ ୧୯୬୧ ମସିହାରେ ଯେତେବେଳେ ପ୍ରଜା ସୋସଲିଷ୍ଟ ପାର୍ଟି ଓ ସଂଯୁକ୍ତ ସୋସଲିଷ୍ଟ ପାର୍ଟିର ମିଳନ ହୋଇ ପୁଣି ସୋସଲିଷ୍ଟ ପାର୍ଟିର ସୃଷ୍ଟି ହେଲା, ମୁଁ ତାହାର ଘୋର ବିରୋଧ କରିଥିଲି ।

ସୋସଲିଷ୍ଟ ପାର୍ଟିର ଏ ଚରିତ୍ର ଏବଂ ଲୋହିଆଙ୍କର ବ୍ୟକ୍ତିବାଦୀ ନେତୃତ୍ୱ ବିଷୟରେ ଆମେ ସମସ୍ତେ ସୁପରିଚିତ ଥିଲୁ । ତଥାପି ପୁଣି ୧୯୬୩ ଡିସେମ୍ବରରୁ ଦୁଇ ପାର୍ଟିର ମିଳନ ନିମନ୍ତେ ଖୁବ୍ ଜୋର୍‌ସୋର୍ କଥାବାର୍ତ୍ତା ଆରମ୍ଭ ହୋଇଗଲା । ମୁଁ ଏ ସବୁଥିରେ ଥିଲି; ମାତ୍ର ବ୍ୟକ୍ତିଗତଭାବରେ ମୋର ମତ ଥିଲା ଏହା ଏକ ନିରର୍ଥକ ପ୍ରୟାସ । କିନ୍ତୁ ବନ୍ଧୁମାନେ ସମସ୍ତେ ଲାଗିଲେ । ଅଶୋକ ମେହେଟାଙ୍କୁ ପାର୍ଟିରୁ ଅନ୍ତର କରିଦିଆଯାଇଥିବାରୁ ଡକ୍‌ଟର ଲୋହିଅ ବୋଧହୁଏ ବିଚାର କରିଥିଲେ ପାର୍ଟିକୁ ପୂର୍ଣ୍ଣରୂପେ ଗ୍ରାସ କରିବାର ଏହା ଏକ ଉଜ୍ଜ୍ୱଳ ମୁହୂର୍ତ୍ତ । ସେ ସବୁପ୍ରକାରେ ଉତ୍ସାହିତ କଲେ । ପ୍ରଜା ସୋସଲିଷ୍ଟ ଏବଂ ସୋସଲିଷ୍ଟ ପାର୍ଟି ମିଳି ସଂଯୁକ୍ତ ସୋସଲିଷ୍ଟ ପାର୍ଟିର ଗଠନ କରାଗଲା । ଏକ ଜାତୀୟ ଆଡ୍‌ହକ୍ କମିଟି ଗଠନ କରାଗଲା ଏବଂ ବନାରସଠାରେ ୧୯୬୫ ମସିହା ଜାନୁୟାରୀ ୨୯, ୩୦, ୩୧ ଓ ଫେବୃୟାରୀ ପହିଲା ତାରିଖରେ ସ୍ଥାପୟିତା ସମ୍ମିଳନୀରେ ନୀତି ନିର୍ଦ୍ଧାରଣ ନିୟମାବଳୀ ଓ କାର୍ଯ୍ୟକ୍ରମ ସ୍ଥିର ହେବା ନିମନ୍ତେ ଦିନ ଧାର୍ଯ୍ୟ ହୋଇଥିଲା । ଆଡ୍‌ହକ କମିଟି ଆଗରୁ ବସି ଏ ସବୁ ସ୍ଥିର କରିବାର କଥା । ପାର୍ଲିମେଣ୍ଟରେ ତଦନୁସାରେ ପ୍ରଜା ସୋସଲିଷ୍ଟ ପାର୍ଟିର ନାମ ବଦଳାଯାଇ ସଂଯୁକ୍ତ ସୋସଲିଷ୍ଟ ପାର୍ଟି କରାଗଲା । ମୁଁ ତହିଁର ନେତା ରହିଲି । ମାତ୍ର ବିଚିତ୍ର କଥା ହେଲା ଯେ, ଡକ୍‌ଟର ଲୋହିଆ ନା ଆଡ୍‌ହକ କମିଟି ନା ପାର୍ଲିଆମେଣ୍ଟାରୀ ପାର୍ଟିର ସଦସ୍ୟ ରହିବାକୁ ସମ୍ମତ ହେଲେ ନାହିଁ ।

ତେଣୁ ବିନା ଶୃଙ୍ଖଳା ଓ ନାନା ବିବାଦ ବିସମ୍ବାଦ ଭିତରେ ଏହି କେତେମାସ କଟିଗଲା । ଏଣେ ମିଳିତ ପାର୍ଟି ହୋଇ ସୁଦ୍ଧା ସୋସଲିଷ୍ଟ ପାର୍ଟି ବନ୍ଧୁମାନେ ପି. ଏସ୍. ପି. ନେତାମାନଙ୍କୁ ପୂର୍ବଭଳି ଆକ୍ଷେପ ଓ ସମାଲୋଚନା କରି ବିବୃତିମାନ ଦେଲେ । ଅବସ୍ଥା ଏପରି ହେଲା ଯେ, ଆଡ୍‌ହକ୍ କମିଟି ବୈଠକରେ କୌଣସି ନିଷ୍ପତ୍ତି ନିଆଯାଇ ପାରିଲା ନାହିଁ । ଏପରିକି ପ୍ରଥମ ବୈଠକରେ ଜବାହରଲାଲ ନେହରୁଙ୍କ ମୃତ୍ୟୁଲାଗି ଶୋକପ୍ରସ୍ତାବ ବି ପାସ୍ କରାଯାଇ ପାରିଲା ନାହିଁ । ମୁଁ ଲୋକସଭାରେ ଯେଉଁଭଳି ସବୁ ଅସୁନ୍ଦର ପରିସ୍ଥିତିର ସମ୍ମୁଖୀନ ହୋଇଥିଲି, ତାହା

ନଦେଖିଥିଲେ କେହି ଅନୁମାନ କରିପାରିବେ ନାହିଁ । ସୁତରାଂ ବାରାଣସୀଠାରେ ପ୍ରତିଷ୍ଠା ସମ୍ମିଳନୀ (Foundation Conference) ହେବା ବେଳକୁ କୌଣସି ବିଷୟରେ ସମ୍ମତି ନ ଥିଲା— ଏପରିକି ଡେଲିଗେଟ୍ ସଂଖ୍ୟା ନିରୂପଣରେ ମଧ୍ୟ ଦ୍ୱନ୍ଦ୍ୱ ଉପସ୍ଥିତ ହେଲା । ଆହୁରି ଏକ ଦାବୀ ହେଲା ଯେ, ସମ୍ମିଳନୀ ବସିଲେ ପ୍ରଥମ ପ୍ରସ୍ତାବ ଡକ୍ଟର ଲୋହିଆଙ୍କୁ ନିମନ୍ତ୍ରଣ କରି ଡକାଯାଉ । ଏହା ଜାଣି, ଲୋହିଆ ନୂତନ ପାର୍ଟିର ସଭ୍ୟ କିମ୍ବା ପ୍ରତିନିଧି ନଥିଲେ ସୁଦ୍ଧା, ପାର୍ଟି ଚେୟାରମ୍ୟାନ୍ ତାଙ୍କୁ ସମ୍ମିଳନୀକୁ ନିମନ୍ତ୍ରଣ ଦେଲେ । ଏହା ତାଙ୍କ ପ୍ରତି ଯଥେଷ୍ଟ ସମ୍ମାନ ନୁହେଁ ବୋଲି କହି ପ୍ରତ୍ୟାଖ୍ୟାନ କରିଦିଆଗଲା । ଡକ୍ଟର ଲୋହିଆ ବନାରସରେ ସମ୍ମିଳନୀ ନିକଟରେ ରହିଥିଲେ; ମାତ୍ର ସେ ଯୋଗ ଦେଲେନାହିଁ । ଏଣେ ସମ୍ମିଳନୀ ପାଇଁ ଯେଉଁ ଶୋଭାଯାତ୍ରା ହୋଇଥିଲା, ସେଥିରେ କେବଳ ଡକ୍ଟର ଲୋହିଆ ଆମର ନେତା ଇତ୍ୟାଦି ଧ୍ୱନି ଦିଆଯାଇ ପି: ଏସ୍: ପି: ଲୋକଙ୍କୁ ମାରପିଟ୍ କରାଗଲା । ସମ୍ମିଳନୀ ମଣ୍ଡପରେ ଚରମ ବିଶୃଙ୍ଖଳା, ମାରପିଟ୍ ଓ ଗଣ୍ଡଗୋଳିଆ ପରିସ୍ଥିତି ଭିତରେ ଏସ୍: ଏମ୍: ଜୋଶୀଙ୍କ ସଭାପତିତ୍ୱରେ ସମ୍ମିଳନୀ କାର୍ଯ୍ୟ ଆରମ୍ଭ କରିଦିଆଗଲା ।

## ପ୍ରଜା ସୋସଲିଷ୍ଟ ପାର୍ଟିର ସମ୍ମିଳନୀ ତ୍ୟାଗ

ଏଭଳି ପରିସ୍ଥିତିରେ କୌଣସି ପାର୍ଟି ଚଳିପାରିବ ନାହିଁ ବୋଲି ପ୍ରଜା ସୋସଲିଷ୍ଟ ପାର୍ଟି ପକ୍ଷ ସମ୍ମିଳନୀ ଛାଡ଼ି ଚାଲି ଆସିଲେ । ତାଙ୍କ ତରଫରୁ ହରିବିଷ୍ଣୁ କାମାତ୍ ଏକ ବିବୃତି ପାଠକରି କହିଥିଲେ—

"ଗତ ଜୁନ୍ ମାସଠାରୁ ପ୍ରଜା ସୋସଲିଷ୍ଟ ଓ ସୋସଲିଷ୍ଟ ପାର୍ଟିର ଅସ୍ଥାୟୀ ମିଶ୍ରଣ ହେବା-ଦିନୁ ଆମେ ପି: ଏସ୍: ପି: ସଦସ୍ୟମାନେ ଏହିସବୁ ଶକ୍ତିଗୁଡ଼ିକର ମିଳନ ହୋଇ ଆମ ଦେଶରେ ଏକ ଶକ୍ତିଶାଳୀ ବଳିଷ୍ଠ ସଂଗଠନ ଛିଡ଼ାହେବ ଏବଂ ଆମେ ଆମ ଦେଶ ଓ ଦେଶବାସୀଙ୍କୁ ଏକତା, ଗଣତନ୍ତ୍ର ଓ ସମାଜବାଦ ପଥରେ ଆଗେଇନେବାର ଆଶା ବାନ୍ଧିବସିଥିଲୁ ।

ଆମକୁ ଦୁଃଖର ସହ କହିବାକୁ ପଡ଼ୁଛି ଯେ, ଆଜି ସମ୍ମିଳନୀର ପ୍ରଥମ ଦିବସ (୧୯୬୫ ଜାନୁୟାରୀ ୩୧ )ରେ ଆମର ଏହି ଆଶା ପ୍ରଚଣ୍ଡ ଆଘାତ ପାଇଲା ବୋଲି ବିଚାର କଲୁଣି । ଗତ କେତେ ସପ୍ତାହ ହେଲା ଯାହା ସବୁ ଘଟଣା ଓ ପରିସ୍ଥିତି ଉପୁଜିଲା—ପୁଣି ସମ୍ମିଳନୀ ଆରମ୍ଭ ଦିବସରେ କେତେକ ପି. ଏସ୍. ପି. ସାଥୀ ବ୍ୟକ୍ତିବିଶେଷ ପ୍ରତି ଆନୁଗତ୍ୟ ପ୍ରକୃତ ଗଣତାନ୍ତ୍ରିକ ସମାଜବାଦୀ ପାର୍ଟି ପ୍ରତି ଅପମାନଜନକ ଓ ପାର୍ଟି ବିକାଶରେ ବାଧା ଦେବ ବୋଲି କହିବାରୁ ତାଙ୍କ ଉପରେ ଯେ ପ୍ରହାର ଦିଆଗଲା, ସେଥିରୁ ଆମେ ଏବେ ନିଶ୍ଚିତ ସିଦ୍ଧାନ୍ତରେ ପହଞ୍ଚିଲୁ ଯେ ଏପରି ଅସ୍ଥାୟୀ ମିଶ୍ରଣ ଏହାର ଉଦ୍ଦେଶ୍ୟ ପୂରଣ କରିନାହିଁ କିମ୍ବା ଭବିଷ୍ୟତରେ ଦେଶର କଲ୍ୟାଣ ହେବା ଭଳି ଉଦ୍ଦେଶ୍ୟ ପୂରଣ କରିପାରିବ ନାହିଁ । ଦେଶରେ ବର୍ତ୍ତମାନ ଉତ୍କଟ ଖାଦ୍ୟାଭାବ, ମୂଲ୍ୟବୃଦ୍ଧି ଓ ଜାତୀୟ ନିରାପତ୍ତା ସମସ୍ୟା ରହିଛି । ସେସବୁ ଦିଗରେ ଏ ସମ୍ମିଳନୀ କିଛି କରିପାରିବ ନାହିଁ ଏବଂ ଆମେ ଏ ଅବସ୍ଥାରେ

ଏଥିରେ ରହିବା ଅର୍ଥ କେବଳ ସମୟ ଓ ଶକ୍ତି ଅପଚୟ ଛଡ଼ା ଆଉ କିଛି ହେବ ନାହିଁ । ଲାଭ ହେବ ନାହିଁ ।

ତାହା ଛଡ଼ା ଆମେ ସର୍ବଦା ଆମ ଆଗରେ ସାଧାରଣ ଓ ନୈତିକ ଜୀବନର କିଛି ମାନ, ମୂଲ୍ୟ ଓ ଆଦର୍ଶ ମାନ ରଖିଛୁ ଏବଂ ଆମର ମହାନ୍ ନେତା ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷଚନ୍ଦ୍ର ବୋଷ, ଆଚାର୍ଯ୍ୟ ନରେନ୍ଦ୍ର ଦେବ ଆଦି ଯେଉଁ ଆଦର୍ଶ ରଖିଯାଇଛନ୍ତି, ତାକୁ ସମ୍ମାନ ଦେଉ ।

ଏଭଳି ପରିସ୍ଥିତିରେ ପ୍ରଜା ସୋସଲିଷ୍ଟ ପାର୍ଟି ଓ ସୋସଲିଷ୍ଟ ପାର୍ଟିର ମିଶ୍ରଣକୁ ଆମେ ଏହିଠାରେ ଭଙ୍ଗକଲୁ ଏବଂ ଅତି କଷ୍ଟଦାୟକ ମାନସରେ ସମ୍ମିଳନୀରୁ ପ୍ରତ୍ୟାହାର କରି ଯାଉଛୁ । ଆମେ ଅତ୍ୟନ୍ତ ବ୍ୟଥିତ ହୃଦୟରେ ଏପରି ଏକ ବଡ଼ ନିଷ୍ପତ୍ତି ନେଲୁ ; କିନ୍ତୁ ସମସ୍ତ ସଚ୍ଚା ଗଣତାନ୍ତ୍ରିକ ଶକ୍ତିଗୁଡ଼ିକ ସହ ଆମର ଭ୍ରାତୃତ୍ୱପୂର୍ଣ୍ଣ ସହଯୋଗ ରହିବ । ଆମେ ଆଜି ଏହି ଅବସରରେ ପୁଣି ଥରେ ଘୋଷଣା କରୁଛୁ ଯେ, ଯେଉଁ ସମାଜବାଦୀ ଆଦର୍ଶ ନିମନ୍ତେ ଆମେ ଏତେ କାଳ କାର୍ଯ୍ୟ କରିଆସିଛୁ, ତାହା ସେମିତି ପୂର୍ବପରି ଜାରିରହିବ । ଲୋକଙ୍କ ଆଗରେ ଆମେ ଗଣତାନ୍ତ୍ରିକ ସମାଜବାଦ ଲାଗି ଏକ ଲଢ଼ାଇର ଅସ୍ତ୍ର ସର୍ବଦା ତିଆରି କରି ରଖିଥିବୁ ।"

ଏହା ଘୋଷଣା କରି ପି. ଏସ୍. ପି. ସଭ୍ୟମାନେ ବାହାରିଆସିଲେ । କେବଳ ଏସ୍. ଏମ୍. ଜୋଶୀ ତାଙ୍କ ସହିତ ରହିଗଲେ ଓ ଏସ୍. ଏସ୍. ପି.ର ଚେୟାରମ୍ୟାନ୍ ରହିଲେ । ୮୦୦ ଡେଲିଗେଟ୍ଙ୍କ ଭିତରୁ ପି. ଏସ୍. ପି.ର ୭୨୫ ଡେଲିଗେଟ୍ଙ୍କର ବାରାଣସୀର ଡି. ଏ. ଭି. କଲେଜରେ ମୋ ସଭାପତିତ୍ୱରେ ସମ୍ମିଳନୀ ବସି ପୁଣି ପି. ଏସ୍. ପି.ର ପୁନରୁଦ୍ଧାର କରାଗଲା । ଏଥିରେ ଏନ୍. ଜି. ଗୋରେ ସଭାପତି, ତ୍ରିଲୋକୀ ସିଂହ ଉପସଭାପତି ଏବଂ ପ୍ରେମ ଭସୀନ୍ ସାଧାରଣ ସମ୍ପାଦକ ରହିଲେ । ପାର୍ଲିମେଣ୍ଟରେ ମୁଁ ପୁଣି ପି.ଏସ୍.ପି. ଦଳର ନେତା ହୋଇ ରହିଲି ଏବଂ ପାର୍ଟିର ନିର୍ବାଚନ ସଙ୍କେତ 'କୁଡ଼ିଆ' ଆମେ ଫେରିପାଇଲୁ । ପୁଣି ଏକ ମିଶ୍ରଣ ନାଟକର ଅନ୍ତ ହେଲା । ପି. ଏସ୍. ପି. ଓ ଏସ୍. ଏସ୍. ପି. ଏବେ ଦୁଇଟି ଅଲଗା ଅଲଗା ଦଳରୂପେ କର୍ମକ୍ଷେତ୍ରକୁ ଆସିଲେ । ଓଡ଼ିଶାର ସାଥୀମାନଙ୍କୁ ବାହାଦୁରି ଦେବା କଥା ଯେ, ସେମାନେ ଏକଜୁଟ ହୋଇ ପି. ଏସ୍. ପି.ରେ ହିଁ ରହିଲେ ।

## ପୁନର୍ଗଠନର ଉଦ୍ୟମ

ପାର୍ଟିର ଆରମ୍ଭ ଦିନରୁ, ବିଶେଷଭାବରେ ୧୯୫୩ ମସିହାଠାରୁ, କଂଗ୍ରେସ ସହିତ ସମ୍ପର୍କ ଏବଂ ସମାଜବାଦୀ ଏକତା ଘେନି ପାର୍ଟିଭିତରେ ଯେ ବୁଦ୍ଧିଭେଦ, ବିବାଦ ଓ ବିଶୃଙ୍ଖଳା ଉପୁଜି ପାର୍ଟିର ଅଗ୍ରଗତିରେ ଘୋର ବାଧା ପହଞ୍ଚାଇଥିଲା, ଅଶୋକ ମେହେଟାଙ୍କ ସହ କେତେକ ସାଥିଙ୍କର କଂଗ୍ରେସରେ ଯୋଗଦାନ ଏବଂ ଏସ୍. ଏସ୍. ପି. ଗଠନ ପରେ ପୁଣି ପି. ଏସ୍. ପି.ର ପୁନର୍ଗଠନ ଆପାତତଃ ସେଭଳି ବିବାଦରୁ ପାର୍ଟିକୁ ରକ୍ଷାକରିପାରିଲା । ପାର୍ଟିର ସାଥିମାନେ ଆଉ ନେତାଙ୍କ ଆଡ଼କୁ ନ ଅନାଇ ନିଜ ଉପରେ ବିଶ୍ୱାସ ରଖି

ପ୍ରତ୍ୟେକ କ୍ଷେତ୍ରରେ ପାର୍ଟି ସଂଗଠନକୁ ମଜବୁତ କରିବା ନିମନ୍ତେ ଲାଗିପଡ଼ିଲେ । ଓଡ଼ିଶା ପରି କେତେକ ରାଜ୍ୟରେ ପାର୍ଟି ଲୋକମାନଙ୍କ ଭିତରେ କ୍ରମେ ଧାରଣା ବଦ୍ଧମୂଳ ହୋଇଗଲା ଯେ ଏଣିକି ନିଖିଳ ଭାରତ ପାର୍ଟି ଆମର ସହାୟକ ହେବା ପରିବର୍ତ୍ତେ ଏପରି ସବୁ ବିବାଦଗ୍ରସ୍ତ ହେଉଛି ଯେ କାର୍ଯ୍ୟରେ ଅଗ୍ରଗତିରେ ଅନ୍ତରାୟ ହୋଇପଡ଼ୁଛି ।

ଆସନ୍ତା ସାଧାରଣ ନିର୍ବାଚନର ସମ୍ମୁଖୀନ ହେବାକୁ ପଡ଼ିବ ବୋଲି ପାର୍ଟି ସାଥିମାନେ ପ୍ରାଣପଣେ ଲାଗିପଡ଼ିଲେ—କାରଣ ପାର୍ଟିକୁ ଏକପ୍ରକାର ଏକୁଟିଆ ଏପରି ଚ୍ୟାଲେଞ୍ଜ ଗ୍ରହଣ କରିବାକୁ ପଡ଼ିଲା । ସମ୍ବଳ, ସଂଗଠନ ଓ ଆର୍ଥିକ ସ୍ଥିତି ଅତ୍ୟନ୍ତ ଦୁର୍ବଳ ଥିଲା । ତଥାପି ୧୯୬୭ ନିର୍ବାଚନରେ ସାରା ଭାରତରେ ପାର୍ଟି ଲୋକସଭା ଲାଗି ୧୦୮ ଏବଂ ଆସେମ୍ବ୍ଲି ଲାଗି ୭୫୩ ପ୍ରାର୍ଥୀ ଛିଡ଼ା କରାଇପାରିଥିଲା । ଫଳସ୍ୱରୂପ ଲୋକସଭାରେ ଆମର ଯେ ମୋଟେ ୯ଟି ସ୍ଥାନ ଥିଲା, ତାହା ବୃଦ୍ଧି ପାଇ ୧୪ଟି ସ୍ଥାନ ମିଳିଲା । ଏଥିରେ ଓଡ଼ିଶାର ୪ଜଣ ଏବଂ କର୍ଣ୍ଣାଟକର ପାର୍ଟି ସମର୍ଥିତ ସ୍ୱାଧୀନ ପ୍ରାର୍ଥୀ ଦେଶାଇ ଅନ୍ତର୍ଭୁକ୍ତ । ଆସେମ୍ବ୍ଲିମାନଙ୍କରେ ନିର୍ବାଚନ ପୂର୍ବରୁ ପାର୍ଟିର ସଭ୍ୟସଂଖ୍ୟା ଥିଲା ୬୭, ମାତ୍ର ୧୯୬୭ ନିର୍ବାଚନରେ ଆସେମ୍ବ୍ଲିରେ ପାର୍ଟି ମେମ୍ବରଙ୍କ ସଂଖ୍ୟା ହେଲା ୧୦୮ । ଏହା ଲୋହିଆଙ୍କ ଏସ୍. ଏସ୍. ପି. ପାର୍ଟିଠାରୁ ଯଥେଷ୍ଟ ଅଧିକ । ପାର୍ଟିର ଏକତା ଭାଙ୍ଗି ନୂତନ ଏସ୍. ଏସ୍. ପି. ଗଠନରେ ସେମାନେ କେବଳ ସୋସଲିଷ୍ଟ ଶକ୍ତିକୁ ଦୁର୍ବଳ କରିନଥିଲେ, ନିଜ ଦଳ କିପରି ଏକ ଶକ୍ତିହୀନ ସଙ୍କୀର୍ଣ୍ଣ ଗୋଷ୍ଠୀ ଏହା ଜଣାପଡ଼ିଗଲା ।

## ବହୁ ବିଶିଷ୍ଟ ସାଥିଙ୍କ ପରଲୋକ

୧୯୬୬ ରୁ ୧୯୬୭ ଶେଷ ସୁଦ୍ଧା ଡକ୍ଟର ଲୋହିଆଙ୍କ ସମେତ ବହୁ ବିଶିଷ୍ଟ ସାଥିଙ୍କର ପରଲୋକ ଘଟିଥିଲା । ଡକ୍ଟର ଲୋହିଆଙ୍କ ସହିତ ଆମେ ଏକତ୍ର ସ୍ୱାଧୀନତା ଲଢ଼ାଇ କରିଥିଲୁ, ଏକତ୍ର ଓ ପୁଣି ଅଲଗା ଅଲଗା ହୋଇ ସୁଦ୍ଧା ସମାଜବାଦୀ ଆନ୍ଦୋଳନରେ ରହିଥିଲୁ । ବ୍ୟକ୍ତିଗତ ଓ ଭାବଗତ ଭ୍ରାତୃଭାବ ଜାତ ହୋଇଥିଲା । ଉଇଲିଂଡନ୍ ନର୍ସିଂ ହୋମ୍‌ରେ ସେ ଶେଷପର୍ଯ୍ୟନ୍ତ ମରଣ ସହ ଯେଉଁ ରଣ କରିଥିଲେ, ତାହା ଯେ ଦେଖିଛି ସେ ଜାଣିଛି । ତାଙ୍କର ମୃତ୍ୟୁ ଆମର ଜାତୀୟ ଜୀବନରେ ଏବଂ ଭାରତର ଗଣତନ୍ତ୍ର ଓ ସମାଜବାଦୀ ଆନ୍ଦୋଳନ ଉପରେ ଘୋର ଆଘାତ ।

ସେହିପରି ଲାଲବାହାଦୂର ଶାସ୍ତ୍ରୀ, ହୋମି ଭାବା, ବୀର ସଭାରକର, ମାଷ୍ଟର ତାରା ସିଂହ, ସେନାପତି ବାପଟ୍, ଦାମୋଦର ସ୍ୱରୂପ ସେଠ, ଈଶ୍ୱରଲାଲ ଦେଶାଇ, ରାଜେନ୍ଦ୍ର ସିଂହ, ଡକ୍ଟର କେ. ବି. ମେନନ୍, ନଉଶର ଭରୁଚା, ଯୋଗେନ୍ଦ୍ର ଶୁକ୍ଳ, ମୁନ୍‌ସି ଅହମ୍ମଦ୍ ଖାନ, ଫରିଦ ଆନ୍‌ସାରୀ, କେ. କେ. ମେନନ୍, ଟ୍ରେଡ଼ ଇଉନିୟନ୍ କ୍ଷେତ୍ରରେ ଘନଶ୍ୟାମ ମିଶ୍ର ଓ ଧୁଳୀଶ୍ୱର ବସ୍ତିଆଙ୍କର ମୃତ୍ୟୁ ଘଟିଥିଲା । ଦୁଇବର୍ଷ ପରେ ୧୯୬୭ ଡିସେମ୍ବର ୩୦ ଓ ୩୧ ଏବଂ ୧୯୬୮ ମସିହା ଜାନୁୟାରୀ ପହିଲା ତାରିଖରେ କାନପୁରଠାରେ ପ୍ରଜା ସୋସଲିଷ୍ଟ

ପାର୍ଟିର ଯେଉଁ ନବମ ଅଧିବେଶନ ହୋଇଥିଲା, ତହିଁରେ ଏ ସମସ୍ତଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରାଯାଇଥିଲା । ଧୂଳୀଶ୍ୱର ବସ୍ତିଆଙ୍କ ସମ୍ବନ୍ଧରେ ପାର୍ଟି ପ୍ରସ୍ତାବରେ କୁହାଗଲା "ରାଉରକେଲାରେ ଯେ ହିନ୍ଦ୍ ମଜଦୁର ସଭାର ଇଉନିୟନ୍ ଦୃଢ଼ଭାବରେ ଛିଡ଼ାହୋଇଛି, ତାହା ବସ୍ତିଆଙ୍କର ସଙ୍ଗଠନ ଶକ୍ତି, ଅଦମ୍ୟ ଉତ୍ସାହ ଏବଂ ସ୍ୱାର୍ଥତ୍ୟାଗର ଏକ ଜ୍ୱଳନ୍ତ ନିଦର୍ଶନ ।"

ଏହିସବୁ ଆଘାତ ସତ୍ତ୍ୱେ ବି ସୋସଲିଷ୍ଟ ଆନ୍ଦୋଳନ ଆଗେଇ ଚାଲିଲା ଏବଂ ୧୯୬୭ ପରେ ପାର୍ଲିମେଣ୍ଟରେ ଆମକୁ ଅଧିକ ଭୋଟ ସହିବାକୁ ପଡ଼ିଲା ।

## ଏକ ବିକଟ ପରିସ୍ଥିତି

କେନ୍ଦ୍ରରେ କଂଗ୍ରେସ ଦଳର ଅବସ୍ଥା ସେପରି ବଳବତ୍ତର ରହିଲା ନାହିଁ ଏବଂ ୯ଟି ରାଜ୍ୟରେ କଂଗ୍ରେସ ସଂଖ୍ୟାଗରିଷ୍ଠତା ହାସଲ କରିପାରିନଥିଲା । ଏଭଳି ଅବସ୍ଥାରେ କଂଗ୍ରେସ ଓ ଅଣକଂଗ୍ରେସ ସରକାରଗୁଡ଼ିକ ପ୍ରତି ଆମର ମନୋଭାବ ସ୍ଥିର କରିବାକୁ ପଡ଼ିଲା । ଏପରି ଅଣକଂଗ୍ରେସବାଦର ହାଉଆ ବହିଲା ଯେ ଜନସଂଘ ଓ କମ୍ୟୁନିଷ୍ଟ ମଧ୍ୟ ଏକାଠି ଅନ୍ୟ ଦଳଗୁଡ଼ିକ ସହିତ ମିଶି ସରକାରରେ ପ୍ରବେଶକଲେ । ପ୍ରଜା ସୋସଲିଷ୍ଟ ପାର୍ଟି ସମଗ୍ର ବିରୋଧୀ ମେଣ୍ଟରେ ବିଶ୍ୱାସ କରୁନଥିଲା । ଏହା କେତେକ ରାଜ୍ୟରେ ପରିସ୍ଥିତି ଦେଖି ମନ୍ତ୍ରିମଣ୍ଡଳରେ ପ୍ରବେଶକଲା ଏବଂ ଆଉ କେତେକ ସ୍ଥଳରେ ବିରୋଧୀ ସହଯୋଗୀ ରୂପେ ରହିଲା । ଓଡ଼ିଶାରେ ସ୍ୱତନ୍ତ୍ର-ଜନକଂଗ୍ରେସ ମନ୍ତ୍ରିମଣ୍ଡଳରେ ପାର୍ଟି ପ୍ରବେଶ କଲାନାହିଁ; ମାତ୍ର ତାହାରେ ରହି ସ୍ଥଳବିଶେଷରେ ସହଯୋଗ କରିବା ନୀତି ଗ୍ରହଣକଲା ।

## ରାଷ୍ଟ୍ରପତି ନିର୍ବାଚନ

ଏତିକବେଳେ ଡକ୍ଟର ରାଧାକୃଷ୍ଣନ୍‌ଙ୍କର ରାଷ୍ଟ୍ରପତି କାଳ ପୂରିଗଲା । ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କୁ ଦୁଇଥର ରାଷ୍ଟ୍ରପତି କରାଯାଇଥିଲା । ମାତ୍ର ଡକ୍ଟର ରାଧାକୃଷ୍ଣନ୍‌ଙ୍କର ସ୍ପଷ୍ଟୋକ୍ତି ଯୋଗୁଁ, ବିଶେଷଭାବରେ ଚୀନ-ଭାରତ ଯୁଦ୍ଧବେଳେ ଭାରତର ଦେଶରକ୍ଷା ନୀତିର ଅବହେଳାର ସେ ଯେଉଁ ପ୍ରତ୍ୟକ୍ଷ ସମାଲୋଚନା କରିଥିଲେ, ତାହା ଶାସକବର୍ଗଙ୍କୁ ମହା ଅଡ଼ୁଆରେ ପକାଇଦେଇଥିଲା । ତେଣୁ ସେମାନେ ସ୍ଥିରକଲେ ଆଉ ଦ୍ୱିତୀୟଥର ତାଙ୍କୁ ରାଷ୍ଟ୍ରପତି କରାଯିବ ନାହିଁ । ତହୁଁ ନୂତନ ରାଷ୍ଟ୍ରପତି ବାଛିବା ନିମନ୍ତେ ବିଚାର ଚାଲିଲା ।

ଏତିକବେଳେ ପି.ଏସ୍.ପି.ର ବୈଠକ ବସି ଦେଶର ଏପରି ଏକ ସାଂବିଧାନିକ ଅସ୍ଥିର ଅବସ୍ଥା ଓ ପାକିସ୍ତାନ ଯୁଦ୍ଧ ପରେ ଉଦ୍ଭୂତ ପରିସ୍ଥିତି ଯୋଗୁଁ ଜୟପ୍ରକାଶ ନାରାୟଣଙ୍କୁ ରାଷ୍ଟ୍ରପତି କରାଯିବାର ପ୍ରସ୍ତାବ ଉଠିଲା । ଆମ ବିରୋଧୀ ଦଳଙ୍କ ଭିତରେ ଆଲୋଚନାହେଲା । କେବଳ ଜନସଂଘ ତାଙ୍କ ନାମର ବିରୋଧ କରିଥିଲା । ସମଗ୍ର ବିରୋଧୀର ପ୍ରାୟ ସମ୍ମତି ମିଳିଲା ପରେ କଂଗ୍ରେସ ସମର୍ଥନ ମିଳିଲେ ସର୍ବସମ୍ମତ ହୋଇପାରିବ ଏବଂ ଜୟପ୍ରକାଶ ନାରାୟଣ ତହିଁରେ

ନିଜର ସ୍ୱୀକୃତି ଦେବେ ଏହି ବିଷୟରେ ମୁଁ ଯାଇ କଂଗ୍ରେସ ଦଳର ନେତ୍ରୀ ତଥା ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ସହ କଥାବାର୍ତ୍ତା କଲି । ସେ କୌଣସି କଥାଟି ସିଧା ମନା କରନ୍ତି ନାହିଁ । ମୋ ସାଙ୍ଗରେ କଥାବାର୍ତ୍ତାରେ ପ୍ରକାଶ କଲେ ସତେକି ତାଙ୍କର ବିଶେଷ କିଛି ଆପତ୍ତି ନାହିଁ; ମାତ୍ର ଜୟପ୍ରକାଶ ନାରାୟଣ କାଶ୍ମୀର ଓ ନାଗାଲାଣ୍ଡ ସମ୍ପର୍କରେ ଯେପରି ମତ ବ୍ୟକ୍ତ କରିଥିଲେ, ସେଥିରେ କଂଗ୍ରେସ ପାର୍ଟି ଲୋକଙ୍କର ଏହି ପ୍ରସ୍ତାବଟି ବିଶେଷ ପସନ୍ଦଯୋଗ୍ୟ ହୋଇପାରିବ କି ନା ସନ୍ଦେହ । ସେ ରୋକ୍‌ଠୋକ୍ ମନା ନ କରିଦେଇ ଅନ୍ୟ କଂଗ୍ରେସ ନେତାଙ୍କ ସହ ଆଲୋଚନା କରିବା ନିମନ୍ତେ କହିଲେ । ମୁଁ ଏଥିରୁ ବୁଝିଲି ଯେ କଂଗ୍ରେସ ଦଳର ସମର୍ଥନ ମିଳିବ ନାହିଁ । କିନ୍ତୁ ତାହା ସତ୍ତ୍ୱେ ଜୟପ୍ରକାଶଙ୍କୁ ପ୍ରାର୍ଥୀ କରିବା ନିମନ୍ତେ ଆମ ସମସ୍ତଙ୍କର ଇଚ୍ଛା ଥିଲା ଏବଂ ଯେଉଁଭଳି ଜଟିଳ ସଂଖ୍ୟାଜଞ୍ଜାଳ ପାର୍ଲିମେଣ୍ଟ ଓ ଆସେମ୍ବ୍ଲିଗୁଡ଼ିକରେ ଘଟିଥିଲା, ସେଥିରେ ସେ ଯେ ଜିଣି ନ ଥାଆନ୍ତେ, ଏହା ଠିକ୍‌ରୂପେ କୁହାଯାଇପାରୁନଥିଲା । ମାତ୍ର ଜୟପ୍ରକାଶ ନାରାୟଣ ନିଜେ ଏଥିରେ ଆଦୌ ସମ୍ମତ ହେଲେନାହିଁ । ତାଙ୍କର ବଡ଼ଗୁଣ ଏହିଠାରେ ପ୍ରକାଶ ପାଇଲା । କୌଣସି ଉଚ୍ଚପଦବୀ ବା କ୍ଷମତାରେ ନିଜେ ବସିବାର ସେ ଆଦୌ ପକ୍ଷପାତୀ ନଥିଲେ । ତହିଁ ପ୍ରତି ତାଙ୍କର ଆଗ୍ରହ ବା ଇଚ୍ଛା ନଥିଲା । ତେଣୁ ଆମେ ତାଙ୍କ ନାମ ଆଉ ଉଠାଇଲୁନାହିଁ । ଜୟପ୍ରକାଶଙ୍କର ପଦଲାଳସା ନଥିବାର ଆହୁରି ଅନେକ ଦୃଷ୍ଟାନ୍ତ ରହିଛି—ଏହା ତହିଁରୁ ଗୋଟିଏ । ସେମିତି ଇନ୍ଦିରା ସରକାରକୁ ହଟାଇ ୧୯୭୭ରେ ଜନତାଦଳକୁ ବିଜୟୀ କରିବାର ଶ୍ରେୟ ମୁଖ୍ୟତଃ ତାଙ୍କର ଥିଲା; ମାତ୍ର ସେ କୌଣସି ପଦବୀ ଗ୍ରହଣକରିନଥିଲେ ।

## ସୁବାରାଓଙ୍କ ପ୍ରାର୍ଥୀତ୍ୱ

ଏହାପରେ ବିରୋଧୀଦଳଗୁଡ଼ିକରେ ମସୁଧା ହୋଇ ସୁପ୍ରିମ କୋର୍ଟର ବିଚାରପତି କେ· ସୁବାରାଓଙ୍କୁ ରାଷ୍ଟ୍ରପତି ଓ ଆଲିଗଡ଼ ବିଶ୍ୱବିଦ୍ୟାଳୟର ପ୍ରଫେସର୍ ହବିବ୍‌ଙ୍କୁ ବିରୋଧୀଦଳଗୁଡ଼ିକ ତରଫରୁ କଂଗ୍ରେସ ପ୍ରାର୍ଥୀ ଡକ୍‌ଟର ଜାକିର ହୋସେନ୍‌ଙ୍କ ବିରୁଦ୍ଧରେ ପ୍ରତିଦ୍ୱନ୍ଦ୍ୱିତା କରିବା ନିମନ୍ତେ ସ୍ଥିର କରାଗଲା । ପି: ଏସ୍: ପି: ବ୍ୟବସ୍ଥାପକମାନଙ୍କୁ ମୁଁ ଓ ପ୍ରେମ ଭସୀନ ସମର୍ଥନ ଦେବା ନିମନ୍ତେ ନିର୍ଦ୍ଦେଶ ଦେଲୁ ଏବଂ ଏମ୍. ଆର୍ ମଶାନୀ, ଏ. କେ. ଗୋପାଳନ୍, ହୀରେନ୍ ଘୋଷ, ଭୂପେଶ ଗୁପ୍ତ, ମଧୁ ଲିମାୟେ, ଅଟଳବିହାରୀ ବାଜପେୟୀ ଓ ମୋର ଦସ୍ତଖତରେ ଏକ ନିବେଦନପତ୍ର ପଠାଗଲା । ସେଥିରେ ଲେଖାଥିଲା —"ନୂତନ ଲୋକସଭାରେ କଂଗ୍ରେସର ସାଧାରଣ ବହୁମତ ଅଛି । ଷ୍ଟେଟ୍‌ମାନଙ୍କରେ ଯାହା ସବୁ ଘଟୁଛି, ଆସନ୍ତା କାଳ ମଧ୍ୟରେ କେନ୍ଦ୍ରରେ ମଧ୍ୟ ସେହିପରି ସରକାରୀ ଓ ମନ୍ତ୍ରିମଣ୍ଡଳ ସ୍ତରରେ ଯେ ସଙ୍କଟ ଉପୁଜିବ, ଏହା କିଛି ଅସମ୍ଭବ ନୁହେଁ । ଏବେ ରାଜସ୍ଥାନରେ ଯେଉଁଭଳି ଘଟିଗଲା, ସେପରି ପରିସ୍ଥିତି ବି ପହଞ୍ଚିଯାଇପାରେ । ରାଷ୍ଟ୍ରପତି କିପରି ନିରପେକ୍ଷ ରହି ସୁବିଚାରରେ ଏସବୁ ସମସ୍ୟାର ସମାଧାନ କରୁଛନ୍ତି, ତାହା ଉପରେ ଆମର

ଗଣତାନ୍ତ୍ରିକ ଅଗ୍ରଗତି ବହୁପରିମାଣରେ ନିର୍ଭର କରିବ । ଏଭଳି ପରିସ୍ଥିତିରେ ରାଷ୍ଟ୍ରପତି କେବଳ ଯେ ପାର୍ଟି ଲୋକ ନ ହୋଇଥିବେ ତାହା ନୁହେଁ, ତାଙ୍କର କୌଣସି ପାର୍ଟି ସହ ସମ୍ପର୍କ ନଥିବା ଉଚିତ । ଏହି ଦୃଷ୍ଟିରେ ଆମେ ଏ ସମସ୍ୟାଟିକୁ ଦେଖୁଛୁ ଏବଂ କଂଗ୍ରେସ ଦଳ ଯଦି ଏପରି ଏକ ଜାତୀୟ ସମିତିରେ ଯୋଗ ଦେଇଥାଆନ୍ତା ଆମେ ଖୁସି ହୋଇଥାଆନ୍ତୁ ।"

ଏହିପରି ଅନ୍ୟ କାରଣ ଦର୍ଶାଇ ସୁବାରାଓ ଓ ହରିବାବଙ୍କୁ ସମର୍ଥନ ଦେବା ନିମନ୍ତେ ବିରୋଧ ପକ୍ଷରୁ ନିବେଦନ କରାଯାଇଥିଲା । ମାତ୍ର ଡକ୍ଟର ଜାକୀର ହୋସେନ୍ ହିଁ ଅଧିକ ଭୋଟ ପାଇ ନିର୍ବାଚିତହେଲେ ।

## ୧୯୬୯ର ନିର୍ବାଚନ

ସେହିପରି ପୁଣି ଏକ ପରିସ୍ଥିତି ଉପୁଜିଲା । ହଠାତ୍ ଡକ୍ଟର ଜାକୀର ହୋସେନ୍ଙ୍କର ମୃତ୍ୟୁ ଘଟିବାରୁ କଂଗ୍ରେସ ଦଳ, ଭିତରେ ଏହି ସମୟରେ ମହା କଳହର ସୂତ୍ରପାତ ହୋଇଥିଲା । ସେ କଥା ପରେ ପ୍ରସଙ୍ଗକ୍ରମେ ଆଲୋଚିତ ହେବ । ଏଥରକ ମୁଁ ଏ ଦିଗରେ ଆଗରୁ ତତ୍ପର ହୋଇ ବିରୋଧୀମାନଙ୍କୁ ଏକାଠି କରିବା ନିମନ୍ତେ ଉଦ୍ୟମ କରିଥିଲି ଏବଂ ବିଠଲଭାଇ ପଟେଲ ଭବନଠାରେ ବିଭିନ୍ନ ବିରୋଧୀ ନେତାଙ୍କୁ ଡକାଇଥିଲି । ଚରଣ ସିଂହ ଉତ୍ତରପ୍ରଦେଶ ଆସେମ୍ବ୍ଲିର ବିରୋଧୀ ନେତା ଥିଲେ । ସେ ଓ ଅନ୍ୟ କେତେକ ବନ୍ଧୁ ଆସିଲେ; ମାତ୍ର କମ୍ୟୁନିଷ୍ଟ ପାର୍ଟି ଓ ଏସ୍.ଏସ୍.ପି ଏଥିରେ ସହଯୋଗ କଲେନାହିଁ । କଂଗ୍ରେସ ତରଫରୁ ସଞ୍ଜୀବ ରେଡ୍ଡି, ସ୍ୱାଧୀନ ପ୍ରାର୍ଥୀରୂପେ ଭି. ଭି. ଗିରି ଏବଂ ବିରୋଧୀ ପ୍ରାର୍ଥୀରୂପେ ସି. ଡ଼ି. ଦେଶମୁଖ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ଆମ ପାର୍ଟି ଏଥିରେ ନିରପେକ୍ଷ ନିରହି ପାର୍ଟି ସଭ୍ୟଙ୍କ ମତାନୁସାରେ ସେମାନେ ପ୍ରଥମ, ଦ୍ୱିତୀୟ ଭୋଟ ଗିରି ଓ ଦେଶମୁଖଙ୍କ ଭିତରେ ବାଣ୍ଟିଦେବା ନିମନ୍ତେ ନିର୍ଦ୍ଦେଶ ଦିଆଗଲା—କିନ୍ତୁ କେହି ଭୋଟରୁ ବିରତ ରହିପାରିବେ ନାହିଁ କିମ୍ବା କଂଗ୍ରେସ ପାର୍ଥୀ ସଞ୍ଜୀବରେଡ୍ଡିଙ୍କୁ ଆଦୌ ଭୋଟ ଦେବେ ନାହିଁ । ଏହି ନିର୍ବାଚନ ଚାଲୁଥିବାବେଳେ ଭି. ଭି. ଗିରି ମତେ ଡକାଇ ସମର୍ଥନ ଲୋଡ଼ିଥିଲେ; ମାତ୍ର ମୁଁ ତାଙ୍କୁ ଦେଶମୁଖଙ୍କ ସପକ୍ଷରେ ଓହରିଯିବା ନିମନ୍ତେ ଅନୁରୋଧ କରିଥିଲି । ସେତେବେଳକୁ ଇନ୍ଦିରା ଗାନ୍ଧୀ ତାଙ୍କୁ ସମର୍ଥନ ଦେଉଥିବା ବିଷୟ ଜଣାପଡ଼ି-ଯାଇଥିଲା । ଗିରି ମୋ କଥାରେ ଟିକିଏ ଉତ୍ତେଜିତ ହୋଇ କହିଲେ—"I will win hands down ।" 'ମୁଁ ନିଶ୍ଚିତ ଭାବରେ ଜିତୁଛି' । ବାସ୍ତବିକ ତାହାହିଁ ହେଲା । ଭି. ଭି. ଗିରି ସ୍ୱାଧୀନ ପ୍ରାର୍ଥୀ ଭାବରେ ରାଷ୍ଟ୍ରପତି ନିର୍ବାଚନରେ ଜୟୀହେଲେ ଏବଂ ଦେଶର ରାଜନୀତିରେ ଏହାପରେ ଗୁଣାତ୍ମକ ପରିବର୍ତ୍ତନ ଘଟିଲା । କଂଗ୍ରେସ ଦୁଇଖଣ୍ଡ ହୋଇଗଲା । ରାଜନୀତିକ ଅସ୍ଥିରତା ଓ ହଲଚଲ ପରିସ୍ଥିତି ସୃଷ୍ଟି ହେଲା ।

## ଭାରତ ରାଜନୀତିରେ ପରିବର୍ତ୍ତନ

କେବଳ କଂଗ୍ରେସର ବିଭାଜନ ଘଟି କେନ୍ଦ୍ରରେ ଇନ୍ଦିରା ଗାନ୍ଧୀ ମନ୍ତ୍ରିମଣ୍ଡଳ ସଂଖ୍ୟାନ୍ୟୂନ ହେଲାନାହିଁ, ବହୁ ଷ୍ଟେଟ୍‌ରେ ଗଠିତ ମିଳିତ ଫ୍ରଣ୍ଟ ଅଣକଂଗ୍ରେସ ସରକାରଗୁଡ଼ିକ ଗୋଟି ଗୋଟି ହୋଇ ଟଳିପଡ଼ିଲା । କଂଗ୍ରେସ ଦୁଇଭାଗରେ ବିଭକ୍ତ ହେଲା । ଶାସକ କଂଗ୍ରେସ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱରେ ଏବଂ ସଂଗଠନ କଂଗ୍ରେସ ମୋରାର୍‌ଜୀ ଦେଶାଇ ଓ କାମରାଜଙ୍କ ନେତୃତ୍ୱରେ ଗଠିତହେଲା । ଦେଶର ରାଜନୀତିରେ ନୈତିକତାର ଘୋର ପତନ ଘଟିଲା । ଇନ୍ଦିରା ଗାନ୍ଧୀ ଏଣେ କଂଗ୍ରେସ ଦଳର ନେତ୍ରୀ ହିସାବରେ ସଞ୍ଜୀବ ରେଡ଼ିଙ୍କ ନାମ ରାଷ୍ଟ୍ରପତି ପଦଲାଗି ପ୍ରସ୍ତାବ କରି ତେଣେ ଭି. ଭି. ଗିରିଙ୍କୁ ପ୍ରକାଶ୍ୟ ସମର୍ଥନ ଦେଲେ । ଗିରି ତାଙ୍କର ଏକପ୍ରକାର ପ୍ରାର୍ଥୀ ଥିଲେ କହିଲେ ଚଳେ । ଏହା ମୂଳରେ ରହିଥିଲା ପରସ୍ପର ପ୍ରତି ସନ୍ଦେହ ଓ ଅବିଶ୍ୱାସ । ସିଣ୍ଡିକେଟ୍‌ର ନେତାମାନେ ଭାବିଲେ, ସଞ୍ଜୀବ ରେଡ଼ିଙ୍କୁ ରାଷ୍ଟ୍ରପତି କଲେ ଇନ୍ଦିରା ଗାନ୍ଧୀଙ୍କୁ ନିୟନ୍ତ୍ରଣ କରିବା ସହଜ ହେବ । ସେମାନେ ପ୍ରଥମେ ଇନ୍ଦିରା ଗାନ୍ଧୀଙ୍କୁ ପ୍ରଧାନମନ୍ତ୍ରୀ କରିବାରେ ସମର୍ଥନ ଦେଇ ତାଙ୍କ ଉପରେ ଯେଉଁ କର୍ତ୍ତୃତ୍ୱ ସ୍ଥାପନ କରିବାର ଭରସା କରିଥିଲେ, ତାହା ବ୍ୟର୍ଥ ହୋଇଥିଲା । ତେଣୁ ଏ ଭାବରେ କାବୁ କରିବାର ପ୍ରଚେଷ୍ଟା ହେଲା । ଇନ୍ଦିରା ଗାନ୍ଧୀ ଏହା ଆଶଙ୍କା କରି ନିଜ ପାର୍ଟିର ଶୃଙ୍ଖଳା ଏବଂ ନିଜେ ପ୍ରସ୍ତାବ କରିଥିବାର ନୈତିକ ଦାୟିତ୍ୱକୁ ଭୁଲିଯାଇ ବିରୋଧରେ ଗଲେ । ଭାରତରେ ରାଜନୀତିର ଇତିହାସରେ ଏପରି ଅନୈତିକ କାର୍ଯ୍ୟର ଦୃଷ୍ଟାନ୍ତ ଆଉ ମିଳିବ ନାହିଁ । କିନ୍ତୁ ଇନ୍ଦିରା ଗାନ୍ଧୀଙ୍କ ହାତରେ କ୍ଷମତା ଥିବାରୁ କଂଗ୍ରେସ କର୍ତ୍ତୃପକ୍ଷ ତାଙ୍କୁ କଂଗ୍ରେସରୁ ବିତାଡ଼ିତ କରିବା ପରେ ବି କିଛି କୃତକାର୍ଯ୍ୟ ହେଲେ ନାହିଁ । ସେ ତାଙ୍କ ସପକ୍ଷରେ ଅଧିକ ସଂଖ୍ୟକ କଂଗ୍ରେସ ପାର୍ଲିମେଣ୍ଟ ମେମ୍ବର ଓ କଂଗ୍ରେସ କମିଟିକୁ ସାଙ୍ଗରେ ନେଇପାରିଲେ । କଂଗ୍ରେସ ଦୁଇଖଣ୍ଡ ହୋଇଯିବାରୁ ସଂଗଠନ କଂଗ୍ରେସ ପକ୍ଷ ବିରୋଧୀଦଳର ନେତା ରୂପେ ପାର୍ଲିମେଣ୍ଟର ସ୍ୱୀକୃତି ପାଇଥିଲେ । ଡକ୍‌ଟର ରାମସୁଭଗ ସିଂହ ପ୍ରଥମେ ବିରୋଧୀଦଳ ନେତା ହୋଇଥିଲେ । ଇନ୍ଦିରା ଗାନ୍ଧୀ ଆହୁରି ପାଦେ ଆଗକୁ ଯାଇ ମୋରାର୍‌ଜୀ ଦେଶାଇଙ୍କ ହାତରୁ ଅର୍ଥ ମନ୍ତ୍ରଣାଳୟ କାଢ଼ିନେଲେ । ଏଥିଲାଗି ପାର୍ଟିରେ ଆଲୋଚନା ହୋଇ ନ ଥିଲା କିମ୍ବା ତାଙ୍କୁ ଡାକି ସେ ପଚାରି ବି ନଥିଲେ । ଦୁଇପକ୍ଷ ଭିତରେ ଚୁକ୍ତି ହୋଇ ତାଙ୍କୁ ଉପ-ପ୍ରଧାନମନ୍ତ୍ରୀ କରାଯାଇଥିଲା । ଏହି ସମୟରେ ମୋର ଥରେ କୌଣସି କାର୍ଯ୍ୟ ସଂକ୍ରାନ୍ତରେ ଇନ୍ଦିରା ଗାନ୍ଧୀଙ୍କ ସହ ସାକ୍ଷାତ୍ ହୋଇଥିଲା । ମୋରାର୍‌ଜୀଭାଇଙ୍କୁ ଥରେ ପଚାରିଥିଲେ ଶିଷ୍ଟତା ଓ ସୌଜନ୍ୟ ରକ୍ଷା ହୋଇଥାଆନ୍ତା ବୋଲି ମୁଁ ତାଙ୍କୁ କହିଥିଲି । ସେ କହିଲେ- ଆପଣ ଏ ନେତାମାନଙ୍କୁ ଜାଣନ୍ତି । ମୁଁ ଯଦି କଥାବାର୍ତ୍ତା ଆରମ୍ଭ କରିଥାଆନ୍ତି, ତାଙ୍କୁ କେବେ ବିଦାୟ କରି ପାରି ନ ଥାଆନ୍ତି । ବାସ୍ତବିକ ଅର୍ଥମନ୍ତ୍ରଣାଳୟ କାଟି ନେବାରୁ ମୋରାର୍‌ଜୀ ଆଉ ଉପ-ପ୍ରଧାନମନ୍ତ୍ରୀ ନ ରହି ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇଦେଲେ ଏବଂ କଂଗ୍ରେସର ବିଭାଜନ ସମ୍ପୂର୍ଣ୍ଣ ହୋଇଗଲା । ଇନ୍ଦିରା ଗାନ୍ଧୀ ଆଉ ଏକ ଚତୁର ପଦକ୍ଷେପ ନେଲେ । ସେ ବ୍ୟାଙ୍କ

ଜାତୀୟକରଣ ଓ ରାଜାଙ୍କ ହାତପାଣି ଉଠାଇଦେବା ପ୍ରସ୍ତାବ ଉତ୍ଥାପନ କରି ଦେଶରେ ଏକପ୍ରକାର ନୂଆ ଝଡ଼ ସୃଷ୍ଟି କରିଦେଲେ । ଏଥିରେ ବିରୋଧରେ ଥିବା ପ୍ରଗତିବାଦୀ ଦଳଗୁଡ଼ିକ ତାଙ୍କୁ ସମର୍ଥନ ଦେଲେ । ଦେଶ ଯେମିତିକି ପ୍ରଗତିବାଦୀ ଓ ପ୍ରତିକ୍ରିୟାବାଦୀ ଏମିତି ଦୁଇଭାଗରେ ବିଭକ୍ତ ହୋଇଗଲା । ସଂଗଠନ କଂଗ୍ରେସ ସ୍ୱତନ୍ତ୍ର ଓ ଜନସଂଘ ସହ ମିତ୍ରତା ସ୍ଥାପନ କରିବାରୁ ଏମାନଙ୍କୁ 'ପ୍ରତିକ୍ରିୟାବାଦୀ' ଶ୍ରେଣୀଭୁକ୍ତ କରାଗଲା । ଇନ୍ଦିରା ଗାନ୍ଧୀ ଏହି ନୂତନ ଧ୍ୱନି ଉଠାଇ ଦେଶରେ ସତେକି ସମାଜବାଦ ପଥରେ ଆଗେଇଛନ୍ତି, ଏପରି ଏକ ହାଉଆ ସୃଷ୍ଟି କରିପାରିଲେ । ଫଳରେ ତାଙ୍କ ସରକାର ସଂଖ୍ୟାନ୍ୟୁନ ହୋଇ ପଡ଼ିଥିବା ସତ୍ତ୍ୱେ ସେ ବିଭିନ୍ନ ଗୋଷ୍ଠୀରୁ ସମର୍ଥନ ପାଇ ସରକାର ଚଳାଇପାରିଲେ । କମ୍ୟୁନିଷ୍ଟ ପାର୍ଟି ଓ ଡି. ଏମ୍. କେ. ଦଳ ତାଙ୍କୁ ପ୍ରକାଶ୍ୟ ସମର୍ଥନ ଦେଲେ ଏବଂ ଅନ୍ୟମାନେ ସ୍ଥଳ-ବିଶେଷରେ ସାହାଯ୍ୟ କରୁଥିଲେ । ମୁଁ ପି.ଏସ୍.ପି. ଦଳର ପାର୍ଲାମେଣ୍ଟରେ ନେତା ଥିଲି— ମୋ ସହିତ ଇନ୍ଦିରା ଗାନ୍ଧୀ ସଦ୍‌ଭାବ ରଖିଥିଲେ । ସେଥିରୁ ଆମର ବିରୋଧୀଦଳ ଭିତରୁ କେତେକ ଭାବିଲେ ଯେ ମୁଁ ଇନ୍ଦିରା ଗାନ୍ଧୀଙ୍କି ଭିତରେ ଭିତରେ ସମର୍ଥନ ଦେଉଥିଲି । ଏବେ ବି କେତେକ ମହଲରେ ଏ ପ୍ରକାର ଏକ ଧାରଣା ରହିଛି ଓ ମତେ କହନ୍ତି—ଇନ୍ଦିରା ଗାନ୍ଧୀ ଆପଣଙ୍କ ଯୋଗୁଁ ସେତେବେଳେ ବିପଦରୁ ପାରିହୋଇଗଲେ । ମାତ୍ର ଏହି ଧାରଣା ସମ୍ପୂର୍ଣ୍ଣ ଭୁଲ । ଆମ ପାର୍ଟି ଯେଉଁ ନୀତି ଧାର୍ଯ୍ୟ କରିଥିଲା, ମୁଁ ସେହି ଅନୁସାରେ ପାର୍ଲିମେଣ୍ଟ କାର୍ଯ୍ୟ ପରିଚାଳନା କରୁଥିଲି । ଏତେବେଳେ ପାର୍ଟିର କଣ ନୀତି ହେଲା ତାହା ବରୋଦା ସମ୍ମିଳନୀ ୧୯୭୦ ମସିହାରେ ପାର୍ଟିର ଜେନେରାଲ ସେକ୍ରେଟାରୀ ଯେଉଁ ରିପୋର୍ଟ ଦେଇଥିଲେ ମୁଁ ତହିଁରୁ ଉଲ୍ଲେଖ କରୁଛି ।

## ୧୯୬୯ ନଭେମ୍ବରର ସିଦ୍ଧାନ୍ତ

"ଇନ୍ଦିରା ଗାନ୍ଧୀଙ୍କୁ କଂଗ୍ରେସରୁ ବାହାର କରିଦେଲା ପରେ ପରିସ୍ଥିତି ଆଲୋଚନା କରିବା ନିମନ୍ତେ ୧୯୬୯ ନଭେମ୍ବର ୧୪, ୧୫ ଓ ୧୬ ତାରିଖରେ ଜାତୀୟ କାର୍ଯ୍ୟକାରୀ ସମିତିର ବୈଠକ ବସିଥିଲା । ଏଥିରେ ପରିସ୍ଥିତିର ଦୁଇଟି ଦିଗ ପ୍ରତି ଦୃଷ୍ଟି ଆକର୍ଷଣ କରାଗଲା । (୧) କଂଗ୍ରେସ ପାର୍ଟି ଦୁଇଭାଗରେ ବିଭକ୍ତ ହେବା ପରେ ଦେଶରେ ରାଜନୀତି କିଛି ଦୁଇଭାଗରେ ବିଭକ୍ତ ହୋଇନାହିଁ କିମ୍ବା କଂଗ୍ରେସର କୌଣସି ଗୋଷ୍ଠୀଙ୍କର କିଛି ପରିବର୍ତ୍ତନ ଘଟିନାହିଁ । (୨) ଇନ୍ଦିରା ଗାନ୍ଧୀ ଗୋଷ୍ଠୀ ଗଣତାନ୍ତ୍ରିକ ସମାଜବାଦରେ ବିଶ୍ୱାସ କରନ୍ତି ବୋଲି କହୁଥିଲେ ସୁଦ୍ଧା ଏହାର ଅର୍ଥନୈତିକ ଓ ସାମାଜିକ କାର୍ଯ୍ୟକ୍ରମର କିଛି ବ୍ୟାଖ୍ୟା କରାଯାଇନାହିଁ । ଏହି ଗୋଷ୍ଠୀରେ ପୁରାତନ କଂଗ୍ରେସ ଗୋଷ୍ଠୀ ପରିବାର କିସମର (heterogenous) ଲୋକ ରହିଛନ୍ତି; କିନ୍ତୁ ତଥାପି ଏହା ଏକ ଅଗ୍ରଗାମୀ ସାମାଜିକ ପରିବର୍ତ୍ତନର ଅସ୍ତ୍ର ହୋଇ ପାରିବାର ଛଳନା ଜାଲ ଭିତରେ ପଡ଼ିଛି ।' ଏହା କହିବା ସଙ୍ଗେ ସଙ୍ଗେ କାର୍ଯ୍ୟକାରୀ ସମିତି ମଧ୍ୟ ଅନୁଭବ କଲା ଯେ "ଦେଶରେ ଏକ ଅଭୂତପୂର୍ବ ପରିବର୍ତ୍ତନ ବା ସଂଘର୍ଷ ସ୍ତରର ଅଗ୍ରମାରମ୍ଭ ହୋଇଗଲା ।"

ଏପରି ପରିସ୍ଥିତିରେ ପି. ଏସ୍. ପି. ପୁଣି ଥରେ ଦୃଢ଼ତା ସହକାରେ ଘୋଷଣା କଲା ଯେ "ଯେଉଁ ଦଳଗୁଡ଼ିକ ଏପରି ଲୋକଙ୍କ ଆଶା ଓ ଆକାଂକ୍ଷା ପୂରଣ ଦିଗରେ ଆଗୁଆ ହେବେ ଆମେ ତାଙ୍କ ସହ ମିଳିତ ହୋଇପାରୁ ଏବଂ ଗଣତାନ୍ତ୍ରିକ ସମାଜବାଦ ଉଦ୍ଦେଶ୍ୟ ପୂରଣ ନିମନ୍ତେ ଅଧୁନା ପ୍ରତିଷ୍ଠିତ ସରକାର ଯେଉଁସବୁ ପଦକ୍ଷେପ ନେବ, ସେଥିରେ ତାଙ୍କ ସହିତ ସହଯୋଗ ପାଇଁ ହାତ ବଢାଇବୁ ।" ଆହୁରି ମଧ୍ୟ କୁହାଗଲା ଯେ, ଦେଶରେ ଏକ ଗଣତାନ୍ତ୍ରିକ ସମାଜବାଦୀ ସମାଜ ପ୍ରତିଷ୍ଠା ନିମନ୍ତେ ଯେତେ ଗଣତାନ୍ତ୍ରିକ ସମାଜବାଦୀ ବ୍ୟକ୍ତି ରହିଛନ୍ତି, ସମସ୍ତେ ଏକାଠି ମିଳି ଏକ ସୁଦୃଢ଼ ଶକ୍ତିଶାଳୀ ସଙ୍ଗଠନ ଛିଡ଼ାକରନ୍ତୁ ଏବଂ ଏକ ନୂତନ କର୍ମୀ ଶ୍ରେଣୀ ସୃଷ୍ଟି କରାଯାଉ, ଯେଉଁମାନଙ୍କଠାରେ ଦୃଢ଼ତା, ଅନୁରକ୍ତି, ମୂଲ୍ୟବୋଧ ଓ ଶୃଙ୍ଖଳା ତେଜସ୍ୱାନ୍ ହୋଇ ରହିଥିବ ।

## କଂଗ୍ରେସ ସରକାରପ୍ରତି ନିରପେକ୍ଷତା

ଏହା ସଙ୍ଗେ ସଙ୍ଗେ ଜାତୀୟ କାର୍ଯ୍ୟକାରୀ ସମିତି ନିଷ୍ପତ୍ତି ନେଲା ଯେ ପାର୍ଲିମେଣ୍ଟରେ ଥିବା ପାର୍ଟି ସଦସ୍ୟମାନେ ରବାତ୍ (ମରକ୍କୋର ରାଜଧାନୀ—ଏଠାରେ ଇସ୍‌ଲାମ ଦେଶର ଏକ ସମ୍ମିଳନୀ ହୋଇଥିଲା । ଏଥିରେ ଭାରତର ଯୋଗଦାନକୁ ଅନେକ ବିରୋଧ କରୁଥିଲେ ।) ସମ୍ବନ୍ଧରେ ଅଣାଯାଇଥିବା ମୁଲତବୀ ପ୍ରସ୍ତାବକୁ ସମର୍ଥନ ଦେବେ; କିନ୍ତୁ ଇନ୍ଦିରା ଗାନ୍ଧୀଙ୍କ ସରକାର ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆସିଲେ ଭୋଟ୍ ବେଳକୁ କୌଣସି ପକ୍ଷରେ ଭୋଟ ନଦେଇ ନିରପେକ୍ଷରହିବେ ।

ମୁଁ ଏତେ କାଳ ପରେ ଲେଖୁଛି ବୋଲି ଯେଉଁ ପାର୍ଟି ସାଥୀ ମୋ ସମ୍ପର୍କରେ ଏକ ଭୁଲ ଧାରଣା ପ୍ରଚାର କରୁଥିଲେ, ସେମାନଙ୍କୁ ସ୍ମରଣ କରାଇଦେଉଛି ଯେ, ପାର୍ଟିର ଏହି ନୂତନ ଦୃଷ୍ଟିକୋଣକୁ ଏକ ଦାୟିତ୍ୱସମ୍ପନ୍ନ ନେତା ହିସାବରେ, ଏକ ଶୃଙ୍ଖଳାବଦ୍ଧ ସୈନିକ ଭାବରେ କାର୍ଯ୍ୟକାରୀ କରିବାକୁ ଚେଷ୍ଟାକରିଛି । ଯେଉଁ ପାର୍ଟି ସାଥୀମାନେ ଏହି ପୃଷ୍ଠଭୂମି ଭୁଲିଯାଇଛନ୍ତି ସେମାନେ କେବଳ ଦୋଷ ଦେବେ—ସତେ କି ମୁଁ କଂଗ୍ରେସ ଆଡ଼କୁ ବ୍ୟକ୍ତିଗତଭାବରେ ଢଳିଲି । ଏହି ନୂଆ ନୀତି ପାର୍ଟିର ପୂର୍ବ ନୀତିଠାରୁ ଯେ ଭିନ୍ନ ଏହା କିଏ ଅସ୍ୱୀକାର କରିହେବ ?

## ଦୁଇ କଂଗ୍ରେସର ସହଯୋଗ ପାଇବାର ଚେଷ୍ଟା

ଏହି ପୁସ୍ତକରେ ଫିଟାଇ ଲେଖିବାରେ କିଛି ଅସୁବିଧା ନାହିଁ ଯେ, ଦୁଇ କଂଗ୍ରେସ ତରଫରୁ ପି. ଏସ୍. ପି.ର ସହଯୋଗ ପ୍ରାପ୍ତି ନିମନ୍ତେ ଉଦ୍ୟମ ହୋଇଥିଲା । ରବାତ୍ ସମସ୍ୟା ଯୋଗୁ ଇନ୍ଦିରା କଂଗ୍ରେସ ପକ୍ଷ ବଡ଼ ଚିନ୍ତିତଥିଲେ ଏବଂ ଏଇଥିରେ ତାଙ୍କ ସରକାରର ପତନ ହୋଇଯିବାର ଆଶଙ୍କା ରହିଥିଲା । ତେଣୁ ବିଭିନ୍ନ ଦଳରୁ ସମର୍ଥନ ନେବା ନିମନ୍ତେ ଚେଷ୍ଟା ହେଉଥିଲା । ଏଥିପାଇଁ ମୋ ନିକଟକୁ ତତ୍କାଳୀନ କେନ୍ଦ୍ରମନ୍ତ୍ରୀ ଦିନେଶ ସିଂହ

ଆସିଥିଲେ । ସେତେବେଳେ ସେ ଇନ୍ଦିରାଗାନ୍ଧୀଙ୍କର ଅତି ଅନ୍ତରଙ୍ଗ ଥିଲେ । ଆମ ପାର୍ଟିର ଯାହା ସିଦ୍ଧାନ୍ତ ହୋଇଥିଲା ମୁଁ ତାଙ୍କୁ କହିନଥିଲି; ମାତ୍ର ସହଯୋଗ କେମିତି ଆଶା କରୁଛ ବୋଲି ତାଙ୍କୁ ବିପରୀତ ପ୍ରଶ୍ନ କରିବାରୁ ସେ ତତ୍ପରଦିନ ଇନ୍ଦିରା ଗାନ୍ଧୀ ମତେ ସାକ୍ଷାତ୍ କରିବାକୁ ଚାହିଁଛନ୍ତି ବୋଲି କହିଲେ । ଇନ୍ଦିରା ଗାନ୍ଧୀଙ୍କ ଘରେ ଆମେ ଦୁ'ଜଣ ସନ୍ଧ୍ୟାରେ ମିଳିତ ହେଲୁ । ଆଉ କେହି ନଥିଲେ । ସାମ୍ପ୍ରତିକ ପରିସ୍ଥିତି ସମ୍ବନ୍ଧରେ କିଛି ସମୟ ଆଲୋଚନା ହେଲା ପରେ ପରସ୍ପରର ସହଯୋଗର ପ୍ରଶ୍ନ ଉଠିଲା । ମୁଁ ପାର୍ଟିର ମତ ତାଙ୍କୁ ଜଣାଇଲି । ସମାଜବାଦ ସମ୍ବନ୍ଧରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ଆନ୍ତରିକତା କେତେଦୂର ସେ ବିଷୟ ଲୋକଙ୍କ ମନରେ ସ୍ପଷ୍ଟ ହୋଇନାହିଁ—ସମାଜବାଦର ତତ୍ତ୍ୱ ଉପରେ କଂଗ୍ରେସର ମତାମତ ପ୍ରକାଶ ପାଇଲେ ସହଯୋଗର ବାୟୁମଣ୍ଡଳ ସୃଷ୍ଟି ହେବ ବୋଲି ମୁଁ କହିଥିଲି । ତେଣୁ କଂଗ୍ରେସର ଘୋଷିତ ସମାଜବାଦରେ କେଉଁ କେଉଁ ବିଷୟରେ ସ୍ପଷ୍ଟୀକରଣର ଆବଶ୍ୟକତା ରହିଛି ସେ ମତେ ପଚାରି ଗୋଟିଏ ଗ୍ରେଟ ନୋଟ୍ ବୁକ୍‌ରେ ଟିପିରଖିଲେ । ଏହା ସ୍ପଷ୍ଟ କରାଯାଇ ଯଦି ପ୍ରଧାନମନ୍ତ୍ରୀ ଏଥିରେ ସମ୍ମତ ଥିବା ସମାଜବାଦୀଙ୍କ ସହଯୋଗଲାଗି ରେଡ଼ିଓ ଘୋଷଣାରେ ଏକ ସାଧାରଣ ନିବେଦନ କରନ୍ତି, ତେବେ ସହଯୋଗର ଏକ ବାଟ ଫିଟିପାରେ ବୋଲି ମୁଁ କହିଆସିଲି । ପ୍ରାୟ ଘଣ୍ଟାଏ ଧରି ସେ ମତେ କିଛି ପଚାରିନଥିଲେ କିମ୍ବା ମୁଁ ପାର୍ଟିର ସିଦ୍ଧାନ୍ତ ତାଙ୍କୁ କିଛି ଜାଣିବାକୁ ଦେଇନଥିଲି । ମୁଁ ଆଶା କରୁଥିଲି ଇନ୍ଦିରା ଗାନ୍ଧୀ ଏପରି ଏକ ଘୋଷଣା କରିବେ; ମାତ୍ର ସେ ସେପରି କଲେ ନାହିଁ ଏବଂ ଏତିକିରେ ଇନ୍ଦିରା କଂଗ୍ରେସ ସହିତ କଥାବାର୍ତ୍ତା ଶେଷହୋଇଥିଲା ।

ସେମିତି ଥରେ କାମରାଜ ଓ ସଞ୍ଜୀବ ରେଡ୍ଡି ମୋର ପଡ଼ୋଶରେ ରହୁଥିବା ପାର୍ଲିମେଣ୍ଟ ସଭ୍ୟ ପି. ଭେଙ୍କଟ ସୁବାୟାଙ୍କ ଘରକୁ ଆସିଲେ ମୋ ସହିତ ରାଜନୀତିକ କଥାବାର୍ତ୍ତା କରିବା ନିମନ୍ତେ । କାମରାଜ କ୍ଷମତା ବାହାରେ ଥାଇ ବଡ଼ ଅସ୍ୱସ୍ତି ବୋଧକରୁଥାଆନ୍ତି । କଥାରେ କହୁ କହୁ କହିପକାଇଲେ—ଆଗେ ଯେଉଁ ବ୍ୟକ୍ତି ଘରେ ପହଞ୍ଚି ଲକ୍ଷ ଲକ୍ଷ ଟଙ୍କା ଚାନ୍ଦା ଦେଇଆସୁଥିଲେ, ଏବେ ଆମେ ସରକାରରେ ନଥିବାରୁ ପାଞ୍ଚଥର ଦୌଡ଼ିଲେ ସୁଦ୍ଧା ହଜାରେ ଟଙ୍କା ଦେବାକୁ ପଶ୍ଚାତ୍‌ପଦ ହେଉଛନ୍ତି । ଏ ଅବସ୍ଥାର ଗୋଟାଏ ସମାଧାନ ନିତାନ୍ତ ଲୋଡ଼ା । ସେ ଦୁହେଁ କହିବାକୁ ଲାଗିଲେ ଯେ ପୁରାତନ କଂଗ୍ରେସ ଓ ପ୍ରଜା ସୋସଲିଷ୍ଟ ପାର୍ଟି ଭିତରେ ସହଯୋଗ ହୋଇପାରିଲେ ଏହା ସମ୍ଭବ ହେବ । ମୁଁ ଦର୍ଶାଇଲି ଯେ, ପୁରାତନ କଂଗ୍ରେସର ବର୍ତ୍ତମାନ ଯାହା ଆଭିମୁଖ୍ୟ ରହିଥିଲା ସେଥିରେ ସେମାନେ ପରିବର୍ତ୍ତନବାଦୀ ନୁହନ୍ତି ଏବଂ ପ୍ରଚଳିତ ପୁଞ୍ଜିବାଦୀ ବ୍ୟବସ୍ଥାର ସମର୍ଥକ ବୋଲି କଂଗ୍ରେସ ବିଭାଜନ ପରେ ଲୋକଙ୍କ ମନରେ ଧାରଣା ବି ଜାତହେଲାଣି । ତାହା ଛଡ଼ା ସେହି କଂଗ୍ରେସର ନାମ ଓ ପତାକା ଆଦି ରହିଥିଲା । ପୁଣି ଦୁହେଁ ଯେ ମିଶିନଯିବେ ଏହାର ଗ୍ୟାରେଣ୍ଟି କଣ ଅଛି ? ତେଣୁ ମୁଁ ପ୍ରସ୍ତାବ ଦେଲି—ସେମାନେ ଜାତୀୟ କଂଗ୍ରେସ ନାମ ଛାଡ଼ି ନିଜର ନାମକରଣ ଯଦି ଭାରତୀୟ ସୋସଲିଷ୍ଟ କଂଗ୍ରେସ କିମ୍ବା ଏହିପରି କିଛି ଦେଇ ନିଜର ଲକ୍ଷ୍ୟ

ଓ ଉଦ୍ଦେଶ୍ୟ ବିଷୟରେ ସୂଚନା ଦିଅନ୍ତେ, ତେବେ କଥାବାର୍ତ୍ତା ଓ ସହଯୋଗର ବାଟ ଫିଟନ୍ତା । ନିଜଲିଙ୍ଗପ୍ପା ଥିଲେ ପୁରାତନ କଂଗ୍ରେସର ସଭାପତି । ସେ ମତେ ତାଙ୍କ ବାସ-ଗୃହକୁ ପ୍ରାତଃଭୋଜନଲାଗି ଡାକି ଏହି ବିଷୟ ଉତ୍ଥାପନ କରିଥିଲେ । ମୋର ପ୍ରସ୍ତାବଟି ଗ୍ରହଣ କରାଇ ନେବାଦ୍ୱାରା ନାନା ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ ଏବଂ ନାମ ବଦଳାଇଦେଲେ ତାଙ୍କ ଦଖଲରେ ଥିବା କଂଗ୍ରେସର ସମ୍ପତ୍ତି ଆଦି ନେଇ ଜଟିଳ ଉପସ୍ଥିତ ହେବ ବୋଲି ଦର୍ଶାଇଲେ । ତେଣୁ ଏକଥା ଏତିକିରେ ହିଁ ରହିଗଲା ।

ଏଇଥିରୁ ବୁଝାପଡ଼ିବ ଯେ ପି. ଏସ୍. ପି. ତାର ନିଜ ମର୍ଯ୍ୟାଦା ରଖିଥିଲା । ପୂର୍ବ ନୀତିର କୌଣସି ପରିବର୍ତ୍ତନ ଆମେ କରିନଥିଲୁ । ଅବଶ୍ୟ ପାର୍ଟିର ପ୍ରସ୍ତାବରେ ଶାସକ କଂଗ୍ରେସ ଆଡ଼କୁ ଢଳିବାର ସ୍ପଷ୍ଟ ଇଙ୍ଗିତ ରହିଥିଲା । ଶାସକ କଂଗ୍ରେସ ସହିତ ଆମର ପ୍ରକାଶ୍ୟ ବନ୍ଧୁତା ନହୋଇଥିଲେ ସୁଦ୍ଧା ଆମେ ପ୍ରଖର ବିରୋଧ ଭୂମିକା ନେଇନଥିଲୁ; ଅବଶ୍ୟ ଆମର ଲେଖା, ବକ୍ତୃତା ଇତ୍ୟାଦିରେ ଏବଂ ଆନ୍ତର୍ଜାତିକ ନୀତି ଇତ୍ୟାଦିରେ ସମାଲୋଚନା କରିବାରେ ଆମେ କିଛି ପଶ୍ଚାତ୍‌ପଦ ହୋଇନଥିଲୁ । ପାର୍ଲିମେଣ୍ଟ ମହଲରେ ବି ସେହିପରି ଏକ ଧାରଣା ସୃଷ୍ଟି ହୋଇଯାଇଥିଲା । ଥରେ ମୋରାର୍ଜୀ ଭାଇ ମତେ ପଚାରିଲେ—ନାଥ ପାଇ ଇନ୍ଦିରାଙ୍କୁ ଏପରି ସମର୍ଥନ କାହିଁକି ଦେଉଛନ୍ତି ? ମୋଟାମୋଟି ଭାବରେ ଦେଖିଲେ ଏହା ଏକ ଗୋଲମାଲିଆ ଅବସ୍ଥା ଥିଲା । ଆମ ଭିତରୁ ଅନେକଙ୍କର ଇନ୍ଦିରା ଗାନ୍ଧୀଙ୍କ ପ୍ରତି ତୀବ୍ର ଘୃଣାଭାବ ରହିଥିଲା । ସେମାନେ ତାହା ପ୍ରକାଶ କରିବାରେ କିଛି କୁଣ୍ଠାବୋଧ କରୁନଥିଲେ । ନୀତିଗତ ଆଲୋଚନାରେ ଆମେ ଯେଉଁ ବିଷୟରେ ଏକମତ ନଥିଲୁ, ତାର ଘୋର ସମାଲୋଚନା କରୁଥିଲୁ ।

## ଗୋରେଙ୍କ ରାଜ୍ୟସଭା ସଭ୍ୟପଦ

ଏପରି ବିରୋଧ ଓ ସହଯୋଗ ଭିତରେ ଗତିକରି ପାର୍ଟି ମଧ୍ୟ ବେଳେବେଳେ ଜଞ୍ଜାଳରେ ପଡ଼ୁଥିଲା । ବିହାରରେ କଂଗ୍ରେସ ମନ୍ତ୍ରୀମଣ୍ଡଳୀକୁ ପାର୍ଟି ସମର୍ଥନ ଜଣାଇଥିଲା । ଏମିତିକା ପରିସ୍ଥିତି ଭିତରେ ରାଜ୍ୟସଭା ନିର୍ବାଚନ ଆସି ପହଞ୍ଚିଲା । ଆମର ମହାରାଷ୍ଟ୍ର ପାର୍ଟି ସାଥୀମାନେ ସାଧାରଣତଃ ତୀବ୍ର କଂଗ୍ରେସ ବିରୋଧୀ । ଆମର ଯଥେଷ୍ଟ ସଂଖ୍ୟକ ସଭ୍ୟ ମହାରାଷ୍ଟ୍ର ଆସେମ୍ବ୍ଲିରେ ନଥାଇ ସୁଦ୍ଧା ପାର୍ଟି ଚେୟାରମ୍ୟାନ୍ ଏନ୍. ଜି. ଗୋରେଙ୍କୁ ରାଜ୍ୟସଭାକୁ ପ୍ରାର୍ଥୀ କରାଇଲେ ଏବଂ ଆଶା କରିଥିଲେ କଂଗ୍ରେସ ଦଳର ବଳକା ୧୫।୧୬ଟି ଭୋଟ ଗୋରେଙ୍କୁ ମିଳିଯିବ । କିନ୍ତୁ ମହାରାଷ୍ଟ୍ର କଂଗ୍ରେସର ସେତେବେଳେ ବାସ୍ତବ ନେତା ଥିଲେ ଓ୍ୱାଇ. ବି. ଚୌହାନ୍ । ତାଙ୍କ ଗୋଷ୍ଠୀ ସାଧାରଣତଃ ବ୍ରାହ୍ମଣବିରୋଧୀ । ମୁଁ କଂଗ୍ରେସର ଜଣେ ଅତି ଉଚ୍ଚାଧିକାରୀଙ୍କଠାରୁ ଶୁଣିଛି—କଂଗ୍ରେସ ହାଇ କମାଣ୍ଡ ଭିତରେ ଯେତେବେଳେ ପ୍ରଜା ସୋସଲିଷ୍ଟ ପାର୍ଟି ଓ କଂଗ୍ରେସ ଭିତରେ ସହଯୋଗ ବା ମିଶ୍ରଣ କଥା ଚର୍ଚ୍ଚା ହେଉଥିଲା, ମୁହଁରେ ଏଥିରେ ପୂର୍ଣ୍ଣ ଉତ୍ସାହ ଦେଖାଇ ଅନ୍ୟ ନାନା ଆଳରେ ଚୌହାନ ଏହା କରାଇ

ଦେବାରେ ବାଧା ପହଞ୍ଚାଉଥିଲେ । ତାଙ୍କର ଆଶଙ୍କା ହେଉଥିଲା, ଏହା ଘଟିଲେ ଏସ୍. ଏମ୍. ଜୋଶୀ, ଏନ୍. ଜି. ଗୋରେ ଇତ୍ୟାଦି ବ୍ରାହ୍ମଣ ସମ୍ପ୍ରଦାୟର ପ୍ରାଧାନ୍ୟ ବୃଦ୍ଧି ପାଇବ । କଂଗ୍ରେସ ଭିତରର ଜଘନ୍ୟ ରାଜନୀତି ଖେଳର ଏହା ଏକ ଦୃଷ୍ଟାନ୍ତ । ସେମାନେ ଏକ ଅଧିକା ପ୍ରାର୍ଥୀଙ୍କ ନାମ ଘୋଷଣା କରିଦେଲେ ଏସବୁ ଅଡ଼ୁଆରୁ ରକ୍ଷା ପାଇବା ନିମନ୍ତେ ।

ଜଗଜ୍ଜୀବନ ରାମ ଥିଲେ କଂଗ୍ରେସର ସଭାପତି । ସେ ପ୍ରଜା ସୋସଲିଷ୍ଟ ପାର୍ଟିର ବରୋଦା ଅଧିବେଶନକୁ ଏକ ବାର୍ତ୍ତା ପଠାଇ ସହଯୋଗ ପ୍ରସ୍ତାବ ଦେଇଥିଲେ ଏବଂ ସେ ସମ୍ମିଳନୀ ବିଷୟ ମୁଁ ଏହାପରେ ଆଲୋଚନା କରିବି । ଆମେ ଭାବିଲୁ ତାଙ୍କୁ ନିବେଦନ କଲେ ସେ ବୋଧହୁଏ ମହାରାଷ୍ଟ୍ର ପାର୍ଟିକୁ ପ୍ରଭାବିତ କରିବେ କିମ୍ବା କେନ୍ଦ୍ର ପାର୍ଲିମେଣ୍ଟାରୀ ବୋର୍ଡ଼ରେ ସମର୍ଥନ କରାଇଦେବେ । ମାତ୍ର ସେ ବିଶେଷ ସାହାଯ୍ୟ କରିପାରିଲେ ନାହିଁ; କାରଣ ସେତେବେଳକୁ ଇନ୍ଦିରା ଗାନ୍ଧୀ ଓ ତାଙ୍କ ଭିତରେ ବିରୋଧ ନଥିଲେ ବି ସଦ୍‌ଭାବ ସେତେ ନଥିଲା । ଚୌହାନଙ୍କ ସମର୍ଥନ ତାଙ୍କର ଲୋଡ଼ା ଥିଲା । ତେଣୁ ଚୌହାନ ଏ ଦିଗରେ ଉତ୍ସାହୀ ନଦେଖି, ସେ ତ ସିଆଣିଆ ଲୋକ, ଆଉ ଏଥିରେ ମୁଣ୍ଡ ପୂରାଇଲେ ନାହିଁ । ମହାରାଷ୍ଟ୍ର ସାଥିମାନଙ୍କର ପ୍ରବଳ ଇଚ୍ଛା ଥିବା ସତ୍ତ୍ୱେ ଇନ୍ଦିରାଗାନ୍ଧୀଙ୍କୁ କହିବାଲାଗି ଟିକିଏ ଥଙ୍ଗ ଥଙ୍ଗ ହେଉଥିଲେ । ମୁଁ ପାର୍ଲିମେଣ୍ଟରେ ଗୋରେଙ୍କ ସପକ୍ଷରେ ଲବି କଲି ଏବଂ ସମ୍ବାଦପତ୍ର ଜରିଆରେ ଏକ ସତର୍କବାଣୀ ପରି ଶୁଣାଇଦେଲି ଯେ ଯଦି କଂଗ୍ରେସଦଳ ମହାରାଷ୍ଟ୍ରରେ ଆମ ପାର୍ଟି ଚେୟାରମାନ୍ ଏନ୍. ଜି. ଗୋରେଙ୍କୁ ଅଧିକା ଭୋଟ ନ ଦିଅନ୍ତି, ତେବେ ବିହାର କଂଗ୍ରେସ ମନ୍ତ୍ରୀମଣ୍ଡଳରୁ ଆମର ସମର୍ଥନ ଉଠାଇ ଆଣିବା କଥା ବିଚାରକରାଯିବ । ସେତେ-ବେଳକୁ ଏଲ୍. ଏନ୍. ମିଶ୍ର ବିହାର କଂଗ୍ରେସର ନେତୃତ୍ୱ ନେବାଲାଗି ଧାଉଁଥିଲେ ଏବଂ ଜଗଜ୍ଜୀବନ ରାମଙ୍କ ସହ ତାଙ୍କର ଭିତିରି ବୈରିତା ରହିଥିଲା । ଏଲ୍. ଏନ୍. ମିଶ୍ର ମୋ ପାଖକୁ ଆସି ସବୁ ବିବରଣୀ ଶୁଣିଲେ ଏବଂ କ୍ରୋଧରେ କହିଲେ ଜଗଜ୍ଜୀବନ ରାମଙ୍କ ଜିଦ୍ ମୁଁ ରଖାଇଦେବିନାହିଁ । ସେ ନିଜ ଆଡ଼ୁ ଉଦ୍ୟମ କଲେ ।

ଏଣେ ମୁଁ ଯାଇ ଇନ୍ଦିରାଗାନ୍ଧୀଙ୍କୁ ଅନୁରୋଧ କରନ୍ତେ ସେ ମହାରାଷ୍ଟ୍ର କଂଗ୍ରେସର ବ୍ରାହ୍ମଣବିରୋଧୀ ମନୋବୃତ୍ତି ଏବଂ ଅନ୍ୟାନ୍ୟ ନାନା ଅସୁବିଧା ବିଷୟ ଦର୍ଶାଇଲେ । ମାତ୍ର ସେ ନିଜେ ଉଦ୍ୟମ ଆରମ୍ଭ କରିଦେଲେ । ପରିଶେଷରେ ସେ ବି ବିଫଳ ହେଲପରି ମନେ ହେଲା । ଦିନେ ରାତି ପ୍ରାୟ ୧୧ଟା ବେଳେ ମୋର ୨୧ କ୍ୟାନିଙ୍ଗ୍ ଲେନ୍ ଘରେ ପହଞ୍ଚି ଏଲ୍. ଏନ୍. ମିଶ୍ର ମତେ ଉଠାଇଲେ ଏବଂ କହିଲେ ଯେ ପ୍ରଧାନମନ୍ତ୍ରୀ ପ୍ରସ୍ତାବ ଦେଇଥିଲେ ଗୋରେଙ୍କୁ ରାଜ୍ୟସଭାକୁ ମନୋନୀତ କରିନେବାନିମନ୍ତେ । ମୁଁ ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲି ଏବଂ କହିଲି—ମୋ ପାର୍ଟିର ଚେୟାରମାନ୍ ସରକାରର ମନୋନୀତ ରାଜ୍ୟସଭା ସଦସ୍ୟ-ରୂପେ ଆସିଲେ ପାର୍ଟି ବା ତାଙ୍କର ମର୍ଯ୍ୟାଦା ରହିବ ନାହିଁ, ତେଣୁ ଏହା ମୋର ଗ୍ରହଣଯୋଗ୍ୟ ନୁହେଁ । ଏହା ଶୁଣି ଲଳିତ ନାରାୟଣ ଚକିତ ହୋଇଯାଇ କହିଲେ—"ଦାଦା, ତୁମେ ଏକ ଦେବତା । ଲୋକେ ରାଜ୍ୟସଭା ସ୍ଥାନ ପାଇବା ନିମନ୍ତେ ଯାଇ ଧାରଣା ଲଗାଉଥିବା

ବେଳେ ତୁମେ ଯଶୁଯାଉଥିବା ପଦକୁ ମନା କରି ଦେଉଛ ?'' ମୁଁ ତାଙ୍କୁ କହିଲି— କୌଣସି ବ୍ୟକ୍ତି ଅପେକ୍ଷା ପାର୍ଟିର ପ୍ରତିଷ୍ଠା ଯଥେଷ୍ଟ ବେଶି । ଗୋରେ ଏକ ପାର୍ଟିର ଚେୟାର-ମ୍ୟାନ୍ । ସେ ଏ ପ୍ରସ୍ତାବ ଗ୍ରହଣ କରିବେ କି ନା ମତେ ଜଣାନାହିଁ; ମାତ୍ର ମୁଁ ଏହା କେବେହେଁ ହେବାକୁ ଦେବିନାହିଁ ।'' ସେ ଇନ୍ଦିରା ଗାନ୍ଧୀଙ୍କୁ ଜଣ ରିପୋର୍ଟ ଦେଲେ ତାଙ୍କୁ ଜଣା— ଡପୂରିଦନ ସକାଳୁ ଘୋଷଣା ହେଲା ଯେ ମହାରାଷ୍ଟ୍ର ଆସେମ୍ଲି କଂଗ୍ରେସଦଳର ଅଧିକା ଖ୍ୱେଟ ଗୋରେଙ୍କୁ ଯିଆସିବ ଏବଂ ସେହି ଖ୍ୱେଟ ବଳରେ ଚେୟାରମାନ୍ ଗୋରେ ରାଜ୍ୟସଭାକୁ ନିର୍ବାଚିତ ହୋଇପାରିଥିଲେ । ଏହାକୁ କୌଣସିଠାରେ କଣେହେଲେ ସଭ୍ୟ ବିରୋଧ କରିନଥିଲେ କିମ୍ବା କଂଗ୍ରେସଦଳରୁ ସାହାଯ୍ୟ ନେବା ପାପ ବୋଲି ବିଗ୍ଣୃର କରାଗଲାନାହିଁ ।

ମୋର ମନେହୁଏ, ପ୍ରଜା ସୋସଲିଷ୍ଟ ପାର୍ଟି ସହ ଗୋଷ୍ଠୀ କିଛୁ ମିଳାମିଶା କରିବାର ବିଗ୍ଣୃର ବୋଧହୁଏ ସେତେବେଳକୁ କଂଗ୍ରେସ ଉପରମହଲରେ ରହିଥିଲା କିମ୍ବା ଇନ୍ଦିରାଗାନ୍ଧୀ ଏକ ଅସୁବିଧା ପରିସ୍ଥିତିରେ ସରକାର ଚଳାଉଥିବାରୁ ପ୍ରଜା ସୋସଲିଷ୍ଟ ପାର୍ଟିକୁ ପୂର୍ଣ୍ଣ ବିରୋଧୀ କରିବା ନିମନ୍ତେ ଗ୍ରହୁଁ ନଥିଲେ । କାରଣ ସେତେବେଳେ ପି. ଏସ୍. ପି.ର କେତେଜଣ ସଭ୍ୟ କଂଗ୍ରେସଦଳରେ ଯୋଗଦେବା ନିମନ୍ତେ ତାଙ୍କ ସହିତ ସାକ୍ଷାତ୍ କରିବାରୁ ସେ ସେମାନଙ୍କୁ ମୋ ସହିତ ପରାମର୍ଶ କରି ଆସିବାଲାଗି କହିଥିବା କଥା ମୁଁ ସଭ୍ୟମାନଙ୍କଠାରୁ ଶୁଣିବାକୁ ପାଇଲି ।

## ଶାସକ କଂଗ୍ରେସ ସହ କଥାବାର୍ତ୍ତା ଲାଗି ପ୍ରସ୍ତାବ

ପି. ଏସ୍. ପି.ର ୧୯୬୮ ମସିହାରେ କାନପୁର ସମ୍ମିଳନୀ ପରେ ୧୯୭୦ ମସିହା ଫେବୃୟାରି ୩ରୁ ୬ ପର୍ଯ୍ୟନ୍ତ ଗୁଜରାଟର ବରୋଦାଠାରେ ଦଶମ ବାର୍ଷିକ ସମ୍ମିଳନୀ ହୋଇଥିଲା । ଏହି ସମ୍ମିଳନୀର ପ୍ରସ୍ତାବ ପି. ଏସ୍. ପି. ଓ ଶାସକ କଂଗ୍ରେସ ଭିତରେ ଯାହା କ୍ଷଣ-ବିରୋଧ କ୍ଷଣ-ସହଯୋଗ ସମ୍ପର୍କ ଗ୍ଳୁଥିଲା, ତାକୁ ଏକ ନିର୍ଦ୍ଦିଷ୍ଟ ରୂପ ଦେଲା ।

ସମ୍ମିଳନୀ ଆରମ୍ଭର ଠିକ୍ ପୂର୍ବରୁ ଫେବୃୟାରି ୨ ତାରିଖରେ କଂଗ୍ରେସ ସଭାପତି ଜଗଜ୍ଜୀବନ ରାମ ଏକ ତାରବାର୍ତ୍ତାରେ ଲେଖିଲେ—"ପ୍ରଜା ସୋସଲିଷ୍ଟ ପାର୍ଟି ଦେଶର ରାଜନୀତିକ ପରିସ୍ଥିତିକୁ ଏକ ଉଚିତ ଦୃଷ୍ଟିକୋଣରୁ ବିଗ୍ଣୃର କରୁଛି ଏବଂ ଗଣତାନ୍ତ୍ରିକ ସମାଜବାଦ ଓ ଧର୍ମନିରପେକ୍ଷତା ସମ୍ବନ୍ଧରେ ତାହାର ଦୃଷ୍ଟିକୋଣ ଅଭିନ୍ନ । ମୁଁ ସେମାନଙ୍କୁ ନିବେଦନ କରୁଛି ଯେ, ଆମେ ଯେଉଁମାନେ ଏହି ସବୁ ଶକ୍ତିକୁ ବଳଶାଳୀ କରିବାପାଇଁ ଏବଂ ସମାଜବାଦ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବା ପାଇଁ ଉଦ୍ୟମ ଚଳାଇଛୁ ସେଥିରେ ଆମକୁ ସହଯୋଗ କରିବା ନିମନ୍ତେ ନିମନ୍ତ୍ରଣ କରୁଛି ଏବଂ ଆଶା କରୁଛି ବରୋଦା ବୈଠକରେ ମୋର ଏହି ନିମନ୍ତ୍ରଣର ବିଗ୍ଣୃର କରାଯିବ ।''

## ବରୋଦା ସମ୍ମିଳନୀର ବିଚାର

ରାଜନୀତିକ ପରିସ୍ଥିତି ସମ୍ବନ୍ଧୀୟ ପ୍ରସ୍ତାବ କାର୍ଯ୍ୟକାରୀ ସମିତିରେ ଆଲୋଚିତ ହେଲା-ବେଳକୁ ଏହି ଟେଲିଗ୍ରାମ୍ ଆସି ପହଞ୍ଚିଥିଲା । ସବୁଆଡ଼ୁ ବିଚାର କରି ପାର୍ଟି ଯେଉଁ ପ୍ରସ୍ତାବ ପାସ୍ କଲା, ତାହାକୁ Guidelines to the political line of action' କୁହାଗଲା, ଅର୍ଥାତ୍ ଆମର ରାଜନୀତିକ କର୍ମପନ୍ଥାର ଧାରା ଏହି ପ୍ରସ୍ତାବରେ ଦିଆଗଲା । ସେଥିରେ ମୁଖ୍ୟ ବିଷୟ ହେଲା—

(୧) ଅନ୍ଧ କଂଗ୍ରେସ ବିରୋଧୀ ନୀତିର କୌଣସି ଉପଯୋଗିତା ନାହିଁ; ଗଣତାନ୍ତ୍ରିକ ସମାଜବାଦୀ ଏକୀକରଣ ନୀତିର ଏକାନ୍ତ ଆବଶ୍ୟକତା ପହଞ୍ଚିଲାଣି ।

(୨) କେବଳ ଆମ ଦଳ ନୁହେଁ, ଯେଉଁମାନେ ଗଣତାନ୍ତ୍ରିକ ସମାଜବାଦ ଉପରେ ବିଶ୍ୱାସ ସ୍ଥାପନ କରନ୍ତି ସେମାନଙ୍କର ଜାତୀୟତାବାଦ, ଧର୍ମନିରପେକ୍ଷତା, ଗଣତନ୍ତ୍ର ଓ ସମାଜବାଦ ଏହି ଚାରିଗୋଟି ନୀତି ଉପରେ ପ୍ରତିଷ୍ଠିତ ଲକ୍ଷ୍ୟ ହାସଲ କରିବା ହିଁ ପରମ କର୍ତ୍ତବ୍ୟ ହେବ ।

(୩) ବାରମ୍ବାର ଆମେ ବିଫଳ ହୋଇଛୁ ସତ୍ୟ, ମାତ୍ର ସମାଜବାଦୀ ଏକୀକରଣ ନିମନ୍ତେ ଆମର ଉଦ୍ୟମ ଅବ୍ୟାହତ ରହିବ ଏବଂ ଏବେ ସିଏ ଯେଉଁ ପାର୍ଟିରେ ଥାଉ ପଛକେ, ସବୁ ସୋସଲିଷ୍ଟଙ୍କୁ ଏକାଠି କରିବାର ଉଦ୍ୟମ କରାଯିବ । ( ଏଥିରେ କଂଗ୍ରେସ ଭିତରେ ଥିବା ସୋସଲିଷ୍ଟ ଆସିଗଲେ । )

(୪) ଯଦିଓ ପାଶ୍ଚାତ୍ୟ ଦେଶଗୁଡ଼ିକର କମ୍ୟୁନିଷ୍ଟ ପାର୍ଟିଙ୍କ ଭିତରେ ସ୍ୱାଧୀନ ଚିନ୍ତାର ହାଉଆ ବହିଗଲାଣି, ତଥାପି ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଯାହା କହୁ ପଛକେ ଏବେ ଏକ ନିୟମତାନ୍ତ୍ରିକ ପାର୍ଟିରେ ପରିଣତ ହେଲାଣି; କିନ୍ତୁ ଜାତୀୟତାବାଦ ଓ ଗଣତନ୍ତ୍ରକୁ ଏହା ସ୍ୱୀକାର କରୁନାହିଁ । ସେ ଯାହାହେଉ, ସି. ପି. ଆଇ. (ଏମ୍.) ଓ ମାଓବାଦୀଙ୍କୁ ପି. ଏସ୍. ପି. ଏକ ସି. ପି. ଆଇ. ଭଳି ଦୃଷ୍ଟିରେ ଦେଖୁନାହିଁ ।

(୫) ଜନସଂଘ ଓ ସ୍ୱତନ୍ତ୍ର ପାର୍ଟି ଯଥାକ୍ରମେ ହିନ୍ଦୁପୁନରୁଦ୍ଧାରବାଦ ଓ ପ୍ରଚଳିତ ବ୍ୟବସ୍ଥାକୁ କାଏମ୍ କରିବା ସ୍ୱାର୍ଥର ପ୍ରତିନିଧିତ୍ୱ କରୁଛନ୍ତି ଏବଂ ପି. ଏସ୍. ପି.ର ଲକ୍ଷ୍ୟ ହାସଲରେ ଯେଉଁ ଶକ୍ତିଗୁଡ଼ିକ ପ୍ରଧାନ ଅନ୍ତରାୟ ହୋଇ ଛିଡ଼ାହେଉଛନ୍ତି, ଏହି ଦୁଇଦଳ ସେହିପରି ଶକ୍ତିଗୁଡ଼ିକୁ ନିଜ କାର୍ଯ୍ୟଦ୍ୱାରା ମଜବୁତ୍ କରିବେ ।

(୬) ଯଦିଓ କଂଗ୍ରେସ ( ଓ ) [ ସଙ୍ଗଠନ କଂଗ୍ରେସ ] ତାଙ୍କର ଅହମେଦାବାଦ ଅଧିବେଶନରେ ଜାତୀୟତାବାଦ, ଗଣତନ୍ତ୍ର, ସମାଜବାଦ ଏବଂ ଧର୍ମନିରପେକ୍ଷତା ଉପରେ ବିଶ୍ୱାସ ରହିଛି ବୋଲି ପୁନର୍ବାର ଘୋଷଣା କରିଛନ୍ତି, କିନ୍ତୁ ସେମାନେ ଅବସ୍ଥାଚକ୍ରରେ ପଡ଼ି ଏପରି ରକ୍ଷଣଶୀଳ ଓ ପରମ୍ପରାବାଦୀ ଶକ୍ତିଗୁଡ଼ିକ ସହିତ ମେଣ୍ଟ ବାନ୍ଧିଛନ୍ତି, ଯାହା ଫଳରେ ଏପରି ଆଦର୍ଶ ପ୍ରାପ୍ତି ନିମନ୍ତେ ଆଦୌ ଅନୁକୂଳ ପରିସ୍ଥିତି ସୃଷ୍ଟି ହେବନାହିଁ ।

(୭) କଂଗ୍ରେସ (ଆର୍) [ଶାସକ କଂଗ୍ରେସ]ର ସି. ପି. ଆଇ., ଅକାଲୀଦଳ ଓ ମୁସଲିମ୍ ଲିଗ୍ ସହ ଆପାତତଃ ବୁଝାମଣା ହୋଇଛି ।

(୮) ଦେଶର ଜନମତର ତାଡ଼ନା ଏବଂ ଏକ ଆଧୁନିକ ଦୃଷ୍ଟିକୋଣ ଓ ପ୍ରେରଣା ପ୍ରଣୋଦିତ ନୂତନ ସାମାଜିକ ବ୍ୟବସ୍ଥା ସୃଷ୍ଟି କରିବାର ଜରୁରୀ ଆବଶ୍ୟକତା ଅନୁଭବ କରି କଂଗ୍ରେସ (ଆର୍) [ଶାସକ କଂଗ୍ରେସ] ଓ ଅନ୍ୟ ଯେଉଁଦଳଗୁଡ଼ିକ ନିଃସନ୍ଦେହଭାବରେ ଜାତୀୟତାବାଦ, ଧର୍ମନିରପେକ୍ଷତା, ଗଣତନ୍ତ୍ର ଓ ସମାଜବାଦରେ ବିଶ୍ୱାସ ରଖନ୍ତି ତାଙ୍କ ସହିତ ନୂତନ ବିଧାନ ଗୃହୀତ କରାଇବା ଏବଂ ଗଣତାନ୍ତ୍ରିକ ସମାଜବାଦୀ ନୀତି ପ୍ରଚଳନ ନିମନ୍ତେ ସାର୍ଥକ (meaningful) କଥାବାର୍ତ୍ତା ଚଳାଇବା ନିମନ୍ତେ ପି. ଏସ୍. ପି. ସ୍ଥିର କରୁଛି ।

ଅର୍ଥାତ୍ ଜଗଜ୍ଜୀବନ ରାମ ଯେଉଁ ଚାରବାର୍ତ୍ତା ଦେଇଥିଲେ, ପ୍ରାୟ ତଦ୍ରୂପ ଶବ୍ଦର ପ୍ରସ୍ତାବ ପାସ୍ କରାଗଲା—ଶାସକ କଂଗ୍ରେସ ସହ ଆଲାପ ଆଲୋଚନା କରିବା ନିମନ୍ତେ । ଏହି ପ୍ରସ୍ତାବଟି ବହୁ ଭୋଟରେ ପାର୍ଟିର ବରୋଦା ଅଧିବେଶନରେ ଗୃହୀତ ହୋଇଗଲା । ଏହି ପ୍ରସ୍ତାବଟି ମୁଁ ଆଗତ କରିଥିବାରୁ କେତେକଙ୍କର ଧାରଣା ଯେ ଏ ପ୍ରସ୍ତାବଟି ଗଠା କରାଇବାରେ ମୋର ହାତ ଥିଲା । ମାତ୍ର ସତ୍ୟକଥା ହେଉଛି, ମୋର ମାମୁ ଡାକ୍ତର କୁଳମଣି ମିଶ୍ରଙ୍କର କର୍କଟ ରୋଗର ଚିକିତ୍ସା ବମ୍ବେରେ କରାଯାଉଥିଲା ଏବଂ ମୁଁ ବାରମ୍ବାର ବମ୍ବେ ଯିବା ଦରକାର ପଡ଼ୁଥିବାରୁ ପୂର୍ବବର୍ତ୍ତୀ ଅଧିବେଶନଗୁଡ଼ିକରେ ଯୋଗଦାନ କରିପାରି ନଥିଲି । ମୁଁ ଏହି ମତର ସମର୍ଥକ ଥିଲି ଏବଂ ପାର୍ଟି କାର୍ଯ୍ୟକାରୀ ସମିତି ଯେତେବେଳେ ଖୋଲା ଅଧିବେଶନରେ ଡେଲିଗେଟ୍‌ମାନଙ୍କ ସମକ୍ଷରେ ଏ ପ୍ରସ୍ତାବ ପେଶ୍ କରିବା ନିମନ୍ତେ ମତେ ନିର୍ଦ୍ଦେଶ ଦେଲେ, ମୁଁ ଶୃଙ୍ଖଳିତ ସୈନିକ ଭାବରେ ତାହା କରିଥିଲି । ଆମ ଓଡ଼ିଶାରୁ ବିଶ୍ୱନାଥ ପଣ୍ଡିତ ଓ ହରିହର ବାହିନୀପତି ପ୍ରଭୃତି ଏହାର ସପକ୍ଷରେ ନଥିଲେ । ମୁଁ ଏ ପର୍ଯ୍ୟନ୍ତ ପାର୍ଟି ଭିତରେ ଯେତେବେଳେ ଯାହା ରାଜନୀତିକ ପଦକ୍ଷେପ ନେଇଥିଲି, ସେଥିରେ ଓଡ଼ିଶାର ସାଥୀ ଏକମତ ହୋଇଯାଉଥିଲେ । ଅବଶ୍ୟ ମୁଁ ମୋ ମାମୁଙ୍କ ସ୍ୱାସ୍ଥ୍ୟ ନେଇ ବ୍ୟସ୍ତ ଥିବାରୁ ପୂର୍ବରୁ ଆସି ଏ ପ୍ରସ୍ତାବ ସମ୍ପର୍କରେ ଓଡ଼ିଶାର ଡେଲିଗେଟ୍‌ମାନଙ୍କ ସହ ଆଲୋଚନା କରିପାରିନଥିଲି । ଉପର ମହଲରେ କିଭଳି ସବୁ ଘଟଣାର ସମ୍ମୁଖୀନ ହେବାକୁ ପଡ଼ୁଛି ତାହା ଜାଣିବାର ଏପରି ସୁଯୋଗ ସାଥୀମାନଙ୍କୁ ଦେବା ନିମନ୍ତେ ବରୋଦାଠାରେ ଜାତୀୟ କାର୍ଯ୍ୟକାରୀ ସମିତି ସଦସ୍ୟ ପଦ ଲାଗି ବାଙ୍କବିହାରୀ ଦାସଙ୍କ ନାମ ପରିବର୍ତ୍ତେ ମୁଁ ବିଶ୍ୱନାଥ ପଣ୍ଡିତଙ୍କ ନାମ ରଖିଲି ଏବଂ ସେ ଏଥିର ସଭ୍ୟରୂପେ ନିର୍ବାଚିତ ହୋଇଥିଲେ । ମୋର ଏହିସବୁ ସାଥି ମୁଁ କଂଗ୍ରେସ ସହିତ ମିଶିବା ଲାଗି ଆଗରୁ ଷଡ଼ଯନ୍ତ୍ର କରୁଥିଲି ବୋଲି ଯେଉଁ ଅଭିଯୋଗ ଉଠାଇଥିଲେ, ସେଥିରେ ଯଦି କାଣିଚାଏ ସତ୍ୟ ଥାଆନ୍ତା ତେବେ ମୁଁ ଅନ୍ୟ ପ୍ରକାର ବାଟ ଧରିଥାଆନ୍ତି; ଏମାନଙ୍କୁ ପାର୍ଟିର ମୁଖ୍ୟ ସ୍ଥାନମାନଙ୍କରୁ ଅନ୍ତର କରି ଦେଇ ପାରିଥାନ୍ତି ଏବଂ ଯେଉଁଭଳି ଭାବରେ ଦ୍ୱନ୍ଦ୍ୱ ଭିତରେ ନ ପଶି ନୀରବରେ ପାର୍ଟି ଛାଡ଼ିଦେଲି, ତାହା ଅନ୍ୟ ପ୍ରକାରେ କରିପାରିଥାଆନ୍ତି । ମାତ୍ର ମୁଁ କେବେ ସାଥିଙ୍କଠାରୁ

ଗୋପନ ରଖି କୌଣସି କାର୍ଯ୍ୟ କରିନାହିଁ କିମ୍ବା ମୋ ମତକୁ ପାର୍ଟି ସାଥିଙ୍କ ଭିତରେ ଗୁପି ଦେବାକୁ ଚେଷ୍ଟା କରିନାହିଁ ।

## ଆହୁରି ଏକ ମିଥ୍ୟା ପ୍ରଚାର

ଉପର ମହଲରେ ଏହିସବୁ ରାଜନୀତିକ ପରିବର୍ତ୍ତନ ଘଟୁଥିବାବେଳେ ଓଡ଼ିଶାରେ ଚାଲୁଥିବା ସ୍ୱତନ୍ତ୍ର-ଜନକଂଗ୍ରେସ ସରକାର ଭିତରେ ନାନା ଦଳାଦଳିର ସୂଚନା ଦେଖାଯାଇଥିଲା । ହରେକୃଷ୍ଣ ମହତାବ ସେତେବେଳକୁ କୌଣସି କାରଣରୁ ସରକାର ବା ପାଟଣା ମହାରାଜାଙ୍କ ଉପରେ ବୀତସ୍ପୃହ ହୋଇସାରିଲେଣି । ଶାସକ କଂଗ୍ରେସ ଓ ଜନକଂଗ୍ରେସ ଏକାଠି ହୋଇଗଲେ ପି. ଏସ୍. ପି. ଓ ଅନ୍ୟ ଦଳର ସହଯୋଗରେ ବିକଳ୍ପ ସରକାର ଗଠିତ ହୋଇପାରିବ, ଏପରି ଏକ ଗୁଜବ ଖୁବ୍ ଜୋର୍‌ରେ ଉଠିଲା । ସମ୍ବାଦପତ୍ରମାନଙ୍କରେ ମଧ୍ୟ ଏହାର ଇଙ୍ଗିତ ଦିଆଗଲା । ମୁଁ ମୁଖ୍ୟମନ୍ତ୍ରୀ ହେବାର ସମ୍ବାଦ ମଧ୍ୟ କୌଣସି କୌଣସିଠାରେ ପ୍ରକାଶ ପାଇଲା ଏବଂ ଲୋକେ କୁହାକୁହି ହେଲେ । ମୁଁ ସେତେବେଳେ ଦିଲ୍ଲୀରେ । ଓଡ଼ିଶାରେ ଏପରି ଏତେଦୂର ପ୍ରଚାର ହେବା ବିଷୟରେ ବିଶେଷ କିଛି ଜାଣିନଥିଲି । ଓଡ଼ିଶାରେ ଏକ ରାଜନୀତିକ ପରିବର୍ତ୍ତନର ସମ୍ଭାବନା ଦେଖି ଆମ ଓଡ଼ିଶା ପାର୍ଟିର କାର୍ଯ୍ୟକାରୀ ସମିତି ଓ ଆସେମ୍ବ୍ଲି ଦଳର ସଭ୍ୟମାନଙ୍କର ଏକ ମିଳିତ ବୈଠକ ବସିଲା । ମୁଁ ଦିଲ୍ଲୀରୁ ଆସି ଉକ୍ତ ବୈଠକରେ ଯୋଗଦେଲି । ଗୁରୁଆଡକୁ ବିଚାର କରି ଆମେ ସ୍ଥିରକଲୁ ଯେ ଯାହା ପରିବର୍ତ୍ତନ ହେଉପଛକେ, ଆମେ ଯେଉଁ ବିରୋଧ ଭୂମିକାରେ ରହିଥିଲୁ ସେହିପରି ରହିବୁ । ସ୍ୱତନ୍ତ୍ର-ଜନକଂଗ୍ରେସ ସରକାର ପ୍ରତି ଯେଉଁ ସ୍ୱାଧୀନ ସହଯୋଗ ମନୋବୃତ୍ତି ରହିଥିଲା, ତାହା ବଦଳାଇ ତୀବ୍ର ବିରୋଧ କରିବା ନୀତି ବି ଗ୍ରହଣ କଲୁନାହିଁ । ବାସ୍ତବିକ କଂଗ୍ରେସ ଲୋକଙ୍କ ଭିତରେ କିଛି ଚର୍ଚ୍ଚା ହେଉଥିଲା କି ନାହିଁ ଆମକୁ କିଛି ଜଣାନଥିଲା । କଂଗ୍ରେସ ତରଫରୁ କେହି ପ୍ରଜା ସୋସଲିଷ୍ଟ ପାର୍ଟିଙ୍କ ନୀତି ସମ୍ପର୍କରେ ମୋ ସହ କଥାବାର୍ତ୍ତା କରିନଥିଲେ । ମୁଁ ଦିଲ୍ଲୀ ଫେରିଗଲି । ଏ ବିଷୟରେ ପବିତ୍ରମୋହନ ପ୍ରଧାନ ନିଜର ଆତ୍ମକାହାଣୀରେ ମୁଁ ଆସି ଶିଶୁପାଳ ହୋଇ ଫେରିଗଲି ବୋଲି ଲେଖିଥିବା ପଢି ମୁଁ ବିସ୍ମିତ ହେଲି । ଏହା ଏକ ମିଥ୍ୟା ଓ ଅପପ୍ରଚାର ।

## ପି. ଏସ୍. ପି.ର ନୀତି ପରିବର୍ତ୍ତନ

ବରୋଦାରେ ଏହି ଯେଉଁ ନୂଆ କର୍ମପନ୍ଥା ଧାର୍ଯ୍ୟକରାଗଲା ତଦନୁସାରେ ପି. ଏସ୍. ପି. ନିଜର ରାଜନୀତିକ କାର୍ଯ୍ୟକ୍ରମ ସ୍ଥିରକଲା । ସେଥିରେ ସ୍ଥିରହେଲା—"କେନ୍ଦ୍ର ବା ପ୍ରଦେଶରେ କୌଣସି ସରକାରକୁ ଗାଦିଚ୍ୟୁତ କରିବା ପି. ଏସ୍. ପି.ର ଅସଲ ଉଦ୍ଦେଶ୍ୟ ହେବ ନାହିଁ । ଏହାର ପ୍ରାଥମିକ କର୍ତ୍ତବ୍ୟ ହେବ ସମାଜବାଦୀ କାର୍ଯ୍ୟକ୍ରମକୁ ଆଗେଇନେବା । ବ୍ୟବସ୍ଥା ସଭା ବାହାରେ ଏବଂ ଭିତରେ ଏହା ସର୍ବଦା ସମାଜବାଦୀ କାର୍ଯ୍ୟକ୍ରମ ରଖୁଥିବ । ଯଦି ପି. ଏସ୍. ପି. ଏପରି ନିର୍ଦ୍ଦିଷ୍ଟ ସମାଜବାଦୀ କାର୍ଯ୍ୟକ୍ରମ ବ୍ୟବସ୍ଥାସଭା ଆଗରେ ରଖିବା ହେତୁ

ଏବଂ ଅନ୍ୟ ଦଳଗୁଡ଼ିକ ତାକୁ ସମର୍ଥନ ଦେବା ହେତୁ ସରକାରର ପତନ ଘଟେ ତେବେ ପି. ଏସ୍. ପି. ସେଥିଲାଗି ଅନୁତାପ କରିବନାହିଁ [Page 19, Para 4 of the document Strategy for Socialism, A Praja Socialist Publication. ]

ଏହି ନୀତି ଅନୁସାରେ ପ୍ରକୃତପକ୍ଷେ କାର୍ଯ୍ୟ କରିଗଲେ ପି.ଏସ୍.ପି.ର ପୂର୍ଣ୍ଣ ବିରୋଧୀ ଆଭିମୁଖ୍ୟ ରହିବନାହିଁ । କିନ୍ତୁ ନିଷ୍ପତ୍ତି ଅନୁସାରେ କଂଗ୍ରେସ ସହ ଯାହା ବିଗୂଢ଼ ପରାମର୍ଶ ହେଲା, ସେଥିରେ ଆଶା କରାଗଲା ଯେ ଶାସକ କଂଗ୍ରେସ ତାଙ୍କ ନୀତିଗୁଡ଼ିକର ସ୍ପଷ୍ଟୀକରଣ କରିବ । ତାପରେ ବସିଥିବା ନିଖିଳ ଭାରତ କଂଗ୍ରେସ କମିଟିର ବମ୍ବେ ଅଧିବେଶନରେ ସେପରି କିଛି ଘଟିଲାନାହିଁ । ତେଣୁ ପାର୍ଟି ଚେୟାରମ୍ୟାନ୍ ଏନ୍. ଜି. ଗୋରେ ୧୯୬୦ ଅଗଷ୍ଟ ୨୫ ତାରିଖରେ ଜଗଜ୍ଜୀବନ ରାମଙ୍କ ନିକଟକୁ ଏକ ପତ୍ରରେ ଲେଖିଲେ—“ଆପଣଙ୍କ ନିବେଦନର ଆନ୍ତରିକତା ଉପରେ ବିଶ୍ୱାସ ରଖି ପି.ଏସ୍. ପି. ଆପଣଙ୍କ ସହ କଥାବାର୍ତ୍ତା ଆରମ୍ଭ କରିବାକୁ ସ୍ଥିର କଲା । ଏ ଦେଶରେ ଗଣତାନ୍ତ୍ରିକ ସମାଜବାଦୀ ଶକ୍ତିଗୁଡ଼ିକର ଏକୀକରଣ ଏବଂ ପ୍ରଚଳିତ ସାମାଜିକ ବ୍ୟବସ୍ଥାର ପୁନର୍ଗଠନ କରି ଏକ ସମତାବିଶିଷ୍ଟ ସାମାଜିକ ବ୍ୟବସ୍ଥା ସ୍ଥାପନର ଆପଣଙ୍କ ଲକ୍ଷ୍ୟ ସହିତ ଆମେ ଏକମତ । କିନ୍ତୁ ପି.ଏସ୍.ପି.କୁ ଦୁଃଖ ସହକାରେ କହିବାକୁ ପଡ଼ୁଛି ଯେ ସାମାଜିକ ଓ ଆର୍ଥନୀତିକ ପରିବର୍ତ୍ତନ ବିଷୟରେ ଆପଣଙ୍କର ବମ୍ବେ ଅଧିବେଶନରେ ଯେଉଁ ଉତ୍ସାହ ପ୍ରଦର୍ଶିତ ହୋଇଥିଲା, ତଦନୁସାରେ ନିର୍ଦ୍ଦିଷ୍ଟ ମନୋବୃତ୍ତି ନେଇ କାର୍ଯ୍ୟ କରିବାର କୌଣସି ସୂଚନା ମିଳୁନାହିଁ ।”

## ଆମର ଭୁଲ ହେଲା କେଉଁଠି ?

ଆମେ ଯେତେବେଳେ କଂଗ୍ରେସ ସହିତ ହାତ ମିଳାଇ ସୋସଲିଷ୍ଟ ଶକ୍ତିର ଏକୀକରଣ କରିବାର ପ୍ରସ୍ତାବ କଲୁ, ତଦ୍ଦ୍ୱାରା ଶାସକ କଂଗ୍ରେସକୁ ଆମେ ସମାଜବାଦୀ ବିରାଦରୀ ଭିତରକୁ ନେଇଆସିଲୁ । ତାହା ଆଉ ଆମ ଚକ୍ଷୁରେ ପୁଞ୍ଜିବାଦୀ ଓ ପ୍ରତିକ୍ରିୟା ଶକ୍ତିକୁ ମଜବୁତ କରିବା ପାର୍ଟି ବୋଲି ଆମେ ମନେକଲୁନାହିଁ । ଏହାଦ୍ୱାରା ପି. ଏସ୍. ପି. ଓ କଂଗ୍ରେସ ଭିତରେ ବେଶି ତଫାତ୍ ନ ଥିଲା ବୋଲି ଦେଶ ଆଗରେ ଜଣାପଡ଼ିଲା । ତାପରେ ଆମେ, ଯେମିତି ଆଗ ଚିଠିରେ ଉଲ୍ଲେଖ କରାଯାଇଛି, ସେସବୁ କାର୍ଯ୍ୟରେ କଂଗ୍ରେସର ସେତେ ଉତ୍ସାହ ନଥିଲା ବୋଲି ଯେତେବେଳେ ଠଉରାଇଲୁ, ସେତେବେଳେ ଭିନ୍ନ ପନ୍ଥା ନେଇପାରିଥାଆନ୍ତୁ । ପାର୍ଟି ଭିତରେ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ଏହାର ସମ୍ପୂର୍ଣ୍ଣ ବିରୋଧୀ ଥିଲେ, ତଥାପି ବହୁମତକୁ ସ୍ୱୀକାର କରାଯାଇଥିଲେ । ଏପରି ସ୍ଥିତିରେ ନେତୃମଣ୍ଡଳୀ ବଡ଼ ଦ୍ୱିଧାରେ ପଡ଼ି ବିଷୟଟିକୁ ଠିକ୍ ବାଟରେ ନେଇ ଆଣି ଥୋଇ ପାରିଲେ ନାହିଁ । ଆମେ କୌଣସି ପ୍ରକାର ବୁଝାମଣା କରି ଆଗେଇଯିବାକୁ ଭୟ କଲୁ; ଏଣେ ଏହା ଭାଙ୍ଗି ଦେବାଲାଗି ପ୍ରସ୍ତୁତ ନ ଥିଲୁ । ଏହା ପାର୍ଟି ଭିତରେ କିଯଯୌ ନିତସ୍ଥୌ ଅବସ୍ଥା ସୃଷ୍ଟି କଲା । ନିର୍ବାଚନ ଆଖି ଆଗରେ ଥିଲା

ଏବଂ ପାର୍ଟି ଖୁବ୍ ଅନିଶ୍ଚିତତା ଭିତରେ ପଡ଼ିଥିଲା । ତେଣୁ ଆମେ ଯୋଗାଣହୋଇ ଶାସକ କଂଗ୍ରେସ ସହିତ ସହଯୋଗ ମନୋବୃତ୍ତିରେ ଗଢ଼ିଲୁ । ଦୁଇ ପାର୍ଟି ଭିତରେ କିପରି ସହଯୋଗର ବାଟ ଫିଟିବ ଏହା ପେନ ନଭେମ୍ବର ୨୬ ତାରିଖରେ କଂଗ୍ରେସ ଓ ପି.ଏସ୍.ପି. ନେତାଙ୍କର ଏକ ପ୍ରାଥମିକ ବୈଠକ ବସିଥିଲା । ତହିଁରେ ଉପସ୍ଥିତ ଥିଲେ କଂଗ୍ରେସ ତରଫରୁ ଇନ୍ଦିରାଗାନ୍ଧୀ, ଜଗଜ୍ଜୀବନ ରାମ, ଡକ୍ଟର ଶଙ୍କର ଦୟାଲ ଶର୍ମା, ଏଚ୍. ଏନ୍. ବହୁଗୁଣା ଏବଂ ଆମ ପି. ଏସ୍. ପି. ତରଫରୁ ଏନ୍. ଜି. ଗୋରେ, ନାଥ ପାଇ, ମୁଲ୍କା ଗୋବିନ୍ଦ ରେଡ୍ଡି, ପ୍ରେମ ଭସୀନ ଓ ମୁଁ ରହିଥିଲୁ । ବହୁ ସମୟ ଆଲୋଚନା ପରେ ଦେଖାଗଲା ଯେ ଦୁଇଦଳ ବହୁ ସମସ୍ୟାରେ ଏକା ଦୃଷ୍ଟି ରଖିଛନ୍ତି । ଆହୁରି ମଧ୍ୟ ଅନୁଭବ କରାଗଲା ଯେ, କାର୍ଯ୍ୟକ୍ରମରେ ନାନା ଅସୁବିଧା ଏବଂ ମତଭେଦ ସତ୍ତ୍ୱେ ବ୍ୟବସ୍ଥାସଭା ଓ ବାହାରେ ପରସ୍ପର ସହଯୋଗର ବାଟ ବାହାରିପାରିବ । [ During discussions it was found that the two parties share a common perspective on a varities of issues facing the nation. It was felt that it should be possible to work towards cooperation in the legislatures and outside despite differences and difficulties in the way. ]

ଏହା ପରେ ୧୯୭୦ ଡିସେମ୍ବର ୮ ତାରିଖରେ ଯେଉଁ ବୈଠକ ହେଲା, ତହିଁରେ ଆମର ସିଦ୍ଧାନ୍ତଟା ପୂର୍ଣ୍ଣ ଏକମତ ହେବା ଆଡ଼କୁ ଗଢ଼ିଲା । ଦ୍ୱିତୀୟ ବୈଠକକୁ କଂଗ୍ରେସ ତରଫରୁ ଅଧିକା ଓ୍ୱାଇ. ବି. ଚୌହାନ ଯୋଗଦେଇଥିଲେ ଏବଂ ପି. ଏସ୍. ପି ତରଫରୁ ମୁଲ୍କା ଗୋବିନ୍ଦ ରେଡ୍ଡି ଅନୁପସ୍ଥିତ ଥିଲେ । ଏଠାରେ ଯାହା ସିଦ୍ଧାନ୍ତ ହୋଇ ସମ୍ବାଦପତ୍ରରେ ପ୍ରକାଶ ପାଇଁ ଦିଆଗଲା, ତାହା ଏହି ପ୍ରକାର—

"ଦେଶର ରାଜନୀତିକୁ ଅଧିକ ଅଗ୍ରଗାମୀ କରିବା ନିମନ୍ତେ, ସମାଜବାଦୀ ନୀତିକୁ କାର୍ଯ୍ୟକାରୀ କରିବା ଲାଗି ଏବଂ ପରମ୍ପରାବାଦୀ, ସ୍ଥିତାବସ୍ଥାରକ୍ଷଣକାରୀ ହିନ୍ଦୁ ଓ ମୁସଲମାନ ସଂପ୍ରଦାୟବାଦ ଓ ବାମପନ୍ଥୀ ଚରମବାଦ ବିରୁଦ୍ଧରେ ସଂଗ୍ରାମ କରିବା ନିମନ୍ତେ ଆମେ ଦୁଇଦଳ ପରସ୍ପର ସହିତ ସହଯୋଗ କରିବା ସମ୍ଭବ ବୋଲି ବିଚାରୁଛୁ ।

"ତେଣୁ ଦୁଇଦଳ ସ୍ଥିର କଲେ ଯେ ବେକାରି, ଦରବୃଦ୍ଧି, ଭୂସଂସ୍କାର, ଶ୍ରମିକ ସମସ୍ୟା ଆଦି କେତେକ ସମସ୍ୟା ରହିଛି, ଯାହାର ଜରୁରୀ ସମାଧାନ ଆବଶ୍ୟକ ହେଲାଣି ଏବଂ ଏହା କରିବା ନିମନ୍ତେ ଦୁଇଟିଯାକ ଦଳ ପରସ୍ପର ସହଯୋଗରେ କାର୍ଯ୍ୟ କରିବେ । ଦୁଇଦଳର ପ୍ରତିନିଧିମାନେ ବସି ଏହାର ସମାଧାନ ନିମନ୍ତେ ବିସ୍ତୃତ କାର୍ଯ୍ୟକ୍ରମ ସ୍ଥିର କରିବେ ।"

ଏହିଠାରେ କହିରଖେ ଯେ, ବରୋଦା ପ୍ରସ୍ତାବରେ ନିର୍ଦ୍ଦିଷ୍ଟ ଭାବରେ ନିର୍ବାଚନ ସମ୍ବନ୍ଧରେ କଥାବାର୍ତ୍ତା କରିବାର ଉଲ୍ଲେଖ ନ ଥିଲେ ସୁଦ୍ଧା ତାହା କରିବାରେ କିଛି ବାଧା ନାହିଁ ଭାବି ସେ ବିଷୟର ଆଲୋଚନା ହେଲା—ମିଳିତ ଇସ୍ତାହାର ବା ମିଳିତ ଭାବରେ ନୁହେଁ—କେବଳ

ଆସନ ବାଣ୍ଟ ନେଇ ଯେ ଯାହାର ଲଢ଼ିବେ; କେହି କାହାର ସହ ପ୍ରତିଯୋଗିତା କରିବେ ନାହିଁ । ଏହି ପ୍ରସଙ୍ଗ ଉଠିଲାବେଳେ ଇନ୍ଦିରାଗାନ୍ଧୀ ପରିଷ୍କାର କରିଦେଇଥିଲେ ଯେ କଂଗ୍ରେସ ଦଳ ଯେପରି ନିଜ ବଳରେ ପାର୍ଲିମେଣ୍ଟରେ ବହୁମତ ପାଇପାରିବ, ତାହାକୁ ଲକ୍ଷ୍ୟ ରଖି ସ୍ଥାନ ବଣ୍ଟୁଆରା ହେବ । ପରେ ପି. ଏସ୍. ପି. ଓ କଂଗ୍ରେସର ସାଧାରଣ ସମ୍ପାଦକମାନେ ମିଳିତ ହୋଇ ଏ ବିଷୟ ଦୁଇଦିନ ଆଲୋଚନା କରି ୧୯୭୧ ଜାନୁୟାରୀ ୧୧ରେ ଘୋଷଣା କରିଦେଲେ ଯେ କଥାବାର୍ତ୍ତା ବିଫଳ ହେଲା । କେତେକ ପ୍ରଦେଶରେ କେତେକ ନିର୍ଦ୍ଦିଷ୍ଟ ସ୍ଥାନ ଯୋଗୁ ବିବାଦ ଉଠି ଏହା ଆଉ ବିଗ୍ରହ ନହୋଇପାରିଥିବା ବାସ୍ତବିକ ଦୁଃଖର କଥା । ଆମେ କରିପାରିଲୁ ନାହିଁ ଆମର ଯାହା ପ୍ରକୃତ ଶକ୍ତି, ତାହା ଅପେକ୍ଷା ଅଧିକ ଦାବୀ କରିବାରୁ । ଆମେ ସ୍ୱାଧୀନ ଭାବରେ ୬୫ଟି ସ୍ଥାନରେ ପ୍ରାର୍ଥୀ ଠିଆକରି ମୋଟେ ୨ଟି ସ୍ଥାନ ୧୯୭୧ ନିର୍ବାଚନରେ ପାଇପାରିଲୁ । ମୁଁ ବି ଓଡ଼ିଶାରେ ହାରିଗଲି । ମାତ୍ର ସି. ପି. ଆଇ. ୨୭ଟି ସ୍ଥାନରେ ସମ୍ମତ ହୋଇ ୨୩ଟି ସ୍ଥାନ ଦଖଲ କରିପାରିଥିଲା । ପି. ଏସ୍. ପି. ନା ଏ କୂଳର ନା ସେ କୂଳର ହେଲା ।

ନିର୍ବାଚନ ପୂର୍ବରୁ ମହାରାଷ୍ଟ୍ରର ଶଙ୍କରବାଡ଼ିଠାରେ ଏକାଦଶ ବାର୍ଷିକ ସମ୍ମିଳନୀ ବସିଥିଲା । ତହିଁରେ ଏସବୁ ବିଗ୍ରହକୁ ନିଆଗଲା ! ଦାବୀ ହେଲା ଯେ, ଏଭଳି କୌଣସି ନିଷ୍ପତ୍ତିରେ ନ ପହଞ୍ଚି କଂଗ୍ରେସ ସହିତ କଥାବାର୍ତ୍ତା ଜାରି ରଖିବା ଫଳରେ ପାର୍ଟିର ବଡ଼ କ୍ଷତି ହେଲାଣି । ଲୋକେ ଆଉ ଆମକୁ ବିରୋଧ ପକ୍ଷରେ ଦେଖୁନାହାନ୍ତି । କିନ୍ତୁ ଏହା ସତ୍ତ୍ୱେ ଶାସକ କଂଗ୍ରେସ ସହିତ ସମ୍ପର୍କ ତୁଟାଇ ଦେବାର କୌଣସି ସିଦ୍ଧାନ୍ତ ନିଆଗଲାନାହିଁ । ଶଙ୍କରବାଡ଼ି ସମ୍ମିଳନୀ ହୋଇଥିଲା ଡିସେମ୍ବର ୩୧ ଓ ୧୯୭୧ ଜାନୁୟାରୀ ପହିଲାରେ । ଦୁଇ ପାର୍ଟିର ଜେନେରାଲ୍ ସେକ୍ରେଟାରୀ ତାପରେ ବସି ଜାନୁୟାରୀ ୮ ଓ ୨ୟ ସପ୍ତାହରେ ଆଲୋଚନା ଚଳାଇଥିଲେ । ଏହା ବିଫଳ ହେବାରୁ ପାର୍ଟି ପୁଣି ନିର୍ବାଚନରେ ପଶିଲା ଏବଂ ସେତେ-ବେଳକୁ ଯଥେଷ୍ଟ ବୁଦ୍ଧିଭେଦ ଲୋକଙ୍କ ଭିତରେ ପ୍ରବେଶ କରିସାରିଥିଲା ।

## ମୋର ମତଭେଦହେଲା

ମୁଁ ଶଙ୍କରବାଡ଼ି ସମ୍ମିଳନୀରେ ଯୋଗଦେଇଥିଲି ଏବଂ ତାପରେ ବୁଲନ୍ଦସହରରେ ୧୯୭୧ ଅଗଷ୍ଟ ୭ ଓ ୮ରେ ଯେଉଁ ଶେଷ ପ୍ରଜା ସୋସଲିଷ୍ଟ ପାର୍ଟି ସମ୍ମିଳନୀ ହୋଇଥିଲା ତହିଁରେ ଯୋଗଦେଇଥିଲି ।

ନିର୍ବାଚନ ପରେ ୧୯୭୧ ମାର୍ଚ୍ଚ ୧୭ରୁ ୨୦ରେ ପାର୍ଟିର କାର୍ଯ୍ୟନିର୍ବାହିକା ସମିତି ଦିଲ୍ଲୀରେ ବସି ନିର୍ବାଚନ ପର ପରିସ୍ଥିତି ପର୍ଯ୍ୟାଲୋଚନା କରିଥିଲା । ମୁଁ ଦିଲ୍ଲୀକି ଆସିଥିଲେ ସୁଦ୍ଧା ଅସୁସ୍ଥ ହୋଇଯିବାରୁ ସେଥିରେ ଯୋଗଦେଇପାରିନଥିଲି । ନିର୍ବାଚନରେ ଶୋଚନୀୟ ପରାଜୟ ଯୋଗୁଁ ଆଉ କଂଗ୍ରେସ ସହ କଥାବାର୍ତ୍ତା କରାଯିବ ନାହିଁ ଏବଂ ଏକ ଦାୟିତ୍ୱସମ୍ପନ୍ନ ବିରୋଧୀଦଳ ରୂପେ ପାର୍ଟି କାର୍ଯ୍ୟ କରିବାର ନିଷ୍ପତ୍ତି ନିଆଗଲା ଏବଂ ତାହା ସଙ୍ଗେ ସଙ୍ଗେ

ସମାଜବାଦୀ ଏକତା, ବିଶେଷଭାବରେ ଏସ୍. ଏସ୍. ପି. ସହ କଥାବାର୍ତ୍ତା କରିବା ନିମନ୍ତେ ସ୍ଥିରକରାଗଲା ।

କଂଗ୍ରେସ ସହିତ କଥାବାର୍ତ୍ତା ବନ୍ଦ ଏବଂ ଦାୟିତ୍ୱପୂର୍ଣ୍ଣ ବିରୋଧୀ ଭାବରେ କାର୍ଯ୍ୟ କରିବା ସିଦ୍ଧାନ୍ତରେ ମୋର କୌଣସି ଆପତ୍ତି ନଥିଲା । ମାତ୍ର ଶାସକ କଂଗ୍ରେସ ଏକ ପୁଞ୍ଜିବାଦୀଦଳ ଏବଂ ତାକୁ ଲଢିବାକୁ ହେବ, ଏଥିରେ ମୋର ଆପତ୍ତି ଦର୍ଶାଇଲି । ଡିସେମ୍ବର ୮ ତାରିଖ ପର୍ଯ୍ୟନ୍ତ ଯେଉଁ ଦଳକୁ ଆମେ ସମାଜବାଦୀ ଗୋଷ୍ଠୀର ଅନ୍ତର୍ଭୁକ୍ତ କରିସାରିଥିଲୁ, କେବଳ ଆମର ନିର୍ବାଚନରେ ପରାଜୟ ହେତୁ ତାକୁ ପୁଞ୍ଜିବାଦୀ କହିବା ଅନୈତିକ ଏବଂ ଲୋକେ ଆମକୁ ଏକ ଦାୟିତ୍ୱସମ୍ପନ୍ନ ପାର୍ଟି ବୋଲି ବିଚାର କରିବେ ନାହିଁ ବୋଲି ମୋର ମନେ-ହେଲା । ଏସ୍. ଏସ୍. ପି.କୁ ମୁଁ ଆଦୌ ସୋସଲିଷ୍ଟ ପାର୍ଟିରୂପେ ଗ୍ରହଣ କରିପାରିନଥିଲି । ଏହି ବିଷୟ ମୁଁ ଆଗରୁ ଉଲ୍ଲେଖ କରିଛି । ତେଣୁ ତାହା ସହ ସହଯୋଗ ଉଦ୍ୟମ ଏକ ବୃଥା ପ୍ରୟାସ ବୋଲି ସେଥିରେ ଦ୍ୱିମତ ହେଲି । ତଥାପି ପି.ଏସ୍. ପି.କୁ ପୂର୍ବ ଅବସ୍ଥାରେ ବଞ୍ଚାଇ ରଖିବା କଷ୍ଟକର ଭାବି ମିଶ୍ରଣ କଥାବାର୍ତ୍ତା ଚାଲିଲା । ମୁଁ ତହିଁର ପ୍ରତିବାଦ କରି ଚେୟାରମାନ୍ ଏନ୍. ଜି. ଗୋରେଙ୍କୁ ଲେଖିଲି ଯେ ପାର୍ଟିକୁ ଏଭଳି ଭାବରେ ମିଶ୍ରଣ ଭିତରକୁ ଠେଲିଦେବା ଠିକ୍ ହେଉନାହିଁ । ଆମେ ନେତାମାନେ ବରଂ ଇସ୍ତଫା ଦେଇ ପାର୍ଟିଲୋକଙ୍କୁ ଜଣାଇଦେବା ଯେ ଆମେ ପାର୍ଟିକୁ ନେତୃତ୍ୱ ଦେବାଲାଗି ଅକ୍ଷମ—ସେମାନେ କି ପନ୍ଥା ଧରିବେ ସମ୍ମିଳନୀ ଡାକି ସ୍ଥିରକରନ୍ତୁ । ଏହା କହି ୯-୬-୭୧ ତାରିଖରେ ମୁଁ ଇସ୍ତଫାପତ୍ର ଦେଇଥିଲି । ମାତ୍ର ପାର୍ଟି ସାଥିମାନେ ତାହା ଗ୍ରହଣ କଲେନାହିଁ ଏବଂ ଅଗଷ୍ଟମାସରେ ବୁଲନ୍ଦସହରଠାରେ ହୋଇଥିବା ସମ୍ମିଳନୀରେ ମୁଁ ଯୋଗ ଦେଇଥିଲି । ସମ୍ମିଳନୀରେ ଏସ୍.ଏସ୍.ପି. ସହିତ ମିଶ୍ରଣର ମୁଁ ବିରୋଧ କରିଥିଲି ଏବଂ ଜାତି ଓ ଭାଷା ଯେବ ଯେଉଁ ରାଜନୀତି ହୋଇଗଲା ତାହା ଫଳରେ ସୋସଲିଷ୍ଟ ପାର୍ଟି ସୋସଲିଜମ୍ ଛାଡ଼ିଲା ବୋଲି ମୁଁ ଯୁକ୍ତି ବାଢିଥିଲି । ଦୁଇ ପାର୍ଟିର ମିଶ୍ରଣରେ ପାର୍ଟିର ନାମକରଣ ହେଲା ସୋସଲିଷ୍ଟ ପାର୍ଟି ଏବଂ ଏହାର ଆଡ଼ହକ୍ କମିଟିରେ ମତେ ସଦସ୍ୟ କରି ନିଆଗଲା । ଆଡ଼ହକ କମିଟିର ପ୍ରଥମ ବୈଠକରେ ହିଁ ପୁଣି ଦୁଇଦଳ ଭିତରେ ବିବାଦ ଆରମ୍ଭ ହୋଇଗଲା । ପୂର୍ବପରି ରାଜନାରାୟଣ, ମନିରାମ୍ ବାଗଡ଼ୀ ଓ ରବି ରାୟ ପ୍ରଭୃତିଙ୍କୁ ଧରି ନୂତନ ପାର୍ଟି ଗଠନକଲେ । ମିଶ୍ରଣ ନ ହୋଇ ପୁଣି ନୂତନ ପାର୍ଟି ବାହାରିଲା । ଅବଶ୍ୟ ମଧୁ ଲିମାୟେ, ଜର୍ଜ ଫର୍ଣ୍ଣାଣ୍ଡିସ ଓ ଏସ୍. ଏସ୍. ଜୋଶୀ ଆଦି ମହାରାଷ୍ଟ୍ରର ସାଥିମାନେ ଆଉ ତାଙ୍କ ସହିତ ନ ଯାଇ ପାର୍ଟିରେ ରହିଗଲେ ।

## ବୁଲନ୍ଦସହରରେ ସମ୍ମିଳନୀ

ବୁଲନ୍ଦସହର ସମ୍ମିଳନୀରେ ପାର୍ଟିର ଜେନେରାଲ୍ ସେକ୍ରେଟେରୀ ତାଙ୍କ ରିପୋର୍ଟରେ ଲେଖିଲେ—"ଏହା ହେଲା ପ୍ରଜା ସୋସଲିଷ୍ଟ ପାର୍ଟିର ଶେଷ ସମ୍ମିଳନୀ । ଏଠାରେ ଦୁଇପାର୍ଟିର ମିଶ୍ରଣ ପରି ଆଡ଼ହକ୍ କମିଟି ଗଠିତ ହେଲା ପରେ ଆଉ ପ୍ରଜା ସୋସଲିଷ୍ଟ ପାର୍ଟିର ଅସ୍ତିତ୍ୱ

ରହିବ ନାହିଁ ।" ମୋ ପକ୍ଷରେ ମଧ୍ୟ ଏହା ହେଲା ସଙ୍ଗଠିତ ସୋସଲିଷ୍ଟ ଆନ୍ଦୋଳନ ସହ ସମ୍ପର୍କର ଶେଷ ଅଧ୍ୟାୟ ।

ମୁଁ ଦିଲ୍ଲୀରୁ ଫେରି ଓଡ଼ିଶାରେ ସାଥିମାନଙ୍କ ଭିତରେ ମିଶ୍ରିତ ପ୍ରତିକ୍ରିୟା ଦେଖିଲି । ପାର୍ଟିର ଅଧିକାଂଶ ସଦସ୍ୟ ଏପରି ମିଶ୍ରଣର ବିରୋଧୀ ଥିଲେ ଏବଂ ଏଥିରେ କାମ କରିବାକୁ ପ୍ରସ୍ତୁତ ନଥିଲେ । କେହି କେହି କଂଗ୍ରେସରେ ଯୋଗଦେଇସାରିଥିଲେ । ପରସ୍ପର ଭିତରେ ମଧ୍ୟ ଘୋର ସନ୍ଦେହ ଓ ଅବିଶ୍ୱାସର ଏକ ବାୟୁମଣ୍ଡଳ ଦେଖିବାକୁ ମିଳିଲା । ସମସ୍ତଙ୍କୁ ବୁଝାଇ ବାଟକୁ ଆଣିବା କିମ୍ବା ଏକ ସୂତ୍ରରେ ବାନ୍ଧିରଖିବା ମୋର ସାଧ୍ୟାତୀତ ଥିଲା । ମୁଁ ତ ଏକପ୍ରକାର ଆଉ ନୂତନ ଗଠିତ ସୋସଲିଷ୍ଟ ପାର୍ଟିରେ ରହିବ ନାହିଁ ବୋଲି ସିଦ୍ଧାନ୍ତ କରିଥିଲି । ବୁଲନ୍ଦସହରରେ ଇସ୍ତଫା ଦେଇଥାଆନ୍ତି, କେବଳ ମୋର ଏତେବର୍ଷର ସାଥିଙ୍କ ଅନୁରୋଧରେ ଇସ୍ତଫା ଦେବନାହିଁ ବୋଲି କହିଆସିଥିଲି । ଏପରି ମନୋଭାବରେ ଏଠାରେ ଯଦି ପାର୍ଟି ଭିତରେ ଏକମନ ଓ ଏକମତ ରହିଥାଆନ୍ତା, ତେବେ ବୋଧହୁଏ ମୋର ନିଷ୍ପତ୍ତି ଭିନ୍ନଧରଣର ହୋଇଥାଆନ୍ତା । ସେପରି ଅବସ୍ଥା ନ ଥିଲା । ଏଥି ଭିତରେ ଯାହାସବୁ ଘଟିଗଲା ଏବଂ ସେହିଦିନଠାରୁ ମୋର ରାଜନୀତିକ ଜୀବନର ଗତି କିଣ ହୋଇଛି, ତାହା ପରବର୍ତ୍ତୀ ପୁସ୍ତକରେ କିମ୍ବା ଏହି ପୁସ୍ତକର ଦ୍ୱିତୀୟ ସଂସ୍କରଣରେ ପରିବର୍ଦ୍ଧିତ ଆକାରରେ ଦିଆଯିବ । ମୋର ଇଚ୍ଛା ଓଡ଼ିଶା ପ୍ରଜା ସୋସଲିଷ୍ଟ ପାର୍ଟିର ସାଥିମାନଙ୍କ ସମ୍ବନ୍ଧରେ ଆଉ ବିଶଦ ଭାବରେ ଲେଖିବା ନିମନ୍ତେ; କାରଣ ମୋ ଜୀବନର ମୂଲ୍ୟବାନ୍ ସମୟ ମୁଁ ଏକ ପରିବାରର ଲୋକପରି ସେମାନଙ୍କ ସହିତ କଟାଇଛି, ମୋର ନିଃସଙ୍ଗ ପରିବାରହୀନ ଜୀବନକୁ ପାସୋରି ପକାଇଛି । ସେହିମାନଙ୍କ ସ୍ନେହ ଶ୍ରଦ୍ଧା ପାଇ ମୋର ରାଜନୀତିକ ଜୀବନରେ ମୁଁ ଯାହା କିଛି ସଫଳତା ଅର୍ଜନ କରିଛି । ସେମାନେ ଯେଉଁଠି ଥାଆନ୍ତୁ ଓ ଯାହା କରୁଥାଆନ୍ତୁ, ସମସ୍ତେ ମୋର ଆଦରର ସାଥି ଏବଂ ତାଙ୍କ ନିକଟରେ ମୁଁ ବରାବର କୃତଜ୍ଞ ରହିଥିବି । ମୋର କାହାରି ପ୍ରତି ବ୍ୟକ୍ତିଗତ ଦ୍ୱେଷ ବା କ୍ରୋଧ ନାହିଁ । ରାଜନୀତିକ ଜୀବନରେ ମତଭେଦ ହେବା ବିଚିତ୍ର ନୁହେଁ; କିନ୍ତୁ ମୋର ଦୁଃଖ ଯେ ଯେଉଁମାନଙ୍କୁ ନେଇ ମୋର କ୍ଷୁଦ୍ର ରାଜନୀତିକ ପରିବାରଟି ଛିଡ଼ାହୋଇଥିଲା ତାହା ଭାଙ୍ଗିପଡ଼ିଲା ଏବଂ କିଏ କୁଆଡେ ଛିନ୍ନଛତର ହୋଇଗଲେ । ମୁଁ ପାର୍ଟିରୁ ୨୭-୮-୭୧ରେ ଇସ୍ତଫା ଦେଇ ଯେଉଁ ବିବୃତି ଦେଇଥିଲି ତାହା ନିମ୍ନରେ ଦେଇ ଏହି ଲେଖା ଶେଷକରୁଛି ।

"ଆଜିଠାରୁ ନବଗଠିତ ସୋସଲିଷ୍ଟ ପାର୍ଟିର ସଭ୍ୟପଦରୁ ମୁଁ ଇସ୍ତଫାଦେଲି ଏବଂ ଆସନ୍ତା ୨୯ ତାରିଖରେ ଓଡ଼ିଶାରେ ନୂଆ ସୋସଲିଷ୍ଟ ପାର୍ଟି ଗଠନ ଲାଗି ହେଉଥିବା ବୈଠକରେ ଯୋଗଦେବନାହିଁ ବୋଲି ସ୍ଥିର କରିଛି । ଏପରି ଏକ ସିଦ୍ଧାନ୍ତ ଅତ୍ୟନ୍ତ ଦୁଃଖର ସହ ମତେ କରିବାକୁ ପଡ଼ୁଛି । ପ୍ରାୟ ୩୫ ବର୍ଷରୁ ଅଧିକ କାଳ ହେଲା, ଭାରତରେ ସଙ୍ଗଠିତ ସୋସଲିଷ୍ଟ ଆନ୍ଦୋଳନ ଆରମ୍ଭ ହେବାଦିନୁ, ମୁଁ ଆନୁଷ୍ଠାନିକ ଭାବେ ଏଥିରେ ସଂପୃକ୍ତ ରହିଥିଲି ଏବଂ ନାନା ଘାତ ପ୍ରତିଘାତ ସତ୍ତ୍ୱେ ଏହାର ପ୍ରସାର ଲାଗି ମୋ ଜୀବନର ମୂଲ୍ୟବାନ୍ ସମୟ

ଦେଉଛୁ । ଆଜି ଏଥିରୁ ଆନୁଷ୍ଠାନିକ ଭାବରେ ସମ୍ପର୍କ ଛିନ୍ନକରିବାର ସିଦ୍ଧାନ୍ତ ମୋ ପକ୍ଷରେ ଯନ୍ତ୍ରଣାଦାୟକ ହୋଇଛି ।

ସମାଜବାଦୀ ଆନ୍ଦୋଳନ ଦେଶରେ ଦୁର୍ବଳ ହୋଇପଡ଼ିଛି ଏବଂ ଗତ ନିର୍ବାଚନରେ ସବୁ ସୋସଲିଷ୍ଟଦଳ ଶୋଚନୀୟ ପରାଜୟ ଲଭିଛନ୍ତି । ତେଣୁ ଏହି ଦଳଗୁଡ଼ିକର ମିଳନ ବା ମିଶ୍ରଣ ଦେଶ ତଥା ସୋସଲିଷ୍ଟ ଆନ୍ଦୋଳନ ପକ୍ଷରେ ମଙ୍ଗଳଦାୟକ—ଏହି ଦୃଷ୍ଟିରୁ ସମାଜବାଦୀ ଆନ୍ଦୋଳନର ମୁଁ ପକ୍ଷପାତୀ ଥିଲି । ମାତ୍ର ଯେଉଁ ସର୍ତ୍ତରେ ପ୍ରଜା ସୋସଲିଷ୍ଟ ପାର୍ଟି ଓ ସଂଯୁକ୍ତ ସୋସଲିଷ୍ଟ ପାର୍ଟିର ମିଶ୍ରଣ ହେଲା ସେଥିରେ ସମାଜବାଦୀ ଶକ୍ତି ମଜବୁତ୍ ହେବା ପରିବର୍ତ୍ତେ ପ୍ରତିଦ୍ୱନ୍ଦ୍ୱୀ ବଳ ପାଇବେ ବୋଲି ମୋର ଧାରଣା । ଭାରତର ସମାଜବାଦ ଲୋକ ମନରେ ପ୍ରଭାବ ପକାଇଛି ଏବଂ ଲୋକେ ଏହାର ତୁରନ୍ତ କାର୍ଯ୍ୟକାରିତା ନିମନ୍ତେ ଆଗ୍ରହୀ । ସମାଜବାଦୀ ଦଳଗୁଡ଼ିକ କ୍ଷୁଦ୍ର; ତେଣୁ ଯେପର୍ଯ୍ୟନ୍ତ ସମାଜବାଦୀ ଦଳଗୁଡ଼ିକ ଶକ୍ତିଶାଳୀ ନହୋଇପାରିଛି ସେ ପର୍ଯ୍ୟନ୍ତ ସମାଜବାଦକୁ ବିରୋଧ ନକରୁଥିବା ବା କିଛିଟା ପରିମାଣରେ ସମାଜବାଦୀ କାର୍ଯ୍ୟକୁ ଆଗେଇନେଉଥିବା ଦଳ ବା ଶକ୍ତିଗୁଡ଼ିକ ସହ ସହଯୋଗ ଦ୍ୱାରା ହିଁ ଜନତାର ଏ ଆକାଂକ୍ଷା ପୂରଣ କରିବାରେ ସମାଜବାଦୀ ଦଳଗୁଡ଼ିକ ସମର୍ଥ ହୋଇପାରିବେ । ମାତ୍ର ଏହି ମୂଳ ବିଷୟକୁ ବିଚାରକୁ ନ ନେଇ ନୂତନ ଗଠିତ ସୋସଲିଷ୍ଟ ପାର୍ଟି କାହାରି ସହ କୌଣସି ପ୍ରକାର ସହଯୋଗ ବା ମିଳାମିଶା ନକରି ଏକୁଟିଆ ଚାଲିବାର ନୀତି ଧାର୍ଯ୍ୟ କରିଛି । ଓଡ଼ିଶା ପରି ରାଜ୍ୟରେ ଏପରି ନୀତିଚାଳନା ଏକ ନିଷ୍ଫଳ ପ୍ରୟାସ ହୋଇରହିବ ।

ମୁଁ ପ୍ରଜା ସୋସଲିଷ୍ଟ ପାର୍ଟିର ବୁଲନ୍ଦସହରରେ ହୋଇଥିବା ସମ୍ମିଳନୀରେ ଏହିଗ ପ୍ରତି ଦୃଷ୍ଟି ଆକର୍ଷଣ କରିଥିଲି ଏବଂ ଯେଉଁ ନୂଆ ଭାଷା ଓ ଜାତି ନୀତି ଅନୁସରଣ କରାଯାଇଛି, ସେଥିର ବିରୋଧ କରିଥିଲି । ମୋ ମତରେ ଇଂରେଜୀକୁ ହଟାଇ ୧୫ଟି ଜାତୀୟ ଭାଷାର ପ୍ରଚଳନ ଲାଗି ଯେ ନୀତି ସ୍ଥିରହୋଇଛି, ସେଥିରେ ଏ ଦେଶର ଏକତାରେ ଆଞ୍ଚ ଆସିବ । ଏହିପରି ଅନ୍ୟ କେତେକ ସର୍ତ୍ତର ଦୋଷତ୍ରୁଟି ଦର୍ଶାଇ ଏହା ପ୍ରକୃତ ସମାଜବାଦୀ ମିଳନ ନୁହେଁ ବୋଲି ମୁଁ କହିଥିଲି ଏବଂ ମିଶ୍ରଣ ପ୍ରସ୍ତାବରେ ସମ୍ମତି ଦେଇ ପ୍ରଜା ସୋସଲିଷ୍ଟ ପାର୍ଟି ଭାଙ୍ଗିବାରେ ମୁଁ ଭାଗୀଦାର ହୋଇପାରିବିନାହିଁ ବୋଲି ଜଣାଇ ଦେଇଥିଲି । ଏସବୁ ମତ ବିରୋଧ ସତ୍ତ୍ୱେ ବନ୍ଧୁମାନଙ୍କ ଅନୁରୋଧରେ ମୁଁ ନୂତନ ପାର୍ଟିର ଆଡ୍‌ହକ୍ କମିଟିରେ ରହିଲି ଓ ପ୍ରଥମ ବୈଠକରେ ଯୋଗଦେଲି । ମୋର କ୍ଷୀଣ ବିଶ୍ୱାସ ରହିଥିଲା ଯେ କ୍ରମେ ଏସବୁ ସୁଧାରିବାଲାଗି ଚେଷ୍ଟା କରାଯାଇପାରେ । ମାତ୍ର ପ୍ରଥମ ବୈଠକରେ ଯାହାସବୁ ଘଟିଲା ସେଥିରେ ମୁଁ ଆଦୌ ସୁଖୀ ହୋଇପାରିଲିନାହିଁ । ତା' ସାଙ୍ଗକୁ ପୁଣି ଏବେ ସୋସଲିଷ୍ଟ ପାର୍ଟି ଚେୟାରମ୍ୟାନ୍ କର୍ପୁରୀ ଠାକୁର ଏକ ବିବୃତିରେ ଚବିଶତମ ସମ୍ବିଧାନ ସଂଶୋଧନକୁ ଏକ ଫାସିଷ୍ଟ ମନୋବୃତ୍ତି ବୋଲି କହିଛନ୍ତି । ମୁଁ ତ ଭାବିପାରୁନି ଏମିତିକା ଦଳ ସମାଜବାଦ ପାଇଁ କି କାର୍ଯ୍ୟ କରିବ ?

ଏବେ ଓଡ଼ିଶାକୁ ଆସି ଦେଖୁଛୁ ଯେଉଁ ସାଥୀମାନଙ୍କ ସହ ଗତ ୨୫ ବର୍ଷ ଧରି ଦୁଃଖେ କଷ୍ଟେ ଏଠାରେ ଏକ ସମାଜବାଦୀ ସଂଗଠନ ଛିଡ଼ା କରାଯାଇଥିଲା ଏବଂ ଯେଉଁମାନେ ମତେ ଅକୁଣ୍ଠିତ ଚିତ୍ତରେ ଶ୍ରଦ୍ଧା, ସମ୍ମାନ ଓ ଅନୁରକ୍ତି ଦେଇ ଏକାଠି ହୋଇ ଆଜି ସୁଦ୍ଧା କାମ କରୁଥିଲେ, ସେମାନଙ୍କ ଭିତରେ ଘୋର ରାଜନୀତିକ ମତଭେଦ । ବନମାଳୀ ମହାରଣାଙ୍କ ପରି ବ୍ୟକ୍ତି ଯାଇ କଂଗ୍ରେସରେ ମିଶିସାରିଲେଣି । ଆଉ କେତେକ ମୂଲ୍ୟବାନ୍ ସାଥୀ ସ୍ଥିର କରିଛନ୍ତି, ସେମାନେ ପୂର୍ବ ପ୍ରଜା ସୋସଲିଷ୍ଟ ପାର୍ଟିକୁ ଚାଲୁରଖିବେ, ନୂତନ ପାର୍ଟିରେ ଯୋଗ ଦେବେ ନାହିଁ ଏବଂ ପ୍ରତିକ୍ରିୟା ଶକ୍ତି ବିରୁଦ୍ଧରେ ସଂଗ୍ରାମ କରିବା ନିମନ୍ତେ ଅନ୍ୟ ପ୍ରଗତିଶୀଳ ଦଳଗୁଡ଼ିକ ସହିତ ସହଯୋଗ କରି କାର୍ଯ୍ୟ କରିବେ । ଆଉ କେତେକ ନୂତନ ସୋସଲିଷ୍ଟ ପାର୍ଟିରେ ରହିବେ । ଏହାଦ୍ୱାରା ଯେଉଁ ଦୃଢ଼ ଏକତାବଦ୍ଧ ସୋସଲିଷ୍ଟ ଶକ୍ତି ଓଡ଼ିଶାରେ ଏତେ କଷ୍ଟରେ ଛିଡ଼ାକରାଯାଇଥିଲା ତାହା ବାଣ୍ଟି ହୋଇଯିବ । ଏମାନେ ସମସ୍ତେ ମୋର ସାଥୀ—ଏମାନଙ୍କୁ ଆଉ ଏକାଠି ବାନ୍ଧିରଖିବା ସମ୍ଭବ ନୁହେଁ । ମୁଁ ସେମାନଙ୍କ ଉପରେ ମୋର ମତ ଲଦି ଦେବା ଉଚିତ ମନେକରୁନାହିଁ । ସେମାନେ ମତେ ଯେପରି ସମର୍ଥନ, ସାହାଯ୍ୟ ଓ ସହଯୋଗ ଦେଇଆସିଛନ୍ତି, ତାହାହିଁ ମତେ ବଳ ଦେଇଥିଲା । ସେମାନେ ବାଣ୍ଟି ହେବାଦ୍ୱାରା ଆଉ ମୋ ପକ୍ଷରେ ପୂର୍ବପରି କାର୍ଯ୍ୟ କରିବା ସମ୍ଭବ ହେଉନାହିଁ ।

ଏହା ବୋଲି ମୁଁ ରାଜନୀତି ଛାଡ଼ିଯାଉନାହିଁ କିମ୍ବା ନୀରବ ରହିପାରେନା । ଯେଉଁମାନେ ପ୍ରଜା ସୋସଲିଷ୍ଟ ପାର୍ଟି ଗଠନ କରି ଅନ୍ୟ ପ୍ରଗତିଶୀଳ ଦଳମାନଙ୍କ ସହଯୋଗରେ ଓଡ଼ିଶାରେ ପ୍ରତିକ୍ରିୟାପନ୍ଥୀଙ୍କ ବିରୁଦ୍ଧରେ ସଂଗ୍ରାମ କରିବାଲାଗି ସ୍ଥିର କରିଛନ୍ତି, ସେ ନୀତି ଓଡ଼ିଶାର ସ୍ୱାର୍ଥଦୃଷ୍ଟିରୁ ହିତଜନକ ଏବଂ ତାହା ଓଡ଼ିଶାର ରାଜନୀତିକ ଜୀବନରେ ସ୍ଥିରତା ଆଣିପାରେ । ଏହିଭଳି ସଂଗ୍ରାମରେ ସୋସଲିଷ୍ଟମାନେ ଯେମିତି ଏକଜୁଟ କାମ କରନ୍ତି ସେଥିଲାଗି ମୁଁ ଉଦ୍ୟମ କରିବି ।"

ଏହିଠାରେ ଏକ ସମାଜବାଦୀର ସଙ୍ଗଠିତ ଗନ୍ତବ୍ୟପଥର ଯାତ୍ରାର ଅବସାନ ଘଟିଲା । କିନ୍ତୁ ସମାଜବାଦ ଲାଗି ଚିନ୍ତା ଓ କାର୍ଯ୍ୟ ଅବ୍ୟାହତ ଅଛି ଓ ରହିବ । ୧୯୭୧ ପରଠାରୁ ଜୀବନଯାତ୍ରା କିପରି ହେଲା, ତାହା ପରବର୍ତ୍ତୀ ସଂସ୍କରଣ ବା ଅନ୍ୟ ଏକ ପୁସ୍ତକରେ ବର୍ଣ୍ଣିତହେବ ।

□□□

## ୧୯ । ଶେଷକଥା

### ( ୧୯୭୬ରୁ ୧୯୮୩ )

ପୁସ୍ତକ ଲେଖା ଆରମ୍ଭ ହୋଇଥିଲା ୧୯୭୯ ମେ ମାସରେ । ଶେଷହେଲା ୧୯୮୧ ନଭେମ୍ବରରେ । ମଝିରେ ପ୍ରାୟ ବର୍ଷେ ହେବ ମୂଳରୁ ଏଥିରେ ହାତ ଦେଇପାରିନଥିଲି । ୧୯୮୧ ଜୁଲାଇରୁ ନଭେମ୍ବର ପର୍ଯ୍ୟନ୍ତ କଲିକତାରେ ରହି ଯେ ଆକୁପଙ୍କଚର୍ ଚିକିତ୍ସା କରୁଥିଲି, ସେତିକିବେଳେ ଏହା ସମାପ୍ତ କରିବାର ସୁଯୋଗ ମିଳିଲା । ୧୯୮୨ରେ ବହି ଛପାହେବ ବୋଲି ୧୯୮୨ ଜାନୁୟାରୀ ପହିଲାରେ କପି ପ୍ରସ୍ତୁତକରି ପ୍ରକାଶକଙ୍କ ହାତରେ ସମର୍ପି ଦେଇଥିଲି । ମାତ୍ର ନାନାକାରଣରୁ ବିଳମ୍ବ ଘଟି ୧୯୮୩ ଶେଷଯାକେ ଆସିଲା । ଏଥିଭିତରେ ଏହାର ଇଂରେଜୀ ସଂସ୍କରଣର ଛପା ଦିଲ୍ଲୀରେ ଆରମ୍ଭ ହୋଇଗଲାଣି । ଇଂରେଜୀରେ ନାମକରଣ କରାଯାଇଛି—'Quest for Socialism : Fifty Years of Struggle in India । ମୁଦ୍ରଣ ବିଳମ୍ବ ହୋଇଥିବା ଯୋଗୁଁ ୧୯୮୩ ପର୍ଯ୍ୟନ୍ତ ଘଟଣାବଳୀ ଠିକେ ଠିକେ ଲେଖିଦେବା ଠିକ୍ ହେବ ବୋଲି ବିଚାରକଲି ।

ସୋସଲିଷ୍ଟ ପାର୍ଟିର ପ୍ରାଥମିକ ସଭ୍ୟ ପଦରୁ ଇସ୍ତଫା ଦେବା ପରେ ମୋର ରାଜନୀତିକ କର୍ମ ପ୍ରାୟ ଶିଥିଳ ହୋଇଗଲା । ଏବେ ତ ମୁଁ ଜାଣିଶୁଣି ଏଥିରୁ କ୍ରମେ ଦୂରେଇଯାଉଛି । ଏବେ ପଶ୍ଚାତ୍‌ଦୃଷ୍ଟିରେ ମୁଁ ଦେଖୁଛି ଯେ ମୋର ଦୁଃଖ କରିବାର କିଛି ନାହିଁ । ପ୍ରଜା ସୋସଲିଷ୍ଟ ପାର୍ଟି ବୁଲନ୍ଦସହରରେ ସୋସଲିଷ୍ଟ ପାର୍ଟିରେ ବିଲୀନ ହୋଇଗଲା ପରେ ଆଉ ସୋସଲିଷ୍ଟ ଆନ୍ଦୋଳନ ତିଷ୍ଠି ରହିପାରିଲା ନାହିଁ । ଅବଶେଷରେ ୧୯୭୭ ମସିହାରେ ସୋସଲିଷ୍ଟ ପାର୍ଟି ନୂତନ ଗଠିତ ଜନତା ପାର୍ଟିରେ ମିଶିଗଲା ପରେ ଏହାର ସାଙ୍ଗଠନିକ ଅସ୍ତିତ୍ୱ ବି ଲୋପପାଇଗଲା । ଜନତା ପାର୍ଟି କିଛି ସୋସଲିଷ୍ଟ ପାର୍ଟି ନୁହେଁ—ଏହା ଏକ ଉଦାରନୀତିକ ଅଗ୍ରଗାମୀ ରାଜନୀତିକ ଦଳ । କେତେକ ସମାଜବାଦୀ ହୁଏତ ଏଥିରେ ରହିଛନ୍ତି; ମାତ୍ର ସେମାନେ ଯେ କୌଣସି ଉଲ୍ଲେଖଯୋଗ୍ୟ ସମାଜବାଦୀ କାର୍ଯ୍ୟକ୍ରମ କରାଇ ପାରିବେ, ସେଭଳି ଅବସ୍ଥା ନାହିଁ । ଜନତା ସରକାର ଯାହା ଅଳ୍ପଦିନ ରହିଲା, ତହିଁରେ ଶାସନ୍‌ବା ରାଜନୀତିରେ ସେପରି କିଛି ଛାପ ପକାଇ ପାରିଲାନାହିଁ କିମ୍ବା ନିଜର ଭାବମୂର୍ତ୍ତି ଠିକ୍ ରଖିପାରିଲାନାହିଁ । ଜୟପ୍ରକାଶଙ୍କର ଗଣତନ୍ତ୍ର ରକ୍ଷା ବଦଳରେ ଏମାନେ ଆପଣାର ଅଶୋଭନୀୟ କ୍ରିୟାକଳାପ ଫଳରେ ଗଣତନ୍ତ୍ରର ଅପୂରଣୀୟ କ୍ଷତି କଲେ । ତାର ପରିଣତି ଏବେ ଦେଶ ଭୋଗୁଛି । ପୁଣି ଏକଛତ୍ରବାଦ ଦ୍ୱିଗୁଣ ଶକ୍ତି ଲାଭକରି ଦେଶରେ ରାଜୁତି କରୁଛି । ଏହାର ଏକ ବିକଳ୍ପ ଶକ୍ତି ସୃଷ୍ଟି କରିବା କାଠିକର ପାଠ ହେଲାଣି । ଏସବୁ ପରିସ୍ଥିତିକୁ କେବଳ ଗୋଟିଏ କଥାରେ କହିହେବ—"ଆପଣା ହସ୍ତେ କହ୍ନା ଛେଦ, କେ ତାର ଅଛି ପ୍ରତିବାଦ ।"

ମୁଁ ସୋସଲିଷ୍ଟ ପାର୍ଟିରୁ ଇସ୍ତଫା ଦେଇ ଅଲଗା ରହିଲି । ମନରେ ଏକ ଅଳୀକ କାମନା ରହିଥିଲା—ମୁଁ ବୋଧହୁଏ ଦୁଇ ପକ୍ଷ ଭିତରେ ଯୋଗସୂତ୍ରରୂପେ କାର୍ଯ୍ୟ କରିପାରିବି ଏବଂ ଦୁଇ ସୋସଲିଷ୍ଟ ପକ୍ଷଙ୍କ ଭିତରେ ସଦ୍‌ଭାବ ଆଣିବାରେ ସମର୍ଥ ହେବି । ମୋ ଦୃଷ୍ଟିରେ ବାଙ୍କ ବିହାରୀ ଦାସ ଓ ବିଶ୍ୱନାଥ ପଣ୍ଡିତ ସମାନ । କାହା ସହ କିଛି ବ୍ୟକ୍ତିଗତ ବିବାଦ ଉପୁଜିନଥିଲା । ବ୍ୟକ୍ତିଗତ କିମ୍ବା ଅନ୍ୟ କିଛି ସ୍ୱାର୍ଥ ଦୃଷ୍ଟି ରହିଥିଲେ ବସ୍ତୁତଃ ନିଜ ହାତରେ ଗଢିଥିବା ପାର୍ଟିର ଅଫିସ୍ ଆଦି କୌଣସି ଅସୁବିଧା ସୃଷ୍ଟି ନକରି ଛାଡିଦେଇ ଆସି ନଥାଆନ୍ତି । ରାଜନୀତିକ ଦଳରେ ମତ ପାର୍ଥକ୍ୟ ଘଟିବା କିଛି ନୂଆ ନୁହେଁ—ବାମପନ୍ଥୀ ଦଳସବୁ ବରାବର ଭାଙ୍ଗେ, ପୁଣି ଯୋଡିହୋଇଯାଏ । ଓଡ଼ିଶାରେ ଆମର ଏପରି ମଜବୁତ ଦଳ ଥିଲା—ସହୃଦୟତା ରଖିଥିଲେ ଏହା ପୁଣି ଏକଜୁଟ ନହୋଇ ଥାଆନ୍ତା କିଆଁ ?

କିନ୍ତୁ କେତେକ ସାଥି ନିଜକୁ ଅସହାୟ ଓ ଦୁର୍ବଳ ମନେକରି ଏହାକୁ ବ୍ୟକ୍ତିଗତ ବିବାଦରୂପେ ଧରିନେଲେ । ମୁଷ୍ଟିମେୟ ଯେ କେତେ ଜଣ ଅଧିକ ସଂଖ୍ୟକଙ୍କ ସାଥିରେ ନ ଆସି ସୋସଲିଷ୍ଟ ପାର୍ଟିକୁ ଧରି ରହିଲେ, ସେମାନେ ନାନା ବ୍ୟକ୍ତିଗତ କୁତ୍ସା ଓ ଅପପ୍ରଚାରରେ ଲିପ୍ତ ହେଲେ; ଏପରିକି ମୋ ବିରୁଦ୍ଧରେ ମଧ୍ୟ ନାନା ଦୋଷାରୋପ କରିବାରେ କୁଣ୍ଠାବୋଧ କଲେନାହିଁ । ଯେଉଁ କେତେକ ଅନୁଷ୍ଠାନ ସ୍ଥାପନ କରାଯାଇଥିଲା, ସେଗୁଡିକ ଦଖଲ କରିବା ନିମନ୍ତେ ଅସଦୁପାୟ ଅବଲମ୍ବନ କରାଗଲା । ଏହାଦ୍ୱାରା ସେମାନେ କିଛି ଅଗ୍ରଗତି କରିପାରିଲେନାହିଁ—ତାଙ୍କଠୁଁ ଅନ୍ୟମାନେ ଦୂରେଇଗଲେ । ପରସ୍ପରର ଉଦ୍ଦେଶ୍ୟ ସମ୍ବନ୍ଧରେ କୌଣସି ଭ୍ରମଧାରଣା ନଥିବା ସତ୍ତ୍ୱେ ଆମ ସୋସଲିଷ୍ଟଙ୍କ ଭିତରେ ଯେଉଁ ଶ୍ରଦ୍ଧା, ମମତା ଓ ସହନଶୀଳତା ଭାବ ଥିଲା, ତାର ବିପରୀତ ଆଚରଣ ଦେଖି ମୋ ମନରେ ପ୍ରକୃତରେ କ୍ଷୋଭ ରହିଗଲା । ପାର୍ଟି ଭାଙ୍ଗିଗଲା—ଯାହାକୁ ଯେଉଁ ବାଟ ଠିକ୍ ମନେହେଲା ସେ ଧରିଲା । ତାବୋଲି ପରସ୍ପରକୁ ମୁହଁ ଆଡକରିନବ କାହିଁକି ? ରାଜନୀତିରେ କେହି ସବୁଦିନେ ବିରୋଧୀ ବା ଶତ୍ରୁ ହୋଇ ରହେନା । ଶେଷକୁ ଓଡିଶାରେ ଏହିପରି ଭିନ୍ନ ଭିନ୍ନ ଦଳଭୁକ୍ତ ସବୁ ସାଥି ପୁଣି ଏକ କ୍ଷେତ୍ରରେ ଆସି ଜୁଟ ହେଲେଣି । ରାଜନୀତିକ ବିବାଦକୁ ବ୍ୟକ୍ତିଗତ ବିଗ୍ରହରେ କାହିଁକି ଦୂଷିତ କରିବ ଯେ ?

ମୁଁ ଯଦିଓ ଦୁଇପକ୍ଷ ଭିତରୁ କୌଣସି ପକ୍ଷରେ ଯୋଗଦେଇନଥିଲି, ଓଡିଶା ପ୍ରଜା ସୋସଲିଷ୍ଟ ପାର୍ଟିର କଂଗ୍ରେସ ସହ ନିମ୍ନତମ କାର୍ଯ୍ୟକ୍ରମ ଭିତ୍ତିରେ ସହଯୋଗ ଏବଂ ପରେ କଂଗ୍ରେସରେ ଯୋଗଦାନ ପ୍ରସ୍ତାବକୁ ସମର୍ଥନ କରିଥିଲି । ଓଡ଼ିଶାର ରାଜନୀତି ଯେପରି ବାରମ୍ବାର ପଶ୍ଚାଦ୍‌ଗାମୀ ରାଜନୀତିକ ଶକ୍ତିଗୁଡିକର ପ୍ରଭାବ ଭିତରେ ରହିଗଲା, ସେଥିରୁ ଏହାକୁ ମୁକୁଳାଇ ଆଣିବାର ପ୍ରଚେଷ୍ଟାରେ ମୁଁ ବିଶ୍ୱାସ କରୁଥିଲି । ନିଜ ଶକ୍ତି ଅକୁଳାଣ ହେଲେ ଅନ୍ୟମାନଙ୍କଠାରୁ ଅପେକ୍ଷାକୃତ ଉଣା ମନ୍ଦ ଶକ୍ତି ସହ ହାତ ମିଳାଇ ଏହା କରାଯାଇପାରିବ । ପାର୍ଲିମେଣ୍ଟାରୀ ରାଜନୀତି ସିଧା ବାଟରେ ଗତିକରେନା । ଏଥିରେ ଅନେକ ସମୟରେ ନିଜର ମୌଳିକ ଆଦର୍ଶକୁ ଠିକ୍ ରଖି ତାତ୍କାଳିକ ପରିସ୍ଥିତିର ସମ୍ମୁଖୀନ

ହେବା ନିମନ୍ତେ କେତେକ କ୍ଷେତ୍ରରେ କୋହଳ ହେବାକୁ ପଡ଼େ; ନିଜ ଭିତରେ ଗୋଟାଏ କାର୍ଯ୍ୟକାରୀ ବୁଝାମଣା କରିବାକୁ ହୁଏ । ଏବେ ଭାରତରେ ବିରୋଧ ଶକ୍ତିଗୁଡ଼ିକ ଯେମିତି ଇଣ୍ଡିଆଇଟେଡ୍ ଫ୍ରଣ୍ଟ ଗଢ଼ି ସମସ୍ତଙ୍କୁ ଏକ ପୀଠରେ ଏକ ରାଜନୀତିରେ ଆଣିବାର ଉଦ୍ୟମ କରୁଛନ୍ତି ଏହା କଣ ସମସ୍ତଙ୍କ ପକ୍ଷରେ ଆପଣାର କଠୋରତା ଓ ଦୃଢ଼ତା ଭଙ୍ଗ ନାହିଁ ! ଆମେ ଓଡ଼ିଶାରେ ଏତେବର୍ଷ ଏକତ୍ର କାର୍ଯ୍ୟକଲୁ—ନିଜ ଭିତରେ କୌଣସି ସନ୍ଦେହ ବା ଅବିଶ୍ୱାସ ପ୍ରବେଶ କରିନଥିଲା । ପରସ୍ପରର ସୁଖ ଦୁଃଖ ଜଞ୍ଜାଳ ସହ ଜଡ଼ିତ ହୋଇଥିଲୁ । ଏକ ପରିବାରର ଭାବନା ନିଜ ଭିତରେ ଖେଳୁଥିଲା । ମାତ୍ର କ୍ଷଣକାଳଲାଗି ଘଟିଥିବା ରାଜନୀତିକ ମତାନ୍ତର ଯୋଗୁଁ ଯେଉଁ ବିଭେଦ ଓ ବିକଟ ବିଦ୍ୱେଷ ଭାବ କେତେକ ସୃଷ୍ଟି କଲେ, ତହିଁରେ ମୁଁ ବାସ୍ତବିକ ବ୍ୟଥିତ ।

ମାତ୍ର ମୋ ଜୀବନର ଉତ୍କୃଷ୍ଟ ସମୟ ମୁଁ ସମାଜବାଦୀ ଆନ୍ଦୋଳନଲାଗି ଦେଇଥିବା ହେତୁ ଆଦୌ ଦୁଃଖିତ ନୁହେଁ । ଆମେ ସୋସଲିଷ୍ଟମାନେ ଭାରତ ରାଜନୀତିରେ ଗୌରବମୟ ଅଧ୍ୟାୟ ସୃଷ୍ଟି କଲୁ । ୧୯୪୨ର ଭାରତର ଶେଷ ସ୍ୱାଧୀନତା ସଂଗ୍ରାମରେ ଉଲ୍ଲେଖଯୋଗ୍ୟ କାର୍ଯ୍ୟ କଲୁ । ଦେଶର ସମାଜବାଦୀ ଶକ୍ତିଙ୍କୁ ସଙ୍ଗଠିତ କରି ସାମ୍ରାଜ୍ୟବାଦ ବିରୋଧୀ ଜାତୀୟ ସ୍ୱାଧୀନତା ସଂଗ୍ରାମରେ ବ୍ରତୀ କରାଇପାରିଲୁ । କମ୍ୟୁନିଷ୍ଟଙ୍କ ବିରୋଧୀ କାର୍ଯ୍ୟକଳାପ ଯୋଗୁଁ ସମାଜବାଦ ଉପରେ ଯେ କଳଙ୍କ ଲେପନ ହୋଇଥାଆନ୍ତା, ସେଥିରୁ ତାକୁ ଉଦ୍ଧାର କରିଛୁ । ସ୍ୱାଧୀନ ଭାରତରେ ସମାଜବାଦ ଲକ୍ଷ୍ୟ ହାସଲ ଦିଗରେ ଆମର ଉଦ୍ୟମ ଉଲ୍ଲେଖଯୋଗ୍ୟ । ଆମର ଆନନ୍ଦିତ ହେବାର କଥା—ଆମର ଧାରାବାହିକ ଆନ୍ଦୋଳନ, ସଙ୍ଗଠନ ଓ ପ୍ରଚାର ଫଳରେ ଭାରତ ପୁଞ୍ଜିବାଦ ପନ୍ଥା ଧରିବାରୁ ନିରତ ହୋଇଛୁ, ଗଣତାନ୍ତ୍ରିକ ସମାଜବାଦ ଏ ଦେଶରେ ପ୍ରତିଷ୍ଠା ଲାଭକରିଛୁ । ଦେଶର ସବୁ ରାଜନୀତିକଦଳ ସମାଜବାଦ ନୀତି ଧରିବାଲାଗି ବ୍ୟାକୁଳ । ଶେଷକୁ ସମାଜବାଦ ଯେ ଆମର ସମ୍ବିଧାନରେ ଲିପିବଦ୍ଧ କରାଯାଇ ପାରିଲା, ସେଥିରେ ଆମର ଅବଦାନ କିଛି ଊଣା ନୁହେଁ । ଆମର ଇପ୍‌ସିତ ଲକ୍ଷ୍ୟ ଗଣତାନ୍ତ୍ରିକ ସମାଜବାଦର ସିଦ୍ଧାନ୍ତ ବହୁବର୍ଷର ପରୀକ୍ଷା ଓ କାର୍ଯ୍ୟ ଫଳରେ ଦେଶରେ ଗୃହୀତ ହୋଇଛି । ଆମେ ମାର୍କସପନ୍ଥା ଓ ଗାନ୍ଧୀପନ୍ଥା ପ୍ରୟୋଗର ମିଶ୍ରଣରେ ସମାଜବାଦର ଏ ଯେଉଁ ନୂତନ ତଥ୍ୟ ଓ ବ୍ୟାଖ୍ୟା ବାହାରକଲୁ, ତାହା ଏବେ ବି ଅକ୍ଷୁଣ୍ଣ ରହିଛି । ଆମର କଳ୍ପିତ ଗଣତାନ୍ତ୍ରିକ ସମାଜବାଦ ମାର୍କସପନ୍ଥାରେ ଆଧାରିତ ଏବଂ ଗାନ୍ଧୀଧର୍ମରେ ବିଶୋଧିତ । କେବଳ ଆମର ବିରାଟ ତ୍ରୁଟି ରହିଗଲା, ସମାଜବାଦୀ ଆନ୍ଦୋଳନର ସାଙ୍ଗଠନିକ ଭିତ୍ତିକୁ ଦୃଢ଼ କରିବାରେ ଆମେ ସମର୍ଥ ହୋଇପାରିଲୁନାହିଁ ।

ତେଣୁ ମୁଁ ଯେ ପାର୍ଟି ତ୍ୟାଗକଲି କୌଣସି ହତାଶାଭାବ ଯୋଗୁଁ ନୁହେଁ, କିମ୍ବା କିଛି ମତଲବ ଥିବା ହେତୁ ନୁହେଁ । ସେପରି ମନୋବୃତ୍ତି ରହିଥିଲେ ବହୁଆଗରୁ ବହୁ ମଉକା ମିଳୁଥିଲା । ପାର୍ଲାମେଣ୍ଟରେ ମୋର ଦକ୍ଷତା ଦେଖି ଥରେ ହଠାତ୍ ଅପ୍ରତ୍ୟାଶିତ ଭାବରେ ପଣ୍ଡିତ ଗୋବିନ୍ଦବଲ୍ଲଭ ପନ୍ଥ ମତେ ପାର୍ଲିଆମେଣ୍ଟରେ ଥିବା ତାଙ୍କ ଅଫିସକୁ ଡକାଇନେଲେ ।

ସେ ଥାଆନ୍ତି ହୋମ୍ ମିନିଷ୍ଟର୍—ଜଣେ ଅତି ପୋଖତ ସମ୍ମାନାସ୍ପଦ ବ୍ୟକ୍ତି । ମୁଁ ବୟସରେ ଅତି ସାନ ତାଙ୍କଠୁଁ । ମତେ ଉତ୍ସାହ ଦେବାଭଳି କେତେକ କଥା କହି ସେ ପଚାରିଲେ—ତୁମେ ଆମ ସାଙ୍ଗରେ ରହିଥିଲେ ଆହୁରି ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିପାରନ୍ତ ନାହିଁ କି ! ମୁଁ ଅତି ନମ୍ରଭାବରେ କହିଲି—ମୁଁ କିନ୍ତୁ ବିପରୀତ ଭାବରେ ଚିନ୍ତାକରୁଛି । ଏତିକିରେ ସେ ଆଉ କଥାକୁ ଆଗକୁ ବଢାଇଲେ ନାହିଁ । ତାଙ୍କର ଏକ ସ୍ନେହଦୃଷ୍ଟି ମୋଠି ରହିଥିଲା । ଆଉ ଦିନେ ଜୟପ୍ରକାଶଜୀଙ୍କର ଏକ ଜନ୍ମଦିବସର ସଭାରେ ମୁଁ ଓ ଲାଲବାହାଦୂର ଶାସ୍ତ୍ରୀ ଭେଟ ହୋଇଥିଲୁ । ମୁଁ ଏକ ବେଞ୍ଚ ଉପରେ ଫିରୋଜସାହା ରୋଡ୍‌ର ଏକ ବଙ୍ଗଳାର ବାହାରେ ସଭାସ୍ଥଳରେ ବସିଥାଏ । ଲାଲବାହାଦୂର ଆସି ମୋ ବେଞ୍ଚ ପାଖରେ ଛିଡ଼ାହୋଇ କହିଲେ—ମୁଁ ଦ୍ୱିବେଦୀଜୀଙ୍କ ସହ ଏକା ବେଞ୍ଚରେ ବସିପାରେ କି ? ସେ ଥାଆନ୍ତି ଦେଶର ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ ଏବଂ ସେ ଯେ ଦିନେ ପ୍ରଧାନମନ୍ତ୍ରୀ ହେବେ ତାହାର ସୂଚନା ସେତେବେଳକୁ ଟିକିଏ ଟିକିଏ ମିଳୁଥିଲା । ତାପରେ ତାଙ୍କର ଅନ୍ତରଙ୍ଗ ବନ୍ଧୁ ଟି. ଏନ୍. ସିଂହ ନାନା ଆଳରେ ନାନା ପ୍ରସଙ୍ଗରେ ମୋ ସହିତ କଥାବାର୍ତ୍ତା ଆରମ୍ଭ କରିଦେଲେ । ଟି. ଏନ୍. ସିଂହ ପରେ ବଙ୍ଗଳାର ଗଭର୍ଣ୍ଣର ହୋଇଥିଲେ । ମୁଁ ତାଙ୍କୁ ଖୁବ୍ ଭକ୍ତିକରୁଥିଲି । ମାତ୍ର ସେ ମତେ ଭଲାଇପାରିନଥିଲେ । ମୋର ଅତି ପ୍ରିୟ ବନ୍ଧୁ ଅଶୋକ ମେହେଟା ଯେତେବେଳେ କଂଗ୍ରେସରେ ଯୋଗଦେଲେ, ସେ ମତେ କମ୍ ପ୍ରବର୍ତ୍ତାଇ ନଥିଲେ । କଂଗ୍ରେସଦ୍ୱାରା ଦେଶରେ ସମାଜବାଦ ହୋଇପାରିବାର ବିଶ୍ୱାସ ମୋର କେବେ ନଥିଲା—ଏବେ ବି ନାହିଁ ।

ମାତ୍ର ୧୯୭୧-୭୨ ବେଳକୁ ରାଜନୀତିକ ପରିସ୍ଥିତିରେ ପରିବର୍ତ୍ତନ ଘଟିଲା । କଂଗ୍ରେସର ବିଭାଜନ ଏକ ନୂତନ ଦିଗ ଦେଖାଇଲା । ନିଷ୍ଠା, ଆନ୍ତରିକତା ଆଦି ନ ଥାଉ, ରାଜାଙ୍କ ଭତ୍ତାକାଟ ଓ ବ୍ୟାଙ୍କର ଜାତୀୟକରଣ ଆଦି କାର୍ଯ୍ୟଦ୍ୱାରା କଂଗ୍ରେସର ପ୍ରଗତିମୂଳକ ମନୋବୃତ୍ତି ପ୍ରକାଶପାଇଲା । ଭି. ଭି. ଗିରିଙ୍କ ନିର୍ବାଚନବେଳୁ ଯେମିତି ଦେଶର ରାଜନୀତି ଲୋକଚକ୍ଷୁରେ ଦୁଇଭାଗ ହୋଇଗଲା । ଲୋକମାନେ ମଧ୍ୟମ ପନ୍ଥା ପ୍ରତି ବିଶେଷ ଆଗ୍ରହ ଦେଖାଇଲେ ନାହିଁ । ଏସବୁ କାର୍ଯ୍ୟ ଫଳରେ ଲୋକମନରେ ଗୋଟାଏ ଧାରଣା ଜାତହେଲା—ସୋସଲିଷ୍ଟମାନେ ଏହା ଅପେକ୍ଷା ଅଧିକ ଆଉ କଣ କରିପାରିବେ ? କଂଗ୍ରେସ ସହ ନିର୍ବାଚନରେ ବୁଝାମଣା କରିବା କଥା ଆମ ପାର୍ଟି ଓ କଂଗ୍ରେସ ପ୍ରତିନିଧିଙ୍କ ଭିତରେ ଉପରସ୍ତରରେ ଆଲୋଚନା ହେଲା । କଂଗ୍ରେସ ସହିତ ବହୁ ବିଷୟରେ ଆମର ଐକ୍ୟ ରହିଛି ଏବଂ ସେସବୁ କାର୍ଯ୍ୟ ସହଯୋଗ ପରିବେଶ ଭିତରେ କରାଯିବ ବୋଲି କଂଗ୍ରେସର ଓ ଆମେ ପ୍ରଜା ସୋସଲିଷ୍ଟ ପାର୍ଟିର ତୁଙ୍ଗ ନେତାମାନେ ଘୋଷଣାକଲୁ । କିନ୍ତୁ କେତେକ କାରଣରୁ ଆମ ଭିତରେ ନିର୍ବାଚନରେ ବୁଝାମଣା ହୋଇପାରିଲାନାହିଁ । ପ୍ରଜା ସୋସଲିଷ୍ଟ ପାର୍ଟି ଏକାକୀ ନିର୍ବାଚନ ଲଢିଲା । ଏହାର ପରିଣତି ହେଲା ଭୟାବହ । ଯେଉଁ ଲୋକସଭାରେ ଆମର ସଂଖ୍ୟା ଥିଲା ୧୭, ସେଠିକି ଗଲେ ମୋଟେ ୩ । ମୁଁ ବି ଯେଉଁ କେନ୍ଦ୍ରାପଡ଼ାରୁ

ଛଅଥର ନିର୍ବାଚିତ ହୋଇଥିଲି, ପରାଜୟ ଲଭିଲି । ଓଡ଼ିଶା ଆସେମ୍ବ୍ଲିରେ ଆମ ସଭ୍ୟସଂଖ୍ୟା ୪କୁ ଖସିପଡ଼ିଲା । ମୋଟଉପରେ ଏକ ଆବଶ୍ୟକୀୟ ରାଜନୀତିକ ଶକ୍ତିରୂପେ ଲୋକେ ଆମକୁ ଗ୍ରହଣ କଲେନାହିଁ; ପ୍ରତ୍ୟାଖ୍ୟାନକଲେ । ଏହି ପରିବର୍ତ୍ତନକୁ ବିଚାରକୁ ନେଇ ଆମର ଆଭିମୁଖ୍ୟ ବି ବଦଳାଇବାର ଆବଶ୍ୟକତା ପଡ଼ିଲା । ମାତ୍ର ମୋର ସୋସିଆଲିଷ୍ଟ ସାଥିମାନେ ଭିନ୍ନ ଭାବରେ ଚିନ୍ତାକଲେ ଏବଂ ଯେଉଁ ସୋସିଆଲିଷ୍ଟ ପାର୍ଟି ସହିତ ମିଶ୍ରଣ ଓ ସହାବସ୍ଥାନରେ ଆମେ ବାରମ୍ବାର ଧୋକା ଖାଇଛୁ, ତାଙ୍କ ସହ ମିଶି ପୁଣି ସମାଜବାଦ ପଥର ସହଯାତ୍ରୀ ରୂପେ ସେମାନଙ୍କୁ ଗ୍ରହଣ କରିବାକୁ ମୁଁ ପ୍ରସ୍ତୁତ ନଥିଲି । ତାହାର କାରଣ ମୁଁ ଏ ବହିର ପୂର୍ବପୃଷ୍ଠାମାନଙ୍କରେ ଦର୍ଶାଇଛି ।

ଏହା ବୋଲି ମୁଁ ବ୍ୟକ୍ତିଗତ ଭାବରେ କଂଗ୍ରେସରେ ଯୋଗଦେବା ସପକ୍ଷରେ ନଥିଲି । ଯେଉଁ ପ୍ରଜା ସୋସିଆଲିଷ୍ଟ ପାର୍ଟି ସାଥିମାନେ କଂଗ୍ରେସ ସହିତ ସହଯୋଗ ଏପରିକି ଅବଶେଷରେ ମିଶ୍ରଣରେ ଉଦ୍ୟମ କଲେ, ତହିଁରେ ମୁଁ ତାଙ୍କୁ ପ୍ରେରଣା ଦେଇଛି, ଉତ୍ସାହିତ କରିଛି, କାରଣ ଓଡ଼ିଶା ରାଜନୀତିରେ ତାହାହିଁ ଏକମାତ୍ର ଫଳଦାୟକ ପନ୍ଥା ବୋଲି ମୋର ମନେହେଲା । ପ୍ରତିକ୍ରିୟାପନ୍ଥୀ ରାଜନୀତିକ ମେଣ୍ଟକୁ ହଟାଇବାକୁ ହେଲେ ଓଡ଼ିଶାରେ ଅନ୍ୟ ପନ୍ଥା ନଥିଲା । ସାଥିମାନେ କଂଗ୍ରେସରେ ଯୋଗଦେଲେ ଏବଂ କେହି କେହି ମନ୍ତ୍ରୀ ପର୍ଯ୍ୟନ୍ତ ହେଲେ । ମୁଁ ବାହାରେ ରହିଲି ଏବଂ କିଛି କର୍ମପନ୍ଥାର ବିଚାର କରୁଥିଲି । ମାତ୍ର ଅନ୍ୟ ପକ୍ଷରେ ଥିବା କେତେକ ସାଥି କୃଷକ ଟ୍ରଷ୍ଟ ଓ ପ୍ରେସ୍ ଜରିଆରେ ମୁଁ ସ୍ୱାଧୀନ ଭାବରେ କିଛି ଗତି ସୋସିଆଲିଷ୍ଟମାନଙ୍କର ଏକ ମିଳନପୀଠ କରିବାର ଯେଉଁ ଇଚ୍ଛା କରିଥିଲି ସେଥିରେ ବିଭ୍ରାଟ ସୃଷ୍ଟି କଲେ ।

ମାତ୍ର ମୁଁ କରେ କଅଣ ? କିଛି ବୃଦ୍ଧ ବା ଅକର୍ମଣ୍ୟ ହୋଇନଥିଲି—ମନ ଓ ଦେହ ସତେଜ ଥିଲା; ମାନସିକ ଚିନ୍ତା ଓ ବ୍ୟାକୁଳତା ପ୍ରଖର ରହିଥିଲା । ନୀରବ ହୋଇ ରହିପାରିଲି ନାହିଁ କିମ୍ବା ଏକୁଟିଆ କିଛି କାର୍ଯ୍ୟ କରିବା ସମ୍ଭବ ନଥିଲା । ଏଣେ ଯେଉଁ ପ୍ରିୟ ସାଥିମାନେ କଂଗ୍ରେସରେ ଯୋଗଦେଇଥିଲେ, ଓଡ଼ିଶା କଂଗ୍ରେସ ଭିତରର ଦଳାଦଳି ଯୋଗୁଁ ନାନା ହଇରାଣରେ ପଡ଼ିଥିଲେ । ସେମାନଙ୍କର ବିଚାର ହେଲା, ମୁଁ ଯଦି ସକ୍ରିୟ ରାଜନୀତି କରିବାକୁ ଚାହେଁ ସେମାନଙ୍କ ସାଥିରେ ରହିବା ଉଚିତ । ମୋର ଯୋଗଦାନରେ ସେମାନେ ବଳ ପାଇବେ ।

ମୁଁ ପ୍ରଜା ସୋସିଆଲିଷ୍ଟ ପାର୍ଟିରୁ ଇସ୍ତଫା ଦେବା ପରେ ନାନାପ୍ରକାର ଉଦ୍ୟମ ବିଭିନ୍ନ ପ୍ରକାରେ ହୋଇଥିଲା । ରାଉରକେଲା ଆସେମ୍ବ୍ଲି ଉପନିର୍ବାଚନରେ ମୋର ପ୍ରାର୍ଥୀତ୍ୱକୁ ସମର୍ଥନ ଦେବା ନିମନ୍ତେ ଇନ୍ଦିରାଗାନ୍ଧୀ ଇଚ୍ଛା ପ୍ରକାଶ କରିଥିଲେ । ମାତ୍ର ମୁଁ ପାର୍ଟି ତ୍ୟାଗ କରି ଏହା କରିବାକୁ ଅସ୍ୱୀକାର କରିଦେଲି । ପରୋକ୍ଷରେ ମତେ ଓଡ଼ିଶାର ନେତୃତ୍ୱ ନେବାଭଳି ସୂଚନା ଦିଆଯାଇଥିଲା । ଇନ୍ଦିରାଗାନ୍ଧୀ ତାଙ୍କ ଜନ୍ମଦିବସରେ ରାଜଭବନରେ ବସି ମତେ ପଚାରିଲେ—ଓଡ଼ିଶାରେ ପ୍ରତିକ୍ରିୟାଶୀଳ ଶକ୍ତିକୁ ହଟାଇବା ଦିଗରେ ଏବଂ ଓଡ଼ିଶା ଲୋକଙ୍କ

ପ୍ରତି ଆପଣଙ୍କର କିଛି କର୍ତ୍ତବ୍ୟ ନାହିଁ କି ? ସେତେବେଳେ ବା ପରେ କେବେ ମୁଁ କଂଗ୍ରେସରେ ଯୋଗ ଦେବା କଥା ସେ ଉଠାଇନଥିଲେ । ମୋ ମନ କ୍ଷମତାଭିଳାଷୀ ହୋଇ-ନଥିବାରୁ ମୁଁ ଏସବୁରେ କିଛି ଆଶାଜନକ ପ୍ରତିକ୍ରିୟା ଦେଖାଇନଥିଲି । ମତେ ଯେତେବେଳେ କେହି ମୋର ମନ ବୁଝିବାଲାଗି ଆସି ବୁଝିବାକୁ ଚେଷ୍ଟାକଲେ ଏବଂ ପଚାରିଲେ ଆପଣଙ୍କୁ ମୁଖ୍ୟମନ୍ତ୍ରୀ ପଦ ବା ନେତୃତ୍ୱ ଦିଆଗଲେ ଆପଣ କଣ ଅସ୍ୱୀକାର କରିବେ—ସେ ଜଣେ ଓଜନଦାର୍ ବ୍ୟକ୍ତି—ସେ କାହାର ପ୍ରରୋଚନାରେ କିମ୍ବା କାହାଦ୍ୱାରା ପ୍ରେରିତ ହୋଇଥିଲେ କି ନାହିଁ ମୁଁ ପଚାରିନଥିଲି—ମାତ୍ର ମୁଁ ପରିଷ୍କାର କହିଦେଇଥିଲି ଯେ ମୁଁ ଯଦି କେବେ ଏଥିରେ ସମ୍ମତ ହୁଏ, ତେବେ ମୁଁ ଓଡ଼ିଶାର କାର୍ଯ୍ୟରେ କାହାର ହସ୍ତକ୍ଷେପ ପସନ୍ଦ କରିବିନାହିଁ । କେନ୍ଦ୍ରର ନେତୃତ୍ୱ ଅଧୀନରେ ଚାଲିବାକୁ ମୁଁ ପ୍ରସ୍ତୁତ ଏବଂ କେନ୍ଦ୍ରରୁ ସମସ୍ତପ୍ରକାର ସହଯୋଗ ସମର୍ଥନ ମିଳିବ—ମାତ୍ର ମୋର ଆତ୍ମାଭିମାନ ଆଉ ଅଧିକ ଆଗକୁ ଯିବାଲାଗି ମତେ ଭରସା ଦେଲା ନାହିଁ ।

ଇନ୍ଦିରାଗାନ୍ଧୀଙ୍କ ସହ ମୋର ବ୍ୟକ୍ତିଗତ ସମ୍ପର୍କ ଭଲଥିଲା । ଏବେ ବି ମୋ ଆଡ଼ୁ ଘୋର ମତ ବିରୋଧ ସତ୍ତ୍ୱେ ସମ୍ପର୍କ କେବେ ବିଗିଡ଼ିବାଭଳି ମୁଁ କିଛି କରିନାହିଁ । ଇନ୍ଦିରାଗାନ୍ଧୀ କାହିଁକି, ଆମେ ଯେଉଁ ତିନିଜଣ ପ୍ରଧାନମନ୍ତ୍ରୀଙ୍କୁ ଭୋଗିଲୁ—ଜବାହରଲାଲ ନେହରୁ, ଲାଲ-ବାହାଦୂର ଶାସ୍ତ୍ରୀ ଓ ଇନ୍ଦିରାଗାନ୍ଧୀ—ସମସ୍ତଙ୍କଠାରୁ ମୁଁ ଓ ପ୍ରଜା ସୋସିଆଲିଷ୍ଟ ପାର୍ଟି ସମୁଚିତ ବ୍ୟବହାର ପାଇଆସିଛୁ । କାରଣ ଆମେ ପାର୍ଲିମେଣ୍ଟରେ ବ୍ୟକ୍ତିଗତ ଦୃଷ୍ଟିକୋଣରୁ ବିଚାର ନ କରି ସମସ୍ୟା ଦୃଷ୍ଟିରୁ ସବୁ ବିଷୟ ବିଚାରକୁ ନେଉଥିଲୁ । ବ୍ୟକ୍ତିଗତ ଶ୍ରଦ୍ଧା ଅଶ୍ରଦ୍ଧା ନଥିଲା ଏପରି ନୁହେଁ—ମାତ୍ର ତାହା ଭଦ୍ରଭାବରେ ବ୍ୟକ୍ତ କରିଯାଉଥିଲା । ତେଣୁ କଟୂକ୍ତି ବା ମନ ଫଟାଫଟି ସ୍ତରକୁ କେବେ ଯାଉନଥିଲା । ରାଜନୀତିକ ସମସ୍ୟା ଯେମିତି ଇନ୍ଦିରାଗାନ୍ଧୀ ପ୍ରଧାନମନ୍ତ୍ରୀ ଓ ମୁଁ ପ୍ରଜା ସୋସିଆଲିଷ୍ଟ ପାର୍ଟି ନେତାଭାବରେ ଅନେକଥର ଆଲାପ ଆଲୋଚନା କରିଛୁ । ତେଣୁ ପ୍ରଲୋଭନରେ ପଡ଼ି କି ମଥା ନୁଆଁଇ ଇନ୍ଦିରାଗାନ୍ଧୀଙ୍କ ଦଳରେ ମୁଁ ମିଶିବାର ପ୍ରଶ୍ନ ହିଁ ଉଠିପାରେନା । କଂଗ୍ରେସ ଓ ଇନ୍ଦିରାଗାନ୍ଧୀଙ୍କ ରାଜନୀତିକ ଚରିତ୍ର ବିଷୟରେ ମୋ ମନରେ କେବେ କିଛି ଭ୍ରମ ନଥିଲା, ଏବେ ବି ନାହିଁ ।

ପରିସ୍ଥିତିର ତାଡ଼ନା ମତେ କଂଗ୍ରେସ ଭିତରକୁ ନେଲା । କଂଗ୍ରେସରେ ଯୋଗଦେବା ପୂର୍ବରୁ ମୁଁ ଇନ୍ଦିରାଗାନ୍ଧୀଙ୍କ ସହ ଆଲୋଚନା କରିଥିଲି ଏବଂ ଏହି ଆଲୋଚନାବେଳେ ଉମାଶଙ୍କର ଦୀକ୍ଷିତ ଓ ଯଶପାଲ କପୂର ଉପସ୍ଥିତ ଥିଲେ । ଆଲୋଚନାରେ ପରିଷ୍କାର ହୋଇଗଲା ଯେ କଂଗ୍ରେସର ପ୍ରଚଳିତ ନୀତିରେ କୌଣସି ପରିବର୍ତ୍ତନ ସମ୍ଭବ ନୁହେଁ । ପଦ-ପଦବୀ ଲାଲସା ମୋର ନଥାଏ; ତେଣୁ ସେ ଦିଗରେ କିଛି ମିଳିବା ନ ମିଳିବା ପ୍ରଶ୍ନ ବି ଉଠି-ନଥିଲା । ମୁଁ କଂଗ୍ରେସରେ ଯୋଗଦେଲି ଏବଂ ସେଦିନ କଂଗ୍ରେସ ସଭାପତି ଏକ ସାମ୍ବାଦିକ ସମ୍ମିଳନୀ ଡାକି ତହିଁରେ ଘୋଷଣା କରିଥିଲେ ଏବଂ ମତେ ମନ୍ତ୍ରିମଣ୍ଡଳରେ ନିଆଯିବ କି ବୋଲି ସାମ୍ବାଦିକଙ୍କ ପ୍ରଶ୍ନର ଜବାବରେ କହିଲେ—'ସେ ଜଣେ ଖ୍ୟାତନାମା ସମାଜବାଦୀ; ଦେଶ ଓ

ବିଦେଶ କ୍ଷେତ୍ରରେ ତାଙ୍କର ଉପଯୋଗିତା ରହିଛି ।' ତାପରେ ଟେଲିଫୋନ୍ କରି ପ୍ରଦେଶର ସାଙ୍ଗଠନିକ କାର୍ଯ୍ୟସହ ସଂପୃକ୍ତ ହେବାଲାଗି ମତେ ଅନୁରୋଧ କରିଥିଲେ । ମାତ୍ର ମୁଁ କିଛି ଦିନ ଅବସ୍ଥାକୁ ଲକ୍ଷ୍ୟ କଲା ପରେ ନିଷ୍ପତ୍ତି ନେଇପାରିବି ବୋଲି ଜଣାଇଦେଇଥିଲି ।

କଂଗ୍ରେସରେ ମୋର ଏପରି ଯୋଗଦାନ ବାସ୍ତବିକ ଏକ ଭୁଲ ପଦକ୍ଷେପ ହେଲା । କଂଗ୍ରେସ ଭିତରେ କ୍ଷମତା ଛଡ଼ା ଅନ୍ୟ କୌଣସି ରାଜନୀତି ନଥିଲା । କ୍ଷମତାଲାଗି ହିଁ ବିଭିନ୍ନ ଗୋଷ୍ଠୀ ରହିଥିଲା ଏବଂ ଏବେ ବି ରହିଛି । ଭିତରେ କୌଣସି ଗଣତାନ୍ତ୍ରିକ ପଦ୍ଧତି କାର୍ଯ୍ୟ କରୁନଥିଲା । ସିଣ୍ଡିକେଟ୍ ଗୋଷ୍ଠୀ ବିଦାୟ ହେବା ପରେ ଇନ୍ଦିରାଗାନ୍ଧୀ କ୍ରମେ ସବୁ କ୍ଷମତା ହାତକୁ ନେଲେ । କଂଗ୍ରେସ ସଭାପତି ଓ ଅନ୍ୟ ନେତାସବୁ ତାଙ୍କ ହାତରେ କ୍ରୀଡ଼ାପୁତ୍ତଳିକା ପରି ରହିଲେ । ସେହି ଧାରାରେ ନ ପଡ଼ି ସ୍ୱାଧୀନ ଚିନ୍ତା କରିବା ବା କାର୍ଯ୍ୟ କରିବା ଘୋର ଦୋଷାବହ ବୋଲି ବିଚାରକରାଯାଉଥିଲା । ନେତାଙ୍କ ପାଖରେ ଅବନତ ରହିବା ସତେ କି ଏକମାତ୍ର ଧର୍ମ ! ତାହାଛଡ଼ା ଏପରି ଅବସ୍ଥା ହୋଇଯାଇଥିଲା ଯେ, ଇନ୍ଦିରାଗାନ୍ଧୀଙ୍କର ସାନ୍ନିଧ୍ୟ ଲାଭ ହିଁ ସବୁଠାରୁ ବଡ଼ ସୌଭାଗ୍ୟ ବୋଲି ବିଚାରକରାଯାଉଥିଲା । ଯେ ତାଙ୍କର ସମୀପବର୍ତ୍ତୀ ହୋଇପାରିଲା, ସେ ସତେ କି ସିଂହାସନର ପାଖ ହୋଇଗଲା ବୋଲି ଧରାଯାଉଥିଲା । ଇନ୍ଦିରାଙ୍କ ସନ୍ନିକଟ ହେବା ନିମନ୍ତେ ଏପରି ପ୍ରବଳ ପ୍ରତିଯୋଗିତା ଲାଗିଥାଏ । ମୋର ଇନ୍ଦିରାଙ୍କ ସହ ସମ୍ପର୍କ ପ୍ରଦେଶର ନେତୃମହଲର ମନରେ ଆତଙ୍କ ସୂଚାଇଲା । ସେମାନେ ନାନା ଉପାୟରେ ଆମ ଦୁହିଁଙ୍କ ଭିତରେ ବିଭେଦ ସୃଷ୍ଟି କରିବା ଚେଷ୍ଟାରେ ରହିଲେ । ନାନା କ୍ଷୁଦ୍ର ଘଟଣାକୁ ଛଳେଇ ବର୍ଣ୍ଣନା କରିବାର ଉଦ୍ୟମ ହେଲା ।

ଥରେ କଟକଜିଲା ସାଲେପୁରଠାରେ ପ୍ରତିଷ୍ଠିତ ସମାଜସେବୀ ଚନ୍ଦ୍ରଶେଖର ମିଶ୍ରଙ୍କର ଜନ୍ମତିଥିରେ ଯୋଗଦେଇ ମୁଁ କହିଲି—"ଦେଶରୁ ସ୍ୱାଭାବିକ ଜନନେତୃତ୍ୱ କ୍ରମେ ଲୋପ ହୋଇଯାଉଛି । ଆଜିକାଲି ଲୋକେ ନିଜର ଢିଣ୍ଡିମ ବଜାଇ ପ୍ରଚୁର ଅର୍ଥ ବ୍ୟୟ କରି ନିଜକୁ ନେତା ଭାବରେ ଲୋକଙ୍କ ସମ୍ମୁଖରେ ପରିଚିତ କରିବାର ଉଦ୍ୟମ କରୁଛନ୍ତି । ମହାତ୍ମାଗାନ୍ଧୀ ଓ ପଣ୍ଡିତ ନେହରୁ ଥିଲେ ପ୍ରକୃତ ନେତା । ଦେଶର ସକଳ ଶ୍ରେଣୀର ସ୍ନେହ, ଶ୍ରଦ୍ଧା ଓ ଅନୁରକ୍ତି ତାଙ୍କ ପ୍ରତି ରହିଥିଲା । ଇନ୍ଦିରାଗାନ୍ଧୀ ଦେଶର ପ୍ରଧାନମନ୍ତ୍ରୀ—ମାତ୍ର ସମଗ୍ର ଦେଶର ନେତ୍ରୀ କେବଳ ଜଣେ ପ୍ରଧାନମନ୍ତ୍ରୀ ହୋଇଗଲେ ହୋଇପାରେନା ।"—ଏହା ଆମର ନେତ୍ରୀଙ୍କ ପ୍ରତି ଅବମାନନା ବୋଲି ଅଭିଯୋଗକରି ସମ୍ବାଦପତ୍ରରେ ଏହାକୁ ଖଣ୍ଡନ କରିବା ନିମନ୍ତେ ପ୍ରଦେଶ କଂଗ୍ରେସ ସମ୍ପାଦକ ମୋ ଠାରେ ଦାବୀକଲେ । ଏପରି ଔଦ୍ଧତ୍ୟ ଦେଖି ମୁଁ ବିସ୍ମିତ ହେଲି । ଇନ୍ଦିରାଗାନ୍ଧୀଙ୍କ ମନରେ ବିରାଗ ସୃଷ୍ଟି କରିବା ନିମନ୍ତେ ଏହା ଥିଲା ଏକ ଚତୁର ଖେଳ । ସେଥିରେ ପୁଣି ଲେଖାଥିଲା ଯେ ମୁଁ ଶୃଙ୍ଖଳାଭଙ୍ଗ ଦୋଷରେ ଦୋଷୀ ହେବି । ମୁଁ ତାର ଜବାବରେ ସମ୍ବାଦପତ୍ରର ସମ୍ବାଦ ଖଣ୍ଡନ କରିବାକୁ ଅସ୍ୱୀକାର କଲି । ମୁଁ ଯେଉଁ କ୍ରମଧାରାରେ ଏହା କହିଥିଲି, ତାହା ସଂପୂର୍ଣ୍ଣଭାବରେ ପ୍ରକାଶ ପାଇନାହିଁ । କିନ୍ତୁ ଇନ୍ଦିରାଗାନ୍ଧୀଙ୍କ ସମ୍ପର୍କରେ ମୁଁ ଯାହା କହିଛି ତାହା ଏକ ଐତିହାସିକ ସତ୍ୟ ବୋଲି ମୁଁ

ବିଗୁରିକରେ । ଏଥିରେ ଅବମାନନା ପ୍ରଶ୍ନ ଉଠୁନାହିଁ ଏବଂ ଏପରି କହିବାଟା କୌଣସି ଶୃଙ୍ଖଳାଭଙ୍ଗ କାର୍ଯ୍ୟରୂପେ ନିୟମାନୁସାରେ ଧରିଯାଇପାରେନା । ଏ ଚିଠିର ଏକ କପି ମଧ୍ୟ ମୁଁ ଇନ୍ଦିରାଗାନ୍ଧୀଙ୍କ ପାଖକୁ ପଠାଇଦେଲି । କଥାଟି ସେଇଠି ରହିଲା—ଆଉ ଆଗକୁ ବଢ଼ିଲାନାହିଁ । ମାତ୍ର ଏସବୁ ସହଯୋଗର ବାର୍ତ୍ତା ନୁହେଁ । ଇନ୍ଦିରାଗାନ୍ଧୀଙ୍କ ଅନୁରୋଧରେ ମୁଁ ଷ୍ଟେଟ୍ ପ୍ଲାନିଂ ବୋର୍ଡ଼ର ଡେପୁଟି ଚେୟାରମ୍ୟାନ୍ ଦାୟିତ୍ୱ ନେଲି । ମତେ କ୍ୟାବିନେଟ୍ ପାହିଆ ଦିଆଯାଇ ଗୋପନୀୟତାର ଶପଥ ନେବାକୁ ପଡ଼ିଲା । କିନ୍ତୁ ମୋର ଆବଶ୍ୟକତା ଅନୁସାରେ ମାସିକ ମାତ୍ର ୮୦୦ଟଙ୍କା ପାରିଶ୍ରମିକରୂପେ ମୁଁ ଗ୍ରହଣକଲି । ସରକାରୀ ବାସଭବନ ଓ ଅନ୍ୟ ସୁବିଧା ନେଲିନାହିଁ । କଂଗ୍ରେସ ସଭାପତି ଡକ୍‌ଟର ଶର୍ମା କହିଲେ—ପ୍ରଧାନମନ୍ତ୍ରୀଙ୍କର ଇଚ୍ଛା ଆପଣ ବିଭିନ୍ନ ଜିଲାରେ କଂଗ୍ରେସର ପରିସ୍ଥିତି ବିଷୟରେ ସ୍ୱତନ୍ତ୍ର ରିପୋର୍ଟ ଦେବେ । ମୁଁ ସେ କାମଟି କଲିନାହିଁ । ପ୍ଲାନିଂ କାର୍ଯ୍ୟରେ ମୋ ସହ ସ୍ଥାନୀୟ କଂଗ୍ରେସ କର୍ମୀଟି ଅସହଯୋଗ କଲେ । ଏହି ପ୍ଲାନିଂ କାର୍ଯ୍ୟ ବେଳେ ଜୟପ୍ରକାଶ ନାରାୟଣଙ୍କଠାରୁ କେତେକ ପରାମର୍ଶ ପାଇ ତାହା କିଛିପରିମାଣରେ ଏଠାରେ ଚଳାଇବାର ଉଦ୍ୟମ କରିଥିଲି । ମାତ୍ର ଏହି ପ୍ଲାନିଂ ବୋର୍ଡ଼ର କାର୍ଯ୍ୟକାଳ ଭିତରେ ମୋର ସରକାରୀ ଭିତର କାର୍ଯ୍ୟକଳାପ ବିଷୟରେ କିଛି ଜ୍ଞାନ ଲାଭହେଲା । କେନ୍ଦ୍ରରେ ଡି. ପି. ଧର୍ ଥିଆନ୍ତି ପ୍ଲାନିଂ କମିସନ୍‌ର ଡେପୁଟି ଚେୟାରମ୍ୟାନ୍ । ଓଡ଼ିଶାର ମଧ୍ୟମ ଶିଳ୍ପର ଉନ୍ନତି ନିମନ୍ତେ ମୁଁ କେତେକ ବିଶେଷ ପ୍ରସ୍ତାବ ଭାରତ ସରକାରଙ୍କ ପାଖରେ ରଖିଲି । ଇନ୍ଦିରାଗାନ୍ଧୀ ତାହା ପସନ୍ଦ କଲେ ଏବଂ ମୋର ଆଗରେ ଡି. ପି. ଧର୍‌ଙ୍କୁ ଟେଲିଫୋନ୍ କରି ଏହି ବିଷୟଗୁଡ଼ିକ ବିଶେଷ ଭାବରେ ବିଗୁରି କରିବାକୁ ନିର୍ଦ୍ଦେଶ ଦେଲେ । ଧର୍ ମଧ୍ୟ ସମ୍ପୃକ୍ତ କର୍ମକର୍ତ୍ତାଙ୍କୁ ଡକାଇ ମୋ ସାମନାରେ ଆଲୋଚନା କଲେ ଏବଂ କେତେକ ପ୍ରସ୍ତାବ, ବିଶେଷତଃ ସିମିଳିପାଳ ଉନ୍ନୟନ ଯୋଜନା, ତାଙ୍କର ଏଭଳି ପସନ୍ଦ ହେଲା ଯେ କାଶ୍ମୀରରୁ ଅଭିଜ୍ଞ ଅଫିସର୍ ଆଣିବା କଥା ବି ଉଠାଇଲେ । ସବୁ ହୋଇଗଲା । ଶେଷରେ ନିଷ୍ପତ୍ତି କରିବା ଆଗରୁ ଧର୍ ମତେ ପଗ୍ଭରିଲେ—ଏଗୁଡ଼ିକ କାର୍ଯ୍ୟକାରୀ ହେଲେ କଂଗ୍ରେସ ନିର୍ଦ୍ଦିଷ୍ଟ ଭାବରେ ବହୁମତ ପାଇପାରିବ ତ ! ମୁଁ ତାଙ୍କୁ କହିଦେଲି—ମୁଁ ସେ ଦୃଷ୍ଟିରୁ ନୁହେଁ, ଓଡ଼ିଶାର ସାମୂହିକ ଉନ୍ନତି ଦୃଷ୍ଟିରୁ କେତେକ ଅଫିସରଙ୍କ ସହ ବିଗୁରି ପରାମର୍ଶ କରି ଏହା ଦେଇଛି । ସେଇଠାରେ ଏହାର ସମାପ୍ତି ଘଟିଲା । ପ୍ରଦେଶରେ ଯୋଜନା ବାହାରେ, ଏପରିକି ବନ୍ୟା ପ୍ରତିକାର ଭଳି ନୂତନ ଅଟକଳ ଯୋଜନା ସରକାର ତରଫରୁ ଦେବା ନିମନ୍ତେ, ଗଭର୍ଣ୍ଣର ଜାତି ଓ ତାଙ୍କ ପରାମର୍ଶଦାତାମାନେ ଆପତ୍ତି ଉଠାଇଲେ । ମତେ ଡେପୁଟି ଚେୟାରମ୍ୟାନ୍ ଭାବରେ ସେଗୁଡ଼ିକ ପ୍ରଧାନମନ୍ତ୍ରୀଙ୍କ ପାଖରେ ରଖିବାକୁ ପଡ଼ିଥିଲା । ଶାସନକଳର ସମସ୍ତ ଦୃଷ୍ଟି ଓ ବ୍ୟବସ୍ଥା ନିର୍ବାଚନରେ ବିଜୟ ଦୃଷ୍ଟିରୁ ଯେ କରାଯାଉଥିଲା, ଏହି ଘଟଣାରୁ ଏହା ସ୍ପଷ୍ଟ । ମୁଁ ଏଥିରେ ଖାପଖାଇଲି ନାହିଁ ଏବଂ ମୋର ବିବେକ ଏଥିରେ ଭାଗୀଦାର ହେବାକୁ ଅସ୍ୱୀକାର କରିଦେଲା ।

ସବୁଠାରୁ ଅବିଶ୍ୱାସ ଓ ସନ୍ଦେହର ବାତାବରଣ ସୃଷ୍ଟି ହେଲା ଜୟପ୍ରକାଶଙ୍କ ଆନ୍ଦୋଳନ ଆରମ୍ଭ ହେଲାଦିନୁ । ଜେ. ପି.ଙ୍କ ସହ ମୋର ପୂର୍ବ ଘନିଷ୍ଠତା କାହାରିକି ଅଛପା ନଥିଲା ।

କଂଗ୍ରେସରେ ଯୋଗଦେଲା ପରେ ବି ମୁଁ ପ୍ଲାନିଂ ଓ ଅନ୍ୟାନ୍ୟ କାର୍ଯ୍ୟରେ ତାଙ୍କର ପରାମର୍ଶ ନେଉଥିଲି । ତାଙ୍କ ଆନ୍ଦୋଳନ ପ୍ରତି କଂଗ୍ରେସ ମୂଳରୁ ବିରୋଧ ମନୋଭାବ ପୋଷଣ କରିଥିଲା । ଜୁଲାଇମାସରେ ଦିଲ୍ଲୀରେ ନି. ଭା. କଂଗ୍ରେସ କମିଟି ଅଧିବେଶନରେ ସର୍ବସମ୍ମତରେ ଏହାର ବିରୋଧ କରିବା ନିମନ୍ତେ ପ୍ରସ୍ତାବ ଗୃହୀତ ହେଲା । ମୁଁ ଏହାର ପକ୍ଷପାତୀ ନଥିଲି; କିନ୍ତୁ ପ୍ରକାଶ୍ୟରେ କିଛି କହୁନଥିଲି । ଜେ.ପି.ଙ୍କ ପ୍ରତି ମୋର ଭିତର ସମର୍ଥନ ରହିଛି ବୋଲି ଓଡ଼ିଶା କଂଗ୍ରେସ ପକ୍ଷରୁ ପ୍ରଧାନମନ୍ତ୍ରୀଙ୍କ ପାଖକୁ ରିପୋର୍ଟ ଯାଉଥିଲା । ଅକ୍ଟୋବର ୨ ତାରିଖରେ ଗାନ୍ଧୀ ଓ ଲାଲବାହାଦୁର ଜନ୍ମଦିବସ କଟକରେ ସର୍ବୋଦୟ ମଣ୍ଡଳ ପକ୍ଷରୁ ପାଳିତହେଲା—ଜେ. ପି. ଆନ୍ଦୋଳନ ବିଷୟରେ ଚର୍ଚ୍ଚା କରିବା ନିମନ୍ତେ । ସବୁ ବିରୋଧୀ-ଦଳ ନେତାଙ୍କୁ ବି ଡକରା ହୋଇଥିଲା । ମୁଁ ସେ ସଭାରେ, ଜେ. ପି. ବ୍ୟଭିଚାର ବିରୁଦ୍ଧରେ ଏବଂ ଶିକ୍ଷା ଓ ନିର୍ବାଚନ ସଂସ୍କାରଲାଗି ଯେଉଁ ଅଭିଯାନ ଚଳାଇଛନ୍ତି ତାହା ସ୍ୱାଗତଯୋଗ୍ୟ ବୋଲି କହିବା ସଙ୍ଗେ ସଙ୍ଗେ ଏହା ରାଜନୀତି ଭିତରେ ପଶିଗଲେ ଏହାର ରୂପ ଭିନ୍ନହେବ ଏବଂ ମୁଁ କଂଗ୍ରେସରେ ଥିବାବେଳେ ଏହାକୁ ସମର୍ଥନ ଦେଇପାରିବିନାହିଁ ବୋଲି କହିଲି । ଇଂରେଜୀ କାଗଜମାନଙ୍କରେ ମୋର ଭାଷଣ ବି ପ୍ରକାଶପାଇଲା । ଅକ୍ଟୋବର ୫ ତାରିଖ ସକାଳୁ ଆସିଗଲା ଟେଲିଫୋନ୍ ଇନ୍ଦିରାଗାନ୍ଧୀଙ୍କ ପାଖରୁ—ବିରୋଧୀ ଲୋକଙ୍କ ସହ ମିଶି ସର୍ବୋଦୟମଣ୍ଡଳ ସଭାରେ ଯୋଗଦେବା ମୋର ଠିକ୍ ହେଲାନାହିଁ—ସେମାନେ ଆମର ବିରୋଧୀ । ମୁଁ କହିଲି—ସଭା ସର୍ବୋଦୟମଣ୍ଡଳ ଡକାଇଥିଲା; ବିରୋଧୀନେତା ଏଥିରେ ଯୋଗଦେଇଥିଲେ । ଗାନ୍ଧିଜୀଙ୍କ ଜନ୍ମଦିବସ ସଭାରେ ଯୋଗଦେବାରେ ଦୋଷ ନାହିଁ ବୋଲି ମୁଁ ବିଚାରୁଛି । ଜବାବ ମିଳିଲା—ସର୍ବୋଦୟମଣ୍ଡଳ ଆମର ବିରୋଧୀ—ତାଙ୍କ ସଭାକୁ ଆପଣ ଯିବେନାହିଁ । ସେ ଟେଲିଫୋନ୍‌ରେ ଏହା ଜଣାଇଲା ପରେ ମୁଁ ଭାବିଲି ମାମଲା ଏଠି ତୁଟିଗଲା । ମାତ୍ର ଏହା ପରେ ଅକ୍ଟୋବର ୭ ତାରିଖରେ ଇନ୍ଦିରାଙ୍କର ଚିଠି ମିଳିଲା ଏବଂ ଅନ୍ୟ କଥା ଭିତରେ ସେଥିରେ ଲେଖାଥିଲା—'I am rather worried to hear that you have been supporting the disruptive agitations which are taking place." ଏହା ପଢି ମୁଁ ତାଟକା ହେଲି । ଲେଖିଲି—ଏ ଧାରଣା ଭୁଲ । କଂଗ୍ରେସରେ ଥିବା ପର୍ଯ୍ୟନ୍ତ ମୁଁ ତାହା କରିପାରେନା । ତେବେ ମୋର ନିର୍ଦ୍ଦିଷ୍ଟ ମତ ହେଉଛି, ଜେ. ପି.ଙ୍କ ଆନ୍ଦୋଳନରେ ଯେଉଁସବୁ ସମସ୍ୟା ଉଠିଛି, ସେସବୁ ବିଷୟରେ ତାଙ୍କ ସହ କଥାବାର୍ତ୍ତା କରି ଗୋଟାଏ ବାଟ ବାହାରକରିବା ଉଚିତ । ତାଙ୍କର କେତେଗୁଡ଼ିଏ ଦାବୀ ସମର୍ଥନଯୋଗ୍ୟ । ମୋର ମନେହୁଏ, ଏଇଠୁ କଂଗ୍ରେସ ଓ ଇନ୍ଦିରାଗାନ୍ଧୀଙ୍କ ସହ ମୋର ସମ୍ପର୍କ ଛିନ୍ନ ହେବାର ବାଟ ଖୋଲିଗଲା । ପରସ୍ପର ପ୍ରତି ବିରୋଧ ଓ ସଦ୍‌ଭାବ ଏକ ସାଙ୍ଗରେ ରହିଲା । ଏଣେ ପ୍ରାଦେଶିକ ସ୍ତରରେ ମୁଁ କୌଣସି କାର୍ଯ୍ୟରେ ସମ୍ପୃକ୍ତ ନହୋଇଥିଲେ ସୁଦ୍ଧା ନାନାପ୍ରକାର ନୀଚ ପ୍ରବୃତ୍ତି ପ୍ରକାଶପାଇଲା । ତେଣେ ଆଗରୁ ଯେଉଁ ପି. ଏସ୍. ପି. ମେମ୍ବରମାନେ କଂଗ୍ରେସରେ ଯୋଗଦେଇଥିଲେ ସେମାନଙ୍କୁ

ନାନାଭାବରେ ହଇରାଣ ହେବାକୁ ପଡ଼ିଲା । ବାଙ୍କବିହାରୀ ଦାସ ମନ୍ତ୍ରୀରୂପେ ରହିଥିଲେ ସୁଦ୍ଧା କଂଗ୍ରେସ ଭିତରେ କାର୍ଯ୍ୟକରିବାରେ ସେମାନଙ୍କୁ କୌଣସି ସୁଯୋଗ ମିଳିଲାନାହିଁ । ସଭ୍ୟ ସଂଗ୍ରହ କରିବାରେ ପାତରଅନ୍ତର କରାଗଲା ଏବଂ ନିର୍ବାଚିତ କମିଟି ହୋଇନଥିବାରୁ କମିଟିଗୁଡ଼ିକରେ ଉପଯୁକ୍ତ ସ୍ଥାନ ମିଳୁନଥିଲା । କଂଗ୍ରେସ ଭିତରେ କିଛି ଗଣତାନ୍ତ୍ରିକ ବ୍ୟବସ୍ଥା ଥିଲେ ଅବା ଏସବୁ ଆଲୋଚନା ହୋଇପାରୁଥାଆନ୍ତା । ଏଥିଭିତରେ ଆହୁରି ଏକ ଘଟଣାଯୋଗୁ ମୋର କଂଗ୍ରେସ ଭିତରେ ରହିବାଟା ମତେ ଅଡ଼ୁଆ ଲାଗିଲା । ୧୯୭୪ ନିର୍ବାଚନରେ ମୁଁ କଂଗ୍ରେସ ପ୍ରାର୍ଥୀରୂପେ ଇନ୍ଦିରାଗାନ୍ଧୀଙ୍କ ଅନୁରୋଧରେ ଆସେମ୍ବ୍ଲି ଲାଗି ଲଢ଼ିଲି । ନନ୍ଦିନୀ ଶତପଥୀଆଦିଙ୍କର ଆଶଙ୍କା ହେଲା ଯେ ବୋଧହୁଏ ମତେ ଦାୟିତ୍ୱ ଦେବା କଥା ବିଚାର କରାଯାଉଛି । ସେମାନେ ବିରୋଧକଲେ । ମାତ୍ର ଇନ୍ଦିରାଗାନ୍ଧୀ ଏତେବେଳେ ବଡ଼ ଉଦାରଭାବ ଦେଖାଇଲେ—ମୁଁ ଯେଉଁ ନିର୍ବାଚନମଣ୍ଡଳୀ ବାଛିବି ମତେ ଦିଆଯିବ ବୋଲି ନିଷ୍ପତ୍ତି ଦେଲେ । ବାଙ୍କବିହାରୀ ଦାସ ଓ ଅନ୍ୟ ସାଥିଙ୍କ ପରାମର୍ଶରେ ମୁଁ ବରି-ଡେରାବିଶି ନିର୍ବାଚନମଣ୍ଡଳୀ ବାଛିନେଲି । ମାତ୍ର ସ୍ଥାନୀୟ କଂଗ୍ରେସ କର୍ତ୍ତୃପକ୍ଷ ନିର୍ବାଚନ ମଣ୍ଡଳୀରେ ନାନା କୌଶଳ ଖେଳିଲେ । ମୋ ବିରୁଦ୍ଧରେ ଭୋଟ ଦେବାଲାଗି ଟଙ୍କା ଖର୍ଚ୍ଚ କରି କେତେକ କଂଗ୍ରେସ କର୍ମୀଙ୍କୁ ଲଗାଇଲେ । ସେ ନିର୍ବାଚନମଣ୍ଡଳୀରେ କମ୍ୟୁନିଷ୍ଟଙ୍କର କିଛି ସମର୍ଥନ ଥିଲା । ସେମାନେ ଉପରେ ମୋତେ ସମର୍ଥନ ଦେଉଥିଲେ ସୁଦ୍ଧା, ନନ୍ଦିନୀଙ୍କ ନିର୍ଦ୍ଦେଶରେ ଭୋଟଦିନ ଦଳବାନ୍ଧି ଯାଇ ମୋ ବିରୁଦ୍ଧରେ ଭୋଟ ଦେଲେ । ଅତି ଅଳ୍ପ ଭୋଟରେ ମୁଁ ହାରିଗଲି । ମୋତେ ଏଥିରୁ ଶିକ୍ଷା ମିଳିଲା ଯେ କଂଗ୍ରେସ ଭିତରର ଆଭ୍ୟନ୍ତରୀଣ ବିରୋଧକୁ ସମ୍ମୁଖୀନ ହେବା ନିମନ୍ତେ ପ୍ରସ୍ତୁତ ନହୋଇ ନିର୍ବାଚନ ଲଢ଼ିବା ଠିକ୍ ନୁହେଁ । ମୁଁ ତ ଅନ୍ୟଭାବରେ ଅଭ୍ୟସ୍ତ ଥିଲି—ଲୋକଙ୍କ ପାଖକୁ ସିଧା ଯାଉଥିଲି—ଏବେ ଯାହାଙ୍କ ଜରିଆରେ ମତେ ଯିବାକୁ ପଡ଼ିଲା, ସେମାନେ ଠିକ୍ ବିପରୀତ କାର୍ଯ୍ୟ କଲେ । ମୁଁ ଏସବୁ କଥା ଇନ୍ଦିରାଗାନ୍ଧୀଙ୍କୁ ଲେଖି କଂଗ୍ରେସ ଭିତରେ ଆଉ କାର୍ଯ୍ୟ କରିବା ଅସମ୍ଭବ ବୋଲି ଜଣାଇ ଦେଲି ଏବଂ ମୋ ସହିତ ତାଙ୍କର ଏ ସମ୍ପର୍କରେ ଓ ଦେଶର ଅନ୍ୟାନ୍ୟ ରାଜନୀତିକ ପରିସ୍ଥିତି ସମ୍ବନ୍ଧରେ ଓଡ଼ିଶା ରାଜଭବନରେ ଆଲୋଚନା ହୋଇଥିଲା । ଏହା ଥିଲା ୧୯୭୪ ମସିହା ଏପ୍ରିଲ୍ ପନ୍ଦର ତାରିଖ—ଆଗରୁ ଯେଉଁସବୁ ବିଷୟ ଉଲ୍ଲେଖ କରିଛି ତାର ପୂର୍ବବର୍ତ୍ତୀ ଘଟଣା ।

ଇନ୍ଦିରାଗାନ୍ଧୀ ଏହିଦିନ ରାଜଭବନରେ ଭୂମିପଟ୍ଟା ବଣ୍ଟନ ଉତ୍ସବରେ ଜେ. ପି.ଙ୍କ ଉପରେ ଅବାଞ୍ଛନୀୟ ଆକ୍ରମଣ କଲେ; ତାଙ୍କ ନାମ ଧରିନଥିଲେ, ମାତ୍ର ସମସ୍ତ ଦୋଷ ତାଙ୍କ ଉପରେ ଲଦିଦିଆଗଲା । ଗୁଜରାଟ ଆନ୍ଦୋଳନରେ ବାଧ୍ୟହୋଇ କଂଗ୍ରେସ ମନ୍ତ୍ରିମଣ୍ଡଳକୁ ଇସ୍ତଫା ଦେବାକୁ ପଡ଼ିଥିବାରୁ ଇନ୍ଦିରାଗାନ୍ଧୀଙ୍କର କ୍ରୋଧ ବଢ଼ିଯାଇଥିଲା । ସେଠି ପରିସ୍ଥିତି ଏପରି ଉତ୍କଟ ହେଲା ଯେ, ଇନ୍ଦିରା ଗାନ୍ଧୀଙ୍କୁ ଦିଲ୍ଲୀ ବାହାରେ ଥାଇ, ମନ୍ତ୍ରିମଣ୍ଡଳର ଇସ୍ତଫାକୁ ତାଙ୍କ ଅନୁପସ୍ଥିତିରେ କେନ୍ଦ୍ର କ୍ୟାବିନେଟ୍ ନିଷ୍ପତ୍ତି କରିବା ନିମନ୍ତେ କହିବାକୁ ପଡ଼ିଲା । ଏହା ତାଙ୍କୁ ଯେ ବାଧୁଥିଲା, ମୋ ସହିତ କଥାବାର୍ତ୍ତାବେଳେ ସଫା ଜଣାପଡୁଥିଲା ।

ଜୟପ୍ରକାଶଙ୍କ ଉପରେ ତାଙ୍କର ଆକ୍ରମଣ ଦେଶରେ ପ୍ରବଳ ପ୍ରତିକ୍ରିୟା ସୃଷ୍ଟି କଲା । ବାଦାନୁବାଦ ଆରମ୍ଭ ହେଲା । ଜେ.ପି. ଏହାର ଏକ ଜବାବ ଦେଇ ଛାତ୍ର-ଯୁବକଙ୍କ ଉପରେ ଅତ୍ୟାଚାର ବନ୍ଦନହେଲେ ନିଜେ ଶୋଭାଯାତ୍ରା ବାହାର କରିବାର ସତର୍କବାଣୀ ଶୁଣାଇ ଦେଲେ । ପାର୍ଲିମେଣ୍ଟ ମେମ୍ବରଙ୍କ ଭିତରୁ କେତେକ ଜେ. ପି.ଙ୍କୁ ସମର୍ଥନ କଲେ ଓ ଆଉ କେତେକ ଭର୍ତ୍ସନା କଲେ । ନନ୍ଦିନୀ ଶତପଥୀ ଏକ ବକ୍ତୃତାରେ କହିଲେ– ସେ ବରାବର ପ୍ରଧାନମନ୍ତ୍ରୀଙ୍କ ସହ ଥିଲେ—ପ୍ରଧାନମନ୍ତ୍ରୀ ଆଦୌ ଜେ. ପି.ଙ୍କ ଉଦ୍ଦେଶ୍ୟରେ ଏଭଳି କଥା କହିନାହାନ୍ତି । ମୁଁ ସେ ପର୍ଯ୍ୟନ୍ତ ନୀରବ ଥିଲି । ମାତ୍ର ଏପରି ମିଥ୍ୟାକୁ ସହିନେବା ସମ୍ଭବ ହେଲନାହିଁ । ମୁଁ ଏକ ବକ୍ତୃତାରେ କହିଲି—ନନ୍ଦିନୀ ଯାହା କହିଲେ ତାହା ସତ୍ୟ ବୋଲି ଇନ୍ଦିରାଗାନ୍ଧୀ ନିଜେ କହିଲେ ସବୁ ବିବାଦ ତୁଟିଯାଆନ୍ତା । ସେ ନିଜେ ନ କହି ଅନ୍ୟମାନେ ଯାହା କହୁଛନ୍ତି ତାହା ବିଶ୍ୱାସଯୋଗ୍ୟ ନୁହେଁ । ଆମେ ସବୁ ସଭାରେ ଉପସ୍ଥିତ ଥିଲୁ—ଜାଣୁ କାହା ଉଦ୍ଦେଶ୍ୟରେ ଏହା କୁହାଗଲା । ବାସ୍ତବିକ ସେଦିନ ସଭାରେ ଇନ୍ଦିରାଗାନ୍ଧୀଙ୍କ ଡାହାଣ କଡ଼କୁ ମୁଁ ଓ କୃଷ୍ଣଚନ୍ଦ୍ର ପଣ୍ଡା ବସିଥିଲୁ । ଜେ. ପି.ଙ୍କ ଉଦ୍ଦେଶ୍ୟରେ କହିଲାବେଳେ ଇନ୍ଦିରା ମୋ ଆଡ଼କୁ ଟିକିଏ ଅନାଇଲେ । ମୁଁ ମର୍ମ ବୁଝିଲି । ଯାହା ପ୍ରକାଶ ପାଇଛି ସତ୍ୟ ଏବଂ ମୁଁ ଉପସ୍ଥିତ ଥିଲି ବୋଲି ମୁଁ ଏକ ଚିଠିରେ ଜେ. ପି.ଙ୍କୁ ଜଣାଇଦେଲି । ପରେ ଶୁଣିଲି, ଯେତେବେଳେ କେହି କେହି ଇନ୍ଦିରା ଓ ଜେ. ପି.ଙ୍କ ଭିତରେ ମଧ୍ୟସ୍ଥତା କଲେ, ତହିଁରେ ମୋ ଚିଠି ଦେଖାଇ ଇନ୍ଦିରାଙ୍କୁ କାଇଲି କରିଥିଲେ ଏବଂ ଏହାର ଆବଶ୍ୟକୀୟ ସଂଶୋଧନ ଦାବିକରିଥିଲେ, ମାତ୍ର ତାହା ହୋଇପାରିଲା ନାହିଁ । ଜେ. ପି.ଙ୍କ ଆନ୍ଦୋଳନ ପ୍ରଖର ହେଲା । ଅବଶ୍ୟ ସେତେବେଳକୁ ଜେ. ପି. ନିର୍ବାଚନ ଲଢ଼ାଇ କଥା କହିନଥିଲେ—ଶିକ୍ଷା, ନିର୍ବାଚନ ଓ ଭୂମି ସଂସ୍କାର ଏବଂ ଦୁର୍ନୀତି ନିବାରଣ ବିଷୟରେ ଜୋର୍ ଦେଉଥିଲେ ।

ମୁଁ ତହିଁରେ ଯୋଗ ଦେଇ ନ ଥିଲେ ସୁଦ୍ଧା ଆନ୍ଦୋଳନ ଯେତେ ବ୍ୟାପିଲା ଆମ ପ୍ରତି ସେତିକି ସନ୍ଦେହ ବଢ଼ିଲା । ଏସବୁ ଦେଖି ମୁଁ ମନେ ମନେ ସ୍ଥିର କରିନେଲି କଂଗ୍ରେସ ଛାଡ଼ିଦେବାଲାଗି । ଜେ. ପି.ଙ୍କ ପରାମର୍ଶ ଲୋଡ଼ିଲି । ମାତ୍ର ସେ ଗସ୍ତରେ ଥିବାରୁ ମୁଁ ବାରାଣସୀ ଯାଇ ବି ତାଙ୍କୁ ଭେଟିପାରିଲିନାହିଁ । ୧୯୭୫ ଜାନୁୟାରୀ ୨୭ ତାରିଖରେ ଦିଲ୍ଲୀରେ ଭେଟ ହେବାର କଥା ହେଲା । ସେ ଦିନ ଜେ. ପି.ଙ୍କ ସହ ଭେଟ ହେବା ଆଗରୁ ମୋର ଇନ୍ଦିରା ଗାନ୍ଧୀଙ୍କ ସହ ପ୍ରାୟ ଅଧଘଣ୍ଟାଏ ଆଲୋଚନା ହେଲା । ଜେ. ପି. ଓ ତାଙ୍କ ଭିତରେ ଗୋଟାଏ ବୁଝାମଣାର ଚେଷ୍ଟା ବିଫଳ ହେଲା । ବରଂ ସେ ମତେ କହିଲେ—ଜେ.ପି. ମୋର ରକ୍ତ ଚାହୁଁଛନ୍ତି । (He is after my blood.) ମୁଁ ମୋ ତରଫରୁ ଜେ. ପି.ଙ୍କୁ ଦେଖାକରିବାଲାଗି ବି ବାରଣ କରିଦେଲି । ଇନ୍ଦିରାଗାନ୍ଧୀ ମତେ ଆହୁରି କହିଲେ—ଆପଣ ଯଦି ଓଡ଼ିଶାରେ କିଛି କରିବାଲାଗି ମନାକରୁଛନ୍ତି, ଏଠାରେ କିଛିଦିନ ରହି କେଉଁ କାମରେ ନିଯୁକ୍ତ ହୋଇପାରିବେ ତାହା ଆଲୋଚନା କରନ୍ତୁ । ଏଭଳି କଥାବାର୍ତ୍ତା ପରେ ଜେ. ପି.ଙ୍କ ସହ ସାକ୍ଷାତ୍ ମୋ ପକ୍ଷରେ ଅନିବାର୍ଯ୍ୟ ହୋଇପଡ଼ିଲା । ମାତ୍ର ଜେ. ପି. ଯେପରି ସେକ୍ୟୁରିଟି

ଗନ୍ତବ୍ୟରେ ଥାଆନ୍ତି, ସେଥିରେ ଦେଖା ହେବା ମୁସ୍କିଲ ଥିଲା । ମୁଁ ସେଥିଲାଗି ଆଗରୁ ଯାଇ ମୋହନ ଧାରିଆଙ୍କ ଘରେ ଛପିରହିଲି । ରାତିରେ ସେଠିକି ଜେ. ପି. ରାତି ଭୋଜନ ଲାଗି ଆସିଲେ । ଆଉ ଉପସ୍ଥିତ ଥିଲେ ଚନ୍ଦ୍ରଶେଖର, ରାଧାକୃଷ୍ଣ ଓ ମୋହନ ଧାରିଆ । ଜେ. ପି. ମୋଠାରୁ ସବୁ ଶୁଣି ବଡ଼ ବ୍ୟଥିତ ହେଲେ । ଇନ୍ଦିରାଗାନ୍ଧୀ ଏମିତି ଭାବିପାରନ୍ତି ଜାଣି ବିସ୍ମିତ ହେଲେ । ମୁଁ ଆଉ କଂଗ୍ରେସରେ ରହି ଲାଭ ହେବ ନାହିଁ ତେଣୁ ସଭ୍ୟପଦ ତ୍ୟାଗ କରିବାର ପ୍ରସ୍ତାବ କଲି । ମାତ୍ର ଜେ. ପି. ଦୃଢ଼ଭାବରେ ତାର ବିରୋଧ କଲେ ଏବଂ ମତେ ଏକପ୍ରକାର ବାଧ୍ୟକଲେ କଂଗ୍ରେସ ନଛାଡ଼ିବାଲାଗି ।

ଏହା ପରେ ପ୍ରଶ୍ନ ଉଠିଲା—ମୁଁ କଅଣ କରିବି ? ଦ୍ରୁତଗତିରେ ଆନ୍ଦୋଳନ ଯେ ଚାଲିଥାଏ, ସେଥିରେ ମୋ ମନ ଉଚାଟ ହେଉଥାଏ । ମାତ୍ର ମୁହଁମାଡ଼ି ପଡ଼ିରହିବାକୁ ହେଲା । ଇନ୍ଦିରାଗାନ୍ଧୀଙ୍କୁ ଧନ୍ୟବାଦ ଦେବି—ସେ ତାଙ୍କ କଥା ରକ୍ଷାକଲେ ଏବଂ ମୋତେ କିଭଳି କାର୍ଯ୍ୟ ଦିଆଯିବ ଏଥିଲାଗି ବହୁଥର ଉମାଶଙ୍କର ଦୀକ୍ଷିତ, ଶଙ୍କର ଦୟାଲ ଶର୍ମା, ସ୍ୱରଣ ସିଂହ ଓ ଜଗଜ୍ଜୀବନ ରାମଙ୍କ ସହ ଆଲୋଚନା ହେଲା । ଶେଷକୁ ନିଷ୍ପତ୍ତି ହେଲା ଯେ, ଦେଶରେ ଭୂସଂସ୍କାର କାର୍ଯ୍ୟ କପରି ଚାଲିଛି ତାହା ମୁଁ ଦେଖିବି ଏବଂ ଭୂଦାନ ଓ ଅନ୍ୟ ବେସରକାରୀ ଅନୁଷ୍ଠାନ ଗୁଡ଼ିକ ସହ ସଂପର୍କ ରଖିବି ଏବଂ କେନ୍ଦ୍ର ସରକାର ଓ ପ୍ରାଦେଶିକ ସରକାରଙ୍କ କାର୍ଯ୍ୟରେ ସମନ୍ୱୟ ରକ୍ଷାକରିବି । ଏଥିଲାଗି ଅବୈତନିକ ଭୂସଂସ୍କାର ପରାମର୍ଶଦାତା ବୋଲି ଏକ ନୂଆପଦବୀ କୃଷିମନ୍ତ୍ରଣାଳୟରେ ସୃଷ୍ଟି କରାଗଲା । ପ୍ରଥମେ ଜଗଜ୍ଜୀବନ ରାମଙ୍କର ଏଥିରେ ବିଶେଷ ଆଗ୍ରହ ନ ଥିଲା । ସେ ବୋଧହୁଏ ବିଚାରକଲେ ଯେ ଇନ୍ଦିରାଗାନ୍ଧୀ ତାଙ୍କ କର୍ତ୍ତୃତ୍ୱ ଊଣା କରିବା ଉଦ୍ଦେଶ୍ୟରେ ଏପରି ପାଞ୍ଚ କରିଛନ୍ତି । ଶେଷକୁ ସେ ମତେ ଡାକି କହିଲେ—ଇନ୍ଦିରାଗାନ୍ଧୀ ନିଜେ ଚିଠି ଲେଖି, କହି, ଯେତେବେଳେ କିଛି କାମ ହେଉ ନାହିଁ, ଆପଣ ବା ଏଥିରେ କଣ କରିପାରିବେ ? ମାତ୍ର ମୁଁ କିଛି ନକହିବାରୁ ଶେଷକୁ ଏ ପଦବୀ ସୃଷ୍ଟି ହୋଇ କ୍ୟାବିନେଟ୍‌ର ମଞ୍ଜୁରି ପାଇଲା । ଇନ୍ଦିରାଗାନ୍ଧୀ ମତେ ଓଡ଼ିଶା ଫେରିଆସିବା ନିମନ୍ତେ କହିଲେ । ମୁଁ ଏକପ୍ରକାର ଏପରି ପଦ ଗ୍ରହଣ କରିବା ନିମନ୍ତେ ସ୍ୱୀକୃତି ଦେଇ ଆସିଲି ।

ଏହିଭିତରେ ଜେ. ପି. ଇନ୍ଦିରାଗାନ୍ଧୀଙ୍କର ନିର୍ବାଚନ ଚ୍ୟାଲେଞ୍ଜ ଗ୍ରହଣକଲେ ଏବଂ ବିଭିନ୍ନ ପ୍ରଦେଶରେ ଗସ୍ତ ଆରମ୍ଭ କଲେ । ସେ ଓଡ଼ିଶାକୁ ଆସି ନନ୍ଦିନୀ ସରକାରର ବହୁ ପ୍ରତିରୋଧର ସମ୍ମୁଖୀନ ହେଲେ । ମୁଁ ଦିଲ୍ଲୀରୁ ଦିନକ ଆଗରୁ ଫେରିଥାଏ । ମାର୍ଚ୍ଚ ୩୧ ତାରିଖରେ ମତେ ଭୁବନେଶ୍ୱର ଷ୍ଟେଟ୍ ଗେଷ୍ଟ ହାଉସ୍‌କୁ ଡକାଇ ଜେ.ପି. କହିଲେ—ମୁଁ ସେତେବେଳେ କଂଗ୍ରେସ ଛାଡ଼ିବାକୁ ଆପଣଙ୍କୁ ବାରଣକରିଥିଲି—ଆପଣ ଏବେ ଛାଡ଼ି ଆସନ୍ତୁ ଏବଂ ଓଡ଼ିଶାରେ ଆନ୍ଦୋଳନର ନେତୃତ୍ୱ ନିଅନ୍ତୁ । ଓଡ଼ିଶାରେ ଯେଉଁସବୁ ବ୍ୟକ୍ତି—ମହତାବ ଓ ବିଜୁପଟ୍ଟନାୟକ ଏଥିରେ ସମ୍ପୃକ୍ତ, ସେମାନଙ୍କର ଆନ୍ତରିକତାରେ ମୋର ବିଶ୍ୱାସ ନାହିଁ; ମୁଁ ସେମାନଙ୍କ ନେତୃତ୍ୱ ନେଇ କିଛି କରିପାରିବି ନାହିଁ । ମୁଁ ଉତ୍ତରରେ କହିଲି—ଆପଣ କଂଗ୍ରେସ ଛାଡ଼ିବାକୁ

ମନା କରିବାରୁ ମୁଁ ଏକପ୍ରକାର ପ୍ରତିଶ୍ରୁତି ଦେଇଆସିଛୁ । ନୈତିକତା ଦୃଷ୍ଟିରୁ କଥାଟା ଠିକ୍ ହେବନାହିଁ ।'' ଜେ. ପି. ମୋ କଥାର ଯଥାର୍ଥତା ଉପଲବ୍ଧି କଲେ । ମାତ୍ର ମୋଠାରୁ ପ୍ରତିଶ୍ରୁତି ନେଲେ ଯେ ମୁଁ ତାଙ୍କ ଆନ୍ଦୋଳନର ବିରୋଧ କରିବନାହିଁ । ମୁଁ ସେ ଜବାବ ଦେଲି ଏବଂ କୌଣସିଠାରେ ତାହାର ସମାଲୋଚନାରେ ଯୋଗ ନ ଦେବାରୁ ମୋ ପ୍ରତି କଂଗ୍ରେସ ମହଲରେ ସନ୍ଦେହ ବୃଦ୍ଧି ପାଇଲା ।

କିନ୍ତୁ ପୂର୍ବନିର୍ଦ୍ଧାରିତ ସିଦ୍ଧାନ୍ତ ଅନୁସାରେ ଜୁନ୍ ୫ ତାରିଖରେ ମୋ ପାଖକୁ ସରକାରୀ ପତ୍ର ଆସିଲା ଅବୈତନିକ ଭୂସଂସ୍କାର ପରାମର୍ଶଦାତା ଅଫିସ ଗ୍ରହଣ କରିବା ନିମନ୍ତେ । ମୁଁ ତହିଁରେ ସମ୍ମତି ଜଣାଇ ଚିଠି ପଠାଇଦେଲି । ମୁଁ ଏମର୍ଜେନସି ବେଳେ ସରକାରୀ ପଦବୀ ଗ୍ରହଣ କଲି ବୋଲି ଯେଉଁମାନେ ସମାଲୋଚନା କରନ୍ତି, ସେମାନେ ଜାଣିବା ଉଚିତ ଯେ ଏମର୍ଜେନ୍ସି ପୂର୍ବରୁ ଏହା ସ୍ଥିର ହୋଇଥିଲା । ଏମର୍ଜେନ୍ସି ପରେ ମତେ ଯେ କାହିଁକି ଏ ଅଫିସ୍ ଗ୍ରହଣ କରିବାକୁ ଦିଆଗଲା ସେଥିରେ ମୁଁ ବିସ୍ମିତ ।

ଏମର୍ଜେନ୍ସି ଘୋଷଣା ହେଲା ଜୁନ୍ ୨୫ ତାରିଖ ରାତିରେ । ୨୬ ତାରିଖ ସକାଳୁ ଇନ୍ଦିରା ଗାନ୍ଧୀ ଦେଶବାସୀଙ୍କୁ ରେଡ଼ିଓ ଜରିଆରେ ତାଙ୍କ ବାର୍ତ୍ତା ଶୁଣାଇଲେ । ମୁଁ ୨୬ ତାରିଖର ରେଡ଼ିଓ ଘୋଷଣା ଶୁଣି ସ୍ତମ୍ଭୀଭୂତହେଲି । ସାଙ୍ଗେ ସାଙ୍ଗେ ଏକ ବିବୃତି ଦେଇ କହିଲି— ଏହା କ୍ଷମତା ଲୋଭୀଙ୍କର ଏକ ଅହେତୁକ କାର୍ଯ୍ୟ । ଲୋକସଭାରେ ଶ୍ରେଷ୍ଠାଧିକାର ହରାଇ ସୁଦ୍ଧା ପ୍ରଧାନମନ୍ତ୍ରୀ ପଦରେ ରହିବା, ଦେଶରେ ଏମର୍ଜେନ୍ସି ଘୋଷଣା କରିବା, ନାଗରିକଙ୍କର ସାଧାରଣ ଅଧିକାର ଖର୍ବକରିବା, ଜୟପ୍ରକାଶ ନାରାୟଣ ଓ କଂଗ୍ରେସ କାର୍ଯ୍ୟକାରୀ ସମିତିର ଅନେକ ସଦସ୍ୟଙ୍କ ସମେତ ନେତାମାନଙ୍କୁ ଗିରଫ କରିନେବା ଆଦି କାର୍ଯ୍ୟ ଦେଶରେ ଅରାଜକତାକୁ ବରଣ କରି ଆଣିବା ସଙ୍ଗେ ସମାନ । ନାନା ବାଧାବିଘ୍ନ ଓ ଦୁଃଖକଷ୍ଟ ସହି ଭାରତୀୟ ଲୋକେ ଯେଉଁ ଗଣତନ୍ତ୍ରକୁ ଏତେ ବର୍ଷ କାଳ ଧରି ବଞ୍ଚାଇ ଆସିଛନ୍ତି, ଏଥିରେ ଗଣତାନ୍ତ୍ରିକ ପ୍ରଗତି ଏକ ଶକ୍ତ ଧକ୍କା ପାଇଲା । ଇନ୍ଦିରାଗାନ୍ଧୀ ନିଜେ କହନ୍ତୁ—ଭାରତର ସବୁ ସମ୍ପ୍ରଦାୟ ଲୋକଙ୍କର ସହଯୋଗ ପ୍ରାପ୍ତିର କଣ ଏହା ଏକ ଭଲ ପନ୍ଥା ?''

କଂଗ୍ରେସ ଲୋକ ହୋଇ ମୋର ଏପରି ବିବୃତିରେ ମୋ ଉପରେ କର୍ତ୍ତାମାନେ ବିମୁଖ ହେଲେ । ସରକାର ସମ୍ବାଦ ଯାଞ୍ଚ ବଳରେ ଏହାର ପ୍ରକାଶକୁ ବାରଣ କରିଦେଲେ । ଓଡ଼ିଶା ସରକାର ମୋ ଘର ଆଗରେ ପୁଲିସ जଗୁଆଳି ବସାଇଲେ । କେହି ମୋ ସହ ଦେଖା କରିବାକୁ ଭୟପାଇଲେ । ସ୍ୱାଧୀନତା ସଂଗ୍ରାମୀ ପେନସନ୍ କମିଟିର ମୁଁ ଚେୟାରମ୍ୟାନ୍ ଥିଲି—ତହିଁରୁ ଇସ୍ତଫା ଦେବାକୁ ପଡ଼ିଲା । ଅନିଶ୍ଚିତ ଅବସ୍ଥାରେ ପ୍ରାୟ ଦୁଇମାସ କଟାଇଲା ପରେ ମୁଁ ଦିଲ୍ଲୀ ଗଲି ପରିସ୍ଥିତି ଅନୁଧାନ କରିବା ନିମନ୍ତେ । ଏମର୍ଜେନ୍ସିରେ ଅଣ୍ଡର-ଗ୍ରାଉଣ୍ଡରେ ରହିଥିବା କେତେକ ବନ୍ଧୁଙ୍କ ସହ ସମ୍ପର୍କ ରଖିଲି । ସେତେବେଳେ ଜଗଜ୍ଜୀବନ ରାମଙ୍କୁ ମଧ୍ୟ ସନ୍ଦେହଚକ୍ଷୁରେ ଦେଖାଯାଉଥିଲା । ଗୁରିଆଡେ ଭୟର ଗୋଟାଏ ବାତାବରଣ । ଜଗଜ୍ଜୀବନଙ୍କ ସହ ସାକ୍ଷାତ୍ କରିବା ଠିକ୍ ହେବନାହିଁ ବୋଲି ବନ୍ଧୁମାନେ ସତର୍କ କଲେ-

ଦେଲେ । ଇନ୍ଦିରା ଗାନ୍ଧୀଙ୍କ ସହ ସାକ୍ଷାତ୍ ମିଳିବା ଥିଲା କାଠିକର ପାଠ । ତଥାପି ଜଗଜ୍ଜୀବନ ରାମଙ୍କ ସହ ସାକ୍ଷାତ୍ କଲି ଏବଂ ମୁଁ ଏମର୍ଜେନ୍ସି ବିରୋଧରେ ବିବୃତି ଦେବା କଥା କହିଲି । ସେ ପରାମର୍ଶ ଦେଲେ—ଏ ଅବସ୍ଥାରେ ନିଜର ମତ କୌଣସିଠାରେ ପ୍ରକାଶ କରିବନାହିଁ । ଇନ୍ଦିରାଗାନ୍ଧୀଙ୍କ ସହ ଲଢ଼ାଇ କରି ଲାଭନାହିଁ । ଆପଣଙ୍କ ଲାଗି ଅବୈତନିକ ପଦବୀ ଏମର୍ଜେନ୍ସି ପୂର୍ବରୁ ସ୍ଥିରହୋଇରହିଛି—ତହିଁରେ ଯୋଗ ଦିଅନ୍ତୁ । ମୁଁ ବି ଆଉ କୁଆଡ଼େ କିଛି କରିବାର ନାହିଁ ଭାବି ଉକ୍ତ ପଦବୀ ଗ୍ରହଣ କଲି । ଆଗରୁ ମନ୍ତ୍ରୀ ହୋଇ ରହିଥିଲି, ତେଣୁ ଅଫିସ୍ ଓ ସହକାରୀ ଆଦି ନିଯୁକ୍ତିରେ ବିଳମ୍ବ ଘଟିଲାନାହିଁ । ବର୍ଷେ କାଳ ଭାରତର ସବୁ ରାଜ୍ୟରେ ବୁଲି ଭୂସଂସ୍କାର କାର୍ଯ୍ୟ ନିରୀକ୍ଷଣ କଲି । କେରଳ, ଗୁଜୁରାଟ ଓ କେତେକ ପରିମାଣରେ କର୍ଣ୍ଣାଟକ ଛଡ଼ା ଅନ୍ୟ କେଉଁଠି ଆନ୍ତରିକତାର ସହ କେହି ଏହା କାର୍ଯ୍ୟକାରୀ କରିବା ଦେଖିଲିନାହିଁ । ପ୍ରଦେଶମାନଙ୍କରେ ଭୂମିମାଲିକମାନଙ୍କର ଯଥେଷ୍ଟ ରାଜନୀତିକ ପ୍ରଭାବ ଓ ପ୍ରଭୁତ୍ୱ ରହିଛି—କେନ୍ଦ୍ରସରକାର ନୀରବଦ୍ରଷ୍ଟା । କେତେକ ସ୍ଥଳର ତ୍ରୁଟି ପ୍ରତି ମୁଁ କେନ୍ଦ୍ରର ଦୃଷ୍ଟି ଆକର୍ଷଣ କଲି; ମାତ୍ର କିଛି ପଦକ୍ଷେପ ନେବାଲାଗି କାହାରି ତତ୍ପରତା ଥିବାର ଦେଖିଲି ନାହିଁ । ଦେଶରେ କାହିଁକି ଯେ ଭୂସଂସ୍କାର ହୋଇପାରୁନାହିଁ—ଏଥିରୁ ବୁଝାପଡ଼ିବ । ବାସ୍ତବିକ କଂଗ୍ରେସ କାହିଁକି, ମଧ୍ୟବିତ୍ତଶ୍ରେଣୀୟ ମନୋଭାବ ହେତୁ କୌଣସି ରାଜନୀତିକ ଦଳ ଭୂମିବଣ୍ଟନ କାର୍ଯ୍ୟରେ ସେତେ ଆଗ୍ରହୀ ନୁହନ୍ତି । ରାଜନୀତିରେ ଏମାନଙ୍କ ପ୍ରଭାବ ଥିବା ପର୍ଯ୍ୟନ୍ତ ପ୍ରକୃତ କୃଷି କରୁଥିବା ବ୍ୟକ୍ତି ଭୂମିର ମାଲିକ ହେବା ନୀତି ପ୍ରଚଳନ ଦିବାସ୍ୱପ୍ନ ହୋଇ ରହିଥିବ ।

ଏହି ବର୍ଷକ ଭିତରେ ଭାରତର ପ୍ରାୟ ସବୁ ମୁଖ୍ୟମନ୍ତ୍ରୀ ଓ ପ୍ରମୁଖ କର୍ମକର୍ତ୍ତାଙ୍କ ସହ ପ୍ରତ୍ୟକ୍ଷ ସମ୍ପର୍କ କରିପାରିଲି । ଅନେକ ମତେ ଯଥୋଚିତ ସମ୍ମାନ ଦେଲେ ଏବଂ ଅଭ୍ୟନ୍ତରୀଣ ବିବାଦ ବିଷୟ ଜଣାଇଲେ ଇନ୍ଦିରା ଗାନ୍ଧୀଙ୍କ କାନରେ ପହଞ୍ଚାଇବାଲାଗି । ଇନ୍ଦିରା ଗାନ୍ଧୀ ମୋର ବିବୃତି ନିମନ୍ତେ ମୋ ପ୍ରତି ନାରାଜଥିଲେ । ଏଣେ ଓଡ଼ିଶା କଂଗ୍ରେସର ନେତୃତ୍ୱ ଓ କମ୍ୟୁନିଷ୍ଟ ପାର୍ଟି ତାଙ୍କ ଆଗରେ ଆପତ୍ତି ଦର୍ଶାଇଲେ ଯେ ମୁଁ ଏ ପଦବୀର ସୁଯୋଗ ନେଇ ଜେ. ପି. ଆନ୍ଦୋଳନକୁ ସମର୍ଥନ କରୁଛି । କମ୍ୟୁନିଷ୍ଟ ପତ୍ରିକା New Age ଏବଂ New Waveରେ ମୋ ବିରୁଦ୍ଧରେ ଲେଖାମାନ ପ୍ରକାଶପାଇଲା । କୃଷି ମନ୍ତ୍ରଣାଳୟ ଅଧୀନରେ ଏହି ପଦବୀ ଥିବାରୁ ତାହା ଖାରଜ କରିଦେବା ନିମନ୍ତେ ଜଗଜ୍ଜୀବନ ରାମଙ୍କ ଉପରେ ଚାପ-ପଡ଼ିଲା । ସେ ମତେ ଯୋଗଦେବାକୁ କହିଥିବାରୁ ବୋଧହୁଏ ଟିକିଏ ଦୃଢ଼ତା ଦେଖାଇ କହିଲେ—କ୍ୟାବିନେଟ୍ ନିଷ୍ପତ୍ତିରେ ପଦବୀ ସୃଷ୍ଟି ହୋଇଛି । ସେ ଯୋଗଦେଇନଥିଲେ ଯାହା ହୁଅନ୍ତା । ସେ ଯୋଗ ଦେଇ ସାରିବା ପରେ ମୋ ପକ୍ଷରେ କିଛି କରିବା ସମ୍ଭବ ନୁହେଁ । ପ୍ରଧାନମନ୍ତ୍ରୀ ଯଦି କହିବେ, ତେବେ ମୁଁ ଦ୍ୱିବେଦୀଙ୍କୁ ଇସ୍ତଫା ଦେଇଦେବାଲାଗି କହିପାରେ । ମତେ ଆହୁରି କେତେକ ଖବରରେ ତୁଚ୍ଛ କରିବା ଭଳି ଭାବ ପ୍ରକାଶିତ ହେଲା । ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ନିଜେ ଏହି ପଦବୀ ସୃଷ୍ଟି ଲାଗି ଦାୟୀ ଥିବାରୁ ବୋଧହୁଏ ଏପରି କିଛି ନିର୍ଦ୍ଦିଷ୍ଟ

ନିଷ୍ପତ୍ତି ନେବାକୁ ପଶ୍ଚାତ୍ପଦ ହେଲେ । ଏସବୁ କାଣ୍ଡରେ ବିରକ୍ତ ହୋଇ ମୁଁ ମଧ୍ୟ ଇସ୍ତଫା ଦେଇ ଚାଲିଆସିବା କଥା ଭାବୁଥିଲି । ମାତ୍ର ମତେ ବାହାରକରିଦେବାର ଚକ୍ରାନ୍ତ ଦେଖି ସେମାନେ ବାହାର କରିନଦେବା ପର୍ଯ୍ୟନ୍ତ ଛାଡ଼ି ଯିବି ନାହିଁ ବୋଲି ମୁଁ ସ୍ଥିର କଲି । ମୋର ନିଯୁକ୍ତି ପୂର୍ବ ବର୍ଷଟି ଯାର ଶେଷକୁ ଛାଡ଼ିଆସିଲି ।

ଏଥିଭିତରେ ଜେ. ପି.ଙ୍କର ଅସୁସ୍ଥତା ବୃଦ୍ଧି ହେତୁ ତାଙ୍କୁ ଖଲାସ କରିବା ଲାଗି ଉଦ୍ୟମ ଚାଲିଲା । ଏଥିରେ ମତେ ଉପଯୋଗ କରିବା ନିମନ୍ତେ ଚେଷ୍ଟାହେଲା । ଅତି ଉଚ୍ଚ ମହଲରୁ ମତେ କୁହାଗଲା ଜୟପ୍ରକାଶଙ୍କୁ ପ୍ରବର୍ତ୍ତାଇବା ନିମନ୍ତେ କେବଳ ଏତିକି କହିବାଲାଗି ଯେ, ସେ ଏଭଳି ଆନ୍ଦୋଳନ ଆରମ୍ଭ କରିବା ନିମନ୍ତେ କାହାରିକି ପରାମର୍ଶ ଦେଇନାହାନ୍ତି । ଏପରି ପ୍ରସ୍ତାବ କରିବା ସମ୍ମାନଯୋଗ୍ୟ ନୁହେଁ ବୋଲି ମୁଁ କହିଲି; ମାତ୍ର ସର୍ବୋଚ୍ଚମହଲରୁ ମତେ ଯଦି ଭରସା ଦିଆଯାଏ ଯେ ସରକାର ଜୟପ୍ରକାଶ ଓ ତାଙ୍କ ସାଥୀଙ୍କ ସହିତ ଗୋଟାଏ ସମାଧାନ ଲାଗି ଇଚ୍ଛୁକ, ତେବେ ମୁଁ ଜେ. ପି.ଙ୍କ ପାଖକୁ ଯିବାଲାଗି ସମ୍ମତ ହୋଇପାରେ ଏବଂ କିଭଳି ଭାବରେ ସମାଧାନ ହୋଇପାରିବ ତାଙ୍କର ପରାମର୍ଶ ନେଇପାରେ । ଏତିକିରେ ଏ ବିଷୟଟିର ସମାପ୍ତି ଘଟିଲା ।

ଏ ପଦବୀ ଛାଡ଼ିବା ପୂର୍ବରୁ ମୁଁ ଆଉ ଏକ କାର୍ଯ୍ୟ ଅବଶ୍ୟ କରିଥିଲି । ନନ୍ଦିନୀ ଶତପଥୀଙ୍କର ଦୁର୍ନୀତି ସମ୍ବନ୍ଧରେ ମୁଁ କେତେକ ନିର୍ଦ୍ଦିଷ୍ଟ ଅଭିଯୋଗ ଆଣିଥିଲି । ପ୍ରଥମରେ ସେ ବିଷୟ ପ୍ରତି ଇନ୍ଦିରା ଗାନ୍ଧୀ ଆଗ୍ରହ ଦେଖାଉନଥିଲେ; ପରେ ମୋଠାରୁ ଅଧିକ ସମ୍ବାଦ ସଂଗ୍ରହ କଲେ ଏବଂ ମତେ ଡକାଇ ଓଡ଼ିଶା ପରିସ୍ଥିତି ଓ ନନ୍ଦିନୀଙ୍କ ପରିବର୍ତ୍ତେ କାହାକୁ ଦାୟିତ୍ୱ ଦିଆଯିବ ଏ ସମ୍ପର୍କରେ ମୋର ମତ ନେଉଥିଲେ । ମୁଁ ଦିଲ୍ଲୀ ଛାଡ଼ିବା ପୂର୍ବରୁ ଓଡ଼ିଶା ବ୍ୟାପାରରେ କେନ୍ଦ୍ର ହସ୍ତକ୍ଷେପର ଜରୁରୀ ଆବଶ୍ୟକତା ସମ୍ପର୍କରେ ଏକ ବିବୃତି ଦେଲି । ତେଣେ ଏପରି ବ୍ୟବସ୍ଥା ହୋଇଥିଲା ଯେ, ଦିଲ୍ଲୀର ପ୍ରତ୍ୟେକ ଇଂରେଜୀ ଦୈନିକରେ ଏହା ପ୍ରଥମ ପୃଷ୍ଠାରେ ପ୍ରକାଶପାଇଲା । ତାର ଅଳ୍ପଦିନ ପରେ ନନ୍ଦିନୀ ଗାଦିଚ୍ୟୁତହେଲେ ଏବଂ ବିନାୟକ ଆଚାର୍ଯ୍ୟଙ୍କୁ ମୁଖ୍ୟମନ୍ତ୍ରୀ କରାଗଲା । ଶ୍ରୀ ଆଚାର୍ଯ୍ୟଙ୍କ ନାମ ସୁପାରିଶରେ ମୋର କିଛି ହାତ ଥିଲା ।

ମୁଁ କିନ୍ତୁ କଂଗ୍ରେସରେ ଆଉ କିଛି ନକରିବାଲାଗି ନିଷ୍ପତ୍ତି ନେଇସାରିଥିଲି । ଏହା ଭିତରେ ଏମର୍ଜେନ୍ସି ଉଠିଗଲା ଏବଂ ନିର୍ବାଚନରେ ଇନ୍ଦିରା ଗାନ୍ଧୀଙ୍କ ସମେତ ସାରା କଂଗ୍ରେସ ପରାଭବ ଲଭିଲା । ଏହି ପରାଜୟ ପରେ ମୁଁ ୨୨-୩-୭୭ରେ ଏକ ବିବୃତି ଦେଇ କହିଲି—ଏହି ନିର୍ବାଚନର ନିର୍ଦ୍ଦିଷ୍ଟ ରାୟ ହେଲା—ଏମର୍ଜେନ୍ସି, ବ୍ୟକ୍ତି-ପ୍ରାଧାନ୍ୟ-ରାଜନୀତି ଓ ଏକଚ୍ଛତ୍ର ଆଚରଣର ବିରୋଧରେ । ଏଥିରେ କଂଗ୍ରେସଦଳକୁ ପ୍ରତ୍ୟାଖ୍ୟାନ କରାଯାଇ-ନାହିଁ; ମାତ୍ର ଏହାର ଅଗଣତାନ୍ତ୍ରିକ ଗଠନବିଧି ଓ କଂଗ୍ରେସ ନୀତି ଭୁଲ ଭାବରେ କାର୍ଯ୍ୟକାରୀ କରିବାର ବିରୋଧରେ ମତ ପ୍ରକଟିତହେଲା । ଲୋକେ କୌଣସି ଗୋଟିଏ ବିକଳ୍ପ ଶକ୍ତିକୁ ଭୋଟ ଦେଇନାହାନ୍ତି; ମାତ୍ର ଜୟପ୍ରକାଶ ନାରାୟଣ ଯେଉଁ ମୌଳିକ

ମୂଲ୍ୟବୋଧ ରକ୍ଷାଲାଗି ଚେଷ୍ଟାକରୁଥିଲେ, ସେଥିପ୍ରତି ଲୋକଙ୍କର ଦୃଢ଼ ସମର୍ଥନ ମିଳିଛି । ସ୍ୱାଧୀନତା ଓ ଗଣତନ୍ତ୍ରକୁ ଖର୍ବକରିବାର ପ୍ରଚେଷ୍ଟାକୁ ଲୋକେ ଆଉ ସହ୍ୟ କରିବା ନିମନ୍ତେ ପ୍ରସ୍ତୁତ ନୁହନ୍ତି । ଲୋକମାନେ ଏକପ୍ରକାର ସବୁ ରାଜନୀତିକ ଦଳଗୁଡ଼ିକୁ ଏକ ସତର୍କବାଣୀ ଶୁଣାଇଦେଇଛନ୍ତି—ରାଜନୀତିକ ଜୀବନ ନିର୍ଦ୍ଦିଷ୍ଟ ନୀତି ଓ ଆଦର୍ଶ ଉପରେ ପ୍ରତିଷ୍ଠିତହେଉ—ତେବେ ଯାଇ ଗଣତନ୍ତ୍ର ସୁପ୍ରତିଷ୍ଠିତ ହୋଇପାରିବ ।

ଏହି ବକ୍ତୃତି ଯୋଗୁଁ ମୁଁ ପୁଣି କଂଗ୍ରେସ ମହଲରେ ସମାଲୋଚନାର ଶରବ୍ୟ ହେଲି । ମୁଁ ବମ୍ବେ ଯାଇ, କଂଗ୍ରେସରୁ ଇସ୍ତଫା ଦେବାଲାଗି ସ୍ଥିର କରୁଛି ବୋଲି ଜଣାଇବାରେ, ଜୟପ୍ରକାଶ ନାରାୟଣ ଅସୁସ୍ଥ ଅବସ୍ଥାରେ ବି ମତେ ବୁଝାଇପକାଇଲେ ।

ମୁଁ ୩୦.୪.୭୭ରେ କଂଗ୍ରେସ ସଭାପତିଙ୍କୁ ଏକ ପତ୍ର ଲେଖି ନିମ୍ନଲିଖିତ କେତେକ ଦାବୀ ଉପସ୍ଥାପିତ କଲି ।

(୧) ଭୁଲମାର୍ଗରେ କଂଗ୍ରେସର ନୀତି କାର୍ଯ୍ୟକାରୀ କରିବାର ଦାୟିତ୍ୱ ସମୂହ ଭାବରେ କଂଗ୍ରେସ କାର୍ଯ୍ୟକାରୀ ସମିତି ଗ୍ରହଣକରୁ ଏବଂ ନିଖିଳ ଭାରତ କଂଗ୍ରେସ କମିଟି ଜରିଆରେ ଦେଶ ଗଣତାନ୍ତ୍ରିକ ପନ୍ଥାରୁ ବିଚ୍ୟୁତ ହୋଇଥିବାରୁ ଏବଂ ବ୍ୟକ୍ତି କର୍ତ୍ତୃତ୍ୱକୁ ପ୍ରଶ୍ରୟ ଦେଇଥିବା ହେତୁ ଦେଶ ଆଗରେ କ୍ଷମା ଭିକ୍ଷା କରୁ । କମ୍ୟୁନିଷ୍ଟ ଓ ଅନ୍ୟ ତଥାକଥିତ ପ୍ରଗତିବାଦୀଙ୍କର ପ୍ରଭାବରେ ପଡ଼ି ଏହା ଯେ ଦେଶରେ ମୌଳିକ ମୂଲ୍ୟବୋଧ ରକ୍ଷା ନିମନ୍ତେ, ଜୟପ୍ରକାଶ ନାରାୟଣ ଯେଉଁ ଆନ୍ଦୋଳନ ଚଳାଇଥିଲେ ତାର ଅସଲ ମହତ୍ତ୍ୱ ବୁଝିପାରିନାହିଁ ସେଥିପାଇଁ ଦୁଃଖ ପ୍ରକାଶ କରୁ ।

(୨) କଂଗ୍ରେସ କାର୍ଯ୍ୟକାରୀ ସମିତିର ସଭ୍ୟମାନେ ସ୍ୱେଚ୍ଛାକୃତଭାବେ ଇସ୍ତଫା ଦିଅନ୍ତୁ; ତାଙ୍କ ସ୍ଥାନରେ ନୂତନ କାର୍ଯ୍ୟକାରୀ କମିଟି ଓ ନୂତନ ସଭାପତି ନିର୍ବାଚିତ ହୁଅନ୍ତୁ । ଯେଉଁ ବ୍ୟକ୍ତିମାନେ ଏମର୍ଜେନ୍‌ସି ଆଇନ ପ୍ରଚଳନରେ ପ୍ରତ୍ୟକ୍ଷଭାବରେ ସମ୍ପୃକ୍ତ ଥିଲେ, ଅତ୍ୟଧିକ ଗର୍ହିତ କାର୍ଯ୍ୟ କରିଥିଲେ, ସେମାନଙ୍କ ଭିତରୁ କେହିକୁ ହେଲେ ବି ନୂତନ କାର୍ଯ୍ୟକାରୀ ସମିତିରେ ସ୍ଥାନ ନମିଳୁ ।

(୩) ଜେ. ସି. ଶାହା କମିସନକୁ ନିଖିଳ ଭାରତ କଂଗ୍ରେସ କମିଟି ଏବଂ ଯେଉଁଠି ସବୁ କଂଗ୍ରେସ ସରକାର ରହିଛନ୍ତି, ସେମାନେ ପୂର୍ଣ୍ଣଭାବରେ ସହଯୋଗ କରନ୍ତୁ; କାରଣ କଂଗ୍ରେସ ବିଶ୍ୱାସ କରେ ଯେ ଏହି କମିସନ୍‌ର ତଦନ୍ତ ଫଳରେ ଦେଶରେ ଯେଉଁମାନେ ସରକାରୀ ଶକ୍ତିର ଅପପ୍ରୟୋଗ କରିବାକୁ କିମ୍ବା ନାଗରିକଙ୍କର ଗଣତାନ୍ତ୍ରିକ ଅଧିକାରକୁ ଖର୍ବ କରିବାକୁ ଇଚ୍ଛାକରୁଥିବେ, ତାଙ୍କ ପ୍ରତି ଏହା ଏକ ଦୃଢ଼ ସତର୍କବାଣୀ ରୂପେ ରହିବ ।

(୪) ନିଖିଳ ଭାରତ କଂଗ୍ରେସ କମିଟି ଲୋକଙ୍କ ରାୟକୁ ମୁଣ୍ଡପାତି ମାନିନେଉଛି । ବର୍ତ୍ତମାନର ସରକାର ବିଧିବଦ୍ଧ ଗଣତାନ୍ତ୍ରିକ ପଦ୍ଧତିରେ ନିର୍ବାଚିତ ହୋଇଛି । ତାହାକୁ ରଚନାତ୍ମକ ସହଯୋଗ ଦେବ ଏବଂ ଏଣିକି ଏକ ଦାୟିତ୍ୱପୂର୍ଣ୍ଣ ଗଣତାନ୍ତ୍ରିକ ବିରୋଧୀରୂପେ ନିଜର କର୍ତ୍ତବ୍ୟ ସମ୍ପାଦନ କରିବ ।

(୬) କେତେକ ରାଜନୀତିକ ଦଳଙ୍କର ଏକତ୍ରୀକରଣକୁ କଂଗ୍ରେସ କମିଟି ସ୍ୱାଗତ କରୁଛି । ଏତଦ୍ୱାରା ଦେଶର ରାଜନୀତିକ ଜୀବନ ଶକ୍ତିଶାଳୀ ହୋଇପାରିବ ବୋଲି ବିଶ୍ୱାସ କରୁଛି । ଆଶାକରଯାଉଛି ଯେ, ଦେଶରେ ନୀତି ଓ ଆଦର୍ଶ ଭିତ୍ତିରେ ରାଜନୈତିକ ଦଳଗୁଡ଼ିକ ଏଣିକି କାର୍ଯ୍ୟ କରିବେ ଏବଂ ଦେଶରେ ସୁସ୍ଥ ଗଣତାନ୍ତ୍ରିକ ପରମ୍ପରା ବଜାୟ ରହିବ ।

କଂଗ୍ରେସ ସଭାପତି ଏହାର କୌଣସି ଉତ୍ତର ଦେଲେନାହିଁ କିମ୍ବା ନିଖିଳ ଭାରତ କଂଗ୍ରେସ କମିଟିରେ କୌଣସି ପ୍ରସ୍ତାବ ଗୃହୀତ ହେଲାନାହିଁ ।

ମୁଁ କଂଗ୍ରେସର ପ୍ରାଥମିକ ସଭ୍ୟପଦରୁ ଇସ୍ତଫା ଦେଇଦେଲି ।

ମୁଁ ଇସ୍ତଫା ଦେବାବେଳକୁ ନୂତନ ଜନତା ସରକାର ଗଠିତ ହୋଇଯାଇଥାଏ—ମାତ୍ର ଜନତା ପାର୍ଟି ଗଢାହୋଇନଥାଏ । ୧୯୭୭ ମେ ମାସରେ ଜନତା ପାର୍ଟି ଗଠିତ ହେଲା । ସେହିଦିନ ମୁଁ ଏକ ବିବୃତିରେ କହିଲି—

"ଭାରତର ରାଜନୈତିକ ଜୀବନରେ ଚାରିଗୋଟି ଗଣତାନ୍ତ୍ରିକ ଦଳର ଏକତ୍ରୀକରଣ ଓ ମିଶ୍ରଣ ଗୋଟିଏ ମହାନ୍ ଘଟଣା ଏବଂ ପ୍ରତ୍ୟେକ ଭାରତୀୟ ଏଥିରେ ଆନନ୍ଦ ଅନୁଭବ କରିବେ । ରାଜନୀତିକ ଦୃଢ଼ୀକରଣ ଦିଗରେ ଏହା ଏକ ଉଜ୍ଜ୍ୱଳ ମାର୍ଗ । ନିର୍ଦ୍ଦିଷ୍ଟ ନୀତି ଓ ଆଦର୍ଶ ଭିତ୍ତିରେ ରାଜନୈତିକ ଦଳ ଗଠନ ପ୍ରକ୍ରିୟା ଲାଗି ଏହା ପଥ ଦେଖାଇଲା । ଏଥିଯୋଗୁଁ ଗଣତାନ୍ତ୍ରିକ ପଦ୍ଧତି ଶକ୍ତିଶାଳୀ ହେଲା ।

ମୋର କେବଳ ଏତିକି ଦୁଃଖ ଯେ, ୧୯୩୪ ମସିହାରୁ ଯେଉଁ ସଙ୍ଗଠିତ ସୋସଲିଷ୍ଟ ଆନ୍ଦୋଳନ ଏ ଦେଶରେ ଆରମ୍ଭ ହୋଇଥିଲା, ସୋସଲିଷ୍ଟ ପାର୍ଟି ଜନତା ପାର୍ଟିରେ ମିଶିଗଲା ପରେ ତାହା ପୂର୍ବପୂର୍ବ ଲୋପପାଇଗଲା ।"

ଏହି କଥା ଲେଖିଲାବେଳେ ମୋ ମନ ପ୍ରକୃତରେ ଭାରାକ୍ରାନ୍ତ ହୋଇଗଲା । ଯେଉଁ ଜୟପ୍ରକାଶ ନାରାୟଣ ସୋସଲିଷ୍ଟ ସଙ୍ଗଠନର ମୂଳପତ୍ତନ ଦେଇଥିଲେ, ଏବେ ତାଙ୍କରି ଯୋଗୁଁ ସୋସଲିଷ୍ଟ ସଙ୍ଗଠନ ଦେଶରେ ଆଉ ରହିଲାନାହିଁ । ଜନତା ପାର୍ଟି ଏକ ଉଦାରନୀତିକ ସର୍ବଦଳୀୟ ସଙ୍ଗଠନ କହିଲେ ଅତ୍ୟୁକ୍ତି ହେବନାହିଁ । ଏଥିରେ ନା ଥିଲା କୌଣସି ନିର୍ଦ୍ଦିଷ୍ଟ ମତବାଦର ଆଦର୍ଶ, ନା ଏମାନଙ୍କର ଜୟପ୍ରକାଶଙ୍କ ସଂପୂର୍ଣ୍ଣ କ୍ରାନ୍ତିରେ ବିଶ୍ୱାସ । ଅପ୍ରତ୍ୟାଶିତ ଭାବରେ କ୍ଷମତା ଆସିଯିବା ହେତୁ ଏକ ପୀଠରେ ଏକତ୍ର ହେବାକୁ ପଡ଼ିଲା । ନେତା ଓ ବିଭିନ୍ନ ପାର୍ଟି ଭିତରେ ସଦ୍ଭାବ ଓ ଶ୍ରଦ୍ଧା ସ୍ଥାପିତ ହେଲାନାହିଁ । ସବୁ ପାର୍ଟିଗୁଡ଼ିକ ଭିନ୍ନ ରହିଥିବାବେଳେ ଯେମିତି ପରସ୍ପରପ୍ରତି ବିରୋଧଭାବ ରଖିଥିଲେ, ଭିତରେ ଭିତରେ ସେହିଭଳି ପ୍ରତିଯୋଗିତା ଜାରିରହିଲା । ସରକାର କେତେକ ନୂତନ କାର୍ଯ୍ୟକ୍ରମ ହାତକୁ ନେଲା; ଅଧିକ ବ୍ୟକ୍ତିସ୍ୱାଧୀନତା ଓ ଗଣତାନ୍ତ୍ରିକ ବାୟୁମଣ୍ଡଳ ଦେଶରେ ପୁନଃ ପ୍ରତିଷ୍ଠିତ ହେଲା । ମାତ୍ର ପାର୍ଟିଗୁଡ଼ିକ ଭିତରେ ହାର୍ଦ୍ଦିକ ମିଳନ ହୋଇପାରିଲାନାହିଁ । ଏପରିକି ୩ ବର୍ଷର କାର୍ଯ୍ୟକାଳ ଭିତରେ ଜନତା ପାର୍ଟିର ଆଭ୍ୟନ୍ତରୀଣ ନିର୍ବାଚନ ହୋଇପାରିଲାନାହିଁ—ଅସ୍ଥାୟୀ କମିଟି ହିଁ କାର୍ଯ୍ୟକଲା । ଦଳ ଭିତରେ ନେତୃତ୍ୱ ଲାଗି ଏପରି

ଅଶୋଭନୀୟ ଆଚରଣ ପ୍ରକାଶପାଇଲା, ଯାହା ଫଳରେ ଶତ୍ରୁ ସାଙ୍ଗରେ ବି ହାତ ମିଳାଇ ନିଜ ସରକାରକୁ ଭାଙ୍ଗିବା ଲାଗି କେତେକ ପଶ୍ଚାତ୍ପଦ ହେଲେ ନାହିଁ । ଏହି ନେତାମାନଙ୍କର କାର୍ଯ୍ୟ ଫଳରେ ଗଣତାନ୍ତ୍ରିକ ଆନ୍ଦୋଳନ ଆହୁରି ଧକ୍କା ପାଇଲା ଏବଂ ପଛେଇଗଲା । ଏବେ ଯେଉଁ ନାମ ଧରି ଯେପରିଭାବରେ ଲୋକଙ୍କ ସମ୍ମୁଖକୁ ଆସନ୍ତୁ ନା କାହିଁକି, ଏହିସବୁ ନେତା ଓ ଦଳ ବିକଳ୍ପ ରାଜନୀତିକ ଶକ୍ତିରୂପେ ଉଭା ହୋଇପାରିବେନାହିଁ କିମ୍ବା ଜନସାଧାରଣଙ୍କର ପୂର୍ଣ୍ଣ ଆସ୍ଥା ପାଇପାରିବେନାହିଁ ।

ଭାରତର ରାଜନୀତିକ ଜୀବନ ଖଣ୍ଡବିଖଣ୍ଡିତ । ଜୟପ୍ରକାଶ ନାରାୟଣ ଏକ ଗଣତାନ୍ତ୍ରିକ ବିରାଟ ଜାତୀୟ ଶକ୍ତି ଠିଆକରାଇପାରିଥିଲେ । ମହାତ୍ମା ଗାନ୍ଧୀଙ୍କ ପରେ ତାଙ୍କର ଭାରତମାତାଙ୍କୁ ଏହା ଏକ ବିଶେଷ ଅବଦାନ । ମୁଁ କଂଗ୍ରେସ ତ୍ୟାଗ ପରେ ଜନତା ପାର୍ଟିରେ ଯୋଗଦେବା ବିଷୟରେ ହଠାତ୍ କିଛି ପଦକ୍ଷେପ ନେଇ ନ ଥାଆନ୍ତି । ମାତ୍ର ଜୟପ୍ରକାଶ ମତେ କହିଲେ—ଜନତା ପାର୍ଟି ହେଉଛି ତାଙ୍କ ନିଜ ଜୀବନର ଏକ ଅଙ୍ଗ ସ୍ୱରୂପ । ଏହି କଥା ସେ ବିବୃତିରେ ମଧ୍ୟ କହିଥିଲେ । ଜନତା ପାର୍ଟିରେ ଯୋଗ ଦେବା ନିମନ୍ତେ ସେ ମତେ ଅନୁରୋଧ କରିବାରୁ ମୁଁ ତାହା ଶିରୋଧାର୍ଯ୍ୟ କରିନେଲି ।

କେବଳ ସେତିକି ନୁହେଁ, ଜୟପ୍ରକାଶ ମୋ ସମ୍ପର୍କରେ ଏକ ବିବୃତି ମଧ୍ୟ ଦେଲେ ଯାହା ଷ୍ଟେଟ୍ସମ୍ୟାନ୍ ଓ ଅନ୍ୟ ସମ୍ବାଦପତ୍ରମାନଙ୍କରେ ବହୁତ ବଡ଼ ଶିରୋନାମା ନେଇ ପ୍ରକାଶ ପାଇଥିଲା । ସେ ଲେଖିଥିଲେ - "ସଂପୂର୍ଣ୍ଣ କ୍ରାନ୍ତିର ଉଦ୍ଦେଶ୍ୟ ଲାଗି କାର୍ଯ୍ୟ କରିବା ନିମନ୍ତେ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କର କଂଗ୍ରେସରୁ ଇସ୍ତଫା ଦେବାକୁ ମୁଁ ସ୍ୱାଗତ କରୁଛି । ସୁରେନ୍‌ବାବୁ ଜଣେ ସାଥୀ ହିସାବରେ ମୋ ସହିତ ୩୦ ବର୍ଷରୁ ଅଧିକ କାଳ କାର୍ଯ୍ୟ କରିଛନ୍ତି । ସେ ଜଣେ ତ୍ୟାଗୀ ଓ ନିଷ୍ଠାବାନ୍ ସୋସଲିଷ୍ଟ । ତାଙ୍କର ଦୀର୍ଘକାଳର ସାଧାରଣ ଜୀବନ ଭିତରେ ରାଜନୀତିକ ଦୁର୍ନୀତି ବିରୋଧରେ ଅବିରାମ ସଂଗ୍ରାମ ଚଳାଇ ସେ ଦେଶରେ ଖ୍ୟାତି ଅର୍ଜନ କରିଛନ୍ତି । ମୋ ମନରେ ତିଳେହେଲେ ସନ୍ଦେହ ନାହିଁ ଯେ ଏପରି ବନ୍ଧୁଙ୍କର ସହଯୋଗ ଓ ପ୍ରତ୍ୟକ୍ଷ ଯୋଗଦାନ ଫଳରେ ସଂପୂର୍ଣ୍ଣକ୍ରାନ୍ତି ଆନ୍ଦୋଳନ ଆହୁରି ଶକ୍ତିଶାଳୀ ହେବ ।"

ମୁଁ ଜନତା ପାର୍ଟିରେ ଯୋଗଦେଲି ସତ, ମାତ୍ର ଏଥିରେ ସଂପୂର୍ଣ୍ଣରୂପେ ଲିପ୍ତ ହୋଇ ପାରିଲିନାହିଁ । ନିଜ ଭିତରେ ଓ ବାହାରେ କ୍ଷମତା ଲାଗି ଏମାନଙ୍କ ଭିତରେ ଯେଉଁ ଟଣାଓଟରା ତହିଁରେ ମୁଁ ନିଜକୁ ଖାପଖୁଆଇ ପାରିଲିନାହିଁ । କେନ୍ଦ୍ର ନେତୃବୃନ୍ଦ ମୋ ପ୍ରତି ଅଧିକ ସହନଶୀଳ ଭାବ ଦେଖାଇଥିଲେ ସୁଦ୍ଧା, ଜନତା ପାର୍ଟି କାର୍ଯ୍ୟ ପ୍ରତି ମୋ ମନରେ ଉତ୍ସାହ ଆସିଲାନାହିଁ । ତେଣୁ ମୁଁ ଏଥିରୁ ଏବେ ଅନ୍ତର ହୋଇଯାଇଛି—ଜନତାଦଳର ବନ୍ଧୁଭାବେ ରହିଛି—ସଭ୍ୟ ହିସାବରେ ନୁହେଁ । ମୁଁ କୌଣସି ରାଜନୀତିକ ଦଳଭୁକ୍ତ ହୋଇ ରହିନାହିଁ । ମାତ୍ର ମୋର ରାଜନୀତି ପ୍ରତି ଆଗ୍ରହ ରହିଛି ଏବଂ ଏବେ ବି ମୁଁ ସୋସଲିଜମ୍‌ର ସ୍ୱପ୍ନ ଦେଖୁଛି । ଦିନେ ନା ଦିନେ ସୋସଲିଜମ୍ ଆସିବ ଏଥିରେ ସନ୍ଦେହ

ନାହିଁ । ଆଧୁନିକ ଜଗତର ସମସ୍ୟା କେବଳ ସୋସଲିଜମ୍ ଜରିଆରେ ସମାଧାନ ହୋଇପାରିବ । କେହି ଗତି ରୋଧ କରିପାରିବେ ନାହିଁ । ଆମେ ଯେଉଁ ଗଣତାନ୍ତ୍ରିକ ସମାଜବାଦ ଚନ୍ତାଧାରା ଦେଶରେ ଖେଳାଇଛୁ ତାହାର ନୀତି ଓ ଲକ୍ଷ୍ୟ ଅତୁଟ ରହିଛି । ପୁଞ୍ଜିବାଦ ସହ ସମ୍ଝୋତା କରି ସୋସଲିଜମ୍ ସ୍ଥାପନ ହୋଇପାରେନା—ପୁଞ୍ଜିବାଦର ଧ୍ୱଂସ ଉପରେ ହିଁ ଏହା ସ୍ଥାପିତ ହୋଇପାରିବ । ଆମେ ଆମ ଜୀବଦ୍ଦଶା ଭିତରେ ସମାଜବାଦର ଦୃଢ ସାଙ୍ଗଠନିକ ଭିତ୍ତି ସ୍ଥାପନା କରିପାରିଲୁ ନାହିଁ । ଦେଶର ଭବିଷ୍ୟ ଯୁବସଂପ୍ରଦାୟ ପ୍ରତି ଏହା ଏକ ଆହ୍ୱାନ । ଏହି ଭବିଷ୍ୟ ଯୁବଶକ୍ତି ଉପରେ ମୋର ବିଶ୍ୱାସ ଓ ଭରସା ରହିଛି । ମୃତ୍ୟୁପର୍ଯ୍ୟନ୍ତ ମୁଁ ମୋର ଅବଶିଷ୍ଟ ଶକ୍ତି ଓ ସାମର୍ଥ୍ୟ ସୋସଲିଜମ୍ ଉଦ୍ଦେଶ୍ୟରେ ଦେଇ ପାରିଲେ ପରମ ସନ୍ତୋଷ ଲାଭକରିବି ।

□□□